# ଦୁଜିଲା ଦିନର ସ୍ମୃତି

ପଣ୍ଡିତ କୃଷ୍ଣଚନ୍ଦ୍ର କର



# ହଜିଲା ଦିନର ସ୍ମୃତି

[ ଆତ୍ମଚରିତ ]

ପଣ୍ଡିତ କୃଷ୍ଣଚନ୍ଦ୍ର କର, ବାଣୀଭୂଷଣ

ଗ୍ରନ୍ଥମନ୍ଦିର

**ପ୍ରିୟବରଂ ସତତଂ ସ୍ମରାମି**

୨୫।୧୧।୧୯୮୭ ର

ମୃଦୁମଧୁହର୍ମୀରତ ନିଃଶେଷ ନିଶୀଥରେ

ଅମରପଥଯାତ୍ରୀ

ମୋର ଆଯୌବନ ସଖା

ଆଜୀବନ ସୁହୃତ୍

ସୁଖେ-ଦୁଃଖେ ନର୍ମ ସାଥୀ

ବିପଦେ-ଆପଦେ ବନ୍ଧୁ

ପରପୂରପରିପୂର୍ଣ ଉଜ୍ଜ୍ୱଳ ପୁରୁଷ

ଶୁଦ୍ଧାତ୍ମା **ଶ୍ରୀଧର ମହାପାତ୍ରଙ୍କର**

ଅମଳ ଅମ୍ଳାନ ସ୍ମୃତିରେ…

ସାଥୀହରା ଦୁର୍ଭଗ

**ଲେଖକ**

## ସୂଚୀପତ୍ର

———

# ଉପୋଦ୍‌ଘାତ

ବ୍ୟାସକବି ଫକୀରମୋହନ ସେନାପତି ଓଡ଼ିଶାରେ ଆତ୍ମଚରିତ ପ୍ରବର୍ତ୍ତନର ଆଦି ସ୍ରଷ୍ଟା । ବିଂଶ ଶତାବ୍ଦୀର ଚତୁର୍ଥ ଦଶନ୍ଧି ଯାଏ 'ଆତ୍ମଚରିତ' କହିଲେ ଫକୀରମୋହନଙ୍କ ଆତ୍ମ-ଚରିତକୁ ହିଁ ବୁଝାଉଥିଲା, କାରଣ ତାହା ସେପର୍ଯ୍ୟନ୍ତ ଥିଲା 'ଏକଶ୍ଚନ୍ଦ୍ର ସ୍ତମୋ ହନ୍ତି'—'ଦ୍ୱିତୀୟୋ ନାସ୍ତି' । ଉତ୍କଳଗୌରବ ମଧୁସୂଦନ ଦାସ ଓ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବୈଜ୍ଞାନିକ ଡକ୍ଟର୍ ପ୍ରାଣକୃଷ୍ଣ ପରିଜା ସ୍ୱ ସ୍ୱ ଜୀବନଚରିତ ଲେଖିବାକୁ ଯାଇ ସାମାନ୍ୟ କିଛି କିଛି ବାଟ ଆଗେଇବା ପରେ ଛିନ୍ନସ୍ପୃହ ହୋଇପଡ଼ିଥିଲେ—ଅଧିକ ଅଗ୍ରସର ହୋଇ ଆତ୍ମଲିପିକୁ ପୂର୍ଣ୍ଣାଙ୍ଗ କରିବାରେ ଉଭୟଙ୍କର ବୋଧହୁଏ ଆନ୍ତରିକ ଇଚ୍ଛାକୃତା ପରିପୂର୍ଣ୍ଣ ମାତ୍ରାରେ ନ ଥିଲା, କାରଣ ଉଭୟଙ୍କ ନୀତିରେ କର୍ମପନ୍ଥାକୁ ଅଗ୍ରାଧିକାର ଦେବା ଥିଲା ଅଧିକ କାମ୍ୟ ଓ ଶ୍ରେୟସ୍କର । ମାତ୍ର ସେକାଳକୁ ଏକାଳ ବହୁତ ଫରକ୍—ସେବକା ଯୁଗ ଥିଲା ନିଷ୍ଠା ସହ କାମ କରିବାର ଯୁଗ, ଆଉ ଏବକା ଯୁଗ ହୋଇଛି 'କହନ୍ତି ଯେତେ ନୁହନ୍ତି ସେତେ'ର ଯୁଗ, ଅର୍ଥାତ୍ 'କାମର ପରିମାଣ କମ୍‌କୁ ବାହାଦୁରି ଦେଖେଇହେବାର ପରିମାଣ ବେଶୀ'ର ଯୁଗ । ମୁଁ ସେ-ଯୁଗୀୟ ରୀତିରେ ମୂଳହୁଁ ହୋଇଥିଲି ଦୀକ୍ଷିତ, ସେ-ଯୁଗୀୟ ଛାଞ୍ଚାରେ ଶିକ୍ଷିତ ଓ ଅଭ୍ୟସ୍ତ । ତେଣୁ ନିଜର ଜୀବନଚରିତକୁ ନିଜେ ଲେଖିବାର ସ୍ପର୍ଦ୍ଧା ବା ଦୁରାକାଂକ୍ଷା ମୋର ସ୍ୱପ୍ନରେ ସୁଦ୍ଧା କେବେ ନ ଥିଲା ।

ଯୁଗନ୍ଧର ଫକୀରମୋହନ ସେନାପତିଙ୍କ ପରେ ନବ-ଭାରତର ସ୍ୱପ୍ନବିଳାସରେ ବିଭୋର ନବଯୁଗ-ବାର୍ତ୍ତାବହ ସତ୍ୟବାଦୀ ଗୋଷ୍ଠୀର ମହାମନୀଷୀ ପଣ୍ଡିତ ନୀଳକଣ୍ଠ ଦାସ 'ଆତ୍ମ-ଚରିତ'ର ମାହାତ୍ମ୍ୟ ଫୁଟାଇବାରେ ନେତୃତ୍ୱର ଭୂମିକା ନେଲେ ଏବଂ ତାଙ୍କ ଆତ୍ମଚରିତଟି ହେଲା ଦ୍ୱିତୀୟ ପୂର୍ଣ୍ଣାଙ୍ଗ ଆତ୍ମଚରିତ । ତଦ୍ଦ୍ୱାରା ସମ୍ଭବତଃ ପ୍ରଭାବିତ ହୋଇ ପଣ୍ଡିତ ଗୋଦାବରୀଶ ମିଶ୍ର ନିଜ ଜୀବନକାହାଣୀ ଲେଖିବାକୁ ପ୍ରୟାସ କଲେ; କିନ୍ତୁ ଦୁର୍ଭାଗ୍ୟବଶତଃ ତାଙ୍କ ସଙ୍କଳ୍ପକୁ ସହାୟକ ହେଲାଭଳି ପର୍ଯ୍ୟାପ୍ତ ଅବସରର ପ୍ଲାବନ ଯୋଗ ନ ଘଟିବା ଯୋଗୁଁ ପରିକଳ୍ପିତ ଯୋଜନାର ପ୍ରାୟ ଏକତୃତୀୟାଂଶ ମାତ୍ର ଲେଖାହୋଇ ମନୋଜ୍ଞ ଆତ୍ମଚରିତଟି ଅପୂର୍ଣ୍ଣ ଅବସ୍ଥାରେ ରହିଗଲା । ପ୍ରକାଶିତ ପୂର୍ଣ୍ଣାଙ୍ଗ ତୃତୀୟ ଆତ୍ମଚରିତ ହେଉଛି ପବିତ୍ରମୋହନ ପ୍ରଧାନଙ୍କର ।

ଏବର ପରିବର୍ତ୍ତିତ ଯୁଗପ୍ରବାହରେ ଅନେକ ନୂତନତା, ନବ୍ୟତା, ଆଧୁନିକତା, ଅତ୍ୟାଧୁନିକତାର ବନ୍ୟା ଦେଖାଦେଇଛି—ଏହାର ପ୍ଲାବନ ବେଳେ ବେଳେ ପ୍ରଳୟଙ୍କର ହେଲେହେଁ ପ୍ରାୟଶଃ ଶୁଭଙ୍କର । ଏହି ବିବର୍ତ୍ତିତ ନବତମ ଧାରାକୁ ସ୍ୱାଗତ କରିନେଇଛି ଆଜିର ସାରସ୍ୱତ ସେବକ ସମାଜ ତଥା ଦେଶସେବୀ ସମ୍ପ୍ରଦାୟ । ଏହା ଫଳରେ ପ୍ରତିଷ୍ଠିତ

ଅଧିକାଂଶ ସାହିତ୍ୟସାଧକ ଓ ଦେଶସେବକଙ୍କ ହୃଦୟ-କନ୍ଦରରେ ଝକମକଉଠିଛି ଆତ୍ମଚରିତ ଲେଖାର ଅଗ୍ନେୟସ୍ଫୁଲିଙ୍ଗ । କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ନନ୍ଦକିଶୋର ଦାସ, କାଳିନ୍ଦୀଚରଣ ପାଣିଗ୍ରାହୀ, ଚିନ୍ତାମଣି ମିଶ୍ର, ଉପେନ୍ଦ୍ର ତ୍ରିପାଠୀ, ରମା ଦେବୀ, ଲୋକଗୁରୁ କୃତ୍ତିବିହାରୀ ଦାଶ, ଗୋପାଳକୃଷ୍ଣ ନନ୍ଦ, ଉଦୟନାଥ ଷଡ଼ଙ୍ଗୀ, ବନମାଳୀ ବ୍ରହ୍ମଚାରୀ, କବି ରବି ସିଂହ, ନୀଳମଣି ରାଉତରାୟ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ଅଧ୍ୟାପକ ଶ୍ରୀଧର ଦାସ ପ୍ରଭୃତିଙ୍କ ଆତ୍ମଚରିତ ଏଥିମଧ୍ୟରେ ପ୍ରକାଶିତ ହୋଇ ଓଡ଼ିଆ ଭାଷାର ଜୀବନୀସାହିତ୍ୟ-ଭଣ୍ଡାରକୁ ଯଥେଷ୍ଟ ସମୃଦ୍ଧ କରିଦେଇଛି ।

ଡକ୍ଟର୍ କୃତ୍ତିବିହାରୀ ଦାଶ 'ମୋ କାହାଣୀ' ନାମରେ ନିଜର ଆତ୍ମଚରିତ ପ୍ରକାଶ କଲାପରେ ସାହିତ୍ୟିକ ଗୋପାଳକୃଷ୍ଣ ନନ୍ଦଙ୍କୁ ତାଙ୍କ ଆତ୍ମଚରିତ ଲେଖିବାକୁ ଏକାଧିକ ବାର ଉଦ୍‌ବୋଧିତ କରିଥିଲେ । କୃତ୍ତିବିହାରୀଙ୍କର ସେହି ପ୍ରୋତ୍ସାହନର ପାଷାଣ ପ୍ରହାର୍ ପାଇ ନ ଥିଲେ ଗୋପାଳକୃଷ୍ଣଙ୍କ ସୁଲିଖିତ ଆତ୍ମଚରିତ 'ଜୀବନତରଙ୍ଗ' ଲୋକଲୋଚନକୁ ଆସିପାରିଥାନ୍ତା କି ନାହିଁ, କହିବା ଦୁଷ୍କର ।

ସେଇ ଲୋକଗୁରୁ ଡକ୍ଟର୍ କୃତ୍ତିବିହାରୀ ମଧ୍ୟ ମତେ ଆତ୍ମଚରିତ ଲେଖିବାଲାଗି ଘନ ଘନ ପ୍ରେରଣା ଦେଇଥିଲେ—ଏପରିକି ସେହି ପ୍ରେରଣା ପରିଶେଷରେ ପ୍ରକାଶ୍ୟ ତାଡ଼ନାରେ ପରିଣତ ହୋଇଥିଲା । ଅଗତ୍ୟା ଆଖିଦୃଷ୍ଟିଆ କିଛି ଲେଖିଲି ପରେ 'ଅଲପୁଆ ଘୋଡ଼ାକୁ ମେଘ ଅସରା' ପରି ହଠାତ୍ ଦୁର୍ଘଟଣା ଓ ସ୍ୱାସ୍ଥ୍ୟହାନିର ଶିକାର ହେବା ଯୋଗୁଁ ଦୀର୍ଘକାଳ ଶୋଇଗଲି, ଯାହା ଫଳରେ ଦିନେ ହେଲେ କାଗଜ ସହିତ କଲମର ମୁଲାକତ୍ ହୋଇପାରିଲା ନାହିଁ । ସେହି ଦୁର୍ଯ୍ୟୋଗ ଅବସ୍ଥାରେ ମୋ ଗୁରୁଦେବ ପଣ୍ଡିତ କୁଳମଣି ଦାଶ (୧୮୮୪—୧୯୬୮)ଙ୍କ ସଙ୍କଳିତ 'ଶ୍ରୀମଦ୍‌ଭଗବଦ୍‌ଗୀତା'ର 'ଆଭାଷ' (Foreword)ରେ ତାଙ୍କ ଗୁରୁଦେବ ଭକ୍ତକବି ମଧୁସୂଦନ ରାଓ (୧୮୫୩—୧୯୧୨)ଙ୍କ ଜରାକ୍ରାନ୍ତ ଶେଷ ଜୀବନରେ (ସମ୍ଭବତଃ ୫୮ ବର୍ଷ ବୟସରେ) ରଚିତ ଏକ କବିତାଂଶର ଉଦ୍ଧୃତି ଦେଖିବାକୁ ପାଇଲି । ତାହାର ତଳେ ମୋ ଗୁରୁଦେବ ଲେଖିଛନ୍ତି :

> "ଏହି ଗୁରୁବାକ୍ୟ ସ୍ମରଣରେ ଜରାର ପୂର୍ଣ୍ଣ ଆକ୍ରମଣ ପୂର୍ବରୁ ଏ ଗ୍ରନ୍ଥର ସଙ୍କଳନ ଓ ମୁଦ୍ରଣ ଶେଷ କରି ମୋ ଦେଶବାସୀଙ୍କ ହସ୍ତରେ ଅର୍ପଣ କରିଗଲି । ଏହାର ଦ୍ୱିତୀୟ ସଂସ୍କରଣ ମୋ ଆଖିରେ ପଡ଼ିବ ବୋଲି ମୁଁ କିପରି ବା ଆଶା କରିବି ? × ×
>
> କୁଳମଣି ଦାଶ
>
> ୨୦।୧୦।୧୯୫୫, କଟକ"

ଗୁରୁଦେବଙ୍କ ନାମ ତଳର ତାରିଖରୁ ସ୍ପଷ୍ଟ ଅନୁଭୂତ ହୁଏ ଯେ, ଆଭାଷ ଓ ଗ୍ରନ୍ଥପ୍ରବେଶିକା ଆଦି ସମେତ ସମଗ୍ର ଗ୍ରନ୍ଥଟିର ଦୁରୂହ ସଙ୍କଳନ କାର୍ଯ୍ୟ ଶେଷ କରିବାକୁ ତିନି-ଚାରି ବର୍ଷରୁ କେବେଁ କମ୍ ସମୟ ଲାଗି ନ ଥିବ । ତାହାହେଲେ ୧୯୫୧-୧୯୫୨ ମସିହା ମଧ୍ୟରେ ନିଶ୍ଚୟ ଲେଖା ଆରମ୍ଭ ହୋଇଥିବ । ସେତେବେଳକୁ ଗୁରୁଦେବଙ୍କ ବୟସ ୬୭-୬୮ ବର୍ଷ

ହୋଇଥିଲା । 'ଆସ୍ପୃହା'ରେ ଉଦ୍ଧୃତ ଜରତ୍ କବିଙ୍କ ଖେଦୋକ୍ତି ଯେତେବେଳେ ମୋ ଦୃଷ୍ଟିରେ ପଡ଼ିଥିଲା, ସେତେବେଳକୁ ମୋର ବୟସ ୮୧ ବର୍ଷ (ଜୁଲାଇ ୧୯୮୭) ଆରମ୍ଭ ହୋଇସାରିଥାଏ । ମୋ ଗୁରୁଦେବ 'ଗୀତା' କାମ ଅନୁକୂଳ କଲାବେଳେ ତାଙ୍କ ଜରାର ଆକ୍ରମଣ ଆରମ୍ଭ ମାତ୍ର ହୋଇଥାଏ; ତେଣୁ ସେ ଡରିଥିଲେ ଜରାର ଶକ୍ତିଶାଳୀ ପୂର୍ଣ୍ଣଆକ୍ରମଣକୁ । ମୁଁ କିନ୍ତୁ ୮୦ ବର୍ଷ ବୟଃକ୍ରମକୁ ଟପିସାରିଥିବାରୁ ଜରାର ପୂର୍ଣ୍ଣଆକ୍ରମଣ ବଳୟ ମଧ୍ୟକୁ କେବଠୁଁ ଆସିସାରିଥିଲି । ଏଣୁ ଆତଙ୍କ ଓ ହତାଶାର ଅପଛାୟା ମୋ ହୃଦପଟେ ସଦାସର୍ବଦା ଘୂରି ବୁଲିଲା । ବୋଧିନ୍ୟଗ୍ରୋଧ ଗୁରୁଦେବଙ୍କ ମନୀଷା ନିକଟରେ ମୋ ପରି ଅକିଞ୍ଚନର ଜ୍ଞାନ କିବା ଛାର, କିବା ନଗଣ୍ୟ ! ଭକ୍ତ ମଧୁଙ୍କ ଜରାକ୍ରମଣଜନିତ ଅଙ୍ଗେନ୍ଦ୍ରିୟ ବୈକଲ୍ୟ ବର୍ଣ୍ଣନାର କବିତାଛନ୍ଦଟି ଯେଉଁ ୭୭ ବର୍ଷ ବୟସ୍କ ଜ୍ଞାନଗରିଷ୍ଠ ବିଦ୍ୟାବରିଷ୍ଠ ମୋ ଗୁରୁଦେବଙ୍କୁ ଶଙ୍କାଚ୍ଛନ୍ନ ଓ ଛନ୍ନମତି କରିଦେଇଥିଲା, ମୋ ପରି ୮୧ ବର୍ଷ ବୟସ୍କ ଜରା-ବ୍ୟାଧି-କ୍ଳିଷ୍ଟ ଅଳଙ୍କୁ କେତେ ବେଶୀ ଯେ ଭୀତତ୍ରସ୍ତ ଓ ଦ୍ୱିଧାଦ୍ୱନ୍ଦ୍ୱିତ କରିଦେଇଥିବ, ଅନୁଭବୀମାନଙ୍କର ସହଜେ କଳନୀୟ । ଆଲୋଚ୍ୟ ପୂର୍ଣ୍ଣଛନ୍ଦଟି ଗ୍ରନ୍ଥାବଳୀରୁ ଖୋଜି ଠାବ କଲି । ଜରାଗ୍ରସ୍ତ ଭକ୍ତକବିଙ୍କ ଖେଦୋକ୍ତି ସହିତ ମୋର ଖେଦୋକ୍ତି ସ୍ୱର ମିଶାଇ ନିମ୍ନରେ ସେହି ଛନ୍ଦଟି ଉଦ୍ଧାର କଲି :

ଶକ୍ତିହର ଜରା ଛୁଇଁଲାଣି ଦେହ-ପୁର,
ଅଲକ୍ଷିତେ ବଳ ମୋର କରୁଅଛି ଚୁର ।

ଯୌବନ-ପ୍ରାସାଦଭିତ୍ତି ଅଳ୍ପ ଆଘାତରେ
ଭାଙ୍ଗିପଡ଼ୁଅଛି ନିତି କମ୍ପି ଥରଥରେ ।

ଲିଭିଯାଉଅଛି କ୍ରମେ ଦୀପ୍ତି ନଶ୍ୱର,
ସାମର୍ଥ୍ୟ ଯାଉଛି ତୁଟି ଏ ମୋ ଚରଣର ।

ମସ୍ତକର କେଶ ଏ ମୋ ହେଲାଣି ପଳିତ,
ଦୁର୍ବଳ କଣ୍ଠର ସ୍ୱର, ସବୁ ବିକଳିତ ।

ଶିଥିଳ ଧମନୀ ସ୍ନାୟୁ, ଶୀତଳ ରକତ,
ଲେଖନୀଚାଳନେ ହସ୍ତ ହୁଏ ଅଶକତ ।

ଅପ୍ରସନ୍ନ ଏବେ ନିଦ୍ରାଦେବୀ ଶ୍ରାନ୍ତିହରା,
ବେଗେ ମାଡ଼ିଆସୁଅଛି ନିଶାଚରୀ ଜରା ।
ଏହି ଭଗ୍ନ ଦେହ-ଘରେ ରହିଅଛି ପଡ଼ି,
ଆସୁଛି ମରଣ ମୋତେ ତହୁଁ ଦେବ ତଡ଼ି ।
ବାଧୁଅଛି ବାସନାକୁ ଯୌବନ-ବିରହ,
ବିକଳେ କାନ୍ଦୁଛି ତାହା ତେଣୁ ଅହରହ ।

ଆଶ୍ଚର୍ଯ୍ୟ କଥା, ବର୍ଣ୍ଣିତ ଛଅଟି ମୋର ମନୋବଳ ହରଣ କରିନଥିଲା କଣ, ଗୁରୁ-କୃପାରୁ ମନୋବଳ ଆହରଣ କରିବାରେ ପ୍ରେରଣାର ଉତ୍ସ ସ୍ୱରୂପ ହେଲି । କାତରତାକୁ ହୃଦୟରୁ ନିର୍ବାସନ ଦେଇ ନିରୋଗ ମନକୁ ପାରୁପର୍ଯ୍ୟନ୍ତେ ଟାଣ ଓ ଦମ୍ଭ କଲି । ଶପଥ ନେଲି, ପ୍ରତ୍ୟହ ଅଳପ ହେଉ ବହୁତ ହେଉ କିଛି ନିଶ୍ଚୟ ଲେଖି ଯଥାଶୀଘ୍ର ଏ 'ହଜିଲା ଦିନର ସ୍ମୃତି'କୁ ପୂର୍ଣ୍ଣାଙ୍ଗ କରିଦେବି । 'ଗୁରୁଃ ସାକ୍ଷାତ୍ ପରଂବ୍ରହ୍ମ' । ପରଂବ୍ରହ୍ମରୂପୀ ସେହି ଗୁରୁଦେବ ଦିବଂଗତ ପଣ୍ଡିତ କୁଳମଣି ଦାଶଙ୍କ ଦିବ୍ୟ ଆଶୀର୍ବାଦରୁ ନାନା ଦୁର୍ବିପାକ ଓ ସନ୍ତାପର ଘୂର୍ଣ୍ଣିପାକ ମଧ୍ୟରେ ମୋର ଆଶା ଚରିତାର୍ଥ ହୋଇଛି, ଅଭିଳାଷ ପୂର୍ଣ୍ଣ ହୋଇଛି ।

ପ୍ରସଙ୍ଗକ୍ରମେ ଏଠାରେ ଉଲ୍ଲେଖନୀୟ ଯେ, ପ୍ରଖ୍ୟାତ ଜୀବନୀ ସମୀକ୍ଷକ ଲେଖକରତ୍ନ ଡକ୍ଟର୍ କୃଷ୍ଣବିହାରୀ ଦାଶ ତାଙ୍କ 'କବି-କାହାଣୀ' ପୁସ୍ତକରେ ଏବଂ ଅଧ୍ୟାପକ ଗୌରାଙ୍ଗଚରଣ ଦାଶ ତାଙ୍କ 'ଚରିତ ଓ ଚରିତ୍ର' ସିରିଜ୍‌ର ଦ୍ୱିତୀୟ ଖଣ୍ଡରେ ତଥା ଓଡ଼ିଶା ସାହିତ୍ୟ ଏକାଡ଼େମୀର ତ୍ରୈମାସିକ ମୁଖପତ୍ର 'କୋଣାର୍କ' (୧୯୮୮, ସଂଖ୍ୟା ୬୮)ରେ ମୋ ସାରସ୍ୱତ ଜୀବନ ସମ୍ପର୍କରେ ବିସ୍ତୃତ ଆଲୋଚନା କରିଛନ୍ତି ।

ପ୍ରିୟ ପାଠକ-ପାଠିକାଙ୍କ ହସ୍ତରେ ମୋର ଏହି ଆତ୍ମଲିପିଟି ଅର୍ପଣ କରି ତୃପ୍ତି ଅନୁଭବ କରୁଛି । ଯୋଗ୍ୟତା-ଅଯୋଗ୍ୟତାର, ଆଦର-ଅନାଦରର ବିଚାରଭାର ସେହିମାନଙ୍କର । ଉନ୍ନତ ଜୀବନଗଠନ ପାଇଁ କେହି ଯେବେ ଏଥିରୁ ସତ୍‌ଚିନ୍ତା, ସଦାଚାର, ବିବେକାନୁଗତ୍ୟ, ଦେଶହିତୈଷଣା, ମାତୃଭାଷାପ୍ରୀତି, ସତ୍ୟାନୁରାଗ, ଭାରତୀୟଭାବନା ଆଦିର କିଛି-ନା-କିଛି ଉପାଦାନ ଆହରଣ କରିବାକୁ ଆଗ୍ରହୀ ହେବେ, ତାହାହେଲେ ମୋର ଏ ପଡ଼ନ୍ତ ଜୀବନର କ୍ଳେଶପୂର୍ଣ୍ଣ ଶ୍ରମ ସାର୍ଥକ ହେବ । ପାଠକ-ପାଠିକାଙ୍କ ବିଚାରର କଷଟିଗାର ସେଇଥିରୁହିଁ ପ୍ରତିପାଦିତ ହେବ । ମାତ୍ର ମୋ ଗୁରୁଦେବଙ୍କ ଦିବ୍ୟ ଭାଷାରେ "ଏହାର ଦ୍ୱିତୀୟ ସଂସ୍କରଣ ମୋ ଆଖିରେ ପଡ଼ିବ ବୋଲି ମୁଁ କିପରି ବା ଆଶା କରିବି ?"

୩୧।୧୨।୧୯୮୭

କାଜିବଜାର, କଟକ-୧

କୃଷ୍ଣଚନ୍ଦ୍ର କର

# ୧ । ଜନ୍ମମାଟିର ସାରସ୍ୱତ ଉର୍ବରତା

ଭାରତର ଅନ୍ୟ ସମସ୍ତ ରାଜ୍ୟାଞ୍ଚଳ ଇଂରେଜମାନଙ୍କଦ୍ୱାରା ଏକ ପରେ ଏକ କବଳିତ ହେଲା ପରେ ବିଶାଳ ଉତ୍କଳ ଦେଶ ସର୍ବଶେଷରେ ସ୍ୱାଧୀନତା ହରାଇ ଇଂରେଜ ଶାସନ-ଯନ୍ତ୍ରର କାରୁଭୁକ୍ତ ହୋଇଥିଲା ୧୮୦୩ ଖ୍ରୀଷ୍ଟାବ୍ଦର ସେପ୍ଟେମ୍ବର ୧୮ ତାରିଖରେ । ବେପାରୀ ଫିରିଙ୍ଗି ଶାସକଗୋଷ୍ଠୀ ବୀର ଓଡ଼ିଆ ଜାତିର ଅଖଣ୍ଡ ଏକତାକୁ ବିପର୍ଯ୍ୟସ୍ତ ଓ ଧ୍ୱସ୍ତବିଧ୍ୱସ୍ତ କରିଦେବା ଅଭିସନ୍ଧିରେ ଉତ୍କଳର ବିପୁଳ କଳେବରକୁ ଖଣ୍ଡବିଖଣ୍ଡିତ କରି ସେଥିର ଗୋଟିଏ ଗୋଟିଏ ବା ଏକାଧିକ ଇଲାକାକୁ ମଧ୍ୟପ୍ରଦେଶ, ମାନ୍ଦ୍ରାଜ ପ୍ରଦେଶ, ବଙ୍ଗ ପ୍ରଦେଶ ଓ ବିହାର ପ୍ରଦେଶରେ ସାମିଲ କରିଦେଲେ । ସେହି ବିଦେଶୀ ସରକାର-ଦ୍ୱାରା ପୂର୍ବରୁ ପ୍ରବର୍ତ୍ତିତ ନୀତିନିର୍ଦ୍ଧାରଣାନୁଯାୟୀ ଉତ୍କଳର ଅବିଚ୍ଛିନ୍ନ ଅଙ୍ଗ ଚବିଶଟିଯାକ ଗଡ଼ଜାତ ରାଜ୍ୟ ଅଲଗା ହୋଇଯାଇ ଭାରତର ଗୋରା ଭାଇସ୍‌ରାୟଙ୍କ ଖୋଦ୍ କର୍ତ୍ତୃତ୍ୱର ବଶବର୍ତ୍ତୀ ହେଲା । ଭାଇସରାୟଙ୍କ ବିଧିବଦ୍ଧ ପ୍ରତିନିଧି ରୂପେ ଜଣେ ସାହେବ ପଲିଟିକାଲ୍ ଏଜେଣ୍ଟ ଉକ୍ତ ଗଡ଼ଜାତ ରାଜ୍ୟଗୁଡ଼ିକର ରାଜାରାଜୋଡ଼ାଙ୍କ ଅଧୀନସ୍ଥ ପ୍ରଜାପାଟକଙ୍କ ଉପରେ ନିରଙ୍କୁଶ କ୍ଷମତା ଜାହିର କଲେ । ଉତ୍କଳମାତା ହେଲା ଛିନ୍ନମସ୍ତା, ଛିନ୍ନହସ୍ତା । କେବଳ କଟକ ଜିଲ୍ଲା, ପୁରୀ ଜିଲ୍ଲା, ବାଲେଶ୍ୱର ଜିଲ୍ଲା ଓ ଅନୁଗୁଳ ଅଞ୍ଚଳକୁ ନେଇ ଯେଉଁ ନାମକୁ ମାତ୍ର ଓଡ଼ିଆ ମୁଲକ ଗଠିତ ହେଲା, ତାକୁ ସରକାରୀ ଆଖ୍ୟା ଦିଆଗଲା 'ଓଡ଼ିଶା ଡିଭିଜନ୍' । ତାହା ପୁଣି କେତେବେଳେ ମଧ୍ୟପ୍ରଦେଶ, କେତେବେଳେ ବଙ୍ଗପ୍ରଦେଶ, କେତେବେଳେ ବା ବିହାର ପ୍ରଦେଶ ସଙ୍ଗେ ଲାଙ୍ଗୁଳ ସଦୃଶ ଯୋଡ଼ା ହୋଇ ରହିଲା । ଆଗଙ୍ଗାଗୋଦାବରୀବ୍ୟାପୀ ବୀରରଙ୍ଗଭୂମି ଉତ୍କଳ ସାମ୍ରାଜ୍ୟର ଏହାହିଁ ହେଲା ଅନ୍ତିମ ଲଲାଟଲିଖନ !

ଏବଂବିଧ ଜାତୀୟ ଦୁର୍ଗତି ଓ ଦୁର୍ଦ୍ଦିନରେ ଓଡ଼ିଶାବାସୀ ଓ ବିଚ୍ଛିନ୍ନାଞ୍ଚଳବାସୀ ଓଡ଼ିଆ-ମାନେ କିନ୍ତୁ ବିଚଳିତ ବା ଭଗ୍ନଚିତ୍ତ ନହୋଇ ଜାତିଗତ ଏକତାକୁ ପୁନଃସଙ୍ଗଠିତ ଓ ସଂହତିବଦ୍ଧ କରିବାକୁ ଏକମନ-ଏକପ୍ରାଣରେ ନିରଳସ ଉଦ୍ୟମ ଅବ୍ୟାହତ ରଖିଲେ । ସାମ୍ରାଜ୍ୟବାଦୀ ବ୍ରିଟିଶ୍ ରାଜଶକ୍ତିକୁ ନିନ୍ଦା କରିବାର ସହସ୍ର କାରଣ ଥିଲେ ମଧ୍ୟ ତାର ଆଧୁନିକ ଶିକ୍ଷା-ସଭ୍ୟତା ବିସ୍ତାର ନୀତି ପରିଣାମତଃ ଭାରତର ଆଶା-ଆକାଂକ୍ଷା ପୂରଣ ପକ୍ଷରେ ଯେ ସୁଫଳପ୍ରସୂ ହେଲା, ଏହା ସ୍ୱୀକାର ନକରି ରହି ହୁଏ ନାହିଁ । ସୌଭାଗ୍ୟବଶତଃ ବ୍ରିଟିଶ୍ ସରକାର ଓଡ଼ିଶା ଡିଭିଜନ୍‌ରେ ଆଧୁନିକ ଶିକ୍ଷାର ପ୍ରବର୍ତ୍ତନ କରିବାକୁ ଯାଇ ବହୁ ବହୁ

ଅନେକ ଅଞ୍ଚଳରେ ଓ ସଦର ମହକୁମାମାନଙ୍କରେ ଇଂରାଜୀ ବିଦ୍ୟାଳୟମାନ ବସାଇବାକୁ ଆରମ୍ଭ କଲେ । ସୁଖର କଥା, କଟକ ଜିଲ୍ଲା ଏହି ସୁଯୋଗର ଜ୍ୟେଷ୍ଠ ଓ ଶ୍ରେଷ୍ଠ ଭାଗ ଉପଭୋଗ କରିବା ପାଇଁ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲା ।

ବିଂଶ ଶତାବ୍ଦୀର ପ୍ରଥମ ପାଦରେ କଟକ ଜିଲ୍ଲାର ସଦର ସବ୍‌ଡିଭିଜନ୍ ମଧ୍ୟରେ କଟକ ନଗରୀଠାରୁ ଉତ୍ତର-ପୂର୍ବରେ ପ୍ରାୟ କୋଡ଼ିଏ ମାଇଲ୍ (ବତିଶ କିଲୋମିଟର) ଦୂରବର୍ତ୍ତୀ ପ୍ରାଚୀନ ସ୍ଥିତିରେ ଉଚ୍ଚଶିକ୍ଷାଲୋକିତ ମୂଳବସନ୍ତ ବ୍ରାହ୍ମଣଶାସନଟି ତତ୍କାଳୀନ 'ମୋଗଲ ବନ୍ଦି' ଓଡ଼ିଶା ଡିଭିଜନ୍‌ରେ ପାଶ୍ଚାତ୍ୟ ରୀତିର ସର୍ବୋଚ୍ଚଶିକ୍ଷିତ ଗ୍ରାମରୂପେ ସ୍ୱୀକୃତ ଓ ପ୍ରଶଂସିତ ହେଉଥିଲା । ଏହାର ମୂଳରେ ଥିଲା ଓଡ଼ିଆ ସାହିତ୍ୟ-ରାଜ୍ୟର ସର୍ବମାନ୍ୟ ଦିକ୍‌ପାଳ 'ଉତ୍କଳସାହିତ୍ୟ' ମାସିକ ପତ୍ରିକାର ବରେଣ୍ୟ ସମ୍ପାଦକ ବାଗ୍ମୀ ବିଶ୍ୱନାଥ କରଙ୍କ ସମାଜସଂସ୍କାର ମୂଳକ ପ୍ରଗାଢ଼ପ୍ରଯତ୍ନ ଓ ନବୋଦୟ ପ୍ରୟାସ । ତାଙ୍କ ପ୍ରତିଷ୍ଠିତ 'କରବଂଶୀୟ ଗ୍ରନ୍ଥାଗାର' (Kar Family Library) ସେତେବେଳେ ଥିଲା ଓଡ଼ିଶାର ସର୍ବବୃହତ୍ ବେସରକାରୀ ଲାଇବ୍ରେରୀ । ସଂସ୍କାରକ ବିଶ୍ୱନାଥ ଗ୍ରାମରେ ସ୍ଥାପନ କରିଥାନ୍ତି ତିନୋଟି ପ୍ରାଥମିକ ବିଦ୍ୟାଳୟ—ବାଳକ ବିଦ୍ୟାଳୟ, ବାଳିକା ବିଦ୍ୟାଳୟ ଓ (ପ୍ରୌଢ଼ଶିକ୍ଷା ପ୍ରସାର ଉଦ୍ଦେଶ୍ୟରେ) ନୈଶ ବିଦ୍ୟାଳୟ । ଏ ସମସ୍ତ ବିଦ୍ୟାଳୟରେ ତଥାକଥିତ ଅସ୍ପୃଶ୍ୟ ଜାତିର ପୁତ୍ରକନ୍ୟା ମଧ୍ୟ ସବର୍ଣ୍ଣ ଛାତ୍ରଛାତ୍ରୀଙ୍କ ସହ ଏକତ୍ର ଶିକ୍ଷାଲାଭ କରୁଥିଲେ ।

ଏହି ପ୍ରସିଦ୍ଧ ମୂଳବସନ୍ତ ଗ୍ରାମର ପଛପଟେ ଉତ୍ତରୁଁ ପୂର୍ବଦିଗବ୍ୟାପୀ ଅଞ୍ଚଳ ମଧ୍ୟରେ ଶୋଭାପାଉଛି ପରସ୍ପର-ବ୍ୟବହିତ ତିନୋଟି ସୁବିଦିତ ପ୍ରାଚୀନ ବୌଦ୍ଧପୀଠ—ଉଦୟଗିରି (ଯାଜପୁର ସବ୍‌ଡିଭିଜନ୍ ସୀମାନ୍ତବର୍ତ୍ତୀ ବଡ଼ଚଣା ଥାନା ଅନ୍ତର୍ଗତ), ରତ୍ନଗିରି (ଯାଜପୁର ସବ୍‌ଡିଭିଜନ୍ ସୀମାମଧ୍ୟସ୍ଥ ଧର୍ମଶାଳା ଥାନାନ୍ତର୍ଗତ) ଓ ଲଳିତଗିରି (କଟକ ସଦର ସବ୍‌ଡିଭିଜନ୍‌ର ମାହାଙ୍ଗା ଥାନାନ୍ତର୍ଗତ) । (ଲଳିତଗିରି ପୀଠର ଅନ୍ୟ ନାମ 'ପୁଷ୍ପଗିରି ବିହାର' ଏବଂ ଉଦୟଗିରି ପୀଠର ଅନ୍ୟନାମ 'ମାଧବପୁର ମହାବିହାର' ।) ମୂଳବସନ୍ତର ଅବସ୍ଥିତି ମାହାଙ୍ଗା ଥାନାର ସୀମା ମଧ୍ୟରେ ପ୍ରବାହିତ ହେଉଥିବା ମହାନଦୀ-ଶାଖା 'ବିରୂପା' ନଦୀର ଉତ୍ତର ତଟ ଉପରେ । ବିରୂପାର ଏହି ଅଂଶର ଉଭୟ ପାର୍ଶ୍ୱସ୍ଥ ସୀମିତ ପରିସରଟିର ଐତିହ୍ୟ ଓ ମହାତ୍ମ୍ୟ ସେକାଳରେ ସମଗ୍ର ଓଡ଼ିଶାରେ ଥିଲା ଅତୁଳନୀୟ । ଏଇ ମାଟି ଅଗ୍ନିକ ଉପରେ ବର୍ଷୁଥିଲା ମା' ବୀଣାପାଣିଙ୍କର ଅସୀମକୃପାର ଆସାର । ଏଣୁ ସାରସ୍ୱତ ମହିମାରେ ସମୁଜ୍ଜ୍ୱଳ ଏଇ ମାଟି ହିଁ ଜନ୍ମ ଦେଇଥିଲା ପ୍ରଥମ ନାଟକ ('ବାବାଜି') —ପ୍ରଣେତା ଜଗମୋହନ ଲାଲା, ପ୍ରଥମ ଓଡ଼ିଶାଇତିହାସ-ରଚୟିତା ମହାତ୍ମା ପ୍ୟାରୀ-ମୋହନ ଆଚାର୍ଯ୍ୟ, ବାଗ୍ମୀ ବିଶ୍ୱନାଥ କର, ପଲ୍ଲୀକବି ନନ୍ଦକିଶୋର ବଳ, ଗଣକବି ବୈଷ୍ଣବ ପାଣିଙ୍କ ଭଳି ଯୋଗଜନ୍ମା ପୁରୁଷରତ୍ନମାନଙ୍କୁ । ଏଇ ମାଟି ଅଗ୍ନିକରୁ ମଧ୍ୟ ଜନ୍ମ ପାଇଥିଲେ ସ୍ୱଭାବକବି ଗଙ୍ଗାଧର ମେହେରଙ୍କ ବାଲ୍ୟଗୁରୁ ମାଧବଚନ୍ଦ୍ର କର ଓ ଘନଶ୍ୟାମ

ମିଶ୍ର, ବଙ୍ଗଳା ଓ ହିନ୍ଦୀସମନ୍ୱିତ ପ୍ରଥମ ବର୍ଣ୍ଣବୋଧକାରୂପେ ପ୍ରଚଳିତ ଗଦାଧର ଦାସ ଶିରୋମଣି (ମତାନ୍ତରେ, ମୂଳ ଲେଖକ ତାଙ୍କ ଭ୍ରାତା ପ୍ରଭାକର ଦାସ ଚୂଡ଼ାମଣି), ନାଟ୍ୟକାର ଜଗନ୍ନାଥ ପଣ୍ଡା, ଋଷିପ୍ରତିମ ପଣ୍ଡିତପ୍ରବର ବେଦବିଦ୍ୟାବିତ୍ ବ୍ରଜବନ୍ଧୁ କର, ପଣ୍ଡିତ ଦୀନବନ୍ଧୁ ଦାସ କବିଭୂଷଣ, ମାଳ ମାଳ ସଂସ୍କୃତ ପୁରାଣ-ଉପପୁରାଣର ଓଡ଼ିଆ ଅନୁବାଦକ ପଣ୍ଡିତ ଗୋପୀନାଥ କର, ପ୍ରଖ୍ୟାତ ସମାଜସଂସ୍କାରକ ଓ ସଂସ୍କାରଭିତ୍ତିକ ବହୁ ଗ୍ରନ୍ଥର ସାର୍ଥକନାମା ପ୍ରଣେତା ବୈଷ୍ଣବଚରଣ ମିଶ୍ର ପ୍ରଭୃତି । ଏ ସକଳ ପୌରୁଷବନ୍ତ ସ୍ୱନାମଧନ୍ୟ ପୁରୁଷଙ୍କୁ ଯେଉଁ ମାଟିମାଆ ଜନ୍ମ ଦେଇ ସୁରୂପା 'ବିରୂପା'ର କାଚକେନ୍ଦୁ ପାଣି ଓ ଶୀକରଶୀତଳ ପବନରେ ବଢ଼େଇକୁଢ଼େଇ ଅବିସ୍ମରଣୀୟ କରାଇଛି, ମୋର ଜନ୍ମ ମଧ୍ୟ ସେଇ ମାଟିମାଆର ଯଶୋମୟ ପବିତ୍ର କୋଳରେ । ୧୯୦୬ ଖ୍ରୀଷ୍ଟାବ୍ଦ (୧୩୧୩ ସାଲ) ଜ୍ୟେଷ୍ଠ ଶୁକ୍ଳପକ୍ଷ ଦ୍ୱିତୀୟା ତିଥି ଶୁକ୍ରବାରଦିନ ମୃଗଶିରା ନକ୍ଷତ୍ର ମିଥୁନ ରାଶିର ଏକ ଅତ୍ୟୁଚ୍ଚ ଶୁଭଲଗ୍ନରେ ଭୂମିଷ୍ଠ ହୋଇଥିଲି ମୁଁ କୌଳୀନ୍ୟଗୌରବଗର୍ବିତ ପ୍ରସିଦ୍ଧ ମୂଳବସନ୍ତ (ମୂଳ ନାମ 'ମୂଳବସତି') ବ୍ରାହ୍ମଣଶାସନର ଏକ ମଧ୍ୟବିତ୍ତ ଏକାନ୍ନ ପରିବାରରେ । ମୋର ପିତା ଓ ମାତାଙ୍କ ନାମ ଯଥାକ୍ରମେ ଉଦୟନାଥ ଓ ମୁକ୍ତା ଏବଂ ପିତାମହ ଓ ପିତାମହୀଙ୍କ ନାମ ଗଦାଧର ଓ ପଦ୍ମା ।

ଏଠାରେ ସୂଚାଇଦେବା ଆବଶ୍ୟକ ଯେ, ବିଭିନ୍ନ ଗଜପତି ମହାରାଜା ଭାରତବର୍ଷର ଭିନ୍ନ ଭିନ୍ନ ପ୍ରାନ୍ତରୁ କୁଳୀନୋତ୍ତମ ଶ୍ରେଣୀର ନୈଷ୍ଠିକ ବେଦଜ୍ଞ ବ୍ରାହ୍ମଣମାନଙ୍କୁ ଆଣାଇ ପୁରୀ ଜିଲ୍ଲାରେ ପାଞ୍ଚଶାସନ, ଅଠଶାସନ ଓ ସର୍ବଶେଷରେ ଷୋଳଶାସନ ବସାଇବା ପରେ ସାମନ୍ତ ବସତି ପ୍ରତିଷ୍ଠାପନର ପରିସମାପ୍ତି ଘଟିଥିଲା । କିନ୍ତୁ ପରବର୍ତ୍ତୀ କୌଣସି ଗଜପତି, ସମ୍ଭବତଃ ପ୍ରତାପରୁଦ୍ର ଦେବ, ଏକମାତ୍ର ମହାରାଷ୍ଟ୍ରରେ ବାସକରୁଥିବା ଯଜୁର୍ବେଦୀ ଅଗ୍ନି-ହୋତ୍ରୀ ଯାସ୍କସଗୋତ୍ରୀ 'କର' ସଂଜ୍ଞାଧାରୀ ବ୍ରାହ୍ମଣ ସମ୍ପ୍ରଦାୟ ସର୍ବୋଚ୍ଚ କୁଳୀନ ବୋଲି ଅବଗତ ହୋଇ ଉକ୍ତ ରାଜ୍ୟରୁ ତିନୋଟି କ୍ଷୁଦ୍ର ପରିବାର ଆଣାଇ ଜାହ୍ନବୀ-ତନୁଜାରୂପେ ଖ୍ୟାତିମତୀ କଟକଜିଲ୍ଲାବାହିନୀ ପବିତ୍ରସଲିଳା 'ବିରୂପା' ତଟିନୀର ତଟଭୂମିରେ ସେମାନଙ୍କୁ ଅବସ୍ଥାପିତ କରି ଶାସନଟିର ନାମକରଣ କରିଥିଲେ 'ମୂଳବସତି' । କାଳକ୍ରମେ ଏହି ମୌଳିକ ନାମଟି ଲୋକମୁଖରେ 'ମୂଳବସନ୍ତ' ରୂପ ଧାରଣ କରିଛି । ମାଦଳାପାଞ୍ଜି ଓ ଚୈତନ୍ୟଚରିତାମୃତରେ ଏହି ଐତିହାସିକ ବିବରଣୀ ଉଲ୍ଲେଖ ଅଛି ବୋଲି ବର୍ଷୀୟାନ୍ କରବଂଶୀୟମାନଙ୍କ ମୁଖରୁ ମୁଁ ଛାତ୍ରାବସ୍ଥାରେ ଶୁଣିଥିଲି ।

# ୨ । ଜନକଲ୍ୟାଣବ୍ରତୀ ପିତା

ମୁଁ ଥିଲି ପିତାମାତାଙ୍କର ତଥା ନାତିକ୍ଷୁଦ୍ର ପରିବାରଟିର ପ୍ରଥମ ସନ୍ତାନ । ତେଣୁ ଗୃହର ପ୍ରତ୍ୟେକ ବ୍ୟକ୍ତିଙ୍କର, ବିଶେଷତଃ ବର୍ଷୀୟସୀ ବିଧବା ପିତାମହୀ 'ପଦ୍ମା'ଙ୍କର ନୟନପିତୁଳା ଓ ଆଦରର ଧନ । ଏ କୋଳରୁ ସେ କୋଳ, ଏ କାଖରୁ ସେ କାଖ ହୋଇ ମୋର ଶୈଶବ ଅତିବାହିତ ହୋଇଥିଲା ବାତ୍ସଲ୍ୟାତିଶଯ୍ୟରେ । ପିତା ଥିଲେ ଆଜୀବନ ପ୍ରବାସପ୍ରିୟ, ଏକାନ୍ତ ସ୍ୱଧର୍ମନିଷ୍ଠ, ଗଭୀର ଈଶ୍ୱରବିଶ୍ୱାସୀ, ନିତ୍ୟ ଗୀତାଧ୍ୟାୟୀ, ଜନହିତବ୍ରତୀ, ସ୍ୱଳ୍ପବାକ୍ ଓ ବହୁଭାଷିକ—ଓଡ଼ିଆ, ବଙ୍ଗଳା, ହିନ୍ଦୀ ଓ ସଂସ୍କୃତ ଭାଷାରେ ପ୍ରାବୀଣ୍ୟବନ୍ତ ବିଦୁଷ । ତାଙ୍କ ପଠଦଶା ବେଳ ପର୍ଯ୍ୟନ୍ତ ପଲ୍ଲୀ ଅଞ୍ଚଳରେ ଇଂରାଜୀ ଶିକ୍ଷାର ବିଧିବଦ୍ଧ ପ୍ରବର୍ତ୍ତନ ହୋଇ ନଥିଲା । ତେଣୁ ସେ ମଧ୍ୟଭର୍ଣ୍ଣାକୁଲାର ପାସ୍ କଲା ପରେ ସଂସ୍କୃତ ସାହିତ୍ୟ ପ୍ରତି ବିଶେଷଭାବରେ ଆକୃଷ୍ଟ ହୋଇଥିଲେ । କାଳିଦାସୀୟ କାବ୍ୟାଧ୍ୟୟନ ଓ ରସାକର୍ଷଣ ତାଙ୍କର ଥିଲା ସବୁଠାରୁ ପ୍ରିୟ ଓ କାମ୍ୟ —'କାଳିଦାସକବିତା ନବଂ ବୟଃ······ସନ୍ତୁବନ୍ତୁ ମମ ଜନ୍ମଜନ୍ମନି' ।

ଜନ୍ମବେଳେ ମୋ' ଦେହର ବର୍ଣ୍ଣ କଳା ଥିଲା ବୋଲି ହିଁ ବାପା ମତେ 'କୃଷ୍ଣ' ନାମ ଦେଇଥିଲେ—ଏଇଆ ଥିଲା ଗ୍ରାମବାସୀ ବୋଧାମାନଙ୍କର ବଦ୍ଧମୂଳ ଧାରଣା । କୌତୂହଳ-ନିବାରଣ ପାଇଁ ଥରେ କୁଆଡ଼େ ସେମାନେ ଏ ବିଷୟରେ ବାପାଙ୍କୁ ମୁହଁ ଖୋଲି ପଚାରି-ଥିଲେ । ଉତ୍ତରରେ ବାପା କହିଥିଲେ, "ବୈକୁଣ୍ଠବିହାରୀ ବିଷ୍ଣୁଙ୍କର ପୂର୍ଣ୍ଣାବତାର ରୂପେ ନରଦେହ ଧାରଣ କରିଥିଲେ ଦେବକୀ-ଗର୍ଭସମ୍ଭୂତ 'କୃଷ୍ଣ' । ଏହି ନାମର ଏକ ବିଶେଷ ତାତ୍ପର୍ଯ୍ୟ ଅଛି । ଶବ୍ଦଟିର ବ୍ୟୁତ୍ପତ୍ତି ହେଲା 'କୃଷ୍-ଣ'; ଏହାର ଗୂଢ଼ ଅର୍ଥ ହେଉଛି—'ଯେ ଧର୍ମର ପ୍ରତିଷ୍ଠାପାଇଁ ପୃଥିବୀ-ପୃଷ୍ଠରୁ ପାପଭାର ନିବାରନ୍ତି' । 'ଶ୍ରୀମଦ୍‌ଭଗବଦ୍‌ଗୀତା'ରେ ବର୍ଣ୍ଣିତ ସ୍ୱୟଂ କୃଷ୍ଣଙ୍କ ମୁଖୋକ୍ତ—"ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାଂ, ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ" ହିଁ ଏହାର ଜୀବନ୍ତ ପ୍ରମାଣ । ମୁଁ ମୋର ପୁଅଟିକୁ 'କୃଷ୍ଣ' ନାମ ଦେଇ ସେହି ମହାପ୍ରଭୁ ଶ୍ରୀକୃଷ୍ଣଙ୍କ ଚରଣାରବିନ୍ଦରେ ସମର୍ପଣ କରିଦେଇଛି । ପାପକଳୁଷ-ଭାରାକ୍ରାନ୍ତ କଳିକାଳରେ ଆଜିର ଜନଜୀବନ ଘୋର ଜଞ୍ଜାଳ-ଜମ୍ବାଳରେ ଜଡ଼ିତ । ଏହି ପୁତ୍ରଟି ସେହି ଜଞ୍ଜାଳଜାଳ ମଧ୍ୟରେ ଧର୍ମନିଷ୍ଠଭାବରେ ଗତିକରୁ ଏବଂ ଦୈନନ୍ଦିନ ଜୀବନଧାରାରେ ଯେତେବେଳେ ଟିକିଏ ସୁବିଧାସୁଯୋଗ ବା ଅବସର ପାଇବ, ଅନ୍ୟମାନଙ୍କର ଯଥାକିଂଚିତ୍ ହିତସାଧନରେ ନିଜକୁ ଯଥାସମ୍ଭବ ନିୟୋଜିତ କରିବାକୁ ପ୍ରବୃତ୍ତିପ୍ରବଣ ହେଉ, ଏହାହିଁ ମୋର କାମନା ଓ ଭାବନା ।"

ଏଥିରୁ ମୋ’ ପିତାଙ୍କ ଧର୍ମୀୟ ଏକନିଷ୍ଠତାର ମହତ୍ତ୍ଵ ବେଶ୍ ଉପଲବ୍ଧି କରିହେବ । ବୋଲିବା ବାହୁଲ୍ୟ ଯେ, ମୁଁ ବୟଃପ୍ରାପ୍ତି ପରେ ଦେବୋପମ ପିତାଙ୍କ ଜୀବନଦର୍ଶନର ଆଦର୍ଶକୁ ପଦେ ପଦେ ଅନୁସରଣ କରି ଓ ତାଙ୍କର ମହାର୍ଘ ଉପଦେଶାବଳୀକୁ ଅକ୍ଷରେ ଅକ୍ଷରେ ପାଳନ କରି ଯଥେଷ୍ଟ ଶାନ୍ତି ଓ ଆତ୍ମସନ୍ତୋଷ ପାଇଛି ଏବଂ ତତ୍ ସଙ୍ଗେ ସଙ୍ଗେ ଜୀବନକୁ ନିର୍ବିକାର, ନିର୍ମଳ ଓ ନିଷ୍କଳଙ୍କ କରିବାର ସ୍ପୃହା ଆହରଣ କରିପାରିଛି ।

ବାପାଙ୍କ ପ୍ରଗାଢ଼ ଈଶ୍ଵରବିଶ୍ଵାସ ଓ ପ୍ରଚଣ୍ଡ ଆତ୍ମପ୍ରତ୍ୟୟର ଅନ୍ତତଃ ତିନୋଟି ଦୃଷ୍ଟାନ୍ତ ମୁଁ ଜାଣେ । ପ୍ରଥମ ଦୃଷ୍ଟାନ୍ତଟି ଘଟିଥିଲା ରେଢ଼ାଖୋଲ ଗଡ଼ଜାତରେ । ବାପା ପ୍ରତ୍ୟହ ଉଷାର ପ୍ରାକ୍‌କାଳରେ ଶଯ୍ୟୋତ୍ଥାନପୂର୍ବକ ଦନ୍ତମାର୍ଜନସାରି ପାର୍ଶ୍ଵବର୍ତ୍ତୀ ଖୋଲା ପଡ଼ିଆକୁ ଯାଆନ୍ତି ପୁରୀଷତ୍ୟାଗ ପାଇଁ । ଦିନକର କଥା । ଗୋଟାଏ ବୁଲା କୁକୁର ପାଗଳା ହୋଇ-ଯାଇ ଚାରିଆଡ଼େ ଦୌଡ଼ୁଥାଏ, ଲୋକ ଦେଖିଲାମାତ୍ରେ ତାକୁ କାମୁଡ଼ିଦିଏ । ସେଦିନ ଭୋର୍ ଭୋର୍ ଦୁ’ଜଣ ସ୍ନାନାର୍ଥିନୀ ମହିଳାଙ୍କୁ କ୍ଷତବିକ୍ଷତ କଲା ପରେ ଉକ୍ତ ପଡ଼ିଆକୁ ଆସିଲା, ବାପା ମଳୋତ୍ସର୍ଗ କରୁଥିବା ସ୍ଥାନର ଚତୁଃପାର୍ଶ୍ଵରେ ବାରମ୍ବାର ଫେରି ମାରିଲା ଓ କିଛି ସମୟ ପରେ ସେଠା ଛାଡ଼ି ଅନ୍ୟତ୍ର ଚାଲିଗଲା । ସେତିକିବେଳେ ଦଳେ ପ୍ରୌଢ଼ା ସ୍ତ୍ରୀଲୋକ ମେଲା ବାନ୍ଧି ଝାଡ଼କୁ ଯାଉଥିଲେ ବାଉଁଶକରଡ଼ି ଆଣିବା ଉଦ୍ଦେଶ୍ୟରେ । ପାଗଳା କୁକୁରଟା ଗୋଡ଼େଇ ଗୋଡ଼େଇ ସେ ସମସ୍ତଙ୍କୁ କାମୁଡ଼ିଲା—ଜଣେହେଲେ କେହି ତା ଆକ୍ରମଣରୁ ରକ୍ଷା ପାଇଲା ନାହିଁ । ଚିକିତ୍ସା ସତ୍ତ୍ଵେ ସମସ୍ତେ ଆଗପଛ ହୋଇ ପ୍ରାଣ ହରାଇଲେ । ରକ୍ତମୁଖା ବାଘୁଆ କୁକୁରଟା ଏତେଗୁଡ଼ିଏ ନାରୀଙ୍କୁ କାମୁଡ଼ି ଝୁଣିଦେଲା, ଅଥଚ ବାପାଙ୍କୁ ଆଦୌ ସ୍ପର୍ଶ କଲା ନାହିଁ—ଏ ଘଟଣା ଶୁଣି ସ୍ଥାନୀୟ ଲୋକେ ବିସ୍ମିତ ହୋଇ ପରସ୍ପର ମଧ୍ୟରେ କୁହା-କୁହି ହେଲେ, “ତାଙ୍କୁ ଦଇବ ରଖିଲା । ତାଙ୍କର ଧର୍ମବଳ ହିଁ କୁକୁରଟାକୁ ସେଠୁ ହଟେଇ-ଦେଲା ।” କଥାଟା ପ୍ରକୃତରେ ଅଭ୍ରାନ୍ତ । ‘ଧର୍ମଃ ରକ୍ଷତି ଧାର୍ମିକମ୍’ ମହାଜନ-ବାଣୀର ସତ୍ୟତା ଏଠାରେ ପୂର୍ଣ୍ଣରୂପେ ପ୍ରତିପାଦିତ ହେଲା ।

ଦ୍ଵିତୀୟ ଦୃଷ୍ଟାନ୍ତର ଘଟଣାଟି ହେଉଛି ଆମ ଗ୍ରାମରେ । ପ୍ରବାସୀ ପିତା ତିନିମାସପାଇଁ ଗୃହକୁ ଆସିଥା’ନ୍ତି । ଖଞ୍ଜାର ଦାଣ୍ଡପଟ ପୁରୁଣା ଘରଗୁଡ଼ିକ ଭାଙ୍ଗିଦେଇ ତା’ ସ୍ଥାନରେ ନୂଆ ଘର ତୋଳା ହେବାକୁ ଯାଉଥାଏ । ବାଲି ଓ ମାଟି ପକାଇ ତାହାର ସେହି ଅଂଶଟି ପୂର୍ବାପେକ୍ଷା ଉଚ୍ଚତର କରାହୋଇଥାଏ । ପାଞ୍ଜିରୁ ଏକ ଶୁଭଦିନ ସ୍ଥିର କରି ସେହିଦିନ ପୂର୍ବାହ୍ଣରେ ନୂଆ ଘରର ଶୁଭଦିଆ କାମ ସରିଯାଇଥାଏ । ତା’ରି ତିଆସି ଦିନର କଥା । ଖର ବୈଶାଖର ଅପରାହ୍ଣ—ବେଳ ପ୍ରାୟ ସାଢ଼େ ଚାରିଟା । ଖରାଧାସ ମଉଳିବାକୁ ଆରମ୍ଭ କରିଥାଏ । ଯେଉଁ ମୋଟା ନୂଆ ଖୁଣ୍ଟଟି ନାଆଁକୁ ମାତ୍ର ପୋତାହୋଇ ତା’ ମୂଳରେ ବିଧିବିଧାନମତେ ବାସ୍ତୁପୂଜାଦି ଆଭ୍ୟୁଦୟିକ କର୍ମ କରାଯାଇଥିଲା, ଦଦେଇ ସେହିଠାରେ ଠିଆହୋଇଥା’ନ୍ତି ପଶ୍ଚିମମୁଖା ହୋଇ, ଆଉ ବାପା ଠିଆହୋଇଥା’ନ୍ତି ନିଅଁର ପଶ୍ଚିମପଟ ମୁଣ୍ଡରେ ଦଦେଇଙ୍କ ଆଡ଼କୁ ଚାହିଁ । ଏହି ସମୟରେ ଏତେ ଜୋର୍‌ରେ ପୂର୍ବେଇ ପବନ

ପିଟିଲି ଯେ, ସେହି ଦରପୋଡ଼ା ପ୍ରକାଣ୍ଡ କାଠଖୁଣ୍ଟା ହୁରୁଳିଯାଇ ପଶ୍ଚିମପଟକୁ ଝୁଙ୍କି-ପଡ଼ିଲା । ତାହା ଦେଖି ଦିଦେଇ ଚିତ୍କାରକରିଉଠିଲେ, "ଉଦି, ଖୁଣ୍ଟ ପଡ଼ିଲା, ଖୁଣ୍ଟ ପଡ଼ିଲା, ଜଲ୍ଦି ସେଠୁ ଘୁଞ୍ଚିଯା' ।" ବାପା କିନ୍ତୁ ତାଙ୍କ ନିର୍ଦ୍ଦେଶ ପ୍ରତି ଆଦୌ କର୍ଣ୍ଣପାତ କଲେ ନାହିଁ, ଯେଉଁଠି ଯେପରି ଠିଆ ହୋଇଥିଲେ ଠିକ୍ ସେହିପରି ସେଇଠି ନିଶ୍ଚଳଭାବରେ ଦଣ୍ଡାୟମାନ ରହିଲେ—ଟିପେହେଲେ ଶଙ୍କିଲେ ନାହିଁ କି ଚଙ୍କିଲେ ନାହିଁ । ଆଶ୍ଚର୍ଯ୍ୟ କଥା, ଖୁଣ୍ଟଟା ତାଙ୍କଠୁ ଗଜଖଣ୍ଡେ ମାତ୍ର ଛଡ଼ାରେ ପ୍ରଚଣ୍ଡ ଶବ୍ଦ କରି ଭୂଇଁ ଉପରେ ପଡ଼ିଗଲା । ଦିଦେଇ ଅଙ୍ଗୁଳି ଦେଖାଇ ଯେଉଁ କଡ଼କୁ ଘୁଞ୍ଚିଯିବାକୁ ନିର୍ଦ୍ଦେଶ ଦେଉଥିଲେ, ବାପା ଯଦି ତାଙ୍କ କଥା ମାନି ସେଇ କଡ଼କୁ ପାଦ ବଢ଼ାଇଥା'ନ୍ତେ, ତାହାହେଲେ ଖୁଣ୍ଟଟା ନିଶ୍ଚେ ତାଙ୍କ ଉପରେ ପଡ଼ି ମୁଣ୍ଡକୁ ଏକାବେଳେ ଛେଚୁ କରିଦେଇଥା'ନ୍ତା ।

ତୃତୀୟ ଦୃଷ୍ଟାନ୍ତଟିର ସଂଘଟନ ନୂତନ ଗୃହନିର୍ମାଣ ଓ ପ୍ରତିଷ୍ଠାର କେତୋଟି ମାତ୍ର ଦିନ ପରେ । ତିନିମାସ ରହିଣି ପରେ ଗ୍ରାମରୁ ବିଦାୟ ନେଇ ପ୍ରବାସ ଫେରିବାର ସମୟ ନିକଟତର ହୋଇଆସିଥାଏ । ଉକ୍ତ ବର୍ଷର ମୋ' ସ୍ତନଛନ ଉତ୍ସବରେ ସମସ୍ତ ଗ୍ରାମବାସୀ ଓ ଗ୍ରାମବାସିନୀଙ୍କୁ ଭୂରିଭୋଜନରେ ଆପ୍ୟାୟିତ କରିସାରି ଗ୍ରାମ ଛାଡ଼ିବେ, ଏହାହିଁ ଥିଲା ତାଙ୍କର ଏକାନ୍ତ ଆନ୍ତରିକ ଅଭିଳାଷ । ତାଙ୍କର ପ୍ରତି ଥରର ପ୍ରବାସଗମନକାଳୀନ ଅନୁକୂଳର ସମାବେଶ ଦୃଶ୍ୟ ଯେତିକି ବିଚିତ୍ର ସେତିକି ଚିତ୍ତାକର୍ଷକ ଓ ପ୍ରୀତିପ୍ରଦ । ବିଦେଶଯାତ୍ରାର ଶୁଭବେଳା ନିର୍ଣ୍ଣୟ କରିବାପାଇଁ ସେ କେବେହେଲେ ପଞ୍ଜିକା-ପରାମର୍ଶ ଲୋଡ଼ନ୍ତି ନାହିଁ । ଏ ସମ୍ପର୍କରେ 'ମଙ୍ଗଳରାତି-ବୁଧପାହାନ୍ତି' ତାଙ୍କ ବିଚାରରେ ଶ୍ରେଷ୍ଠ ଆପ୍ତବାକ୍ୟ । ତେଣୁ ସେ ମଙ୍ଗଳବାର-ରାତିର ଶେଷ ପ୍ରହରରେ ପରିବାର ତଥା ପ୍ରତିବେଶୀଙ୍କ ଦୃଷ୍ଟିର ସମ୍ପୂର୍ଣ୍ଣ ଅଗୋଚରରେ ଶୟନକକ୍ଷ ଛାଡ଼ି ଗ୍ରାମର ଇଷ୍ଟଦେବତା ବିଘ୍ନବିନାଶନ ମୂଷିକବାହନ ଗଣପତିଙ୍କ ନାମ ସ୍ମରି ସ୍ମରି ଏକାକୀ ଗୃହରୁ ନିଷ୍କ୍ରାନ୍ତ ହୁଅନ୍ତି ଏବଂ ଆଦୌ ପଶ୍ଚାତକୁ ନ ଚାହିଁ ଏକମୁହାଁ ଦଣ୍ଡାଏ ଦଣ୍ଡାଏ ଯାଇ ଗାଆଁ ସୀମାମୁଣ୍ଡର ଶତପର ବୃଦ୍ଧ ବଟବୃକ୍ଷମୂଳେ ଅଟକନ୍ତି । ସେଠାରେ ଦନ୍ତଧର୍ଷଣ ଓ 'ବହିର୍ଦ୍ଦେଶ' କର୍ମ ଶେଷ କଲାବେଳକୁ ଗ୍ରାମର ଛୋଟବଡ଼ ବାଳକ-ବାଳିକା, ବୃଦ୍ଧ-ବୃଦ୍ଧା ଓ ଅନ୍ୟ ଅନେକଙ୍କ ସମାଗମରେ ସୁପ୍ରସର ବଟତଳଟି କଳକଲ୍ଲୋଳିତ ହୋଇଉଠିଥାଏ । ସିନ୍ଦୂରା ଫାଟେ, ଉଷା ହସେ, ପ୍ରାଚୀ-ତୋରଣରେ କଅଁଳା ସୂର୍ଯ୍ୟର ଲାଲ ଟୁକୁଟୁକୁ ରୂପ ଝଲକିଉଠେ । ବାପା ପଇସାମୁଣି ଫିଟାଇ କାହାକୁ ଦୋପଇସି, କାହାକୁ ଅଣି, କାହାକୁ ଦୋଅଣି ପୁଣି କାହାକୁ କାହାକୁ ଚାରଣି ବା ଆଠଣି ଦେଇ ସର୍ବଶେଷରେ ଅତି ଦରିଦ୍ର ଓ ନିସାହା ଲୋକଙ୍କ ହାତକୁ ଗୋଟିଏ ଲେଖାଁ ମହାରାଣୀମାର୍କା ଟଙ୍କା ବଢ଼େଇଦେଇ ଉପସ୍ଥିତ ସମସ୍ତଙ୍କଠାରୁ ଯଥାବିଧି ବିଦାୟ ନିଅନ୍ତି । ପଛରେ ପଡ଼ିରହେ ମୂକସାକ୍ଷୀ କୂଳବୃଦ୍ଧ ବଟମହୀରୁହ, ବିରାଟ ଜନପଦ ମୂଳବସନ୍ତର ମାହାଳି ସାହାଳି ତୃଣଚ୍ଛଦ ଗୃହପୁଞ୍ଜ ଓ ତାର ପାର୍ଶ୍ୱଦେଶ ଶ୍ୟାମଳ ତୋଟା-

ମାଳ, ବଂଶକୁଞ୍ଜ, ତାଳବଣିର ଛବିଳ ଆଭା । ପ୍ରବାସମୁଖୀ ପିତା କ୍ଷିପ୍ର ପଦକ୍ଷେପରେ ଆଗେଇଗଲେନ୍ତି ଧାନମଣ୍ଡଳା ରେଳଷ୍ଟେସନକୁ ପଡ଼ିଥିବା ଲମ୍ବା ରାସ୍ତାରେ ।

ଉପରେ ଯେଉଁ ତୃତୀୟ ଦୃଷ୍ଟାନ୍ତଟିର ଉପକ୍ରମ ମାତ୍ର କରିଥିଲି, ତାର ସମ୍ପୂର୍ଣ୍ଣ ବୃତ୍ତାନ୍ତ ଏବେ କହୁଛି । ବାପା ତାଙ୍କ ଡେରାଘର ଛାଡ଼ି ଦୂରକୁ ଗଲେ ସମ୍ଭାବ୍ୟ ପ୍ରଧାନ ପ୍ରଧାନ ରୋଗର ଔଷଧମାନ ସଙ୍ଗରେ ବରାବର ନେଇଥାନ୍ତି । ରୋଗୀ ଠାବ କରି ସେମାନଙ୍କୁ ବିନା ମୂଲ୍ୟରେ ଔଷଧ ଦେଇ ଆରୋଗ୍ୟ କରିବା ତାଙ୍କର ଥିଲା ନିତ୍ୟ ଧ୍ୟେୟ ଓ ଅଭ୍ୟାସଗତ କର୍ତ୍ତବ୍ୟ । ଦୁର୍ଭାଗ୍ୟବଶତଃ ସେତକର ସୁଯୋଗ ଯେଉଁଦିନ ନ ଜୁଟେ, ସେଦିନର ରାତିରେ ତାଙ୍କୁ ଆଦୌ ସୁନିଦ୍ରା ହୁଏ ନାହିଁ । ଗ୍ରାମକୁ ଆସିଲେ ଆଖପାଖ ଅଞ୍ଚଳର ଲୋକେ ତାଙ୍କୁ ଘରେ ପ୍ରାୟ ରଖାଇଦିଅନ୍ତି ନାହିଁ—ତାହା ହିଁ ବାପାଙ୍କର କାମ୍ୟ, ତହିଁରେ ହିଁ ତାଙ୍କର ଅସୀମ ଆନନ୍ଦ । ତେଣୁ ସେ ଡାକରା ପାଇବାମାତ୍ରେ ଔଷଧଥଳିଟି ଧରି ଆଗ୍ରହର ସହିତ ବିଭିନ୍ନ ଗ୍ରାମକୁ ଯାଇଥା'ନ୍ତି ଏବଂ ସେଠାର ରୋଗୀମାନଙ୍କୁ ପରୀକ୍ଷା କରି ଔଷଧ ପ୍ରୟୋଗ କରନ୍ତି—ଫଳାଫଳର ଭାର ସଫେନସ୍ୱନ୍ତା ଜଗଦୀଶ୍ୱରଙ୍କଠାରେ ସମର୍ପଣ କରିଦେଇ । 'କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ, ମା କର୍ମଫଳହେତୁର୍ଭୁର୍ମାତେ ସଙ୍ଗୋଽସ୍ତ୍ୱ-କର୍ମଣି'—ଗୀତାଙ୍କର ପିତାଙ୍କର ଏହା ଥିଲା ପବିତ୍ର ଧର୍ମାନୁଶାସନ । ବୈଦ୍ୟରାଜ ହିସାବରେ ବାପା ପ୍ରକୃତରେ ଅମୃତହସ୍ତା—ଭଗବାନଙ୍କର ତାଙ୍କ ପ୍ରତି ଥିଲା ଅଶେଷ ଅନୁଗ୍ରହ ଓ ବିଶେଷ ଆଶିଷ । ସେ ରୋଗିଚର୍ଯ୍ୟା ଶେଷକରି ଘରକୁ ଫେରୁ ଫେରୁ ଗୋଟାଏରୁ କେବେ କମ୍ ହୁଏନାହିଁ । ସ୍ୱା ବାହାରେ ଉପରଓଳିଆ ଡାକରା ବି ଅଛି । ଅନୁସରଣିଆମାନଙ୍କ ଗହଣରେ ସନ୍ଧ୍ୟା ପୂର୍ବରୁ ଘରୁ ଗୋଡ଼ କାଢ଼ିଲେ ଘରକୁ ବାହୁଡ଼ା ବେଳେ ହେବାକୁ ରାତି ଯେ କେତେ ପହର ହେବ, ତାର କିଛି ଠିକଣା ନାହିଁ । ରୋଗୀଙ୍କ ହିତପାଇଁ ଭୋକ-ଶୋଷ ଭୁଲିଯିବାରେ ହିଁ ତାଙ୍କର ପେଟ ପୁରିଯାଏ ।

ଦିନେ ସେ କେତେକ ଦୂର ଗାଁରେ ରୋଗୀ ଦେଖି ଘରକୁ ଫେରିଲେ ବହୁତ ବିଳମ୍ବରେ । ସଙ୍ଗେ ସଙ୍ଗେ ସ୍ନାନ କରିବାକୁ ଗଲେ ବରୁପାଗଣ୍ଡର ଗଣେଶଘାଟକୁ । ଏଣେ ମୁଁ ନୂଆ ତିଆରି ଦାଣ୍ଡପିଣ୍ଡାରେ ଓଟାରିଆ ବଡ଼ ଛପାଟିଏ ପାରି ଆରାମରେ ଗଡ଼ଗଡ଼ ହେଉଥିଲି ତା ଉପରେ । ଦୁମୁଦୁମା ନଦୀଘାଟୀ ଝରିବେଳ । ବରୁପାର ଗମ୍ଭୀର ଚଣ୍ଡିଜଳ ଏବଂ ଅସୁମାର ଆମ୍ବଗଛ ଓ ନଡ଼ିଆଗଛର ସବୁଜ ଘନ ପତ୍ରମାଳା ଛୁଇଁ ଛୁଇଁ ଅଣ୍ଡା ପାଲଟି-ଯାଇଥିବା ଦ'ପହରିଆ ହାଉଆ ଧୀରେ ଧୀରେ ବହିଆସୁଥାଏ । ସେହି ସୁଲୁସୁଲିଆ ବାଆର ସୁଖପ୍ରଦ ସ୍ପର୍ଶରେ ଗ୍ଲୁହୁଁ ଗ୍ଲୁହୁଁ ମୋର ନିଦ ହୋଇଗଲା ନଡ଼ିଆ ବାହୁଙ୍ଗାର କଞ୍ଚା ପତ୍ରରେ ବୁଣା ଶୀତଳ ଛପାଟି ଉପରେ । ଦାଣ୍ଡକବାଟ ଯେଉଁ ଘରେ ଥାଏ, ସେଇ ଦାଣ୍ଡଘରର ଏକାଂଶ ଗୁହାଳରୂପେ ବ୍ୟବହୃତ ହେଉଥିଲା । ତା' ଭିତରେ ରହିଥା'ନ୍ତି ହଳେ ବଳଦ, ବହୁମୂଲ୍ୟ 'ପାବଣା' ଗାଈ ଓ ତାର କଅଁଳା ବାଛୁରୀ । ସମସ୍ତେ ନିଜ ନିଜ ଖୁଣ୍ଟରେ ବନ୍ଧା

ହୋଇଥା'ନ୍ତି । ଦୁଗ୍ଧବତୀ ପାର୍ବତୀ ଥିଲା ଶାନ୍ତ-ସୁଧୀର, ଧୀରସ୍ଥିର—କାହାରିକୁ ମାରେ ନାହିଁ କି ଶିଙ୍ଗ ବି ହଲାଏ ନାହିଁ । ବହୁତ କ୍ଷୀର ଦିଏ—ମୋ' ବୁଢ଼ୀମା ଗର୍ବସ୍ୱରେ ତାକୁ ଦ'ଓଳି ଦୁହାନ୍ତି ବିନା ଛନ୍ଦାରେ; ଯେତେବେଳେ ପାର୍ବତୀ ଗୋଡ଼ ଛୁଟେନାହିଁ, ଏପରିକି ଖୁରା ପୁଞ୍ଛ ଉଠାଏ ନାହିଁ କି ଦୁଷାଏ ନାହିଁ । ଦୈବାତ୍ ସେଦିନ ତା' ବେକର ପଘାଟା ଖୁଣ୍ଟରୁ ଫିଟିଗଲା । ଆବଦ୍ଧା ପାର୍ବତୀ ଆନନ୍ଦରେ ବିଭୋର ହୋଇ ତେର୍ଛିଲାପରି ଗୋଟାଏ ଗୋଡ଼ ଦ୍ୱାରବନ୍ଧ-ସେପାଖ ଦାଣ୍ଡପାହାଚରେ ପକାଇ ଆଉ ଗୋଡ଼ ଉଠାଇ ବାଁପଟ ପିଣ୍ଡା ଉପରେ ପକାଇବାକୁ ଗଲାବେଳେ ଦେଖିଦେଲା, ମୁଁ ସେଠି ଛପା ଉପରେ ଶୋଇଛି । ପ୍ରତ୍ୟୁତ୍ପନ୍ନମତି ପାର୍ବତୀ ତତକ୍ଷଣରେ ସେହି ଉଠନ୍ତା ଗୋଡ଼କୁ ଚତୁରତାର ସହିତ ବଙ୍କେଇଦେଇ ମୋ ଦେହଠାରୁ ଟିକିଏ ଛଡ଼ାରେ ପକାଇଲା । ତାପରେ ଅତି ସାବଧାନରେ ଛପାର ଦୁଇ ପାର୍ଶ୍ୱରେ ଗୋଡ଼ ଥାପି ଥାପି ପିଣ୍ଡା ପାର ହୋଇଗଲା । ଯଦି ସେ ଏପରି ନ କରିଥା'ନ୍ତା, ତାହାହେଲେ ସେହି ଉଠନ୍ତା ଗୋଡ଼ର ଖୁରା-ଚାପରେ ମୋ ଆଖିଟି ପୁରାପୁରି ନଷ୍ଟ ହୋଇ-ଯାଇଥାନ୍ତା ।

ଗଣେଶଘାଟର ଠିକ୍ ଉପରକୁ ଠାକୁର-ଚକଡ଼ା । ତାର ଏକ ଅଂଶରେ ଇଷ୍ଟଦେବ ଗଣେଶଙ୍କ ବିଜେ ଆସ୍ଥାନ ଓ ସେଠାରୁ ସାମାନ୍ୟ ବ୍ୟବଧାନରେ ପଶ୍ଚିମକୁ 'ବଣେଶ୍ୱର' ମହାଦେବଙ୍କ ଲିଙ୍ଗପୀଠ । ବାପା ସେତେବେଳକୁ ସ୍ନାନ ଓ ସନ୍ଧ୍ୟାତର୍ପଣ ସାରି ଇଷ୍ଟଦେବଙ୍କୁ ନଡ଼ନାକୁରେ ଆରାଧନା କରୁଥାନ୍ତି । ଇତି ମଧ୍ୟରେ ତୁଣ୍ଡରୁ ତୁଣ୍ଡ ହୋଇ ଏହି ଦୁର୍ଘଟନାର ସମ୍ବାଦଟି ଗାଁସାରା ଯାଇ ବ୍ୟାପ୍ତ ହୋଇଯାଇଥାଏ । ସେହି ଉଡ଼ାଖବର ଶୁଣି ଜଣେ ବୟସ୍କ ଗ୍ରାମବାସୀ ଊର୍ଦ୍ଧ୍ୱଶ୍ୱାସରେ ଧାଇଁ ଧାଇଁ ଆସି ଧ୍ୟାନରତ ବାପାଙ୍କୁ ଜଣାଇଲା, "ଏଠି ପୂଜା କରୁଛ କ'ଣ, ତେଣେ ପାର୍ବତୀ ଗାଈ ତୁମ ପୁଅ ଉପରେ ଚଢ଼ିଯାଇ ତା'ର ଗୋଟାଏ ଆଖି ଫୁଟାଇଦେଲାଣି, ତୁରନ୍ତ ଘରକୁ ଯାଅ ।" ବାପା ଟିକିଏ ହେଲେ ବିଚଳିତ ବା ଅଥୟ ହେଲେ ନାହିଁ । ସମ୍ବାଦଦାତାଙ୍କ ଉଦ୍‌ବେଗ ବାର୍ତ୍ତା ଉପରେ କୌଣସି ଗୁରୁତ୍ୱ ନ ଦେଇ ନିଶ୍ଚଳ ଚିତ୍ତରେ ଆରାଧନା ସାରି ଲିଙ୍ଗଦେବତାଙ୍କ ବିଜେସ୍ଥଳୀକୁ ଗଲେ ଏବଂ ଶିବ-ଶକ୍ତି ସ୍ତୋତ୍ର ପାଠ ପୂର୍ବକ ଜଳାଭିଷେକ ଶେଷକଲେ । ବୟସ୍କ ବ୍ୟକ୍ତିଟି ଧୈର୍ଯ୍ୟର ସହିତ ସେତେବେଳପର୍ଯ୍ୟନ୍ତ ସେଠାରେ ଅପେକ୍ଷା କରିଥାଏ । ବାପା ପଦାକୁ ବାହାରନ୍ତେ ତାଙ୍କୁ ଝିଙ୍କାସି କହିଲା, "ବାପ ପରା ତୁମେ, କିମିତି ଅସ୍ଥିର ହୋଇ ରହିଛ ଏଠି, କି ପଥୁରିଆ ମନ ତୁମର ?" ବାପା ପ୍ରଶାନ୍ତ ସ୍ୱରରେ ଉତ୍ତର ଦେଲେ, "ମୁଁ କାହାର କି କ୍ଷତି କରିଛି ଯେ ମୋ ପୁଅର କ୍ଷତି ଘଟିବ ? ପରୋପକାର ଯାହାର ଜୀବନର ବ୍ରତ, ଈଶ୍ୱର କେବେ-ହେଲେ କି ତା ପ୍ରତି ବିମୁଖ ହୁଅନ୍ତି ?" ସମ୍ବାଦଦାତା ଅବାକ୍ ହୋଇ ବାପାଙ୍କ ମୁହଁକୁ ଏକ ଲୟରେ ଅନାଇ ରହିଥାଏ । ଅନୁଦ୍‌ବିଗ୍ନ ବାପା ଗୃହକୁ ଫେରିଲେ, ସେ ବି ତାଙ୍କ ପଛେ ପଛେ ଆମ ଦାଣ୍ଡଯାଏ ଗଲା । ବାପା ମତେ ଅବିକ୍ଷତ ଅନାହତ ଶରୀରରେ ଦେଖିଲା ପରେ ଉକ୍ତ ବ୍ୟକ୍ତି ଆଡ଼କୁ ଥରଟିଏ କେବଳ ଚାହିଁଦେଇ ଦୃଷ୍ଟି ଫେରାଇନେଲେ । ସମ୍ବାଦ-

ଦାତା ଅପ୍ରସ୍ତୁତ, ସ୍ତମ୍ଭୀଭୂତ ! ଏକନିଷ୍ଠ ଈଶ୍ୱରବିଶ୍ୱାସୀ ଓ ଆତ୍ମପ୍ରତ୍ୟୟୀର କି ଅଦ୍ଭୁତ ମନୋବଳ, କି ଅକ୍ଷୟ ଧୈର୍ଯ୍ୟ, କି ଅକୁତୋଭୟତା !

## ୩ । ମୂଲବସନ୍ତର କରବଂଶ ଗଡ଼ଜାତର ଗୁରୁବଂଶ

ଊନବିଂଶ ଶତକରେ ମୂଲବସନ୍ତର 'କର'ବଂଶୀୟମାନଙ୍କ ଖ୍ୟାତି ସମସ୍ତ ଗଡ଼ଜାତ ମାହାଲରେ ତଥା କେତେକ ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳରେ ବିକୀର୍ଣ୍ଣ ହୋଇଯାଇଥିଲା । ପ୍ରାଚୀନ ପଦ୍ଧତିରେ ଉଚ୍ଚଶିକ୍ଷିତ ଦଳ ଦଳ କରଣବଂଶୀ ପଦବ୍ରଜରେ ଦୀର୍ଘ ବନପଥ ମଧ୍ୟ ଦେଇ ସେସବୁ ଅଞ୍ଚଳକୁ ଯାଇ ଅନାଲୋକିତ ପଲ୍ଲିମାନଙ୍କରେ ଶିକ୍ଷାର ପ୍ରଥମ ଉଦ୍ଭବ-ଆଲୁଅ ଜାଳିଥିଲେ । ସେହିମାନଙ୍କ ଉତ୍ସାହୋଦ୍ଦୀପ୍ତ ସଙ୍ଗଠିତ ଉଦ୍ୟମରେ ରାଜା-ମହାରାଜାମାନଙ୍କ ପୋଷକତା ଓ ଅନୁମୋଦନକ୍ରମେ ଭିନ୍ନ ଭିନ୍ନ ଅନଗ୍ରସର ଅଞ୍ଚଳରେ ଶତ ଶତ ଚାଟଶାଳୀ ଓ ପ୍ରାଥମିକ ବିଦ୍ୟାଳୟ ସ୍ଥାପିତ ହୋଇଥିଲା । ଏଣୁ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ଶେଷ ହେବା ପର୍ଯ୍ୟନ୍ତ ପ୍ରାୟ ଶହେବର୍ଷକାଳ ଏହି 'କରବଂଶ' ଚବିଶ ଗଡ଼ଜାତରେ ଓ ଅଧିକାଂଶ ବିଚ୍ଛିନ୍ନ ଓଡ଼ିଆ ମୁଲକରେ ବହୁମର୍ଯ୍ୟାଦା 'ଗୁରୁବଂଶ' ରୂପେ ଐତିହାସିକ ପ୍ରସିଦ୍ଧି ଲାଭ କରିଥିଲା । ରାୟପୁର, ବସ୍ତର, ବାମଣ୍ଡା, ବଉଦ, କେନ୍ଦୁଝର, ମୟୂରଭଞ୍ଜ, କଳାହାଣ୍ଡି ପ୍ରଭୃତି ଅଞ୍ଚଳରେ ଯେଉଁ 'କର' ପରିବାରମାନ ଏବେ ପରିଦୃଷ୍ଟ ହୁଏ, ସେଗୁଡ଼ିକର ପୂର୍ବପୁରୁଷ ହେଉଛନ୍ତି ମୂଲବସନ୍ତରୁ ଯାଇଥିବା ଜଣେ ଜଣେ 'କର'ବଂଶୀୟ, ଯେଉଁମାନେ କି ସେସବୁ ସ୍ଥାନରେ ଘରଦ୍ୱାର, ଜମିବାଡ଼ି, ବ୍ୟବସାୟାଦି କରି ସ୍ଥାୟୀଭାବରେ ବିକୁଟୁମ୍ବି ରହିଯାଇଥିଲେ ।

ଏହି ପରମ୍ପରାର ଅନୁଗାମୀ ହୋଇ ମୋର ପିତା ସୋନପୁର ଯାତ୍ରା କରି ତତ୍କାଳୀନ ମହାରାଜା ବୀରମିତ୍ରୋଦୟ ସିଂହଦେଓଙ୍କ ସୁଦୃଷ୍ଟିରେ ପଡ଼ିଥିଲେ । ସଂସ୍କୃତ ସାହିତ୍ୟପ୍ରେମୀ ବୀରମିତ୍ରୋଦୟ ବହୁ ଓଡ଼ିଆ ଗ୍ରନ୍ଥର ପ୍ରଣେତାରୂପେ ସୁଖ୍ୟାତିର ଅଧିକାରୀ ଥିଲେ । ତାଙ୍କରି ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ପରିଚାଳିତ ହେଉଥିଲା ରାଜନଗର ମଧ୍ୟରେ ପ୍ରତିଷ୍ଠିତ ଏକ ପଣ୍ଡିତସଭା । ଗୁଣଗ୍ରାହୀ ମହାରାଜା ମୋ ପିତା ଉଦୟନାଥଙ୍କୁ ଜଣେ ଯୋଗ୍ୟ ଲେଖନୀଧର-ରୂପେ ସମ୍ମାନିତ କରି ସେହି ବିଦ୍ୱତ୍‌ସଭାର ଅଙ୍ଗ ପରିପୁଷ୍ଟ କରିଥିଲେ ।

ଉତ୍କଳୀୟ ମହାକବି କାଳିଦାସଙ୍କ ସଂସ୍କୃତ 'ରଘୁସଂହାର' କାବ୍ୟର ଖଣ୍ଡିଏ ଆକ୍ଷରିକ ଓଡ଼ିଆ ଅନୁବାଦ ପ୍ରକାଶ କରିବାପାଇଁ ମହାରାଜାଙ୍କର ଅଭିଳାଷ ହେଲା । ସେ ଅନୁବାଦର ଛନ୍ଦ ସ୍ଥିରକରିଦେଲେ ଏବଂ ବାପାଙ୍କ ସମେତ ତିନିଜଣ ସଭା-କବିଙ୍କୁ ସେହି ଛନ୍ଦରେ ନିଜ ନିଜ ଭାଷାରେ ଅନୁବାଦ କରି ତିନିଖଣ୍ଡି ଅଲଗା ଅଲଗା ପାଣ୍ଡୁଲିପି ପ୍ରସ୍ତୁତ କରିବାକୁ

ନିର୍ଦ୍ଦେଶ ଦେଲେ । ବର୍ଷକରୁ ଅନଧିକ କାଳ ମଧ୍ୟରେ ପ୍ରତିଯୋଗିତାର ଫଳସ୍ୱରୂପ ଏକ ପରେ ଏକ ତିନିଗୋଟି ଅନୁବାଦ ଲିପି ମହାରାଜାଙ୍କ ନିକଟରେ ଉପସ୍ଥାପିତ ହେଲା । ରାଜବିଦୂଷ ବୀରମିତ୍ରୋଦୟ ମୂଳ ସଂସ୍କୃତ ସହିତ ମିଳାଇ ପ୍ରତି ପାଣ୍ଡୁଲିପିକୁ ଗମ୍ଭୀର ଅଭିନିବେଶ ସହ ତନଖି କଲାପରେ ନିଃସଂଶୟିତରୂପେ ବାପାଙ୍କ ଅନୁବାଦର ଶ୍ରେଷ୍ଠତା ଉପଲବ୍ଧି କଲେ; ମାତ୍ର ଅନ୍ୟ ପ୍ରତିଯୋଗିଦ୍ୱୟଙ୍କୁ ସନ୍ତୁଷ୍ଟ ରଖିବାପାଇଁ ତାଙ୍କଦ୍ୱାରା ଅନୂଦିତ ଦୁଇ ପାଣ୍ଡୁଲିପିର କେତୋଟି ଲେଖାଏଁ ଉତ୍କୃଷ୍ଟ ପଦକୁ ବାପାଙ୍କ ପାଣ୍ଡୁଲିପିର ତତ୍‌ତତ୍ ସ୍ଥଳରେ ସ୍ଥାନ ଦେଇ ଗୋଟିଏ ସ୍ୱତନ୍ତ୍ର ପାଣ୍ଡୁଲିପି ପ୍ରସ୍ତୁତ କଲେ ଏବଂ ତାହାକୁ ନିଜ ମନ ମାଫିକ ଆମୂଳାନ୍ତ ପରିମାର୍ଜିତ କରି ନିଜସ୍ୱ ରଚନାରୂପେ ମୁଦ୍ରିତ କରାଇଲେ ।

ସୋନପୁରରେ ରହିଣିର ଦ୍ୱିତୀୟ ବର୍ଷ ଚାଲିଥିଲାବେଳେ 'ଗଡ଼ଜାତ ମାହାଲ' ଅନ୍ତର୍ଗତ ରେଢ଼ାଖୋଲ ରାଜ୍ୟର ଯୁବରାଜ ନାବାଳକ ଯଦୁମଣି ଦେବଙ୍କର ଗୃହଶିକ୍ଷକରୂପେ କାର୍ଯ୍ୟ କରିବାକୁ ବାପାଙ୍କ ନିକଟକୁ ନିଯୁକ୍ତିପତ୍ର ଆସିଲା ପଲିଟିକାଲ୍ ଏଜେଣ୍ଟଙ୍କ ଦପ୍ତରରୁ । ବାପା ପଣ୍ଡିତସଭାରୁ ବିଦାୟ ନେଇ ଏବଂ ତାର ପ୍ରତିଷ୍ଠାତା ମହାରାଜା ବୀରମିତ୍ରୋଦୟଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜଣାଇ ରେଢ଼ାଖୋଲ ଷ୍ଟେଟ୍‌ର ରାଜଧାନୀ ରାମପୁର ଗଡ଼କୁ ଯାତ୍ରା କଲେ ଏବଂ ସମ୍ମାନଜନକ ନୂତନ ଦାୟିତ୍ୱ ଗ୍ରହଣପୂର୍ବକ ରାଜପୁରୁଷ ମଧ୍ୟରେ ଅବସ୍ଥାନ କଲେ ।

ଯୁବରାଜ ଶିକ୍ଷାପ୍ରାପ୍ତ ଓ ବୟଃପ୍ରାପ୍ତ ହେଲା ପରେ ଯଥା ସମୟରେ ଗାଦିନସୀନ ହୋଇ ଶ୍ରୀ ଶ୍ରୀ ଯଦୁମଣି ନରେନ୍ଦ୍ରଦେବ ପଦବୀ ଗ୍ରହଣପୂର୍ବକ ରାଜ୍ୟଶାସନ ଆରମ୍ଭ କଲେ; କିନ୍ତୁ ଶିକ୍ଷାଗୁରୁଙ୍କୁ ପାଖରୁ ଛାଡ଼ିବାକୁ ଆଦୌ ରାଜି ହେଲେନାହିଁ । ଅଗତ୍ୟା ବାପା ମୃତ୍ୟୁ ପର୍ଯ୍ୟନ୍ତ ରାଜାସାହେବଙ୍କର ଅବୈତନିକ ପରାମର୍ଶଦାତାରୂପେ ସେହିଠାରେ ରହି ଅନୁନ୍ନତ ରେଢ଼ାଖୋଲ ରାଜ୍ୟରେ ଶିକ୍ଷାବିସ୍ତାର ଓ ରୋଗିଚର୍ଯ୍ୟାଦି ନାନା ଲୋକହିତକର କାର୍ଯ୍ୟରେ ଆତ୍ମନିୟୋଗ କରିଥିଲେ ।

## ୪ । ଶୈଶବଲୀଳା

ମୁଁ ଶୈଶବରେ ଚାରୋଟି ମାତ୍ର ବର୍ଷପାଇଁ ପ୍ରବାସୀ ପିତାଙ୍କ ନିକଟରେ ରହିବାର ସୌଭାଗ୍ୟ ପାଇଥିଲି । ମତେ ଚାରିବର୍ଷ ଚାଲିଥିଲାବେଳେ ବାପା ଗ୍ରାମକୁ ଆସିଥିଲେ ଏବଂ ଫେରିଲାବେଳେ ମତେ ଓ ବୋଉକୁ ନେଇଯାଇଥିଲେ ତାଙ୍କ ପ୍ରବାସସ୍ଥଳ ରେଢ଼ାଖୋଲକୁ । ସେହିଠାରେ ମୋର ପ୍ରାଥମିକ ଶିକ୍ଷାର ଅସୁମାରମ୍ଭ ହୋଇଥିଲା କହିଲେ ଚଳେ । ଚାରି ବର୍ଷ ପରେ ଯେତେବେଳେ ମୋର ବୟସ ଆଠ ବର୍ଷ ପୂରିବାକୁ ବସିଲା ଏବଂ ଉପନୟନ ସମୟ ନିକଟବର୍ତ୍ତୀ ହୋଇଆସିଲା, ବାପା ସପରିବାର ଜନ୍ମସ୍ଥଳୀ ମୂଳବସନ୍ତ ଗ୍ରାମକୁ ଆସିବାକୁ

ବାଧ୍ୟ ହେଲେ । ସେତେବେଳକୁ ମୋ ତଳ ଦୁଇଭଉଣୀ ସୂର୍ଯ୍ୟମଣି ଓ ଚନ୍ଦ୍ରମଣି ଜନ୍ମ ହୋଇ-ସାରିଥା'ନ୍ତି ।

ବାପାଙ୍କ ସହିତ ରେଢ଼ାଖୋଲ ଯିବାର ପୂର୍ବକଥା କିଛି କିଛି ମନେପଡ଼େ, ଯାହା ଶୁଣିଥିଲି ବୋଉଠାରୁ । ଦଦେଇଙ୍କର ସେତେବେଳେ ତୃତୀୟ ସଂସାର । ପ୍ରଥମା ଓ ଦ୍ୱିତୀୟା ପତ୍ନୀ ନିଃସନ୍ତାନା ଅବସ୍ଥାରେ ଅକାଳରେ କାଳକବଳିତ ହୋଇଯାଇଥିବାରୁ ସନ୍ତାନମୁଖ ଦେଖିବା ଆଶାରେ ସେ ପୁଣି ଥରେ ଦାରପରିଗ୍ରହ କରିଥିଲେ । ବିବାହ ପରେ ଦଶବର୍ଷରୁ ଅଧିକ କାଳ ବ୍ୟତୀତ ହୋଇଯାଇଥିଲେ ମଧ୍ୟ ସନ୍ତାନଲାଭର କୌଣସି ଲକ୍ଷଣ ସେପର୍ଯ୍ୟନ୍ତ ପରିଲକ୍ଷିତ ହୋଇ ନଥାଏ । ମୁଁ ବୁଢ଼ୀମା' 'ପଦ୍ମା'ଙ୍କର ପ୍ରଥମ ନାତି ହୋଇଥିବାରୁ ସେ ମୋତେ ଅତିଶୟ ଅଳିଅଳି କରିଦେଇଥା'ନ୍ତି । ସ୍ନେହାନ୍ଧ ଦଦେଇ ମତେ କାନ୍ଧରେ ବସେଇ, ମୁଣ୍ଡରେ ଚଢ଼େଇ ଅଧେ ବେଳ ଗାଆଁ ଦାଣ୍ଡରେ ନାଚନାଚକା ସର୍କସ ଦେଖାନ୍ତି । ଏହିରୂପେ ଛୁଆଟି ଦିନୁଁ ଅତିମାତ୍ରାରେ ଗେଲବସରିଆ ହୋଇଯିବାରୁ ମୁଁ ସବୁ କଥାରେ ଜିଦି ଧରି ବୁଢ଼ୀମା'ଙ୍କୁ ନିସ୍ତାନ୍ତ କରିପକାଏଁ । ରାତି ପାହିଲା ମାତ୍ରେ ନଡ଼ିଆପାଣି ପିଇବାକୁ ଓ ନଡ଼ିଆଶସ ଖାଇବାକୁ ଅଝଟ କରେ । ବୁଢ଼ୀମା' କେଉଁଦିନ ମୁଢ଼ିଉଖୁଡ଼ା, କେଉଁଦିନ ମୁଢ଼ିମୁଆଁ ଖସାଲଡୁ, ଆଉ କେଉଁଦିନ ବା ମହୁବୋଳା ପୋଡ଼ପିଠା କି ଚକୁଳିପିଠା ଖାଇବାକୁ ଦେଇ ମୋ ମନ ଭୁଲାଇବାକୁ ଚେଷ୍ଟା କରନ୍ତି । ମୁଁ ତାହା ଖାଉଥାଏଁ ସତ; କିନ୍ତୁ ନଡ଼ିଆପାଣି ଓ ନଡ଼ିଆଶସ ଉପରେ ମୋର ରହିଥାଏ ଷୋଳଅଣା ଟକ । ଡେରି ହୋଇଗଲେ ମୁଁ ଅସମ୍ଭାଳ ହୋଇଯାଇ ବୁଢ଼ୀମା'-ପିଠିରେ ଲଦିଦିଏଁ ପୁଞ୍ଜାକୁପୁଞ୍ଜା ଗୁମ୍‌ଗୁମୁକା । ସେବୁଡ଼ା କୁଆଡ଼େ ବୁଢ଼ୀମାଙ୍କୁ ଲାଗୁଥିଲା ଫୁଲପରି ଉଶ୍ୱାସିଆ, ଭାରି ସୁଖକର —ଆହା, କେଡ଼େ ବତ୍ସଳହୃଦୟା ସେ ! ଆମ ଦାଣ୍ଡଖଞ୍ଜାସଲଗ୍ନ ବାଡ଼ିରେ ଧାଡ଼ିହୋଇ ଗୁଡ଼ିଏ ନୂଆ ଫଳନ୍ତ ନଡ଼ିଆଗଛ ଥାଏ । ବୁଢ଼ୀମା ସାଙ୍ଗେ ସାଙ୍ଗେ ବାଉଁଶଶିଡ଼ି ସାହାଯ୍ୟରେ ଅଗଣା ପଟୁଁ ଘରର ମଥାନ ଉପରକୁ ଚଢ଼ନ୍ତି, ସେଇଠି ଠିଆ ହୋଇ ଅଗରେ-ଦାଆବନ୍ଧା ଆଙ୍କୁଶିଦ୍ୱାରା ଗୋଟିଏ ଅଧାନଡ଼ିଆ ତୋଳି କତାଦ୍ୱାରା ତାର ଉପର-ଚୋପାଟକ ଛଡ଼ାଇ-ଦିଅନ୍ତି । ତା'ପରେ ଅଧାନଡ଼ିଆଟିକୁ ପିଟି ଗେହ୍ଲା ନାତିକୁ ପାଣି ଓ ଶସ ନଯୋଗାଇଲା ପର୍ଯ୍ୟନ୍ତ ତାଙ୍କର ରକ୍ଷାରକ୍ଷଣ ନଥାଏ ।

ବ୍ରାହ୍ମଣ ଘରମାନଙ୍କରେ ଈଶ୍ୱରୋପାସନା ପାଇଁ ପ୍ରତ୍ୟହ ତ୍ରିସନ୍ଧ୍ୟାର ବିଧାନ ଅଛି—ପ୍ରାତଃସନ୍ଧ୍ୟା, ମଧ୍ୟାହ୍ନସନ୍ଧ୍ୟା, ସାୟଂସନ୍ଧ୍ୟା । ପିତାମହଙ୍କ ପକ୍ଷରେ ଏହି ଭୋର୍‌ଭୋରିଆ 'କୃଷ୍ଣ' ସେବାର ଭଜନ ହିଁ ଥିଲା ପ୍ରାତଃସନ୍ଧ୍ୟା । ମୁଁ ପିଲାଦିନେ ଥିଲି ବେଶ୍ ପୁଷ୍ଟବପୁ । କେତେବେଳେ ଯଦି ବୁଢ଼ୀମା-ଦୃଷ୍ଟିର ଆଢ଼ୁଆଳରେ ରହିଯାଏଁ, ଆଖି ପିଛୁଡ଼ାକେ ଦେ-ଦଉଡ଼ ଗାଁଦାଣ୍ଡ-ମଝିକି । ସେଠି କେଉଁ ପିଲାକୁ ଠେଲିପେଲି ଭୂଇଁରେ ଗଡ଼େଇଦିଏଁ ତ ଆଉ କାହା ସହିତ ଧୁମାକୁସ୍ତି କରି ତା' ନାକଦଣ୍ଡା ଫଟାଇଦିଏଁ । ସେମାନେ କାନ୍ଦି ଭେମାରଡ଼ ଛାଡ଼ିଲାବେଳକୁ ମୁଁ ଚିଲପରି ଚଗ ମାରି ବୁଢ଼ୀମା-କୋଡ଼ରେ ପଶିଯାଏଁ

ସୁନାପୁଅଟି ଭଳି । ପଛେ ପଛେ ଫଉଜଦାର ଫରିଆଦ ଦେବା ବୁଢ଼ୀମା' ଆଗରେ ପହଞ୍ଚି-ଯାଆନ୍ତି ଆହତ ପିଲଙ୍କ ମାଆମାନେ—"ତୁମ ଧୁଣ୍ଡା ନାତି ଗୁଣ୍ଡା ପାଲଟି ଆମ ଛୁଆଙ୍କୁ କିମିତି ଲହୁଲୁହାଣ କରିଛି, ଦେଖିବ ଆସ । ତୁମେ ଏଣିକି ତାକୁ ସମ୍ଭାଳ, ନହେଲେ କଥା ଯିବ ଭଲଲୋକଙ୍କ, ଆମେ ଆଉ ବରଦାସ୍ତ କରିପାରିବୁଁ ନାହିଁ ।" ବୟୋବୃଦ୍ଧା ବୁଢ଼ୀମା' ଅଭିଭାବକସୁଲଭ ଭଙ୍ଗୀରେ ହାତଗୋଡ଼ ଧରି ବୁଝେଇବୁଝେଇ ତାଙ୍କୁ ସବୁ ଫେରାଇଦିଅନ୍ତି । ହେଲେ, ସେମାନେ 'ଧୁଣ୍ଡା ଗୁଣ୍ଡା' କହି ମତେ ହାଇଷ କରିବାରୁ ବୁଢ଼ୀମା' ମୋ ଛାତିରେ ଥୁ-ଥୁ କରି ଅରଟିଏ ଥୁକ ଛିଟିଦିଅନ୍ତି—କାଳେ ଦେହ ମୋର ହାରିଯିବ ବୋଲି । କେବଳ ଏତିକି ନୁହେଁ, ସେହିଦିନଠାରୁ ସେ ମତେ 'ଧଡ଼ିଆ' ନାଆଁରେ ଡାକିବାକୁ ଲାଗିଲେ । ତାଙ୍କ ଦେଖାଦେଖି ବୋଉ ମଧ୍ୟ ସେଇ ନାଆଁରେ ଡାକିବାକୁ ଆରମ୍ଭ କଲା । ତେୟାଳିଶି ବର୍ଷ ସୁଖ-ଦୁଃଖର ଜୀବନ ଉପଭୋଗ କରି ବୋଉ ସଂସାରରୁ ବିଦାୟ ନେଲା ୧୯୭୩ ମସିହା ଅଗସ୍ତ ପୂର୍ଣ୍ଣିମୀ ବାସିଦିନ; ତା' ତୁଣ୍ଡରୁ କିନ୍ତୁ 'ଧଡ଼ିଆ' ଛଡ଼ା ଅନ୍ୟ କୌଣସି ଡାକ କେବେହେଲେ ମୁଁ ଶୁଣିନାହିଁ ।

ବୁଢ଼ୀମା' ଏଣିକି ମତେ କଡ଼ାକଡ଼ି ଭାବରେ କଡ଼େ ଜଗି ନିଜ ଜାବତାରେ ରଖିଲେ । ଖରାବେଳ ହେଲାକ୍ଷଣି ନାନାବାୟା ଗୀତ ଶୁଣେଇ, ଗୋଡ଼ହାତ ଆଉଁସି ଆଉଁସି ମତେ ଖଟରେ ଶୁଆଇପକାଇଲେ । ଏଇଟା ହେଲା ତାଙ୍କର ମଧ୍ୟାହ୍ନସନ୍ଧ୍ୟା । ଆଉ, ସଞ୍ଜଦୀପ ଲାଗିଲା ପରେ ମତେ କୋଡ଼ରେ ବସାଇ ଚକୁଳିଆ ପଣ୍ଡା କଥା, ନହେଲେ ବୁଢ଼ୀ ଅସୁରୁଣୀ ଗପ କି କଲୁରିବେଣ୍ଟ କାହାଣୀ ଶୁଣାନ୍ତି; ମୋର ହାଇମାରି ବେଳ ଆସିଗଲେ ଗପ ବନ୍ଦ କରି ଖୁଆଇପିଆଇ ପହୁଡ଼ାଇଦିଅନ୍ତି ମତେ । ଇଏ ହେଲା ବୁଢ଼ୀମା'ଙ୍କର ସାୟଂସନ୍ଧ୍ୟା । ଏହି ରୂପେ ତାଙ୍କର ନିତ୍ୟନୈମିତ୍ତିକ ତ୍ରିସନ୍ଧ୍ୟା ରୀତିମତ ମାସ ପରେ ମାସ ଚାଲିଥାଏ, କି ଖରା କି ବର୍ଷା କି ଶୀତ ସବୁ ଋତୁରେ ।

ପୁରୁଣାକାଳିଆ ଚଳଣି ଅନୁସାରେ ମୋ ଦେହରେ ଭଳିକି ଭଳି ଗହଣା ସବୁ ପିନ୍ଧାଇ-ଦିଆଯାଇଥାଏ—ବେକରେ ଚେନ୍, ହାତରେ ଖଡୁ, ବାହାରେ ତାଗା, ଅଣ୍ଟାରେ ଅଣ୍ଟା-ସୂତା । ଏ ବେଶ ସାଙ୍ଗକୁ ଦୁଇ କାନ ପାଖରେ ଲମ୍ବିଥିବା କଳିବାଳର ଜଟ ହଳକ ନୂଆ-ଗଜରା ଟିକି ଓହଳ ଆକାରର ଗହଣା ପରି ଭାରି ସୁନ୍ଦର ମାଲୁଥାଏ । ମାହାବିଣେ (ମହାବିନାୟକ)ଙ୍କ ପୀଠରେ ମୋର ବାଳ ପକାଇବାପାଇଁ ମାନସିକ କରି ବୁଢ଼ୀମା' ଏହି ଜଟ ଦିଓଟିକୁ ଯତ୍ନରେ ବଢ଼ାଇ ରଖିଥିଲେ ।

ଆମ ଖଞ୍ଜାଗୃହଠାରୁ ପ୍ରାୟ ବଣାଶହେହାତ ଛାଡ଼ି ଅଧାକାନ୍ଥିଆ ଗା ଗୁହାଳଘର—ବେଶ୍ ପ୍ରଶସ୍ତ ଓ ଲମ୍ବାଳିଆ । ଅଧାକାନ୍ଥଉପରିସ୍ଥ ଫରଗୁ ଫାଙ୍କ ଦେଇ ଘରଭିତରକୁ ସୂର୍ଯ୍ୟ-ଚନ୍ଦ୍ରଙ୍କ ସ୍ୱଚ୍ଛାଲୋକର ଅବାଧ ପ୍ରବେଶ ଘଟେ । ନାହାକି ସାହିର ମାଟିବଂଶ ଅବଧାନ ବୁଢ଼ା କାଖରେ ପାଞ୍ଜିବିଡ଼ା ଆଉ ଚନ୍ଦ୍ରକଲଗୁଟ ଜାକ ବାଡ଼ି ଠୁକ୍ ଠୁକ୍ କରି ଓ ପାକୁଆ-ପାଟିରେ ପାନ ଚୋବେଇ ଚୋବେଇ ସକାଳ ସାତଟା ନବାଜୁଣୁ ଗୁହାଳଘର ଫିଟାଇ

ହାତ-ଜଳଖିଆ କୁଲୁଚଟିରେ ଆସ୍ଥାନ ଜମେଇ ଦିଅନ୍ତି । ଗାଁଦାଣ୍ଡ ଦେଇ ଆସିଲାବେଳେ ବାଟରେ ଯେତେ ଚାଟଙ୍କ ଘର ପଡ଼େ, ସବୁଠେଇଁ ଡାକ ମାରି ମାରି ଆଗକୁ ପାଦ ଚାଲୁଥା'ନ୍ତି । ଆଖପାଖ ଗ୍ରାମର ଚାଟେ ମେଳ ବାନ୍ଧି ଠିକ୍ ସମୟରେ ଚାଟଶାଳୀରେ ହାଜର ହୋଇଯା'ନ୍ତି; କିନ୍ତୁ ଖୋଦ୍ ମୂଳବସନ୍ତର ପିଲେ ଗୋଟି ଗୋଟି-ହୋଇ ଗଡ଼ମସରେ ଗଡ଼ନ୍ତି ।

ମତେ ଅଢ଼େଇବର୍ଷ ପୂରିଯା'ନ୍ତେ ମୋ ପଢ଼ା-ଆରମ୍ଭ ଚିନ୍ତା ବୁଢ଼ୀମା'ଙ୍କୁ ଘାରିଲା । ଅବଧାନଙ୍କ ପାଖରେ ଖଡ଼ି ଧରି ଥିର ହୋଇ ବସିବାପାଇଁ ମତେ ମନ କରିବାକୁ ସେ ବ୍ୟଗ୍ର ହୋଇପଡ଼ିଲେ; କାରଣ ଚାହାଳିରେ ବସିବାର ପ୍ରବୃତ୍ତି ଯେତେ ଚଞ୍ଚଳ ମୋ ମନରେ ସୃଷ୍ଟି କରିହେବ, 'ଅ ଆ' ମଡ଼ାଇବା ଲାଗି ମୋର ସ୍ୱତଃପ୍ରବୃତ୍ତ ଆଗ୍ରହ ସେତେ ଚଞ୍ଚଳ ସମ୍ଭବ ହେବ । ପହିଲି ନାଡ଼ ଟାଠରେ କମିତ ପହିଲମାନ ହୁଅନ୍ତି, ଠାକୁରେ ଆଶୀର୍ବାଦ କରନ୍ତେ, ଏଇଥିପାଇଁ ବୁଢ଼ୀମାଙ୍କର ଏତେ ତତ୍ପରତା, ଏତେ ଆତୁରତା । ଏଣିକି ସେ ପ୍ରତିଦିନ ମତେ କାଖ କରିନେଇ ଅବଧାନ ବୁଢ଼ାଙ୍କ ଜିମା କରିଦିଅନ୍ତି ଏବଂ ନିଜେ ଚାହାଳି-ବାରଣ୍ଡାରେ ଜଗି ବସିରହନ୍ତି—କାଳେ ମୁଁ କାନ୍ଦିବି କି ଛନକାନିଆ ହୋଇ ଘରକୁ ପଳେଇ-ଆସିବି । ଏହିପରି କିଛି ଦିନ ଖଡ଼ିହସ୍ତରେ ବସିବା ଅଭ୍ୟାସ ହେଲା ପରେ ଅନ୍ୟ ପିଲାମାନଙ୍କ ମେଳରେ ଖଡ଼ିପାଠ ଶିଖିବାକୁ ମୋ ବାଳୁତ ମନରେ ପ୍ରବଳ ଆଗ୍ରହ ଜନ୍ମିଲା । ଫେଣ୍ଟୁଆଳି ବୁଦ୍ଧି ଗୁଡ଼ା ପଢ଼ୁଆଳ ହେଲି । ସାଥୀ ପିଲାଙ୍କ ତୁଳନାରେ ଅପେକ୍ଷାକୃତ କମ୍ ସମୟ ମଧ୍ୟରେ ମୁଁ ସମସ୍ତ ଅକ୍ଷର ସହିତ ପରିଚିତ ହୋଇଗଲି ଏବଂ ପ୍ରତ୍ୟେକକୁ ଠିକ୍‌ଭାବରେ ଲେଖି-ପାରିଲି । ଯୋଗକୁ ବାପା ପ୍ରବାସରୁ ଆସି ଘରେ ଥାଆନ୍ତି । ଦିନକର ଘଟଣା । ଅବଧାନଙ୍କ ଆଜ୍ଞାନୁଯାୟୀ ମୁଁ 'ଅ ଠାରୁ ହ କ୍ଷ ୦ ଃ ଁ' ପର୍ଯ୍ୟନ୍ତ ଆଦୌ ଅଟକ ଅଟକ ନହୋଇ ଗଡ଼ ଗଡ଼ କହିଯାଉଥିଲି, ଦୁର୍ଯୋଗକୁ ଗୋଟିଏ ସ୍ଥଳରେ କ୍ରମଭଙ୍ଗ ହୋଇଗଲା । କ୍ଷଣକୋପୀ ଅବଧାନେ ସ୍ୱଭାବଗତ ଗୁରୁପଣ ଦେଖାଇ ମୋ ପିଠିରେ କଷିକରି ଛାଟେ ବସାଇଦେଲେ । ବୋବାଳି ଛାଡ଼ି ମୁଁ ଅବଧାନଙ୍କ ହାତରୁ ଛାଟ ଛଡ଼େଇଆଣି ଦୌଡ଼ି ଦୌଡ଼ି ଆସି ଲୁହ ଡବାଳଡବାଳିକା ଜେଜେମାଙ୍କ କୋଳରେ ମୁହଁ ଗୁଞ୍ଜି ପଶିଗଲି । ଭିତରୁ ମୋର ରୁହାକୁ ରୁହା କୋହ ଉଠୁଥାଏ । ଜେଜେମା' ମୋ ପିଠିର ନୋଳାଦାଗ ଜାଗାକୁ ବାରମ୍ବାର ଫୁଙ୍କି ଆଉଁସୁଥା'ନ୍ତି, ପୁଣି ମୋ ଆଖିରୁ ନିଗୁଡ଼ୁଥିବା ଧାର ଧାର ଲୁହକୁ ପଣତକାନିରେ ପୋଛିବାରେ ଲାଗିଥାଆନ୍ତି ।

ଅଘଟଣ ପରିବେଶ, ଅସହନ ଦୃଶ୍ୟ ! ପିତା ଧାଇଁଆସି "କଅଣହେଲାରେ ବାବୁ !" ବୋଲି ଆବେଗପୂର୍ଣ୍ଣ କଣ୍ଠରେ ପଚାରିଲେ । ପିଠିରେ ବସିଥିବା ନୋଳାଚିହ୍ନକୁ ଦେଖାଇ ମୁଁ କହିଁ କହିଁ ହୋଇ ଉଷ୍ମାଯୁକ୍ତ ଅର୍ଦ୍ଧଭଗ୍ନ ସ୍ୱରରେ କହିଲି, "ଅବଧାନ ବୁଢ଼ା ରାଗରେ ମତେ ଏଇ ଛାଟରେ ପିଟିଲା । ମୁଁ ଆଉ ତା' ପାଖରେ ପଢ଼ିବି ନାହିଁ କି ସେ ଚାହାଳିକି ଯିବିନାହିଁ । ତୁମରି ପାଖରେ ପଢ଼ିବି ବାପା !"

ମୋର ବେଦନାକ୍ତ ଅଭିଯୋଗ ଓ ଅଶ୍ରୁଳ ଆବେଦନ ପିତୃହୃଦୟକୁ ଗଭୀର ଭାବରେ ମଥିତ କଲା; ତେଣୁ ରେଢ଼ାଖୋଲକୁ ଫେରିବାବେଳେ ସେ ବାତ୍ସଲ୍ୟମୟୀ ବୃଦ୍ଧା ମାତାଙ୍କ ଅକୁଣ୍ଠିତ ଅନୁମତିରେ ମତେ ଓ ବୋଉକୁ ସଙ୍ଗରେ ନେଇଗଲେ । ମୋ ହୃଦୟର ବିଜୟ ହେଲା । ସେହିଦିନଠୁଁ ଅବଧାନ ଆପଣେ ସ୍ୱପ୍ନ-ସହଚର ପ୍ରିୟ ତେନ୍ତୁଳିଛାଟକୁ ଚିରଦିନପାଇଁ ଛାଡ଼ପତ୍ରଦେଲେ । ଚାଟେ ତ୍ରାହିପାଇଲେ ।

## ୫ । ପଣ୍ଡିତଙ୍କ ନୃଶଂସକାଣ୍ଡର ତୀବ୍ର ପ୍ରତିକ୍ରିୟା

ରେଢ଼ାଖୋଲରେ ପିତାଙ୍କ ନିର୍ଦ୍ଦେଶନାରେ ଦୁତିଆ ବାଗ ନାମଧେୟ ଜଣେ ଅଲପପାଠୁଆ ମାଷ୍ଟର ଦିନ ଘଣ୍ଟାଏ ଲେଖାଏଁ ଆସି ମତେ ପଢ଼ାଉଥିଲେ । ପ୍ରାୟ ଚାରିବର୍ଷ ପରେ, ଅର୍ଥାତ୍ ୧୯୧୬ ମସିହାରେ, ଗ୍ରାମକୁ ପ୍ରତ୍ୟାଗତ ହେଲି ପିତା, ମାତା ଓ ଦୁଇ କନିଷ୍ଠ ସହୋଦରଙ୍କ ସହିତ । ମୋର ବ୍ରତୋପନୟନ ଉତ୍ସବ ସମାଡ଼ମ୍ବରରେ ସମାପ୍ତ ହେବା ପରେ ସ୍ଥାନୀୟ କୋଠପଦା ମଧ୍ୟଇଂରାଜୀ ବିଦ୍ୟାଳୟରେ ନାମଲେଖା ହୋଇଗଲା ଦ୍ୱିତୀୟ ଶ୍ରେଣୀରେ । ସେତେବେଳେ ଚତୁର୍ଥ-ପଞ୍ଚମ ଶ୍ରେଣୀର ସାହିତ୍ୟ ପାଠ୍ୟପୁସ୍ତକ ଥାଏ ମଧୁସୂଦନ ରାଓଙ୍କ ଲିଖିତ 'ସାହିତ୍ୟକୁସୁମ' । ମୁଁ ପ୍ରତି ବାର୍ଷିକ ପରୀକ୍ଷାରେ ପ୍ରଥମ ସ୍ଥାନର ଅଧିକାରୀରୂପେ ଉତ୍ତୀର୍ଣ୍ଣ ହୋଇ ହୋଇ ପଞ୍ଚମ ଶ୍ରେଣୀରେ ଅଧ୍ୟୟନ କରୁଥିଲାବେଳେ ଦିନେ ଏକ ଅବାଞ୍ଛନୀୟ ଓ ଅପ୍ରୀତିକର ପରିସ୍ଥିତି ସୃଷ୍ଟି କଲେ ହେଡ୍‌ପଣ୍ଡିତ ଲକ୍ଷ୍ମୀଧର ଦାଶ । ଉକ୍ତ ଶ୍ରେଣୀର ସାହିତ୍ୟଶିକ୍ଷକ ସେକେଣ୍ଡ୍ ପଣ୍ଡିତ ରାମଚନ୍ଦ୍ର ମହାପାତ୍ରଙ୍କ ଅସୁସ୍ଥତାଜନିତ ସାମୟିକ ଅନୁପସ୍ଥିତି ଯୋଗୁଁ ଲକ୍ଷ୍ମୀଧର ପଣ୍ଡିତେ ପଢ଼ାଇବାକୁ ଆସୁଥା'ନ୍ତି ।

କଥାଟା ବୁଝିବାକୁ ଗଲେ ନଗଣ୍ୟ ବା ତୁଚ୍ଛ ଧରଣର; କିନ୍ତୁ ଅବସ୍ଥାଚକ୍ରରେ ତାହା ଝିମିଟିଖେଳରୁ ମହାଭାରତ ଯୁଦ୍ଧର ତୁମୁଳ ଆକାର ଧାରଣ କଲା । ପୂର୍ବଦିନ ହେଡ୍‌ପଣ୍ଡିତେ 'ଚିଲିକା ହ୍ରଦ' ବିଷୟଟି ପଢ଼ାଇଥିଲେ ଏବଂ ପିରିଅଡ୍ ଶେଷରେ ତରବର ହୋଇ ଚାଲିଯାଉଥିଲାବେଳେ ଦ୍ୱାରବନ୍ଧ ପାଖରେ କୁଆଡ଼େ ଅସ୍ପଷ୍ଟ ସ୍ୱରରେ କହିଯାଇଥିଲେ "କାଲି ସମସ୍ତେ ଚିଲିକା ବିଷୟଟି ନିଜ ନିଜ ଭାଷାରେ ଲେଖି ଆଣିବ", ଯାହା ଦ୍ୱାରବନ୍ଧ ପାଖରେ ବସିଥିବା କେତୋଟିମାତ୍ର ଛାତ୍ରଙ୍କ ବ୍ୟତୀତ ଅନ୍ୟ କେହି ଶୁଣିପାରିନଥିଲେ । ସେହି କକ୍ଷଟି ଥିଲା ସ୍କୁଲର ବୃହତ୍ତମ ପ୍ରକୋଷ୍ଠ । ଶ୍ରେଣୀର ଛାତ୍ରସଂଖ୍ୟା ଷାଠିଏ ଥିବାରୁ ଏହି ଛାତ୍ରଦଳଟି ଦ୍ୱିତୀୟଶ୍ରେଣୀଠାରୁ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ଏଇ ପ୍ରକୋଷ୍ଠରେ ହିଁ ପଢ଼ିଆସିଛନ୍ତି । ବ୍ୟକ୍ତିଗତଭାବରେ ଏଇ କୋଠରିରେ ପ୍ରଥମେ ମୋର ଦ୍ୱିତୀୟଶ୍ରେଣୀରେ ପ୍ରବେଶ ଏବଂ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତର ପାଠ୍ୟସମାପ୍ତି ପରେ ଏଇ କୋଠରିରୁ ବିଦାୟଗ୍ରହଣ ।

ଆମେ ମୂଳବସନ୍ତର ପିଲାଯାକ ସବୁଦିନେ ଏକା ଧାଡ଼ିରେ କିଛି ପଛରେ ବସୁଁ; ଏଣୁ ପଣ୍ଡିତ ମହାଶୟଙ୍କ ଆଦେଶ ସଂବନ୍ଧରେ ସଭିଏଁ ସମ୍ପୂର୍ଣ୍ଣ ଅନବଗତ ରହିଯାଇଥିଲୁଁ । ଏହା ହିଁ ମୋ ଭାଗ୍ୟରେ ଦୁର୍ଯୋଗର କାରଣ ହେଲା । ଜଣେ ଦୁଇଜଣ ଅନ୍ୟ ଗ୍ରାମର ପିଲା, ଯିଏ ପଣ୍ଡିତଙ୍କ ଅସ୍ପଷ୍ଟ କଥା ପୂର୍ବଦିନ ବାରିପାରିଥିଲେ, ଆଦିଷ୍ଟ ହେଲମାତେ ଘରୁ ଲେଖି-ଆଣିଥିବା ଚଲିକା ବିଷୟଗୁଡ଼ିକ ପଢ଼ିଦେଲେ । ତା'ପରେ ପାଳି ପଡ଼ିଲା ମୋର । ଲକ୍ଷ୍ମୀଧର ପଣ୍ଡିତେ ବଡ଼ ଝିଣାବାଜ ଓ ବଦରାଗୀ; ବେଳେ ବେଳେ ତାଙ୍କ ମୁଣ୍ଡକୁ ପୋକ ଚଢ଼ିଯାଏ । କିଂକର୍ତ୍ତବ୍ୟବିମୂଢ଼ ମୁଁ ଦଣ୍ଡାୟମାନ ହୋଇ ଭୟକମ୍ପିତ କଣ୍ଠରେ କହିଲି, "ସାର୍, ମୁଁ ଜାଣିନଥିଲି ଘରୁ ଲେଖିଆଣିବାକୁ ହେବ ବୋଲି; ତେଣୁ ଲେଖିନାହିଁ ।" ପଣ୍ଡିତେ ଏସବୁ କଇଫିତ କିଛି କାନକୁ ନେଲେ ନାହିଁ, କ୍ରୋଧରେ ଅଗ୍ନିଶର୍ମା ହୋଇ ବିନା ଦୋଷରେ ମତେ ଝିଙ୍କିନେଇ ନିଜ ଚେୟାର ନିକଟରେ ଠିଆକରାଇଦେଲେ ଏବଂ ଡ୍ରୟର୍‌ଭିତରୁ ବେଳବାଡ଼ି ଭିଡ଼ିଆଣି ତଦ୍ଦ୍ୱାରା ମୋ ଦୁଇ ଠେଙ୍ଗଣି ଓ ଦୁଇ ଆଣ୍ଠୁରେ ଆଖିବୁଜା ଅଜସ୍ର ପ୍ରହାର ବୃଷ୍ଟିଦେଲେ ।

ଗଳଦଶ୍ରୁ ଅବସ୍ଥାରେ ମୁଁ ଏ ନୃଶଂସ ଅତ୍ୟାଚାରକୁ ନୀରବରେ ସହିପାରିଲି ନାହିଁ । ନିଷ୍ପେଷଣର ବାହାରକୁ ଚାଲିଯାଇ ହୃଦୟ ମୋର ସହସା ବିଦ୍ରୋହୀ ହୋଇଉଠିଲା । ଏହି ବିବେଚନାରହିତ ଅନ୍ୟାୟର ତୀବ୍ର ପ୍ରତିବାଦ କରି ମୁଁ କ୍ଷିପ୍ରତମ ବେଗରେ ଦୌଡ଼ି ଦୌଡ଼ି ଅଦୂରବର୍ତ୍ତୀ ଘଞ୍ଚଦନ 'କୁଞ୍ଜବନ' ତୋଟାର ଏକପାର୍ଶ୍ୱସ୍ଥ ତମାଳବଣିର ପଲ୍ଲବଗହଳ ଶାଖା-କୋଡ଼ରେ କିଛି ସମୟ ଆତ୍ମଗୋପନ କରି ରହିଲି । ଏ ଅସମ୍ଭାବିତ ଦୁର୍ଘଟଣାର ଖବରଟା ମିନିଟ୍ କେଇଟା ମଧ୍ୟରେ ସ୍କୁଲସାରା ପ୍ରଚାରିତ ହୋଇଯାଇ କି ଛାତ୍ର କି ଶିକ୍ଷକ ଉଭୟ ଗୋଷ୍ଠୀରେ ଗୋଟାଏ ଚାଞ୍ଚଲ୍ୟକର ଆଲୋଡ଼ନ ସୃଷ୍ଟିକରିଦେଲା ।

ପଛକୁଞ୍ଚିଆ କ୍ରୋଧୀ ପଣ୍ଡିତେ ଅଳ୍ପ ସମୟ ଅନ୍ତେ ଚାରିଜଣ ତଗଡ଼ା ପିଲାଙ୍କୁ ଧାଉଡ଼ାଇ-ଦେଲେ ମତେ ପଗଡ଼ି ଆଣିବାକୁ । ବାଡ଼ି ବାଡ଼ି ବିସ୍ତୃତ ବିଶାଳ 'କୁଞ୍ଜବନ' ତୋଟା ମଧ୍ୟରେ ଗୋଟିଏମାତ୍ର ଚାଲିବାଟ ପଡ଼ିଥାଏ କର୍ଣ୍ଣମାର୍ଗରେ । ବୁଲାଣିଆ ସଡ଼କରାସ୍ତାରେ ନଯାଇ ଏ ବାଟେ ଗଲେ ଥୋଡ଼ାଏ ରାସ୍ତା କଟିଯାଏ । ଉକ୍ତ ଚାରି ପିଲାଙ୍କ ମଧ୍ୟରୁ ଦୁଇଜଣ ଏହି କର୍ଣ୍ଣମାର୍ଗୀ ଚାଲିବାଟର ପଶ୍ଚିମମୁଣ୍ଡ ଦେଇ ତୋଟାଭିତରକୁ ପଶି ମତେ ଚାରିଆଡ଼େ ଦରାଣ୍ଡିବାକୁ ଲାଗିଲେ; ଆଉ ଦୁଇଜଣ ସଡ଼କେ ସଡ଼କେ ଅଣନିଶ୍ୱାସିଆ ଧାଇଁ ତୋଟାର ପୂର୍ବ-ମୁଣ୍ଡରେ ଜଗିରହିଲେ । କିନ୍ତୁ ସେମାନଙ୍କର ସମସ୍ତ ଶ୍ରମ ସମ୍ପୂର୍ଣ୍ଣ ନିଷ୍ଫଳ ହେଲା । ମୋର କୌଣସି ଚିହ୍ନ ନପାଇ ପରିଶ୍ରାନ୍ତ ସୈନିକପ୍ରାୟ ସ୍କୁଲ ଗ୍ରାଉଣ୍ଡକୁ ଫେରିଯିବାକୁ ବାଧ୍ୟହେଲେ ।

ଛୁଟି ହେଲା ପରେ ବିଭିନ୍ନ ଶ୍ରେଣୀରେ ପଢ଼ୁଥିବା ମୂଳବସନ୍ତିଆ ଛାତ୍ରଯାକ ଦଳ ବାନ୍ଧି ସବୁଦିନ ପରି 'କୁଞ୍ଜବନ' ତୋଟା ବାଟେ ଗ୍ରାମାଭିମୁଖୀ ହେଲେ । ଜଣେ ସହାଧ୍ୟାୟୀ ମୋ ବହିପତ୍ରର ବସ୍ତାନିଟି ନେଇଆସିଥାଏ । ଏଥିମଧ୍ୟରେ ମୁଁ ତମାଳବଣିରୁ ବାହାରି ତତ୍-ପାର୍ଶ୍ୱବର୍ତ୍ତୀ ପିଜୁଳିବଣିରୁ ଅଣ୍ଡିଏ ପାଚିଲା ପିଜୁଳି ସଂଗ୍ରହ କରି ଗ୍ରାମୀୟ ସାଥୀମାନଙ୍କ

ଅପେକ୍ଷାରେ ପୁନାଗ ତରୁମୂଳେ ବସିରହୁଥାଏଁ । ଏହି ପୁନାଗବୃକ୍ଷକୁ ଆମ ଗ୍ରାମର ଛାତ୍ରମାନେ ପ୍ରତ୍ୟକ୍ଷ ଦେବତାରୂପେ ନିତ୍ୟ ପୂଜା କରୁଥିଲେ । ଏତିକିବେଳେ ସଙ୍ଗୀମାନେ ଆସି ପହଞ୍ଚିଗଲେ, ହସି ହସି ମତେ ବହୁତ ସାବାସି ଦେଲେ । ତା'ପରେ ସମସ୍ତେ ସାଙ୍ଗ ହୋଇ ପିଜୁଳି ଖାଇ ଖାଇ ଗାଆଁ ରାସ୍ତାରେ ଆଗେଇଲେ ।

ତା' ଆରଦିନଠାରୁ ମୁଁ ସ୍କୁଲ ଯିବା ବନ୍ଦକରିଦେଲି । ମୋର ଏହି ସାହସିକ ପଦକ୍ଷେପର ଏକ ଅନୁକୂଳ ପ୍ରତିକ୍ରିୟା ଦେଖାଦେଲା । ଆଶୁ ସୁଫଳସ୍ୱରୂପ ଛାତ୍ରମଣ୍ଡଳୀରେ ଗୁଜବ ରଟିଲା ଯେ ମୁଁ ଆଉ କୋଠପଦା ସ୍କୁଲରେ ପଢ଼ିବି ନାହିଁ—ଏଠୁ ନାଆଁ କଟାଇନେଇ ଅନତିଦୂରସ୍ଥ ବଡ଼ଚଣା ମି. ଇଂ. ସ୍କୁଲରେ ନାମ ଲେଖାଇ ସେଠା ବୋର୍ଡ଼ିଂରେ ରହି ପଢ଼ିବି । କୋଠପଦା ମାଇନର ସ୍କୁଲର ଆଦର୍ଶ ହେଡ଼୍‌ମାଷ୍ଟର ଛାତ୍ରବତ୍ସଳ ଆନନ୍ଦଚନ୍ଦ୍ର ମିଶ୍ର ଏ ଦୁର୍ଘଟଣାଟି ଘଟିଲା ଦିନୁ ଅତ୍ୟନ୍ତ ମର୍ମାହତ ହୋଇ ରହିଥିଲେ । ପରେ ପରେ ପଡ଼ିବା ରବିବାର ଦିନ ଅପରାହ୍ଣରେ ଆସିଷ୍ଟାଣ୍ଟ ହେଡ଼୍‌ମାଷ୍ଟର, ହେଡ଼୍‌ପଣ୍ଡିତ ଓ ସେକେଣ୍ଡ୍ ପଣ୍ଡିତଙ୍କ ସଙ୍ଗରେ ସେ ଅପ୍ରତ୍ୟାଶିତ ଭାବରେ ଆସି ଆମ ଘରେ ପହଞ୍ଚିଗଲେ । ଗୁରୁ-ପଙ୍ଗତଙ୍କୁ ଦେଖିଦେଲାମାତ୍ରେ ମୋ ଛାତିକୁ ମତେ ଯେପରି ଅତଡ଼ା ଖସିପଡ଼ିଲା; ମାତ୍ର ମୁଁ ମନ୍ତ୍ରର ଗତିରେ ସେମାନଙ୍କର ସମ୍ମୁଖୀନ ହୋଇ ପ୍ରଥମେ ହେଡ଼୍‌ମାଷ୍ଟର ଓ ତାଙ୍କ ପରେ ହେଡ଼୍‌ପଣ୍ଡିତ, ଆସିଷ୍ଟାଣ୍ଟ୍ ହେଡ଼୍‌ମାଷ୍ଟର, ସେକେଣ୍ଡ୍ ପଣ୍ଡିତ, ଏହି କ୍ରମରେ ସମସ୍ତଙ୍କୁ ସଭକ୍ତି ପ୍ରଣିପାତ କରି ଶିଷ୍ୟୋଚିତ ବିନମ୍ରତାର ସହିତ କାନ୍ଥକୁ ଆଉଜି ଦଣ୍ଡାୟମାନ ରହିଲି । ପିତାମହ ପିତା ଆଗନ୍ତୁକମାନଙ୍କୁ ସାମାନ୍ୟ ଜଳଯୋଗ, ପାନୀୟ ଓ ମୁଖବାସଦ୍ୱାରା ଆପ୍ୟାୟିତ କରିବାରେ ବ୍ୟସ୍ତ ରହିଥାନ୍ତି ।

ଆହତ ମାନସ ନେଇ ଘରେ ପଡ଼ିରହିଥିବା ଅବସ୍ଥାରେ ମୁଁ ଯେ ସେମାନଙ୍କୁ ଏଭଳି ଭକ୍ତିବିନମ୍ରିତ ବ୍ୟବହାର ପ୍ରଦର୍ଶନ କରିବି, ଏହା ହେଡ଼୍‌ପଣ୍ଡିତ ସ୍ୱପ୍ନରେ ସୁଦ୍ଧା କଳ୍ପନା କରିନଥିଲେ । ହେଡ଼୍‌ମାଷ୍ଟ୍ରେ ସସ୍ନେହ 'କୃଷ୍ଣ' ନାମରେ ସମ୍ବୋଧନ କରି ମତେ ନେଇ ତାଙ୍କ ପାର୍ଶ୍ୱରେ ବସାଇଲେ ଏବଂ ମୋ ଆଡ଼କୁ ଓ ହେଡ଼୍‌ପଣ୍ଡିତଙ୍କ ଆଡ଼କୁ ଚାହିଁ ଗତ ଅସହଣୀୟ ଓ ଅଶୋଭନୀୟ ଘଟଣାକୁ ମନରୁ ସମ୍ପୂର୍ଣ୍ଣ ମୂଳପୋଛ କରିଦେବା ହିଁ ଶିଷ୍ୟ ଓ ଗୁରୁ ଉଭୟଙ୍କ ପକ୍ଷରେ ଉଦାରତାର ପରିଚାୟକ ହେବ ବୋଲି ବୈୟାସିକୀ ବାଣୀରେ ଉଦ୍‌ବୋଧନ ଦେଲେ । ତାହା ସଙ୍ଗେ ସଙ୍ଗେ ମଧ୍ୟ ଉପସ୍ଥିତ ସମସ୍ତଙ୍କୁ ଚେତାବନୀ ଦେଇ କହିଲେ, "ଏଣିକି କୌଣସି ଶିକ୍ଷକ ବେତ, ଛାଟ ବା ଗୋଇଠାଦ୍ୱାରା ଅଥବା ହସ୍ତାଦିଦ୍ୱାରା ଛାତ୍ରଙ୍କୁ ପ୍ରହାର କରିପାରିବେ ନାହିଁ । ଶିକ୍ଷାବିଭାଗୀୟ ନିୟମନିର୍ଦ୍ଦେଶାନୁଯାୟୀ ଏହା ନିତାନ୍ତ ଦୂଷଣୀୟ ଓ ଏକ ଦଣ୍ଡନୀୟ ଅପରାଧ ।"

ମୋ ପ୍ରତିବାଦର ଉଦ୍ଦେଶ୍ୟ ପରିପୂର୍ଣ୍ଣ ମାତ୍ରାରେ ସିଦ୍ଧ ହେଲା—ଇତର ପୁଣି ଥରେ ମଧ୍ୟ ବିଜୟ ଘଟିଲା । ଗୁରୁ-ଶିଷ୍ୟ ମଧ୍ୟରେ ପଡ଼ିଥିବା ତିକ୍ତତାର ବାଡ଼ ଉଭେଇଗଲା । ହେଡ଼୍-ପଣ୍ଡିତେ ନିଜର ଭୁଲ ପାଇଁ ଅନୁଶୋଚନା କଲେ । ଗୁରୁ ଚତୁର୍ମୂର୍ତ୍ତି ଆନନ୍ଦରେ ବିଦାୟ

ନେଲାବେଳେ ମୁଁ ମୋର ଅନ୍ତରର କଥା ଏହି ମର୍ମରେ ବ୍ୟକ୍ତ କରିଥିଲି, "ପ୍ରତ୍ୟେକ ଗୁରୁଙ୍କୁ ମୁଁ ଠାକୁର ଭଳି ମନରେ ଭକ୍ତିକରେଁ । ଗତ ଦୁଃଖଦାୟକ ଘଟଣାରେ ସାର୍ଙ୍କ ପ୍ରତି ମୁଁ ଆଦୌ ଅଭକ୍ତି ଦେଖାଇନଥିଲି—ତାଙ୍କ ବିଗୃହୀତନ ଅବୈଧ ବ୍ୟବହାର କାର୍ଯ୍ୟର ହିଁ ଅହିଂସ ପ୍ରତିବାଦ କରିଥିଲି । ଅନ୍ୟ ଗୁରୁମାନଙ୍କ ପରି ହେଡ଼ପଣ୍ଡିତ ମହାଶୟ ମଧ୍ୟ ମୋର ଆମରଣ ନମସ୍ୟ ।" ଧର୍ମପ୍ରାଣ ଶିଷ୍ୟସ୍ନେହୀ ଗୁଣୀ ହେଡ଼ମାଷ୍ଟରଙ୍କ ହସ୍ତକ୍ଷେପ ଫଳରେ ଗୁରୁ-ଶିଷ୍ୟ ବିସଂବାଦର ଏହିରୂପେ 'ମଧୁରେଣ ସମାପୟେତ୍' ଘଟିଲା ।

ମୋର ସ୍ୱଭାବଗତ ଏହି ପିଲାଦିନିଆ ଜିଦଶୀଳତାର ଅନ୍ତରାଳରେ ଥିବା ସ୍ୱାଭିମାନତାର ଶ୍ଳାଘ୍ୟ ଚିତ୍ତବୃତ୍ତି ହିଁ ପରବର୍ତ୍ତୀ କାଳରେ ଦୃଢ଼ିଷ୍ଠ ମନୋବଳ, ଆତ୍ମନିର୍ଭରପ୍ରିୟତା, ପରହିତ-ସାଧନ ପାଇଁ ପ୍ରବଣତା, ସତ୍‌ସାହସ, ଆତ୍ମଚେଷ୍ଟାରେ ଜୀବନର ଗୁଣାତ୍ମକ ମାନବୃଦ୍ଧି, ସତ୍‌କର୍ମରେ ଭଗବଦାଶ୍ରୟ, ସ୍ୱାଧୀନ ଓ ସଂଗ୍ରାମୀ ପ୍ରବୃତ୍ତି ଆଦି ନାନା ଶାଖା-ପ୍ରଶାଖାରେ ବିସ୍ତାରିତ ହୋଇ ବିକଶିତ ରୂପ ଧାରଣ କରିବାକୁ ଯଥାସମ୍ଭବ ସମର୍ଥ ହୋଇପାରିଲା ।

## ୭ । କବିତା ରଚନାର ଉନ୍ମେଷ

ଷାଠିଏ ଛାତ୍ରବିଶିଷ୍ଟ ଆମ ଶ୍ରେଣୀରେ ଇଷ୍ଟଦେବଙ୍କ କୃପାରୁ ମୁଁ ପ୍ରତି ପରୀକ୍ଷାରେ ସର୍ବୋତ୍ତମ ଫଳ ଦେଖାଉଥାଏଁ ବୋଲି ମୋ ଉପରେ ସର୍ବାପେକ୍ଷା ଅଧିକ ସୁଦୃଷ୍ଟି ଥାଏ ପ୍ରଧାନଶିକ୍ଷକ ଓ ଦ୍ୱିତୀୟ ପଣ୍ଡିତଙ୍କର । ଖୁବ୍ ସୁନାମର ସହିତ ବର୍ଷଶେଷ ବାର୍ଷିକ ପରୀକ୍ଷାରେ କୋଠପଦା ସ୍କୁଲରୁ ମାଇନର ପାସ୍ କଲି ମୁଁ ୧୯୬୦ ମସିହାର ଡିସେମ୍ବର ମାସରେ ।

ଆମ ଗାଁଠାରୁ ଏହି କୋଠପଦା ସ୍କୁଲର ଦୂରତା ଦେଢ଼ ମାଇଲରୁ ସାମାନ୍ୟ ବେଶୀ ହୋଇପାରେ । ବାଟରେ ଦେଖିବାକୁ ମିଳେ ଅନେକ ପ୍ରକାରର ଚିତ୍ତ-ପ୍ରସାଦନ ଦୃଶ୍ୟ । ସ୍ନାନାର୍ଥିନୀ ପଲ୍ଲୀବାଳାମାନଙ୍କର ବିରୂପା-ଧାରକୁ ସଂଘବଦ୍ଧ ଯାତ୍ରା ଓ କକ୍ଷଧୃତ କଳସୀରେ ଜଳ-ଆନୟନ, ନଦୀତଟବର୍ତ୍ତୀ କୃଷିକ୍ଷେତ୍ରସମୂହରେ କେତେବେଳେ ମାଳ ମାଳ ହଳଦିଆ ସୋରିଷଫୁଲର ଦିଗ ଚହଟ ହସ ଓ କେତେବେଳେ ଧାଡ଼ି ଧାଡ଼ି ଧାନଗଛ ସହିତ କୁରୁଳା ପବନର କୁରୁକୁରୁ ଖେଳ, ଚଷାପୁଅର ହଳସ୍ଖଳନକାଳୀନ "ଶିଂଶପା ବୃକ୍ଷର ଡାଳେ ହନୁ ମନେ ମନେ ଭାଳେ, ନଷ୍ଟସ୍ନେ ଜାନକୀ ଜନକନନ୍ଦିନୀ ଦେଖିଲିଁ ବେନି ତୋଳେ, କି ଭାଗ୍ୟବଳେ । ବନ୍ଧି କି ନକରେ ପୁଣି ଶ୍ରୀରାମଚନ୍ଦ୍ର-ଘରଣୀ, ଅସୁରପୁରେ ଅସୁରୀ ଜଗିଛନ୍ତି ଜଗତର ଠାକୁରାଣୀ, ରମଣୀମଣି" ଭଳି ରାମାୟଣ ଛାନ୍ଦଗାନ ସାଙ୍ଗକୁ ଘାଟପାରିଆ ମାଝିର ନାବସ୍ଖଳନକାଳୀନ "ବଧିର ନୁହଇଁ କାର !" ବୋଇଲା ତହୁଁ ଧୀବର, "ଶୁଣିଲିଣି ପଥରେ ପଥର ଅବଳା, ବାଲି ପଡ଼ି ତୋ ଚରଣୁଁ ଆଶଙ୍କା ହୃଦୁକେ ଏଣୁ,

ନଉକା ନାୟିକା ହେଲେ ବୁଡ଼ିବ ଭେଲା, ବୃନ୍ତି ଏ ମୋ ପୋଷେ କୁଟୁମ୍ବ, ବସାଇ ନ ଦେବ ନାବେ ନଧୋଇ ପାଦ” (ଭକ୍ତ ବୈ. ବ.) ଗୀତ ଗାନ, ‘କୁମୁଡ଼ାହାଟ’ ବରଗଛର ଓହଳମାନଙ୍କରେ ପିଲାଙ୍କର ଦୋଳିଖେଳ ଓ ଛତ୍ରାକାରରେ ବିସ୍ତାରିତ ଡାଳମାନଙ୍କରେ ଡାଳମାକୁଡ଼ି ଖେଳ, ‘କୃଷ୍ଣବନ’ ତୋଟାର ବିଭିନ୍ନ ବର୍ଣ୍ଣରେ ଶତାଧିକ ପ୍ରକାରର ଫଳବୃକ୍ଷ ଓ ପୁଷ୍ପବୃକ୍ଷର ମନୋରମ କୁଞ୍ଜପୁଞ୍ଜ, ଏସବୁ ଋତୁଚକ୍ରୀୟ ରୂପର ବୈଚିତ୍ର୍ୟ ମୋ ଚକ୍ଷୁ, କର୍ଣ୍ଣ ଓ ମନକୁ ଚୁମ୍ବକ ଲୁହାକୁ ଟାଣିଲା ପରି ବରାବର ଟାଣିରଖିଲା । ଏହା ଫଳରେ ଚତୁର୍ଥ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହେଲା ପରେ ମୋ ହୃଦୟରେ ଏକ ପରେ ଏକ କେତେ ଭାବ-ଭାବନାର ଉନ୍ମେଷ ହେଲା ଏବଂ ପଞ୍ଚମ ଶ୍ରେଣୀ ବେଳକୁ ସେହି ସବୁକୁ ଭାଷାସୂତ୍ରରେ ବାନ୍ଧିରଖିବା ଭଳି ଶକ୍ତିର ସ୍ଫୁରଣ ଘଟିଲା । କ୍ରମଶଃ ମୁଁ ଛୋଟ ଛୋଟ ପଦ୍ୟ ଲେଖିବାରେ ବିଶେଷ ଆଗ୍ରହୀ ହୋଇଉଠିଲି । ପଞ୍ଚମ ଶ୍ରେଣୀର ପ୍ରାନ୍ତ ପାଦରେ ଏବଂ ଷଷ୍ଠ ଓ ସପ୍ତମ ଶ୍ରେଣୀରେ ପଢ଼ିବା ସମୟରେ ଯେଉଁ କେତେକ କବିତା (ଉତ୍କୃଷ୍ଟ ପଦ୍ୟ) ରଚନା କରିଥିଲି, ତାହା ଦେଖି ଶିକ୍ଷକମାନେ ମୋର ସମ୍ଭାବନାମୟ ଭବିଷ୍ୟତର କଳନା କରି ନାନାଭାବରେ ମତେ ଉତ୍ସାହିତ କରିଥିଲେ । ଏହି ସମସ୍ତ ପଦ୍ୟ ଓ କବିତାକୁ ମୁଁ ଏପର୍ଯ୍ୟନ୍ତ ସାଇତି ରଖିଛି ବାଲ୍ୟବୟସର ସ୍ମୃତିଚାରଣ ପାଇଁ କେବଳ । ତହିଁମଧ୍ୟରୁ ନିର୍ବାଚିତ କେତେକ କବିତା ସେ ସମୟରେ ଗ୍ରାମରୁ ପ୍ରକାଶିତ ମାଇନରସ୍କୁଲସ୍ଥ ହାତଲେଖା ମାସିକ ଶିଶୁପତ୍ରିକା ‘ଆଲୋକ’ରେ ସ୍ଥାନପାଇଥିଲା ।

ପିଲାଦିନର ସେହି କବିତା ଲେଖିବାର ପହିଲି ମାଦକତାର କଥା ସ୍ମରଣ କଲେ ଆଜିର ଅବସନ୍ନ ଶିଥିଳ ଚର୍ମରେ ମଧ୍ୟ ଶିହରଣ ଜାଗେ । ତେଣୁ ଅନ୍ତଃସ୍ଫୂର୍ତ୍ତି ପ୍ରେରଣାର ତାଡ଼ନାରେ ପଞ୍ଚମ, ଷଷ୍ଠ ଓ ସପ୍ତମ ଶ୍ରେଣୀରେ ଅଧ୍ୟୟନ କରୁଥିଲାବେଳେ ରଚିତ ମୋର ତିନୋଟି କବିତା ଏଠାରେ ଉଦ୍ଧାର ନକରି ରହିପାରୁ ନାହିଁ :

## ୧ । ଘରଛାଆଳି

(ପଞ୍ଚମ ଶ୍ରେଣୀର ରଚନା)

ଘରଛୁଆଳି ରେ, ଘରଛୁଆଳି ରେ !
କେତେ ଦୂରେ ବାସ ତୋର ?
ଚାଲି ଚାଲି ଏଥେ ଆସିଛୁ, ଯେଣୁ ତୁ
କରୁ ପର-ଉପକାର ।
ପେଟ-ଦାଉ ସହି ନୋହେ ରେ ଛୁଆଳି !
ପେଟ ପାଳନର ପାଇଁ
ନେଉଛୁ ପଇସା ସାମାନ୍ୟ କେଇଟା
ପର-ଘର ଏତେ ଧୁଇ ।

ପେଟ ଲାଗି ଯିନା ଏତେ ନଟକୂଟ
ଏତେ ଛଟପଟ ଭାଇ !
ଜଣେ ଉଣା ହେଲେ ପଡରକୁ ଭୋକା
ଘୃଟିଚୁଟି ଦଏ ଖାଇ ।
ଖର ଗ୍ରୀଷ୍ମ-ତାପ, ବରଷା-ବିପାକ,
ହିମର କାକରପାତ
ସହି ବର୍ଷସାରା ରଖେ ପଣବାରେ
ତୋ ହାତ-ରଚିତ ଘୃତ ।
ତୋହର ଯୋଗୁଁ ଜନେ ନିରାପଦେ ରହି
ଘୃତର ଦେଖାନ୍ତି କେତେ,
ଖାଇ ପିଇ ଶୋଇ ସମସ୍ତ ହରନ୍ତି
କେତେ ବାଲିଦମ ଚଢ଼େ ।

ବିଚରା ଦୁନିଆ ! ଗ୍ରୁଆଳ ରେ, ତୋର
ଝାଳବୁହା ଶ୍ରମବଳେ
ପାଇ ଏତେ ସୁଖ ମୂଢ଼ ଲୋକେ ତୋତେ
ଭୁଲିଯାନ୍ତି ଅବହେଳେ ।
ଏତେ ମନ୍ଦମତି, ନିଜ ସ୍ୱାର୍ଥେ ମାତି
ସୁଖ୍ୟାନ୍ତରେ ବୁଡ଼ିରହି
ପ୍ରତିଉପକାରେ ନ ବଳାନ୍ତି ମନ,
ଧରମ ସହିବ କେହିଁ ?
ଡାକ ପରମେଶ, ହରିବେ ତୋ କ୍ଲେଶ,
ଦେବେ ସୁଖର ଜୀବନ,
ଦଣ୍ଡିବେ ସେ ଏହି ବେମାଣି ମାନବେ
ଭାଙ୍ଗି ତାଙ୍କ ଗର୍ବଟାଣ ।

## ୨ । ମୋ ପ୍ରାର୍ଥନା
(ଷଷ୍ଠ ଶ୍ରେଣୀର ରଚନା)

ନ ମାଗଇଁ ପ୍ରଭୋ ! ମୁହିଁ ବିଶାଳ ସାଗର
ହେବାକୁ ସଂସାରେ,
ଯୁଗେ ଯୁଗେ ଲବଣାକ୍ତ ସଲିଳ ଯାହାର,
ଲୋଡ଼େଁନି ମୁଁ ତାରେ ।

କର ମୋତେ ପରମେଶ ! ସର ଅବା ଝର,
ସ୍ୱାଦୁ ଜଳ ଯାର
ପିଇ କ୍ଳାନ୍ତ ପାନ୍ଥେ ଗ୍ରୀଷ୍ମେ ଦଗ୍ଧ ଦେହେ ଶାନ୍ତି
ପାଇବେ ଅପାର ।

ନ ମାଗଇଁ ପ୍ରଭୋ ! ଆପେ ହୋଇବାକୁ ସୁଖୀ
ଦୁଃଖର ଏ ଭବେ,
କର ମୋତେ ବଟ ବୃକ୍ଷ, ଗ୍ରୀଷ୍ମେ ଯହିଁ ଜୀବେ
ବିଶ୍ରାମ ଲଭିବେ ।

କର ମୋତେ ବିଶ୍ୱପିତା ! ପଙ୍କଜ ପ୍ରସୂନ
ସୁନ୍ଦର ସୁଗନ୍ଧ,
ଦେଖି ଯାହା ଭକ୍ତ ସନ୍ଥ ଧ୍ୟାୟିବେ ତୁମକୁ
ଆହେ ଆନନ୍ଦକନ୍ଦ !

ନ ମାଗଇଁ ବିଭୋ ! ମୁହିଁ ହେବାକୁ ଜଗତେ
ମହା ଧନବାନ,
ପରମ ବିଭବ ମୋର ହେଉ ଦେବ ! ତବ
ଶ୍ରୀରଙ୍ଗାଚରଣ ।

## ୩ । ଖରାଦିନ ବର୍ଷା

(ସପ୍ତମ ଶ୍ରେଣୀର ରଚନା)

[H.W. Longfellowଙ୍କ 'Rain in Summer' କବିତାର ଅନୁବାଦ ।]

ସ୍ୱାଗତ ସୁଧାସ୍ରାବୀ ଗ୍ରୀଷ୍ମ ବରଷା !
ବିପଦେ ହେଲୁ ଆସି ସାହା ଭରସା ।

ପ୍ରଶସ୍ତ ରାଜଦାଣ୍ଡେ ଗଳି-ପଥରେ
ସିକତ-କଲୁ ତପ୍ତ ରେଣୁ ସମୂହରେ ।

ଗମ୍ଭୀରେ ପଡ଼ୁ ପୁଣି ଛାତ-ଛାତରେ
ଗୋ-ଟାପୁ ପ୍ରାୟେ ଟପ- ଟପ ନାଦରେ ।

ଢାଳିଲୁ ଶାନ୍ତି-ସୁଧା ତତଲ ଭୂଇଁ
ଦଣ୍ଡକେ କରିଦେଲୁ ଶୀତଳ ତୁହି ।

ନଳୀ-ମୁଖରେ କମ୍ପା ଏଡ଼େ ଅଥୟେ
ବନ୍ଧୁକୁ ଖର ବେଗେ ଶଙ୍କିତ ପ୍ରାଣେ ?
ପଥେ କି ବାଧା ଦେଲା ବଇଶ୍ଚି କେହ୍ନ ?
ଉଚ୍ଛନେ ଧାଉଁ ତେଣୁ ରେ ଶୁଭ୍ର ଦେହ !
କା ସଙ୍ଗେ ବାଟେ କବା କଲୁ ତୁ କଳି ?
ସେଲଗି ଗତି ତୋର ଛନ୍ନ ଏଭଳି ?
ଖୋଲ ହୃଦରେ ମୋତେ ଫିଟାଇ କହ,
ତୁଟୁ ମୋ ମନୁଁ ଯେତେ ଶଙ୍କା ସନ୍ଦେହ ।

ନୀରସା ରସା ତୋର ଧାର-ଆସାରେ
ଶୋଷିଲା ଚଅଁ ଚଅଁ କି ଆବେଗରେ !
ସାର୍ଥକ ତୋହଠାରେ ଆପ୍ତ ବଚନ
'ଧନ୍ୟ ସେ ଦାତା, ଜାଣେ ଯେ ପ୍ରାର୍ଥି ମନ' ।

କରିଥିଲା ବିଧାତା ତୋତେ କରୁଣା,
କଲଗି ପୁଣି ଆହ୍ୱା ଦେଲା ଯାତନା !
ତୋ ମନ ଢଳେ କାଲ୍ଲି ନୋହିଲା କ୍ଷୁଣ୍ଣ,
ଧନ୍ୟ ତୁ, ଧନ୍ୟ ତୋର ଧୈର୍ଯ୍ୟର ଟାଣ !

ଦୁର୍ଦ୍ଦଶା-କବଳରୁ ଲଭି ତୁ ତ୍ରାଣ
କାରାଗାରୁଁ ମୁକତ ବନ୍ଦୀ ସମାନ
ଆସିଲୁ ଯେବେ ଭେଦି ଆକାଶ-ପଥ
ଧରା-ଧୂଳିରେ ହେଲୁ ମାଳିନ୍ୟଯୁତ—
କଳା ବଉଦ-ଘେରେ ଯେସନ୍ତେ ଚନ୍ଦ୍ରମା
ହରାଏ ଶୁଭ୍ରତାର ସ୍ନିଗ୍ଧ ସୁଷମା ।

ବହିଲୁ ଖେଳି ଖେଳି ଭୂପୃଷ୍ଠ ପରେ
କ୍ଷିପ୍ର ଗତିରେ କୃଶ ସ୍ରୋତ ଆକାରେ ।
ଘେନି ତୁ ଆବିଳତା ଲହଡ଼ି-ଭଙ୍ଗେ
ରଚିଲୁ ବକ୍ର ଗତି ନର୍ତ୍ତନ ରଙ୍ଗେ ।
ଦେଖନ୍ତି ବୃଦ୍ଧ ବୃଦ୍ଧା ପୀଡ଼ିତ ଜନେ
ତୋ ଧାରପାତ ଶୋଭା ମୁଗ୍ଧ ନୟନେ ।

ଗ୍ରୀଷ୍ମ-ଅସହିଷ୍ଣୁ ଯୁବା ଯୁବତୀ
ବର୍ଷଣ-ଜଳେ ଭିଜି ତାପ ଶମନ୍ତି ।

ବିଦଗ୍ଧ ଦୂର୍ବାଦଳେ ରୁକ୍ଷ ପ୍ରାନ୍ତର
ତରୁ-ଲତା-ଗୁଳ୍ମର ଶୁଷ୍କ ପତ୍ରରେ,
ଶସ୍ୟସ୍ଥାନ ବିସ୍ତୃତ କେଦାରରାଜି
ତୋ ଶୀତ ବାରି-ସେକେ ସତେଜ ଆଜି ।
ଉଦ୍ଭିଦ-ଜଗତର ମଙ୍ଗଳକାଂକ୍ଷୀ
କେ ଅଛି ମିତ୍ର ଆଉ କହ ତୋ ପରି ?

କ୍ଷେତରେ ବଳୀବର୍ଦ୍ଦେ କର୍ଷଣେ ରତ
ଏକାଳେ ଦେଖି ତୋର ଆସାରପାତ
ସ୍ଫାରିତ ନାସାରନ୍ଧ୍ର ଊର୍ଦ୍ଧ୍ୱକୁ ଟେକି
ସର୍ବାଙ୍ଗ ପଖାଳନ୍ତି ହଳ ଉପେକ୍ଷି;
ଖସାଇ ଯୁଆଳିରୁ ଦାହିତ ସ୍କନ୍ଧ
ଭୋଗନ୍ତି ଅପ୍ରମିତ ସୁଖ ଆନନ୍ଦ;
ପ୍ରଚଣ୍ଡ ରୌଦ୍ରଜ୍ୱାଳା ଯାଏ ପାସୋରି,
ଲଘୁ କଲୁ ତୁ ଯେଣୁ ଦୁଃଖର ଭାର ।

ଜଳାଭୂମିରୁ ଉଠି ଧୂମୀୟ ବାଷ୍ପ
ବିଶାଳ ପାଟସାଗ ବ୍ୟାପେ ଅମାପ ।
ବସୁମାତାର ଯେବେ ମେଣ୍ଟିଲୁ ଶୋଷ
ପ୍ରସରିଗଲା ତାର ସୁରଭି ଶ୍ୱାସ ।
ସେ ଶ୍ୱାସେ ଦିଗ ହେଲା ମହକମୟ,
ସବୁରି ତୁଣ୍ଡେ 'ଜୟ, ବରଷା ଜୟ' ।

କାହିଁ ବା ଶିଶୁ ଶସ୍ୟ ନୁଆଁଇ ଶିର
ସହନ୍ତି ନିର୍ବିକାରେ ତୋ ତୀକ୍ଷ୍ଣ ଶର;
କରନ୍ତି ନିବେଦନ ନଉନି ହୋଇ—
"ହେ ପ୍ରିୟ ସାଧୁବର ବରଷା ! ତୁହି
ମୂଷଳ ଧାରସାରୁଁ ନୋହିବୁ କ୍ଷାନ୍ତ,
ହିତ ଆମର ଯେଣୁ ତହିଁ ନିହିତ ।"

କେଦାର-ଶିଶୁ ଦେଖି ଭାଳଇ କୃଷୀ
କଠୋର ଶ୍ରମଶୀଳ ଅନ୍ଧବିଶ୍ୱାସୀ—
"ପରିଶ୍ରମର ମୂଲ୍ୟ ସାରା ବର୍ଷର
ବୁଝିବେ ମୋର ନିଶ୍ଚେ ପରମେଶ୍ୱର ।
ତାଙ୍କର ବରୁଁ କ୍ଷେତ ହେବ ସୁଫଳା,
ସୁନାର ଫଳେ ଭରା ହୋଇବ ଖଳା ।
ହସିବ କୋଠି ମୋର ଶସ୍ୟସମ୍ଭାରେ,
ସୁଖର ଦିନ ପ୍ରଭୁ ଦେବେ ଅଚିରେ ।"

ଆହା କି ଶ୍ରୁତିହାସ ତୋ ମଧୁସ୍ୱନ,
ବର୍ଷଣ ଦୃଶ୍ୟ କେଡ଼େ ମନମୋହନ !
ସେ ଛବି ଦରଶନେ ହୁଏ ପରତେ
ସ୍ୱର୍ଗଙ୍ଗା ଅବତରେ କିବା ମରତେ !

ହରଷେ ବିଦ୍ୟାପୀଠୁଁ ଫେରନ୍ତି ଛାଟେ,
ମଡ଼ା ଅମଡ଼ା ବାଗ ନୁହଇ ବାଟେ;
'ଚୂଡ଼ିଛୁ'ଙ୍କରଆଡ଼ ଅସରା-ଜଳେ,
ଚୁଲି ନ ହୁଏ ତେଣୁ ପାଦ ଚଞ୍ଚଳେ ।
ଗଡ଼ାଣ ଥାନେ ସୁଅ ଯାଉଛି ଗଡ଼ି,
କାଗଜଡଙ୍ଗା ତହିଁ ଧାଡ଼ିକି ଧାଡ଼ି
ଭସାନ୍ତି ଛାଟେ ହୋଇ ଖେଳ-ଆଗ୍ରହୀ,
କେ ହେବ ତାଙ୍କ ଖୁସି ବଚନେ କହି ।
ବାଲ୍ୟର ସୁଖ ଆସେ ଜୀବନେ ଥରେ
ଯେତେ ଝୁରିଲେ ସେ ତ ଆଉ ନ ଫେରେ ।

ମତେ ତେର ବର୍ଷ ଚାଲୁଥିଲାବେଳେ ଷଷ୍ଠ ଶ୍ରେଣୀକୁ ମୋର ପ୍ରମୋସନ୍ ହେଲା ୧୯୧୯ ମସିହା ଜାନୁଆରି ପହିଲାଠାରୁ । ଉକ୍ତ ମସିହାଟି ଥିଲା ଆମ ପରିବାର ପକ୍ଷରେ, ଏପରି କି ସମଗ୍ର ଗ୍ରାମଟି ପକ୍ଷରେ ଏକ ଦାରୁଣ ଦୁର୍ବର୍ଷ । ଗ୍ରାମର ମହିଳାମଣ୍ଡଳୀର ସର୍ବମାନ୍ୟା ଅଧିନାୟିକା ସ୍ୱରୂପିଣୀ ମୋର ସର୍ବଶୁଭମନାସିନୀ ଲଳିତାପାଳିକା ବର୍ଷୀୟସୀ ବୁଢ଼ୀମାର ସେହି ବର୍ଷ ଦେହାନ୍ତ ଘଟିଲା । ଗ୍ରାମ ସୀମାନ୍ତବର୍ତ୍ତୀ 'କଣ୍ଟାଣିଆ' ଶ୍ମଶାନରେ ଶବସଂସ୍କାର କରାଗଲା । ବାପା ସେତେବେଳେ ପ୍ରବାସରେ ଥିଲେ । ଦଦେଇ ଜିମ୍ମା ଧରି ବୁଢ଼ୀମାଙ୍କୁ ମୁଖାଗ୍ନି ଦେଲେ । ବୁଢ଼ୀମାର ଅନ୍ତିମ ଇଚ୍ଛାନୁସାରେ ଦଦେଇଙ୍କ ପଛେ ପଛେ ମୁଁ ମଧ୍ୟ ତାଙ୍କୁ

ମୁଖାଗ୍ନି ପ୍ରଦାନ କରିଥିଲି ଅସମ୍ଭାଳ କୋହରେ କେତେକ ଡାକି ଡାକି । କରି ଯେ ନକରିଛ ମୋର ! ଗଣ୍ଡିଧନରୂପେ ମତେ ସଦାସର୍ବଦା କାନ୍ଦରେ ବାନ୍ଧି ରଖିଲି ପରି କେତେ ଯତ୍ନରେ ବଢ଼େଇଛ ଆପଣା ଦେହପାକୁ ଚୂର୍ଣ୍ଣ କରି ! ମାତ୍ର ମୁଁ ହତଭାଗା ତାର ତୁଆଏ ସୁଦ୍ଧା ଋଣ ଶୁଝିପାରିଲି ନାହିଁ । ମାଆ ଷଡ଼ଦଶୀ ଆଉ ଛଅଟା ବର୍ଷ ଯଦି ସହିଯାଇଥାନ୍ତେ, ବୁଢ଼ୀମା ମୋ ରୋଜଗାର ଖାଇ କି ଅପାର ଆନନ୍ଦରେ କୁରୁକୁରିଉଠି ନଥା'ନ୍ତି ? ଯିଏ ଗଛଟିକୁ ନିଜ ହାତରେ ବଢ଼େଇ ବଢ଼େଇ ଗଛରେ ପରିଣତ କରିଥାଏ, ସେ ଗଛରେ ପହିଲି ଛେକର ପାଚିଲା ଫଳ ଦେଖିଲେ ତା' ଆନନ୍ଦ-ସାଗରର କୂଆର ପୂର୍ଣ୍ଣିମାର ଜୁଆରଠାରୁ ବଳିଯାଏ ନାହିଁକି ?

ସାହିତ୍ୟ ଶିକ୍ଷକ ପଣ୍ଡିତ ରାମଚନ୍ଦ୍ର ମହାପାତ୍ରଙ୍କ ପ୍ରେରଣା ଓ ପ୍ରୋତ୍ସାହନା ଚତୁର୍ଥ ଶ୍ରେଣୀଠାରୁ ମୋ ସାହିତ୍ୟ ସାଧନା-ପଥର ପରମ ସହାୟକ ଓ ଦିଗ୍‌ଦର୍ଶନଦାୟକ ହୋଇ-ଆସିଥିଲା । ତାଙ୍କର ଉପଦେଶ ଅନୁସାରେ ମୁଁ ତତ୍କାଳୀନ ସର୍ବୋଚ୍ଚ ସାହିତ୍ୟ-ପ୍ରଶିକ୍ଷଣ ପୀଠ କଟକ ନର୍ମାଲ ସ୍କୁଲରେ ଅଧ୍ୟୟନ କରିବାପାଇଁ ଉଦଗ୍ର ହୋଇ ରହିଥିଲି । ମାଇନର ପରୀକ୍ଷା ଶେଷ ହେଲାମାତ୍ରେ କଟକ ଆସି ବୁଝିଲିରୁ ଜଣାଗଲା ଯେ, ଉକ୍ତ ସାହିତ୍ୟିକ ପ୍ରତିଷ୍ଠାନରେ ପ୍ରବେଶ କରିବାର ସର୍ବନିମ୍ନ ବୟସସୀମାଠାରୁ ମୋ ବୟସ ବର୍ଷଟିଏ ଊଣା ଅଛି । ଏଣୁ ପରବର୍ଷ (୧୯୨୨ ଜାନୁଆରି) ପର୍ଯ୍ୟନ୍ତ ମତେ ଅପେକ୍ଷା କରି ରହିବାକୁ ପଡ଼ିଲା ।

ଏହି ସମୟରେ ଗ୍ରାମୀୟ ଅଭିଭାବକ ଓ ହିତୈଷୀମାନେ କେନ୍ଦ୍ରାପଡ଼ା ହାଇସ୍କୁଲରେ ମୋର ନାମ ଲେଖାଇଦେବାପାଇଁ ବ୍ୟବସ୍ଥା କରୁଥିଲେ; କିନ୍ତୁ ମୁଁ ସେହି ବ୍ୟବସ୍ଥା ପ୍ରତି ବୀତସ୍ପୃହତା ପ୍ରକାଶ କଲି ଏବଂ ବର୍ଷଟିଏ ଘରେ ରହି ଉକ୍ତ ସମୟତକର ସର୍ବୋତ୍କୃଷ୍ଟ ବିନିଯୋଗ କରିବାପାଇଁ ସଂକଳ୍ପବଦ୍ଧ ହେଲି । ତଦନୁକ୍ରମେ ହାଇସ୍କୁଲର ଷଷ୍ଠ ଶ୍ରେଣୀରେ ପଠିତ ହେଉଥିବା ଇଂରାଜୀ ସାହିତ୍ୟ ଓ ଇଂରାଜୀ ବ୍ୟାକରଣର ସମସ୍ତ ପୁସ୍ତକ ସଂଗ୍ରହ କରି ନିଜେ ନିଜେ ପଢ଼ିବାକୁ ଆରମ୍ଭ କଲି । ଗ୍ରାମରେ ଥିବା ଅବସରପ୍ରାପ୍ତ ବର୍ଷୀୟାନ୍ ପ୍ରବୀଣ ବ୍ୟକ୍ତିମାନଙ୍କ ସହାୟତାରେ ଦୁର୍ବୋଧ ଓ ଜଟିଳ ସ୍ଥଳଗୁଡ଼ିକୁ ଅନାୟାସରେ ଆୟତ୍ତ କରିବାକୁ ଲାଗିଲି । ବର୍ଷ ଶେଷ ନହେଉଣୁ ମାଟ୍ରିକୁଲେସନ୍‌ର ଇଂରାଜୀ ଜ୍ଞାନ ମୋର ଅଧିଗତ ହୋଇଗଲା । ଅଧିକନ୍ତୁ, ଗ୍ରାମ ଲାଇବ୍ରେରିକୁ ଆସୁଥିବା ଦୈନିକ Statesman (ଷ୍ଟେଟ୍‌ସ୍‌ମାନ୍) ସମ୍ବାଦପତ୍ରିକା ନିୟମିତ ଭାବରେ ପଢ଼ି ମୋ ଇଂରାଜୀ ଜ୍ଞାନର ପରିସର ଯଥେଷ୍ଟ ବଢ଼ାଇଦେଇପାରିଲି ।

ଏସବୁ ସତ୍ତ୍ୱେ ଅବସର ସମୟରେ କବିତାଦି ଲେଖିବାର ଅଭ୍ୟାସ ମୋର ଅବ୍ୟାହତ ରହିଥିଲା । ସ୍ଥାନୀୟ ଗଣକବି ବୈଷ୍ଣବପାଣିଙ୍କ ପ୍ରଦର୍ଶିତ ଗୀତନାଟ୍ୟାବଳୀର ଅଭିନୟଦ୍ୱାରା ପ୍ରଭାବିତ ହୋଇ 'ମହାଭାରତ'ର ଏକ କଥାବସ୍ତୁକୁ ମୁଁ 'ବାଣହରଣ' ନାମକ ଗୀତନାଟ୍ୟ ଆକାରରେ ରଚନା କରିଥିଲି । ଏହାଛଡ଼ା ପୌରାଣିକ 'ଶ୍ରୀବତ୍ସ' ଆଖ୍ୟାନକୁ କାବ୍ୟରୂପ ଦେବାରେ କିଛିବାଟ ମଧ୍ୟ ଆଗେଇପାରିଥିଲି ।

ଏହି କାବ୍ୟଟି ଲେଖିବାକୁ କିପରି ପ୍ରେରଣା ପାଇଲି, ଏଠାରେ ପ୍ରକାଶ କରୁଛି । ସେତେବେଳେ କୋଠପଦା ମି. ଇ. ସ୍କୁଲର କାବ୍ୟାମୋଦୀ ସାହିତ୍ୟଶିକ୍ଷକ ମୋର ଗୁରୁ ପଣ୍ଡିତ ରାମଚନ୍ଦ୍ର ମହାପାତ୍ର ସେଠାରେ ପ୍ରବାହିତା ବିରୂପା ନଦୀର ରୁଦ୍ରସୁନ୍ଦର ରୂପରେ ଆକୃଷ୍ଟ ହୋଇ 'ବିରୂପା' ନାମରେ ଖଣ୍ଡକାବ୍ୟଟିଏ ଲେଖିବାକୁ ଆରମ୍ଭ କରିଦେଇଥାନ୍ତି । ତାରୁଣ୍ୟର ସେହି ସ୍ୱପ୍ନପୂର୍ଣ୍ଣ ପ୍ରଭାତରେ ମଧ୍ୟ ଷ୍ଲେଟକାଠର କାବ୍ୟଟିଏ ରଚନା କରିବାକୁ ମୋ ପ୍ରାଣରେ ତୀବ୍ର ଅଭିଳାଷର ଉଦୟ ହେଲା । ମାତ୍ର ଏହା ଯେ ବାମନର ଚନ୍ଦ୍ରକୁ ହାତ ବଢ଼ାଇବା ପ୍ରାୟ ଉପହାସାସ୍ପଦ, ସେ କଞ୍ଚା ବୟସରେ ବୁଝିବାର ଚେତନା ନଥିଲା ମୋର । ବୟସଟାର ଯଦି ବଳିଆସିବାବେଳ ହୋଇଥା'ନ୍ତା, ସଂସ୍କୃତ ସାହିତ୍ୟରେ ଯେବେ ଖଣ୍ଡିଏ ହିଡ଼ା ଦେଇ ଶିଖିଥା'ନ୍ତି, ତେବେ ସିନା ଜାଣିଥା'ନ୍ତି :

"ମନ୍ଦଃ କବିଯଶଃପ୍ରାର୍ଥୀ ଗମିଷ୍ୟାମ୍ୟୁପହାସ୍ୟତାମ୍
ପ୍ରାଂଶୁଲଭ୍ୟେ ଫଲେଲୋଭାଦୁଦ୍‌ବାହୁରିବ ବାମନଃ ।" (କାଳିଦାସ)

ତେଣୁ ଚଞ୍ଚଳ ମନକୁ ବୋଲ ମନାଇବାର ଯୋଗ୍ୟତା ମୋର ଗନ୍ତୁର ନଥିଲା । ଏଣେ କାବ୍ୟ ଲେଖିବାର ଅଦମ୍ୟ ଅଭିଳାଷ ବେଳକୁ ବେଳ ତୀବ୍ରତର ହୋଇ ମୋ ମଗଜ-ଗୋହିରୀରେ ଫାଙ୍ଫୁଲ ବେଙ୍ଗ ଭଳି ହରଦମ୍ ଫକଫକ ଡେଇଁବାକୁ ଲାଗିଲା । ଏହି ସମୟରେ ଶୁଣିବାକୁ ପାଇଲି, ଗୀତକବି ବୈଷ୍ଣବ ପାଣି (କୋଠପଦା ଗ୍ରାମର ଅଧିବାସୀ) ପୌରାଣିକ ରାଜା ଶ୍ରୀବତ୍ସଙ୍କ ଆଖ୍ୟାୟିକାଟିକୁ ଗୀତିନାଟ୍ୟ ରୂପ ଦେବାପାଇଁ କଳ୍ପନାଜଳ୍ପନା କରୁଛନ୍ତି । ମୁଁ ଆଉ ସମ୍ଭଳା ପଡ଼ିଲି ନାହିଁ । ସେହି ରୋମାଞ୍ଚକର ବିଷୟବସ୍ତୁକୁ ମୁଁ କାବ୍ୟରୂପ ଦେବି ବୋଲି ଚୂଡ଼ାନ୍ତ ନିଷ୍ପତ୍ତି କରିନେଲି ଏବଂ ୩୧-୮-୧୯୬୧ ତାରିଖ ଦିନ ଗ୍ରାମର ଆରାଧ୍ୟ ଇଷ୍ଟଦେବ ଗଣେଶଙ୍କ ମୁଣ୍ଡିଆ ମାରି ଘରକୁ ଫେରିବାମାତ୍ରେ ଆରମ୍ଭ କରିଦେଲି 'ଶ୍ରୀବତ୍ସ' କାବ୍ୟର ପ୍ରଥମ ସର୍ଗ ।

କାବ୍ୟଟିକୁ ସେହି ବର୍ଷ (୧୯୬୧ ଶେଷ ହେବା ମଧ୍ୟରେ) ସମ୍ପୂର୍ଣ୍ଣ କରିଦେବାକୁ ପ୍ରବଳ ବାସନା ଥିଲେହେଁ ହାତରେ ଥିବା ସମୟର ପରିମାଣ-ସ୍ୱଳ୍ପତା ସେଥିରେ ପ୍ରଧାନ ଅନ୍ତରାୟ ହେଲା । ବର୍ଷାରମ୍ଭ ବେଳେ ଯାହାକୁ ଅତି ଦୀର୍ଘକାଳ ବୋ'ଲି ଭାବିଥିଲି, ଏବେ ତାହା ମୋ ଚକ୍ଷୁରେ ନିତାନ୍ତ ସୀମିତ ହୋଇଗଲା । ଆଇନା 'ବଡ଼ଦିନ' ଛୁଟିଟା ମୋ ମୁଣ୍ଡ ଭିତରଟାକୁ ସତେ ଯେମିତି ହାତୁଡ଼ିରେ ଠୁଙ୍କି ଥରକୁଥର କୋଳୁଆଭଳି ଦେଖାଉଥାଏ । ଯାହାହେଉ, ଯାରୁପର୍ଯ୍ୟନ୍ତେ ଚେଷ୍ଟା କରି ଚତୁର୍ଥ ସର୍ଗଯାଏ କୌଣସିମତେ ଆଗେଇଲି । ସେଇଠି ଅଟକି ରହିବାକୁ ବାଧ୍ୟ ହେଲି, କାରଣ ଡିସେମ୍ବର ମାସ ନିକଟେଇଆସିଲାଣି । ଏଣିକି ନର୍ମାଲ ସ୍କୁଲର ପ୍ରତିଯୋଗିତା ପରୀକ୍ଷାପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ ।

ପ୍ରକାଶ ଥାଉ କି, ଅସମ୍ପୂର୍ଣ୍ଣ 'ଶ୍ରୀବତ୍ସ'କୁ ସମ୍ପୂର୍ଣ୍ଣ କରିବାର ସୁଯୋଗ ଏ ଜୀବନରେ ଆଜିପର୍ଯ୍ୟନ୍ତ ଘଟିପାରିଲା ନାହିଁ କି ସ୍ୱାପରେ ବି ଘଟିବାର ସମ୍ଭାବନା ଆଉ ନାହିଁ । ତେଣୁ କୌତୂହଳାତିଶଯ୍ୟବଶତଃ ପନ୍ଦର ବର୍ଷ ବୟସରେ ଲିଖିତ ଓ ୧୯୬୨ ଜାନୁଆରୀ-ମାର୍ଚ୍ଚର

ପ୍ରଦର୍ଶିତ ଜ୍ଞାନ ସାହାଯ୍ୟରେ ମଠାମଠିକୃତ ମୋର ସେହି ଅପରିଣତ ଲେଖାର ଉତ୍କର୍ଷାପକର୍ଷ କଷିବାପାଇଁ ସ୍ୱର୍ଗେଷିଯାକ ସର୍ଗର ପ୍ରାରମ୍ଭିକ କେତୋଟି ଲେଖାଏଁ ପଦ ପ୍ରିୟ ପାଠକପାଠିକାଙ୍କ ଇଜଲାସରେ ଉପସ୍ଥାପନ କରୁଛି :

## ଶଚୀବସ୍ତ୍ର

[ ପ୍ରଥମ ସର୍ଗ ]

ଦିନେ ସୁନାସୀର ଦେଖିଲେ ସ୍ୱର୍ଧାମ
ବିଳାସ ଆମୋଦଶୂନ,
ସୁଧର୍ମା ସଭାରେ ନାହିଁ ନୃତ୍ୟଗାନ
ନ ଶୁଭଇ ବାଦ୍ୟତାନ ।
ନାହିଁ ସେ ତ୍ରିଦଶ- ମୋହିନୀ କିନ୍ନରୀ-
କଳକଣ୍ଠ-ସ୍ରୁତ ଗୀତ,
ଉର୍ବଶୀ ମେନକା ରମ୍ଭା ତିଳୋତ୍ତମା
ଆଦିଙ୍କ ସ୍ୱନ ଲଳିତ ।
ଚୌଦିଗ ନିସ୍ତବ୍ଧ ହେରି ଆଖଣ୍ଡଳ
ସଚିବେ ନିଦେଶି ଖେଦେ
ବସିଲେ ଆସ୍ଥାନେ ବିନୋଦ-ଲାଳସେ
ହୃଦ ଭରିବାକୁ ମୁଦେ ।
ସଚିବ-ଆହ୍ୱାନେ ନର୍ତ୍ତକୀମଣ୍ଡଳୀ
ଯତନେ ହେଲେ ସଜ୍ଜିତ
ଶୁଭ୍ର ପାରିଜାତ ନିବେଶି ଚିକୁରେ
ସର୍ପିତ ଗୁଳ୍ଫଲମ୍ବିତ ।

ସୁମନମାଳରେ ସାଜିଲେ ସୁମନେ
ପୀନ ପୟୋଧର-ଚୂଳ,
କଜ୍ଜଳକୁନ୍ତଳା ଲାବଣ୍ୟ ପିଚ୍ଛିଳା-
ଅଧରେ ତାମ୍ବୂଳବୋଳ ।
ଶଶିକରେ ଯେହ୍ନେ ଖଦ୍ୟୋତପଟଳ
ହୋଇଯାନ୍ତି ଜ୍ୟୋତିହୀନ,
ଗମନ୍ତେ ବାରଣ- ଗମନା ତେସନ
ସକଳେ ଭଜିଲେ ମ୍ଳାନ ।

ଯୋଗିଜନ-ମନ          ହୃଦ-ବିହାରିଣୀ
ବନ୍ୟଭୂଷଣ ରଙ୍ଗିଣୀ
ଭଙ୍ଗୀ ଭଙ୍ଗୀ କରି          ଗୁଳନ୍ତି ଚତୁରୀ
ଭାଷି ବୀଣାଜିଣା ବାଣୀ ।
ସ୍ମିତଚନ୍ଦ୍ରହାସୀ          କୁତୂହଳେ ରସି
ତରଙ୍ଗ-କୁଞ୍ଚିତ କେଶ
କମ୍ପାନ୍ତି ସମୀରେ          ଚହଟାଇ ଦେଉଁ
ଚନ୍ଦନ-କସ୍ତୁରୀ-ବାସ ।
ମନମଥ-ମନ-          ମୋହନଅଙ୍ଗୀଙ୍କ
ରତିଜିତ ରୂପଶିରୀ
ଦେଖି ସୁରପତି          ମୋଦେ ଗଲେ ମାତି
ହୃଦୁଁ ଖେଦ ଅପସାରି ।

[ ଦ୍ୱିତୀୟ ସର୍ଗ ]

ଶ୍ରୀବତ୍ସ ନୃପତି          ନ୍ୟାୟବନ୍ତ ଅତି
ଶାନ୍ତିରେ ଶାସନ୍ତି ଦେଶ,
ପ୍ରଜାପୁଞ୍ଜ-ହିତ          ଲାଗି ରାଜଚିତ୍ତ
ଚିନ୍ତାରତ ଅହର୍ନିଶ ।
ଧନେ ମାନେ ଗୁଣେ          ଦାନ ଦୟା ଧର୍ମେ
ନଥିଲେ କେ ତାଙ୍କ ସରି,
ଲଭି ପରମେଶ-          କରୁଣା ଅଶେଷ
ଅରଜିଲେ ଯଶଶିରୀ ।
ଗ୍ରାମେ ଗ୍ରାମେ ଖୋଳି          କୂପ ବାପୀ ସର
ତୋଳି ପୁଣି ଦେବାଳୟ,
ଜନ-କଲ୍ୟାଣରେ          ନିଯୋଗୀ ଜୀବନ
ଥାପିଲେ କୀର୍ତ୍ତି ଅକ୍ଷୟ ।
ଦୂତ-ମୁଖୁଁ ଦିନେ          ଶୁଣୁଥାନ୍ତି ନୃପ
ରାଜ୍ୟର କୁଶଳ ବାର୍ତ୍ତା,
ପ୍ରବେଶିଲେ ଆସି          ରାଜଦରବାରେ
ଶନିଦେବ, ଲକ୍ଷ୍ମୀମାତା ।
ଆଚମ୍ବିତେ ରାଜା          ପୁଚ୍ଛିଲେ ଦେବଙ୍କୁ
"କେବଣ କାରଣେ ଆଜ

କହନ୍ତୁ ସଦର୍ପେ ପଡ଼ିଲା ମୋ ପୁରେ
ଶ୍ରୀପଦ-ପଙ୍କଜ-ରଜ ।”
ମୃଦୁ ଗିରେ ତହୁଁ ଉଚ୍ଚାରିଲେ ରମା
“ନ୍ୟାୟାଧୀଶ ହେ ନରେଶ !
ବଳାରାତି-ଶାପେ ଏବେ ତୁମ୍ଭ ପାଶେ
ଆମର ଏ ପରିବେଶ ।
ଆମ ବେନି ମଧ୍ୟେ ଘଟିଛି କନ୍ଦଳ
କିଏ ବଡ଼ କିଏ ସାନ,
ସୁଜାଣପ୍ରବର ! ସୁବିଚାର କର
ଏ ଦ୍ୱନ୍ଦ୍ୱର ସମାଧାନ ।”
ବିଷମ ସଙ୍କଟେ ପଡ଼ିଲେ ରାଜନ,
ସ୍ଫୁରିଲା ନାହିଁ ବିବେକ,
କାଲି ପ୍ରାତଃ ଯାଏ ଲେଉଡ଼ିଲେ ସମୟ
ରକ୍ଷିବାକୁ ନ୍ୟାୟ-ଟେକ ।

[ ତୃତୀୟ ସର୍ଗ ]

ଶାପର ଭୀଷଣ ପରିଣାମ ଭାଳି
ଆକୁଳ ଶ୍ରୀବତ୍ସ-ମନ,
ଶନି-ଦୃଷ୍ଟିପାତେ ମଉଳିଲା କ୍ରମେ
ରାଜ୍ୟ-ଶିରୀ-ସୁଖମାନ ।
ଦଇବ-ଘଟନ କେ କରିବ ଆନ,
ଯେବେ ଯା ଘଟଇ ଆସି
ନାହିଁ କେ ମହୀରେ ଟାଳିବାକୁ ତାରେ
ଶାଣିତ ଅସି ନିଷ୍କୋଷି ।
ପୂର୍ବ କୃତମତେ ସୁଖ ଅବା ଦୁଃଖ
ଫଳଇ କରମ-ଦ୍ରୁମେ,
ଏହା ଜାଣି ରାଜା ସହୁଥାନ୍ତି ସବୁ
ନିର୍ବିକାରେ ମରଭୂମେ ।

× × ×

ସହସା ଦିନେକ ସ୍ପନ୍ଦିଲା ରାଜାଙ୍କ
ବାମ ନେତ୍ର ଘନ ଘନ,
ପଛେ ପଛେ ତାର ପ୍ରବଳ ଭୂକମ୍ପେ
ଟଳିଲା ଅଟ୍ଟାଳିଗଣ ।

ବନ-ଉପବନ ପୁର ପଲ୍ଲୀଗ୍ରାମ
ପାଲଟିଲା ଶମଶାନ,
ଫିରି ଶନି-କୋପେ ରାଜ୍ୟସାରା ବ୍ୟାପେ
ସଂହାରର ଅଭିଯାନ ।

[ ଚତୁର୍ଥ ସର୍ଗ ]

ମଥାପରେ ଆସି ସାମାନ୍ୟ ସମ୍ବଳ
'ଚନ୍ଦ୍ରା'-କର ଧରି ଧୀରେ
ଚଳନ୍ତି ଭୂପତି ଭାଗ୍ୟ ଚିନ୍ତି ଚିନ୍ତି
ପର୍ବତ ବନଧାରେ ।
ଘନ-ମସି-ଲିପ୍ତ ଭୟଦ ନିଶୀଥ
ବାରି ହୁଏ ନାହିଁ ପଥ,
ଗରଜଇ ନିଶା, ଏକାଳେ ସହସା
ସମ୍ମୁଖେ କେ ଉପଗତ ।
ଶ୍ରୀବକ୍ଷେ ଉଦ୍ଦେଶି ଝରେ ତାଙ୍କ କଣ୍ଠୁଁ
ଅଭୟ, "ବତ୍ସରେ ମୋର !
ମାତା ଇନ୍ଦିରା ମୁଁ, ଫିଙ୍ଗିଦେ ରେ ମନୁଁ
ଭୟଭ୍ରାନ୍ତ ଚିନ୍ତାଭାର ।
ମୋ ନିମିତ୍ତେ ସହୁ ଏତେ ଦୁଃଖ ଦାଉ
ହୋଇ ରାଜଦଣ୍ଡଧର,
ମାନ ମୋ ବଚନ ନ ହୁଅ ବିମନ,
ସାହସେ ହୃଦୟ ଭର ।
ଧରମର କେବେ ନାହିଁ ପରାଜୟ,
ନ ବୁଡ଼େ ଧରମ-ନାବ,
ପ୍ରଳୟ-ସଲିଳେ ବୁଡ଼େ ସିନା ସବୁ
ଧାର୍ମିକେ ମିଳଇ ଠାବ ।
ସାହା ମୁହିଁ ତୋର ଦିବାନିଶି ବତ୍ସ !
ଘେନ ମୋ ସାନ୍ତ୍ୱନା-ବାଣୀ,
ମୁଁ ତୋ ପାଖେ ପାଖେ ସଦା ଅଛି ଜାଗି
ଧୈର୍ଯ୍ୟ ଧର ଏହା ଜାଣି ।
ଯେତେ ନିର୍ଯାତନା ଯେତେ ବା ଯାତନା
କଷ୍ଟ! ଭଳି ଯିବ ଗଳି

ଭ୍ରୂକ୍ଷେପ ନ କରି ଆଗକୁ ଚାଲିବୁ
ସେସବୁକୁ ମାଡ଼ିଦଳି ।
ଦୁଃଖ ବିପଦର ଯେତେ ଝଞ୍ଜା-ଝଡ଼
ସବୁ ଆସି ଯିବ ଚାଲି
ସ୍ୱର୍ଣ୍ଣରେଣୁ ରୂପ ଧରିବ ଜୀବନେ ରେ
ଆଜି ଯା ଦେଖୁଛୁ ବାଲି ।”
ଆଶୁସି ଏତିକେ କଣ୍ଠବାଣୀ ହେଲା
ଗ୍ରହ୍ମୁଁ ଗ୍ରହ୍ମୁଁ ନୀରବତ,
ସୂଚୀଭେଦ୍ୟ ସେହି ନୀରନ୍ଧ୍ର ଅନ୍ଧାରେ
ମାତା ହେଲେ ଅନ୍ତର୍ହିତ ।
ଦୁସ୍ତର ସଂସାର- ପାରିର ବୋଇତ
ରଜା-ରାଣୀ ଏବେ ପାଇ
ମାତୃ ଆଶ୍ୱାସନା- କ୍ଷେପଣୀ ଭିଡ଼ିଲେ
ସେପାରି ଧରିବା ପାଇଁ ।

× × ×

ଗ୍ରହ୍ମୁଁ ଗ୍ରହ୍ମୁଁ ଦୀର୍ଘ ବାରମାସ ଅନ୍ତରର ବାଲିଚରେ ସହିତ ସାମିଲ ହୋଇଯିବାକୁ ବସିଲା ଏବଂ ପ୍ରତୀକ୍ଷିତ ନବବର୍ଷ ‘୧୯୨୨’ର ମୃଦୁ ପଦଧ୍ୱନି ଅଦୂରରୁ ମୃଦୁଳ ମଳୟରେ ଭାସିଆସି ମୋର ତରୁଣ ପ୍ରାଣକୁ ଉଦ୍‌ବେଗଚଞ୍ଚଳ କରିପକାଇଲା । ଡିସେମ୍ବର (୧୯୨୧) ପନ୍ଦର ତାରିଖ ବେଳକୁ କଟକବାସୀ ବିଶ୍ୱନାଥ କରଙ୍କଠାରୁ ଜରୁରୀ ଖବର ଆସିଗଲା—୨୦ ତାରିଖ ପୂର୍ବରୁ ମଠେ ଯାଇ ତାଙ୍କ ପାଖରେ ପହଞ୍ଚିବାକୁ ହେବ ।

ଗ୍ରାମର ପ୍ରତ୍ୟେକ ବାଳକ-ବାଳିକା ଆଧୁନିକ ଶିକ୍ଷାପ୍ରାପ୍ତ ହେବେ ଏବଂ ସର୍ବନିମ୍ନ ମାଟ୍ରିକୁଲେସନ୍‌ଠାରୁ କାହାରି ଯୋଗ୍ୟତା କମ୍ ହେବ ନାହିଁ—ଏହାହିଁ ଥିଲା ସଂସ୍କାରକ ବିଶ୍ୱନାଥ କରଙ୍କର ଐକାନ୍ତିକ ଇଚ୍ଛା । ନିଜ ଗ୍ରାମଟିକୁ ଶିକ୍ଷା, ସଂସ୍କୃତି ଓ ସଂସ୍କାରରେ ପ୍ରଥମେ ଅଗ୍ରଯାତ୍ରୀ କରିପାରିଲେ ତେଣିକି ତାହାରି ଗ୍ରନ୍ଥରେ ସମଗ୍ର ଅଞ୍ଚଳର ସର୍ବାଙ୍ଗୀଣ ଉନ୍ନତିସାଧନ ଓ ନବୀକରଣ ଅଳ୍ପାୟାସରେ ଓ ସହଜରେ ସମ୍ଭବପର ହୋଇପାରିବ ବୋଲି ତାଙ୍କର ଦୃଢ଼ ଧାରଣା ଥିଲା । ଏହି କଳ୍ପନାକୁ କର୍ମକ୍ଷେତ୍ରରେ ରୂପାୟିତ କରିବା ଉଦ୍ୟମରେ ସେ ଲାଗିପଡ଼ିଥିଲେ । ତାହାରି ଫଳରେ ଏକା ମୂଳବସନ୍ତର ପ୍ରାୟ ପଞ୍ଚତିରିଶ ଜଣ ପିଲା କୋଠପଦା ମାଇନର ସ୍କୁଲର ବିଭିନ୍ନ ଶ୍ରେଣୀରେ ଅଧ୍ୟୟନ କରୁଥାନ୍ତି । ଅନ୍ୟ କେତେକ ଛାତ୍ର ଉଚ୍ଚଶିକ୍ଷା ପାଉଥାନ୍ତି କଟକର ଟାଉନ ଭିକ୍ଟୋରିଆ ହାଇସ୍କୁଲ ଓ ପ୍ୟାରୀମୋହନ ଏକାଡେମୀରେ ଏବଂ ଅବଶିଷ୍ଟ ରେଭେନ୍‌ସା କଲେଜରେ । ବିଶ୍ୱନାଥଙ୍କ ପ୍ରବର୍ତ୍ତନାରେ ତିନୋଟି ହାତଲେଖା ପତ୍ରିକା ମୂଳବସନ୍ତର ଛାତ୍ରମାନଙ୍କଦ୍ୱାରା ପ୍ରତି ମାସରେ ବାହାରୁଥାଏ । ମାଇନର ସ୍ତରୀୟ ପତ୍ରିକାର ନାମ ଥିଲା ‘ଅଳୋକ’, ହାଇସ୍କୁଲ ସ୍ତରୀୟର ନାମ

'ଜ୍ୟୋତ୍ସ୍ନା' ଓ କଲେଜ ମୁଖପତ୍ରର ନାମ 'କୌମୁଦୀ' । 'ଆଲୋକ' ବାହାରୁଥିଲା ମୂଳବସନ୍ତରୁ ଏବଂ 'ଜ୍ୟୋତ୍ସ୍ନା' ଓ 'କୌମୁଦୀ' ବାହାରୁଥିଲା କଟକରୁ । ତିନୋଟିଯାକ ମାସିକ ପତ୍ରିକାର ନାମକରଣ କରିଥିଲେ ସ୍ୱୟଂ ବିଶ୍ୱନାଥ । ପଞ୍ଚମଶ୍ରେଣୀରେ ପଢ଼ିବା ବେଳୁଁ ମୋର କବିତାମାନ 'ଆଲୋକ'ରେ ପ୍ରକାଶ ପାଇ ଆସୁଥିଲା । ମୁଁ କୋଠପଦାରେ ଅଧ୍ୟୟନ କରିବାର ଶେଷ ଦୁଇବର୍ଷ ଓ ତାର ପରବର୍ଷ, ଏହିପରି କ୍ରମାନ୍ୱୟରେ ତିନିବର୍ଷ (୧୯୧୯ରୁ ୧୯୨୧) 'ଆଲୋକ'ର ସମ୍ପାଦକରୂପେ ମନୋନୀତ ହୋଇଥିଲି ବିଶ୍ୱନାଥଙ୍କ ଦ୍ୱାରା । ଏହି ପତ୍ରିକାତ୍ରୟରେ ପ୍ରବନ୍ଧ, ଗଳ୍ପ, କବିତା ପ୍ରଭୃତି ଲେଖୁଥିବା ଛାତ୍ରମାନଙ୍କ ହୃଦୟରେ ସାହିତ୍ୟିକ ରୁଚିର ଉନ୍ମେଷ ଘଟାଇପାରିଲେ ସେମାନଙ୍କ ମଧ୍ୟରୁ କେତେକେ ଦିନେ ଉଦୀୟମାନ ଲେଖକ ବା କବିରୂପେ ସାହିତ୍ୟ-କ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ଓଡ଼ିଆ ସାହିତ୍ୟର ଦୈନ୍ୟ ଯଦି କିଞ୍ଚିତ୍ ମାତ୍ରାରେ ହେଉ ପଛକେ ନିଶ୍ଚୟ ଦୂର କରିପାରିବେ—ଏହା ହିଁ ଥିଲା ଦୂରଦର୍ଶୀ ବିଶ୍ୱନାଥଙ୍କ ଏତାଦୃଶ ପରିକଳ୍ପନାର ମୂଳ ଉଦ୍ଦେଶ୍ୟ ଓ ମହତ୍ତ୍ୱ ଲକ୍ଷ୍ୟ ।

## ୭ । ସ୍ୱର୍ଗକୁ ନିଶୁଣି ନାହିଁ, ବଡ଼ଲୋକକୁ ଉତ୍ତର ନାହିଁ

ଏଥିପୂର୍ବରୁ ଓକିଲ ଦାମୋଦର କର ଆମ ଗ୍ରାମରେ ସମସ୍ତଙ୍କଠୁଁ ବଳି ବିତ୍ତବନ୍ତ, ପ୍ରଭାବପ୍ରତିପତ୍ତିମନ୍ତ ଓ ପ୍ରତାପାନ୍ୱିତ ହୋଇ ବଡ଼ଲୋକୀ ଥାଟରେ ଫାଟିପଡ଼ୁଥା'ନ୍ତି । ଦେଖିବାକୁ ସାଇବଙ୍କ ପରି ଗୋରା ତକ୍‌ତକ୍, ରୂପ ମଧ୍ୟ କାର୍ତ୍ତିକେୟ ସଦୃଶ ସୁନ୍ଦର ସୁଦୃଶ୍ୟ । ସତ୍-ଅସତ୍ ବିବିଧ ଉପାୟରେ ଅଚଳାଚଳ ଭୂସମ୍ପତ୍ତି ଠୁଳ କରିବାର ଦୁର୍ବାର ଅଭିଳାଷ ତାଙ୍କୁ ଏପରି ଉଦ୍‌ଭ୍ରାନ୍ତ ପାଗଳ କରିପକାଇଲା ଯେ, ସାମାନ୍ୟ କେଇଟା ବର୍ଷ ମଧ୍ୟରେ ସେ ଗୋଟାକ ପରେ ଗୋଟା ଆମ୍ବତୋଟା, ଘରବାଡ଼ି-ଉପଯୋଗୀ ଏକର ଏକର ଉଚ୍ଚା ଭୂମି, ବାଛି ବାଛି ଗୃହଜମି, ବଗିଚା ହେବା ଯୋଗ୍ୟ ନିଅମାଣ ଅଂଜାନ୍ତ୍ରର ଉର୍ବର କ୍ଷେତ୍ର ଇତ୍ୟାଦିର ଅସପତ୍ନ ଅଧିକାରୀ ହୋଇଗଲେ—କାହାକୁ କ୍ରୟସୂତ୍ରରେ ବା କାହାକୁ ବନ୍ଧକସୂତ୍ରରେ କରାୟତ୍ତ କରି । ସଞ୍ଚିତ ପୁଞ୍ଜିତକ ହାତରୁ ସରିଗଲା ପରେ ଜମିଭୂମି ଠୁଳେଇବାର ନିଶା ଧିମେଇଯାଆନ୍ତା କ'ଣ, ଓଲଟି ଅଧିକରୁ ଅଧିକ ପ୍ରବଳ ହେଲା । ତେଣିକି ଛେକକୁ ଛେକ ଜମି ଯେତେ ଥର କିଣାଗଲା ବା ବନ୍ଧକରେ ହସ୍ତଗତ ହେଲା, ସବୁଥର ହଜାର ହଜାର ଟଙ୍କା ଋଣ କରିବାକୁ ପଡ଼ିଲା ଏବଂ ସେଥିପାଇଁ ଝଣ୍ଡପାହର ବାର୍ଛୁକ୍ରିକ ଜମିଦାର ଜଗନ୍ନାଥ ମିଶ୍ରଙ୍କର ଦ୍ୱାରସ୍ଥ ହେବାକୁ ପଡ଼ିଥିଲା । ଏହାଫଳରେ ଭୂସମ୍ପତ୍ତି ଅପରିମିତ ବଢ଼ିବା ସଙ୍ଗେ ସଙ୍ଗେ ଋଣଭାର ମଧ୍ୟ ସମାନ୍ତରାଳ ଭାବରେ ଅତିରିକ୍ତ ପରିମାଣରେ ପ୍ରବର୍ଦ୍ଧିତ ହେଲା । ଦାମୋଦରବାବୁଙ୍କର କିନ୍ତୁ ଏହି ଋଣପାଇଁ ଆଦୌ ମୁଣ୍ଡବ୍ୟଥା ନଥିଲା । କାରଣ ସେ ମନ ମଧ୍ୟରେ ନିଶ୍ଚିତ ବୋଲି ଧରିନେଇଥା'ନ୍ତି ଯେ,

ଦୁଇ ଯୋଗ୍ୟ ପୁଅଙ୍କ ମଧ୍ୟରୁ ଏମ୍. ଏ., ବି. ଏଲ୍. ଉଚ୍ଚ ଉପାଧିଧାରୀ ବଡ଼ ରତ୍ନାକର ତାଙ୍କ ପଛକୁ ଓକିଲାତି ବ୍ୟବସାୟରେ ଲାଗିଯିବ ଏବଂ ବି. ଏସ୍‌ସି. ଶେଷବର୍ଷରେ ପଢୁଥିବା ସାନ ବିଦ୍ୟାଧର ଡିଗ୍ରୀ ହାସଲ କରିବା ପରେ ପରେ ତା' ଶଶୁରଙ୍କ ଚେଷ୍ଟାରେ ଡେପୋଟି-ମେଜେଷ୍ଟର ଚାକିରି ପାଇଯିବ—ସେ ଦୁହିଁଙ୍କ ଉପାର୍ଜିତ କୁଡ଼ି କୁଡ଼ି ଟଙ୍କା ତୁଳନାରେ ରାଶୀକୃତ ଟଙ୍କାର ପରିମାଣ କିବା ମାତ୍ର ! ଉତ୍ତମର୍ଣ୍ଣ ଜମିଦାରଙ୍କର ମଧ୍ୟ ପ୍ରାୟ ଏଇ ଧାରଣା ଥିଲା । 'ଉପାୟଂ ଚିନ୍ତୟେତ୍ ପ୍ରାଜ୍ଞଃ ଅପାୟମପି ଚିନ୍ତୟେତ୍,' ମୋହ-ମୁଦ୍‌ଗରୋକ୍ତ 'ଅର୍ଥମନର୍ଥଂ ଭାବୟ ନିତ୍ୟଂ', 'ଅଧର୍ମ ବିତ୍ତ ବଢ଼େ ବହୁତ ଗଲାବେଳେ ଯାଏ ମୂଳ ସହିତ' 'ଅତି ସଂପଦ ବାଳୁ ମହା ବିପଦ' ଏସବୁ ଆପ୍ତବାଣୀ ବିଚାରିବାକୁ ସବୁଜସ୍ୱପ୍ନ-ବିଳାସୀ ଦାମୋଦରଙ୍କର ବେଳ ନଥିଲା କି ପ୍ରବୃତ୍ତି ବି ନଥିଲା ।

ବର୍ଣ୍ଣିତ ହେବାକୁ ଯାଉଥିବା ଦୁର୍ଘଟନାଟିର କାଳ ସ୍ମରଣୀୟତ୍ୱ ରକ୍ଷିବାପାଇଁ 'ସମାଜ'ର ଜନ୍ମଦିବସକୁ ସମୟବାରେଣି ଖୁଣ୍ଟରୂପେ ମୋ ଆଖି ସାମନାରେ ଥାପନା କରୁଛି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଅଧିନାୟକତ୍ୱରେ ୧୯୧୧ ମସିହାରେ ସତ୍ୟବାଦୀର ବକୁଳତରୁଶ୍ରେଣୀ-କୁଞ୍ଜମାଳରେ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠିତ ହେବାର କିଛୁକାଳ ପରେ ତାଙ୍କର ସୁଦକ୍ଷ ସମ୍ପାଦକତ୍ୱରେ ନାତିକ୍ଷୁଦ୍ର ଅଭିଜାତ ସାପ୍ତାହିକ ସମ୍ବାଦପତ୍ର 'ସମାଜ', ୧୯୧୯ ଅକ୍ଟୋବର ୪ ତାରିଖ ବିଜୟାଦଶମୀ ତିଥିରେ ଆତ୍ମପ୍ରକାଶ କରିଥିଲା । ତାହାର ପରେ ଅକ୍ଟୋବରରୁ ଡିସେମ୍ବର ମାସ ମଧ୍ୟରେ କୌଣସି ଏକ ଅଶୁଭଙ୍କର ଦିନର କଥା ।

ଓକିଲ ଦାମୋଦର କର କଟକରେ ଥିବା ଜଜ୍ କୋର୍ଟ, ସିଭିଲ୍‌କୋର୍ଟ, ଜିଲ୍ଲା ମାଜିଷ୍ଟ୍ରେଟ୍ କୋର୍ଟ, ଏସ୍. ଡି. ଓ. କୋର୍ଟ ପ୍ରଭୃତି ବିଭିନ୍ନ ବିଚାରାଳୟରେ ଓକିଲାତି କରୁଥିଲେ । ଉକ୍ତ କଚେରୀଗୁଡ଼ିକର ନିକଟବର୍ତ୍ତୀ ଯାଉଁଳିଆପଟିରେ ଯୋଡ଼ିଖଞ୍ଜାବିଶିଷ୍ଟ ଏକ ବଡ଼ ସୌଧ ଭଡ଼ା ନେଇ ସେଥିର ଭିତର ଖଞ୍ଜାଟିକୁ ବାସଭବନରୂପେ ଓ ବାହାର ଖଞ୍ଜାଟିକୁ ନିଜ ଓକିଲାତି ବ୍ୟବସାୟର ଚେମ୍ବର୍ (Chamber)ରୂପେ ବ୍ୟବହାର କରୁଥିଲେ । ଏକ ଖଞ୍ଜାରୁ ଅନ୍ୟ ଖଞ୍ଜାକୁ ଯିବାପାଇଁ ମଝିରେ ଏକ ଅନ୍ତର୍ଦ୍ୱାର (inter-door) ରହିଥିଲା । ରତ୍ନାକର ଓ ବିଦ୍ୟାଧର ଦୁଇପୁତ୍ର ସେଠାରେ ଅବସ୍ଥାନ କରୁଥିଲେ । ଗୋଟିଏ ଅଭିଜ୍ଞ ପାଚକ ଓ ଗୋଟିଏ ବିଶ୍ୱସ୍ତ ଭୃତ୍ୟ ଗ୍ରାମାଞ୍ଚଳରୁ ସଂଗୃହୀତ ହୋଇ ବାର୍ଷିକ ଭତିଆ ସର୍ତ୍ତିରେ ସେହି କଟକ ବସାରେ ନିଯୁକ୍ତ ଥିଲେ ।

ଆଞ୍ଚଳିକ ଖ୍ୟାତିର ଉଚ୍ଚତର ସୋପାନକୁ ଅଧିରୂଢ଼ ହେଲା ପରେ ଆଇନଜୀବୀ ଦାମୋଦର ଗାଁ ମଝିରେ ଥିବା ପୈତୃକ ଗେଣ୍ଡ଼ଘରେ ରହିବାକୁ ଆଉ ପସନ୍ଦ କଲେ ନାହିଁ । ସେହି ପୁରୁଣା ଖଞ୍ଜା ଜଣେ ଗ୍ରାମବାସୀଙ୍କୁ ବିକ୍ରୀ କରିଦେଇ ଗାଁ ସୀମା ଧାରକୁ ଲାଗିଥିବା ନୂଆ କଣା ଏକ ମାଣିକିଆ ତୋଟାବାଡ଼ିର ନଇକୂଳ ଅଂଶରେ ଇଟାକାଠର ଝକଝକ ଝକଝକ ବିଖଣ୍ଡ ବିଶିଷ୍ଟ ବିଶାଳ ଖଞ୍ଜା ତୋଳି ସପରିବାର ସେଠାକୁ ଉଠିଗଲେ । ଏହା ଫଳରେ ସମଗ୍ର ଗ୍ରାମର ପରିବାର ଗୋଷ୍ଠୀଠାରୁ ତାଙ୍କ ପରିବାରଟି ଏକପ୍ରକାର ବିଚ୍ଛିନ୍ନ ହୋଇଗଲା ।

ଏଣୁ ଉତ୍କଳବାବୁ ଯେବେ କଟକରୁ ଆସନ୍ତି, ସେ ଖବର ଜଣାପଡ଼ିଗଲାମାତ୍ରେ ଗ୍ରାମବାସୀ-ମାନେ ଦୁର୍ଲଭ ଅତି ଭବ୍ୟ ବ୍ୟକ୍ତି (V. I. P.)ଙ୍କୁ ଭେଟିବାକୁ ତାଙ୍କୁ ଦର୍ଶନ କରିବାକୁ ଉତ୍ସୁକ ହୋଇଉଠନ୍ତି । ସବାରିକାନ୍ଧିଆ ବେହେରାଦଳ ଖଞ୍ଜା ରହିଥାନ୍ତି, ଉତ୍କଳବାବୁ କଟକରୁ ଆସିବା ଦିନ ସେମାନେ ସବାରି ସହ ଧାନମଣ୍ଡଳ ଷ୍ଟେସନରେ ଜଗି ବସିଥାନ୍ତି ଖାମିଦ ସାଆନ୍ତେ ରେଲରୁ ଓହ୍ଲାଇବାମାତ୍ରେ ତାଙ୍କୁ ସବାରିରେ ବସାଇ ଘରକୁ ନେଇଆସିବାକୁ । କଟକ ଫେରିବା ଦିନ ମଧ୍ୟ ଉତ୍କଳବାବୁ ସେହି ସବାରିରେ ଷ୍ଟେସନକୁ ଯାଆନ୍ତି । ତାଙ୍କ ଗୋଡ଼ କେବେ ମାଟିରେ ଲାଗେନାହିଁ ।

କଟକ ଫେରିବା ଉଦ୍ଦେଶ୍ୟରେ ଦାମୋଦରବାବୁ ଯେଉଁଦିନ ସକାଳ ଆଠଟା ସୁଦ୍ଧା ଗାଆଁ ଛାଡ଼ନ୍ତି, ତାର ଠିକ୍ ପୂର୍ବଦିନ ଅପରାହ୍ଣ ଚାରିଟା-ପାଞ୍ଚଟା ମଧ୍ୟରେ ଘରୁ ବାହାରନ୍ତି ଦାଣ୍ଡ ମଧ୍ୟଦେଇ ଗ୍ରାମ ପରିକ୍ରମା କରିବାକୁ । ଯେଉଁ ଦିବସର ଦୁର୍ଭାଗ୍ୟଜନକ ଘଟଣାଟି ଏଠାରେ ଉଲ୍ଲେଖ କରାଯାଉଛି, ସେଦିନ ଛୁଇଁଲେଉଟ ପରେ ଉତ୍କଳବାବୁ ଅଭ୍ୟସ୍ତ ରୀତିରେ ପାକଲା ଗାମୁଛା ବାମ ସ୍କନ୍ଧରେ ମଣ୍ଡି ପାଦବନ୍ଧ ଖଡ଼ମର ଠକ୍-ଠକ୍ ପ୍ରହାରରେ ଗାଆଁ ଦାଣ୍ଡ ପ୍ରକମ୍ପିତ କରି ଆଗେ ଆଗେ ଚାଲିଥାନ୍ତି, ତାମ୍ବୂଲକରଙ୍କ ବାହାରପୁ ମାଷ୍ଟର (ଗୁମାସ୍ତା ରସାନନ୍ଦ ଗୋଚ୍ଛସ୍ୱତ) ଛାଇପରି ତାଙ୍କ ପଛେ ଅନୁସରିଥାଏ । ମତ୍ତଗଜ ଗତିରେ ପଦ୍ଧୁଣ୍ଡି ପକାଇ ପକାଇ ଉତ୍କଳ ଆପଣେ ସାମନାକୁ ଆସୁଥିବା ଜ୍ଞାତିଜନମାନଙ୍କ ସହିତ ମାମୁଲି ସମ୍ଭାଷଣ କରି କରି ଆଗଉଥା'ନ୍ତି । ଗାଆଁ ଦାଣ୍ଡ ମଝି ଚଉଛକଠାରେ ତାଙ୍କୁ ଅଟକିବାକୁ ହେଲା, ତିନିପଟରୁ ମୁରବି ବୟସର ମୁଖିଆ ମୁଖିଆ ମୁଣ୍ଡିଆଳଯାକ ଉଚ୍ଚ ପିଣ୍ଡାରୁ ଗୋଡ଼ ଖସେଇ ତାଙ୍କୁ ଆସି ଘେରିଗଲେ । ଗ୍ରାମର ହାଲହକିକତ, ହାନିଲାଭ ଆଦି ତାଜା ଖବର ସ୍ୱଭାବତଃ ଆଲୋଚନାର ପ୍ରଧାନ ବିଷୟବସ୍ତୁ ହେଲା । ଚଉଛକର ସେହି ଠିଆ-ଅଧିବେଶନ ପ୍ରାୟ ଘଣ୍ଟାଏ କାଳ ଚାଲିଲା । ଆଲୋଚନାରେ ଅଂଶ ଗ୍ରହଣ କରିଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ବର୍ଷୀୟାନ୍ ପୁରୁଷୋତ୍ତମ କର ଥିଲେ ଅପେକ୍ଷାକୃତ ଅଳ୍ପବିତ୍ତ, ସରଳଚିତ୍ତ, ନିରୀହ ଓ ସ୍ପଷ୍ଟବାକ୍ । ଆଲୋଚନା-ସମାଲୋଚନା ମଧ୍ୟରେ ପୁରୁଷୋତ୍ତମ ପ୍ରାସଙ୍ଗିକତାର ପରିସର ବାହାରକୁ ନଯାଇ କ'ଣ ଗୋଟାଏ ଗଣ୍ଠି କଥା କହିଦେଲେ କେଜାଣି ନ୍ୟସ୍ତସ୍ୱାର୍ଥ ଦାମୋଦରଙ୍କୁ ତାହା ନ ସୁହାଇବାରୁ ସେ ହଠାତ୍ ଉତ୍କ୍ଷିପ୍ତ ହୋଇଉଠିଲେ ଏବଂ ମଦଗର୍ବରେ ଅନ୍ଧ ହୋଇ ପୁରୁଷୋତ୍ତମଙ୍କ ଗାଲରେ ଠାସ୍କିନା ଏଡ଼େ ଘାଏଁ ଏକ ନିର୍ଘାତିଆ ବ୍ରହ୍ମଚାପୁଡ଼ା ବଜେଇଲେ ଯେ, ତାଙ୍କ ମୁଣ୍ଡ ଝାଇଁ-ଝାଇଁ ହୋଇଗଲା—ସେ ଠିଆହେବାର ଶକ୍ତି ହରାଇ ସନ୍ନିହିତ ପିଣ୍ଡାଧାରକୁ ଧରି ତଳେ ବସିପଡ଼ିଲେ ।

ନିସ୍ତବ୍ଧତାର ଗୋଟାଏ ଅସ୍ୱାଭାବିକ ଶୂନ୍ୟତା ଚଉଛକକୁ ଆଚ୍ଛନ୍ନ କରି ରହିଲା । ପ୍ରତ୍ୟକ୍ଷଦର୍ଶୀ ଏତେ ଲୋକଙ୍କ ମଧ୍ୟରୁ ଜଣେ ସୁଦ୍ଧା କାହାରି ତୁଣ୍ଡରୁ ଦାମୋଦରଙ୍କର ଏତାଦୃଶ ବିବେକହୀନ ଔଦ୍ଧତ୍ୟ ବିରୋଧରେ ପଦେହେଲେ ପ୍ରତିବାଦ ବାହାରିଲା ନାହିଁ । ଭୟରେ ସମସ୍ତେ ନୀରବଦ୍ରଷ୍ଟାରୂପେ କେବଳ ଠିଆହୋଇ ରହିଥାନ୍ତି ।

କିଛି ସମୟ ପରେ ପୁରୁଷୋତ୍ତମ ଟିକିଏ ସାଷ୍ଟାମ ହୋଇ ଆହତ ଗଣ୍ଡସ୍ଥଳରେ ହସ୍ତ ରଖି ଖଣ୍ଡିତ କ୍ଷୀଣ ସ୍ୱରରେ ଦାମୋଦରଙ୍କୁ ଲକ୍ଷ୍ୟ କରି କହିଲେ, "ହଇରେ ଦାମ, ଯେତେବେଳେ ମୁଁ ତୋର ବଡ଼ଭାଇ, ତୁ ମତେ ମାଇଲୁ ! (ଊର୍ଦ୍ଧ୍ୱକୁ ଚାହିଁ) ହଉ, ମୋର ଭଗବାନ୍ ଅଛନ୍ତି ।"

ବ୍ରହ୍ମାଣ୍ଡପତି ଭଗବାନ୍ ହେଉଛନ୍ତି ଅନ୍ତର୍ଯାମୀ—ଦୀନଦୁଃଖୀଙ୍କ ଅନ୍ତରର ବ୍ୟଥା ବୁଝନ୍ତି । ସେ ପୁଣି ସର୍ବଦ୍ରଷ୍ଟା, ସର୍ବଶ୍ରୋତା, ସର୍ବଜ୍ଞାତା । ମଣିଷ ଯେତେବେଳେ ଯାହା କରେ ତାକୁ ଦେଖିପାରନ୍ତି, ଯାହା କହେ ତାକୁ ଶୁଣିପାରନ୍ତି, ଯାହା ମନରେ ଭାବେ ତାକୁ ଜାଣି-ପାରନ୍ତି—'ଯାହା ଯେ କରଇ ଯାହା ଯେ କହଇ ଯାହା ଯେ ଚିନ୍ତଇ ମନେ, ଜଗତର କର୍ତ୍ତା ପରମ ଈଶ୍ୱର ଜାଣୁଛନ୍ତି ପ୍ରତି କ୍ଷଣେ ।' ନିରୀହ ଅସହାୟ ପୁରୁଷୋତ୍ତମ ଶୂନ୍ୟାକାଶ ଆଡ଼କୁ ଅନାଇ ମନେ ମନେ କ'ଣ କହିଲେ, କି ଭାଷାରେ ଗୁହାରି କଲେ, ଦୁଃଖ ଜଣାଇଲେ, ନ୍ୟାୟପାଳ ସେହି ଭଗବାନ ତାହା ଜାଣନ୍ତି । ଗରିବର ବନ୍ଧୁ ଭଗବାନ୍ କି ନ୍ୟାୟ ବିଚାର କଲେ, କି ରାୟ ଦେଲେ, ତାହା ଅବ୍ୟବହିତ ପରବର୍ତ୍ତୀ ଶୀର୍ଷାନ୍ତର୍ଗତ କେତୋଟି ପୃଷ୍ଠାରେ ବର୍ଣ୍ଣିତ ଘଟଣାପ୍ରବାହରୁ ସହଜେ ପ୍ରତିପନ୍ନ ହେବ । ଚଉଛକର ସେହି ବିଷାଦବୋଲା କଳଙ୍କିତ ସଭା ଏହାପରେ ଗୁଆଁକୁ ମଉଳିଗଲା । କେହି କାହାରି ମୁହଁକୁ ନ ଚାହିଁ କ୍ଷୁବ୍‌ଧ ଚିତ୍ତରେ ନିଜ ନିଜ ଗୃହକୁ ବାଟ କାଟିଲେ । ଦାମୋଦରବାବୁ ସ୍ୱୀୟ ଅପକର୍ମର ଦୂଷଣପାଇଁ ଟିକିଏହେଲେ ଅନୁଶୋଚନାର ଚିହ୍ନ ପ୍ରକାଶ ନ କରି ଗୁମାସ୍ତା ସହି ଘରମୁଖୀ ହେଲେ । ନିରପରାଧ ପୁରୁଷୋତ୍ତମ ମଥା ପାତି ନୀରବରେ ସମସ୍ତ ଲାଞ୍ଛନା ସହିଗଲେ—

> 'ଧିକ ଏ ସଂସାର ପ୍ରବଳର ପାଇଁ
> ସବୁ କଥାରେ ସୁଯୋଗ,
> ଦୁର୍ବଳର ଖାଲି- ଲାଞ୍ଛନାଭୋଗ (?)
> ନୀରବେ ଲାଞ୍ଛନା ଭୋଗ ।'

## ନ୍ୟାୟନିଯନ୍ତାଙ୍କ ରାୟ

ସର୍ବଦର୍ପଦଳନ ମହାବଳବନ୍ତ କାଳପୁରୁଷ ବହୁମୂଲ୍ୟ ବର୍ତ୍ତମାନର ପ୍ରତ୍ୟେକ ମୁହୂର୍ତ୍ତକୁ ସୁବିରାଟ ଅତୀତର ତମୋମୟ ବିବରକୁ ଠେଲିଦେଇ ଆଗକୁ ଆଗକୁ ପ୍ରବଳ ବେଗରେ ମାଡ଼ି ଚାଲିଲ ଉଜ୍ଜ୍ୱଳ ଭବିଷ୍ୟତର ସମ୍ଭାବ୍ୟ ସମ୍ଭାର ପ୍ରସ୍ତୁତି ପାଇଁ । ସମୟର ଚକ ଅନବଚ୍ଛିନ୍ନ ଧାରାରେ ଏପରି କ୍ଷିପ୍ରତମ ଗତିରେ ଗଡ଼ିଯାଏ ଯେ, ଗାଣିତିକ ସୂତ୍ର ତାହା କଳନା କରିବାକୁ ସମ୍ପୂର୍ଣ୍ଣ ଅକ୍ଷମ ହୋଇଥାଏ, ଯେହେତୁ ମାନବୀୟ ମନୀଷା ତା' ପାଖରେ

ଚିର ପରିଚିତ । ଦେଖି ଦେଖି ବର୍ଷକରୁ ବେଶୀ ସମୟ ଅତିକ୍ରାନ୍ତ ହୋଇ ସାଲସୀମା (୧୯୨୦ ଡିସେମ୍ବର)ର ପରିଧି ଡେଇଁବାକୁ ଟାପୁ ଟେକିଲା । ମୋର ମାଇନର୍ ପରୀକ୍ଷାର ପାସ୍ ଫଳ ବାହାରି ବଡ଼ଦିନ ଛୁଟି ପୂର୍ବରୁ ସାର୍ଟିଫିକେଟ୍ ଖଣ୍ଡି ହାତପଇଠ ହୋଇଯାନ୍ତେ ଆନନ୍ଦୋଦ୍‌ବେଳିତ ମନ ଥରେ କଟକ ଘୂରି ଆସିବାକୁ ଉଦ୍‌ବିଗ୍ନ ହୋଇଉଠିଲା । ଡିସେମ୍ବର ୨୦ ତାରିଖ ଦିନ ରେଳ ଯୋଗେ କଟକ ଆସି ଦାମୋଦର ବାବୁଙ୍କ ଯାଉଁଳିଆପଟିସ୍ଥ ବସାଘରେ ଅବସ୍ଥାନ କଲି । ବଡ଼ଦିନ ଛୁଟିପାଇଁ ରେଭେନ୍‌ସା କଲେଜ ସେତେବେଳେ ବନ୍ଦ ରହିଥିଲେ ହେଁ ବି. ଏସ୍‌ସି. ଅଧ୍ୟାୟୀ ବିଦ୍ୟାଧର ଛୁଟିକାଳ ମଧ୍ୟରେ କଟକରେ ରହିବେ କି କଟକ ବାହାର ଅନ୍ୟ କେଉଁଠାକୁ ଯିବେ, ସେପର୍ଯ୍ୟନ୍ତ ସ୍ଥିର କରି ନଥାନ୍ତି । ଜ୍ୟେଷ୍ଠ ରତ୍ନାକର ପିତୃ ନିର୍ଦ୍ଦେଶରେ ଦିନ ଚାରିଦିନ ପାଇଁ ଗ୍ରାମକୁ ଚାଲିଯାଇଥା'ନ୍ତି । ସେ କଟକ ଫେରିଲେ ଦାମୋଦରବାବୁ ଘରକୁ ଯାଇ ଛୁଟିଦିନତକ ସେଇଠି କଟେଇବେ ।

ଦାମୋଦରବାବୁ ସକାଳେ ଚେମ୍ବର କାମ କରନ୍ତି । ଦଶଟାଠାରୁ ପାଞ୍ଚଟା କଚେରି କାମ କରି ପକେଟ ଗରମ କରି ବସାକୁ ଫେରନ୍ତି । ପୁଣି ଆଠଟାଠାରୁ ସାଢ଼େଦଶ ଯାଏ ଚେମ୍ବରରେ ରହି ଆସନ୍ତାକାଲିର ମକଦ୍ଦମା ପାଇଁ ପ୍ରସ୍ତୁତ ହୁଅନ୍ତି ଏବଂ ମହକିଲ ପକ୍ଷର ସାକ୍ଷୀଗୁଡ଼ିକୁ ତାଲିମ କରନ୍ତି । ତାଙ୍କର ବିଶ୍ରାମ ଓ ଶୟନସ୍ଥଳ ହେଉଛି ଉପର ମହଲାର ନିର୍ଜନ କକ୍ଷଟି । ସେଠିକି ପ୍ରାୟ କେହି ଯାଆନ୍ତି ନାହିଁ ନିତାନ୍ତ ଦରକାରୀ କାମ ନପଡ଼ିଲେ । ତାଙ୍କ ଛଡ଼ା ବାକୀ ସମସ୍ତେ ତଳ ମହଲାର ବିଭିନ୍ନ ବଖରାରେ ରହନ୍ତି, ବନ୍ଧୁବାନ୍ଧବ, ଗାଆଁଲୋକ, ଆଗନ୍ତୁକ ସମେତ । ଏହି ଛୁଟିଦିନମାନଙ୍କରେ ବିଦ୍ୟାଧର କେତେବେଳେ କୁଆଡ଼େ ଯାଆନ୍ତି ଓ କେତେବେଳେ ବସାକୁ ଫେରନ୍ତି, ପିତା ଦାମୋଦର ଆଦୌ ଲକ୍ଷ୍ୟ କରିପାରନ୍ତି ନାହିଁ । ବିଦ୍ୟାଧର ମତେ ବି ତାଙ୍କ ବେଟାଇମ୍ ଗତିବିଧିର କୌଣସି ଗୁମର ଘୁଣାକ୍ଷରେ ଜଣାଇଦିଅନ୍ତି ନାହିଁ । ମୋ ଆସିବାର ସମ୍ଭବତଃ ତୃତୀୟ କି ଚତୁର୍ଥ ଦିବସ ଅର୍ଥାତ୍ ୧୯୨୦ ଡିସେମ୍ବର ୨୨ ତାରିଖ କିମ୍ବା ୨୩ ତାରିଖ, ସେହିଦିନ କିଛି ଅପରାହ୍ଣ ସାଢ଼େ ଚାରିଟାବେଳେ ମତେ କହିଲେ, "ମୋ ସାଙ୍ଗରେ ଆ, ଗୋଟାଏ ସ୍ୱଦେଶୀ ସଭା ଦେଖିଆସିବୁ, ଜଲ୍‌ଦି ଜାମାଟା ପିନ୍ଧିପକା ।"

ଏଭଳି ଶ୍ରଦ୍ଧାଳୁ ସ୍ୱରର ଦରଦୀ ଡାକ ତାଙ୍କ ମୁହଁରୁ ଶୁଣିବା ଏଇ ମୋର ପ୍ରଥମ । ଅବିଳମ୍ବେ ହାଫ୍‌ସାର୍ଟଟା ଦେହରେ ଗଳେଇପକେଇ ତାଙ୍କ ପଛେ ପଛେ ବାହାରିପଡ଼ିଲି । (ସେତେବେଳପର୍ଯ୍ୟନ୍ତ କଟକରେ ଚମଡ଼ା ଚପଲ କି ଷ୍ଟ୍ରାପ୍ ଚପଲର ପ୍ରଚଳନ ଆରମ୍ଭ ହୋଇନଥାଏ ।) ଯାଉଁଳିଆପଟି ଗଳିରୁ ସିଧା ଉତ୍ତରମୁଖା ପାହଣ୍ଡ ପକାଇ କେଉଟ ସାହି ଓ ରାମଶଙ୍କର ହସ୍‌ପିଟାଲ୍ ଟପି ମୁହାଁମୁହିଁ ଅବସ୍ଥିତ ଜେଲ ଫାଟକ ଓ ପ୍ରିଣ୍ଟିଙ୍ଗ କମ୍ପାନୀ ଫାଟକର ମଧ୍ୟବର୍ତ୍ତୀ ପ୍ରଶସ୍ତ ସଦର ରାସ୍ତାଏଁ ରାସ୍ତାଏଁ ଆଗକୁ ମାଡ଼ି ପହଞ୍ଚିଗଲୁଁ ଯାଇ 'ଚିନକୋଣିଆ ବଗିଚା' ଛକରେ । କେବେ ଥିଲା ସିନା ଫଳଫୁଲରେ ଘଞ୍ଚଘନ ବିସ୍ତୃତ

ବଗିଚ୍ଚ, ଏବେ ଶ୍ୟାମଘନଘାସାଚ୍ଛନ୍ନ ପ୍ରକାଣ୍ଡ ଖୋଲା ପଡ଼ିଆ—'ପ୍ୟାରୀମୋହନ ଏକାଡେମୀ'ର ଠିକ୍ ପଛପଟେ, ସହର ରାସ୍ତାର ପଶ୍ଚିମପାର୍ଶ୍ୱ ଧାରକୁ ବରାବର ଲାଗି ।

ଆସିବା ବାଟରେ ମୁଁ ବିଦ୍ୟାଧରଙ୍କୁ ପଚାରିଥିଲି, "ତୁମେ 'ସ୍ୱଦେଶୀ ସଭା' ବୋଲି ଯାହା କହିଲ, ସେଇଟା କି ପ୍ରକାରର ସଭା ?" ସେ ବୁଝାଇଦେଲେ, "ଶୋଷକ ବିଦେଶୀ ସରକାରକୁ ଏ ଦେଶରୁ ନିକାଲିଦେଇ 'ସ୍ୱରାଜ୍ୟ' ହାସଲ କରିବା ଲାଗି ଆମ ସ୍ୱଦେଶୀ ନେତାଏ ଯେଉଁ ସଭା କରି ନିରୀହ ନିଷ୍ପେଷିତ ଜନସାଧାରଣଙ୍କୁ ମହାତ୍ମା ଗାନ୍ଧିଙ୍କ ବାର୍ତ୍ତା ଶୁଣାଉଛନ୍ତି, ସେହି ସଭାକୁ 'ସ୍ୱଦେଶୀ ସଭା' ବା କଂଗ୍ରେସୀ ସଭା କୁହାଯାଏ । ଭାରତର ଜାତୀୟ କଂଗ୍ରେସ ସ୍ୱାଧୀନତାପ୍ରାପ୍ତି ପାଇଁ ଯେଉଁ ଅହିଂସା ସଂଗ୍ରାମ ଆରମ୍ଭ କରିବାକୁ ଯାଉଛି, ତାର ଏକଚ୍ଛତ୍ର ନେତା ଓ ଚାଳକ ହେଉଛନ୍ତି ଜାତିପିତା ମହାମାନବ ଗାନ୍ଧିଜୀ । ନିକଟ ଅତୀତରେ କଲିକତା ମହାନଗରୀରେ କଂଗ୍ରେସର ଏକ ଜରୁରୀ ଅଧିବେଶନ ବସି 'ଅସହଯୋଗ ଆନ୍ଦୋଳନ' (Non-Co-operation Movement) ତୁରନ୍ତ ଭାରତର କନ୍ଦିବକନ୍ଦି ପ୍ରବର୍ତ୍ତନ କରିବାର ଚୂଡ଼ାନ୍ତ କାର୍ଯ୍ୟକ୍ରମ ଧାର୍ଯ୍ୟ ହୋଇଯାଇଛି । ତଦନୁଯାୟୀ ପୁରୋଯାୟୀ ଜାତୀୟ ବୀର ଲାଲା ଲଜପତ୍ ରାୟ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ହସ୍ତରେ ଓଡ଼ିଶା କଂଗ୍ରେସର ନେତୃତ୍ୱ-ଭାର ଅର୍ପଣପୂର୍ବକ ଅସହଯୋଗ ଆନ୍ଦୋଳନ ଯେପରି ସହରନଗର-ଠାରୁ ଆରମ୍ଭ କରି ପଲ୍ଲୀପଡ଼ା ଗାଁଗହଳି ପର୍ଯ୍ୟନ୍ତ ସର୍ବତ୍ର ସବୁ ଶ୍ରେଣୀର ଲୋକଙ୍କୁ ଅନୁପ୍ରାଣିତ କରିବ, ତାହାର ବ୍ୟାପକ ସାଙ୍ଗଠନିକ ଯୋଜନା ସଫଳତାର ସହିତ କାର୍ଯ୍ୟକାରୀ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ଏହି ବିରାଟ ଦାୟିତ୍ୱକୁ ଦେଶଭକ୍ତ ଦାସେ ଆପଣେ (ଗୋପବନ୍ଧୁ ଦାସ) ପବିତ୍ର ଜାତୀୟ କର୍ତ୍ତବ୍ୟ ଜ୍ଞାନରେ ଆନନ୍ଦର ସହିତ ସ୍କନ୍ଧରେ ବହନ କରିଥିଲେ । ସେହି ପରିପ୍ରେକ୍ଷୀରେ ତାଙ୍କର ଆହ୍ୱାନରେ ଆଜି ଏ ଚଉକୋଣିଆ ବଗିଚ୍ଚ ପଡ଼ିଆରେ ଅସହଯୋଗ ଆନ୍ଦୋଳନର ପ୍ରଥମ ସଭା ଆୟୋଜିତ ହୋଇଛି ।"

ମୁଁ ଅଧିକ ଜିଜ୍ଞାସୁ ହୋଇ ବିଦ୍ୟାଧରଙ୍କୁ ପଚାରିଲି, ପାରିଭାଷିକ "ଅସହଯୋଗ' ଶବ୍ଦଟିର ରାଜନୀତି ବ୍ୟାଖ୍ୟା କ'ଣ, ସଂକ୍ଷେପରେ ମତେ ସମଝାଅ ।" ସେ ସରଳଭାବରେ ବୁଝାଇ-ଦେଲେ, ଅଳପକେ କହିଲେ 'ଅସହଯୋଗ'ର ଅର୍ଥ ହେଉଛି 'ସମ୍ପୂର୍ଣ୍ଣ ବିଦେଶ ବର୍ଜ୍ଜନ' । ଦୈନନ୍ଦିନ ସାମାଜିକ ବ୍ୟାପାରରେ ବେପାରୀ ବିଦେଶୀ ସରକାରକୁ ସବୁମତେ ବାଈଁନ୍ଦ ଅର୍ଥାତ୍ ତା'ଠାରୁ ସମସ୍ତ ସମ୍ପର୍କ ପ୍ରତ୍ୟାହାର ଏହାର ତାତ୍ପର୍ଯ୍ୟ । ଏହି କଥାଟାକୁ ବିସ୍ତାର କହିଲେ, ଯାବତୀୟ ବିଲାତି ଦ୍ରବ୍ୟ ପରିହାର ଓ ତା' ବଦଳରେ ସ୍ୱଦେଶୀ ଦ୍ରବ୍ୟ ବ୍ୟବହାର, ଯେପରି ବିଲାତି ବସ୍ତ୍ର ଆଦୌ ନ ପିନ୍ଧି ଦେଶୀ ଅରଟରେ ସୂତାକାଟି ସେହି ସୂତାରେ ତନ୍ତୀଦ୍ୱାରା ଦେଶୀ ତନ୍ତରେ ଭିନ୍ନ ଭିନ୍ନ ପ୍ରକାରର ବସ୍ତ୍ର ବୁଣାଇ ସେହିସବୁକୁ ହିଁ ଧୋତି, ଶାଢ଼ି ଓ ପୋଷାକ ରୂପେ ପରିଧାନ କରିବା ଆଉ ସହରସ୍ଥ କୋର୍ଟ କଚେରୀକୁ ନଯାଇ ଗାଆଁ ପଞ୍ଚାୟତ କିମ୍ବା ଗ୍ରାମ ନିକଟସ୍ଥ ଆଞ୍ଚଳିକ ପଞ୍ଚାୟତ ମାଧ୍ୟମରେ ସକଳବିଧ ବିବାଦ-ମାମଲା ସୁରୁଖୁରୁରେ ଫଇସଲା କରାଇନେବା, ସ୍କୁଲକଲେଜର ଛାତ୍ରଛାତ୍ରୀମାନେ ପଢ଼ା

ସ୍କୁଲ୍ ଓ ସରକାରୀ ଦପ୍ତରରେ ଗୋଲାମୀ କରୁଥିବା କର୍ମଚାରୀମାନେ ନିଜ ନିଜ ନୌକରୀ ଛାଡ଼ି ସହରବଜାରରେ ଓ ଗାଁଏଁ ଗାଁଏଁ ବୁଲି ବାପୁଜୀ-ପ୍ରବର୍ତ୍ତିତ ଅସହଯୋଗ ଆନ୍ଦୋଳନକୁ ଜୋର୍‌ଦାର କରିବାକୁ ଓ ଗୋଟିଏ ସୂଚୀ ବିଲାତି ଜିନିଷ କୌଣସି ଦୋକାନରୁ କେହି ନକିଣିବାକୁ ଲୋକମାନଙ୍କୁ ପ୍ରବର୍ତ୍ତାଇବା ଉଦ୍ୟମରେ ଆପ୍ରାଣ ଲାଗିପଡ଼ିବା ଇତ୍ୟାଦି ।

ଆମେ ଦୁହେଁ ସଭାସ୍ଥଳରେ ପଦାର୍ପଣ କଲାବେଳକୁ ବାଳିଶ ପଚିଶ ସହସ୍ର ମାତ୍ର ଲୋକ ସେଠାରେ ଉପସ୍ଥିତ ଥିଲେ । କିନ୍ତୁ ସଭା ଆରମ୍ଭିବା ସମୟ ପାଖ ହୋଇଆସନ୍ତେ ଅସୁମାରି ଜନସ୍ରୋତ ଚାରିଆଡ଼ୁ ଆସି ପଡ଼ିଆଟିରେ ଅକାଡ଼ି ହୋଇପଡ଼ିଲା । ସାନ୍ଧି ସାନ୍ଧିଁ ଏଡ଼େ ବଡ଼ ଖୋଲା ଭୂଇଁଟା ମୁଣ୍ଡମାଳରେ ପୂରି ହୋଇଯାଇ ଜନସମୁଦ୍ରରେ ପରିଣତ ହୋଇଗଲା । ପଡ଼ିଆର ଦକ୍ଷିଣ ପାର୍ଶ୍ୱରେ ବେଦୀ ଆକୃତିର ଅସ୍ଥାୟୀ ପଟାମଞ୍ଚଟିଏ ଗଢ଼ା ହୋଇଥିଲା— ତାହାର ଉପରେ ଠିଆ ହୋଇ ସଭାପତି ଓ ବକ୍ତାଏ ଯଥାକ୍ରମେ ଭାଷଣ ଓ ବକ୍ତୃତା ଶୁଣାଇବା ପାଇଁ । ସେହି ମଞ୍ଚର ସାମନା ଧାରରେ ଧ୍ୱନିକ୍ଷେପକ (microphone) ଯନ୍ତ୍ରଟିଏ ରଖାଯାଇଥିଲା—ଭାଷଣ ଓ ବକ୍ତୃତାକୁ ଶ୍ରୋତୃସମାବେଶର ବିଶାଳ ବଳୟ ମଧ୍ୟରେ ଉଚ୍ଚସ୍ୱରରେ ବିକ୍ଷେପ କରିବାଲାଗି । ପୁଣି ଏକପଟିଆ ହୋଇ ସରକାର-ସମର୍ଥକ ବିଲାତିଫଉଜ-ପରିଚାଳିତ ଇଂରାଜୀ ଦୈନିକ ସମ୍ବାଦପତ୍ର (Statesman)ର ରୋଟାଏ ରିପୋର୍ଟର ଉପରେ ଉପର୍ଯ୍ୟୁପରି ଫର୍ଦ୍ଦି ରହିଥାଏ । ଏହି ସମୟରେ ପୁରା ସାହେବୀ କାଏଦାରେ ଆପାଦମସ୍ତକ ବିଲାତି ବେଶପୋଷାକ-ପରିହିତ ଜଣେ କଳା-ମଚମଚ ଚେହେରାର ଓଜସ୍ୱୀ ଯୁବକ ସଭା-ଚତ୍ୱରର ଆଡ଼କୁ ମାଡ଼ିଆଇଲେ । ସମବେତ ଦର୍ଶକମଣ୍ଡଳୀର ସହସ୍ର ସହସ୍ର ଚକ୍ଷୁ ସେହି ପାଶ୍ଚାତ୍ୟ ଭେକଧାରୀ ଯୁବକଟିର ଛଇଳଛଟକିଆ ଚାଲିଚାଲି ଠାଣିମାଣି ଉପରେ ହିଁ ସ୍ୱଭାବତଃ ନିବଦ୍ଧ ହୋଇ ରହିଲା । ସହସା ଚାରିଆଡ଼ୁ ଗୁଞ୍ଜରଣ ଉଠିଲା—ଏ ଆକର୍ଷଣୀୟବେଶୀ କଳାସାହେବ ଟୋକାଟି କିଏ ? ଏହି ପ୍ରଶ୍ନବାଚୀର କୌତୂହଳ ଅଳ୍ପ କେତୋଟି ମିନିଟ ପରେ ଝାଉଁଳି ପଡ଼ିଗଲା । ସମସ୍ତେ ପରସ୍ପର ପଚରାପଚରି ହେଉ ହେଉ ଜଣାପଡ଼ିଲା ଯେ, ଏହି ବଳିଷ୍ଠବାହୁ ତେଜସ୍ୱାନ୍ ଯୁବକଙ୍କ ନାମ ଯଦୁମଣି ମଙ୍ଗରାଜ—ରେଭେନ୍‌ସା କଲେଜରେ ବି. ଏ. ଶ୍ରେଣୀର ଅଧ୍ୟାୟୀ, ଶାଣିତବାକ୍ ଛାତ୍ରନେତା, ସଭା-ସମ୍ମିଳନୀରେ ବିଦ୍ୟୁଜ୍ଜିହ୍ୱ ବକ୍ତା । ଏଣେ ବିଦ୍ୟାଧର ମତେ ମଙ୍ଗରାଜଙ୍କ ବିଷୟ[illegible] ସବିସ୍ତାର ବନେଇଚୁନେଇ କହିସାରିଥା'ନ୍ତି ।

ନିର୍ଦ୍ଧାରିତ ସମୟରେ ସଭାକାର୍ଯ୍ୟ ଆରମ୍ଭ ହେଲା । ଦେଶପ୍ରାଣ ଗୋପବନ୍ଧୁ ମଞ୍ଚ ଉପରେ ଦଣ୍ଡାୟମାନ ହୋଇ ନିଜ ସ୍ୱଭାବସୁଲଭ ଦେଶାତ୍ମବୋଧକ ଧୀରୋଦାତ୍ତ ଶୈଳୀରେ ଆୟୋଜିତ ସଭାଟିର ଉଦ୍ଦେଶ୍ୟ ଓ ଅସହଯୋଗ ଆନ୍ଦୋଳନର ସ୍ୱରୂପ, ତାତ୍ପର୍ଯ୍ୟ ତଥା କାର୍ଯ୍ୟକ୍ରମକୁ ପୁଙ୍ଖାନୁପୁଙ୍ଖରୂପେ ବୁଝାଇଦେଲେ । ଆଗ୍ରହୀ ଶ୍ରୋତାମହଲ ତାଙ୍କ ହୃଦସ୍ପର୍ଶୀ ଭାଷଣକୁ ଉତ୍କଣ୍ଠା ଓ ଉତ୍କର୍ଣ୍ଣ ହୋଇ ଏକ ଧ୍ୟାନରେ ଶ୍ରବଣ କରୁଥାନ୍ତି । ମହାତ୍ମା ଗାନ୍ଧୀଙ୍କ ହାତମୁଠା ବଳିଷ୍ଠ କରିବାପାଇଁ ଓ କଂଗ୍ରେସର ସ୍ୱାଧୀନ ସଂଗ୍ରାମକୁ ସଫଳ କରିବା

ପାଇଁ ଓଡ଼ିଶାବାସୀ ଏକନିଷ୍ଠତାର ସହିତ ଏହି ଅସହଯୋଗ ଆନ୍ଦୋଳନରେ ପୂର୍ଣ୍ଣପ୍ରାଣରେ ଯୋଗଦେବାକୁ ତଥା ଜାତୀୟ ମହାସଭା କଂଗ୍ରେସର ସଭ୍ୟଶ୍ରେଣୀଭୁକ୍ତ ହେବାକୁ ସେ ହାତଯୋଡ଼ି ନିବେଦନ କରିଥିଲେ । ଘନ ଘନ କରତାଳି ଧ୍ୱନିରେ ସଭାସ୍ଥଳୀ ଉଚ୍ଛୁଳି-ଉଠୁଥାଏ ।

ଗୋପବନ୍ଧୁ ନିରବଚ୍ଛିନ୍ନ ଏକ ଘଣ୍ଟାକାଳ ଉପସ୍ଥିତ ପରିଷଦରେ ଦେଶବାସୀଙ୍କ ଦାୟିତ୍ୱ-ବୋଧ ଓ କର୍ତ୍ତବ୍ୟ ସମ୍ବନ୍ଧରେ ଦୀର୍ଘ ଭାଷଣର ପରିସମାପ୍ତି କଲେ । ବନ୍ଦିନୀ ଭାରତମାତାଙ୍କୁ ଶୃଙ୍ଖଳମୁକ୍ତା କରିବାର ପ୍ରାଣପାତ ଉଦ୍ୟମରେ ଝାସ ଦେବା ଯେ ପ୍ରତ୍ୟେକ ସନ୍ତାନର ପବିତ୍ର ଜାତୀୟ କର୍ତ୍ତବ୍ୟ, ଏହି ଭାବନା ସେଠାରେ ସବୁରି ଅନ୍ତଃସ୍ଥଳକୁ ସେତେବେଳେ ଆଚ୍ଛନ୍ନ କରିପକାଇଥିଲା । ଏହି ମନସ୍ତାତ୍ତ୍ୱିକ ଆଲୋଡ଼ନ ହିଁ ସେଦିନ ଥିଲା ଗୋପବନ୍ଧୁଙ୍କ ମର୍ମସ୍ପର୍ଶୀ ଗୁରୁତ୍ୱପୂର୍ଣ୍ଣ ଭାଷଣର ସର୍ବପ୍ରଧାନ ବିଶେଷତ୍ୱ ଓ ଅନନ୍ୟ କୃତିତ୍ୱ ।

ଦାସେ ଆପଣଙ୍କ ବକ୍ତବ୍ୟ ଶେଷ ହେବା ସଙ୍ଗେ ସଙ୍ଗେ ମଞ୍ଚବେଦୀ ଛାଡ଼ି ବିଜୁଳିବେଗରେ Statesman ପତ୍ରିକାସ୍ତୂପ ପାଖକୁ ଝପଟିଆସିଲେ ସେହି ମଙ୍ଗରାଜ ଯଦୁମଣି, ବୀରଭୂଜ ଯୁବାଗ୍ରଣୀ । ଦର୍ପଭରେ ସେ ଜ୍ୱଳନ୍ତ ଦିଆସିଲିକାଠି ସାହାଯ୍ୟରେ ଫିରିଙ୍ଗି ଶାସନର ଅନ୍ଧସ୍ତାବକ ଓ ଚାଟୁଗାୟକ ଉକ୍ତ ଇଂରାଜୀ ପତ୍ରିକାର ସ୍ତୂପୀକୃତ ସଂଖ୍ୟାଗୁଡ଼ିକରେ ଅଗ୍ନି-ସଂଯୋଗ କରିଦେଲେ । ସର୍ବଗ୍ରାସୀ ହୁତାଶନ ହୁତ୍‌ହୁତ୍ ହୋଇ ବହ୍ନି ଊର୍ଦ୍ଧ୍ୱଶିଖାବଳି ତୋଳି ବାୟୁତାଡ଼ନାରେ ଚତୁଃପାର୍ଶ୍ୱକୁ ଲହଲହ ଲେଲିହ ରସନାରାଶି ପ୍ରସାରିତ କରିଦେଲା । ମୂଲ୍ୟବାନ୍ ବିଲାତି ଅଙ୍ଗାଭରଣଭୂଷିତ ଧନିକ ସନ୍ତାନ ଯଦୁମଣି ଏହି ସମୟରେ ସମବେତ ବିପୁଳ ଜନତାକୁ ଚମକିତ କରି ମସ୍ତକରୁ ହ୍ୟାଟ୍ ଖୋଲି ପ୍ରଥମେ ସେହି ଉଦ୍ଧତଶିଖ ଅଗ୍ନିଗର୍ଭକୁ ଫିଙ୍ଗିଦେଲେ । ତତ୍ପରେ ଦେହରୁ କ୍ରମାନ୍ୱୟରେ କାଢ଼ି ୱେଷ୍ଟ-କୋଟ୍, ନେକ୍‌ଟାଇ, କଲର୍, ଫୁଲ୍‌ସାର୍ଟ, ବନିଆନ୍, ଫୁଲ୍‌ବୁଟ୍, ସକ୍‌ସ ଓ ଫୁଲ୍‌ପ୍ୟାଣ୍ଟକୁ ଗୋଟିକ ପରେ ଗୋଟିଏ ନିକ୍ଷେପ କରିବାକୁ ଲାଗିଲେ । ଦେହରେ କେବଳ ଅବଶିଷ୍ଟ ରହିଥାଏ ଅଣ୍ଡର୍‌ୱେୟାର୍ ଖଣ୍ଡିକ । ଇତ୍ୟବସରରେ ଦେଶବନ୍ଧୁ ଗୋପବନ୍ଧୁ ଖଣ୍ଡିଏ ଦେଶୀ ତନ୍ତବୁଣା ଖଦଡ଼ ଧୋତି ମଙ୍ଗରାଜଙ୍କ ହସ୍ତକୁ ବଢ଼ାଇଦେଲେ । ଛାତ୍ରନେତା ମଙ୍ଗରାଜ ପରମ ଆଦରରେ ତାହା ପରିଧାନ କଲାବେଳେ ଉପସ୍ଥିତ ସଂଖ୍ୟାତୀତ ବ୍ୟକ୍ତିଙ୍କର ବିଶେଷତଃ ଛାତ୍ରମହଲର କରତାଳିମିଶ୍ରିତ ଉଚ୍ଛ୍ୱଳ ହର୍ଷଧ୍ୱନିରେ ଦିଗ୍‌ବିଦିଗ ମୁଖରିତ ହୋଇ-ଉଠିଥିଲା । ଏବେ ମଙ୍ଗରାଜ ସର୍ବଶେଷ ପରିଧେୟ ସେହି ଅଣ୍ଡର୍‌ୱେୟାର୍‌ଟିକୁ ପୂର୍ଣ୍ଣାହୁତି-ସ୍ୱରୂପ ଅଗ୍ନୟେ-ସ୍ୱାହା କରିଦେଲେ । ସମଗ୍ର ଜନସମବାୟ ନିଷ୍ପଲକ ନୟନରେ ସେହି ଅଭୂତପୂର୍ବ ଦୃଶ୍ୟ ଦେଖି ସ୍ତବ୍ଧଚକିତ ହୋଇଯାଇଥିଲେ । ସେତିକବେଳେ ଗୋପବନ୍ଧୁ ଖଦଡ଼ ଚଦର ଖଣ୍ଡିଏ ତାଙ୍କ ଶୂନ୍ୟ ସ୍କନ୍ଧରେ ମଣ୍ଡିଦେଇଥିଲେ । ନବଦୀକ୍ଷିତ ଯଦୁମଣି ରାଜନୀତିକ ଗୁରୁ ଗୋପବନ୍ଧୁଙ୍କ ଚରଣରେ ପ୍ରଣିପାତପୂର୍ବକ ଆଶୀର୍ବାଦ ଭିକ୍ଷା କରିଥିଲେ । ସେହିଦିନଠାରୁ ଯଦୁମଣି ମଙ୍ଗରାଜ କଲେଜ ଶିକ୍ଷାରେ ଡୋରି ଭିଡ଼ି ଦୃଢ଼ଅଣିଆ କଂଗ୍ରେସ

ମେମ୍ବର ହେବା ସଙ୍ଗେ ସଙ୍ଗେ ଛାତ୍ର ସମ୍ପ୍ରଦାୟର ରାଜନୀତିକ ମଙ୍ଗୁଆଳ ରୂପେ ସମ୍ପୂଜ୍ୟ ହେଲେ । 'ଅଇଘର'ର ପାରମ୍ପରିକ 'ଅଗ୍ନ୍ୟୁତ୍ସବ' ପରି ପରି ଓଡ଼ିଶା କଂଗ୍ରେସର ଏହି ଅସ୍ମାରମ୍ଭ ସଭାରେ ଅନୁଷ୍ଠିତ 'ପତିକାଜଳା ଅଗ୍ନ୍ୟୁତ୍ସବ'ଟି ଅସହଯୋଗ ଆନ୍ଦୋଳନ ଇତିହାସରେ ଏକ ମହାର୍ଘ ସନନ୍ଦରୂପେ ସ୍ଥାନ ପାଇବା ଅତି ସ୍ୱାଭାବିକ ଓ ଯଥାର୍ଥ ।

ଏତଦନନ୍ତର ଉଦ୍‌ଗ୍ରୀବ ଜନତାର ସମ୍ମିଳିତ ଅନୁରୋଧରେ ଯୁବଛାତ୍ରନେତା ଯଦୁମଣି ସିଧାସଳଖ ମାଇକ୍ (ମାଇକ୍ରୋଫୋନ୍) ପାଖରେ ଯାଇ ଉଭା ହୋଇଗଲେ । ଜନମେଳାର ସହସ୍ର ସହସ୍ର ଉତ୍ସୁକ ଡୋଳା ତାଙ୍କର ତେଜୋଦୀପ୍ତ ମୁଖମଣ୍ଡଳରେ କେନ୍ଦ୍ରୀଭୂତ ହୋଇ ରହିଲା । ଘନ ଜନତାକୁ ସମ୍ବୋଧନ କରି ଅନର୍ଗଳ ବକ୍ତା ଯଦୁମଣି ଉଦାତ୍ତ କଣ୍ଠରେ କହିଚାଲିଲେ ଗୁରୁଗମ୍ଭୀର ନାଟକୀୟ ଆଙ୍ଗିକରେ । ସେହି ଜ୍ୱାଳାମୟୀ ବକ୍ତୃତାର ଆଗ୍ନେୟ-ହିଲ୍ଲୋଳ ଶ୍ରୋତୃମଣ୍ଡଳୀର ଅବଚେତନ ମାନସକୁ ସହସା ଉଦ୍ରିକ୍ତ, ଉତ୍ତପ୍ତ ଓ ଉତ୍‌କ୍ଷିପ୍ତ କରିପକାଇଲା । କେବଳ ଏତିକି ନୁହେଁ, ପଶ୍ୟପେହ୍ୱର ଘୃଣ୍ୟ ଫିରିଙ୍ଗି ରାଜତି ବିରୋଧରେ ଘୋରତର ବିତୃଷ୍ଣା ଓ ଅବଜ୍ଞାର ନିଆଁ ହୁଳା ଶ୍ରୋତୃସମାବେଶର ଅନ୍ତରେ ଅନ୍ତରେ ଜଳାଇଦେଲା । ଏହି ଅଗ୍ନିବର୍ଷୀ ବକ୍ତାଙ୍କ କାଳୋପଯୋଗୀ ଡାକରାର ଜବାବରେ ସଭାଙ୍ଗନସ୍ଥ ଶତାଧିକ ବ୍ୟକ୍ତି—ଛାତ୍ର, ଶିକ୍ଷକ, ଓକିଲ, ମୋକ୍ତାର, ବୁଦ୍ଧିଜୀବୀ, ସରକାରୀ କର୍ମଚାରୀ ପ୍ରଭୃତିଙ୍କ ସମେତ—ସ୍ୱତଃପ୍ରବୃତ୍ତିରେ ଆଗେଇଆସି କଂଗ୍ରେସ ମେମ୍ବର ତାଲିକାରେ ନାମ ଦରଜପୂର୍ବକ ମହାଭାରତର ଜାତୀୟ ମହାସ୍ରୋତରେ ନିଜ ନିଜକୁ ସାମିଲ କରି-ଦେଇଥିଲେ । ଏହି ଆତ୍ମସଚେତନ ବ୍ୟକ୍ତିମାନଙ୍କ ମଧ୍ୟରେ ଆମ 'କର'ବଂଶୀ ଯୁବକ ଥିଲେ ଦୁଇଜଣ—ନୀଳକଣ୍ଠ କର, ବିଦ୍ୟାଧର କର । ବିଦ୍ୟାଧର ହେଉଛନ୍ତି ପୂର୍ବବର୍ଣ୍ଣିତ ଓକିଲ ଦାମୋଦରଙ୍କ କଲେଜ-ଅଧ୍ୟାୟୀ କନିଷ୍ଠ ପୁତ୍ର, ଆଉ ନୀଳକଣ୍ଠ ଥିଲେ ଜଣେ ଲୋକପ୍ରିୟ ରାଜକର୍ମଚାରୀ—କଟକ ଚାନ୍ଦନିଚୌକ ପୋଷ୍ଟାଫିସ୍‌ର କର୍ମୋତ୍ସାହୀ ନିଷ୍ଠାପର କିରାନି ।

କଂଗ୍ରେସବିଦ୍ୱେଷୀ ତତ୍କାଳୀନ ବ୍ରିଟିଶ ସରକାରର ପୋଷାଶ୍ୱାନରୂପୀ ତଥାକଥିତ ଶାନ୍ତିଶୃଙ୍ଖଳାରକ୍ଷକ ଜିଲ୍ଲା ମାଜିଷ୍ଟ୍ରେଟ୍, ଏସ୍. ଡି. ଓ., ପୋଲିସ ବିଭାଗୀୟ ଏସ୍. ପି., ଡି. ଏସ୍. ପି., ଇନ୍‌ସପେକ୍ଟର୍, ଗୋଇନ୍ଦା ବିଭାଗୀୟ ବିଭିନ୍ନ ପଦସ୍ଥ ଶ୍ୟେନଚକ୍ଷୁ ସାଦା-ପୋଷାକୀ ଅଫିସର ଓ ରିପୋର୍ଟର୍‌ବୃନ୍ଦରେ ପରିବେଷ୍ଟିତ ଏହି ସର୍ବପ୍ରଥମ ଅସହଯୋଗ ଆନ୍ଦୋଳନ ପ୍ରଚାର ସଭାଟିର ଅସାମାନ୍ୟ ସାଫଲ୍ୟ ଓ ବିପୁଳ ଜନସମର୍ଥନର ପୂର୍ଣ୍ଣ ବିବରଣୀ ସେହି ରାତିରେ ପାଇବା ମାତ୍ରେ ଗୋରା ଜିଲ୍ଲା ମାଜିଷ୍ଟ୍ରେଟ୍ ଓ ଡିଭିଜନାଲ୍ କମିଶନର୍ ସାହେବଙ୍କର ଘୋର ମୁଣ୍ଡବ୍ୟଥା ଆରମ୍ଭ ହୋଇଯାଇଥିଲା ।

ସଭା ଭାଙ୍ଗିବା ପରେ ଦେଶାତ୍ମବୋଧର ଉଦ୍ଦୀପନାରେ ଉଚ୍ଛ୍ୱସିତପ୍ରାଣ ବିଦ୍ୟାଧର ମତେ ସଙ୍ଗରେ ଘେନି ବସା ଅଭିମୁଖରେ ଫେରିଲେ । ବାଟରେ ତାଙ୍କ ମୁଖରୁ ଶୁଣିବାକୁ ପାଇଲି ଯେ, ସେହିଦିନ ସେ କଲେଜରୁ ନାମ କଟାଇଦେଇ ସାରିଥିଲେ; ଏଣିକି ତାଙ୍କ ଗତିଶୀଳ ଜୀବନ ଏକ ନୂଆ ମୋଡ଼ ନେଇ ପରିଚାଳିତ ହେବ—ସମ୍ପୃକ୍ତ କଂଗ୍ରେସ

କର୍ତ୍ତୃପକ୍ଷଙ୍କ ନିର୍ଦ୍ଦେଶନାମତେ ଦେଶମାତୃକାର ସେବା ହିଁ ତାଙ୍କର ହେବ ସଂକଳ୍ପିତ ବ୍ରତ ।

ବସା ପାଖ ଛକରେ ମତେ ପହଞ୍ଚାଇଦେଇ ବିଦ୍ୟାଧର ଅନ୍ୟ ରାସ୍ତା ଧରିଲେ । ବହୁ ଚେଷ୍ଟା ସତ୍ତ୍ୱେ ତାଙ୍କ ଗନ୍ତବ୍ୟସ୍ଥଳର ତତ୍ତ୍ୱ ଜାଣିବାକୁ ନପାଇ ମୁଁ ଏକଲା ବସାଭିମୁଖୀ ହେଲି । ତା' ଆରଦିନ ସପ୍ତାହରିଆ ରେଳରେ ମୋର ଗାଆଁ ବାହୁଡ଼ିବାର କଥା ।

ବିଂଶ ଶତାବ୍ଦୀର ତୃତୀୟ ଦଶକ ଶେଷପର୍ଯ୍ୟନ୍ତ ମଫସଲ ଅଞ୍ଚଳରେ କୋବି ଓ ବିଲାତି ଆଳୁ ଥିଲି ସାତ ସପନ । କୌଣସି ଚାଷୀ ଏ ଦୁଇଟିର ଚାଷରେ ମନ ନିୟୋଗି ନଥିଲି । ଭାଗ୍ୟବଶତଃ କଦବା କେବେ ଯଦି କଟକରୁ କେହି କୋବି ଓ ବିଲାତିଆଳୁ ନିଏ, ସେଦିନ ବହୁ ଆଡ଼ମ୍ବର ସହ ତେଲମସଲା ଜରଜର ହୋଇ କୋବି ତରକାରି ରନ୍ଧାଯାଏ— 'ନନ୍ଦଘରେ ଆନନ୍ଦ ଉତ୍ସବ' । ଢଗରେ କହନ୍ତି 'ଅପାଳକ ରାଇଜରେ ବିଜୁଳି ଲକ୍ଷେ ଟଙ୍କା ।' ପରିବାରଟାସାକର ଲୋକ ଜିଭ ପକେଇ ଟାକି ବସିଥାନ୍ତି ସେଇ ଅପୂର୍ବ ଦ୍ରବ୍ୟଟି ଚାଖିବାକୁ । ଯାହା ଭାଗରେ ଯେଉଁ କେଞ୍ଚାକ ପଡ଼େ, ତାକୁ ସେ ଅମୃତ ପରି ଚିପରେ ଚିକେ ଚିକେ କରି ଭୁଞ୍ଜି ସବାଶେଷକୁ ଚଳଚଳିଆ ବହଳା ଝୋଳଟିକ ରଙ୍କୁଣା ଜିଭରେ ଲୁଚିଚୁଟି ସାଫ୍ କରିଦିଏ ।

କଟକର ପ୍ରସିଦ୍ଧ କାଳୀମନ୍ଦିର ପାଚେରିକୁ ଲାଗିଥିବା ବିଶ୍ୱନାଥ କରଙ୍କ ବଗିଚାବାଡ଼ିରେ ଫୁଲକୋବି ଓ ବନ୍ଧାକୋବିର ଯେଉଁ ଫସଲ ଆଗୁଆ ଲଗାହୋଇଥାଏ, ତାହାର ଆମଦାନି ହୁଏ ସବା ପହିଲେ କଣ୍ଠାରୁ ଆଗପଛ ହୋଇ । ସେପର୍ଯ୍ୟନ୍ତ କଟକ ମାର୍କେଟକୁ କୌଣସି-ଆଡ଼ୁ କୋବି ଆସି ନଥାଏ । 'କର'ଙ୍କ ବଗିଚାର 'ଫୁଲ' ଓ 'ବନ୍ଧା'ର ପରିପୁଷ୍ଟତା ଯେଉଁପରି ଦର୍ଶନୀୟ, ବୃହଦାକାର ମଧ୍ୟ ସେହିପରି ଆକର୍ଷଣୀୟ । ଉକ୍ତ କୋବିସବୁ ବିକ୍ରି-ପାଇଁ ବଜାରକୁ ଯାଏନାହିଁ—କେହି ଆଗ୍ରହୀ ହେଲେ ଉତ୍ପାଦନ କ୍ଷେତ୍ରରେ ଥିବା ମାଳୀଠାରୁ କିଣିନେଇ ଜିହ୍ୱାଲାଳସା ଚରିତାର୍ଥ କରିପାରୁଥିଲେ । ଘରପାଇଁ କୋବି ଆଦି ଆଣିବାକୁ ମୋର ବାହାରକୁ ଯିବା ଦରକାର ହେଲା । ତେଣୁ କିଛି ସମୟ ପରେ ଆଗ କୋବି କିଆରିକି ଗଲି । ସେଠାରୁ କେତୋଟି ଫୁଲକୋବି ଓ କେତୋଟି ବନ୍ଧାକୋବି କିଣି ତା'ପରେ ଚୌଧୁରୀବଜାର ମାର୍କେଟକୁ ଆସିଲି । ସେଠାର ପରିପରିବା ଦୋକାନରୁ ବିଲାତିଆଳୁ ଓ ଉଲିପିଆଜରୁ କିଛି କିଛି କିଣିଲି—ଏ ଦିଓଟି କୋବି ତରକାରିର ଅନିବାର୍ଯ୍ୟ ଆନୁଷଙ୍ଗିକ । ସବୁଗୁଡ଼ିକୁ ଧରି ସାମାନ୍ୟ-ବିଳମ୍ବିତ ଗତିରେ ବସାକୁ ପ୍ରତ୍ୟାବୃତ୍ତ ହେଲି ।

ପରଦିନ ପ୍ରତ୍ୟୁଷ ହେଲକ୍ଷଣି ଗୃହାଧାରୀ ମନରେ ମୋର ଚଞ୍ଚଳତାର ତାପମାତ୍ରା କ୍ରମଶଃ ବଢ଼ିବାକୁ ଲାଗିଲା । ସ୍ନାନାଦି ଗତାନୁଗତିକ କିମ୍ବା କ୍ଷିପ୍ରତାର ସହିତ ସମାହିତ କରି ଉପର ମହଲାକୁ ଉଠିଲି ଦାମୋଦର ବାବୁଙ୍କ ପ୍ରକୋଷ୍ଠକୁ ଅତି ସନ୍ତର୍ପଣରେ । "ଆଜି ଦିନ ଗାଡ଼ିରେ ଘରକୁ ଯାଉଚି" ବୋଲି ତାଙ୍କୁ ଜଣାଇଲି । ଜ୍ଞାତି ସମ୍ପର୍କରେ ସେ ହେବେ ମୋର କକେଇ । ତାଙ୍କ ସାମନା ହେବାକୁ ମୋର ପ୍ରାଣେ ଡର । ସୁଯୋଗ ପାଇ ଦାମ କକେଇ ପଚାରିଲେ, "କାଲି ସାଢ଼େଚାରିଟାବେଳେ ବିଦ (ବିଦ୍ୟାଧର) ଆଉ ତୁ ସାଙ୍ଗସୁଙ୍ଗା

ହୋଇ କୁଆଡ଼େ ଗଲା କି ? କେବେ ତ ଏମିତି ଏକାଠି ସିବାର ଦେଖା ନଥିଲା ?"

ବାପା ହାବୁଡ଼ରେ ପଡ଼ିଗଲି । ଭୟରେ ଛାତି ପଡ଼ିଲା-ଉଠିଲା ମୁହୁର୍ମୁହୁ । ପାଟିରୁ କଥା ବାହାରିଲା ନାହିଁ । କିଙ୍କର୍ତ୍ତବ୍ୟବିମୂଢ଼ ଅବସ୍ଥାରେ ତଳକୁ ମୁହଁ ପୋତି କେବଳ ଠିଆ ହୋଇ ରହିଲି । କକେଇଙ୍କ ପ୍ରଶ୍ନର କି ଉତ୍ତର ଦେବି, ହଠାତ୍ ଥୟ କରିପାରିଲି ନାହିଁ । ମନକୁମନ ବିତର୍କ କଲି ଦୋହରେଇ ପୋହରେଇ—"ବିଦ୍ୟାଧର ସିନା ବାପାଙ୍କ ବିନାନୁମତିରେ କାମ କରିଛନ୍ତି ବୋଲି ନୈତିକ ଦୁର୍ବଳତାବଶତଃ ତାଙ୍କୁ ସବୁ କଥା ଲୁଚେଇଛନ୍ତି, ମୋର ଲୁଚେଇବାର କ'ଣ କାରଣ ଅଛି ? ଦେଖା ଘଟନାକୁ ପ୍ରକାଶ ନ କରିବା କିମ୍ବା ଦୋହେଇ କହିବା ଉଭୟ ମିଥ୍ୟାରୂପେ ପରିଗଣିତ ହୁଏ । ତେଣୁ ସତ୍-ସାହସର ସହିତ ପ୍ରକୃତ ଘଟଣା ପ୍ରକାଶ କରିବାକୁ ପଶ୍ଚାତ୍ପଦ ହେବି କାହିଁକି ?" ଏହି ସିଦ୍ଧାନ୍ତରେ ଉପନୀତ ହୋଇ ବିନମ୍ର ସ୍ୱରରେ ଉତ୍ତର ଦେଲି, "ଠିକକୋଣିଆ ବଗିଚା ପଡ଼ିଆରେ ହେଉଥିବା ଅସହଯୋଗ ଆନ୍ଦୋଳନ ସଭା ଦେଖାଇବାପାଇଁ ବିଦ୍ୟାଧର ନନା ମତେ ସେଠିକି ନେଇଯାଇଥିଲେ । ସେ ଗଲକାଲି ମଧ୍ୟାହ୍ନରେ କଲେଜରୁ ନା କଟେଇ-ଦେଇ ଆସିଥିଲେ ଏବଂ ଗୋପବନ୍ଧୁ ଦାସଙ୍କ ସଭାପତିତ୍ୱରେ ଅନୁଷ୍ଠିତ ସେହି ବିରାଟ ସଭାରେ କଂଗ୍ରେସର ଚାରିଅଣିଆ ପ୍ରାଥମିକ ସଭ୍ୟ ହୋଇ ଆନ୍ଦୋଳନ ଫଉଜରେ ନିରସ୍ତ୍ର ସୈନିକ-ରୂପେ ଯୋଗଦେଲେ । ଆଜିଠାରୁ ସେ ହେଲେ ଖଦଡ଼ଧାରୀ କଂଗ୍ରେସକର୍ମୀ ।"

ମୋ ଉଣ୍ଡରୁ ଏହି ଦୁର୍ଭାଗ୍ୟଜନକ ଦାରୁଣ ସମ୍ବାଦ ଶୁଣିବାମାତ୍ରେ ଦାମୋଦରବାବୁ ଗୋଟାଏ ହତାଶିଆ ଦୀର୍ଘଶ୍ୱାସ ଛାଡ଼ି କପାଳରେ କର ତାଡ଼ନା କଲେ । ଆଶାସ୍ୱୀ ପିତୃ-ହୃଦୟର କଳ୍ପିତସୁଖଦ ଭବିତବ୍ୟ ସହସା ପ୍ରଳୟପୟୋଧିଗର୍ଭରେ ବିଲୀନ ହୋଇଗଲା । ଏଡ଼େ ଦୃଢ଼ ଦାମ୍ଭିକ ମନ ଭାଙ୍ଗି ଭୁଷୁଡ଼ି ଅକାଢ଼ ହୋଇପଡ଼ିଲା । 'ବିଦ'ର ବି. ଏସ୍‌ସି. ପାଠ ଗଲା, ଡିପୋଟି ହେବା ନୋହିଲା, ପୋଲିସ ରିପୋର୍ଟ ଯୋଗୁଁ ଅନ୍ୟ ସରକାରୀ ଚାକିରିର ଆଶା ବି ବୁଡ଼ିଲା—ଏସବୁ କଥା ଭାବିଦେଲାବେଳକୁ ପିତା ଦାମୋଦର ଧୈର୍ଯ୍ୟ-ହୀନ ହୋଇପଡ଼ିଲେ । ମନେହେଲା ସତେ ଯେପରି କିଏ ତାଙ୍କ ଛାତି ଭିତରେ ପଶି ହୃତ୍‌ପିଣ୍ଡକୁ ଛେଣିରେ ଛେଲି ଭଣି ଭଣି କରିଦେଉଛି ।

ନିଶ୍ଚିତରୂପେ ଖୁବ୍ ନିକଟ ଭବିଷ୍ୟତରେ ବଡ଼ ରୋଜଗାରିଆ ହୋଇ ବାହାରିବ ବୋଲି ଯେଉଁ ପୁଅଠାରେ ଭରସା ରଖିଥିଲେ, ସେ ତ ଧୋକା ଦେଇ ଅନ୍ୟ ରାସ୍ତାକୁ ଚାଲିଗଲା, ଏବେ ଭଗ୍ନହୃଦୟ ଦାମୋଦର ବଡ଼ପୁଅ ବଢ଼ିପାଠୁଆ 'ରତନ'ର ଅଦୂର ଭବିଷ୍ୟତକୁ ସତୃଷ୍ଣପ୍ରାଣରେ ଅପେକ୍ଷା କରି ରହିଲେ—ଏ ଦୁର୍ଦ୍ଦିନର ଘନାନ୍ଧକାର ମଧ୍ୟରେ ସେଇ ହେଲା ତାଙ୍କର ଏକମାତ୍ର ଆଶାର ବର୍ତ୍ତିକା । ମାତ୍ର ଭାଗ୍ୟ ଫାଟିବାର ବେଳ ଆସିଲେ ମଣିଷ ଯେଉଁ ଡାଳକୁ ଆଶ୍ରା କରେ ସେ ଡାଳ ଭାଙ୍ଗେ, ଅମୃତ ହୋଇଯାଏ ଅମୃଢ଼ା, ସୁନା ହୋଇଯାଏ ପିତଳ । ଦାମୋଦରଙ୍କୁ ସେହି ଦଶା ଗ୍ରାସିଲା । ରତ୍ନାକର ଅର୍ଥାତ୍ ନୂଆ ଓଡ଼ିଆ-

ପୋଷାକ ପିନ୍ଧି କୋର୍ଟ ବାରଣ୍ଡା ପର୍ଯ୍ୟନ୍ତ ଚାଲିଯାନ୍ତି; କିନ୍ତୁ ଜଜ୍, ସବ୍‌ଜଜ୍ ପ୍ରଭୃତିଙ୍କ ମିସଲର ପରଦା ପାଖରେ ଗୋଡ଼ ପଡ଼ିଲାକ୍ଷଣି ତାଙ୍କ ଛାତି ଥରିଉଠେ, ଦେହରୁ ଶ୍ରମଝାଳ ବହିଯାଏ, ପରଦା ଟେକି ଭିତରକୁ ପଶିବାର ସାହସ ଲୋପ ପାଏ । ପରାସ୍ତ ସୈନିକ ଯୁଦ୍ଧକ୍ଷେତ୍ର ଛାଡ଼ି ଜୋର୍‌ରେ ପଛକୁ ହଟିଆସିଲା ପରି କୋର୍ଟଘରୁ ରତ୍ନାକର ବସାକୁ ଫେରିଆସି ପୋଷାକ ସରଞ୍ଜାମତକ ଯତ୍ନର ସହିତ ଯଥାସ୍ଥାନରେ ସଜାଡ଼ି ରଖିଦିଅନ୍ତି । ଯେଉଁଦିନ ଓକିଲତନାମା ଦସ୍ତଖତରୁ ଚାରଣା ଆଠଣା ମିଳିଯାଏ, ସେଦିନ ତାଙ୍କର ମହାନନ୍ଦ—ଭାବି ଭାବି ମନେ-ପକାନ୍ତି ଭୋର୍‌ରୁ ଉଠି ସବାପହିଲେ କାହା ମୁହଁ ଦେଖିଥିଲେ, ଆଉ କାହା ମୁହଁ ଚାହିଁ କଚେରିକି ବାହାରିଥିଲେ । କେତୋଟିମାତ୍ର ମାସ ଏହିପରି କଷ୍ଟରେ କଟାଇଲା ପରେ ସେ ଗ୍ରାମକୁ ଚାଲିଗଲେ । ବେକାରି ଜୀବନର ତିକ୍ତତା ଦିନକୁଦିନ ତୀବ୍ରତର ହେବାକୁ ଲାଗିଲା ।

ପିତା ଦାମୋଦରଙ୍କୁ ଏବେ ଜ୍ୟେଷ୍ଠପୁତ୍ରର ଆଶା ମଧ୍ୟ ଛାଡ଼ିବାକୁ ପଡ଼ିଲା । ଗାଁରେ ରହି ଜମିବାଡ଼ି କିଣା ଓ ମହାଜନୀ ତନଖି ବ୍ୟାପାରରେ ଅତିରିକ୍ତ ମାମଲତକାରି କରିବା ଫଳରେ ତାଙ୍କର ଓକାଲତି ବେଉସା ବହୁଳ କ୍ଷତିଗ୍ରସ୍ତ ହୋଇଯାଇଥିଲା—ପୁରୁଣା ଧରାବନ୍ଧା ମହକିଲଯାକ ଫିଡ଼ିକିଯାଇ ଅନ୍ୟ ଓକିଲଙ୍କ ଶିବିରରେ ଆଉଜିଯାଇଥିଲେ । ଦିଆଳିଆ ନୂଆ ପକ୍ଷ ଯେତେ ହାବୁଡ଼ିଲେ, ସେମାନଙ୍କଠାରୁ ନିଜର ପଣି ଆଦାୟ କରିସାରି ଦାମବାବୁଙ୍କ ମୋହରିର ସମସ୍ତଙ୍କୁ ନେଇ ଭଲ ଭଲ ଓକିଲଙ୍କ ପାଖରେ ଜୁଟାଇଦେଲା—ତା'ର ରୋଜଗାର ଏହାଦ୍ୱାରା ବେଶ୍ ବଢ଼ିଲା । ଦୁଇଦୁଇଟା ବିବାହିତ ପୁଅ ବେରୋଜଗାରିଆ ହୋଇଯିବାରୁ ଅର୍ଥାର୍ଥୀ ପିତା ଦାମୋଦର ଉତ୍କଟ ଅର୍ଥାଭାବ ଜ୍ୱାଳାରେ ହାଲୁହାଲୁ ହେବାକୁ ଲାଗିଲେ ।

ଗ୍ରାମ୍ୟ ପ୍ରବଚନରେ ଗୋଟିଏ ସୂକ୍ତି ଅଛି—"ଅତି ପଣ୍ଡିତ ହେଲେ ବାଇ ତାକୁ ମୂର୍ଖ ବୁଝାଉଥାଇ ।" ଦାମୋଦରବାବୁ ଠୁଳୀଭୂତ କୁବେର ସମ୍ପତ୍ତିର ଅଞ୍ଚଳକ ଏକାଙ୍ଗଚକ୍ରବର୍ତ୍ତୀ ହେବାପାଇଁ ବାଇ ହୋଇଥିଲାବେଳେ ଚନ୍ଦ୍ରସୂର୍ଯ୍ୟ ପୁଞ୍ଜା ମାନୁନଥିଲେ, ଧରାକୁ ସରା ମଣୁଥିଲେ, ସାଧାରଣ ଲୋକଙ୍କୁ ଗୋଡ଼ମାଟି ପରି ହେୟଜ୍ଞାନ କରୁଥିଲେ । ଏବେ କିନ୍ତୁ ପୂର୍ବର ଅହମିକା, ଆତ୍ମପ୍ରାଧାନ୍ୟ, ଅତିମାନିତା ଓ ସ୍ୱୈରତା ବିଡ଼ମ୍ବନାର ପ୍ରଚଣ୍ଡ ଘୂର୍ଣ୍ଣିଝଡ଼ରେ ଛିଟି ହୋଇ ପିଟି ହୋଇ ବିପର୍ଯ୍ୟସ୍ତ ଓ କ୍ଷତବିକ୍ଷତ ହୋଇଯାଇଛି—'ମା କୁରୁ ଧନଜନ ଯୌବନ-ଗର୍ବଂ, ହରତି ନିମେଷାତ୍ କାଳଃ ସର୍ବମ୍' । ଅହଂମନ୍ୟ ଦାମୋଦର ଦିନେ ଯେଉଁମାନଙ୍କୁ ଅପାଙ୍‌କ୍ତେୟ ଜ୍ଞାନରେ ପାଖ ମଡ଼ାଇଦେଉନଥିଲେ, ଏତେବେଳେ ସେହି ତଥାକଥିତ 'ମୂରୁଖ'ମାନଙ୍କ ହିତ-ଉପଦେଶକୁ ଅଗତ୍ୟା ପାଥେୟ କରି ବ୍ୟୟସଙ୍କୋଚ ପନ୍ଥାର ଆଶ୍ରୟ ନେଲେ । ସୁରମ୍ୟ ହର୍ମ୍ୟବାସ ସୁଖର ମହାର୍ଘ ବହୁଦର୍ଶିତାକୁ ସମ୍ବଳ କରି ଅବଲମ୍ବୀ ଯାଉଁଳିଆପଟି ଛାଡ଼ି କାଜିବଜାରରେ ଏକ ପକ୍କା-କଚ୍ଚା ଖଞ୍ଜା ଅଳ୍ପ ଟଙ୍କାରେ ଭଡ଼ା

ନେଲେ ଏବଂ ପୁରୁଖା ବ୍ୟବସ୍ଥାସଙ୍ଗୀବର ସ୍ୱାଭିମାନ ରକ୍ଷାପୂର୍ବକ ସେଠାରେ ଅବସ୍ଥାନ କରିବାକୁ ଲାଗିଲେ । ବେଳେବେଳେ ଅଭାବର ତାଡ଼ନା ଅତିଶଯ୍ୟ ହେଲେ ସେ ପରିଚିତ ଆପଣା-ଲୋକଙ୍କ ପାଖରୁ ହ୍ୟାଣ୍ଡ-ନୋଟ-ମିଆଦରେ ହାତଉଧାର ନେଇ ତାଙ୍କାଳିକ ଗରଜ ମେଣ୍ଟାଇଥାନ୍ତି । କେବେହେଲେ ସେ ବାକ୍‌ଭ୍ରଷ୍ଟ ହୋଇଥିବାର ଶୁଣାଯାଇ ନାହିଁ । ଯାହାକୁ ଯେଉଁଦିନ ଉଧାର ଟଙ୍କା ଫେରାଇ ଦେବାକୁ ପ୍ରତିଶ୍ରୁତିବଦ୍ଧ ହୋଇଥାନ୍ତି, ତହିଁରୁ କଦାପି ବିଚ୍ୟୁତ ହୋଇନାହାନ୍ତି । ଏହି ଆର୍ଥିକ ଦୁଃସ୍ଥିତିକାଳରେ 'ଓଡ଼ିଆ ଭାଷାକୋଷ'ପ୍ରଣେତା ରାୟବାହାଦୁର ଗୋପାଳଚନ୍ଦ୍ର ପ୍ରହରାଜ ତାଙ୍କର ଥିଲେ ଶ୍ରେଷ୍ଠ ଦରଦୀ ପୃଷ୍ଠପୋଷକ । ଦିନେ ଉଭୟେ ଥିଲେ ପ୍ରତିଷ୍ଠିତ ଆଇନଜୀବୀ । ବୟସରେ ଦାମୋଦରବାବୁ ସାମାନ୍ୟ କନିଷ୍ଠ ଥିବାରୁ ପ୍ରହରାଜେ ତାଙ୍କୁ 'ଦାମଭାଇନା' ବୋଲି ସମ୍ବୋଧନ କରୁଥିଲେ । ବନ୍ଧୁତାର ଅନୁବନ୍ଧରେ ଦାମୋଦରବାବୁ ପ୍ରତ୍ୟହ ସକାଳ ସମୟରେ 'ଭାଷାକୋଷ ଆଶ୍ରମ'କୁ ଆସୁଥିଲେ । ସେହି ଅବସରରେ ସାର୍ଥିପ୍ରିୟ ଗୋପାଳଚନ୍ଦ୍ର ତାଙ୍କ ଦାମଭାଇନାଙ୍କୁ ଦରକାର-ବେଳେ ବରାବର ସମ୍ବଳ ଯୋଗାଉଥିଲେ ଏବଂ ଭବିଷ୍ୟତ ପାଇଁ ହେମନ୍ତ ଦେଉଥିଲେ । ସ୍ୱାଙ୍କୁ ହିଁ କହନ୍ତି ପ୍ରକୃତ ବନ୍ଧୁତା ଓ ପ୍ରକୃତ ହୃଦୟବତ୍ତା ।

ପ୍ରାୟ ତିନି ବର୍ଷ ପରେ ଶ୍ରୀ ବିଦ୍ୟାଧର କଂଗ୍ରେସ ମଣ୍ଡଳର ବିଭିନ୍ନ ଅଂଶରେ ସଭାପତିଙ୍କ ମରଜି ସହିତ କୌଣସିମତେ ନିଜକୁ ଖାପ ଖୁଆଇ ଚଳିଗଲେ । ତେଣିକି ପ୍ରାଦେଶିକ କଂଗ୍ରେସୀ ହାଉଆରେ ତାଙ୍କ ମାନସିକ ସ୍ୱାସ୍ଥ୍ୟ ଆଦୌ ଉଧେଇପାରିଲା ନାହିଁ । ବ୍ୟକ୍ତିଗତ ପରିବାରର ପ୍ରୟୋଜନ ପୂରଣରେ ତାଙ୍କର ଅର୍ଥିକ ଅକ୍ଷମତା ମଧ୍ୟ ପରିପନ୍ଥୀ ହୋଇଉଠିଲା । ଏଣୁ କଂଗ୍ରେସ ସଂସ୍ଥାର ସକ୍ରିୟ ସଭ୍ୟ ଦାୟିତ୍ୱରୁ ଅବ୍ୟାହତି ମଞ୍ଜୁର କରି ଗ୍ରାମସନ୍ନିହିତ କୋଠପଦା ମଧ୍ୟଇଂରାଜୀ ବିଦ୍ୟାଳୟର ପ୍ରଧାନଶିକ୍ଷକ ପଦ ଗ୍ରହଣ କଲେ ଏବଂ ସେଠାରୁ ଯେଉଁ ସାମାନ୍ୟ ଦରମା ପାଇଲେ, ସେତିକିମାତ୍ରରେ ସ୍ୱକୁଟୁମ୍ବର କ୍ଷୁଧା ଓ ଗୁଜୁରାଣ ଯେନତେନପ୍ରକାରେ ମେଣ୍ଟାଇବାକୁ ବାଧ୍ୟହେଲେ ।

ଏଥିମଧ୍ୟରେ ରତ୍ନାକରଙ୍କ ନିଜସ୍ୱ ପରିବାରର ବେଶ୍ ବିସ୍ତୃତି ଘଟିଥାଏ । ସ୍ତ୍ରୀ ଓ ପିଲାମାନେ ଗ୍ରାମରେ ରହୁଥାନ୍ତି । ଓକିଲାତିକି ତ ଡରିଲେ, ଏଣୁ କଟକ ଓ ଗାଆଁ ଛାଡ଼ି ରତ୍ନାକର ବାହାରେ କିଛି ଆଖିଦୃଶିଆ ଚାକିରିର ସନ୍ଧାନରେ ରହିଲେ । ସେତେବେଳେ କନିକାର ଦେବାନ ଥାଆନ୍ତି ଅବସରପ୍ରାପ୍ତ କଲେକ୍ଟର ଅନନ୍ତରାମ ରଥ । ତାଙ୍କୁ ସାହାଯ୍ୟ କରିବା-ପାଇଁ ଜଣେ ଆସିସ୍‌ଟାଣ୍ଟ୍ ଦେବାନର ଆବଶ୍ୟକତା ହେଲା । ସେହି ପଦରେ ନିଯୁକ୍ତି ନିମନ୍ତେ ଖବରକାଗଜରେ ବିଜ୍ଞାପନ ମଧ୍ୟ ବାହାରିଲା । ଅନେକ ପ୍ରାର୍ଥୀଙ୍କ ମଧ୍ୟରେ ରତ୍ନାକର ଥିଲେ ଏକତମ । ସାକ୍ଷାତ୍‌କାର (interview) ଉଦ୍ଦେଶ୍ୟରେ ପ୍ରାର୍ଥୀମାନଙ୍କୁ ରାଜକନିକା ଯିବାକୁ ପଡ଼ିଲା । କନିକାରାଜା ରାଜେନ୍ଦ୍ରନାରାୟଣ ଭଞ୍ଜଦେଓ ଶିକ୍ଷାଗତ ଉଚ୍ଚତମ ଯୋଗ୍ୟତା ଦୃଷ୍ଟିରୁ, ବିଶେଷତଃ ବିଶ୍ୱସ୍ତ ବନ୍ଧୁ ଆଡ଼୍‌ଭୋକେଟ୍ ଦାମୋଦର କରଙ୍କ ପୁତ୍ର

ହୋଇଥିବାରୁ ରତ୍ନାକରଙ୍କୁ ହିଁ ଉକ୍ତ ସମ୍ମାନାର୍ହ ପଦରେ ନିଯୁକ୍ତ କଲେ । ମାସିକ ଦରମା ଏକଶତ ଟଙ୍କା, ଭଡ଼ାଶୂନ୍ୟ ବାସଗୃହ । ଏତେ ସୁବିଧା ପାଇ, ରାଜାବାହାଦୁରଙ୍କ ସୁଦୃଷ୍ଟିରେ ଥାଇ ବି ରତ୍ନାକର ସେଠି ବେଶୀ କାଳ ଟିକିପାରିଲେ ନାହିଁ—ସେଇଟା ତାଙ୍କ ନିଜ ଦୋଷରୁ ତଥା ହାତେ ମାପି ଚାଖଣ୍ଡେ ଚାଲିବାର ଦୂରଦର୍ଶିତା ଅଭାବରୁ । ଆମ ଗ୍ରାମର ଡାକ୍ତର ଦୈତ୍ୟାରି ଦାଶ ଯାର ଜୀବନ ରାଜକନିକାରେ ଚାକିରି କରି ସୁଖ୍ୟାତିର ସହିତ ଅବସର ନେଲେ, ଅଥଚ ରତ୍ନାକର ଅଢ଼େଇବର୍ଷ ଖଣ୍ଡେ ସେଠି ଅତିବାହିତ କରିଛନ୍ତି କି ନାହିଁ ଅତି ଦୟନୀୟ ଅବସ୍ଥାରେ ସପରିବାର ରାଜକନିକା ଛାଡ଼ିଲେ ।

ବିପଦ ଯେତେବେଳେ ଆସେ, ଏକା ହୋଇ ଆସେ ନାହିଁ, ସାଙ୍ଗୋପାଙ୍ଗ ଧରି ଆସେ । ଦୁଇପୁଅଙ୍କ ଦୁର୍ଗତିରେ ଦୁର୍ମନାୟମାନ ହେଲାବେଳକୁ ଉତ୍ତମର୍ଣ୍ଣ ପକ୍ଷରୁ ରେଜିଷ୍ଟ୍ରି ଡାକରେ କଡ଼ା ତାଗିଦା ନୋଟିସ୍ ଆସି ପହଞ୍ଚିଗଲା । ସେହି ନିର୍ମମ କଷାଘାତରେ ଦିଗ୍‌ବିଦିଗ୍ ଜ୍ଞାନହରା ଦାମୋଦର ମ୍ରିୟମାଣ ହୋଇପଡ଼ିଲେ । ଋଣ କଲାଦିନଠାରୁ ପରିଶୋଧର ନାମ ସୁଦ୍ଧା ଧରି ନଥିଲେ ସେ ଆଜିପର୍ଯ୍ୟନ୍ତ, ଏବେ ନୋଟିସ୍ ପାଇ ଚେତା ପଶିଲା । ପରିଶୋଧର ଆଇନସମ୍ମତ ସର୍ବୋଚ୍ଚ କାଳ ତମାଦି (time-barred) ହେବା ଉପରେ, ଅଥଚ ମୂଳ ଟଙ୍କା କଥା ଦୂରେ ଥାଉ, ସୁଧ ବାବଦକୁ ପଇସାଟେ ବି ପଇଠ ହୋଇ-ନାହିଁ । ଏଥିରେ କେଉଁ ମହାଜନ ହିମ୍ଭାଳିବ ? ଏହି କାରଣରୁ ଏତେ କାଳ ଧୈର୍ଯ୍ୟ ଧରି ଶେଷରେ ମହାଜନ କୋର୍ଟ୍ ଜରିଆରେ ନୋଟିସ୍ ପଠାଇଛନ୍ତି ଏବଂ ବିଧିସିଦ୍ଧ ସମୟ ମଧ୍ୟରେ ସମୂଳସୁଧ ପଇଠ ନହେଲେ ସମ୍ପତ୍ତି ନିଲାମର ଧମକ ଦେଇଛନ୍ତି । ଅନନ୍ୟଗତିକ ଦାମୋଦର ନିଜର ଭୂସମ୍ପତ୍ତି ବିକି ଥୋକ ଥୋକ କରି ସମୁଦାୟ ଋଣଟଙ୍କା ପରିଶୋଧ କରିଦେବେ ବୋଲି ନ୍ୟାୟୋଚିତ ସମୟ ପ୍ରାର୍ଥନା କଲେ । କୋର୍ଟରୁ ମଞ୍ଜୁରି ମିଳିଲା । ଦାମୋଦରବାବୁ ଯେତେ ଜମି କିଣିଥିଲେ ପ୍ରାୟ ସବୁତକ ନିଅ ଛଅରେ ବିକି ବନ୍ଦି ଟଙ୍କା-ଯାକ ମହାଜନଙ୍କୁ ପଇଠ କଲେ । ତଥାପି ସମୁଦାୟ ଋଣଟଙ୍କା ଭରଣା ହେଲାନାହିଁ । ତେଣୁ ବାକି ଋଣତକ ସୁଝିବାପାଇଁ ପୈତୃକ ଜମିରୁ ପ୍ରାୟ ତିନିଭାଗ ହରାଇବାକୁ ପଡ଼ିଲା । ଏହିରୂପେ ଦାମୋଦରବାବୁ ସର୍ବସ୍ୱାନ୍ତ ହୋଇ ଦରିଦ୍ର ପଞ୍ଚାକ୍ଷର ମନ୍ତ୍ର ଜପିବାକୁ ଲାଗିଲେ । ତାଙ୍କର ବୋଲି କେବଳ ଅବଶିଷ୍ଟ ରହିଲା ସଦ୍ୟତୋଳା ଘର ଓ ଡିହବାଡ଼ି ଅମୃତୋଟା ସମେତ ନୂଆକିଣା ମଠ-ଭୂସମ୍ପତ୍ତିତକ ଏବଂ ପୈତୃକ ଗୃହଭୂମି ସାମାନ୍ୟ କିଛି ।

ଏହି ବିପର୍ଯ୍ୟୟର ନିର୍ଘାତ କାଳ ବର୍ଷେ ପରେ ବର୍ଷ ଲାଗିରହିଲା ଅବିରାମ ଭାବରେ । ଶେଷକୁ ଉପସ୍ଥିତ ହେଲା ଦାମୋଦରଙ୍କ ଜୀବନ ଉପରେ ପ୍ରଚଣ୍ଡ ବଜ୍ରପ୍ରହାରର ନିଦାରୁଣ ମୁହୂର୍ତ୍ତ । ବୋଧହୁଏ ୧୯୪୨-୪୩ ମସିହାରେ ପରିପୁଷ୍ଟବପୁ ସ୍ଫୂର୍ତ୍ତିପୁଷ୍ଟ ଦାମୋଦର ଗଣ୍ଡ-ଦେଶର ଭିତରପଟ କଲପାଟିରେ ଅଚାନକେ ଅନୁଭବ କଲେ ଏକ ଅସ୍ୱସ୍ତିକର ଯନ୍ତ୍ରଣା, ଯାହା ଦିନ ପରେ ଦିନ କ୍ରମଶଃ ତୀବ୍ର ହେବାକୁ ଆରମ୍ଭ କଲା । ସେ ଥିଲେ ଅତିମାତ୍ରାରେ ଖିଲ ପରେ ଖିଲ ପାନଚର୍ବଣପ୍ରିୟ । ଡାକ୍ତରୀ ମତରେ ସେହି ଦୁରଭ୍ୟାସ ହିଁ ହେଲା ଏହି

ଅପ୍ରତ୍ୟାଶିତ ରୋଗାକ୍ରମଣର ପ୍ରଧାନ ହେତୁ । କଟକ ବଡ଼ ଡାକ୍ତରଖାନାର ପ୍ରବୀଣ ଚିକିତ୍ସକମାନଙ୍କ ସମ୍ମିଳିତ ନିର୍ଣ୍ଣୟାନୁସାରେ ତାହା କର୍କଟ ବ୍ୟାଧି ବୋଲି ସାବ୍ୟସ୍ତ ହେଲା ।

ଏବକାଳରେ ଏହି ମାରାତ୍ମକ ବ୍ୟାଧିର କିଞ୍ଚିତ୍ ପ୍ରଶମନକାରୀ କେତେକ ଔଷଧ ବାହାରି-ଥିବାରୁ ଓ ଆନୁଷଙ୍ଗିକ ଚିକିତ୍ସା ପ୍ରଣାଳୀ ଅନୁସୃତ ହେଉଥିବାରୁ ଏହାକୁ ଦୁରାରୋଗ୍ୟ ବା ଦୁଶ୍ଚିକିତ୍ସ୍ୟ ବୋଲି କୁହାଯାଉଛି; କିନ୍ତୁ ସେ ସମୟରେ ଚିକିତ୍ସାବିଜ୍ଞାନୀମାନେ କର୍କଟ ରୋଗ ସୃଷ୍ଟିକାରକ ମୂଳ ବୀଜାଣୁର ସନ୍ଧାନ ପାଇ ନଥିଲେ କି ସେମାନଙ୍କ ମସ୍ତିଷ୍କକୁ କୌଣସି ଫଳପ୍ରଦ ଔଷଧ ବା ପ୍ରତିଷେଧକ ବ୍ୟବସ୍ଥାର ସମ୍ଭାବ୍ୟ ଝଲକ ସ୍ପର୍ଶ କରିନଥିଲା, ତେଣୁ ଅନ୍ଧବିଶ୍ୱାସରେ ଏହି ବିଷମ ବ୍ୟାଧିକୁ ସମ୍ପୂର୍ଣ୍ଣ ଅନାରୋଗ୍ୟ ବା ଅସାଧ୍ୟ ବୋଲି ଧରିନିଆଯାଉଥିଲା । ଏହି ବ୍ୟାଧିଗ୍ରସ୍ତ ହତଭାଗ୍ୟମାନଙ୍କ ମଧ୍ୟରୁ ଜଣେହେଲେ କେହି ଆରୋଗ୍ୟ ଲାଭ କରିବାର ଶୁଣାନଥିଲା । ଏବେ ବି ପ୍ରାୟ ସେହି ଦଶା ଅଛି, ପ୍ରକୃତ ବୀଜାଣୁ ଏପର୍ଯ୍ୟନ୍ତ ଧରା ପଡ଼ିନାହିଁ—ତେବେ ରୋଗାକ୍ରମଣର ପ୍ରାରମ୍ଭିକ ଅବସ୍ଥାରେ ଉପଯୁକ୍ତ ଚିକିତ୍ସା ଆରମ୍ଭ କରାଯାଇପାରିଲେ କାଁ ଭାଁ କେହି କେହି ଭଲ ହୋଇଯାଉଛନ୍ତି ଦିନାକେତେପାଇଁ ।

ଏହି ପରିପ୍ରେକ୍ଷୀରେ ଦାମୋଦରଙ୍କ ଅବସ୍ଥା ଦିନକୁ ଦିନ ଶୋଚନୀୟ ଓ ସ୍ୱାସ୍ଥ୍ୟ କ୍ଷୟିତ ହେବାକୁ ଲାଗିଲା । ଏଠାରେ ଉଲ୍ଲେଖନୀୟ ଅତି ଆଶ୍ଚର୍ଯ୍ୟ କଥା, ଦୈବର ବିଚିତ୍ରକରଣୀ—ନିରୀହ ପୁରୁଷୋତ୍ତମ କରଙ୍କର ଯେଉଁ ଗାଲର ଯେଉଁ ସ୍ଥାନରେ ୧୯୧୯ ମସିହାରେ ଦାମୋଦର ପ୍ରଚଣ୍ଡ ଚପେଟାଘାତ କରିଥିଲେ, ଦାମୋଦରଙ୍କର ନିଜର ସେହି ଗାଲର ଠିକ୍ ସେହି ସ୍ଥାନ ତଳ କାନପାଟିରେ ହିଁ କର୍କଟ ବ୍ରଣର ଆବିର୍ଭାବ ହୋଇଥିଲା ।

ମାସାଧିକ କାଳପାଇଁ ଦାମୋଦର କଲିକତାରେ ରହି ବହୁପ୍ରଶଂସିତ ବିଶେଷଜ୍ଞ ଚିକିତ୍ସକ ଡାକ୍ତର ବିଧାନଚନ୍ଦ୍ର ରାୟଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଚିକିତ୍ସିତ ହେଲେ; କିନ୍ତୁ ଜୀବନାନ୍ତକ ଦୁରନ୍ତ ବ୍ୟାଧିଟା କିଛି ମାନିଲା ନାହିଁ । ବେଳୁବେଳ ଅବସ୍ଥା ସଙ୍କଟାପନ୍ନ ହେଲା । ତଣ୍ଟିରେ ତରଳ ଦୁଗ୍ଧ ମଧ୍ୟ ଗଳିଲା ନାହିଁ । ହତାଶ ଦାମୋଦର ଗ୍ରାମକୁ ଫେରିଆସି କିଛି ଦିନ ପରେ ଶେଷନିଶ୍ୱାସ ଛାଡ଼ିଲେ । ଏହି ଭୟାବହ ଦୃଶ୍ୟ ମୋ ହୃଦୟରେ ଦାରୁଣ ନିର୍ବେଦ ସୃଷ୍ଟି କରିଥିଲା । ଦୁଷ୍କୃତିରୁ ଦୂରରେ ରହି ନୀତିମୟ ଜୀବନ ଧାରଣ କରିବାର ପ୍ରେରଣା ଏହି ଘଟନାରୁ ମୁଁ ଆହରଣ କରିଥିଲି ।

## ୯ । ମନସ୍କାମ୍ୟ ନର୍ମାଲ୍ ସ୍କୁଲରେ ଅଧ୍ୟାୟୀଜୀବନ

ମୁଁ କାଳବିଳମ୍ବ ନକରି ୧୯ ତାରିଖ ଦିନ ବିଶ୍ୱନାଥଙ୍କ କଟକ ବାସଭବନରେ ଉପସ୍ଥିତ ହେଲି । ଡିସେମ୍ବର ୨୧ ଓ ୨୨ ଦୁଇଦିନ ନର୍ମାଲ ସ୍କୁଲରେ ପ୍ରତିଯୋଗିତା ପରୀକ୍ଷା ଅନୁଷ୍ଠିତ ହେଲା । ପରୀକ୍ଷାର୍ଥୀ ଥିଲେ ଅନ୍ୟୂନ ଦୁଇଶହ ଜଣ । ଏହି ପ୍ରତିଯୋଗୀମାନଙ୍କ ମଧ୍ୟରୁ ଅଧିକ ନମ୍ବର ରଖି କୃତକାର୍ଯ୍ୟ ହୋଇଥିବା ପ୍ରଥମ ପଚିଶ ଜଣଙ୍କ ନାମ ୨୩ ତାରିଖ ଦିନ ୧୦ଟା ବେଳେ ନର୍ମାଲ୍ ସ୍କୁଲର ଅଫିସ କକ୍ଷରେ ଅଧ୍ୟକ୍ଷଙ୍କଦ୍ୱାରା ଘୋଷିତ ହେବ ବୋଲି ଆଗରୁ ବିଜ୍ଞାପିତ କରାଯାଇଥିଲା । ତେଣୁ ଉକ୍ତ ନିର୍ଦ୍ଧାରିତ ସମୟର ଅବ୍ୟବହିତ ପୂର୍ବରୁ ସମସ୍ତ ପରୀକ୍ଷାର୍ଥୀ ପ୍ରଶସ୍ତ ସ୍କୁଲ ବାରଣ୍ଡାରେ ଜୁଣ୍ଡ ହୋଇଯାଇ ନିଜ ନିଜ ଭାଗ୍ୟଲିପିର ଶୁଭାଶୁଭ ଫଳ ଜାଣିବାକୁ ଉଦ୍‌ଗ୍ରୀବଭାବରେ ଅପେକ୍ଷା କରି ରହିଥିଲେ ।

ଠିକ୍ ୧୦ଟା ସମୟରେ ଫଳ-ଘୋଷଣାର ଘଣ୍ଟା ନିନାଦିତ ହେଲା । ସୁନାମଖ୍ୟାତ ଗାଣିତିକ ଅଧ୍ୟକ୍ଷ ଦାଶରଥି ପାଣିଗ୍ରାହୀ କୃତୀ ପ୍ରତିଯୋଗୀ ପଚିଶ ଜଣଙ୍କ ନାମ ଯୋଗ୍ୟତା ଅନୁକ୍ରମେ ଏକ ପରେ ଏକ ଘୋଷଣା କଲେ ଏବଂ ୧୯୨୨ ଜାନୁଆରି ୨ ତାରିଖ ଦିନ ୧୦ଟା ବେଳେ ଅଫିସଗୃହରେ ହାଜର ହୋଇ ନିଜନିଜର ନାମ ଲେଖାଇବାକୁ ଆମ ସମସ୍ତଙ୍କୁ ନିର୍ଦ୍ଦେଶ ଦେଲେ । ମୋ ପକ୍ଷରେ ସର୍ବାପେକ୍ଷା ବେଶୀ ଆନନ୍ଦର କଥା ଏହି ଯେ, ଯୋଗ୍ୟତମ କୃତୀ ପ୍ରତିଯୋଗୀରୂପେ ମୋ ନାଆଁଟି ସର୍ବାଗ୍ରେ ଡକା ହୋଇଥିଲା କରଣିବାବୁଙ୍କଦ୍ୱାରା ।

ନବବର୍ଷର ଦ୍ୱିତୀୟ ଦିବସରେ ନର୍ମାଲ ସ୍କୁଲର ତ୍ରୈବାର୍ଷିକ ପାଠ୍ୟକ୍ରମର ପ୍ରଥମ ବର୍ଷୀୟ ଶ୍ରେଣୀରେ ପଚିଶ ଜଣ ଶିକ୍ଷାର୍ଥୀଙ୍କ ନାମଲେଖା ପର୍ବ ଶେଷ ହୋଇଗଲା । ନବାଗତ ସମସ୍ତେ ରାସ୍ତା ପାର୍ଶ୍ୱସଂଲଗ୍ନ ଦ୍ୱିତଳବିଶିଷ୍ଟ ଛାତ୍ରାବାସରେ ରହୁଥିବା ଉର୍ଦ୍ଧ୍ୱତନ ଦୁଇ ଶ୍ରେଣୀର ଅଧ୍ୟାୟୀମାନଙ୍କ ଦ୍ୱାରା ସମ୍ବର୍ଦ୍ଧନାପ୍ରାପ୍ତ ହୋଇ ସେମାନଙ୍କର ସହଅନ୍ତେବାସୀରୂପେ ଅବସ୍ଥାନ କଲେ । ଏହି ଛାତ୍ରାବାସର ପ୍ରତ୍ୟକ୍ଷ ସଂଚାଳକ, ଅଧୀକ୍ଷକ ଓ ନିୟାମକ ଥାଆନ୍ତି ସ୍କୁଲର ସାହିତ୍ୟାଧ୍ୟାପକ ତଥା ଓଡ଼ିଶାର ସୁନାମଧନ୍ୟ ସାହିତ୍ୟରଥୀ ଓ ସମାଲୋଚକ ଛାତ୍ରବତ୍ସଳ ପଣ୍ଡିତ କୁଳମଣି ଦାଶ କାବ୍ୟତୀର୍ଥ । ତାଙ୍କ ନୀତିନିଷ୍ଠ ଆଦର୍ଶ ଓ ବିଚକ୍ଷଣ ନିୟନ୍ତ୍ରଣରେ ଛାତ୍ରାବାସବାସୀମାନଙ୍କ ମଧ୍ୟରେ ଭ୍ରାତୃଭାବ, ସୌହାର୍ଦ୍ଦ୍ୟ ଓ ଶାନ୍ତିଶୃଙ୍ଖଳାର ଏକ ସୁସ୍ଥ ବାତାବରଣ ପରିପୂର୍ଣ୍ଣ ମାତ୍ରାରେ ବିରାଜିତଥିଲା ।

### ଉତ୍ତେଜନାର ଜ୍ୱଳନ୍ତ ଘେର ମଧ୍ୟରେ (ହଷ୍ଟେଲର ଅବସ୍ଥିତି) :

ମନେରଖିବାକୁ ହେବ ଯେ, ସେତେବେଳେ ଗାନ୍ଧି ମହାତ୍ମାଙ୍କ ଡାକରାରେ ଚାଲିଥିବା ଅସହଯୋଗ ଆନ୍ଦୋଳନ, ପିକେଟିଂ, ସତ୍ୟାଗ୍ରହ ଆଦିର ଉତ୍ତେଜନାରେ ଓ ସାମ୍ରାଜ୍ୟବାଦୀ

ବ୍ରିଟିଶ ସରକାରର ଦମନମୂଳକ ନିର୍ମମ ଅତ୍ୟାଚାରରେ ସମଗ୍ର ଦେଶ ହୋଇଯାଇଥାଏ ବିସ୍ଫୋରଣମୁଖୀ । ସାମାନ୍ୟ ସାମାନ୍ୟ ଘଟଣାରେ ରକ୍ତସ୍ୱାର୍ଥୀ ପୋଲିସବାଳର ରୋଷ-କଷାୟିତ ଚକ୍ଷୁ ଓ ସଙ୍ଗିନ୍‌ମୁନରେ ବର୍ବର ଆକ୍ରମଣ ଓ ଧର୍ଷଣ । ଭୟଭୀତ ନିରୀହ ଜନଜୀବନ ସଙ୍କଟ ହୋଇଉଠିଥାଏ ବିପର୍ଯ୍ୟସ୍ତ ଓ ବିଧ୍ୱସ୍ତ । ଓଡ଼ିଶାର ପ୍ରାଣକେନ୍ଦ୍ର କଟକ-ନଗରୀର ରାଜନୀତିକ ବିପ୍ଳବର ଦୃଷ୍ଟିକୋଣରେ ଏବଂ ଶାସକଗୋଷ୍ଠୀର ଲଗାମଛଡ଼ା ନିଷ୍ପେଷଣରେ ପୂର୍ବର ଶାନ୍ତ ବାତାବରଣ ହୋଇଯାଇଥାଏ ବିଷବାଷ୍ପମୟ ଓ ଘୋର ଅଶାନ୍ତ । ବାଟଘାଟ ସଂକଟମୟ, ଘରେ ଘରେ କୋକୁଆଭୟ—କାହାର ପାଠୁଆ ପୁଅକୁ କିମ୍ବା ପୋଷଣୀହାର ଗିରସ୍ତକୁ ପୋଲିସ ରାସ୍ତାରୁ ଉଠେଇନେଇ ଥାନା-ହାଜତରେ ଠୁଙ୍କିଦେଲା; କାହା କଲେଜପଢ଼ୁଆ ପୁଅ ନଈବାଲି ସଭା ଦେଖିବାକୁ ଯାଇଥିଲା ସେ ଦାସ ଆପଣେଙ୍କ ମରମଛୁଆଁ ବକ୍ତୃତା ଶୁଣି ଗାନ୍ଧିଦଳରେ ମିଶିଗଲା ।

ଆମେ ରହୁଥିବା ଦ୍ୱିତଳ ପ୍ରାସାଦର ହଷ୍ଟେଲଟି ଝଂକଟସଂକୁଳ ଗିରିଘାଟିରୁ ବଳି ଆହୁରି ବିପଜ୍ଜନକ । ଘୋରତର ବିପଦର ଘେର ମଧ୍ୟରେ ଏହାର ଅବସ୍ଥିତି । ହଷ୍ଟେଲ୍ ହତାର ଉତ୍ତରପଟ ପାଚେରି-ସେପାଖେ ଦୋମହଲା କଂଗ୍ରେସ ଆଶ୍ରମ ଏବଂ ଦକ୍ଷିଣପଟ ପାଚେରି-ସେପାଖେ କାଠଯୋଡ଼ି ନଦୀବନ୍ଧ । ହଷ୍ଟେଲ୍ ପରିସରର ଚତୁପାର୍ଶ୍ୱରେ ସର୍ବସାଧାରଣ ରାସ୍ତା ମଧ୍ୟ ଘେରିରହିଥାଏ । ରାତିଦିନ ସେଥିରେ ଠାଆଁକୁ ଠାଆଁ ହୁଲହୁଲି ହେଉଥା'ନ୍ତି କେତେ ହାକିମୀ ପୋଷାକଧାରୀ ପୋଲିସ, କେତେ ସାଦାପୋଷାକିଆ ଗୋଇନ୍ଦା ପୋଲିସ, କେତେ ନାଲିପଗଡ଼ିଆ ଲଗୁଡ଼ହସ୍ତ ସିପାହି ବା କନଷ୍ଟବଲ (ସାଧୁ ଭାଷାରେ 'କନଷ୍ଟ ବଲ', ଯେଣୁ ଏମାନେ ପୋଲିସ ବିଭାଗର 'ସବାତଳ' ପାହ୍ୟାର 'ବଲ' ବା ସିପାହି-ସୈନିକ, ଅଥଚ ଏଇମାନେ ହିଁ ଅଧିକ ରୋଷ ଦେଖାନ୍ତି ଲୋକମାନଙ୍କ ଉପରେ, 'କ୍ଷୁଦ୍ର ସର୍ପର ବିଷ ଉତ୍କଟ-ତର' ହେଲା ପରି : "କେହୁ ବୋଲେ ମୁହିଁ ଅଟଇ ପୁଲିସ, ବିନା ମେଘେ ବଜ୍ର ପାଡ଼ଇ କୁଳିଶ"), ପୁଣି ସରକାରୀ କଲଦ୍ୱାରା ନିଯୁକ୍ତ କେତେ ଭଡ଼ାଟିଆ ଭଦ୍ର ପୋଷାକପିନ୍ଧା 'ଶିଖି-ମନାଇ' ବଂଶୀୟ ଦଲାଲ—ସମସ୍ତେ ଗୋଟିହଣା ଟୋପଡମାରଣା, ଗୋଟିକି ଗୋଟି ସାଂଘାତିକ ଭେଦୁଆ, ଖଲ କପଟତାରେ କେହି କାହାଠୁଁ ନୁହେଁ ଊଣା । ଓଡ଼ିଶା ବାହାରୁ ଯେତେ ଖଦଡ଼ଧୋତିଆ ଖଦଡ଼ଟୋପିଆ କଂଗ୍ରେସୀ ନେତା ଉପନେତା ବିଭିନ୍ନ ସମୟରେ ଆସି କଂଗ୍ରେସ ଆଶ୍ରମରେ ରହନ୍ତି, ହଷ୍ଟେଲ୍‌ର ଅନ୍ତେବାସୀଏ ସେ ସମସ୍ତଙ୍କୁ ଆଖି ପୂରେଇ ଭଲଭାବରେ ଦେଖିପାରନ୍ତି—ମହାତ୍ମା ଗାନ୍ଧି ଓ ସୀମାନ୍ତ ଗାନ୍ଧି (ବାଦଶା ଖାଁ ଅବଦୁଲ ଗଫୁର ଖାଁ)ଙ୍କ ଠାରୁ ଆରମ୍ଭ କରି ମୋତିଲାଲ, ଲାଲା ଲଜପତ୍, ଜିନ୍ନା, ମହମ୍ମଦ ଆଲି, ସୌକତ ଆଲି, ଆବୁଲ କାଲାମ ଆଜାଦ, ମହାଦେବ ଦେଶାଇ ପ୍ରଭୃତିଙ୍କ ପର୍ଯ୍ୟନ୍ତ । ପୁଣି, ଓଡ଼ିଶା କଂଗ୍ରେସ ତରଫରୁ ସନ୍ଧ୍ୟାରେ କାଠଯୋଡ଼ି-ବାଲିରେ ଯେତେ ସଭା ହୁଏ, ତାହା ଦୋତାଲା ବାରଣ୍ଡାରେ ଠିଆହୋଇ ଦେଖନ୍ତି ଏବଂ ସେଠାରେ ସେଇସବୁ ସର୍ବଭାରତୀୟ ନେତା ଉପନେତା ଓ ଓଡ଼ିଶୀ ନେତା ଉପନେତା ଅଗ୍ନିବର୍ଷୀ ଭାଷଣ ଦିଅନ୍ତି ଓ ବନ୍ଦେମ

ଉଦ୍‌ବୋଧନ ବାଣୀ ଶୁଣାନ୍ତି, ତତ୍‌ପ୍ରତି ମଧ୍ୟ ନିବିଷ୍ଟତାର ସହିତ କର୍ଣ୍ଣପାତ କରନ୍ତି । କିନ୍ତୁ ସେମାନେ ଏତେ ଶାନ୍ତସମାହିତ ଓ ଶୃଙ୍ଖଳିତଭାବରେ ଉପବିଷ୍ଟ ହୋଇଥାନ୍ତି ଯେ, ବାହାରର ଏସବୁ ପ୍ରଲୋଭନୀୟ ଆକର୍ଷଣ କେବେହେଲେ ସେମାନଙ୍କ ଉଦ୍‌ଭ୍ରାନ୍ତତା, ଉଦ୍‌ବାସିତା ବା ଉଚ୍ଛୃଙ୍ଖଳତା ଆଡ଼କୁ ଟାଣି ନେଇପାରେ ନାହିଁ । ଚିତ୍ତ ତାଙ୍କର ଉଦ୍‌ବୁଦ୍ଧ ହୁଏ; କିନ୍ତୁ ଚିତ୍ତବୃତ୍ତି ଦୋଳାୟିତ ହୁଏ ନାହିଁ । ସମସ୍ତେ ନିଜନିଜର ସ୍ଥିର ଲକ୍ଷ୍ୟ ପ୍ରତି ପୂର୍ଣ୍ଣ ସଚେତନ ଥାଆନ୍ତି; ତେଣୁ ଲକ୍ଷଚ୍ୟୁତିର କୌଣସି ଆଶଙ୍କା ନଥାଏ । ଆଦୌ ଅନନ୍ୟ-ମନା ନହୋଇ ଠିକ୍ ଗୁରୁକୁଳ ଆଶ୍ରମର ଅନ୍ତେବାସୀମାନଙ୍କ ଭଳି ସଭିଏଁ ଏକାଗ୍ର ଚିତ୍ତରେ ଦିନବର୍ତ୍ତି ପର୍ଯ୍ୟନ୍ତ ଅଧ୍ୟୟନ ରୂପ କଠୋର ତପଶ୍ଚରଣରେ ଆତ୍ମନିୟୋଗ କରିଥାନ୍ତି ।

**ଅଧ୍ୟୟନ ସଙ୍ଗେ ଅଧ୍ୟାପନ :**

ସର୍ବୋଚ୍ଚ ପ୍ରଶିକ୍ଷଣ ବିଦ୍ୟାପୀଠରୂପେ ସଂସ୍ଥାପିତ ଏହି ପ୍ରତିଷ୍ଠାନର ପ୍ରଧାନ ଆଭିମୁଖ୍ୟ ଥିଲି ଆଧୁନିକ ତଥା ପ୍ରାଚୀନ ଓଡ଼ିଆ ସାହିତ୍ୟରେ ବିସ୍ତୃତ ଶିକ୍ଷାପ୍ରଦାନ । ମୂଳରୁ ସଂସ୍କୃତ ଥିଲି ଅବଶ୍ୟ ପାଠ୍ୟ; କିନ୍ତୁ ଆମ ବେଳକୁ ହୋଇଯାଇଥାଏ ଇଚ୍ଛାଧୀନ । ଅଧ୍ୟାୟୀଗଣ ଏହି ଶିକ୍ଷାନିକେତନର ପରିଚାଳିତ ପ୍ରାକ୍‌ଟିସିଂ ମଧ୍ୟଇଂରାଜୀ ବିଦ୍ୟାଳୟର ଉପର ଶ୍ରେଣୀମାନଙ୍କରେ ଠିକ୍ ଶିକ୍ଷକସଦୃଶ ଅଧ୍ୟାପନ କରୁଥିଲେ । ଶିକ୍ଷା ସାଙ୍ଗ କରି ପରେ ଏହିମାନେ ହିଁ ଓଡ଼ିଶାର ମଧ୍ୟଭର୍ଣ୍ଣାକୁଲର, ମଧ୍ୟଇଂରାଜୀ ଓ ଉଚ୍ଚଇଂରାଜୀ ବିଦ୍ୟାଳୟମାନଙ୍କରେ ଶିକ୍ଷକତାର ଦାୟିତ୍ୱ ବହନ କରି ସତ୍‌ଛାତ୍ରମଣ୍ଡଳୀ ସୃଷ୍ଟି କରିବେ ଏବଂ ଗୁରୁଟ୍ରେନିଂ ସ୍କୁଲମାନଙ୍କରେ ମଧ୍ୟ ଶିକ୍ଷକତା କରିପାରିବେ । ଏଣୁ ଏମାନଙ୍କୁ 'ଗୁରୁ ଛାତ୍ର' (pupil-teacher) ନାମରେ ଅଭିହିତ କରାଯାଉଥିଲି । ଏହି ଗୁରୁ ଛାତ୍ରମାନେ ନର୍ମାଲ୍ ସ୍କୁଲରେ ଛାତ୍ର ହିସାବରେ 'ଶିକ୍ଷାଦାନ ପଦ୍ଧତି'କୁ ସର୍ବତୋଭାବରେ ଆୟତ୍ତ କରିବା ସଙ୍ଗେ ସଙ୍ଗେ ଗୁରୁ ଭାବରେ ପ୍ରାକ୍‌ଟିସିଂ ମି. ଇଂ. ସ୍କୁଲର ଛାତ୍ରମାନଙ୍କୁ ଶିକ୍ଷାଦାନ କରି ଉକ୍ତ ଅଧୀତ ପଦ୍ଧତିକୁ ବାସ୍ତବ କ୍ଷେତ୍ରରେ ପ୍ରୟୋଗ କରିବାର ଅଭ୍ୟାସ କରନ୍ତି । ଗୁରୁମାନଙ୍କୁ ସେକାଳରେ ଆଦର୍ଶ ମନୁଷ୍ୟରୂପେ ସମାଜରେ ତୁଙ୍ଗ ସମ୍ମାନ ପ୍ରଦର୍ଶିତ ହେଉଥିଲି । ଏହି ଦୃଷ୍ଟିରୁ ବୁଦ୍ଧିଜୀବୀ ଗୋଷ୍ଠୀ ନର୍ମାଲ୍ ସ୍କୁଲକୁ 'ଆଦର୍ଶ ମନୁଷ୍ୟ (ଗୁରୁ) ଗଢ଼ିବାର କାରଖାନା' ବୋଲି କହିବାକୁ ଶ୍ଳାଘ୍ୟ ମଣୁଥିଲେ । ଏ ପ୍ରକାର ଉକ୍ତି ବସ୍ତୁତଃ ଅତିରଞ୍ଜିତ ନୁହେଁ, ବରଂ ଅତି ବାସ୍ତବ ଓ ଅକ୍ଷରେ ଅକ୍ଷରେ ସତ୍ୟ । ଏହି କାରଖାନାରେ ଗଢ଼ା ହୋଇ ବାହାରିଥିବା ପଣ୍ଡିତ ବିନାୟକ ମିଶ୍ର କଲିକତା ୟୁନିଭର୍ସିଟି କଲେଜର ଓଡ଼ିଆ ଉପାଧ୍ୟୁତ୍ତର (ଏମ୍. ଏ.) ବିଭାଗର ସ୍ଥାୟୀ ପ୍ରଫେସରରୂପେ ନିଯୁକ୍ତ ହୋଇ ଯେଉଁ ଅସାଧାରଣ ବିଦ୍‌ବତ୍ତା ଓ ଅନନ୍ୟସାଧାରଣ ଅଧ୍ୟାପନା-କୃତିତ୍ୱ ପ୍ରଦର୍ଶନ କରିଥିଲେ, ତାହା ଉଲ୍ଲିଖିତ ଉକ୍ତିର ସତ୍ୟତା-ପ୍ରତିପାଦକ ଏକ ଅବିସମ୍ବାଦିତ ଦଲିଲ ।

ଜାନୁଆରି ୩ ତାରିଖରୁ କ୍ଲାସପଢ଼ା ରୀତିମତ ଆରମ୍ଭ ହୋଇଗଲି । ଏଠାରେ ଅଧ୍ୟାପନା ରୀତିମତେ ଅତି ଅଭିନବ ବୋଧହେଲି । ଶ୍ରେଣୀର ପ୍ରତ୍ୟେକ ଅଧ୍ୟାୟୀ ଯେ ବୁଦ୍ଧିମାନ୍

ଏଥିରେ ସନ୍ଦେହ ନଥିଲା; ତଥାପି ବୁଦ୍ଧିରେ ରହିଥିବା ଇତରବିଶେଷ ତାରତମ୍ୟ ଅନୁସାରେ ବିଚକ୍ଷଣ ଶିକ୍ଷୟିତାମାନେ ଅଧ୍ୟାୟୀବୃନ୍ଦଙ୍କୁ ମନେ ମନେ ତିନି ପର୍ଯ୍ୟାୟରେ ଅନ୍ତର୍ଭୁକ୍ତ କରିଥିଲେ—କେତେକ ପ୍ରଖରବୁଦ୍ଧି ବା 'ବେଗତୀବ୍ର' ପର୍ଯ୍ୟାୟର । ତାଙ୍କ ତଳକୁ ସଂଖ୍ୟାଧିକ ଅଧ୍ୟାୟୀ ମଧ୍ୟମ ଧରଣର ବୁଦ୍ଧିସଂପନ୍ନ ବା 'ଚରତୀବ୍ର' ପର୍ଯ୍ୟାୟର ଏବଂ ଅବଶିଷ୍ଟ ଅଳ୍ପ କେତେକ ସାଧାରଣ ବୁଦ୍ଧିସଂପନ୍ନ ବା 'ବେଗବେଗା' ପର୍ଯ୍ୟାୟର । ଦୁଷ୍ଟ ବାଣ-ହୋଇପଡ଼ିବା ଭଳି ମୋଟାବୁଦ୍ଧିଆ ବା 'ଶରବେଗା' ପର୍ଯ୍ୟାୟଭୁକ୍ତ ପ୍ରାୟ କେହି ନଥିଲେ । ସୁଦକ୍ଷ ଗୁରୁଦେବମାନେ ପ୍ରାଞ୍ଜଳ ଭାଷାରେ ଏତେ ସୁନ୍ଦର ଧାରାରେ ବୁଝାଇଦେଉଥିଲେ ଯେ, ସାଧାରଣବୁଦ୍ଧିସଂପନ୍ନ 'ବେଗବେଗା' ପର୍ଯ୍ୟାୟଭୁକ୍ତ ଛାତ୍ରଙ୍କ ପକ୍ଷରେ ସୁଦ୍ଧା କଠିନ ଓ ଜଟିଳ ବିଷୟମାନ ବେଶ୍ ସହଜବୋଧ ହୋଇଉଠୁଥିଲା । ଏହା ଫଳରେ ଛାତ୍ରମାନଙ୍କ ମସ୍ତିଷ୍କର ଗ୍ରହଣଶକ୍ତି ଅଦ୍ଭୁତଭାବରେ ବୃଦ୍ଧିପ୍ରାପ୍ତ ହୋଇପାରୁଥିଲା ।

ଓଡ଼ିଆ ଓ ସଂସ୍କୃତ ସାହିତ୍ୟର ଶିକ୍ଷାଗୁରୁ ପଣ୍ଡିତ କୁଳମଣି ଦାଶଙ୍କ ଅଧ୍ୟାପନା ବ୍ୟକ୍ତିଗତ ଭାବରେ ମତେ ସର୍ବାଧିକ ଆକର୍ଷଣ କରିଥିଲା । ତାଙ୍କ ଯାଦୁକରୀ ଭାଷା ଓ ଉଚ୍ଚ ଭାବ ପ୍ରକାଶର ସମ୍ମୋହନୀ ଶୈଳୀ ଛଟା ପୀୟୂଷରେ ରସାଣିତ ହୋଇଥିଲା ପରି ମତେ ପ୍ରତୀତ ହେଲା । ମନ୍ତ୍ରମୁଗ୍ଧବତ୍ ମୁଁ ତଦ୍‌ଗତ ପ୍ରାଣରେ ତାଙ୍କ ଜ୍ଞାନରାଶିର ସାରସ୍ୱତ ବିଭବକୁ ଯଥାସାଧ୍ୟ ଆହରଣ କରି ହୃଦୟ-ପେଟିକାରେ ସଞ୍ଚି ରଖିବାକୁ ଲାଗିପଡ଼ିଲି ।

## (କ) ଚାରି ପତ୍ରିକା ସଂପାଦକଙ୍କ ସହ ପରିଚୟ :

ଏହିପରି ଭାବରେ ଫେବୃଆରି ମାର୍ଚ୍ଚ ମାସ ଅତୀତ ହେଲା ପରେ ମେ ମାସର ମଧ୍ୟଭାଗଠାରୁ ଗ୍ରୀଷ୍ମାବକାଶ ସକାଶେ ସ୍କୁଲ ଦେଢ଼ମାସ ବନ୍ଦ ରହିଲା । ଏହି ସାଢ଼େ ଚାରିମାସ ମଧ୍ୟରେ ମୋ ଜ୍ଞାନ-ଭଣ୍ଡାରର ପରିସର ଆଶାତୀତ ଭାବରେ ବଢ଼ିଯାଇଥାଏ । ଘଟନାଚକ୍ରରେ ଚାରିଜଣ ପତ୍ରିକା-ସମ୍ପାଦକଙ୍କ ସହିତ ପରିଚିତ ହେବାର ସୁଯୋଗ ମଧ୍ୟ ଜୁଟିଥିଲା । ସେମାନେ ହେଲେ—'ଉତ୍କଳମଧୁପ' ଓ 'ଉତ୍କଳଦୀପିକା'ର ଭୂୟୋଦର୍ଶୀ ସମ୍ପାଦକ ନୀଳମଣି ବିଦ୍ୟାରତ୍ନ, ପ୍ୟାରୀମୋହନ ଏକାଡେମୀର ତ୍ରୈମାସିକ ପତ୍ରିକା 'ସାହିତ୍ୟସୋପାନ'ର ସମ୍ପାଦକ ପଣ୍ଡିତ ବାଳକୃଷ୍ଣ ମହାପାତ୍ର, 'ସହକାର'ର ପ୍ରତିଷ୍ଠାତା-ସମ୍ପାଦକ ଲକ୍ଷ୍ମୀ-ନାରାୟଣ ସାହୁ ଓ 'ମୁକୁର'ର ପ୍ରତିଷ୍ଠାତା-ସମ୍ପାଦକ ବ୍ରଜସୁନ୍ଦର ଦାସ । ସେହିମାନଙ୍କ ପ୍ରୋତ୍ସାହନ-ବାଣୀରେ ଉଦ୍‌ବୁଦ୍ଧ ହୋଇ ମୁଁ କ୍ରମାଗତ ଭାବରେ କବିତା, ଭ୍ରମଣବୃତ୍ତାନ୍ତ, ଗଳ୍ପ ଓ ମନସ୍ତାତ୍ତ୍ୱିକ ନିବନ୍ଧ ପ୍ରଭୃତି ଲେଖିବାକୁ ସାହସୀ ହୋଇଥିଲି । ସେଥିମଧ୍ୟରୁ ବଛା ବଛା ଲେଖା କେତୋଟି ଉତ୍କଳମଧୁପ, ସାହିତ୍ୟସୋପାନ, ସହକାର ଓ ମୁକୁରରେ ପ୍ରକାଶ ପାଇ ମତେ ସାରସ୍ୱତ ସାଧନା-ଶିବିରର ଉପକଣ୍ଠରେ ନେଇ ପହଞ୍ଚାଇଦେଇଥିଲା ।

ଉପରେ ଯେଉଁ ଚାରି ପତ୍ରିକା-ସମ୍ପାଦକଙ୍କ ନାମ ଉଲ୍ଲେଖ କଲି, ସେମାନଙ୍କ ମଧ୍ୟରେ ବୟୋବୃଦ୍ଧ ଥିଲେ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ । କଟକ ଜିଲ୍ଲାନ୍ତର୍ଗତ ଚର୍ଚ୍ଚିକାପୀଠପୂତ

ପ୍ରସିଦ୍ଧ ବାଙ୍କିଭୂମି ତାଙ୍କର ଜନ୍ମସ୍ଥଳୀ ହେଲେହେଁ ସେ ଯୌବନ ବୟସରୁ ମୋଗଲବନ୍ଦି-ଓଡ଼ିଶା ଛାଡ଼ି ଦକ୍ଷିଣ-ଓଡ଼ିଶା ଏବଂ ପଶ୍ଚିମ-ଓଡ଼ିଶାର ସମ୍ବଲପୁର ଅଞ୍ଚଳକୁ ନିଜର କର୍ମକ୍ଷେତ୍ର ରୂପେ ନିର୍ବାଚିତ କରିନେଇଥିଲେ । ଦକ୍ଷିଣ-ଓଡ଼ିଶା ଓ ପଶ୍ଚିମ-ଓଡ଼ିଶା ସେତେବେଳେ ଯଥାକ୍ରମେ ମାନ୍ଦ୍ରାଜ ପ୍ରଦେଶ ଓ ମଧ୍ୟପ୍ରଦେଶର ଅନ୍ତର୍ଭୁକ୍ତ ହୋଇ ରହିଥିଲା । ବିଦ୍ୟାରତ୍ନ ମହୋଦୟ ଓଡ଼ିଆଭକ୍ତିବହୁଳ ଦକ୍ଷିଣ-ଓଡ଼ିଶା ଓ ସମ୍ବଲପୁର ଅଞ୍ଚଳର କେତେକ ଓଡ଼ିଆ ରାଜାଙ୍କ ପୋଷକତାରେ ପ୍ରକାଶିତ 'ପ୍ରଜାବନ୍ଧୁ' (ରମ୍ଭାରୁ), 'ଗଞ୍ଜାମଗୁଣଦର୍ପଣ' (ବଡ଼-ଖେମଣ୍ଡିରୁ), 'ସମ୍ବଲପୁରହିତୈଷିଣୀ' (ସମ୍ବଲପୁରରୁ) ପ୍ରଭୃତି ଓଡ଼ିଆ ପତ୍ରିକାର ସମ୍ପାଦକରୂପେ ବିପୁଳ ଖ୍ୟାତି ଅର୍ଜନ କରି ଜୀବନର ମୂଲ୍ୟବାନ୍ ସମୟତକ ମାନ୍ଦ୍ରାଜ ପ୍ରଦେଶ ଓ ମଧ୍ୟପ୍ରଦେଶ ମଧ୍ୟରେ ଥିବା ଓଡ଼ିଆ-ଅଧ୍ୟୁଷିତ ଅଞ୍ଚଳମାନଙ୍କରେ କଟାଇ-ଦେଇଥିଲେ । ମୋଗଲବନ୍ଦି-ଓଡ଼ିଶାର ଅଳ୍ପ କେତେକ ସାମ୍ବାଦିକ ଓ ଜାତୀୟତାର ପୁରୋଗାମୀ ବ୍ୟକ୍ତିଙ୍କୁ ଛାଡ଼ିଦେଲେ ସାଧାରଣ ସ୍ତରର ଜନସମ୍ପ୍ରଦାୟଙ୍କ ନିକଟରେ ସେ ସେତେ ସୁପରିଚିତ ନଥିଲେ । ଏହି କାରଣରୁ ତାଙ୍କ ବୈୟକ୍ତିକ ବୈଶିଷ୍ଟ୍ୟ ଜନମଙ୍ଗଳ ଆଭିମୁଖ୍ୟ ଓ ଦେଶମାତୃକା-ସେବାର ଭୂମିକା ସମ୍ପର୍କରେ ଏଠାରେ ଯତ୍କିଞ୍ଚିତ୍ ସାମାନ୍ୟ ଉଲ୍ଲେଖ କରିବା ଏକାନ୍ତ ଆବଶ୍ୟକ ମନେହୁଏ ।

ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ଗୁଣାବଳି ଗାଇଲେ ସରିବ ନାହିଁ । କଟକ ପ୍ରିଣ୍ଟିଂ କମ୍ପାନୀ ପ୍ରେସ୍‌ର ପ୍ରତିଷ୍ଠାତା କର୍ମଯୋଗୀ ଗୌରୀଶଙ୍କର ରାୟଙ୍କ ବଳିଷ୍ଠ ସମ୍ପାଦକତ୍ୱରେ ଓଡ଼ିଶାର ଯେଉଁ ସର୍ବପ୍ରଥମ ସାପ୍ତାହିକ ସମ୍ବାଦପତ୍ରିକା 'ଉତ୍କଳଦୀପିକା' ଉକ୍ତ ଅନୁଷ୍ଠାନରୁ ପ୍ରକାଶିତ ହୋଇ ଦୀର୍ଘକାଳ ଅନବଚ୍ଛିନ୍ନ ଜନସେବା କରିଆସୁଥିଲା, ନିର୍ଭୀକ ସମ୍ପାଦକ ରାୟଙ୍କ ମୃତ୍ୟୁର କେତୋଟି ବର୍ଷ ପରେ ନାନା ବିଶୃଙ୍ଖଳା ଓ ଘାତପ୍ରତିଘାତର ସଙ୍ଘର୍ଷମୟ ଘୂର୍ଣ୍ଣିରେ ପଡ଼ି ତାହା ଅଳ୍ପ କିଛିକାଳ ବନ୍ଦ ହୋଇଯାଇଥିଲା; କିନ୍ତୁ ସେହି ଘୂର୍ଣ୍ଣିର ଅବସାନ ଘଟିବାକୁ ବେଶୀ ସମୟ ଲାଗିଲା ନାହିଁ । ପତ୍ରିକାଟି ଜୀବନ୍ୟାସ ପାଇ ପୁଣି ଆତ୍ମପ୍ରକାଶ କଲା । ଆଜୀବନ ବିଭିନ୍ନ ପତ୍ରିକା-ସମ୍ପାଦନାରେ ଧୁରୀଣ ଓ ଯଶୋବନ୍ତ ଏହି ବିଦ୍ୟାରତ୍ନ ମହୋଦୟଙ୍କ ସାହସିକ ସମ୍ପାଦକତ୍ୱ ସେତେବେଳକୁ 'ଦୀପିକା'ର ପୂର୍ବ ପ୍ରତିଷ୍ଠା ଫେରାଇ-ଆଣିପାରିଥାଏ ।

ବିଦ୍ୟାରତ୍ନେ ସ୍ୱାଧୀନଚେତା, ଅସାଧାରଣ ବ୍ୟକ୍ତିତ୍ୱବନ୍ତ, ସ୍ୱଦେଶବତ୍ସଳ, ନିରାଡ଼ମ୍ବର, ପ୍ରବୀଣ, ଉଦ୍‌ଯୋଗୀ, ସଂଯତବାକ୍, ବିଦ୍ୟାବିଶାରଦ, ସାମ୍ବାଦିକତା-କ୍ଷେତ୍ରର ଅଧିନାୟକ । ତାଙ୍କର ପ୍ରତ୍ୟେକ ବାକ୍ୟରୁ ଜ୍ଞାନ-ଜ୍ୟୋତିର ସ୍ଫୁଲିଙ୍ଗ ନିର୍ଗତ ହେଉଥାଏ—ତାହା ପୁଣି ଥାଏ ଗୁରୁଜନୋଚିତ ଉପଦେଶାବଳୀର ସ୍ନିଗ୍ଧ ରସରେ ଶିତପୁଷ୍ଟିତ । ତାଙ୍କ ଆଗମନର ସମ୍ବାଦ ସଦ୍ୟାବସ୍ଥିତ ପୁରାତନ ଅନ୍ତେବାସୀମାନଙ୍କ ଦ୍ୱାରା ହଷ୍ଟେଲସାରା ପ୍ରଚାରିତ ହୋଇଯିବା ମାତ୍ରେ, ସ୍ପଷ୍ଟ ମନେଅଛି, ଆମେ ନୂଆ ଅନ୍ତେବାସୀଯାକ ଉତ୍କଣ୍ଠ ଆଗ୍ରହରେ ଝଟେଦିନେ ବସିଲା ଥାନରୁ ଉଠିଆସି ମଧୁମାଛିଦଳ ପରି ତାଙ୍କୁ ବେଢ଼ିଯାଇଥିଲୁଁ ପ୍ରତି ନିବେଦନ

ସହି ପାରୁଛନ୍ତି ଆସିବାପାଇଁ । ସେ ବରାଭୟ ମୁଦ୍ରାରେ ହସ୍ତ ପ୍ରସାରିତ କରି ଉପସ୍ଥିତ ଆମ ସମସ୍ତଙ୍କୁ ଉପନିଷଦ ବାଣୀରେ ଆଶୀର୍ବାଦ କରିଥିଲେ, ଆଉ 'ଉତ୍କଳମଧୁପ'ର ସଦ୍ୟ-ପ୍ରକାଶିତ ସଂଖ୍ୟାରୁ ଖଣ୍ଡିଏ ଖଣ୍ଡିଏ ଆମ ପ୍ରତ୍ୟେକଙ୍କ ହାତକୁ ବଢ଼େଇଦେଇ ଆଶାସ୍ୱୀ କଣ୍ଠରେ କହିଥିଲେ :

"ଏହି କ୍ଷୁଦ୍ରାଙ୍ଗ ମାସିକ ପତ୍ରିକାଟି ମୋର ସମ୍ପୂର୍ଣ୍ଣ ନିଜସ୍ୱ ଏବଂ ମୋଦ୍ୱାରା ସମ୍ପାଦିତ ହୋଇ ନିୟମିତରୂପେ ପ୍ରକାଶ ପାଇଆସୁଛି । ଓଡ଼ିଶାର କିଶୋରଗୋଷ୍ଠୀ ପାଇଁ ଏହା ମୁଖ୍ୟତଃ ଅଭିପ୍ରେତ । କୈଶୋର ହିଁ ଭବିଷ୍ୟତ୍ ଜୀବନଗଠନ ଲାଗି ମାଲମସଲା ସଂଗ୍ରହର ପ୍ରକୃଷ୍ଟ ବୟସ । ଏହି କୋମଳ ବୟସର ଛାତ୍ରଛାତ୍ରୀମାନଙ୍କୁ ଯେତେ ବେଶୀ ଶିକ୍ଷଣୀୟ ଉପାଦାନ ଯୋଗାଇ ଦିଆଯାଇପାରିବ, ସେତେ ବେଶୀ ସେମାନଙ୍କର ମଙ୍ଗଳ ସାଧିତ ହେବ । ଏହି ଲକ୍ଷ୍ୟକୁ ଆଖି ଆଗରେ ରଖି 'ଉତ୍କଳମଧୁପ' ଆଗେଇଚାଲିଛି । ଏହାକୁ ସୁସ୍ଥ ଶରୀରରେ ଜୀବିତ ରଖିବା ଏକ ପବିତ୍ର ଜାତୀୟ କର୍ତ୍ତବ୍ୟ । ତେଣୁ ତୁମମାନଙ୍କଠାରୁ ଯଥେଷ୍ଟ ସାହାଯ୍ୟ ଆଶା କରିବା ମୋ ପକ୍ଷରେ ଅତି ସ୍ୱାଭାବିକ । ମନେରଖିଥାଅ, ଯେଉଁ-ମାନଙ୍କ ଭାବୀ ଜୀବନର ଉନ୍ନୟନପାଇଁ ଏହି ପତ୍ରିକାଟି ଉଦ୍ଦିଷ୍ଟ, ଜାତିର କୋରକ ସଦୃଶ ସେହି ସୁକୁମାର ବାଳକବାଳିକାଙ୍କୁ ସୁବାସିତ ଫୁଟନ୍ତ ଫୁଲରେ ପରିଣତ କରିବାର ନୈତିକ ଦାୟିତ୍ୱ ତୁମେମାନେ ହିଁ ଦିନେ ବହନ କରିବ । ପିଲାମାନଙ୍କ ଜ୍ଞାନପରିସରବୃଦ୍ଧି ଓ ଚରିତ୍ରଗଠନପାଇଁ ଉପାଦେୟ ଯେତେ ଗଳ୍ପକଥା, ସାଧୁବାଣୀ, ଜ୍ଞାନୋନ୍ମେଷକର ଯେତେ ନୂଆ ନୂଆ କୌତୂହଳୋଦ୍ଦୀପକ ବିଷୟ ଆହରଣ କରିପାରିବ, ସେଗୁଡ଼ିକୁ ସଂକ୍ଷିପ୍ତ ଆକାରରେ ଅତି ସରଳ ଭାଷାରେ ଲେଖି ମୋ ହାତକୁ ଦେବ । ମୋର ଦ୍ୱାର ସଦାସର୍ବଦା ତୁମମାନଙ୍କପାଇଁ ମୁକୁଳା ରହିଛି । ନିଜର ସୁବିଧା ଓ ଅବସର ଦେଖି ମୋ ପାଖକୁ ଆସ, ଆଳାପ-ଆଲୋଚନା କର । ମୁଁ ସେଥିପାଇଁ ଅତ୍ୟନ୍ତ ଆନନ୍ଦର ସହିତ ସମୟ ଦାନ କରିବି ।"

ଏଭଳି ଆନ୍ତରିକତା-ରସାଣିତ ସ୍ନେହାକ୍ତ ବଚନ ଖୁବ୍ କ୍ୱଚିତ୍ ଲୋକଙ୍କ ମୁଖରୁ ଶୁଣାଯାଇଥାଏ । ସେ ରହୁଥାନ୍ତି କଟକ ପ୍ରିଣ୍ଟିଂ କମ୍ପାନୀ ପ୍ରେସ୍‌ର ଏକ ପ୍ରଶସ୍ତ ଦ୍ୱିତଳ କକ୍ଷରେ । ମୁଁ ତାଙ୍କ ସାନ୍ନିଧ୍ୟ ଲାଭପାଇଁ କ୍ରମେ ଆତୁର ହୋଇଉଠିଲି । ତାଙ୍କର ସ୍ନିଗ୍ଧାଳାପ ମତେ ଏତେ ଜୋର୍‌ରେ ଆକୃଷ୍ଟ କଲା ଯେ, ସେ କଟକରେ ରହିଥିବା ପର୍ଯ୍ୟନ୍ତ ବରାବର ତାଙ୍କ ନିକଟକୁ ଯାଇଛି; ମାତ୍ର ଶତ ସାଧ୍ୟସାଧନା ଓ ସନ୍ଧାନ ସତ୍ତ୍ୱେ ତାଙ୍କ ମଧୁସିକ୍ତ ବାଣୀ-ତଳେ ରତିଏ ସୁଦ୍ଧା କୃତ୍ରିମତା ବା ଛଦ୍ମର ସିକ୍‌ଥ କେବେହେଲେ ଦେଖିବାକୁ ପାଇନାହିଁ । ତାଙ୍କ ଅକୃତ୍ରିମ ସୌଜନ୍ୟ ଓ ମହାର୍ଘ ସାଧୁତାର ମାର୍ମିକତାରେ ମୁଁ ଯେତିକି ସ୍ତମ୍ଭିତ ହୋଇଛି, ତାରୁଣ୍ୟସୁଲଭ କୌତୂହଳାତିଶଯ୍ୟରେ ତାଙ୍କୁ ପରଖିବାକୁ ଅବାଞ୍ଛିତ ଉଦ୍ୟମ କରି ମନେ ମନେ ସେତିକି ଲଜ୍ଜିତ ଓ ଧିକ୍କୃତ ହୋଇଛି ।

'ଉତ୍କଳମଧୁପ' ତା' ଧାରୁ ମୁଦ୍ରାବକ ପ୍ରକାଶିତ ହେଉଥାଏ । ଯଥାସାଧ୍ୟ ଚେଷ୍ଟା କରି ପ୍ରାପ୍ତ ପ୍ରତି ସଂଖ୍ୟାପାଇଁ କିଛୁ-ନା-କିଛୁ କଣୋର ବୟସୋପଯୋଗୀ ଲେଖା ଯୋଗାଇବାକୁ ମୁଁ ମୋର କର୍ତ୍ତବ୍ୟ-ସୂଚୀରେ ଅଗ୍ରାଧିକାର ଦେଇଲି । ମୋର ଅଧିକାଂଶ ଲେଖା ସେ ତାଙ୍କ କଡ଼ାକଡ଼ି ତନଖିର ଅଗ୍ନିପରୀକ୍ଷାରୁ ଉତ୍ତୀର୍ଣ୍ଣହୋଇଥାଏ, ଏଥିପାଇଁ ମୁଁ ନିଜକୁ କୃତକୃତ୍ୟ ମନେକରୁଥାଏଁ । ବୋଲିବା ବାହୁଲ୍ୟ ଯେ, 'ମଧୁପ'ରେ ସ୍ଥାନପାଉଥିବା ମୋର ପ୍ରତ୍ୟେକ ଲେଖାରେ ବିଦ୍ୟାରତ୍ନଙ୍କ ସିଦ୍ଧହସ୍ତତାର ଛାପ ସ୍ପଷ୍ଟ ବାରିହୋଇପଡ଼ୁଥିଲା ।

ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ଥିଲେ ଏକାଧାରରେ ସାଙ୍ଗଠନିକ ସାମ୍ବାଦିକ, କବି, ପ୍ରଖ୍ୟାତ ଲେଖକ, ସୁସାହିତ୍ୟିକ ଓ ଶାଣିତ ସମାଲୋଚକ । ଗରିବର ଗୋରୁ, ସୁବର୍ଣ୍ଣଚମ୍ପା, ଉଦ୍‌ବୋଧିନୀ, କୀର୍ତ୍ତିକୌମୁଦୀ, ନୀତିରତ୍ନାକର, ଶିକ୍ଷାବିନୋଦ, ମଦନବିନୋଦ, ନୀତି-ସୁଧାକର, ମଣିରତ୍ନମାଳା, ଗୋବିନ୍ଦମଞ୍ଜରିକାବଳି, ପ୍ରବାଦପୁଷ୍ପାଞ୍ଜଳି, ଆଖ୍ୟାନମାଳା, ସମୁଦ୍ରଯାତ୍ରା ବିଗ୍ରହ ପ୍ରଭୃତି ପଚିଶରୁ ଅଧିକ ସଂଖ୍ୟକ ପଦ୍ୟ ଓ ଗଦ୍ୟ ପୁସ୍ତକ ସେ ରଚନା କରିଥିଲେ । ବାସ୍ତବରେ ତାଙ୍କର ସାରସ୍ୱତ କୃତି ଓ କୃତିତ୍ୱ ଥିଲା ବହୁମୁଖୀ ଏବଂ ପ୍ରତିଭା ଥିଲା ସହଜାତ ଓ ସଂସ୍କୃତିପୁଷ୍ଟ ।

ଦ୍ୱିତୀୟ-ବିଶ୍ୱଯୁଦ୍ଧୋତ୍ତରଜାତ ଓଡ଼ିଆପୁଅମାନଙ୍କ ଆଗରେ ଦେଶମାତୃକାର ପରମ-ପୂଜାର୍ଘ୍ୟ ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କୁ ଅଳ୍ପ କଥାରେ ଚିହ୍ନାଇବା ବଡ଼ କଷ୍ଟସାଧ୍ୟ ବ୍ୟାପାର; କାରଣ ଏହି ସ୍ୱନାମଧନ୍ୟ ପୁରୁଷସିଂହଙ୍କ ବିସ୍ତୃତ ଜୀବନଚରିତ ସଂକଳନ କରିବା ପାଇଁ ଏପର୍ଯ୍ୟନ୍ତ ଆନ୍ତରିକ ଉଦ୍ୟମ ହୋଇନାହିଁ, ଏପରି କି ତାଙ୍କ ଘଟଣାବହୁଳ କର୍ମମୟ ଜୀବନର ସଂକ୍ଷିପ୍ତ ଝଲକ ମଧ୍ୟ ପୁସ୍ତକାକାରରେ ପ୍ରକାଶ ପାଇନାହିଁ । ତେଣୁ ଏଠାରେ ଏତିକିମାତ୍ର ସୂଚନାରେ କୁହାଯାଇପାରେ ଯେ, ବିଭିନ୍ନ ପ୍ରଦେଶରେ ବିକ୍ଷିପ୍ତଭାବରେ ଲାଗିଲା ସତ୍ତ୍ୱେ ସଂଯୁକ୍ତ ହୋଇ ରହିଥିବା ଓଡ଼ିଆଭାଷୀ ଅଞ୍ଚଳଗୁଡ଼ିକର ଏକତ୍ରୀକରଣ ଏବଂ ପରସ୍ପର ବିଚ୍ଛିନ୍ନ ଉତ୍କଳସନ୍ତାନମାନଙ୍କ ମଧ୍ୟରେ ନବଜାଗରଣ-ସଂଚାରଣର ଲକ୍ଷ୍ୟ ଘେନି ସର୍ବପ୍ରଥମେ ଯେଉଁ 'ଗଞ୍ଜାମ ସମ୍ମିଳନୀ' ୧୯୦୩ ମସିହାର ଅପ୍ରେଲ ମାସରେ ମହାସମାରୋହ ସହ ରମ୍ଭାରେ ଥିବା ଖଲ୍ଲିକୋଟ ରାଜପ୍ରାସାଦରେ ଅନୁଷ୍ଠିତ ହୋଇଥିଲା, ତାହାର ବିପୁଳ ଆୟୋଜନ ଓ ସାର୍ଥକୀକରଣର ମୂଳ ହୃତ୍‌ପିଣ୍ଡ ଥିଲେ ଏହି କୃତକର୍ମା, ଦେଶାତ୍ମଧର୍ମୀ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ । ଖଲ୍ଲିକୋଟର ତତ୍କାଳୀନ ରାଜା ପୁଣ୍ୟଚରିତ ହରିହର ମର୍ଦ୍ଦରାଜ ଦେବଙ୍କ ଏକକ ଆର୍ଥିକ ପୃଷ୍ଠପୋଷକତାରେ ହିଁ 'ଗଞ୍ଜାମ ସମ୍ମିଳନୀ' ପୂର୍ଣ୍ଣାଙ୍ଗ ସାଫଲ୍ୟ ଅର୍ଜନ କରିଥିଲା । ମିଷ୍ଟର ଦାସ, ଫକୀରମୋହନ ସେନାପତି, ଗୌରୀଶଙ୍କର ରାୟ ପ୍ରମୁଖ ନେତୃବର୍ଗ ଓ ସ୍ୱଦେଶସ୍ନେହୀ କଲେଜଛାତ୍ର ଗୋପବନ୍ଧୁ ଦାସ ଓଡ଼ିଆ ଜାତିର ସେହି ଐତିହାସିକ ମିଳନପୀଠରେ ଅଖଣ୍ଡ ପ୍ରଦୀପ ପ୍ରଜ୍ୱଳିତ କରି ଛିନ୍ନମସ୍ତା ଛିନ୍ନହସ୍ତା ଉତ୍କଳ-ମାତାଙ୍କୁ ବନ୍ଦନା କରିଥିଲେ ଏକତାର ମହାମନ୍ତ୍ର ଗାଇ । ଏହାରି ଅବ୍ୟବହିତ ପରେ (୧୯୦୩ ମେ ମାସରେ) 'ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ' ଗଠନର ଦାବି ଘେନି ସେହି ରମ୍ଭାର

ଖଲ୍ଲିକୋଟ ରାଜପ୍ରାସାଦରେ ଯେଉଁ 'ଉତ୍କଳ ସମ୍ମିଳନୀ'ର ପ୍ରାଣପ୍ରତିଷ୍ଠା ହେଲା, ଏହି 'ଗଞ୍ଜାମ ସମ୍ମିଳନୀ' ହିଁ ତାର ଜନ୍ମଦାତ୍ରୀ । ଏଥିକରୁ ହିଁ ଆଜିର ତରୁଣସମାଜ ଦୂରଦ୍ରଷ୍ଟା 'ବିଦ୍ୟାରତ୍ନ'ଙ୍କ ମହନୀୟ କର୍ମପ୍ରାଣତା ଓ ଜନ୍ମଭୂମିଚେତନାର ପ୍ରକୃଷ୍ଟ ପରିଚୟ ନିଶ୍ଚୟ ପାଇପାରିବେ ।

ଏବେ 'ଭାରତ ସେବକ ସମିତି' (Servants of India Society)—ବର୍ତ୍ତମାନର ପରିବର୍ତ୍ତିତ ନାମ 'ହିନ୍ଦ୍ ସେବକ ସମାଜ'ର ଆଜୀବନ ସଭ୍ୟ ସମଦର୍ଶୀ ଲକ୍ଷ୍ମୀନାରାୟଣ ସାହୁଙ୍କ ସମ୍ବନ୍ଧରେ କିଞ୍ଚିତ୍ ଆଲୋକପାତ କରିବି ।

ଦିନେ ଅବେଳରେ ମାଡ଼ିଆସିଲେ ସେ ଆମ ହଷ୍ଟେଲ୍ ପରିସରକୁ ପ୍ରାୟ ଦିନ ବାରଟାରେ । ସେଦିନ ଆମର ସ୍କୁଲ ନ ଥାଏ—ସମ୍ଭବତଃ କିଛି ଗୋଟାଏ ଛୁଟି ଯୋଗୁଁ । ମେସ୍‌ରେ ଖିଆପିଆର ଟିକେ ବିଶେଷ ବ୍ୟବସ୍ଥା ହୋଇଥିଲା । ସେଥିପାଇଁ ଆମମାନଙ୍କର ଖାଇବା ବିଳମ୍ବିତ ହୋଇଥାଏ । ସେପର୍ଯ୍ୟନ୍ତ ଆମେ କେହି ଲକ୍ଷ୍ମୀନାରାୟଣ ସାହୁଙ୍କୁ ସ୍ୱଚକ୍ଷୁରେ ଦେଖି ନଥିଲୁଁ; କେବଳ ଶୁଣିଥିଲୁଁ ଯେ, ସେ ଅତି ସରଳ ସାଦାସିଧା ଖୋଲ୍‌ଠୋକ୍ ଲୋକ—ଭାରି ଶ୍ରଦ୍ଧାଳୁ, ମିଶୁକ, ଲୋକପ୍ରିୟ, ସମାଜସଂସ୍କାରକ, ସଭାସମିତିରେ ଅନର୍ଗଳ ବକ୍ତା । ଜଣକ ଉପରେ ଜଣେ ପଡ଼ିଲା ପରି ଉଚ୍ଚାଟ ଉଦ୍‌ବେଗର ସହିତ ଆମେ ନୂଆ ଅଧ୍ୟାୟୀମାନେ ତାଙ୍କୁ ଦେଖିବାକୁ ଧାଇଁଲୁଁ । ସେତେବେଳେ ସେ ଦ୍ୱିଚକ୍ରି ଯାନରୁ ଅବତରଣ କରି ସଦର ଫାଟକ ଦେଇ ପ୍ରବେଶ କରୁଥା'ନ୍ତି ଛାତ୍ରାବାସର ପ୍ରଶସ୍ତ ପ୍ରାଙ୍ଗଣ ମଧ୍ୟକୁ—ଶାଳପ୍ରାଂଶୁ, ବଳିଷ୍ଠବପୁ, ନଗ୍ନବକ୍ଷ, ପରିଧେୟ ଖଣ୍ଡେ କେବଳ ଆଣ୍ଠୁଲୁଗା ଖଦଡ଼ ଧୋତି, ଦର୍ଶନୀୟ ଚଉହଦା ସୁପୁରୁଷ ଜଣେ ।

ହଷ୍ଟେଲ୍-ତତ୍ତ୍ୱାବଧାୟକ ପଣ୍ଡିତ କୃଷ୍ଣମଣି ଦାଶଙ୍କ ଇଙ୍ଗିତକ୍ରମେ ଆମେମାନେ ତାଙ୍କୁ ସସମ୍ଭ୍ରମ ପ୍ରଣତି ଜ୍ଞାପନ କରି ମଧ୍ୟାହ୍ନଭୋଜନପାଇଁ ଆମନ୍ତ୍ରଣ କଲୁଁ । ସେ ଶିଶୁସୁଲଭ ସରଳତାର ହସଟିଏ ହସି ପ୍ରଥମ-ସାକ୍ଷାତ୍‌ର ଅବତରଣିକାସ୍ୱରୂପ ନିଃସଙ୍କୋଚରେ ନିଜ ମୁଖରେ ଖୋଲଖୋଲି ନିଜର ବାସ୍ତବ ପରିଚୟ ଦେବାକୁ ଯାଇ କହିଲେ :

"ମୁଁ ତ ଗୋଟାଏ ଅଘରଦୁଆରୀ ବାରବୁଲା । ବାଡ଼ିଚକି ଭଳି ଘୂରିଅଡ଼େ ଘୂରିବୁଲିବା ମୋର ନିତିଦିନିଆ ପେସା । ପାହାନ୍ତା ପହରୁଁ ଉଠେଁ, ଖୁବ୍ ଚଢ଼ାଗଳାରେ ଦମେ ପଢ଼ି କୁକୁଡ଼ା-କୁଆ-କଜଳପାତିଙ୍କ ନିଦ ଭଙ୍ଗାଏଁ । ତା'ପରେ ଗାଧୁଆପାଧୁଆ ପ୍ରଭୃତି ପ୍ରାତଃକୃତ୍ୟ ଚଟାପଟ୍ ଶେଷ କରିଦିଏଁ । ଯାହା ତାହି ଟିକିଏ କିଛି ପାଟି-ବିବରକୁ ଫିଙ୍ଗି ପେଟ-ଦିଅଁର ପହିଲ ଧୂପ କାମ ବଢ଼େଇଦିଏଁ । ଏତିକ ପାଇଁଟି ସରିଗଲେ ସୁଖଦୁଃଖର ସାଥୀ ଏଇ ଦୁ'ଚକିଆ ଧିତଡ଼ା ଗାଡ଼ିଟିକୁ ଗଡ଼େଇ ଗଡ଼େଇ ଭୋର୍-ଭୋର୍ ବାହାରିପଡ଼େଁ ରାଜ-ଦାଣ୍ଡକୁ । ବାଟରେ ଯେତେ ଯିଏ ଚହ୍ଲା ଦରଚହ୍ଲା ହାବୁଡ଼େ ପଡ଼ନ୍ତି, କୁଆପିଲାଙ୍କଠୁଁ ବୁଢ଼ାବୁଢ଼ୀଯାଏ କାହାରିକି ଛାଡ଼େ ନାହିଁ, ସଭିଙ୍କ ସାଙ୍ଗରେ କିଛି-ନା-କିଛି ସୁଖଦୁଃଖ ହୁଏଁ । ଯିଏ ଡାକେ, ତା ଘରକୁ ଯାଏଁ; ଯିଏ ଯାହା ଯାଚେ, ଶ୍ରଦ୍ଧାରେ ସେଥିରୁ ଟିକେ

ପାଟିରେ ପକାଏଁ । ଖଞ୍ଜାଭିତରେ ପଶି କ ଝିଅବୋହୂ କ ବୁଢ଼ୀହାଡ଼ୀ ସମସ୍ତଙ୍କ ସାଙ୍ଗରେ ଗପ ଜମାଏଁ । ଏ ସହରଝାସାକ ଘର ଘରକେ ମୋର ତେଗ, ଠାଆଠାଆକେ ପଲ୍ଲିଭେଗଷିଆ । ସଭିଏଁ ମୋର ପ୍ରିୟ, ଅତି ଆପଣାର; ସଭିଏଁ ମୋର ବନ୍ଧୁ, ଷ୍ଟେଟ ବଗଦର । ଖରା-ବର୍ଷା, ଶୀତ-କାକର ମତେ ଭୟକରେ । ଯେବେ ମଫସଲର କୌଣସି ସ୍ଥାନକୁ ଯିବାକୁ ମନ ଉଠିଲା, ସାଥେସାଥ୍ ବାହାରପଡ଼େ—ପାଟ-ପଦର, ବାଟ-ଅବାଟ ହୁଡ଼-ବାଡ଼, ନଇ-ନାଳ କଛି ମୁଁ ମାନେ ନାହିଁ । ଜନ୍ମ ଦିନ ମୋର ଗୁଡ଼ିଆ କୂଳରେ ମୁଁ କନ୍ତୁ 'ଜାତରେ ପାଣ' ବୋଲ ପରିଚୟ ଦିଏଁ—ଖାଲ କଥାରେ ନୁହେଁ, ସ୍ଥପ ହରଫରେ ମଧ୍ୟ ମୋ' ନିଜ ବହିରେ । କଣ୍ଡରା, ହାଡ଼ି, ଡମ, ଧୋବା, ମୋଚି, ଯାହାଙ୍କୁ ଲୋକେ ଅଛୁଆଁ ବୋଲି ଦୂରରୁ ନାକ ଟେକନ୍ତି, ସେ ସମସ୍ତେ ମୋ' ପାଖରେ ଛୁଆଁ— ସେମାନଙ୍କୁ ବେଶୀ ମୁଁ ଆଦର କରେ, ଶ୍ରଦ୍ଧା କରେ; କାରଣ ଏ ଛୁଆଁ-ଅଛୁଆଁ ଭେଦତ କୃତ୍ରିମ ବଣ ସ୍ୱାର୍ଥାନ୍ଧ ସମାଜପତିମାନଙ୍କର ଚଳାଣିଆ ଫିସାଦ । ଏହି ତଥାକଥିତ ଅଛୁଆଁଙ୍କ ଘରକୁ ଯିବାରେ, ସେମାନଙ୍କ ସହିତ ହେଲମେଳ ହେବାରେ ମୋର ସର୍ବାଧିକ ଆନନ୍ଦ । ସେମାନଙ୍କ ମନରୁ ହୀନମନ୍ୟତାର କଳଙ୍କମୟ ଧାରଣାକୁ ନିକାଲି ଦେବାପାଇଁ ମୁଁ ଜବର- ଦସ୍ତି ହାଣ୍ଡିଶାଳକୁ ଯାଇ ବୋହୂ ଭୂଆସୁଣୀଙ୍କ ହାତରେ ପଖାଳ ବଢ଼େଇ ଖାଏଁ, ତା' ସାଙ୍ଗକୁ ପିଆଜ ଚନ୍ଦୁଲି ଲଙ୍କା ଲୁଣ ଭିତରୁ ଯାହା କଛି ହେଲେ ମୋର କାମ ଚଳିଲା । ମତେ ସେତକ ଅମୃତ—ବଡ଼ବଡ଼ିଆ ଘରର ଷିର ପୁରି ମାଲପୁଆଠୁଁ ଅଧିକ ରୁଚକର, ଅଧିକ ତୃପ୍ତିକର । ଏବେ ଶିକ୍ଷାକ୍ଷେତ୍ର କଥା କହେଁ । ବିଭିନ୍ନ ପ୍ରକାର ଶିକ୍ଷାୟତନର ଶିକ୍ଷାର୍ଥୀମାନଙ୍କୁ ମଝିରେ ମଝିରେ ଭେଟିବା ମୋ' ପରିକ୍ରମାର ଏକ ପ୍ରୀତିକର ମୁଖ୍ୟ କାର୍ଯ୍ୟକ୍ରମ । ମୋର କଲେଜଶିକ୍ଷାପର ଜୀବନର ପ୍ରଥମ ବୃତ୍ତି ଥିଲା ଶିକ୍ଷକତା । ତେଣୁ ଛାତ୍ର ସମ୍ପ୍ରଦାୟଠାରୁ ଦୂରେଇ ରହିବା ମୋ' ପକ୍ଷରେ ଏକାବେଳେ ଅସମ୍ଭବ । କେତେଦିନରୁଁ ତୁମମାନଙ୍କ ସହିତ ମିଶିବାକୁ ମନସ୍ଥ କଲିଣି । ଆଜ ଆଉ ସମ୍ଭାଳି ନପାରି ଅଯମସ୍ଥ ହେଲେ ବି ଖେପି ଅଇଲି । ବାଟରେ ଘାଟରେ ବେଳେ ବେଳେ ମାଗି ଖାଇବା ମଧ୍ୟ ମୋର ଏକ ସୁଖକର ଅଭ୍ୟାସ । ତୁମେମାନେ ଏତେ ଆଦରସହକାରେ ମତେ ଆମନ୍ତ୍ରଣ କରୁଛ କ'ଣ, ମୁଁ ତ ବଳେ ଖାଇବାକୁ ମାଗିଥା'ନ୍ତି । ଆମ ଲୌକକ ପରମ୍ପରାରେ ପଦ ଅଛି 'ଆହାରେ ବ୍ୟବହାରେ ଚ ତ୍ୟକ୍ତଲଜ୍ଜଃ ସୁଖୀ ଭବେତ୍' ।"

ଦେଶ ସେବକ ଲକ୍ଷ୍ମୀନାରାୟଣଙ୍କ ଦାମୀ କଥାଗୁଡ଼ିକୁ ଆମେ ଯେମିତ ଢକଢକ ପିଇଯାଉଥିଲୁଁ ପୀୟୂଷ ପରି । ମହାତ୍ମା ଆଉ କାହାକୁ କହନ୍ତି ? ଲୋଷ୍ଟ୍ର-କାଞ୍ଚନରେ ସମଦର୍ଶନ, ସମଜ୍ଞାନ କଥା ଆଗରୁ କେବଳ ଧର୍ମୋପଦେଶରେ ଶୁଣିଥିଲି, କେବେହେଲେ ପ୍ରତ୍ୟକ୍ଷ କରି ନଥିଲି । ଏତେକାଳ ପରେ ଚକ୍ଷୁ ଓ କର୍ଣ୍ଣର ବିବାଦ ମେଣ୍ଟିଗଲା । ଲକ୍ଷ୍ମୀ- ନାରାୟଣବାବୁ ଯେ ଠିକ୍ ସେହି କାଟର, ସେ ଉଚ୍ଚତର କୋଟିର ଏକ ଜୀବନ୍ତ-ପ୍ରତିମା ବା ଦେବାତ୍ମା, ଏହା ବିଶ୍ୱାସ କରିବାରେ ମୋର ଅନେକହେଲେ ଦ୍ୱିଧା ରହିଲା ନାହିଁ କ ବିବେକ ଲବେ ହେଲେ ତହିଁରେ ବାଧାର ଟେରାବାଡ଼ ପକାଇଲା ନାହିଁ ।

ପୂଜ୍ୟ ଲକ୍ଷ୍ମୀନାରାୟଣବାବୁ ମଧ୍ୟାହ୍ନ ଭୋଜନପାଇଁ ଆମମାନଙ୍କ ଗହଣରେ ଆସନ ଗ୍ରହଣ କଲେ । ବେଳ ଗଡ଼ିଯାଉଥିବାରୁ 'ପ୍ରାପ୍ତମାତ୍ରେଣ ଭୋକ୍ତବ୍ୟମ୍' କହି ସେ ସର୍ବପ୍ରଥମେ ହାତ ଚଳାଇଲେ । ତାଙ୍କ ଦେଖାଦେଖି ଆମ ସମସ୍ତଙ୍କର ମଧ୍ୟ ହାତ-ତଣ୍ଟି ଚାଲିଲା, କଳ-ଚକ ଚାଲିଲା । ଭୋଜନାସନରେ ମଧ୍ୟ ଭୂୟୋଦର୍ଶୀ ଅତିଥିଙ୍କ ତୂଣୀରୁ ଶେଷ ହୋଇ ନଥାଏ ଚିତ୍ତାକର୍ଷୀ ଭାଷଣର ଲହର । ସେଥିରେ ଦୂଷିତ ରାଜନୀତି ଭଳି ଅଲୋଡ଼ା ଅରମାର ଗୋଟାଏ ହେଲେ ଦାଗ ନଥିଲା—ଥିଲା ଢେଙ୍କିଶାଳରୁ ଢେଙ୍କାନାଳ ପର୍ଯ୍ୟନ୍ତ ନାନା ବାଞ୍ଛନୀୟ ପ୍ରସଙ୍ଗର ରୁଚିକର ଖାଦ୍ୟ ସାମଗ୍ରୀ ।

ସାଧୁବାକ୍ ବକ୍ତା ମହୋଦୟ ଯେ ସ୍ଥାନ-କାଳ-ପାତ୍ରର ପ୍ରଭେଦ ବିଚାରି ନିର୍ଦ୍ଦୋଷ ବକ୍ତୃତା ଦେବାରେ ଅତି ବିଚକ୍ଷଣ, ଏହା ମୁଁ ତାଙ୍କ ବିଲକ୍ଷଣ ବାଗ୍‌ଭଙ୍ଗୀରୁ ବେଶ୍ ଠଉରାଇ-ପାରିଲି । ତାଙ୍କର ଅଧିକାଂଶ ବକ୍ତବ୍ୟର ନାଭିକେନ୍ଦ୍ର ଥାଏ ଓଡ଼ିଆସାହିତ୍ୟର କିଛି-ନା-କିଛି ଆଙ୍ଗିକ । ସେ ଯେତେବେଳେ ଯେଉଁ ପ୍ରସଙ୍ଗର ଅବତାରଣା କରୁଥାନ୍ତି, ତାକୁ ଚତୁରତାର ସହିତ ବୁଲେଇବାଲେଇ ଶେଷରେ ଆଣି ଚମତ୍କାର ଭାବରେ ଛୁଆଁଇ ଦିଅନ୍ତି ସାହିତ୍ୟିକତାର ପୃଷ୍ଠଭୂମିକାରେ । ଆମମାନଙ୍କୁ କେବଳ ନୀରବ ଶ୍ରୋତା କରି ରଖିବା ତାଙ୍କର ଆଦୌ ଅଭିପ୍ରେତ ନଥାଏ; ତେଣୁ ମଝେ ମଝେ ଖୁବ୍ କଦରରେ ଆଦାୟ କରିନେଉଥାନ୍ତି ଆଲୋଚ୍ୟ ପ୍ରସଙ୍ଗ ଉପରେ ଆମର ସ୍ୱାଧୀନ ମତାମତ, ଆଉ ନିଜ ପ୍ରାଜ୍ଞତାର ମାପକାଠିରେ ବଢ଼ି-ନେଉଥା'ନ୍ତି ଆମ ଭିତରୁ ମୌଳିକତାର ପ୍ରାଖର୍ଯ୍ୟ ଓ ବୁଦ୍ଧି ବିଚାରଣାର ତୀକ୍ଷ୍ଣତାରେ କାହାର ଦୌଡ଼ କେତେ । ଜ୍ଞାନରାଜ୍ୟରେ ଲକ୍ଷ୍ମୀନାରାୟଣଙ୍କ ସ୍ଥାନ କାହିଁ ଆଖି-ଅପହଞ୍ଚା କେତେ ଶୀର୍ଷରେ ଆଉ ଚଟିପାଠିମଣ୍ଡଳରେ ବେଞ୍ଚିଉଡ଼ା ଦେଇ ଶିଖୁଥିବା ଆମଭଳି ଗୁଆଁରଙ୍କ ଜାଗା କେତେ କାହିଁ ତଳେ । କିନ୍ତୁ ତାଙ୍କ ସାରଲ୍ୟ ଓ ସମସ୍ତଙ୍କ ହୃଦୟକୁ କିଣିନେବା ଗୁଣରେ କି କୁହୁକ କାଉଁରି ରହିଥିଲା କେଜାଣି, ଏ ବିରାଟ ବ୍ୟବଧାନକୁ ପୁରାପୁରି ଭୁଲିଯାଇ ଆମେ ସବୁ ସମକକ୍ଷ ଲୋକ ଭଳି ତାଙ୍କ ସହିତ ନିର୍ଭୀକଭାବରେ ତର୍କ-ବିତର୍କ ଓ ଭାବ ଆଦାନପ୍ରଦାନ କରିବାକୁ ଆଗେଇଯାଉଥିଲୁଁ । ତାଙ୍କର ଏହି ଅନନ୍ୟ-ସାଧାରଣ ଆସଙ୍ଗପ୍ରିୟତାକୁ ଲକ୍ଷ୍ୟ କରି ନିଖିଳ-ଭାରତ କଂଗ୍ରେସର ପୂର୍ବତନ ଯୁଗ୍ମସମ୍ପାଦକ ପଣ୍ଡିତ ନୀଳକଣ୍ଠ ଦାସ ୧୯୩୫ ମସିହାରେ କଥାପ୍ରସଙ୍ଗରେ କହିଥିଲେ, "ଓଡ଼ିଶାରେ ସବୁଠାରୁ ବେଶୀ ଜନପ୍ରିୟ ବ୍ୟକ୍ତି କିଏ, ଏହା ବାଛିବାପାଇଁ ଯଦି ବୟସବିଚାର ନରଖି ଆବାଳବୃଦ୍ଧବନିତା ସମସ୍ତଙ୍କୁ ଭୋଟର୍ ଶ୍ରେଣୀଭୁକ୍ତ କରାଯାଏ, ତାହାହେଲେ ସେଭଳି ନିର୍ବାଚନ ଲଢ଼େଇରେ ଲକ୍ଷ୍ମୀନାରାୟଣ ହିଁ ସର୍ବାଧିକ ଭୋଟରେ ବିଜୟୀ ହେବେ । ଅମ ଭଳି ଓଡ଼ିଶାର ଖଦଡ଼ିଆ ଯେକୌଣସି ନେତୃସ୍ଥାନୀୟ ଲୋକ ତାଙ୍କ ପାଖରୁ ଶୋଚନୀୟ ଭାବରେ ପରାଜିତ ହେବା ସୁନିଶ୍ଚିତ, ଏପରିକି ପ୍ରତିଦ୍ୱନ୍ଦ୍ୱୀମାନଙ୍କ ଅମାନତ ଟଙ୍କା ଉଡ଼ିଯିବା ମଧ୍ୟ ଧ୍ରୁବ ବୋଲି ଜାଣ ।"

ଆୟୋଜିତ ମଧ୍ୟାହ୍ନ-ଭୋଜନର ଆମୋଦ ସଙ୍ଗେ ସଙ୍ଗେ ଆନୁଷଙ୍ଗିକ ମାଧ୍ୟାହ୍ନିକ

ସାହିତ୍ୟ ପରିକ୍ରମାର ଏହି ଆଲୋଚନାଚକ୍ରଟି ଏତେ ବେଶୀ ଉପଭୋଗ୍ୟ ହୋଇଥିଲା ଯେ, ତାହାର ମୂଳ ମିଶ୍ରି ଲକ୍ଷ୍ମୀନାରାୟଣବାବୁ କେବେହେଲେ ଆମ ମନରୁ ପାସୋରି ଯିବେ ନାହିଁ । ଭୋଜନ ବଢ଼ିଲାବେଳକୁ ସମୟ ପ୍ରାୟ ଦୁଇଟା ପାଖ ଧରିଆସୁଥାଏ । ଆମେମାନେ ଅତିଥି ମହୋଦୟଙ୍କୁ ଅନୁରୋଧ କଲୁ ଅଳ୍ପ କିଛି ସମୟ ଛାତ୍ରାବାସରେ ବିଶ୍ରାମ ନେବାକୁ; ମାତ୍ର ସେ ଠୋକଠୋକ ଭାବରେ ତାହା ପ୍ରତ୍ୟାଖ୍ୟାନ କରିବାକୁ ଯାଇ କହିଲେ :

"ପ୍ରକୃତ କର୍ମୀର ଜୀବନରେ କେବେହେଲେ ବିଶ୍ରାମପାଇଁ ଅବସର ମିଳେ ନାହିଁ । ଦିବାକାଳୀନ ବିଶ୍ରାମ ଅଭ୍ୟାସରେ ପରିଣତ ହୋଇଗଲେ ତାହା ଜନ୍ମ ଦିଏ ଆଳସ୍ୟକୁ; ସେହି ଆଳସ୍ୟ ଡାକିଆଣେ ଅସୁଖକୁ; ଅସୁଖ କେବେ ଏକା ଆସେ ନାହିଁ—ସାଙ୍ଗୋପାଙ୍ଗ ବିଳାସ, ବ୍ୟସନ ପ୍ରଭୃତିଙ୍କ ଗହଣରେ ଆସେ । ଏହା ଫଳରେ କର୍ମୀର ହୁଏ ଅଧଃପତନ, କର୍ତ୍ତବ୍ୟ-ମାର୍ଗରୁ ସ୍ଖଳନ; ତାର ଲକ୍ଷ୍ୟ ହୁଏ ବ୍ୟର୍ଥ, ନଷ୍ଟ ହୁଏ ପରମାର୍ଥ । ଏ ସଂସାରରେ କର୍ମ ଅନନ୍ତ ଓ ଅସୀମ; କିନ୍ତୁ ପରମାୟୁ ନିତାନ୍ତ ଶାନ୍ତ ଓ ସସୀମ । ଏଣୁ ମୁଁ ଦିନରେ ବିଶ୍ରାମକୁ ଆଦୌ ପ୍ରଶ୍ରୟ ଦିଏ ନାହିଁ । ବହୁମୂଲ୍ୟ ସମୟକୁ ବସି ଶୋଇ ଅପଚୟ କରିବାର ଦୁରଭ୍ୟାସ ମୋ' ଜାତକରେ ନାହିଁ । ପଞ୍ଚ ଜନରେ ପଞ୍ଚାମୃତ—କେଉଁଠି ପାଞ୍ଚଜଣ ଏକାଠି ମିଳିଗଲେ ମୁଁ ଗୋଷ୍ଠିଆ ସଭାଟିଏ ଆରମ୍ଭ କରିଦିଏ; ତଦ୍ଦ୍ୱାରା ନିଜ ନିଜ ମଧ୍ୟରେ ସାମାନ୍ୟ ହେଲେ ବି, ଭାବର କିଛି ଆଦାନପ୍ରଦାନ ତ ହୋଇପାରିବ । ଆଜିପାଇଁ ନିର୍ଦ୍ଧାରିତ କର୍ମସୂଚୀ ଅନୁଯାୟୀ ଦୁଇଟା ସୁଦ୍ଧା ଜଣେ ଭଦ୍ରବ୍ୟକ୍ତିଙ୍କ ଗୃହରେ ମତେ ପହଞ୍ଚିବାକୁ ହେବ । ସେଠି ସ୍ତ୍ରୀଲୋକ ସଂଖ୍ୟା ସାତ ଆଠରୁ କମ୍ ନୁହେଁ । ତା' ଛଡ଼ା ଦୁଇକଡ଼ରେ ଥିବା ଦୁଇ ପଡ଼ିଶା-ଘରର କେତେକ ସ୍ତ୍ରୀଲୋକ ମଧ୍ୟ ଥିବେ । ସେ ସମସ୍ତଙ୍କୁ ଏକାଠି ବସେଇ 'ନାରୀଜାଗରଣ' ସମ୍ପର୍କରେ ସନ୍ତକଣ୍ଠିତ ଉଦ୍‌ବୋଧନ ଦେବି । କଣ୍ଢୁଆସୁଣୀକୁଳ ପରଦା-ଉଢ଼ାଳରୁ ବାହାରି ଓଢ଼ଣାମୁକ୍ତ ହୋଇ ସଭାସମିତିରେ ତୁଣ୍ଡ ନ ଖୋଲିବା ପର୍ଯ୍ୟନ୍ତ ଆମ 'ସମାଜ-ସଂସ୍କାର' ଧ୍ୱନିର କୌଣସି ଅର୍ଥ ନାହିଁ । ଯୌତୁକ ପ୍ରଥା, କନ୍ୟାସୁନା, ଅନ୍ଧବିଶ୍ୱାସ, ନିରକ୍ଷରତା, ଗହଣାମୋହ, ଉଚ୍ଚ-ନୀଚ ଭେଦଭାବ, ସାଂପ୍ରଦାୟିକତା ପ୍ରଭୃତି ସାମାଜିକ କୁସଂସ୍କାରର ମୂଳୋତ୍ପାଟନ କରିବାର ଅମୋଘ ଅସ୍ତ୍ର ଅଛି ଏଇ ନାରୀ ସମ୍ପ୍ରଦାୟ ହାତରେ । ସେମାନେ ଜାଗ୍ରତ ହେଲେ ବଳେ ବଳେ ଏ ଜାତିର ମୋହନିଦ୍ରା ଭାଙ୍ଗିଯିବ । ତା' ନ ହେଲେ ଆମ ସମାଜଟା କାଳ କାଳ ଏହିପରି ପକ୍ଷାଘାତଗ୍ରସ୍ତ ହୋଇ ରହିଥିବ । ଏଥର ଶେଷ ବକ୍ତବ୍ୟସ୍ୱରୂପ ଗୋଟିଏ କଥା କହି ତୁମମାନଙ୍କଠାରୁ ବିଦାୟ ନେବି । ମୋ' ରୋପିତ 'ସହକାର' ବୃକ୍ଷଟି ଏବେ ତରୁଣ ତରୁରେ ପରିଣତ ହୋଇ ପୁଷ୍ପଭାରରେ ମଣ୍ଡିତ ହୋଇଛି । ତାହାକୁ ଆହୁରି ବର୍ଦ୍ଧିତ ଓ ଫଳଭାରାବନତ କରିବା ଦିଗରେ ତୁମ-ମାନଙ୍କର ମଧ୍ୟ ଯଥେଷ୍ଟ କର୍ତ୍ତବ୍ୟ ରହିଛି । ଏଇ 'ସହକାର' ତଳଟି ଉତ୍ସାହୀ ନବୀନ ଲେଖକ ଓ ଦରଦୀ ତରୁଣ କବିଙ୍କୁ ଆଶ୍ରୟ ଦେବାପାଇଁ ମୁଖ୍ୟତଃ ଉଦ୍ଦିଷ୍ଟ । ମୋର ବିଶ୍ୱାସ, ତୁମେମାନେ 'ସହକାର'କୁ ଶୀତଳତର କରିବାର ମହତ୍ ଲକ୍ଷ୍ୟରେ, ସେତୁବନ୍ଧ ନିର୍ମାଣରେ

ଗ୍ରନ୍ଥର ଭୂମିକା ଭଳି, ନିଜନିଜର ଶାଣିତ ଲେଖନୀ ସ୍ଖଳିତ କରିବାକୁ ଆଜିଠାରୁ ସଚେଷ୍ଟ ହେବ ।"

ଅଶେଷ ସଦ୍‌ଗୁଣଧାମ ଲକ୍ଷ୍ମୀନାରାୟଣଙ୍କର ଏହି ଉଦ୍‌ବୋଧନ ମନ୍ତ୍ର ମୋ ଲେଖାଲେଖି ଅଭ୍ୟାସରେ ନୂତନ ଜୀବନ୍ୟାସ ଦେଲା । ମୁଁ ତାଙ୍କୁ ହାତଯୋଡ଼ି ଅନୁରୋଧ କଲି, "ସାର୍, ପତ୍ରିକାରେ ପ୍ରକାଶଯୋଗ୍ୟ ହେବାଭଳି ଉନ୍ନତ ଲେଖା ଆମଦ୍ୱାରା କିପରି ସମ୍ଭବ ହେବ, ଦୟାକରି ତାର ସୂତ୍ର ବତାଇଦିଅନ୍ତୁ ।" ମୋର ଏହି ପ୍ରଶ୍ନ ଶୁଣି ସେ ଆନନ୍ଦର ସହିତ ଅଳ୍ପ ଟିକିଏ ରହି ଠିଆ ଠିଆ ଉତ୍ତର ଦେଲେ—

"ଏଥରଟା ମୋର ତୁମମାନଙ୍କୁ ପହିଲି ସଙ୍ଘୋଳା । ଅଯାଚିତଭାବରେ ମଧ୍ୟେ ମଧ୍ୟେ ମୁଁ ତୁମ ଗହଣକୁ ଆସିବି । ସାହିତ୍ୟସାଧନାଗତ ଯେତେ ଯାହା ପ୍ରଶ୍ନବାଚୀ ତୁମମାନଙ୍କ ମନରେ ଉଦିତ ହେବ, ମତେ ଜଣାଇଲେ, ମୁଁ ସେସବୁ ସମସ୍ୟାର ଯଥାସାଧ୍ୟ ସମାଧାନ କରିଦେବି । ପ୍ରଥମରୁ ଆଜି ଜାଣିରଖ ଯେ, ଓଳିଆରୁ ପଡ଼ି କେହି ଗଜା ହୋଇ ନଥାଏ—ମାତୃଗର୍ଭରୁ କେହି ବ୍ୟାସ ବାଲ୍ମୀକି ହୋଇ ବାହାରିନଥାଏ, ନିଜ ଅଧ୍ୟବସାୟ, ଅଧ୍ୟୟନ, ଅଧିଶ୍ରବଣ ବଳରେ ମଣିଷ ଶନୈଃ ଶନୈଃ ଜ୍ଞାନପରିକାଷ୍ଠାର ଅଧିକାରୀ ହୁଏ । ତଳୁ ଗୋଟିଏ ଗୋଟିଏ ପାହାଚ ଟପିଲେ ସିନା ସବା ଉପର ପାହାଚକୁ ଉଠିବ ! ଏହା ସାଙ୍ଗେ ସାଙ୍ଗେ ମଧ୍ୟ ମନେରଖ, ଚେଷ୍ଟାର ଅସାଧ୍ୟ କିଛି ନାହିଁ—'ଉଦ୍ୟମବଳେ ସର୍ବସିଦ୍ଧି' । ନିଷ୍ଠାର ସହିତ ଯେ ଯେତେ ବେଶୀ ଉଦ୍ୟମ କରିବ, ସେ ସେତେ ବଡ଼ ଜ୍ଞାନୀ, ଗୁଣୀ, ବିଜ୍ଞ ପଣ୍ଡିତ, କବି, ପ୍ରାବନ୍ଧିକ ହୋଇପାରିବ । ଏହି ସତ୍ୟଟିକୁ ପ୍ରତ୍ୟେକେ ବାସ୍ତବ କ୍ଷେତ୍ରରେ ପରୀକ୍ଷା କରିବାକୁ ପ୍ରଯତ୍ନଶୀଳ ହୁଅ । ତାହାହେଲେ, ମୁଁ ଜୋର୍ ଦେଇ କହିବି ଯେ, ତୁମମାନଙ୍କ ମଧ୍ୟରୁ ନିଶ୍ଚୟ ଏକାଧିକ ଲେଖକ, ସାହିତ୍ୟିକ ବା କବି ବାହାରିପାରିବ । ଭସ୍ମାବୃତ ବହ୍ନି ଭଳି ତୁମ ଭିତରେ ପ୍ରତିଭାର ଶକ୍ତି ଲୁକ୍କାୟିତ ରହିଛି । ଭସ୍ମଟିକ କାଢ଼ିଦେଲେ ସେହି ଶକ୍ତି ବଳେ ପ୍ରକଟିତ ହେବ । ମୋ ଉପଦେଶ ମାନି ପ୍ରତ୍ୟହ କିଛି-ନା-କିଛି ଲେଖ, ଏ ଅଭ୍ୟାସକୁ ବରାବର ଅବ୍ୟାହତ ରଖ । ଗଦ୍ୟ ହେଉ ବା ପଦ୍ୟ ହେଉ, ସେ ଲେଖା ଭଲ ହେଉଛି କି ଭେଲ ହେଉଛି, ସେଥିରେ ଜମା ମୁଣ୍ଡ ପୂରାଅ ନାହିଁ । ଖାଲି ଲେଖିଯାଅ, ନିୟମିତଭାବରେ ଲେଖିଯାଅ, ଦିନଟିଏ ସୁଦ୍ଧା ଅଭ୍ୟାସ ବନ୍ଦ କର ନାହିଁ । ମାସେ, ଦି'ମାସ, ତିନିମାସ, ଛଅମାସ—ଲେଖିଚାଲ ଯେତେବେଳେ ଯାହା ମନରେ ଉଙ୍କିଲା; କିନ୍ତୁ ସାବଧାନ, କାହାରି ଲେଖାରୁ ଚୋରି କର ନାହିଁ, କାହାରି ଭାବକୁ ଅବିକଳ-ଭାଷାରେ ଉତାରିପକାଇ ନିଜସ୍ୱ ବୋଲି ଗର୍ବ କର ନାହିଁ । ସେ ବାଟକୁ ମାଡି ଗଲେ ତୁମ ଲେଖକ ଜୀବନର ନିଶ୍ଚୟ ଆତ୍ମହତ୍ୟା ହେଲା ବୋଲି ଜାଣିଥାଅ । ଏଣୁ ସର୍ବଦା ନିଜ ଶକ୍ତିର ବିକାଶ ଉପରେ ଅବିଚଳ ଧ୍ୟାନ ରଖ । କିଛି କାଳ ପରେ ଦେଖିବ, ତୁମେ ହିଁ ସେସବୁ ଲେଖାର ହେବ ପରୀକ୍ଷକ, ନିରୀକ୍ଷକ, ସମୀକ୍ଷକ । ସେତେବେଳେ ସବୁଯାକ ଯେ ତୁମର ପସନ୍ଦ ହେବ, ଏହା କେଉଁ କଥା ନୁହେଁ । ନିଶ୍ଚୟ ଅଧିକାଂଶ ରଚନାକୁ ତୁମେ କାଟିପକେଇବ ।

ସ୍ୱୀୟ ପାଣ୍ଡୁଲିପିଟିକୁ ମାଜି ସମ୍ମାର୍ଜନ ପରିବର୍ତ୍ତନ କରି ସାଇତି ରଖିବାକୁ ମନ ବଳାଇବ । ସେଇ ସାଇତାଯୋଗ୍ୟ ରଚନାଟିକ ଗୋଟିଏ ବନ୍ଧା ଖାତାରେ ସାଫ୍ ଅକ୍ଷରରେ ଟିପି-ରଖିବ । ଏଇଟା ନିଶ୍ଚିତ ଯେ, ତୁମର ପରବର୍ତ୍ତୀ ଲେଖାଗୁଡ଼ିକର ରଚନାଶୈଳୀ, ଭାଷା ଓ ଭାବ ଦିନକୁଦିନ ଅଧିକ ସୁନ୍ଦର, ସୁଶ୍ରାବ୍ୟ ଓ ଶୃଙ୍ଖଳିତ ହୋଇଉଠିବ । ଏଇ ହେଲା ଲେଖକ ହେବାର ମୂଳ ସୂତ୍ର । ଏବେ ମୋର ଶେଷ କଥାଟି ଶୁଣ—କେବଳ ଜନ୍ମଗତ ପ୍ରତିଭା ଯେ ମଣିଷକୁ ଉନ୍ନତତର ଆସନରେ ପ୍ରତିଷ୍ଠିତ କରେ ତାହା ନୁହେଁ, ମଣିଷ ଆତ୍ମ-ଚେଷ୍ଟାରେ ମଧ୍ୟ ନିଜ ଭିତରେ ପ୍ରତିଭାକୁ ସୃଷ୍ଟି କରି ସ୍ୱୟଂ ପ୍ରତିଷ୍ଠ ହୁଏ । ଆଶା କରେଁ, ତୁମମାନଙ୍କ ମଧ୍ୟରୁ କେତେଜଣ ଅନ୍ତତଃ ସାରସ୍ୱତ ମାର୍ଗର ପଥିକ ହୋଇ ସୁନାମ ଅର୍ଜିବ । ଜୟ ମା' ଉତ୍କଳ ଭାରତି !"

ଲୋକମାନ୍ୟ ଲକ୍ଷ୍ମୀନାରାୟଣଙ୍କ ଜୀବନଦର୍ଶନ ଓ ଆଦର୍ଶ କର୍ମିଜୀବନର ଆଂଶିକ ଆଭାସ ଉପରିଉକ୍ତ ଉକ୍ତିମାନଙ୍କରୁ ମିଳିପାରିବ । ସେ ବୈଦ୍ୱାରରେ ଏକ କୁଷ୍ଠାଶ୍ରମ ପ୍ରତିଷ୍ଠା କରି ବହୁ କୁଷ୍ଠରୋଗୀଙ୍କ ସେଠାରେ ଚିକିତ୍ସା କରିବାର ସ୍ଥାୟୀ ବ୍ୟବସ୍ଥା କରିଥିଲେ । ଉକ୍ତ ସେବା ପ୍ରତିଷ୍ଠାନଟି ଏପର୍ଯ୍ୟନ୍ତ ସୁପରିଚାଳିତ ହୋଇ ସେହି ପୁଣ୍ୟାତ୍ମାଙ୍କ ଯଶୋଗାନ କରୁଛି । ତାଙ୍କ ଲିଖିତ ଗ୍ରନ୍ଥବଦ୍ଧ କେତେକ ସାହିତ୍ୟ କୃତି ମଧ୍ୟରେ ଗୁଣାତ୍ମକ ମୂଲ୍ୟ ଦୃଷ୍ଟିରୁ 'ସାନ୍ତ୍ୱନା' ପୁସ୍ତକଟି ଶ୍ରେଷ୍ଠ ନିବନ୍ଧଗୁଚ୍ଛରୂପେ ଓ 'ଛିନ୍ନପତ୍ର' ପୁସ୍ତକଟି ଶ୍ରେଷ୍ଠ ଗଦ୍ୟକବିତା-ଗୁଚ୍ଛରୂପେ ବହୁକାଳ ପର୍ଯ୍ୟନ୍ତ ସୁଧୀସମାଜରେ ଆଦୃତ ହେଉଥିଲା । ଆମେରିକୀୟ ଯୁବକବି ମିଷ୍ଟର ହ୍ୱିଟ୍‌ମାନ ଇଂରାଜୀ ଭାଷାରେ ଗଦ୍ୟକବିତା-ରଚନାର ଆଦିପ୍ରବର୍ତ୍ତକ; ସେହିପରି 'ଛିନ୍ନପତ୍ର'ର କବି ଲକ୍ଷ୍ମୀନାରାୟଣ ଓଡ଼ିଆଭାଷାରେ ଗଦ୍ୟକବିତା ପ୍ରବର୍ତ୍ତନର ସର୍ବପ୍ରଥମ ପଥ-ପ୍ରଦର୍ଶକ । ଏଥିପାଇଁ ତାଙ୍କୁ 'ଓଡ଼ିଶାର ହ୍ୱିଟ୍‌ମାନ୍' ଆଖ୍ୟା ଦିଆଯାଇଥାଏ ।

## (୪) ମୋର ପ୍ରଥମ ସାହିତ୍ୟକୃତି ଗଦ୍ୟକାବ୍ୟ 'ବିଲ୍ୱମଙ୍ଗଳ'

ସମସ୍ତ ଅନ୍ତେବାସୀଙ୍କ ପରି ମୁଁ ମଧ୍ୟ ଗ୍ରୀଷ୍ମାବକାଶରେ ସ୍ୱଗ୍ରାମାଭିମୁଖୀ ହେଲି । ପ୍ରକାଣ୍ଡ ହଷ୍ଟେଲ ହର୍ମ୍ୟଟି ନିର୍ଜନ ନୀରବ ପ୍ରାୟ ପଡ଼ିରହିଲା ଶୂନ୍ୟତାର ମର୍ମବେଦନାରେ । ତିନୋଟି ଶ୍ରେଣୀର ପଞ୍ଚସ୍ତରିଜଣଯାକ ଅଧ୍ୟାୟୀ ଏହି ଦୀର୍ଘତମ ଅବକାଶକୁ କିଏ ଆମୋଦପ୍ରମୋଦରେ, କିଏ ଅଳସବିଳାସରେ, କିଏ ପାରିବାରିକ ସୁଖସ୍ୱାଚ୍ଛନ୍ଦ୍ୟ ଭୋଗରେ, କେହି ବା ତୀର୍ଥାଦି ପର୍ଯ୍ୟଟନରେ ଅଥବା ଦୂରଦୂରାନ୍ତରସ୍ଥ ପ୍ରିୟତର ବନ୍ଧୁବାନ୍ଧବମାନଙ୍କ ଗୃହରେ କଟାଇ-ଦେବାର ଯୋଜନା କରିଥିବେ; କିନ୍ତୁ ମୁଁ କଲି ଏକ ସାହିତ୍ୟିକ ସାଧନାର ଆୟାସସାଧ୍ୟ ସାହସିକ ଯୋଜନା । ଅଧୀତ ଓ ଅର୍ଜିତ ଜ୍ଞାନର ଉପଯୁକ୍ତ ଉପଯୋଗ କରି ସାଧକାଗ୍ରଣୀ ଓ ସନ୍ନ୍ୟାସୋତ୍ତମ ଲୀଳାଶୁକ 'ବିଲ୍ୱମଙ୍ଗଳ'ଙ୍କ ମହନୀୟ ଜୀବନଚରିତକୁ ଭାବଗମ୍ଭୀର ମଞ୍ଜୁଳ କାବ୍ୟିକ ଛଟାର ଭାଷାରେ ଏକ ନାତିବୃହତ୍ ଗ୍ରନ୍ଥର ରୂପ ଦାନ କଲି । ଅନୂର୍ଦ୍ଧ୍ୱ ମାସକ ମଧ୍ୟରେ ଗ୍ରନ୍ଥଟିର ଲେଖା ପୂର୍ଣ୍ଣାଙ୍ଗତାପ୍ରାପ୍ତ ହେଲା । ଏହି ଗଦ୍ୟକାବ୍ୟଟି ହିଁ ମୋ ତରୁଣ ବୟସର ସର୍ବପ୍ରଥମ ସାହିତ୍ୟିକ କୃତି ତଥା ଷୋଡ଼ଶ ବର୍ଷପୂର୍ତ୍ତିର ମୂର୍ତ୍ତିମନ୍ତ ସ୍ମାରକୀ ।

ଗ୍ରୀଷ୍ମାବକାଶ ପରେ ସ୍କୁଲର ସମସ୍ତ ଗୁରୁଜନ ଆସି ଯେ ଯାହାର ଶ୍ରେଣୀପାଠ୍ୟରେ ଯୋଗ ଦେଲେ । ମୁଁ ସ୍ୱରଚିତ ଗଦ୍ୟକାବ୍ୟ 'ବିଲ୍ୱମଙ୍ଗଳ'ର ପାଣ୍ଡୁଲିପିଟିକୁ ହଷ୍ଟେଲସଞ୍ଚାଳକ ପିତୃକଳ୍ପ ସିଦ୍ଧଗୁରୁ ପଣ୍ଡିତ କୁଳମଣି ଦାଶଙ୍କ ହସ୍ତରେ ନତମସ୍ତକ ହୋଇ ସମର୍ପଣ କରନ୍ତେ ସେ ଅପାର ପରିତୋଷ ଲାଭକରି ମତେ ଆଶୀର୍ବାଦ କଲେ । ଗୁରୁ ମହାଶୟ ପରଦିନ ସେହି ପାଣ୍ଡୁଲିପିଟି ସ୍କୁଲକୁ ନେଇ ସହଶିକ୍ଷକମାନଙ୍କୁ ଦେଖାନ୍ତେ ସେମାନେ ତାହା ପଢ଼ି ଚମତ୍କୃତ ହୋଇଗଲେ । ହସ୍ତୁଁ ହସ୍ତାନ୍ତର ହୋଇ କ୍ରମେ ପାଣ୍ଡୁଲିପିଖଣ୍ଡି ସମଗ୍ର ଛାତ୍ର-ମଣ୍ଡଳୀରେ ଚହଲ ପକାଇଦେଲା । ସ୍କୁଲର ବରିଷ୍ଠ ଅଧ୍ୟାପକ ସୁଲେଖକ କୃଷ୍ଣଚନ୍ଦ୍ର ସେନଗୁପ୍ତ 'ବିଲ୍ୱମଙ୍ଗଳ'ର ଗୁରୁଗମ୍ଭୀର ବଳିଷ୍ଠ ଭାଷାଶୈଳୀ ଦେଖି ମନ୍ତବ୍ୟ ଦେଇଥିଲେ, "କୃଷ୍ଣ-ହାତରୁ ସରଳ ଭାଷାର ପୁସ୍ତକ ଉତୁରିବା ଯେ ସମ୍ଭବପର ନୁହେଁ, ତାହା ଏଇ ପ୍ରଥମ ରଚନା କହିଦେଉଛି ।" ଏହା ତାଙ୍କର ଆକ୍ଷେପୋକ୍ତି ନଥିଲା—ତନ୍ମଧ୍ୟରେ ଉଜ୍ଜ୍ୱଳ ଆଶା ପ୍ରଚ୍ଛନ୍ନ ରହିଥିଲା ଯେ, ଭବିଷ୍ୟତରେ ମୋ କଲମରୁ ଆହୁରି ଉନ୍ନତ ଧରଣର ଭାଷାସୌନ୍ଦର୍ଯ୍ୟ-ସମ୍ବଳିତ ଉଚ୍ଚାଙ୍ଗ ସାହିତ୍ୟିକ ଗ୍ରନ୍ଥ ବାହାରିପାରିବ ।

## (୫) ଦକ୍ଷିଣାଞ୍ଚଳ ପ୍ରମୋଦ ଭ୍ରମଣ

ଏହି ପ୍ରଥମ ବର୍ଷୀୟ ଶ୍ରେଣୀ (୧୯୨୨)ର ପୂଜାବକାଶରେ ସହାଧ୍ୟାୟୀମାନଙ୍କ ସହିତ ମୁଁ ଦକ୍ଷିଣାଞ୍ଚଳ ପ୍ରମୋଦଭ୍ରମଣରେ ଯାଇଥିଲି । ଏ ଭ୍ରମଣ ଯାତ୍ରୀଦଳର ଅଭିଭାବକ-ଦାୟିତ୍ୱ ନେଇଥିଲେ ଗୁରୁଦେବ ପଣ୍ଡିତ କୁଳମଣି ଦାଶ । ବିଭିନ୍ନ ଦର୍ଶନୀୟ ସ୍ଥାନ ମଧ୍ୟରେ ବ୍ରହ୍ମପୁରର ଜଳଭଣ୍ଡାର (reservoir), ଗଞ୍ଜା ଦୁର୍ଗ, ଋଷିକୁଲ୍ୟା ନଦୀ, ଇଚ୍ଛାପୁରର ବିରାଟ ଉଦ୍ୟାନ 'ଉଦ୍ୟାନକେନ୍ଦ୍ର' ଓ ସମୁଦ୍ରତଟବର୍ତ୍ତୀ ଝାଉଁବଣ ଏବଂ ମଞ୍ଜୁଷାର ମହେନ୍ଦ୍ରଗିରି, ମହେନ୍ଦ୍ର-ତନୟା ନଦୀ, ପୋଡ଼ାଗଡ଼, ପୋଡ଼ାଗଡ଼ ପୁଷ୍କରିଣୀ ଓ ପୋଡ଼ାଗଡ଼ ମନ୍ଦିର ମୋ ଚକ୍ଷୁକୁ ସର୍ବାଧିକ ଆକର୍ଷଣୀୟ ବୋଧ ହୋଇଥିଲା । ଯେଉଁଠି ଯାହା ଦେଖିଥିଲି ଓ ଅନୁଭବରେ ଆଣିଥିଲି, ସବୁ ଠିକେ ଠିକେ ଭ୍ରମଣପଞ୍ଜୀରେ ଟିପି ଆଣିବାର ଲୋଭ ସମ୍ବରଣ କରିପାରି ନଥିଲି । ବାଣପୁର ଦେଇ କଟକ ଫେରିବାର କିଛି ପରେ ଏହି ଆମୋଦପ୍ରଦ ଯାତ୍ରାର ସ୍ମାରକସ୍ୱରୂପ 'ମହେନ୍ଦ୍ରଦର୍ଶନ' ଶୀର୍ଷକ ଗୋଟିଏ ଦୀର୍ଘ ଭ୍ରମଣକାହାଣୀ ଲେଖିଥିଲି । ସେହି ନିବନ୍ଧଟି 'ସହକାର'ରେ ପ୍ରକାଶ ପାଇଲା ପରେ ଶଶିଭୂଷଣ ରାୟ, କୃଷ୍ଣଚନ୍ଦ୍ର ସେନଗୁପ୍ତ, କୁଳମଣି ଦାଶ, ଆର୍ତ୍ତତ୍ରାଣ ଶତପଥୀ ପ୍ରମୁଖ ସୁସାହିତ୍ୟିକଙ୍କୁ ସାତିଶୟ ମୁଗ୍ଧ କରିଥିଲା । ଗଭୀର ଦୁଃଖର କଥା, ଉକ୍ତ ନିବନ୍ଧଟିର ମୂଳ (୫୦।) ପାଣ୍ଡୁଲିପିଟି ଓ 'ସହକାର'ରେ ପ୍ରକାଶପ୍ରାପ୍ତ ସମ୍ପୃକ୍ତ ସଂଖ୍ୟାଟି କେଉଁଠି ହଜିଗଲା, ଆଉ ପାଇପାରିଲି ନାହିଁ । ବାଣପୁରରେ ପଣ୍ଡିତ ଗୋଦାବରୀଶ ମିଶ୍ର, ଯୁବକବି ଗୋଦାବରୀଶ ମହାପାତ୍ର ଓ ଲେଖକ ଜଗନ୍ନାଥ ମହାପାତ୍ରଙ୍କ ସହ ପ୍ରଥମ ପରିଚୟ ହୋଇଥିଲା ।

ଏଠାରେ କେବଳ ମଞ୍ଜୁଷା ସ୍ମୃତିର କେତୋଟି ଉଲ୍ଲେଖଯୋଗ୍ୟ ବିବରଣ ଦେଉଛୁ । ଆମେ ତ ରେଳରେ ଯାତ୍ରା କରୁଥାଉ, ମଞ୍ଜୁଷା ଷ୍ଟେସନରେ ଗାଡ଼ି ପହଞ୍ଚିଲା ମାତ୍ରେ ସମସ୍ତେ ନିଜ ନିଜ ସାମାନ ଓ ଅନ୍ୟାନ୍ୟ ମାଲମତା ତଳକୁ ଓହ୍ଲାଇବାରେ ଲାଗିଗଲୁ । ପ୍ଲାଟ୍‌ଫର୍ମରେ ପାଦ ଦେଲାକ୍ଷଣି ଆଖିରେ ପଡ଼ିଗଲା ବଡ଼ ବଡ଼ ଇଂରାଜୀ ଅକ୍ଷରରେ ଲେଖା MANDASA ROAD (ମଣ୍ଡାସା ରୋଡ଼) । ହାୟ ହାୟ, କେଡ଼େ ସୁଖଶ୍ରାବ୍ୟ କାବ୍ୟିକ ନାମ 'ମଞ୍ଜୁଷା'—ତାର ପୁଣି ଏଡ଼େ ବିକୃତ ବିଭଙ୍ଗ ବୀଭତ୍ସ ରୂପ ! ଦାରୁଣ ଖେଦ ଓ କ୍ଷୋଭରେ ହୃଦୟ କିଛିକ୍ଷଣ ମୂର୍ଚ୍ଛିତ ହୋଇଗଲା । ଅଳପ ସମୟ ପରେ ଏହି ଶାବ୍ଦିକ ବୈକଲ୍ୟର ମର୍ମବିଦାରକ ରହସ୍ୟ ଜାଣିବାକୁ ପାଇଲୁ—ସେଠାର ଓଡ଼ିଆ-ବିଦ୍ୱେଷୀ କେତେକ ପ୍ରଭାବଶାଳୀ ତେଲୁଗୁ ବ୍ୟକ୍ତିଙ୍କ ପ୍ରଚ୍ଛନ୍ନ ଚକ୍ରାନ୍ତ ଫଳରେ ସୁନ୍ଦର 'ମଞ୍ଜୁଷା' ନାମଟି ବାନ୍ଦର 'ମଣ୍ଡାସା' ରୂପ ଧରିଲା ଏବଂ ତାହାହିଁ ଇଂରେଜ ସରକାରଙ୍କ ଦପ୍ତରରେ ସ୍ଥାୟୀଭାବରେ ଦରଜ ହୋଇ ରହିଗଲା । ଏହି ଓଡ଼ିଆବହୁଳ ଭୂଖଣ୍ଡଟିକୁ ଭବିଷ୍ୟତରେ ତେଲୁଗୁ ରାଜ୍ୟର କୁକ୍ଷିଗତ କରିନେବା ହିଁ ଯେ ଉକ୍ତ ଚକ୍ରାନ୍ତର ଗୂଢ଼ ଅଭିସନ୍ଧି ଥିଲା, ଏହା ଅତି ସ୍ପଷ୍ଟ । ଦୁଃଖ ଓ ପରିତାପର କଥା, ଓଡ଼ିଶା ୧୯୩୬ ଏପ୍ରିଲ ପହିଲାରୁ ସ୍ୱତନ୍ତ୍ର ପ୍ରଦେଶ ହେଲାଣି, ଭାରତ ୧୯୪୭ ଅଗଷ୍ଟ ପନ୍ଦରରୁ ସ୍ୱାଧୀନ ସାର୍ବଭୌମ ରାଷ୍ଟ୍ରରେ ପରିଣତ ହୋଇ ପୃଥିବୀର ବୃହତ୍ତମ ଗଣତାନ୍ତ୍ରିକ ରାଷ୍ଟ୍ରରୂପେ ବିଶ୍ୱଦରବାରରେ ସମ୍ମାନଲାଭ କଲାଣି; ତଥାପି 'ମଞ୍ଜୁଷା'ର 'ମଣ୍ଡାସା' ଦଶା କଟିଲା ନାହିଁ—ସେଠାର ବିଚ୍ଛିନ୍ନ ଓଡ଼ିଆ ଭାଇ-ଭଉଣୀଏ ଯେଉଁ ତିମିରେକୁ ସେଇ ତିମିରେ, ଏପର୍ଯ୍ୟନ୍ତ ସେମାନଙ୍କ ଭାଗ୍ୟ ଫିଟିଲା ନାହିଁ କି ଦୁର୍ଗତି ମେଣ୍ଟିଲା ନାହିଁ । ପୂର୍ବପରି ସେମାନେ ତେଲୁଗୁ ଶାସକଙ୍କ ଯନ୍ତ୍ରା ଭିତରେ ସନ୍ତୁଳି-ହେଉଛନ୍ତି ।

ଷ୍ଟେସନଠାରୁ ମଞ୍ଜୁଷା ରାଜବାଟୀ ନିକଟ ନୁହେଁ । କିପରି ଏତେ ବାଟ ଯିବୁଁ, ଏହି କଥା ବିଚାର କରୁଥିଲାବେଳେ ଜଣେ ଓଡ଼ିଆ ଭଦ୍ରବ୍ୟକ୍ତି କ୍ଷିପ୍ର ପଦକ୍ଷେପରେ ଆମ ପାଖକୁ ଧାଇଁ ଆସି ସସମ୍ଭ୍ରମରେ ଜଣାଇଲେ, "ଗ୍ରୁମୁ ପତ୍ର ପାଇଛନ୍ତି । ଆପଣମାନଙ୍କୁ ସମାଦରରେ ପାଛୋଟି ନେବାପାଇଁ ତାଙ୍କର ପ୍ରତିନିଧିରୂପେ ମୋତେ ବରଗିଛନ୍ତି । ଆସନ୍ତୁ, ଝଟକାସବୁ ଅପେକ୍ଷା କରିଛି ଆପଣମାନଙ୍କୁ ନେଇଯିବାଲାଗି ।" ସଙ୍ଗେ ସଙ୍ଗେ ସମସ୍ତ ଜିନିଷପତ୍ର ବୁହାହୋଇ ଝଟକାକୁ ଉଠିଲା । ଆମମାନଙ୍କୁ ନେଇ ଯାନଗୁଡ଼ିକ ଗଡ଼ ଅଭିମୁଖରେ ଧାଇଁଲା ।

ଓଡ଼ିଆଭାଷୀବହୁଳ ଏହି ବିସ୍ତୃତ ଅଞ୍ଚଳଟି ତତ୍କାଳୀନ ମାନ୍ଦ୍ରାଜ ସହ ଯୋଡ଼ାହୋଇଥାଏ । ମଞ୍ଜୁଷାର ଓଡ଼ିଆ ରାଜବଂଶ ପରଂପରାକ୍ରମେ ବହୁ କାଳରୁ ପ୍ରସିଦ୍ଧି ଲାଭ କରିଆସିଛି । ଆଲୋଚ୍ୟ ସମୟରେ ରାଜା ଥାଆନ୍ତି ଶ୍ରୀ ଶ୍ରୀ ଶ୍ରୀନିବାସ ରାଜମଣି ରାଜଦେଓ—ସ୍ୱନାମଖ୍ୟାତ ସାହିତ୍ୟରସିକ, ବିଦ୍ୟୋତ୍ସାହୀ, ଗୁଣିଗୁଣଗ୍ରାହୀ, ଅବ୍ୟର୍ଥ ସନ୍ଧାନୀ ପାଦରକ୍ଷୀ ବନ୍ଧୁକ ଶିକାରୀ । ବନ-ପର୍ବତର ମହା ମହା ହିଂସ୍ରଜନ୍ତୁଙ୍କୁ ଅବଲୀଳାକ୍ରମେ ଏକା ଏକା ଗୋଟିକେ ଗୁଳିବିଦ୍ଧ କରିବାରେ ଅଦ୍ୱିତୀୟ ସିଦ୍ଧହସ୍ତ । ପ୍ରାକୃତିକ ଉତ୍କଳର କେତେକ କବି ପଣ୍ଡିତ ତାଙ୍କ

ରାଜସଭାର ଅଙ୍ଗ ମଣ୍ଡନ କରୁଥାନ୍ତି । ସେମାନଙ୍କ ରଚିତ ମୂଲ୍ୟବାନ୍ କାବ୍ୟ କବିତା ଗ୍ରନ୍ଥ ମଧ୍ୟ ରାଜଦରବାର ପକ୍ଷରୁ ପ୍ରକାଶିତ ହୋଇଥାଏ । ଏହିପରି ନାନା ଖବର ଆମେ ସଂଗ୍ରହ କରିନେଲୁଁ ରାଜପ୍ରେରିତ ସେହି ସମ୍ବର୍ଦ୍ଧନାକାରୀ ଭଦ୍ରବ୍ୟକ୍ତିଙ୍କଠାରୁ । ସ୍ମରଣ କରାଇ ଦିଆଯାଇପାରେ ଯେ, କବିଶେଖର ଚନ୍ଦ୍ରମଣି ମହାନ୍ତି ଦିନେ ଏହି ବଂଶୀୟ ରାଜସଭାରେ ନିଜ କବିଜୀବନ ପ୍ରକଟିତ କରିଥିଲେ ।

ଦ୍ରୁତଗାମୀ ଝଟକାଗାଡ଼ିକ ପ୍ରାୟ ଦେଢ଼ ଘଣ୍ଟା ପରେ ଆମକୁ ନେଇ ପହଞ୍ଚାଇଦେଲା ଏକ ପରମ ରମଣୀୟ ସ୍ଥାନରେ । ବିରାଟ ଭବନ—ତା' ଭିତରେ କେତେ ଯେ ଧାଉଡ଼ିଆ ଘର, ଅନ୍ତ କରିବା କଷ୍ଟ । ସବୁ ଘର ପଥରରେ ଗଢ଼ା । ପୁରୁଣାକାଳିଆ ଦମ୍ଭିଲା ଗଢ଼ଣ । ଛାତ କିନ୍ତୁ କୋଠା ନୁହେଁ—ଘନସାନ୍ଦ୍ର ଝୁଲଗୁଆଣି । ପ୍ରାଚୀନ ସ୍ମୃତିର ସାକ୍ଷ୍ୟ ଦେଉଥାଏ ଭବନଟିର ପ୍ରତ୍ୟେକ କକ୍ଷ । ଅଭ୍ୟର୍ଥକ ବନ୍ଧୁ ଜଣକ ଆମର ସଂଶୟ-ଗ୍ରନ୍ଥି ଫିଟାଇଦେଇ କହିଲେ, "ଆପଣମାନଙ୍କ ଅନୁମାନ ଯଥାର୍ଥ । ପୂର୍ବ ରାଜାମାନଙ୍କର ଏହା ହିଁ ଥିଲା ନଅର ଦୁର୍ଯୋଗକ୍ରମେ କି ଏକ ଦୁର୍ମୁହୂର୍ତ୍ତ ଆସିଲା, ସର୍ବଗ୍ରାସୀ ହୁତାଶନର ଲେଲିହାନ ଶିଖାରେ ଏହି ପ୍ରକାଣ୍ଡ ରାଜଉଆସଟି ଧୂହୁଁ ଧୂହୁଁ ଭସ୍ମୀକୃତ ହୋଇଗଲା । ଏ ଭୟାବହ ବିପତ୍ତିରୁ କେହି ରକ୍ଷା କରିପାରିଲେ ନାହିଁ । ଭାଗ୍ୟର କଥା, ଜଣେ ହେଲେ କାହାରି, ଏପରିକି ପୋଷା ବିଲେଇ କୁକୁର ବା ଶୁଆ ସାରି ମଧ୍ୟରୁ ଗୋଟିଏ ହେଲେ କାହାରି ଜୀବନକ୍ଷୟ ଘଟିନାହିଁ । ସେହିଦିନୁଁ ଏହାର ନାମ ହେଲା 'ପୋଡ଼ାଗଡ଼' । ଏହାର ଦକ୍ଷିଣ ପ୍ରାଚୀର-ସଂଲଗ୍ନ କାରୁକାର୍ଯ୍ୟ ଖଚିତ ବିଶାଳ ମନ୍ଦିର ଓ ଉତ୍ତର ପ୍ରାଚୀରର ପାଦ-ପ୍ରକ୍ଷାଳକ ହ୍ରଦୋପମ ବିଶଦ ସରୋବର ମଧ୍ୟ ଯଥାକ୍ରମେ 'ପୋଡ଼ାଗଡ଼ ମନ୍ଦିର' ଓ 'ପୋଡ଼ାଗଡ଼ ପୋଖରୀ' ଆଖ୍ୟା ବହି ସେହି ଭୟଙ୍କର ଅଗ୍ନିକାଣ୍ଡର ବିଷାଦମୟ ସ୍ମୃତିକୁ ଏପର୍ଯ୍ୟନ୍ତ ଜନମାନସରେ ଜାଗରୂକ କରି ରଖିଛି ।"

ଆଗକାଳେ କହୁଥିଲେ, 'ଘୋଡ଼ାଚଢ଼ାଠାରୁ ସମ୍ପତ୍ତି ନାହିଁ, ଘରପୋଡ଼ିଠାରୁ ବିପତ୍ତି ନାହିଁ' । ସେକାଳେ ସଙ୍ଗତିବନ୍ତ ବଡ଼ଲୋକଙ୍କ ଦ୍ୱାରେ ଘୋଡ଼ା ବନ୍ଧା ହେଉଥିଲେ । ଘୋଡ଼ା ହିଁ ଥିଲା ବିତ୍ତ, ପ୍ରତିପତ୍ତି ଓ ପ୍ରତିଷ୍ଠାର ପ୍ରଧାନ ପ୍ରତୀକ । ଏବର ସାମାଜିକ ସ୍ଥିତିରେ କିନ୍ତୁ ଘୋଡ଼ା ନାହିଁ କି ଘୋଡ଼ାଚଢ଼ା ନାହିଁ—ସମ୍ପତ୍ତି ପ୍ରତିପତ୍ତିର ମାପକାଠି ପୂରା ବଦଳି-ଯାଇଛି । ତେବେ, ଘରପୋଡ଼ି ଯେ ସବୁଠାରୁ ବଡ଼ ବିପତ୍ତି, ଏଥିରେ ଦ୍ୱୈମତ୍ୟ ନାହିଁ । ଏଥିପାଇଁ କଥାରେ କହନ୍ତି, 'ସାତ ଥର ହେବ ଚୋର, ଥରେ ନହେବ ଘରପୋଡ଼ି' । ଚୋରଡକାଇତେ ଘରେ କଳାକନା ବୁଲାଇଦେଲେ ମଧ୍ୟ ବାସ ଖଣ୍ଡିକ ରହିଥାଏ; ମାତ୍ର ବାସଖଣ୍ଡିକ ପୋଡ଼ିଗଲେ ଅବାବସ୍ତୁ ସବୁ ଜଳିଯାଇ ସର୍ବନାଶ ଘଟେ, ମୁଣ୍ଡ ଗୁଞ୍ଜିବାକୁ ବି ଚୁଖଣ୍ଡେ ଜାଗା ରହେ ନାହିଁ—ତରୁତଳେ ବାସ ଓ ପର ହାତଟେକାକୁ ଆଶ ଛଡ଼ା ଅନ୍ୟ ଗତି ନଥାଏ ।

ତତ୍କାଳୀନ ସାମନ୍ତବାଦୀ ଯୁଗରେ ରାଜାମହାରାଜାମାନଙ୍କର ପ୍ରତାପ, ପ୍ରଭୁତ୍ୱ, ଧନ-ସମ୍ପତ୍ତିର କଳନା ନଥିଲା । କୌଣସି ଗ୍ରାମରେ ଘରପୋଡ଼ି ବିପତ୍ତି ପଡ଼ିଲେ ସେମାନେ

ବିପନ୍ନ ପ୍ରଜାପରିବାରମାନଙ୍କର ରହିବା, ଖାଇବା, ପିନ୍ଧିବା ଆଦି ପାଇଁ ତୁରନ୍ତ ବ୍ୟବସ୍ଥା କରିଦେଉଥିଲେ । ମଞ୍ଜୁଷାରାଜା ଏହି ଶ୍ରେଣୀର ପ୍ରଜାପ୍ରିୟ ଶାସକ । ଉଆସଟି ଭସ୍ମୀଭୂତ ହୋଇଗଲା ବୋଲି ସେ ବିଚଳିତ ହେଲେ ନାହିଁ ସତ; କିନ୍ତୁ ଏହି ଆକସ୍ମିକ ଅଗ୍ନିକାଣ୍ଡ ତାଙ୍କ ହୃଦୟରେ ଭାବାନ୍ତର ଜାତ କଲା । ସେ ଗଭୀରଭାବରେ ଅନୁଭବ କଲେ, ରାଜଲକ୍ଷ୍ମୀ ବୋଧହୁଏ ଏଠାରେ ରହିବାକୁ ଆଉ ଇଚ୍ଛୁକା ନୁହନ୍ତି । ଏହି ବିଶ୍ୱାସ କ୍ରମେ ତାଙ୍କର ଗାଢ଼ତର ହେଲା । ତେଣୁ ରାଜବାଟୀକୁ ଅନ୍ୟତ୍ର ଅବସ୍ଥାପିତ କରିବାକୁ ଏବଂ ପୋଡ଼ାଗଡ଼ର ନବାୟନ ପରେ ତାହାକୁ 'ଅତିଥିଭବନ'ରେ ପରିଣତ କରିବାକୁ ସେ ଚୂଡ଼ାନ୍ତ ନିଷ୍ପତ୍ତି ନେଲେ ।

ସେହି ନିଷ୍ପତ୍ତି ଅନୁଯାୟୀ ପୋଡ଼ାଗଡ଼ ପୁଣି ନବାୟିତ ହେଲା । ତାହା ସଙ୍ଗେ ସଙ୍ଗେ କିଞ୍ଚିତ ଦୂରରେ ଉପଯୁକ୍ତ ସୁପ୍ରସର ସ୍ଥାନଟିଏ ନିର୍ବାଚିତ ହେଲା ପରେ ସେଠାରେ ରମଣୀୟ ନବୀନ ରାଜହର୍ମ୍ୟ ଶିର ଉତ୍ତୋଳନ କଲା । ତାହା ହିଁ ହେଲା ସ୍ଥାୟୀ ରାଜଭବନ । ସେଠାରେ ଅଣୁମାତ୍ର ଅଗ୍ନିଭୟର ଚିହ୍ନ ସିନା ରହିଲା ନାହିଁ; କିନ୍ତୁ ଏଠିକା ଲୋଭନୀୟ ପରିବେଶ ଓ ନିସର୍ଗ ଦୃଶ୍ୟର ଅଭାବ ପୂର୍ଣ୍ଣମାତ୍ରାରେ ରହିଲା । ପବିତ୍ର ଦେବମନ୍ଦିରରେ ସାନ୍ଧ୍ୟ ଆରତିକାଳୀନ ଘଣ୍ଟ-କାହାଳୀ-ମର୍ଦ୍ଦଳ-ମନ୍ଦିରାର ମନ୍ଦ୍ର ମଧୁର ନିସ୍ୱନ ଓ ଚପଳ-ଛନ୍ଦା ଲାସ୍ୟମୟୀ ଦେବଦାସୀବୃନ୍ଦର ଲଳିତକଳିତ କଣ୍ଠରାଗିଣୀ ଜରମ୍ବିତ ଲୀଳାୟିତ ନୃତ୍ୟଭଙ୍ଗୀ, ସୁରଭି କୁସୁମାକୀର୍ଣ୍ଣ ଅଳିକୁଳସମାକୁଳ ଅନୁପମ ଉପବନଶ୍ରୀ, ଅଗାଧସଲିଳା ଦୁଗ୍ଧବସନ୍ତୃତା ଦୀର୍ଘିକାର ସ୍ଫଟିକସ୍ୱଚ୍ଛ ମୃଦୁସମୀରିତ ବକ୍ଷ ଏବଂ ତତ୍ପାର୍ଶ୍ୱବର୍ତ୍ତୀ ଝିଲ୍ଲିଝଙ୍କାରିତ ଘନଦ୍ରୁମଶ୍ୟାମ ଖଣ୍ଡଶୈଳର ଅନିର୍ବଚନୀୟ ଛବି ସମଗ୍ର ରାଜପରିବାର ପକ୍ଷରେ ପ୍ରତିନିତ୍ୟ ସ୍ମରିବାର ବସ୍ତୁ ହୋଇ ରହିଲା ।

ରାଜାସାହେବଙ୍କ ନିର୍ଦ୍ଦେଶମତେ ଏହି ଅତିଥିଭବନରେ ଆମପାଇଁ ରନ୍ଧନାଦିର ବିପୁଳ ଆୟୋଜନ ହୋଇଥାଏ । ଆମେମାନେ ପାର୍ଶ୍ୱ ଜଳାଶୟରେ ସ୍ନାନ କରି, କେହି କେହି ବା ସନ୍ତରଣ କରି ପରମ ସନ୍ତୋଷ ଅନୁଭବ କଲୁଁ ଏବଂ ଭୋଜନ ପର୍ବର ସମାପ୍ତି ପରେ ବେଶ୍ ଶାନ୍ତିରେ ବିଶ୍ରାମ ନେଲୁଁ । ସାୟାହ୍ନରେ ବେଶବାସ ହୋଇ ସହର ପରିକ୍ରମାରେ ବାହାରିପଡ଼ିଲୁଁ । ସହରଟି କ୍ଷୁଦ୍ର ହେଲେହେଁ ରାସ୍ତାଗୁଡ଼ିକ ପ୍ରଶସ୍ତ ଓ ପରିଷ୍କୃତ । ଦୋକାନ-ବଜାର ଓ ଅନ୍ୟ କେତେକ ସ୍ଥାନ ଦେଖାଦେଖି କରି ଫେରିଲାବେଳକୁ ରାତି ପ୍ରାୟ ନଅଟା ହୋଇଗଲା । ସିଧାସଳଖ ଡେରା ଭିତରକୁ ନ ମୁହାଁଇ ଅତିଥିଭବନକୁ ଲାଗିଥିବା 'ପୋଡ଼ାଗଡ଼ ମନ୍ଦିର' ବେଢ଼ା ମଧ୍ୟକୁ ଦଳକଯାକ ପ୍ରବେଶ କଲୁଁ । ବହୁ ପୂର୍ବରୁ ସାନ୍ଧ୍ୟ ପୂଜାର୍ଚ୍ଚନା ଓ ଭୋଗରାଗ ଆଦି ସରିଯାଇଥିବାରୁ କୋଳାହଳମୁଖର ବିରାଟ ବେଢ଼ାଟି ଜନବିରଳ ଓ ନିସ୍ତବ୍ଧନିଶ୍ଚଳ ହୋଇଯାଇଥାଏ । ସୁନିର୍ମଳ ସେହି ବିସ୍ତୃତ ଅଙ୍ଗନ-ପରିସରର ଶାରଦ ଚନ୍ଦ୍ରିକାବିଧୌତ ସ୍ନିଗ୍ଧୋଜ୍ଜ୍ୱଳ ଆଭା ସତେ ଅବା ରୂପରମ୍ୟା ସଦ୍ୟସ୍ନାତା ନବବଧୂର ତନୁଶ୍ରୀଝଟକ ଛଡ଼ାଇଆଣିଥାଏ !

ଆମ ଦଳର ହର୍ଷୋଚ୍ଛଳ କଳରୋଳ ଶୁଣି ଗୌରକାନ୍ତ ଏକ ଅଜାତଶ୍ମଶ୍ରୁ ବଟୁ ନାଟ ମନ୍ଦର ମଧ୍ୟରୁ ଚଞ୍ଚଳ ପାଦରେ ବାହାରିପଡ଼ିଲା—ମସ୍ତକ ତାର ମୁଣ୍ଡିତ, ଶୀର୍ଷଭାଗରେ ନାତିଦୀର୍ଘ ଶିଖା, ହିମଗିରିନିର୍ଗତ ସ୍ୱଚ୍ଛ ସୁବିମଳ ଗଙ୍ଗାଧାର ପରି ସ୍କନ୍ଧଦେଶରୁ ଲମ୍ବି-ଆସିଥାଏ ଶୁଭ୍ରାତିଶୁଭ୍ର ଉପବୀତଗୁଚ୍ଛ, କଟି ବେଢ଼ି ଭିଡ଼ା ହୋଇଥାଏ ନାତିଦୀର୍ଘ ପାଟଳ ଗାତ୍ରମାର୍ଜନୀ । ଚଳଚଳ ହାତଗୋଡ଼ ସାଙ୍ଗକୁ ବର୍ତ୍ତୁଳ ତାଳପ୍ରାୟ ସୁଶ୍ରୀ ମୁଖମଣ୍ଡଳ, ଆଉ ପେଟୁଆ ବଟୁଆ ଭଳିଆ ଟିଙ୍କଫୁଲ ପେଟ ଖାସା ମାନୁଥାଏ । ଗୋଲଗାଲିଆ ଟୋକାଳିଆ ଚେହେରା ଯୋଗୁଁ ବୟସଟା ଠିକ୍ ଅଟକଳ କରିହେଉ ନଥିଲେ ବି ତାର ତେରରୁ କେବେଁ ଟପିବ ନାହିଁ ।

ବ୍ରାହ୍ମଣକୁମାରଟି ବିଦ୍ୟୁଦ୍‌ବେଗରେ ଆମ ଆଗକୁ ଚଳିଟି ଆସି ପ୍ରଚଣ୍ଡ ଜିଜ୍ଞାସୁ ଦୃଷ୍ଟିରେ ପ୍ରଶ୍ନ କଲା :

"ହ୍ୱାଡୁୟୁଆଁ ଟ୍ ପ୍ଲିଜ୍ (What do you want please) ?"

କି ବିଚକ୍ଷଣ ବାବା, ଟିକେପୁଞ୍ଚା ବାଟୁଳି ବାଜୁନି ସେ ପାଟିରେ ! ପୁଣି ସାଇବୀ ଢାଞ୍ଚାରେ ତାର ଏ ଦାନ୍ତଚିପା ଅଙ୍ଗ୍ରେଜୀବୋଲା ଆମକୁସବୁ ଚମକେଇଦେଲା ଯେତିକି, ଆଚମ୍ବିତ କରିଦେଲା ତତୋଧିକ । ସମ୍ଭାଳିପାରିଲି ନାହିଁ, ଉତ୍‌କଣ୍ଠା ବାହାରିପଡ଼ ପଚାରିଦେଲି ମୁଁ :

"What are you here……?" ବାକ୍ୟଟିରୁ ପାଏ ଟେଣ୍ଡେ ଆହୁରି ବାକି ଅଛି ମୋ ତୁଣ୍ଡରେ, ଆଗ ବଢ଼ି ଜବାବ ଦେଇପକେଇଲା ତରତରା ସେ ଚମ୍ପାଚରୁର ଟୋକାଟି—

"ଆୟମ୍ ଓନ୍‌ଅଫଦ କୁକ୍‌ସ ହିଅର୍ ସର୍ (I am one of the cooks here, sir)"

ଉତ୍ତର ସହିତ ପୁଣି ତାର ପ୍ରଶ୍ନ :

"ହ୍ୱେର୍ ହାଭ୍ୟୁ କମ୍ ଫ୍ରମ୍ ସର୍ (Where have you come from, sir) ?"

ମୋର ଚୁମ୍ବକ ଜବାବ :

"From Cuttack"

ତା' କହିବାପାଇଁ ସେକେଣ୍ଡକର ସୁଦ୍ଧା ଫାଙ୍କ ନ ଛାଡ଼ି ପଚାରିଦେଲି :

"Well boy, do you know Oriya ?"

'କଟକ' ଶବ୍ଦଟା କାନଭିତରେ ବାଜେଇ ହୋଇଯିବାମାତ୍ରେ ତା' ମୁଖମଣ୍ଡଳରେ ଗୋଟାଏ କେମିତିକା ଅପ୍ରତ୍ୟାଶିତ ପରିବର୍ତ୍ତନ ଆସି ଉଠିଥିଲା; ତା' ଉପରେ ପୁଣି ଏ ପ୍ରଶ୍ନଟା ଯେମିତି ସେ ଶୁଣିଦେଇଛି, ହାତଦୁଇଟାକୁ ହଠାତ୍ ଯୋଡ଼ିଦେଇ ଅତି ନମ୍ରତାର ସହିତ ଆମ ସମସ୍ତଙ୍କୁ ଅଭିବାଦନ ଜଣାଇଲା :

"ନମସ୍କାରମ୍ !"

ଆମେ ପ୍ରତିନମସ୍କାର ଜଣାଉ ଜଣାଉ ସେ ନୀରବରେ ଆଗେ ଆଗେ ବାଟ କଢ଼େଇ ଚାଲିଲା; ମନ୍ଦିରଟିର ଯେତେ ଯାହା ଦେଖାଇବାର କଥା, ଗୋଟି ଗୋଟି କରି ସବୁ ଦେଖେଇ ଶେଷରେ ଆମକୁ ଗୋଟିଏ ଉଚା ଚଉପାଢ଼ିରେ ଆଣି ବସେଇଲା । ସେ ଜାଗାଟା ଭାରି ପବନିଆ । ସୁନ୍ଦର ଖୋଲା ହାଉଆ ଆମ ସର୍ବାଙ୍ଗରେ ଆରାମର ଶୀତଳ ଚନ୍ଦନ ପ୍ରଲେପ ପ୍ରଲେପ ବୋଳିଦେଇ ଯାଉଥାଏ—ଠିକ୍ ଯେମିତି ପୁରୀ ଶ୍ରୀମନ୍ଦିରବେଢ଼ାର ଲକ୍ଷ୍ମୀମଣ୍ଡପରେ ।

ସହର୍ଷ ମୁଖରେ ସେଇଠି ସେ ଉତ୍ତର ଦେଲା ମୋ ଶେଷ ପ୍ରଶ୍ନର :

"ଆଜ୍ଞା, ଏଠିକାର ଗୋଟିଏ ଗରିବ ଓଡ଼ିଆଘରର ପିଲା ମୁଁ, ଆପଣମାନଙ୍କର ଗୋଟିଏ ହତଭାଗା ସ୍ନେହ ଭାଇ । ତେଲଙ୍ଗାମାନଙ୍କ ଉତ୍ପୀଡ଼ନରେ ଏଠି ଓଡ଼ିଆ-ଚର୍ଚ୍ଚା ରୁଦ୍ଧ ହୋଇଯାଇଛି । ସ୍କୁଲରେ ତେଲୁଗୁ ଓ ଇଂରାଜୀ ପଢ଼ିବା ଉପରେ ସବୁଠୁଁ ବେଶୀ ଜୋର୍‌ଜୁଲୁମ୍ । ସେଥିପାଇଁ ଆମମାନଙ୍କ କଥାଭାଷାରେ ତେଲୁଗୁ ଓ ଇଂରାଜୀର ଅବାଧ ଆଧିପତ୍ୟ । ଦୂରଗତ ଓଡ଼ିଆ ଭାଇ-ଭଉଣୀଙ୍କ ସହିତ ଆଳାପ-ପରିଚୟବେଳେ ଆମକୁ ଖୁବ୍ ଜଗିରଖି କହିବାକୁ ପଡ଼େ, ତା' ନହେଲେ ଅଜ୍ଞାତରେ ବହୁ ତେଲୁଗୁ ଶବ୍ଦ କଥାଭିତରେ ଚୁଙ୍କିଯିବ । କେବଳ ଆମମାନଙ୍କ ଘରଭିତରେ ଓଡ଼ିଆ ଭାଷାର ବ୍ୟବହାର, ଦାଣ୍ଡକବାଟ ଡିଙ୍ଗାଇ ପଦାକୁ ଗୋଡ଼ କାଢ଼ିଲାବେଳେ ତେଲୁଗୁ ଭାଷା ନକହି ଗତି ନାହିଁ ।"

ବାଧା ଦେଇ ମୁଁ ପଚାରିଲି :

"ଆଚ୍ଛା, ଆଉ କ କ ବିଷୟ ସ୍କୁଲରେ ପଢ଼ିବାକୁ ହୁଏ ?"

ବ୍ରାହ୍ମଣବାଳକଟି ଉତ୍ତର ଦେଲା :

"ତେଲଗୁ ଓ ଇଂରାଜୀ ପଛକୁ Mathematicsର ସ୍ଥାନ । Third Form (ତୃତୀୟ ଶ୍ରେଣୀ)ରୁ Arithmatic ଓ Algebra ଉଭୟ ପଢ଼ିବାକୁ ପଡ଼େ । ଏହାଛଡ଼ା ଇତିହାସ, ଭୂଗୋଳ, ବିଜ୍ଞାନ ପ୍ରଭୃତି ଅନ୍ୟାନ୍ୟ ପ୍ରଦେଶ ଭଳି ମଧ୍ୟ ପଢ଼ାଯାଏ, ସ୍କୁଲରେ ଓଡ଼ିଆ ଶିକ୍ଷାର ଗନ୍ଧସମ୍ବନ୍ଧ ନାହିଁ । ଘରେ ବାପମାଆ ପ୍ରଭୃତିଙ୍କ-ଠାରୁ ଓଡ଼ିଆ ଲେଖାପଢ଼ା ଶିଖିଗଲା ପରେ ନିଜେ ନିଜେ ଉପର କ୍ଲାସର ବହି ଘରେ ପଢ଼ୁଁ ଓ ଅଧିକରୁ ଅଧିକ ଶିଖୁ ।"

ମୁଁ ମନ ମଧ୍ୟରେ ଅନୁଭବ କରୁଥାଏଁ—ତେଲୁଗୁ ପ୍ରଭାବ ଏମାନଙ୍କ ଜାତୀୟ ମମତା ଓ ମୌଳିକ ସଂସ୍କୃତିକୁ କେଡ଼େ ନିର୍ମମ ଭାବରେ ଚପିରଖିଛି ସତେ ! ପିଲାଟିଏ ହେଲେହେଁ ସ୍ୱା ହୃଦୟ-ବିବରରେ ମଧ୍ୟ ଓଡ଼ିଆ ପ୍ରୀତିର ଗର୍ବ ଭରିରହିଛି । ସେଇଥିପାଇଁ ସିନା ନିରୋଳା ଜାଗା ଓ ନିରୋଳା ବେଳ ପାଇ ଆମ ଆଗରେ ଆଜି ପୁଞ୍ଜୀଭୂତ ମର୍ମବେଦନାର ପୁରାଣ ଗାଇ କଥଞ୍ଚିତ୍ ଦୁଃଖ ଲାଘବ କରୁଛି !

ତା’ପରେ ସେମାନଙ୍କ ଗଣିତପଢ଼ା ସହିତ ଆମ ଗଣିତପଢ଼ାକୁ ମଧ୍ୟ ମନେ ମନେ ତୁଳିବାକୁ ଲାଗିଲି । ବୀଜଗଣିତଟା କ’ଣ, କି ପ୍ରକାର ପାଠ ସେ, ଆମେ ହାଇସ୍କୁଲ ଏଣ୍ଟ୍ରି-ବନ୍ଧ ନ ମାଡ଼ିବା ଯାଏ ମୋଟେ ଜାଣିପାରୁ ନାହୁଁ, ଅଥଚ ତେଲଙ୍ଗା ପିଲାଏ ତାକୁ ପ୍ରାଇମେରି କ୍ଲାସରୁ ଆରମ୍ଭ କରିଦେଉଛନ୍ତି, ପୁଣି ହାଇସ୍କୁଲକୁ ଗଲେ ଉଚ୍ଚତର ବୀଜଗଣିତ (Higher Algebra) ପାଠ ପଢ଼ୁଛନ୍ତି, ଯାହା ଆମ ଆଡ଼େ କଲେଜ ସ୍ତରରେ ନ ପହଞ୍ଚିଲା ପର୍ଯ୍ୟନ୍ତ ଶିକ୍ଷା କରିହୁଏ ନାହିଁ । ଏଥିରେ ସେମାନେ ବେଶୀ ବୁଦ୍ଧିଆ, ବେଶୀ ଚଉକସିଆ ହେବେ ନାହିଁ ତ ଆଉ କିଏ ହେବ ?

ଏହି ସମୟରେ ମୋର ସାଥୀ ଜଣେ ତାକୁ ପଚାରିଲେ :

“ଅଚ୍ଛା, ଆମ ସହିତ ଇଂରାଜୀରେ କାହିଁକି କଥାବାର୍ତ୍ତା ଆରମ୍ଭ କଲ ? ବାହାରେ ପରା ତେଲୁଗୁରେ ତୁମେ ବରାବର କଥାଭାଷା ହୁଅ ?”

ବାଳକଟି ଗୁରୁତ୍ୱର ସହିତ ବୁଝାଇଦେଲା :

“ବାଟଘାଟ କଥା ନଆସ, ମନ୍ଦିର କଥା ନଆସ । କେତେ ଅଞ୍ଚଳରୁ କେତେ ଜାତିର, କେତେ ଭାଷାର ଲୋକ ମନ୍ଦିରକୁ ଆସୁଛନ୍ତି । ପାଖ ଯାତ୍ରୀଙ୍କ ତୁଳନାରେ ଦୂର ଯାତ୍ରୀ-ସଂଖ୍ୟା ବହୁତ କମ୍ । ପାଠୁଆଙ୍କ କଥା ଛାଡ଼ନ୍ତୁ, ଦରପାଠୁଆ, ଘରପାଠୁଆ ମଧ୍ୟ ଏ ପ୍ରଦେଶରେ ଇଂରାଜୀ ବୁଝିପାରନ୍ତି ଏବଂ ଭଙ୍ଗାଭଙ୍ଗ ଝଣ୍ଟଝଣ୍ଟିଆ ଇଂରାଜୀ କହିପାରନ୍ତି । ତେଣୁ ଯାତ୍ରୀମାନଙ୍କ ସହିତ ଇଂରାଜୀ ଭାଷାରେ କଥାବାର୍ତ୍ତା ଆରମ୍ଭ କରିବା ଆମ ପକ୍ଷରେ ଅଧିକ ସୁବିଧାଜନକ ଓ ନିରାପଦ । ଆପଣମାନେ ଓଡ଼ିଆ ବୋଲି, ମୋ ଜାତିଭାଇ ବୋଲି ମୂଳରୁ ଯେବେ ମୋର ଧାରଣା ହୋଇଥାନ୍ତା, ତାହାହେଲେ ମାତୃଭାଷା ଓଡ଼ିଆକୁ ଛାଡ଼ି ମୁଁ କି କେବେହେଲେ ଇଂରାଜୀକ ତୁଣ୍ଡରେ ଧରିଥାନ୍ତି ?”

ଇତ୍ୟବସରରେ ଗୁଡ଼ିଏ ସାଥୀ କ୍ଲାନ୍ତ ବୋଧକରି ସେଠା ଖମ୍ବରେ ଛେକ ଛେକ ହୋଇ ଡେରିକୁ ଗଡ଼ିଯାଇଥାନ୍ତି । ଗପସାଗରରେ ବୁଡ଼ିରହି ମୁକ୍ତା ସଂଗ୍ରହ କରୁଥିବା ବାକୀ ଆମ କେତେ ଜଣଙ୍କ ସଂଖ୍ୟା ସମଗ୍ର ଦଳର ଅଧିର ଅଧାରୁ ଅଧିକ ହେବ ନାହିଁ ବୋଧହୁଏ । ଏଥର ଆମର ବି ଯିବାବେଳ ହୋଇଗଲା । ବେଢ଼ା ଛାଡ଼ିବା ପୂର୍ବରୁ ମୁଁ ସୂପକାର ବାଳକଟିକୁ ପଚାରିଲି :

“ତୁମେ ତ ବେଶ୍ ହୁସିଆର ଓ ବୁଦ୍ଧିମାନ୍ ଜଣାପଡ଼ୁଛ, ସ୍କୁଲରେ ନିଶ୍ଚୟ ଭଲ ପଢ଼ୁଥିଲ ବୋଲି ଅନୁମାନ ହେଉଛି । ତେବେ ପଢ଼ା ଛାଡ଼ି ଏ ବେଢ଼ାକୁ ଆସିଲ କାହିଁକି ? ବେଶୀ ପଢ଼ିଥିଲେ ତୁମ ନିଜର ଓ ତୁମ ପରିବାରର ଭବିଷ୍ୟତ୍ ଉଜ୍ଜ୍ୱଳ ହୋଇନଥାନ୍ତା କି ?”

ପିତୃଭକ୍ତ ବାଳକଟି ବୁଝାଇ କହିଲା :

“ପିତା ଆମର ଏହି ମନ୍ଦିରରେ ସୂପକାର କାର୍ଯ୍ୟ କରୁଥିଲେ । ଅକାଳରେ ତାଙ୍କର

କାଳ ହୋଇଗଲ । ମୁଁ ତାଙ୍କର ପ୍ରଥମ ସନ୍ତାନ; ତେଣୁ ତାଙ୍କ ଅନ୍ତେ ମତେ ପୈତୃକ ବୃତ୍ତି ଧରବାକୁ ପଡ଼ଲ । ପୁରୁଷ ପୁରୁଷ ହେଲ ଆମ ବଂଶକୁ ଏଇ ଠାକୁରେ ଚଳାଇ ଆସୁଛନ୍ତ । ତାଙ୍କ ସେବା ଛାଡ଼ଲେ କ ପେଟକୁ ଦାନା ଜୁଟିବ ? ମୁଁ ଯଦ ପିତାଙ୍କ ଜାଗାରେ ଆସି ଭର୍ତ୍ତି ହୋଇଯାଇନଥାନ୍ତ, ପଛନ୍ତେ ଯେତେ ମୁଣ୍ଡ ପିଟିଲେ ବ ଏ କାମ ଆଉ ପାଇପାରନଥା'ନ୍ତ । ଏଇ ବେଢ଼ା ହେଲ ଆମର ମଉରସୀ ରୋଜଗାରଭୂଇଁ । ଏଇ କ୍ଷେତ ଆମକୁ ପୁରୁଷି ପୁରୁଷି ସୁନାର ଫସଲ ଦେଇଆସୁଛ ଏବଂ ଆମେ ନଥତ ରଖିଥିବା ପର୍ଯ୍ୟନ୍ତ ଏହପର ଦେଉଥିବ । ଏଇ ଠାକୁରଙ୍କ ତୋଷ ଲଗିବା ଯୋଗୁଁ ଯେଉଁ ହଜାର ହଜାର ଯାତ୍ରୀ ଏଠାକୁ ଦର୍ଶନପାଇଁ ଆସୁଛନ୍ତ, ସେମାନେ ଆମର ପୋଷଣାହାର କରୁଲେ ଚଳେ । ସ୍କୁଲଠାରୁ କ'ଣ ପାଠପଢ଼ା-ରୁକର ବେଶୀ ଧନ ଦେଇପାରଥା'ନ୍ତା ? ଠାକୁରେ ଚତୁର୍ବର୍ଗଦାତା । ତାଙ୍କର ସେବାରେ ଜୀବନକୁ ଲଗାଇ-ପାରଲେ ଏଇଠି 'ଚତୁର୍ବର୍ଗ'ଯାକ ଭୋଗକରହେବ ।''

ପିତୃହରା ପିଲଟିର ବଶ୍ୱାସ ତ କମ୍ ନୁହେଁ ! ସେହ ଅଗାଧ ବଶ୍ୱାସ ଯେ ଦନେ ତା' ପିତାର ଦରଗଢ଼ା ଆଶା-ଦେଉଳରେ ଦଧିନଉତ ବସାଇବ, ଏହା ମୁଁ ମର୍ମେ ମର୍ମେ ଉପଲବ୍ଧି କଲ । ତା' ସଙ୍ଗେ ସଙ୍ଗେ ମଧ୍ୟ ମନେ ମନେ ଉଦ୍‌ବୁଦ୍ଧ ହୋଇ ଭାବଲ— ଏ ସୁଭଗ ବାଳକଟିର ଅଖଣ୍ଡ ବଶ୍ୱାସ ମତେ ଆଜ ମହାଶିକ୍ଷା ଦେଲ, ଭବଷ୍ୟତ୍ ଜୀବନ ପାଇଁ ପ୍ରେରଣାର ଅଝଣ୍ଡ ପ୍ରଦୀପ ଜଳାଇଦେଲ ।

ଯାହାହେଉ, ଏତକରେ ଗଳ୍ପାମୋଦ ସାଙ୍ଗ କରବାକୁ ପଡ଼ଲ । ଆମେମାନେ ବେଢ଼ା ଛାଡ଼ବାକୁ ମନସ୍ଥ କଲବେଳକୁ ପିଲଟି "Just a second please" କହ ପବନ ବାଗେ ଉଡ଼ଗଲ । ଆଖି ପିଛୁଳାକେ ସେଇଠୁ କେଉଁଠୁ ଯୋଡ଼େ ପ୍ରସାଦ ଆଣି ଆମ ଆଗରେ ବାଢ଼ିଦେଲ । ଦେବପ୍ରସାଦପ୍ରାପ୍ତି ମହା ଭାଗ୍ୟର କଥା । ପରମ ଆଗ୍ରହରେ ସେତକ ସେବା କରବା ପରେ ଦେବତାଙ୍କ ଉଦ୍ଦେଶ୍ୟରେ ଶେଷ ପ୍ରଣତ-ନବେଦନ ଢାଳ ଆମେ ବେଢ଼ା ଛାଡ଼ଲୁଁ । ବଳେଇଦେବାପାଇଁ ସେ ଅତଥିଭବନ ପର୍ଯ୍ୟନ୍ତ ଆମ ସହତ ଆସିଲ, ତା'ପରେ 'ନମସ୍କାରମ୍' କହ ଯୋଡ଼ହସ୍ତ ମୁଦ୍ରାସହ ବଦାୟ ଗ୍ରହଣ କଲ ।

ଇତପୂର୍ବରୁ ତାର ସଶ୍ରଦ୍ଧ ବ୍ୟବହାରରେ ମୁଗ୍ଧ ହୋଇ ବେଢ଼ା ମଧ୍ୟରେ ସାମାନ୍ୟ କେତୋଟି ରୌପ୍ୟମୁଦ୍ରା ତା' ହସ୍ତରେ ଅର୍ପଣ କରବାକୁ ଆମେ ଭୁଲନଥିଲୁଁ । ବଡ଼ ଅନଚ୍ଛା ସତ୍ତ୍ୱେ ସେତକ ସେ କେବଳ ଆମ ସନବନ୍ଧ ସ୍ନେହାନୁବନ୍ଧରୁ ହିଁ ଗ୍ରହଣ କରବାକୁ ବାଧ୍ୟ ହୋଇଥିଲ ।

ସାଧାରଣ ଲୋକଚକ୍ଷୁରେ ନଗଣ୍ୟ ପାଚକ ପିଲଟିଏ ହେଲେହେଁ ତାର ଅନ୍ତର୍ନିହତ ଏଇ ସମସ୍ତ ଗୁଣଗୁଡ଼ିକ ବଶେଷତା ମୋ ଚକ୍ଷୁରେ ଅସାଧାରଣ, ଅଲୋକଲଭ୍ୟ ଓ ଅସାମାନ୍ୟ ବୋଲ ସେଦନ ପ୍ରତଭାତ ହୋଇଥିଲ । 'ଭନ୍ନରୁଚର୍ହି ଲୋକାଃ'—କାହା ଆଖିର କମିତ ରୁଚ, ସେଇଟା ଅବଶ୍ୟ ଲୋକ ଲୋକକେ ଫରକ ।

ଆମେ ଛନ୍ନ ଦଳଟି ପୋଡ଼ାଗଡ଼-ଡେରାରେ ପହଞ୍ଚି ଦେଖିଲୁଁ, ଆଗରୁ ସେଠିକି ଫେରି-
ଆସିଥିବା ସାଥୀମାନେ ପୂଜ୍ୟ ଅଭିଭାବକ କୂର୍ମମଣି ସାର୍‌ଙ୍କୁ ଘେରି ରହିଛନ୍ତି, ଆଉ ସବୁରି
ଉତ୍ଫୁଲ୍ଲ ମନ ଉଲ୍ଲାସର ଉଚ୍ଛଳ ଢେଉରେ ଦୋଳଖେଳୁଛି । ଏଭଳି ମାନସିକ ଚଞ୍ଚଳତା
ଅତି ସ୍ୱାଭାବିକ, କାରଣ ଅଳ୍ପ ପୂର୍ବରୁ ରାଜବାଟିକାରୁ ଶୁଭ ବାର୍ତ୍ତା ଆସିଥିଲା ଯେ, ରାଜା-
ସାହେବଙ୍କ ସହୃଦୟ ଅନୁକମ୍ପାରୁ ଆମମାନଙ୍କ ଦୀର୍ଘ ଆକାଂକ୍ଷିତ ମହେନ୍ଦ୍ର-ଯାତ୍ରାର
ବ୍ୟାପକ ବ୍ୟବସ୍ଥା ହୋଇଯାଇଛି । ଆଗୁଆ ସେବକ ଦଳେ ପ୍ରୟୋଜନୀୟ ସକଳ
ଭୋଜ୍ୟୋପକରଣ ଓ ଅନ୍ୟାନ୍ୟ ଆନୁଷଙ୍ଗିକ ସାମଗ୍ରୀ ସହ ମହେନ୍ଦ୍ରଗିରି-ଶିଖରକୁ ରୱାନା
ହୋଇସାରିଲେଣି । ଆମମାନଙ୍କୁ ଆସନ୍ତା ଭୋର୍ ସୂର୍ଯ୍ୟୋଦୟ ପୂର୍ବରୁ ଯାତ୍ରାରମ୍ଭ କରିବାକୁ
ହେବ, ସେଥିପାଇଁ ଆବଶ୍ୟକସଂଖ୍ୟକ ଯାନ ପ୍ରସ୍ତୁତ ହୋଇ ରହିଲାଣି । ଉଚ୍ଛ୍ୱସିତ
ଆନନ୍ଦରେ ଆମେ ସମସ୍ତେ ସଅଳ ସଅଳ ଖିଆକାମ ସମାପିଦେଇ ନିଜ ନିଜ ଶୋଇବା
ଜାଗା ଧରିନେଲୁଁ । ମାତ୍ର ନିଦ୍ରାଦେବୀଙ୍କର ସୁଦୟା ହେଲା ନାହିଁ । ବରଂ ରାତିଟା ଆମକୁ
ସାତ ରାତି ପରି ଦୀର୍ଘତର ବୋଧ ହେଲା । ଏଇଟା ହେଉଛି କାଳଦେବତାର ଗୋଟାଏ
ମନସ୍ତାତ୍ତ୍ୱିକ ମ୍ୟାଜିକ୍ । ଆକାଂକ୍ଷିତ ବସ୍ତୁର ଉପସ୍ଥିତି ହେବା ପର୍ଯ୍ୟନ୍ତ ଯେଉଁତକ ସମୟ
ମଣିଷ କେବଳ ପ୍ରତୀକ୍ଷାରେ ପ୍ରତୀକ୍ଷାରେ କଟାଏ, ଧୈର୍ଯ୍ୟନାଶକ ସେଇତକ ସମୟ ତାକୁ
ଏତେ ଲମ୍ବା ଜଣାଯାଏ ଯେ, ସେ ମନେକରେ ସତେ ଯେପରି ଘଣ୍ଟାର କଣ୍ଟାଗୁଡ଼ାକ
ପଛେଇ ପଛେଇ ଗତି କରୁଛି । କିନ୍ତୁ ଯେତେବେଳେ ପ୍ରତୀକ୍ଷିତ ବସ୍ତୁଟି ଆଖି ଆଗରେ ଆସି
ଆବିର୍ଭୂତ ହୋଇଯାଏ, ତେଣିକି ସୁଖର ସମୟଟା ତାକୁ ଦଣ୍ଡକ ପରି ଏତେ କମ୍ ବୋଧ-
ହୁଏ ଯେ, କେତେବେଳେ ସୂର୍ଯ୍ୟ ବୁଡ଼େ, ରାତି ଆସେ, ତାରା ଫୁଟେ, ପୁଣି ରାତି ସରି
ସିନ୍ଦୂରା ଫାଟେ, ସୂର୍ଯ୍ୟ ଉଠେ, ମଣିଷ ସୁଖଭୋଳରେ ଥାଇ ସେସବୁ ପ୍ରତି ମୋଟେ ନଜର
ରଖିପାରେ ନାହିଁ ।

ପରଦିନର ଉଷାଭାସ—ପୂର୍ବାଶା-ତୋରଣରେ ଉଙ୍କିଉଠୁଥାଏ ସିନ୍ଦୂରିମାର ଅଙ୍କ ।
ଅତିଥିଭବନର ତୋରଣଦେଶରେ ୯ଟିକା ଯାନ ପଙ୍‌କ୍ତିର ମନୋହର ବହର । ସେ
ଯାନଗୁଡ଼ିକ ସାର୍‌ଙ୍କ ସହ ଆମ ସମସ୍ତଙ୍କୁ ନେଇ ଦ୍ରୁତଗତିରେ ଛୁଟିଲା ମହେନ୍ଦ୍ରାଭିମୁଖରେ ।
ଆଶାତୀତ ଅଳ୍ପ ସମୟ ମଧ୍ୟରେ ପହଞ୍ଚିଗଲୁ ଶୈଳରାଜ ମହେନ୍ଦ୍ରର ଛବିଳ ପାଦଦେଶରେ ।
ସେଠାରେ ଆମକୁ ଅପେକ୍ଷା କରି ରହିଥିଲେ ଦଶଜଣ ପାର୍ବତ୍ୟ ଶବର ଯୋଡ଼ିଏ
ଡୋଲିଯାନ ସହ । ପର୍ବତଟିର ଉଚ୍ଚତା ସେହି ପାଦଦେଶରୁ ଶିଖ ପର୍ଯ୍ୟନ୍ତ ୪୯୨୩ ଫୁଟ୍ ।
ପ୍ରାକୃତିକ ଉତ୍କଳର ଏହାହିଁ ଉଚ୍ଚତମ ପର୍ବତ । ସବାତଳୁ ସରଳୋନ୍ନତ କ୍ରମରେ ଗୈରିକ
ରାସ୍ତାଟିଏ ଉଠିଥାଏ ସବା ଉପର ପର୍ଯ୍ୟନ୍ତ ବେଶ୍ ଓସାରିଆ ଆକାରରେ । ରାସ୍ତାଟିର ଦୁଇ
ପାର୍ଶ୍ୱରେ କଣ୍ଟକଗୁଳ୍ମାକୀର୍ଣ୍ଣ ଅତଳ ଗହ୍ୱର । ଉପରକୁ ଉଠୁଥିବା ବେଳେ କମ୍ପା ତଳକୁ
ଖସୁଥିବାବେଳେ ଦୈବାତ୍ ଯଦି କାହାରି ପାଦ ସ୍ଖଳିତ ହୋଇଯାଏ, ତାହାହେଲେ ମୁହୂର୍ତ୍ତକ
ମଧ୍ୟରେ କେଉଁ ରସାତଳ-ଗର୍ଭରେ ସେହି ହତଭାଗ୍ୟ ଜୀବନର ହେବ ଶୋଚନୀୟ ସମାଧି ।

ଏଥିପାଇଁ ସହାୟକ ଶବରଭୃତ୍ୟମାନେ ଆମ ପ୍ରତ୍ୟେକଙ୍କ ହାତକୁ ଯୋଗାଇଦେଲେ ଗୋଟିଏ ଗୋଟିଏ ଦମ୍ଭିଲ ଲମ୍ବା ଲାଠି । ଯେଉଁ ରାସ୍ତା ଦେଇ ଉପର-ତଳ ଯିବା-ଆସିବା କରିବାକୁ ହେବ, ତହିଁରେ ବ୍ୟବସ୍ଥିତ ଢଙ୍ଗରେ ପାହାଚ ତିଆରି ହୋଇନଥାଏ, ବାଟଟି ପ୍ରାୟ ସବୁ ସ୍ଥାନରେ ପଥୁରିଆ ଓ ଆବୁଡ଼ା-ଖାବୁଡ଼ା । ହସ୍ତଧୃତ ସେହି ଲାଠିଦ୍ୱାରା ହିଁ ଉଚ୍ଚାବଚ ରାସ୍ତାର ପଥରଖଣ୍ଡମାନଙ୍କରେ ଠେସ ଦେଇ ଦେଇ ଆମକୁ ଶିଖ ପର୍ଯ୍ୟନ୍ତ ଉଠିବାକୁ ହେବ । ଆମେ ପର୍ବତାରୋହଣଯୋଗ୍ୟ ରାସ୍ତାର ମଝାମଝି ଅଂଶରେ ଆଗପଛ ହୋଇ ଚାଲୁଥାଉଁ । ଆମମାନଙ୍କର ପୂର୍ଣ୍ଣ ନିରାପତ୍ତା ପାଇଁ ଡାହାଣ ପଟେ ପାଞ୍ଚଜଣ ଓ ବାଁ ପଟେ ପାଞ୍ଚଜଣ ଶବର ଦେହରକ୍ଷୀସ୍ୱରୂପ ଆଗପଛ ହୋଇ ଡୋଲିହସ୍ତ ଘେନି ଚାଲୁଥାନ୍ତି ଏବଂ ଆମର ପ୍ରତି ପଦକ୍ଷେପ ଉପରେ ସତର୍କ ତୀକ୍ଷ୍ଣ ନଜର ରଖିଥାନ୍ତି । ଯଦି ଆମ ଭିତରୁ କେହି ଅଧବାଟରେ ହାଲେଇଯାଇ ଆଉ ଉପରକୁ ଚଢ଼ି ନ ପାରିବ, ତେବେ ସମାନ୍ତରାଳ-ଚାରୀ ଦୁଇଜଣ ଦେହରକ୍ଷୀ ତାକୁ ଗୋଟିଏ ଡୋଲିରେ ବସାଇ ଅନାୟାସରେ ପର୍ବତ-ଶୀର୍ଷସ୍ଥ ଆସ୍ଥାନରେ ପହଞ୍ଚାଇଦେବେ ।

ଆମ୍ଭେମାନେ ଶବରମାନଙ୍କ ନିର୍ଦ୍ଦେଶାନୁସାରେ ନିର୍ବିଘ୍ନରେ ଯାଇ ମହେନ୍ଦ୍ରଗିରିର ଚୂଡ଼ା-ଦେଶରେ ଉପଗତ ହେଲୁଁ । ଉଠାଣି ରାସ୍ତା ମଧ୍ୟରେ କାହାରି କିଛି ବିଶେଷ ଅସୁବିଧା ଘଟିନାହିଁ । ଡୋଲିର ଆଦୌ ଆବଶ୍ୟକତା ହୋଇନାହିଁ । ହାତର ଲାଠି ଯେ ମଣିଷର ଦେହକୁ ଏତେ ବଳ ଓ ମନକୁ ଏତେ ଦମ୍ଭ ଦିଏ ଏବଂ ଦୀର୍ଘ ପଥରେ ବିପଦବାରକ ବନ୍ଧୁର କାର୍ଯ୍ୟ କରେ, ଏହା ଜୀବନରେ ସର୍ବପ୍ରଥମ ପ୍ରତ୍ୟକ୍ଷ ଅନୁଭବ କରିଥିଲି ମୁଁ ସେହିଦିନ । ଯେଉଁ ଆଗୁଆ ନୌକର ଓ ପରିଚର୍ଯ୍ୟାକାରୀ ଦଳ ପୂର୍ବଦିନରୁ ସେଠି ଆସି ରହିଥିଲେ, ସେମାନେ ଲଘୁ ଆହାର୍ଯ୍ୟ (ଜଳଯୋଗ)ର ସାମଗ୍ରୀମାନ ପ୍ରସ୍ତୁତ କରିସାରି ଆମମାନଙ୍କ ଆଗମନକୁ ପ୍ରତୀକ୍ଷା କରି ରହିଥିଲେ । ପେଟ ଓ ଆଖି ମଧ୍ୟରେ ଯେଉଁ ପ୍ରତିଯୋଗିତା ହେଲା, ସେଥିରେ ଆଖିର ହିଁ ଜିତାପଟ ହେଲା । ତେଣୁ ଆଗ ମନଭରି ଦେଖିସାରି ତାପରେ ଲଘୁଭୋଜନ କଥା ଭାବିବୁ ବୋଲି ଆପାତତଃ ମନସ୍ଥ କଲୁଁ ।

ପର୍ବତ ଉପରଟିର ଅନେକ ଅଂଶ କାଟି ସମତଳ କରାଯାଇଥିବା ଫଳରେ ବ୍ୟବହାର୍ଯ୍ୟ ସ୍ଥାନର ପରିସର ବେଶ୍ ପ୍ରଶସ୍ତ ଓ ବିଚରଣଯୋଗ୍ୟ ହୋଇଥାଏ । ସେଠାରେ ରାଜ-ପରିବାରର ସାମୟିକ ରହିଣିପାଇଁ ଗୋଟିଏ ନାତିବୃହତ୍ ସୁନ୍ଦର ପକ୍କା ବଙ୍ଗଳା ଥାଏ । ଆମେ ସେହି ବଙ୍ଗଳା ମଧ୍ୟରେ ତାର କେତେକ ଝରକା ଖୋଲିଦେଲି ମାତ୍ରେ ଆକାଶଚାରୀ ମେଘଖଣ୍ଡେ କେଉଁଆଡ଼ୁ ଭାସିଆସି ଆମ ସର୍ବାଙ୍ଗକୁ ଶୀକରସିକ୍ତ କରିଦେଲା । ଶୀତେଇ-ଉଠିଲି ଆପାଦମସ୍ତକ । ପୁସ୍ତକଗତ କାଳିଦାସୀ ବର୍ଣ୍ଣନାର ଏଭଳି ହେଲା ପ୍ରତ୍ୟକ୍ଷ ପ୍ରତୀତି । ଜଗୁଆଳ ଚାକରଟି ସଙ୍ଗେ ସଙ୍ଗେ ଧାଇଁଆସି ସମସ୍ତ ଖୋଲା ଝରକା ବନ୍ଦ କରିଦେଲା । ପେଟର ଭୋକ ଅପେକ୍ଷା ଆଖିର ଭୋକ ହେଲା ଅଧିକ ପ୍ରବଳ । ଏଣୁ ପ୍ରସ୍ତୁତ ଆହାର୍ଯ୍ୟ ପ୍ରତି ଆକୃଷ୍ଟ ନହୋଇ ଶିଖରର ଅସରନ୍ତି ପ୍ରାକୃତିକ ସୁଷମା ମଧ୍ୟରେ ସବୁରି ଚକ୍ଷୁ ବୁଡ଼ିରହିଲା ।

ଉକ୍ତ ସମତଳ ପରିସର ମଧ୍ୟରେ ଥାଏ ଏକ ବଡ଼ ବାର୍ମା । ତାର ଜଳ ବରଫଠୁ ବଳି ଥଣ୍ଡା । ନୌକରମାନେ ବାର୍ମାଟିରୁ ଜଳ ଉତ୍ତୋଳନ କରି ଆମମାନଙ୍କପାଇଁ ଗରମ କରିଦେଲେ । ସମସ୍ତେ ସେହି କବୋଷ୍ଣ ଜଳରେ ସ୍ନାନ ସାରି ଦେବୀଙ୍କ ଦର୍ଶନ ଉଦ୍ଦେଶ୍ୟରେ ସଜବାଜ ହେଲୁଁ । ପରିବେଶ, ପରିପାର୍ଶ୍ୱ ଓ ପ୍ରକୃତିର ପ୍ରୀତିପଦ ଆହ୍ୱାନକୁ ଅବହେଳନ ସର୍ବାଦୌ କର୍ତ୍ତବ୍ୟ ବୋଲି ରାୟ ଦେଲେ ଦଳର ସଭିଏଁ । ଏଥିରେ କିନ୍ତୁ ଆପତ୍ତିର ସ୍ୱର ଉତ୍ଥାପନ କଲେ ସୁଖାଦ୍ୟପରିବେଷକ ପରିଚର୍ଯ୍ୟାକାରୀ ଗୋଷ୍ଠୀ । ସେମାନଙ୍କ ମୁଖପାତ୍ର-ରୂପେ ବର୍ଷୀୟାନ୍ ପାଚକ ଯୁକ୍ତକରରେ ଯୁକ୍ତି ବାଢ଼ିଲେ, "ଆଜ୍ଞା, ଆପଣମାନେ ବଡ଼ ପାଠୁଆ, କଟକ ରାଇଜରୁ ଆସିଚନ୍ତି, ଆମ ରାଜମଣିମାଙ୍କର ଅତିଥି । ଆମେ କିବା ଗାଁର ଲୋକ, ଆଜି ଆପଣମାନଙ୍କର ସନ୍ତୋଷବିଧାନ ପାଇଁ ଏ ଚିଜ କେତୋଟି କେତେ ଯତନରେ ତିଆରି କରିଛୁ, ଗରମ ଗରମ ଏବେ ଖାଇଲେ ଯିନା ଏସବୁର ସୁଆଦ ମିଳିବ, ଥଣ୍ଡା ହେମକାକର ହୋଇଗଲେ କି ଆଉ ସୁଆଦ ରହିବ ? ତେଣୁ ମୋ ଗୋଟେ ବୋଲକି ମାନନ୍ତୁ । ଆପଣମାନଙ୍କ କଥା ରହୁ, ଆମ କଥା ରହୁ । ଏବେ ପାଖ ଗୁମ୍ଫାଟି ଦେଖିଦେଇ ଶୀଘ୍ର ଫେରିଆସନ୍ତୁ ଏବଂ ଗରମ ଥିବା ଅବସ୍ଥାରେ ଚିଜଗୁଡ଼ିକ ଉଦରସ୍ଥ କରିନିଅନ୍ତୁ । ତେଣିକି ମନଖୁସିରେ ମନ୍ଦିର ପ୍ରଭୃତି ଦେଖିବାକୁ ଯିବେ । ବହୁତ ସମୟ ହାତରେ ଅଛି ।"

'ବୃଦ୍ଧସ୍ୟ ବଚନଂ ଗ୍ରାହ୍ୟମ୍'—ବର୍ଷୀୟାନ୍‌ଙ୍କ ବୋଧା ଯୁକ୍ତିଟି ଖୁବ୍ ମନକୁ ପାଇଲା ଆମର । ଏହାଦ୍ୱାରା ଆଖି ଓ ପେଟର ଫର୍ଦ୍ଦ ଏକ ଶାନ୍ତିକର ସନ୍ଧିକର ସାଲିସରେ ପରିଣତ ହୋଇଗଲା ।

ହର୍ଷିଳ ହୃଦୟରେ ଦଳ ବାନ୍ଧି ଅଦୂରସ୍ଥ ରମଣୀୟ ଗୁମ୍ଫା ଦର୍ଶନ କରିବାକୁ ଗଲୁଁ । ତ୍ରେତା ଯୁଗର ଅଦ୍ୱିତୀୟ ବ୍ରାହ୍ମଣବୀର ପରଶୁରାମଙ୍କ ପବିତ୍ର ସ୍ମୃତି ବହନ କରି ଏହି ପୌରାଣିକ ଗୁମ୍ଫାଟି 'ପରଶୁରାମ ଗୁମ୍ଫା' ନାମରେ କାଳ କାଳ ହେଲା ତୀର୍ଥଯାତ୍ରୀ ଓ ଦର୍ଶକମାନଙ୍କର ନମସ୍ୟ ହୋଇଆସିଛି । ରାମାୟଣବର୍ଣ୍ଣିତ ରାମ-ପରଶୁରାମ ସାମ୍ମୁଖ୍ୟ ମହାନ୍ ଆଖ୍ୟାନଟି ସ୍ୱତଃ ଏଠାରେ ମନରେ ଉଦିତ ହୁଏ । ରାଜର୍ଷି ଜନକ ରାଜକନ୍ୟା ସୀତାଙ୍କ ବିବାହପାଇଁ ହରଧନୁଭଙ୍ଗ ପଣ ଘୋଷଣା କରି ଯେଉଁ ବିରାଟ ସ୍ୱୟଂବର ସଭାର ଆୟୋଜନ କରିଥିଲେ, ସେଥିରେ ଅଗଣିତ ଆଶାୟୀ ରାଜା ଓ ରାଜତନୟ ଯୋଗ ଦେଇଥିଲେ ହେଁ, ଜଣେ ହେଲେ କେହି ଉକ୍ତ ଧନୁକୁ ଉତ୍ତୋଳନ ସୁଦ୍ଧା କରିପାରିଲେ ନାହିଁ—ଭାଙ୍ଗିବା ତ ଦୂରର କଥା । ପରିଶେଷରେ ଉପସ୍ଥିତ ହତାଶ ପ୍ରତିଯୋଗୀବୃନ୍ଦ ତଥା ଦର୍ଶକମଣ୍ଡଳୀଙ୍କୁ ବିସ୍ମୟାଭିଭୂତ କରି ଦଶରଥାତ୍ମଜ ତରୁଣଧାନୁଷ୍କ ରାମଚନ୍ଦ୍ର ଅବଲୀଳାକ୍ରମେ ତାହାକୁ ଭାଙ୍ଗି ଖଣ୍ଡ ଖଣ୍ଡ କରିଦେଲେ । ବିପୁଳ ହର୍ଷକୋଳାହଳର ହିଲ୍ଲୋଳ ମଧ୍ୟରେ ଶୁଚିସ୍ମିତା ସୀତା ଅଧୋବଦନରେ ସଖୀଗହଣରେ ଯାଇ ବିଜୟୀ ବୀର ଶ୍ରୀରାମଙ୍କ ଗଳାରେ ବରମାଳା ଲମ୍ବାଇଦେଲେ । ବିଧିବିଧାନମତେ ପରିଣୟୋତ୍ସବ ପରିସମାପ୍ତ ହେଲା ପରେ ପରିବାରପରିଜନ ସମଭିବ୍ୟାହାରରେ ପୁଣି-

ପୁତ୍ରବଧୂଙ୍କ ରଥରେ ଯେବେ ମହାରାଜ ଦଶରଥ ଅଯୋଧ୍ୟାମୁଖୀ ହୋଇଥିଲେବେଳେ ଅର୍ଦ୍ଧ-ପଥରେ କ୍ଷତ୍ରିୟବିଦ୍ୱେଷୀ ବୀରବର୍ଯ୍ୟ ପରଶୁରାମ ରଥର ପଥ ଓଗାଳି ଦର୍ପୋଦ୍ଧତ ଦାମ୍ଭିକ ସ୍ୱରରେ ତମାଳଶ୍ୟାମଳ ଅଭିରାମ ରାମଙ୍କୁ ଆହ୍ୱାନ ଦେଲେ, "ରେ ରେ ବୀରାଧମ ! ବହୁ କାଳରୁ ଅଯତ୍ନରେ ପଡ଼ିରହି ଜରାଜୀର୍ଣ୍ଣ ହୋଇଯାଇଥିବା ଘୁଣଖିଆ ସାମାନ୍ୟ ଶିବଧନୁଟାକୁ ଭାଙ୍ଗିଦେଇ ନିଜକୁ ମହାଧନୁର୍ଦ୍ଧର ବୋଲି ବାହାଦୁରି ଦେଖାଉଛୁ ! ଧିକ୍ ତୋର ସେ ବୀର-ପଣକୁ ! ସାହସ ଅଛି ଯେବେ, ତଳକୁ ଓହ୍ଲାଇଆସି ବୀରତ୍ୱର ପରଖ ଦେ । ଯଦି ମୋର ଏହି ବିଶାଳକାୟ କାର୍ମୁକକୁ ଦ୍ୱିଖଣ୍ଡ କରିଦେଇପାରିବୁ, ତାହାହେଲେ ଜାଣିବି ଯେ ତୁ ପ୍ରକୃତ ବୀର ।"

ଅବତାରୀ ଭଗବାନ ରାମଚନ୍ଦ୍ର ସେହି ଆହ୍ୱାନକୁ ସ୍ୱାଗତ କରି ରଥରୁ ଅବତରଣ କରନ୍ତେ ଆସ୍ପର୍ଦ୍ଧୀ ପରଶୁରାମ ନିଜ ଧନୁର ଏକ କୋଟିକୁ ଧରି ତାଙ୍କ ଆଡ଼କୁ ବଢ଼ାଇଦେଲେ । ରଙ୍କରଞ୍ଜନ ରାମଚନ୍ଦ୍ର ହସ ହସ ବଦନରେ ଧନୁର ଅନ୍ୟ କୋଟିକୁ ସ୍ପର୍ଶପୂର୍ବକ ଅଙ୍ଗୁଳି ସଂଘାତରେ ସମଗ୍ର କାର୍ମୁକଟିକୁ ଖଣ୍ଡ ଖଣ୍ଡ କରିଦେଲେ ଏବଂ ଠିକ୍ ତାର ପୂର୍ବରୁ ପରଶୁରାମଙ୍କ ଶରୀରସ୍ଥ ସମସ୍ତ ଶୌର୍ଯ୍ୟକଳା ସେହି ଧନୁ ମଧ୍ୟଦେଇ ନିଜ ଅବୟବକୁ ପ୍ରତ୍ୟାହରଣ କରିଆଣିଲେ । ଚାହୁଁ ଚାହୁଁ ପରଶୁରାମ ନିର୍ବୀର୍ଯ୍ୟ ନିର୍ବଳ ନିସ୍ତେଜ ହୋଇ ଭୂତଳରେ ଟଳିପଡ଼ିଲେ । ସେ ସେତେବେଳେ ରାମଚନ୍ଦ୍ରଙ୍କୁ ଶଙ୍ଖଚକ୍ରଗଦାପଦ୍ମପାଣି ବିଷ୍ଣୁ-ରୂପରେ ଦେଖିବାକୁ ପାଇ କାତର କଣ୍ଠରେ ପ୍ରାର୍ଥନା କଲେ, "ପ୍ରଭୁ ! ମୁଁ ମଦାନ୍ଧ ହୋଇ ଆପଣଙ୍କ ସହ ମୁକାବିଲା କରିବାକୁ ଯାଇ ଘୋର ଅପରାଧ କରିଛି । କେଉଁ ପ୍ରାୟଶ୍ଚିତ୍ତଦ୍ୱାରା ଏହି ମହାପାପରୁ ମୁକ୍ତ ହେବି, ଦୟାକରି ଆଦେଶ ଦେବା ହୁଅନ୍ତୁ ଅନ୍ତର୍ଯ୍ୟାମୀ !"

କ୍ଷମାସାଗର ଶ୍ରୀରାମଚନ୍ଦ୍ର କରୁଣାର୍ଦ୍ର ହୃଦୟରେ ଅନୁତପ୍ତ ପରଶୁରାମଙ୍କୁ ପରାମର୍ଶ ଦେଲେ, "ଆପଣ ଏବେ ଏକମୁହାଁ ମହେନ୍ଦ୍ରପର୍ବତକୁ ଯାତ୍ରା କରନ୍ତୁ । ଅତୀତକୁ ଭୁଲିଯାଇ ତାହାର ଶିଖରେ ଅବସ୍ଥାନପୂର୍ବକ ସନ୍ନ୍ୟାସୀର ଜୀବନ ଅତିବାହିତ କରନ୍ତୁ ।"

ଭଗବାନ ରାମଚନ୍ଦ୍ରଙ୍କ ନିର୍ଦ୍ଦେଶକୁ ଶିରୋଧାର୍ଯ୍ୟ କରି ସେହି ମୁହୂର୍ତ୍ତରୁ ପରଶୁରାମ ହେଲେ ପରଶୁତ୍ୟାଗୀ । ଏହି ମହେନ୍ଦ୍ରଗିରିକୁ ଆସି ଯେଉଁ ଗୁମ୍ଫା ମଧ୍ୟରେ ତପଶ୍ଚରଣର କଠୋର କୃଚ୍ଛ୍ରସାଧନା କରି ପାପମୁକ୍ତ ହୋଇଥିଲେ, ତାହାହିଁ ଏବର ଏଇ 'ପରଶୁରାମ ଗୁମ୍ଫା' । ଆମେମାନେ ତନ୍ମଧ୍ୟକୁ କିଛି ସମୟ ଦୃଷ୍ଟିପାତ କରି ପୁରାଣପ୍ରସିଦ୍ଧ ସେହି ପୁରୁଷୋତ୍ତମ ପରଶୁରାମଙ୍କ ଉଦ୍ଦେଶ୍ୟରେ ପ୍ରଣତି-ଅର୍ଘ୍ୟ ଢାଳି ରହଣିସ୍ଥଳକୁ ଫେରିଅଇଲୁଁ । ଯଥାଶୀଘ୍ର ଲଘୁଭୋଜନ ଶେଷ କରି ମନ୍ଦିରମାନ ପରିକ୍ରମା କରିବାକୁ ବାହାରିପଡ଼ିଲୁଁ ।

ଏହି ଗିରିତୀର୍ଥରେ ଯେଉଁ ପାଞ୍ଚୋଟି ମନ୍ଦିର ବିଦ୍ୟମାନ, ସେଗୁଡ଼ିକ ହେଉଛି ଶ୍ରୀ ଶ୍ରୀ ମହେନ୍ଦ୍ରନାରାୟଣ ମନ୍ଦିର, ଗୋକର୍ଣ୍ଣେଶ୍ୱର ଶିବ ମନ୍ଦିର, ଧର୍ମଯୁଧିଷ୍ଠିର ମନ୍ଦିର, ଭୀମସେନ ମନ୍ଦିର ଓ ଶ୍ରୀରାମ ମନ୍ଦିର । ଆମେମାନେ ଏହି ମନ୍ଦିର ପଞ୍ଚକର ଦେବତାମାନଙ୍କୁ ଦର୍ଶନ ଓ ବନ୍ଦନ କରି ପୁରାଣ ଯୁଗର ମଧୁମାଧୁରୀମୟ ଅତୀତର ମହିମାରେ ବିହ୍ୱଳ ହୋଇପଡ଼ିଥିଲୁଁ ।

ପ୍ରଭୁ ମହେନ୍ଦ୍ରନାଥସ୍ୱାମୀ ଗିରୀନ୍ଦ୍ର ଏହି ମହେନ୍ଦ୍ରର ଅଧିଷ୍ଠାତୃ ଅଧିଦେବତା ଓ ରକ୍ଷକ । ତାଙ୍କରି ଅଲକ୍ଷିତ ଶୁଭଦୃଷ୍ଟିରୁ ଏହି ଖ୍ୟାତିପୂତ କ୍ଷେତ୍ରରେ ଆଜିପର୍ଯ୍ୟନ୍ତ କୌଣସି ଦୁର୍ଘଟଣା ଘଟି ନାହିଁ ବୋଲି ଲୋକବିଶ୍ୱାସର ପରମ୍ପରା ଗଢ଼ିଆସିଛି । ଜନଶ୍ରୁତିରୁ ତଥା କେତେକ ପୁରାଣରୁ ଜଣାଯାଏ ଯେ, ପାଣ୍ଡବାଗ୍ରଜ ଯୁଧିଷ୍ଠିର ପାଶାକ୍ରୀଡ଼ାରେ କୁରୁରାଜ ଦୁର୍ଯ୍ୟୋଧନଙ୍କଠାରୁ ହାରିଯିବାଫଳରେ ପୂର୍ବନିର୍ଦ୍ଧାରିତ ସର୍ତ୍ତାନୁଯାୟୀ ଭ୍ରାତ ଅନୁଜ ଓ ସତୀ ଦ୍ରୌପଦୀଙ୍କ ସହିତ ବାର ବର୍ଷ ବନବାସୀ ହୋଇଥିବା କାଳରେ ଏହି ମହେନ୍ଦ୍ର ପର୍ବତମଧ୍ୟସ୍ଥ ଘନବନାଞ୍ଚଳରେ କିଛି ସମୟ ଅବସ୍ଥାନ କରିଥିଲେ । ଦୁର୍ଭାଗ୍ୟବଶତଃ ସେହି ସମୟରେ ମଧ୍ୟମପାଣ୍ଡବ ଅର୍ଜୁନଙ୍କ ତୀକ୍ଷ୍ଣ ନାରାଚ ଆଘାତରେ 'କପିଳା' ଧେନୁ ପ୍ରାଣ ହରାଇଥିଲା । ଏହା ଫଳରେ ଧନୁର୍ଦ୍ଧାରୀ ପାର୍ଥ ଗୋହତ୍ୟାପାତକଗ୍ରସ୍ତ ହୋଇପଡ଼ିବାରୁ ପଞ୍ଚପାଣ୍ଡବଙ୍କ ଚିର ସଖା ଶ୍ରୀକୃଷ୍ଣ ତାଙ୍କୁ ଉକ୍ତ ପାତକରୁ ମୁକ୍ତ କରାଇବା ଲାଗି ମହେନ୍ଦ୍ରଚୂଡ଼ାରେ ଦେବସଭା ବସାଇଥିଲେ । ସେହି ସଭାର ନିର୍ଦ୍ଦେଶକ୍ରମେ ଅର୍ଜୁନ ଯେଉଁ ପାତକମୋଚନ କୁଣ୍ଡରେ ସ୍ନାନ କରି ଗୋହତ୍ୟା ପାତକରୁ ମୁକ୍ତିଲାଭ କରିଥିଲେ, ତାହା 'ମୁକ୍ତିକୁଣ୍ଡ' ନାମ ବହନ କରି ଏପର୍ଯ୍ୟନ୍ତ ବିରାଜିତ ରହିଛି । 'କପିଳା'ର ଶିରଚ୍ଛିନ୍ନ କର୍ଣ୍ଣ ଯେଉଁ ସ୍ଥାନରେ ପତିତ ହୋଇ-ଥିଲା, ସେଠାରେ ଏକ ଶିବଲିଙ୍ଗଙ୍କର ଆବିର୍ଭାବ ହେଲା ଏବଂ ସେହି ଲିଙ୍ଗଦେବ 'ଗୋକର୍ଣ୍ଣେଶ୍ୱର' ଶିବ ନାମରେ ଅଭିଖ୍ୟାତ ହୋଇ ବନବାସୀ ପାଣ୍ଡବ ପରିବାରର ଆରାଧ୍ୟ ଦେବତାରୂପେ ସଂପୂଜିତ ହେବାକୁ ଲାଗିଲେ । ପୌରାଣିକ ବର୍ଣ୍ଣନରୁ ଜଣାଯାଏ ଯେ, ମୟୂରବାହନ କାର୍ତ୍ତିକେଶ୍ୱର ପ୍ରତି କାର୍ତ୍ତିକ ପୂର୍ଣ୍ଣିମାର ଚନ୍ଦ୍ରିକାଚର୍ଚ୍ଚିତ ରାତ୍ରିରେ ଏହି ମହେନ୍ଦ୍ରଶିଖରେ ଅବତରଣ କରି ଗୋକର୍ଣ୍ଣେଶ୍ୱର ମହାଦେବଙ୍କୁ ଦର୍ଶନ କରିଥାନ୍ତି । ପ୍ରତି-ବର୍ଷ ଶିବରାତ୍ରି ଦିନ ଗୋକର୍ଣ୍ଣେଶ୍ୱର ମନ୍ଦିରରେ 'ଜାଗର' ଉତ୍ସବ ମହାସମାରୋହରେ ଅନୁଷ୍ଠିତ ହୋଇଆସୁଛି । ବୋଲିବା ବାହୁଲ୍ୟ ଯେ, ଧର୍ମଯୁଧିଷ୍ଠିର ମନ୍ଦିର ଓ ଭୀମସେନ ମନ୍ଦିର ପାଣ୍ଡବ ପରିବାରର ସେହି ବନବାସକାଳୀନ ସ୍ମୃତିର ଗୋଟିଏ ଗୋଟିଏ ଜୀବନ୍ତ ବାହକ ।

ମହେନ୍ଦ୍ରଗିରି ଏକ ପୁରାଣପ୍ରସିଦ୍ଧ ପ୍ରଧାନ ପୁଣ୍ୟପୀଠ ହୋଇଥିବାରୁ ଜାଗର ଉପଲକ୍ଷରେ ଓଡ଼ିଶା, ଆନ୍ଧ୍ର, ମଧ୍ୟପ୍ରଦେଶ ଏବଂ ଭାରତର ବହୁ ଦୂର ରାଜ୍ୟରୁ ସହସ୍ର ସହସ୍ର ଯାତ୍ରୀ ବ୍ରତଧାରଣୀ, ଅଗଣିତ ଦର୍ଶକ ଓ ସାଧୁସନ୍ଥ ଆସି ଏଠାରେ ସମବେତ ହୋଇଥାନ୍ତି । ଅଧିକାଂଶ ତୀର୍ଥଯାତ୍ରୀ ଓ ତୀର୍ଥଯାତ୍ରିଣୀ ସେଦିନ ମନ୍ଦିର-ପରିସରରେ ଗଭୀର ନିଷ୍ଠାର ସହିତ ଜାଗର ବ୍ରତ ପାଳନ କରନ୍ତି ଏବଂ ପରଦିନ ପ୍ରତ୍ୟୂଷବେଳାରେ ଭୀମସେନ ମନ୍ଦିରର ପାଦ-ଦେଶରେ ବହିଯାଉଥିବା ବଙ୍ଗୋପସାଗର-ଅଭିମୁଖିନୀ ପୁଣ୍ୟତୋୟା 'ମହେନ୍ଦ୍ରତନୟା' ନଦୀରେ ବୁଡ଼ ପକାଇ ଶିବରାତ୍ରି ବ୍ରତ ଉଦ୍‌ଯାପିଥାନ୍ତି ।

ମହେନ୍ଦ୍ର ପର୍ବତର ତୁଙ୍ଗ ଶିଖରସ୍ଥ ବିସ୍ତୃତ ଆମ୍ରବଣିରେ ସବୁ ଋତୁରେ ଫଳ ଧରିଥାଏ; ତେଣୁ ବର୍ଷସାରା ସେଠାରେ ଆମ୍ବ ଖାଇବାକୁ ମିଳେ । ଲୋକେ ଏହାକୁ 'ସତୀଆମ୍ବ' ବୋଲି

ଅନନ୍ତକାଳରୁ ନାମିତ କରିଛନ୍ତି । ଏଭଳି ବିଚିତ୍ର ଘଟଣାର ପଶ୍ଚାତରେ ଏକ ସତ୍ୟମୂଳକ କାହାଣୀ ଜଡ଼ିତ ରହିଛି । ପଞ୍ଚପାଣ୍ଡବଘରଣୀ ଦ୍ରୌପଦୀ ଦେବୀଙ୍କର ଅସାମାନ୍ୟ ସତୀତ୍ୱ ଓ ଅନନ୍ୟ ପାତିବ୍ରତ୍ୟରେ ବିମୁଗ୍ଧ ହୋଇ ଶ୍ରୀକୃଷ୍ଣ ତାହାର ସ୍ମାରକ ସ୍ୱରୂପ ଏଠାରେ ସ୍ୱହସ୍ତରେ ଗୋଟିଏ ଆମ୍ବଗଛ ରୋପଣ କରିଥିଲେ । ଭୁବନେଶ୍ୱରର ପୌରାଣିକ 'ଏକାମ୍ର-କାନନ' ପରି ମହେନ୍ଦ୍ରର ମଧ୍ୟ ଏହା ଏକ ପୌରାଣିକ 'ଏକାମ୍ରକାନନ' ।

ମହେନ୍ଦ୍ରଗିରିର ପାଦଦେଶରେ ଗୋଟିଏ ବିଶାଳ ପ୍ରାକୃତିକ ଜଳାଶୟ ବିଦ୍ୟମାନ—ଏହାର ନାମ 'ପରଶୁରାମ କୁଣ୍ଡ' । ପବିତ୍ର ମାଘ ଶୁକ୍ଳ ସପ୍ତମୀ ଦିନ ଏହି କୁଣ୍ଡରେ ସ୍ନାନ କରି ପୁଣ୍ୟାର୍ଜନ କରିବା ମାନସରେ ଦୂରଦୂରାନ୍ତରୁ ଆଗତ ଅସଂଖ୍ୟ ନରନାରୀ ଏଠାରେ ଏକ ବିରାଟ ମେଳା ସୃଷ୍ଟିକରିଥାନ୍ତି ।

ରାଜନୈତିକ ଓଡ଼ିଶାର ଉପାନ୍ତବର୍ତ୍ତୀ ଓଡ଼ିଆଭାଷୀବହୁଳ ଏହି ବିଚ୍ଛିନ୍ନ ଦକ୍ଷିଣାଞ୍ଚଳ-ଭ୍ରମଣ ଉଦ୍ଦେଶ୍ୟରେ କଟକରୁ ରେଳଯାତ୍ରୀ ହୋଇ ଆସୁଥିଲାବେଳେ ବାଲୁଗାଁ ନିକଟରେ 'ଉତ୍କଳ-କମଳା-ବିଳାସଦୀର୍ଘିକା ମରାଳମାଳିନୀ ନୀଳାମ୍ବୁ ଚିଲିକା'ର ଚିତ୍ତପ୍ରହ୍ଲାଦନ ଦୃଶ୍ୟାବଳୀ ଆମମାନଙ୍କ ଚକ୍ଷୁରେ ଅନୁପମ ସୁଷମାର ଯେଉଁ ଦିବ୍ୟରସାଞ୍ଜନ ବୋଳିଦେଇଥିଲା, ତାର ସ୍ନିଗ୍ଧଶୀତଳ ପ୍ରଶାନ୍ତ ଐନ୍ଦ୍ରିୟ ଅନୁଭବର ଗମ୍ଭୀରତକଡ଼ା ମଧ୍ୟରେ ଖେଳିବୁଲୁଥାଏ; ଏବେ ଉତ୍ତୁଙ୍ଗ ମହେନ୍ଦ୍ର-ଶୀର୍ଷରେ ଦଣ୍ଡାୟମାନ ହୋଇ ଦୂର ପୂର୍ବକୁ ଦୃଷ୍ଟି ପ୍ରସାରଣ କରନ୍ତେ ବାତବିକ୍ଷୋଭିତ ଗର୍ଜମାନ ବଙ୍ଗୋପସାଗର-ବକ୍ଷର ରୁଦ୍ରଭୟଙ୍କର ଉତ୍‌ଫଣ ଜଳସ୍ତମ୍ଭାବଳି ଆମ ହୃଦୟରେ ଯେଉଁ ଭୀତିପ୍ରଦ ଭାବାନ୍ତର ସଂଚାର କଲା, ତାହା ମଧ୍ୟ ମାନସ-ଦର୍ପଣରୁ କେବେଁ ପୋଛି ହୋଇଯିବାର ନୁହେଁ ।

ଶାରଦୀୟ ଆକାଶମଣ୍ଡଳର ଅଧିନାୟକ ପ୍ରଦକ୍ଷିଣ-ପରିଶ୍ରାନ୍ତ ଦେବ ବିକର୍ତ୍ତନଙ୍କ ଆପ-ରାହ୍ଣିକ କ୍ଷୟିଷ୍ଣୁ ରଶ୍ମିରେଖା କ୍ଷଣୁ କ୍ଷଣ କ୍ଷୀଣରୁ କ୍ଷୀଣତର ହେବାକୁ ଉପକ୍ରମ କଲା । ସାରା ମଧ୍ୟାହ୍ନ ବୁଲିଆଡ଼ି ଖେଦି ଖେଦି ଆମମାନଙ୍କ ଶ୍ରମକ୍ଳାନ୍ତ ପାଦ ଏବେ ବିଦ୍ରୋହୀ ହୋଇ ଆରମ୍ଭିଦେଲା ବୈଠକୀ ଧର୍ମଘଟ । ଜ୍ୱାଳାମୁଖୀ ଜଠରାଗ୍ନି ମଧ୍ୟ ଥରକୁଥର ନାଭିପଦ୍ମ-ଗହ୍ୱରରୁ ପଠାଇଲା ଧମକର ପରୱାନା । ଏ ଉଭୟଙ୍କ ଅଭିଯୋଗ ତୁରନ୍ତ ଫଇସଲା କରିବା ଏକାନ୍ତ ଅନିବାର୍ଯ୍ୟ ହୋଇଉଠିଲା । 'ଅନ୍ନଂ ହି ବ୍ରହ୍ମ'—ଆଦୌ ବିଳମ୍ବ ନକରି ରହଣିକେନ୍ଦ୍ରକୁ ସମସ୍ତେ ବାହୁଡ଼ିଆସିଲୁଁ । ପରିଚର୍ଯ୍ୟାକାରୀମାନେ ଆମ ପ୍ରତ୍ୟାବର୍ତ୍ତନକୁ ଚାହିଁବସିଥିଲେ । ସଙ୍ଗେ ସଙ୍ଗେ ପତ୍ର ପଡ଼ି ଖାଦ୍ୟସାମଗ୍ରୀମାନ ବଢ଼ାହୋଇଗଲା । ଆମେ କ୍ଷୁଧିତ ପଙ୍ଗପାଳଦଳ ଖଟଡ଼ଦମ୍ ପତ୍ରଗୁଡ଼ିକୁ ଘେରି ବସିଗଲୁଁ । ପରିବେଷିତ ରାଜକୀୟ ଭୋଜ୍ୟସକଳ ଅତ୍ୟଳ୍ପ ସମୟ ମଧ୍ୟରେ କାବାର୍ ହୋଇଗଲା—ପତ୍ରସବୁ ନିର୍ମଳ ସାଫ୍ ! ସବୁରି ଆତ୍ମାପୁରୁଷ ତୋଷ । ଭୂରିଭୋଜନରେ ଅବୟବ ଅବଶ, ଉତ୍ସାହ ଅବସନ୍ନ, ଏଥିକୁ ପୁଣି ଦିବା-ଅବସାନ ଆସନ୍ନ । ପୂର୍ଣ୍ଣ ପେଟ ଓ ମାଦଳ ଶରୀର ଏଣିକି ଲୋଡ଼ିଲା ବିଶ୍ରାମ, ଆରାମ । ଫଳରେ ରାତିଟି ଗିରିଚୂଳ-କକ୍ଷରେ ସୁଖକର ସୁନିଦ୍ରାରେ ଅତିବାହିତ ହୋଇଗଲା ।

ଏହି ପରମରମଣୀୟ ପର୍ବତ-ମଥାନରେ ଯେତେ ପୁଙ୍ଖିବାହାର କଲେହେଁ ଯଦି କୌଣସି ଦୂରାଗତ ଯାତ୍ରୀ ଏଠାରୁ ଦୃଶ୍ୟମାନ ଅନିର୍ବଚନୀୟ ସୂର୍ଯ୍ୟୋଦୟ-ଶୋଭାର ଦୃଶ୍ୟ ଉପଭୋଗ କରି ନପାରେ, ତାହାହେଲେ ତାର ମହେନ୍ଦ୍ରଦର୍ଶନାମୋଦ ଚିରଦିନପାଇଁ ଅପୂର୍ଣ୍ଣାଙ୍ଗ ରହିଯିବ, ଯାହା ଫଳରେ ତାକୁ ଆମରଣ ଅନୁତାପର ଦଂଶନ ଭୋଗିବାକୁ ପଡ଼ିବ ।

ନିଶାନ୍ତର ପଛେ ପଛେ ରଙ୍ଗପାଟପରିହିତା ଉଷାଦୂତୀ ପ୍ରାଚୀଗଗନପଟକୁ ସ୍ୱୀୟ ରଞ୍ଜିତ ପଣତର ପାଟଳ ଆଭାରେ ବିବିଧ ଚିତ୍ରଶୋଭିତ କରି ସୂର୍ଯ୍ୟଦେବଙ୍କ ଆସନ୍ନୋଦୟ ବାର୍ତ୍ତା ବିହଗକୁଳର କଳକାକଳିରେ ପ୍ରଚାର କରିଦେଲା । ସେତେବେଳକୁ ଆମେମାନେ ପ୍ରାତଃ-କ୍ରିୟା ସମାପନ କରିସାରି ମନୋରମ ଅର୍କୋଦୟ ଦୃଶ୍ୟକୁ ନୟନ ଭରି ଦେଖିବାପାଇଁ ଉତ୍କଣ୍ଠିତ ପ୍ରାଣରେ ପୂର୍ବାକାଶକୁ ଚାହିଁ ରହିଥାଉଁ । ଏହି ସମୟରେ ହଠାତ୍ ଉଦ୍ଭାସିତ ନବାଲୋକର ଉଜ୍ଜ୍ୱଳ ପ୍ରଭା ଝଲସି ଉଠି ଚାରିଆଡ଼େ ବିସ୍ତାରିଗଲା । ପଲକପାତମାତ୍ରେ ସ୍ନିଗ୍ଧ-ଲଳିତ ଏକ ବିରାଟ ବର୍ତ୍ତୁଳ ଲୋହିତ ପିଣ୍ଡ ସଦୃଶ ବାଳୁତ ବିଭାବସୁ ଦିଙ୍ମଣ୍ଡଳତଳ ପାତାଳ-କୋଳରୁ ବୀରଦର୍ପରେ ଊର୍ଦ୍ଧ୍ୱକୁ ଲମ୍ଫ ଦେଇ ଧରିତ୍ରୀର ମୁଖକୁ ରକ୍ତିମରଶ୍ମିରେ ଉଦ୍ରବମୟ କରିଦେଲେ । ତରୁ-ଲତା, ମୃତ୍ତିକା-ପାଷାଣ, ଜଳ-ସ୍ଥଳ ସର୍ବତ୍ର ହାସ୍ୟର ରେଖା ଆଙ୍କି ହୋଇଗଲା । ଅଙ୍ଗେ ଅଙ୍ଗେ ବିପୁଳ ରୋମାଞ୍ଚ । ପୂର୍ଣ୍ଣ ଗୌରବରେ ଦୀପ୍ୟମାନ ସର୍ବରୋଗ-ବ୍ୟାଧିହର କଳୁଷକ୍ଷୟକର କୋମଳାଂଶୁ ଉଦୟଭାନୁଙ୍କର ଅପୂର୍ବକାନ୍ତିଧର ଦିବ୍ୟମନୋହର ପ୍ରଶାନ୍ତ ରୂପ ବିଲୋକନ କରି ଏହିପରି ଏକ ନିସର୍ଗସୁନ୍ଦର ନିର୍ମଳ ପ୍ରଭାତରେ ଆର୍ଯ୍ୟ-ଭାରତର ବୈଦିକ ଋଷି କଣ୍ଠରେ ଦିନେ ଯେଉଁ ପବିତ୍ର ସ୍ତୋତ୍ରଟି ଉଦ୍‌ଗୀତ ହୋଇଥିଲା, ତାହାକୁ ଅଗ୍ରଯାୟୀ ଗୁରୁଦେବ-ଅଭିଭାବକ ପଣ୍ଡିତ କୁଳମଣି ଦାଶ ନିଜ ଉଦାତ୍ତ କଣ୍ଠରେ ଏହିରୂପେ ଆବୃତ୍ତି କରି କରି ଗଡ଼ାଣିଆ ନିମ୍ନଦେଶକୁ ପାଦ ଚାଳିବାକୁ ଲାଗିଲେ—

"ଜବାକୁସୁମସଂକାଶଂ କାଶ୍ୟପେୟଂ ମହାଦ୍ୟୁତିଂ
ଧ୍ୱାନ୍ତାରିଂ ସର୍ବପାପଘ୍ନଂ ପ୍ରଣତୋଽସ୍ମି ଦିବାକରମ୍ ।"

ଆମେ ସମସ୍ତେ ତାଙ୍କ ସହିତ କଣ୍ଠ ମିଳାଇ ଏବଂ ତାଙ୍କରି ପଦାଙ୍କ ଅନୁସରଣ କରି ହସ୍ତଧୃତ ଲଗୁଡ଼ ସାହାଯ୍ୟରେ ଅବଲୀଳାକ୍ରମେ ମହେନ୍ଦ୍ରର ପାଦଦେଶକୁ ଅବତରଣ କଲୁଁ ।

ଯାନମାନ ପ୍ରସ୍ତୁତ ହୋଇ ରହିଥିଲା; ସେଗୁଡ଼ିକରେ ବସି ଆନନ୍ଦରେ ପୋଡ଼ାଗଡ଼ ଅତିଥି-ଭବନ ଅଭିମୁଖରେ ବାହୁଡ଼ାଯାତ୍ରା ଆରମ୍ଭ କଲୁଁ । ଗିରିକୁଳ-ଗୁରୁ ମହେନ୍ଦ୍ରକୁ ଯେତେ ମୁଁ ଦୂରୁଁ ମନେ ମନେ ଜୁହାରି ହେଉଥାଏଁ, ତା' ଶିଖରରୁ ପରିଦୃଷ୍ଟ ବାଳସୂର୍ଯ୍ୟୋଦୟର ବର୍ତ୍ତୁଳ ବିମ୍ବ ସେତେ ମୋ ମାନସପରଦାରେ ଝଲସିଉଠୁଥାଏ । ବାସ୍ତବରେ ସେହି ବିଚିତ୍ର ଦୃଶ୍ୟ ମୋ ସ୍ମୃତି-ଗନ୍ତାଘରର ଏକ ଚିରନ୍ତନ ଅମୂଲ୍ୟ ରତ୍ନ । ମନୁଷ୍ୟର ବିଳୟ ଅଛି ସିନା, ସେଠା ସୂର୍ଯ୍ୟୋଦୟ ଶୋଭାର ବିଳୟ ନାହିଁ—ତାହା ଯେପରି ଚିରନ୍ତନ, ତାର ସ୍ମୃତି ମଧ୍ୟ ସେହିପରି ଅବିନାଶୀ ଓ ଅମର । ଅନେକ ପ୍ରତ୍ୟକ୍ଷଦ୍ରଷ୍ଟାଙ୍କ ବିବୃତିରୁ ସ୍ପଷ୍ଟ ଜଣାଯାଏ ଯେ, ମାଘସପ୍ତମୀ ଚନ୍ଦ୍ରଭାଗା ସ୍ନାନ ଦିନ କୋଣାର୍କରେ ପରିଲକ୍ଷିତ ସୂର୍ଯ୍ୟୋଦୟର ଶୋଭା

ମଧ୍ୟ ମହେନ୍ଦ୍ରଚୂଳରୁ ପରିଲକ୍ଷିତ ସୂର୍ଯ୍ୟୋଦୟ ଶୋଭାଠାରୁ ସମକକ୍ଷତାରେ ହୀନ ଓ ଅବର । ଆମ ଯାନବାହର ଘୋର ଘର୍ଘର ଘୋଷରେ ଘାଟି ଜନପଥ ପ୍ରକମ୍ପିତ ହେଉଥିବାବେଳେ ମୋର କର୍ଣ୍ଣପଥରେ ମଧୁ ମୂର୍ଚ୍ଛନା ଢାଳିଲା କବିବରଙ୍କ ଶାଶ୍ୱତ ବାଣୀ—

"ସୁନ୍ଦରେ ତୃପ୍ତିର ଅବସାନ ନାହିଁ,
ଯେତେ ଦେଖୁଥିଲେ ନୂଆ ଦିଶୁଥାଇ ।
ଦୃଷ୍ଟପୂର୍ବ ହୋଇ ଅଦୃଷ୍ଟ ପ୍ରଭାତ
ସୁନ୍ଦରପଣର ଚରମ୍ଭନ ଗୀତ ।"

## ଶଶିଭୂଷଣ ସାହିତ୍ୟ ପୁରସ୍କାରର ପୌନଃପୁନିକ ବିଜେତା

ବର୍ଷର ଦ୍ୱିତୀୟାର୍ଦ୍ଧଟି କଠୋର ଅଧ୍ୟୟନ-ତପସ୍ୟାରେ କଟାଇବାକୁ ପଡ଼ିଥିଲା ପ୍ରଥମ ବାର୍ଷିକ ପରୀକ୍ଷାରେ ଆକାଂକ୍ଷିତ ଫଳପ୍ରାପ୍ତି ପାଇଁ । କବିବର ରାଧାନାଥ ରାୟଙ୍କ ସୁଯୋଗ୍ୟ ଜ୍ୟେଷ୍ଠପୁତ୍ର ଖ୍ୟାତନାମା ଲେଖକ ଓ 'ଉତ୍କଳ ସାହିତ୍ୟ ସମାଜ'ର ସମ୍ପାଦକ ଶଶିଭୂଷଣ ରାୟ ଏହି ସ୍କୁଲକୁ ପ୍ରତିବର୍ଷ ତିନୋଟି ମୂଲ୍ୟବାନ୍ ପୁରସ୍କାର ଦେଇଆସୁଥାନ୍ତି । ବାର୍ଷିକ ପରୀକ୍ଷାରେ ତିନି ଶ୍ରେଣୀର ଯେଉଁ ତିନିଜଣ ମେଧାବୀ ଛାତ୍ର 'ସାହିତ୍ୟ'ରେ ପ୍ରଥମ ସ୍ଥାନ ଅଧିକାର କରନ୍ତି, ଉକ୍ତ ପୁରସ୍କାର ତିନୋଟି ସେହି ଯୋଗ୍ୟତମ ତିନିଜଣଙ୍କର ହିଁ ପ୍ରାପ୍ୟ । ପ୍ରଥମ ବର୍ଷୀୟ ଶ୍ରେଣୀପାଇଁ ଉଦ୍ଦିଷ୍ଟ ପୁରସ୍କାର ଥାଏ ପଚିଶ ଟଙ୍କା ମୂଲ୍ୟର କେତେଗୁଡ଼ିଏ ଉତ୍କୃଷ୍ଟ ସାହିତ୍ୟିକ ଗ୍ରନ୍ଥ; ଦ୍ୱିତୀୟ ଓ ତୃତୀୟ ବର୍ଷୀୟ ଶ୍ରେଣୀକୁ ଦିଆଯିବା ଉତ୍କୃଷ୍ଟତର ଗ୍ରନ୍ଥସମୂହର ମୂଲ୍ୟ ଯଥାକ୍ରମେ ପଞ୍ଚସ୍ତରି ଟଙ୍କା ଓ ଶହେ ଟଙ୍କା । ବାର୍ଷିକ ପୁରସ୍କାର-ବିତରଣୀ ସଭାରେ ଏହି ପୁରସ୍କାରମାନ ମଧ୍ୟ ବିତରିତ ହୁଏ । ଉକ୍ତ ସଭାରେ ପ୍ରଦତ୍ତ ସମସ୍ତ ପ୍ରକାରର ପୁରସ୍କାର ମଧ୍ୟରେ ଶଶୀବାବୁଙ୍କ ପ୍ରଦତ୍ତ ଏହି ସାହିତ୍ୟ-ପୁରସ୍କାରର ମହତ୍ତ୍ୱ ଓ ଗୁଣାତ୍ମକ ମାନ ସର୍ବୋଚ୍ଚକୋଟିର ବୋଲି ବିବେଚିତ ହୋଇଥାଏ । ତେଣୁ ସଙ୍ଗେ ସଙ୍ଗେ ତିନି ପୁରସ୍କାର-ବିଜେତା ହୋଇଥାନ୍ତି ଉପସ୍ଥିତ ଦର୍ଶକମଣ୍ଡଳୀଙ୍କ ଚକ୍ଷୁର ସର୍ବଶ୍ରେଷ୍ଠ ଆକର୍ଷଣ ।

୧୯୨୨ରେ ଅନୁଷ୍ଠିତ ବାର୍ଷିକ ପରୀକ୍ଷାର ଫଳାନୁଯାୟୀ ମୁଁ ଆମ ଶ୍ରେଣୀରେ ସେହି ପଚିଶଟଙ୍କିଆ ସାହିତ୍ୟ-ପୁରସ୍କାରର ବିଜେତା ହୋଇଥିଲି । କେବଳ ଏହି ଥରଟି ନୁହେଁ, ପରବର୍ତ୍ତୀ ଦୁଇ ଶ୍ରେଣୀରେ ମଧ୍ୟ ସାହିତ୍ୟରେ ନିଜ ଶ୍ରେଷ୍ଠତ୍ୱର ମର୍ଯ୍ୟାଦା ବଜାୟ ରଖି ନର୍ମାଲ୍ ସ୍କୁଲର ଇତିହାସରେ ରେକର୍ଡ଼ ସୃଷ୍ଟି କରିଥିଲି । ଏକାଦିକ୍ରମେ ତିନି ବର୍ଷଯାକ 'ଶଶିଭୂଷଣ ସାହିତ୍ୟ ପୁରସ୍କାର' ବିଜେତା ହେବାର ସୌଭାଗ୍ୟ ତତ୍ପୂର୍ବରୁ ଅନ୍ୟ କାହାରି ପକ୍ଷରେ ସମ୍ଭବ ହୋଇପାରି ନଥିଲା କି ତତ୍ପରେ ମଧ୍ୟ ହୋଇପାରିଲାନାହିଁ ।

ଦ୍ୱିତୀୟ ବର୍ଷୀୟ ଶ୍ରେଣୀକୁ ସସମ୍ମାନରେ ଉନ୍ନୀତ ହେଲାପରେ ମୁଁ ଶ୍ରେଣୀପାଠ୍ୟରେ ମନୋନିବେଶ କରିବା ସଙ୍ଗେ ସଙ୍ଗେ ଓଡ଼ିଆ ଓ ବଙ୍ଗଳା ସାହିତ୍ୟର ବରିଷ୍ଠ ଲେଖକମାନଙ୍କ ରଚିତ ପ୍ରଧାନ ପ୍ରଧାନ ଗ୍ରନ୍ଥପାଠକୁ ବାଧ୍ୟତାମୂଳକ ଭାବରେ ଦୈନନ୍ଦିନ ପରିଭୋଇ ରୁଟିନ୍‌ର

ଅନ୍ତର୍ଭୁକ୍ତ କରିଦେଲି । ଜ୍ଞାନାର୍ଜନ-ତୃଷ୍ଣା ପ୍ରବଳ ଥିଲେ ଅବସରର ଅଭାବ ଘଟେ ନାହିଁ । ସେକାଳର ଶସ୍ତା ଓ ସନ୍ତୋଷ ବଜାରରେ ସର୍ବବିଧ ପୁସ୍ତକର ଦାମ୍ ଏତେ କମ୍ ଥିଲା ଯେ, ଏବକା ଲୋକେ ତାହା ସହଜରେ ବିଶ୍ୱାସ କରିପାରିବେ ନାହିଁ । ଏକା 'ଶଶିଭୂଷଣ ସାହିତ୍ୟ ପୁରସ୍କାର'ର ଯେଉଁ ପଚିଶ ଟଙ୍କା ମୂଲ୍ୟର ଗ୍ରନ୍ଥମାନ ମୁଁ ପ୍ରଥମବର୍ଷ ପାଇଥିଲି, ବର୍ତ୍ତମାନ ବହିବଜାରର ପ୍ରବର୍ତ୍ତିତ ଅଗ୍ନିମୂଲ୍ୟ ଅନୁଯାୟୀ ତାର ଦାମ୍ ଏକ ସହସ୍ର ଟଙ୍କାରୁ ଯଥେଷ୍ଟ ଅଧିକ ହେବ । ସେବକାର 'ଟଙ୍କା'ର ମୂଲ୍ୟ ପୂର୍ଣ୍ଣ ଟଙ୍କାଏ ଥିବା ସ୍ଥଳେ ଏବକାର 'ଟଙ୍କାର' ମୂଲ୍ୟ କପରି ଅସମ୍ଭାବିତ ଭାବରେ ହ୍ରାସପ୍ରାପ୍ତ ହୋଇଛି, ଏହି ହିସାବରୁ ତାହା ଅନାୟାସରେ ଧରିପଡ଼ିବ । ବୋଲିବା ବାହୁଲ୍ୟ ଯେ, ଏହି ସକଳ ପୁରସ୍କୃତ ଗ୍ରନ୍ଥ ମୋର ବଳବତୀ ପିପଠିସାର ଚରିତାର୍ଥତା ସମ୍ପାଦନ ଦିଗରେ ପରମ ସହାୟକ ହୋଇଥିଲା, ଯାହାଫଳରେ ମୁଁ ମୋ ଜ୍ଞାନ-ସମ୍ପଦକୁ ଚତୁର୍ଗୁଣିତ କରିପାରିଥିଲି ।

## (୭) ଦରଦାମ୍—ସେକାଳର ଓ ଏକାଳର

ଯୁବପାଠକପାଠିକାଙ୍କୁ ସେକାଳ ଓ ଏକାଳର ଦରଦାମ୍ ମଧ୍ୟରେ ଥିବା ଜମିନ୍-ଆସମାନ୍ ଫରକର ସମ୍ୟକ୍ ଧାରଣା ଦେବାପାଇଁ ନମୁନା ସ୍ୱରୂପ ଏଠାରେ କେତୋଟି ଦୃଷ୍ଟାନ୍ତ ସ୍ୱଚ୍ଛ ଦିଆଯାଉଛି । ସବୁଠାରୁ ବଡ଼ଧରଣର ପଣ୍ୟ ସୁନାର ମୂଲ୍ୟ ସେତେବେଳେ ଭରିକ ଥିଲା ବାରଟଙ୍କା ମାତ୍ର । ମୁଁ ପଢ଼ିବା ସମୟରେ ନର୍ମାଲ ସ୍କୁଲର ପ୍ରତ୍ୟେକ ଅଧ୍ୟାୟୀକୁ ମାସିକ ଆଠ ଟଙ୍କା ଲେଖାଏଁ ବୃତ୍ତି ମିଳୁଥିଲା । ଅଧ୍ୟାୟୀମାନଙ୍କ ମଧ୍ୟରୁ ପ୍ରାୟ ଅର୍ଦ୍ଧେକ ସାଧାରଣ ମଧ୍ୟବିତ୍ତ ଏବଂ ଅବଶିଷ୍ଟ ଅର୍ଦ୍ଧେକ ନିମ୍ନ-ମଧ୍ୟବିତ୍ତ ବା ଗରିବ ପରିବାରର ସନ୍ତାନ । ତେଣୁ ସେମାନଙ୍କ ଆର୍ଥିକ ସ୍ଥିତିର ତାରତମ୍ୟ ଅନୁସାରେ ଛାତ୍ରାବାସରେ ଦୁଇପ୍ରକାର ମେସ୍‌ର ବ୍ୟବସ୍ଥା ଥିଲା । ପ୍ରଥମ ମେସ୍‌ରେ ମାସକୁ ଖାଇବାଖର୍ଚ୍ଚ ପଡ଼ୁଥିଲା ଖୁବ୍ ବେଶୀ ହେଲେ ନଅ ସିକ୍କା ଅର୍ଥାତ୍ ଦୁଇଟଙ୍କା ଚାରିଅଣା । ପୂଝାରି, ଚାକର ଓ ବାସନମଜାଲି ଚାକରାଣୀ ଏ ତିନିଙ୍କ ଖାଇଖରଚ ଓ ଭଢଆ ବାବଦ ବ୍ୟୟ ଏଇ ଖାଇବା ଖର୍ଚ୍ଚର ଅନ୍ତର୍ଗତ । ଏହି ମେସ୍‌ର ଖାଦ୍ୟାହାର ଅପେକ୍ଷାକୃତ ଉତ୍କୃଷ୍ଟ—ସାମିଷ ଓ ସଘୃତ । ଦ୍ୱିତୀୟ ମେସ୍‌ଟିରେ ଖାଇବାକୁ ହେଲେ ମାସିକ ଖର୍ଚ୍ଚ ପଡ଼େ ପୂଝାରି, ଚାକର ଓ ଚାକରାଣୀ ବାବଦ ଖର୍ଚ୍ଚକୁ ଲଗେଇ ସାତ ସିକ୍କା ଅର୍ଥାତ୍ ଏକଟଙ୍କା ବାର ଅଣା । ଏଥିରେ ଘୃତର ମାତ୍ରା କମ୍ ଏବଂ ଆମିଷର ବ୍ୟବସ୍ଥା ଦିନେ ଛଡ଼ା ଦିନେ । ରବିବାରରେ କିନ୍ତୁ ଉଭୟ ମେସ୍‌ରେ ମାଂସ ବ୍ୟଞ୍ଜନର ପ୍ରାଚୁର୍ଯ୍ୟ ଅନିବାର୍ଯ୍ୟ । ସେତେବେଳେ ଜାଢଆ ଓ କାଢଆ ବଡ଼ ମଧୁର ମାଛର ଦାମ୍ କଟଙ୍କି ସେରେକୁ ଚାରିଅଣା—ଦିନେ ଦିନେ ତା'ଠୁଁ ମଧ୍ୟ କମ୍ । ଶ୍ରେଷ୍ଠ ମଧୁର ମାଛର ସର୍ବନିମ୍ନ ମୂଲ୍ୟ ସେରକୁ ଦୁଇପଇସା । ଲୁଣିମାଛ କଟକକୁ ପ୍ରାୟ ଆସୁନଥିଲା । ଭଲ ଖାସି ମାଂସର ଅଭାବ ନଥିଲା—କଟଙ୍କି ସେରକର ଦାମ୍ ଛଅ ଅଣାରୁ ଅଧିକ ନୁହେଁ । ବଡ଼ ରସଗୋଲା ଗୋଟିକୁ ଅଣାଏ, ଯାହା ବର୍ତ୍ତମାନ ତିନିଟଙ୍କାରୁ କମ୍ ନୁହେଁ । ଏକକାଳୀନ

ଟଙ୍କାକର ରସଗୋଲା କିଣିଲେ ଷୋଳଟା ଉପରେ ଆଉ ଦଓଟି ଅଧିକା ମିଳେ । ସିଭିଲ୍ କୋର୍ଟ (ବର୍ତ୍ତମାନ ହାଇକୋର୍ଟ) ସମ୍ମୁଖସ୍ଥ ଗୋବିନ୍ଦ ସାହୁଙ୍କ ମିଷ୍ଟାନ୍ନଭଣ୍ଡାର ଏଥିପାଇଁ ହୋଇଥାଏ ଖୁବ୍ ନାମଡାକ । ସହର ବଜାରରେ ସରୁ ଚାଉଳ ଟଙ୍କାରେ କଟକୀ ବାର ସେର ଓ ମୋଟା ଷୋହଳ ସେର । ଗୁଆଘିଅ କଟକୀ ସେର ଦେଢ଼ଟଙ୍କା ଓ ମଇଁଷିଘିଅ ଟଙ୍କେ ଦ'ଅଣା । ସୋରିଷତେଲ ସେର ଚାରିଅଣା । ଚାରିପରିଆ ଜାଳେଣିକାଠ ଶହେବିଡ଼ାରୁ ଅଧିକ ଦୋ'ବଳଦିଆ ବଡ଼ ଶଗଡ଼ଗାଡ଼ିରେ ବୋଝେଇ ହୋଇପାରୁ ନଥିଲା । ସେତକର ଦାମ୍ ଥିଲା ଦେଢ଼ଟଙ୍କା ଓ ଗାଡ଼ିଭଡ଼ା ଟଙ୍କାକେ ଦଅଣା ହିସାବରେ ତିନିଅଣା, ଏପରି ମୋଟ ଟଙ୍କେ ଏଗାର ଅଣା । ସେବକାଳରେ ପଇସା, ଅଧଲା, ପାହୁଲା ଓ ଛଦାମର ପ୍ରଚୁର ପ୍ରଚଳନ ଥିଲା । ନିତି ଖଟିଖିଆ ଓ ଗରିବ ଖାଉଟି ଲୋକଙ୍କ ନିତ୍ୟବ୍ୟବହାର୍ଯ୍ୟ ଦ୍ରବ୍ୟ କିଣା କାରବାରରେ ଏହି ଚାରିପ୍ରକାର ଖୁଚୁରା ମୁଦ୍ରା ଛଡ଼ା ଅନ୍ୟ ବଡ଼ ମୁଦ୍ରା ଦରକାର ହେଉ ନଥିଲା । କଦବା କେବେ ଦରକାର ହେଉଥିଲେ ଦୋପଇସିଟିଏ ଲୋଡ଼ା ହେଉଥିବ । ମଫସଲ ଅଞ୍ଚଳର ଛୋଟ ଛୋଟ ଦୋକାନ ବା କାଣ୍ଡିମାନଙ୍କରୁ ମଧ୍ୟ ଛଦାମକରେ ଛଅ-କିସମର ତେଜରାତି ଚିଜ କିଣି ହେଉଥିଲା । ପଇସାକ ଥିଲା ଦୁଇ ଅଧଲା ବା ତିନି ପାହୁଲା ବା ଚାରି ଛଦାମ । ଦରଦାମ୍ ପ୍ରସଙ୍ଗରେ ଗଡ଼ଜାତମାନଙ୍କରେ ଉତ୍ପାଦିତ ଚାଉଳ, ରବିଶସ୍ୟ ଓ ପନିପରିବା ପ୍ରଭୃତିର ମୂଲ୍ୟ ମୋଗଲବନ୍ଦି ତୁଳନାରେ ଥିଲା କାହିଁ-ନ-ଥିବା ଶସ୍ତା । ସେତେବେଳେ ଏ ଦେଶରେ ଗଡ଼ଜାତ ଥିଲା ପ୍ରକୃତରେ ରାମରାଜ୍ୟ । ଗଉଡ଼ ଗଉଡ଼ୁଣୀ-ମାନେ ଗାଈକ୍ଷୀର ଯୋଗାଉଥିଲେ କଟକୀ ମାପ ସେର ଅଣାଏ ଦରରେ । ସେବକାଳେ ସତରେ ଓ ନ୍ୟାୟରେ ଚାଲୁଥିଲା ଦୁନିଆ । ସବୁ ଥିଲା ଖାଣ୍ଟି ଆଉ ନିରୁତା । ନକଲି ବା ଭେଜାଲ କଣ, କେହି ଜାଣି ନଥିଲେ । ମୋଟ ଉପରେ ଯାବତୀୟ ନିତ୍ୟବ୍ୟବହାର୍ଯ୍ୟ ଅତ୍ୟାବଶ୍ୟକ ଖାଉଟି ଦ୍ରବ୍ୟ ସର୍ବଦା ସର୍ବତ୍ର ଥିଲା ସୁଲଭ ଓ ଶସ୍ତାର ଚୂଡ଼ାନ୍ତ ଏବଂ ସେଗୁଡ଼ିକର ମୂଲ୍ୟ ଥିଲା ସ୍ଥିର ଓ ଅପରିବର୍ତ୍ତନୀୟ । ଭାରତ ଉପମହାଦେଶରେ ଉଚ୍ଚଶିକ୍ଷା ପ୍ରସାର ପାଇଁ ପ୍ରଶଂସିତ ବ୍ରିଟିଶ ସରକାରର ଏହି ଦରଦାମରେ ସ୍ଥିତିସ୍ଥାପକତାବର୍ଜିତ ସ୍ଥିରତା ରକ୍ଷା ଓ ପ୍ରୟୋଜନୀୟ ସବୁପ୍ରକାର ଜିନିଷର ସର୍ବତ୍ରସୁଲଭତାର ବ୍ୟବସ୍ଥା ଯେ ଆଉ ଏକ ବିଚକ୍ଷଣ ମହତ୍ତ୍ୱ କାର୍ଯ୍ୟ, ଏହା ଅବଶ୍ୟ ସ୍ୱୀକରଣୀୟ । ଏଣୁ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ବା ପ୍ରାକ୍କାଳରେ ଜନ୍ମି ଦୁଇଦୁଇଟା ପୃଥିବୀ-ମହାଯୁଦ୍ଧର ଭୟାବହ ଅନୁଭୂତି ଅଙ୍ଗେ ନିଭାଇ ଭୁଷଣ୍ଡି କାକରୂପୀ ଯେଉଁ କେତେକ ଅଶୀତିପର ବ୍ୟକ୍ତି ସ୍ୱାଧୀନ-ଭାରତର ନାଗରିକ ଭାବରେ ଏକାଳର ଯାବତୀୟ ଦୁର୍ଭୋଗର ବ୍ୟୂହ ମଧ୍ୟରେ ହନ୍ତସନ୍ତ ହୋଇ ମଧ୍ୟ କୌଣସିମତେ ବଞ୍ଚିରହିଛନ୍ତି, ସେହିମାନେ ହିଁ ସେକାଳର ସୁଖସମ୍ଭୋଗକୁ ଝୁରିହୋଇ କେବେ କେବେ ଦୀର୍ଘନିଶ୍ୱାସ ଛାଡ଼ି କହୁଛନ୍ତି—"କି ଥିଲା ଏ ରାଜ୍ୟ, କି ହେଲାରେ ଆଜି !"

ଯେତେ ଝୁରିଲେ, ମୁଣ୍ଡ କୁଟିହେଲେ ବି ପୂର୍ବ ଯୁଗ କେବେ କି ଆଉ ଫେରିବ ?
'କହିଗଲା କଥା ପୁଣି ବହିଗଲା ପାଣି, ଏ ଦୁଇ କେବେହିଁ ଆଉ ନ ଫେରେ ଉଜାଣି ।'
ବିଜ୍ଞାନର ଦୁର୍ଦ୍ଧର୍ଷ ଅଗ୍ରଗତିରେ କୋଟି କୋଟି ମାଇଲ ଦୂରସ୍ଥ ଚନ୍ଦ୍ରଲୋକ ମଙ୍ଗଳଲୋକ
ଶୁକ୍ରଲୋକକୁ ଅଭିଯାନ ହେଉଥିଲାବେଳେ ମାଟିଧରାର ନିରନ୍ନ ବୁଭୁକ୍ଷୁ ନରନାରୀଙ୍କ ତୁଣ୍ଡକୁ
ଦାନା ମୁଠାଏ ମୁଠାଏ ଯୋଗାଇବାର ବ୍ୟବସ୍ଥା ହୋଇପାରୁ ନାହିଁ, ଓଲଟି ବର୍ବର
ପଶୁବଳର ମଦାନ୍ଧତାରେ ସର୍ବଧ୍ୱଂସୀ କ୍ଷେପଣାସ୍ତ୍ରଦ୍ୱାରା ନିରୀହ ଜନତାଙ୍କୁ ମୁହୂର୍ତ୍ତକ ମଧ୍ୟରେ
ନିଶ୍ଚିହ୍ନ କରିଦିଆଯାଉଛି । ଏହାହିଁ ତ ଆଧୁନିକ ବିଜ୍ଞାନୋନ୍ନତ ଶକ୍ତିଶାଳୀ ଦେଶମାନଙ୍କ
ସଭ୍ୟତା-ଗର୍ବର ନମୁନା ! ଆଧ୍ୟାତ୍ମିକ ଭାରତ ଯୁଗେ ଯୁଗେ ବିଶ୍ୱକୁ ସତ୍ୟ, ଅହିଂସା,
ଶାନ୍ତି, ପ୍ରୀତି, ମୈତ୍ରୀ, କରୁଣାର ମନ୍ତ୍ର ଶିଖାଇଆସିଛି, ଆଲୋକର ମାର୍ଗ ଦେଖାଇଆସିଛି ।
ମାତ୍ର ନିୟତିର ନିରଙ୍କୁଶ ନିପୀଡ଼ନରୁ, ଭାଗ୍ୟର ବିଡ଼ମ୍ବନାରୁ ବହୁକାଳ ଧରି ତାକୁ
ପରାଧୀନତାର ନିଠୁର ନିର୍ଯ୍ୟାତନା ଭୋଗ କରିବାକୁ ପଡ଼ିଛି । ସେହି ପୃଷ୍ଠଭୂମିକାରୁ ବିଚାର
କଲେ ମଧ୍ୟ ଅର୍ଦ୍ଧଶତାବ୍ଦୀ ପୂର୍ବର ପରାଧୀନ ଭାରତ ଯେ ଆଶାତୀତ ସୁଖଶାନ୍ତିର ଭୋଗଭୂମି
ଥିଲା, ଏହା ବିନା ଦ୍ୱିଧାରେ ସ୍ୱୀକାର କରିବାକୁ ହିଁ ହେବ । ସେଦିନର ଜନଜୀବନର ସୁସ୍ଥି
ଓ ସମୃଦ୍ଧିର ଚିତ୍ର କେବଳ ସାମାଜିକ ଇତିହାସର ମହାର୍ଘ କାହାଣୀ ହୋଇ ରହିଗଲା ।
ଏବର ଏ ସ୍ୱାଧୀନ ସାର୍ବଭୌମ ରାଷ୍ଟ୍ରର ଆର୍ଥନୀତିକ ଜୀବନ ଉତ୍କଟ ଦାରିଦ୍ର୍ୟ ଓ ଅଭାବ-
ଅନଟନର ଚାପରେ ପିଷ୍ଟିହୋଇ ରସାତଳଗାମୀ ହେବାକୁ ବସିଲାଣି । ଦିନୁଦିନ ଭାରତ
ବୈଦେଶିକ ଋଣଜାଲରେ ଅଧିକୁଁ ଅଧିକ ଛନ୍ଦିହୋଇଯାଉଛି । ଏଣେ ତାଳବରର ଚେଲିଆ
ମୁଣ୍ଡ ଅଧିକ ହେଉଛି ତେଲ-ଜରଜର, ଆଉ ଅର୍ଦ୍ଧାଶନ ଗରିବର ଲୁଖୁରା ମୁଣ୍ଡ ଆହୁରି
ଅଧିକ ରୁକ୍ଷ ଫରଫର । ପରମୁଖାପେକ୍ଷୀ ନଗ୍ନ ଭିକ୍ଷାବୃତ୍ତିର ନିର୍ଲଜ୍ଜତା ଏ ମହାନ୍ ଜାତିର
ଲଲାଟରେ ନିବିଡ଼ କାଳିମସିର ଏକ ଅଲିଭା କଳଙ୍କରେଖା ଟାଣିଦେଇଗଲା । ଭବିଷ୍ୟତ୍
ଦାସ୍ୱାଦବୃନ୍ଦ ଏଥିପାଇଁ କ୍ଷମା ଦେବାର କ୍ଷୀଣ ସମ୍ଭାବନା ଅଛି କି ? ସର୍ବଦ୍ରଷ୍ଟା କୁଳବୃଦ୍ଧ
ହିମାଚଳ ଅନନ୍ତଯୁଗରୁ ଦେଖିଆସିଛି ଏ ସ୍ୱର୍ଣ୍ଣପ୍ରସୂ ଉପମହାଦେଶର ସମୃଦ୍ଧିପ୍ରବାହ, ସାଇତି
ରଖିଛି ଜ୍ଞାନଗରିମାମୟ ଅତୀତ ଇତିହାସର ପ୍ରତ୍ୟେକ ପୃଷ୍ଠା; କିନ୍ତୁ ଏବର ଦୁର୍ଦ୍ଦଶା
ଅବଲୋକନରେ କେବଳ ସେ ଉଷ୍ଣଶ୍ୱାସ ଛାଡ଼ୁଥିବ ସିନା ! ହେ ଜଗତର ନାଥ ମହାପ୍ରଭୁ
ଶ୍ରୀଜଗନ୍ନାଥ, ତୁମେ ହିଁ ଏକା ଭରସା, ଯେଣୁ ଋଷିକଣ୍ଠର ଭାଷାରେ—

"ସ୍ରଷ୍ଟା ତ୍ୱଂ ବ୍ରହ୍ମରୂପେଣ, ହର୍ତ୍ତାପି ଶିବରୂପଧୃକ୍,
ରକ୍ଷିତା ବିଷ୍ଣୁରୂପେଣ, ଜଗନ୍ନାଥ ! ନମୋଽସ୍ତୁତେ ।"

ଏସପ୍ ଗପ ବର୍ଣ୍ଣିତ ଫୁଲେଇ ବେଲୁନ୍‌ଟାର ପେଟ ଦିନକୁ ଦିନ ଫୁଲି-ଫୁଲି-ଫୁଲି ଶେଷକୁ
ଫାଟିଗଲା ପରି ଏବେ ଦରଦାମ୍ ଏପରି ବଢ଼ି ବଢ଼ି ଚାଲିଛି ଯେ, ନିତ୍ୟବ୍ୟବହାର୍ଯ୍ୟ
କେତେକ ଦ୍ରବ୍ୟ କିଣିବାକୁ ସୁଦ୍ଧା ଲୋକଙ୍କ ସାଧ୍ୟ ପାଉନାହିଁ । ନିପୁଣା ଗୃହିଣୀମାନେ
ଖର୍ଚ୍ଚକୁ ଯେତେ ସଙ୍କୁଚିତ କରୁଛନ୍ତି, ସରକାର ତୁହାକୁ ତୁହା ଯେତେ ମହଙ୍ଗାଭତ୍ତା

ବଢ଼ାଉଛନ୍ତି, ଜିଆଁଗିଳା ଦରଦାମ୍ ସେତେ ଅଧିକ ବଢ଼ି ବଢ଼ି ଚାଲିଛି । ଅବସ୍ଥା ଆସି ଏପରି ଅସମ୍ଭାଳ ହେଲାଣି ଯେ, ଘରଣୀଏ ରୋଷେଇଘରକୁ ପଶିବାକୁ ଡରିଲେଣି । ଏହା ଫଳରେ ଚୁଲିଆଡ଼େ ବିଶୃଙ୍ଖଳାର ବେଙ୍ଗଳା—ସବୁ ଓଲଟପାଲଟ, ସବୁଠି ବିଭ୍ରାଟର ନାଟ । ରକ୍ଷାର ଉପାୟ ନାହିଁ ମଣିଷ ହାତରେ ।

## (୮) ଧନ୍ୟା ମୃତାଃ ଯେ ନରାଃ

ଏଥିସାଙ୍ଗକୁ ବେଢ଼ ଉପରେ କୋରଡ଼ା ହେଉଛି କଳିରାଜତ୍ୱର ଉତ୍ପାତ । କଳିଯୁଗର ଏ ଶେଷପାଦରେ ଯେତେ ସାଂସାରିକ ଚଳଣି ସବୁ ହୋଇଛି ବିପରୀତ, ଅସ୍ୱାଭାବିକ, ଅନୁଚିତ, ଅଧାର୍ମିକ, ଅସାମାଜିକ । ଏତେ ଅନ୍ୟାୟ ଅନୀତି ପୂର୍ବେ କେବେ ଦେଖାଯାଇ ନଥିଲା । ଜ୍ୟୋତିଷ ଶାସ୍ତ୍ରରେ 'କଳିଯୁଗ ଲକ୍ଷଣ' ପ୍ରସଙ୍ଗରେ ଯେଉଁ ଭବିଷ୍ୟବାଣୀ ଲିପିବଦ୍ଧ ରହିଛି, ତାହା ଯେ ଅକ୍ଷରେ ଅକ୍ଷରେ ନିରାଟ ସତ୍ୟ, ଏହାର ଗୁହ୍ୟ ସମ୍ବାଦ ପ୍ରତିନିତ୍ୟ ପ୍ରତ୍ୟକ୍ଷ ଅନୁଭବଦ୍ୱାରା ଉପଲବ୍ଧ କରୁଛୁ । ତଳ ଉଦ୍ଧୃତି ହେଉଛି ସେହି ଭବିଷ୍ୟ ବାଣୀର ଭାଷା :

"ଧର୍ମଂ ସଂକୁଚିତଂ ତପୋ ବିରହିତଂ
　　ସତ୍ୟଂ ଚ ଦୂରଂ ଗତଂ
କ୍ଷୌଣୀ ମନ୍ଦଫଳା ବିପଦ୍ବିବହୁଳା
　　ଶାସ୍ତ୍ରେତରା ବ୍ରାହ୍ମଣାଃ ।
ଲୋକାଃ ସ୍ତ୍ରୀବଶଗାଃ ସ୍ତ୍ରିୟୋଽତିଚପଳା
　　ପାପାନୁରକ୍ତାଃ ଜନାଃ
ସାଧୁ ସୀଦତି ଦୁର୍ଜନଃ ପ୍ରଭବତି
　　ପ୍ରାୟେ ପ୍ରବୃତ୍ତେ କଳୌ ।
ନିର୍ବୀର୍ଯ୍ୟା ପୃଥିବୀ ନିରୋଷଧି ରସା
　　ମ୍ଲେଚ୍ଛା ମହାଭୋଗତାଃ
ଭୂପାଳାଃ ନିଜ ଧର୍ମକର୍ମ ରହିତାଃ
　　ବିପ୍ରାଃ କୁମାର୍ଗଂ ଗତାଃ ।
ଭାର୍ଯ୍ୟା ଭର୍ତ୍ତୃବିରୋଧିନୀ ପରଗତା
　　ପୁତ୍ରାଃ ପିତୃଦ୍ୱେଷିଣଃ
ହାକଷ୍ଟଂ ଖଳୁ ବର୍ତ୍ତତେ କଳିଯୁଗେ
　　ଧନ୍ୟା ମୃତାଃ ଯେ ନରାଃ ।

ଦିହଗଣ୍ଡମସ୍ତ ଆଜିକା ଦୁର୍ଘଟ ଦୁନିଆର ଦୁସ୍ତର ଟୁବରେ ଘରୁଆ ମଣିଷେ ଉବୁଟୁବୁ ହୋଇ ପ୍ରାଣାନ୍ତକ ଆକଟା ହେଲେଣି ପଛକେ, ମଠରେ ଖାଇ ଖଟରେ ଗଡ଼ୁଥିବା ଆମ

ଅଣ୍ଡିରପୁଅଉର୍ଦ୍ଧବମାନଙ୍କୁ ଦେଖିଲେ କି ତୋଳେ କାଣିହୁଏ ହେଲେ ମାଲୁମ ପଡୁନାହିଁ କିଛି । ଏମାନଙ୍କର ସେଲୁନ୍‌ସଜ୍ଜିତ ଅର୍ଦ୍ଧନାରୀଶ୍ୱର ରୂପର 'ପୁଂସ୍ୟେବ ଯୋଷିଦ୍‌ଭ୍ରମଃ' ସୃଷ୍ଟିକାରକ ହିପିଷ୍ଟାଇଲ୍—ପଛପଟେ ବାବୁରି କେଶ ଓ ଆଗପଟେ ମାଗୁର ଜଣି, ନାରୀ-ବ୍ୟବହୃତ ଛପଛପକା ରୂପା କପଡ଼ାରେ ପ୍ରସ୍ତୁତ ଅଧାହାତିଆଇ, ଗାଢ଼ା ଛିଟଶାଢ଼ିକନାର ଘାଗରା ସଦୃଶ ଆଣ୍ଠିପର୍ଯ୍ୟନ୍ତ ଲମ୍ବିତ ବାପାମୂଷା ଲୁଙ୍ଗି, ନଳିଆ ଗୋଡ଼ମୁଣା (ପ୍ୟାଣ୍ଟ) ସାଙ୍ଗକୁ ଚୂଡ଼ାନ୍ତମୂର୍ଦ୍ଧଗଞ୍ଜନ ତାମ୍ରଣାଗ୍ରନିଭ ଅଗରୋଳିଆ ସାଣ୍ଡାଲ୍ ଅବା ଚପ୍‌ପଲ ପ୍ରଭୃତି ଉଦ-ଭଦଳିଆ ହାଲ୍‌ଫେସନ୍‌ର ଫିଟ୍‌ଫାଟ୍ ଟନ୍‌ଛନ ଚେହେରା ଆମକୁ ଗୋଟାଏ ପୁରୁଣା ବୋଲି ସ୍ମରଣ କରାଇଦିଏ—"ବାପ ତେଲ ସାତରେ ଲଣ୍ଡା, ପୁଅ ପଲମ ବେଣି ରଖୁଚି ।" ଏହି ବୋଲିରେ ଥିବା 'ସାତରେ' ଶବ୍ଦଟିର ଲୌକିକ ବ୍ୟବହାର ଜମଣୀ ବୁଝିବାକୁ ବସିଲଣି । ଏହା 'ଅଭାବ, ନିଅଣ୍ଟ, ଅଘଟ' ଆଦି ଅର୍ଥପ୍ରକାଶକ ସଂସ୍କୃତ 'ସାତ' ଶବ୍ଦରୁ ଗଠିତ ଏକ ବିଭକ୍ତିଯୁକ୍ତ ସୁନ୍ଦର ପ୍ରୟୋଗ । ଏଠାରେ 'ସାତରେ' ଶବ୍ଦର ଅର୍ଥ ଅଭାବରୁ, ନଥିବାରୁ । ସୁଧପାଠିକାପାଠକେ ସଂସ୍କୃତମୂଳକ ଏହି ଖାଣ୍ଟି ଓଡ଼ିଆ ପ୍ରୟୋଗର ଶବ୍ଦଟିକୁ ଆଦରରେ ସାଉଣ୍ଟି ନେଇ ପେଡ଼ିଧନରୂପେ ସାଇତି ରଖିବେ ଏବଂ ଦରକାରବେଳେ ଯଥୋପଯୁକ୍ତଭାବରେ କାମରେ ଲଗାଇବେ ବୋଲି ଅନୁରୋଧ । 'ଅଡ଼ତ୍ୱ, ନିଛକ, ହେଁଚେ, ହତଭମ୍ବ, ଭରପୁର, ଚୁରମାର୍, ପ୍ରଭୃତି ଶତ ଶତ ଅବାଞ୍ଛିତ ଅଣଓଡ଼ିଆ ଶବ୍ଦର ମୋହରେ ଘାଣ୍ଟି ହୋଇ ନିଜ ଘରଧନକୁ ହତାଦର କରିବାଦ୍ୱାରା ଆମ ପ୍ରାଚୁର୍ଯ୍ୟମୟୀ ଭାଷାଜନନୀଙ୍କ ପ୍ରତି ଅବଜ୍ଞା ଓ ଅବହେଳା ପ୍ରଦର୍ଶନ କରାଯାଉନାହିଁ କି ?

ଉତ୍କଳଲକ୍ଷ୍ମୀସଦ୍‌ର ସାମ୍ପ୍ରଧାନିକ ଭୂଷା ପରିତ୍ୟକ୍ତ ସୁଟ୍‌ପୋଷାକୀ ବେଶଭୂଷା ହେଲି ମାନ୍ଧାତା ପରିଚ୍ଛଦପହରଣର ସର୍ବାଧୁନିକ ରାଜସଂସ୍କରଣ । ଯେତେ ବିରୋଧାତ୍ମକ ଅଭିମାନିଆ ମନ୍ତବ୍ୟ ମନରେ ପୋଷଣ କଲେ ହେଁ ସବୁ ଅପ୍ରତିକାର୍ଯ୍ୟ । ସ୍ତନନ୍ଧୟ ଅଜ୍ଞାନ କୋଡ଼ଶିଶୁ ତା 'ସୁନା' ଝରରୁ ଗଙ୍ଗାଜଳ ଛିଟିକେଇଦେଇ ଏବଂ 'ଅଷ୍ଟମଦ୍ୱାର'ରୁ ଛେନା ପାଣି ଚରିକେଇ ଦେଇ ମାଆର ଜଙ୍ଘସିଂହାସନକୁ ଦୂଷିତ କରିଦେଲେ ମାଆ କ'ଣ ସେହି କୋଡ଼ପୋଛା ଶିଶୁକୁ ଫୋପାଡ଼ି ଦିଏ ନା ଆପଣାର ଜଙ୍ଘଟାକୁ ଛେଲପକାଏ ? ଆମେ ବାପବାପୁଡ଼ା ଗୋଷ୍ଠୀର ଅବସ୍ଥା ଏବେ ସେହିପରି ଦୟନୀୟ ହୋଇଛି । ସିଠିମିଠି-ଆହାସ, ବାକ୍ୟବାଣ ପ୍ରହାର, ଦଙ୍ଗଲବିହାର ଏହି ପିତୃଦ୍ରୋହୀ ପୁତ୍ର ଗୁଣମଣିମାନଙ୍କର ଉଦଣ୍ଡ ଉଦ୍‌ବାର୍ଯ୍ୟ ଢଙ୍ଗରଙ୍ଗ ସହିହେଉନାହିଁ କି କିଛି କହିହେଉନାହିଁ—ଦେଖି ନ ଦେଖିଲାପରି ଆଖି ବୁଜିଦେବାକୁ ପଡ଼ୁଛି । ଏଥିକି ଭଲ କାହାର କି ଯୁକ୍ତି ଅଛି, କି ଅକ୍ତିଆର ଅଛି ? ଏବେ ଏ ଦୁର୍ଦ୍ଦିନକାଳ ଦାଉ ସାଧିଲା, ଦ୍ୱିତୀୟେ ଶାସ୍ତ୍ର ଉପରମୁହାଁ ଫୁଲଫାଙ୍ଗୁଲା ହେବା ପାଇଁ ବାଟ ଦେଖେଇଦେଲା "ଲାଳୟେତ୍ ପଞ୍ଚବର୍ଷାଣି, ଦଶବର୍ଷାଣି ତାଡ଼ୟେତ୍, ପ୍ରାପ୍ତେତୁ ଷୋଡ଼ଶେ ବର୍ଷେ ପୁତ୍ରଂ ମିତ୍ରବଦାଚରେତ୍" ଏପରି ଅବସ୍ଥାରେ ଭେଣ୍ଡା ପୁଏ ଘରର ଅନ୍ନ ଧ୍ୱଂସ କରି 'ରଙ୍କ ସଞ୍ଚିଥିଲା ଧନକୁ ମୂଷା ଜଳପାନ କଲା'ପରି ବାପ ସଞ୍ଚିଥିବା ଧନକୁ ବିନ-ବ୍ୟୟରେ ବରବାଦ ନ କରିବେ କାହିଁକି ?

କଳିଯୁଗିଆ ଦେଖାଶିଖା ଓଡ଼ିଶୀ ହାଲ୍‌ଫେସନ ପ୍ରସଙ୍ଗରେ ଉପରେ ଯେଉଁ ଗୋଡ଼ମୁଣା ବା ପ୍ୟାଣ୍ଟ୍‌ର ଉଲ୍ଲେଖ ହେଲ, ତା ସମ୍ବନ୍ଧରେ ଯତ୍‌କିଞ୍ଚିତ୍ ବିଶେଷ-କଥନର ଆବଶ୍ୟକତା ଅଛି । ଓଡ଼ିଶୀ ସଂସ୍କୃତିରେ, ଏପରିକି ଭାରତୀୟ ହିନ୍ଦୁ ସଂସ୍କୃତିରେ କେବେ କେଉଁ ଯୁଗରେ ହେଲେ ପ୍ୟାଣ୍ଟ ବା ତଜ୍ଜାତୀୟ ପୁଂପରିଧେୟ ବେଶର ଚିହ୍ନବର୍ଣ୍ଣ ଦେଖାନଥିଲା । ୟୁରୋପୀୟ ଫିରିଙ୍ଗି ବେପାରୀମାନେ ସ୍ୱର୍ଣ୍ଣପ୍ରସୂ ଭାରତକୁ ଆସି ଏଠି ବଣିକ ପସରା ମେଲି ଜାଗା ଜାବୁଡ଼ି ରହିବାରୁ ଏଠା ଲୋକେ ପ୍ୟାଣ୍ଟ୍‌ର ରୂପଭେକ ସେହି ବଣିକାତ୍ମାମାନଙ୍କଠାରେ ହିଁ ଭଲ ରୂପେ ଦେଖିବାକୁ ପାଇଲେ । ହେଲେ, ଇଷ୍ଟଇଣ୍ଡିଆ କମ୍ପାନୀ ପରବର୍ତ୍ତୀ ଇଂରେଜ ଅମଳରେ ବି ପ୍ୟାଣ୍ଟ ଓଡ଼ିଶୀ ସଂସ୍କୃତି ଭିତରକୁ ଥୋମଣି ବଢ଼ାଇପାରି ନଥିଲା—ସେଇ ଶ୍ୱେତାଙ୍ଗ ହାକିମହୁକୁମା ସମ୍ପ୍ରଦାୟ ଓ ଖ୍ରୀଷ୍ଟଧର୍ମ ପ୍ରଚାରକ ମିସନାରି ପାଦ୍ରିମାନଙ୍କ ମହଲରେ ହିଁ ମୁଣ୍ଡଗୁଞ୍ଜି ରହିଥିଲା କହିଲେ ଚଳେ । ଆମ ଉତ୍କଳରେ ବରାବର ପୁରୁଷ ଲୋକେ ପାଇକଚ୍ଛ ଓ ସ୍ତ୍ରୀଲୋକେ କଚ୍ଛମୁଠି ଭିଡ଼ୁଥିଲେ । ଏହି ପାଇକଚ୍ଛ ଓ କଚ୍ଛମୁଠି ଥିଲା ସଂଯମ ରକ୍ଷାର ବଜ୍ର କବଚ ଏବଂ ଦୃଢ଼ କର୍ମଠତାର ପ୍ରବଳ ଶକ୍ତିବର୍ଦ୍ଧକ । ଆମ ପ୍ରାଚୀନ କାବ୍ୟଗୁଡ଼ିକ 'ନୀବିବନ୍ଧ'ର ବହୁଶଃ ବର୍ଣ୍ଣନାଦ୍ୱାରା ନାରୀଜାତିର ଶ୍ରେଷ୍ଠ ନୈତିକ ଅସ୍ତ୍ର ଏହି ପରମହିତକର ପରମ୍ପରାର ହିଁ ଗୁଣ କୀର୍ତ୍ତନ କରିଆସିଛି । ଶିଥିଳ ଅଧଃପରିଚ୍ଛଦ ଯେ ସଂଯମ ସୁରକ୍ଷା ଓ ବ୍ରହ୍ମଚର୍ଯ୍ୟବ୍ରତର ଘୋର ପରିପନ୍ଥୀ, ଏହି ଅତି ସରଳ ସତ୍ୟଟି ସଂସାରୀମାନେ ପ୍ରତ୍ୟେକଙ୍କୁ ଉତ୍ତମରୂପେ ଜଣା । ସ୍ୱାଧୀନତାସଂଗ୍ରାମର ମୁଖ୍ୟ ଗାନ୍ଧିଧ୍ୱଜମାନେ ଏ ନିଗୂଢ଼ ତଥ୍ୟଟିର ଗୁରୁତ୍ୱକୁ ଆଡ଼େଇଦେଇ ସବାଗ୍ରେ ଯେ ପ୍ୟାଣ୍ଟ ଓ ହାଫ୍‌ପ୍ୟାଣ୍ଟ୍‌ର ପ୍ରାବକ, ବ୍ୟବହର୍ତ୍ତା ଓ ବ୍ୟାପକ-ବିଜ୍ଞାପକ ପାଲଟି ଯାଇଥିଲେ, ଏହା ସର୍ବସାଧାରଣଙ୍କର ପ୍ରତ୍ୟକ୍ଷ ଗୋଚରୀଭୂତ ମୁକ୍ତି-ଇତିହାସର ପୃଷ୍ଠାବଳି ମଧ୍ୟ ଏହାର ପ୍ରାମାଣିକ ସନ୍ତକ । ଅନନ୍ୟୋପାୟ କ୍ରୋଧାନ୍ଧ ଗୋରା ଶାସକଗୋଷ୍ଠୀ ଛୁଟିପିଟି ହୋଇ ଏ ଦେଶରୁ ଛତ୍ରଭଙ୍ଗ ଦେଲାବେଳେ କୂଟକୌଶଳରେ ଯୋଡ଼ାଏ ପ୍ରକାରର ମାରାତ୍ମକ ବିଷମଞ୍ଜି ଆମ ଭିତରେ ବୁଣିଦେଇ ଯାଇଥିଲେ । ସେଥିରୁ ଗୋଟାଏ ହେଉଛି ସାଂପ୍ରଦାୟିକ ବିଦ୍ୱେଷ ଓ ଆରଟା ହେଉଛି ଜାତୀୟ ସଂସ୍କୃତିନାଶକ ଏଇ ଅଧୋବେଶ ପ୍ରୀତି । ଆମ ନେତାଏ କିନ୍ତୁ କ୍ଷମତା ରାଜ-ନୀତିର ଆପାତମୋହରେ ଜଡ଼ୀଭୂତ ହୋଇ ଚତୁର ବ୍ରିଟିଶ ଜାତିର ଏହି ଦୁଇଟି 'ମହାକାଳ' ଦାନକୁ ଦୁଇ ପାର୍ଶ୍ୱରେ ରଖି ସ୍ୱାଧୀନତାପ୍ରାପ୍ତିର ବିଜୟାନନ୍ଦରେ ଗଗନପବନ ଉଚ୍ଛୁଳାଇ ଦେଇଥିଲେ । ସେହିକାଳୁଁ ପ୍ୟାଣ୍ଟ୍ ଆମ ପବିତ୍ର ସଂସ୍କୃତି ପରଂପରାକୁ ଦୂଷିତ କରିଦେଲା ଏବଂ ଜାତୀୟ ପୋଷାକର ପୋଷାପୁଅ ହୋଇ ସବୁ ମଞ୍ଚରେ ତାର ଅବାଧ ଆଧିପତ୍ୟ ଜାହିର କରିବସିଲା । ଆଗରୁ ଯେମିତି ଜଣାଉଛୁ, ଏ ଗୋଡ଼ମୁଣା ବହୁରୂପୀ ଦେଶରେ ପୁରୁଷ ରାଜ୍ୟଟାକୁ ପୂରା ଦଖଲ କରିସାରି ଏବେ ମହିଳାର ରାଜ୍ୟ ଉପରେ ଲୋଲୁପ ଦୃଷ୍ଟି ନିକ୍ଷେପ କଲାଣି—ତାକୁ ବି ଅଳ୍ପଦିନେ ନିଜ ଦଖଲକୁ ନେଇଯିବ ।

## (୯) ଗୁରୁପାଦସେବାର ଫଳ

ଦିନକୁ ଦିନ ଆମ ଦ୍ୱିତୀୟ ବର୍ଷୀୟ ଶ୍ରେଣୀର ପାଠ୍ୟକ୍ରମ ଅଧିକ ବ୍ୟାପକ ଏବଂ ପଠ୍ୟ-ବିଷୟମାନ ଅତିଶୟ ଦୁରୂହ ହୋଇଉଠିଲା । ତେଣୁ ଜ୍ଞାନଗର୍ଭ ଗ୍ରନ୍ଥମାନ ହଷ୍ଟେଲରେ ପଢ଼ିବା ପାଇଁ ଅବସରର ପରିସର ସ୍ୱଭାବତଃ ଅଧିକତର ସଙ୍କୁଚିତ ହୋଇଗଲା । ଏଭଳି ଅନବସର ପରିସ୍ଥିତିର ସମ୍ମୁଖୀନ ହେବାରୁ ମୁଁ ବହୁତ ଭାବଚିନ୍ତା ଗୋଟିଏ ଉପାୟ ଉଦ୍ଭାବନ କଲି । ଛାତ୍ରାବାସର ଅଧୀକ୍ଷକ (ପଣ୍ଡିତ କୁଳମଣି ଦାଶ) ଶୃଙ୍ଖଳାତିଶଯ୍ୟବଶତଃ ତାଙ୍କ ରହିବା ପ୍ରକୋଷ୍ଠର ଠିକ୍ ପାର୍ଶ୍ୱବର୍ତ୍ତୀ କୋଠରିରେ ମତେ ରଖାଇଥାନ୍ତି । ସେ ତାଙ୍କ ରାତ୍ରି ଭୋଜନ କର୍ମ ନଅଟା ପୂର୍ବା ସାରିଦେଇ ଶଯ୍ୟାରେ ନିଜ ପୃଥୁଳ ଗଣ୍ଡିକୁ ବିସ୍ତାରିତ କରି ଦଶଟା ପର୍ଯ୍ୟନ୍ତ ଏପଟ-ସେପଟ ଗଡ଼ପଡ଼ ନହେଲେ ନିଦ୍ରାଦେବୀ ତାଙ୍କ ଚକ୍ଷୁ-ପଲକକୁ ବିଜେ ହୁଅନ୍ତି ନାହିଁ । ଏଣୁ ମୁଁ ମଧ୍ୟ ସେଇ ନଅଟା ଭିତରେ ମୋ ରାତିଶିଆ ମେସ୍‌ରେ ଶେଷ କରିଦେଇ ସିଧାସଳଖ ବପୁଷ୍ମନ୍ତ ଗୁରୁଦେବଙ୍କ ଗୋଡ଼ ପାଖରେ ଆସି ହାଜର ହେବାକୁ ଅଭ୍ୟାସ କଲି । ଦୀର୍ଘ ଘଣ୍ଟାଏକାଳ ସେଠାରେ ରହି ପ୍ରଥମେ ତାଙ୍କ ପାଦ ଓ ହସ୍ତ ସମ୍ବାହନ କଲି ଏବଂ ସର୍ବଶେଷରେ ମାଉଁସଥଲଥଲ ପ୍ରଶସ୍ତ ପିଠି-ପ୍ରାଙ୍ଗଣର ସର୍ବାଂଶକୁ ବଦ୍ଧମୁଷ୍ଟି-ଘାତରେ ସମାଚ୍ଛନ୍ନ କରିବାକୁ ଲାଗିଲି । ଏହି ଶରଦକାଳୀ ଶିଳା ମୁଷ୍ଟିପ୍ରହାର ହିଁ ତାଙ୍କୁ ସବୁଠାରୁ ସୁଖକର ଓ ଆରାମଦାୟକ ବୋଧହୁଏ ବୋଲି ଗୁରୁଦେବ କହିଥାନ୍ତି । ଏହିରୂପେ ଦୈନନ୍ଦିନ ପାଦସେବା ବିଧି ସମାପନ କରି ମୁଁ ସନ୍ତୋଷର ସହିତ ନିଜ ପ୍ରକୋଷ୍ଠକୁ ଆସେ । ଠିକ୍ ଦଶଟାରେ ଶୋଇବା-ଘଣ୍ଟା ବଜାହେଲାମାତ୍ରେ ନିୟମାନୁଯାୟୀ ସମସ୍ତ ଅନ୍ତେବାସୀ ଆପଣା ଆପଣା ଲଣ୍ଠଣ ଲିଭାଇଦେଇ ଖଟରେ ପହୁଡ଼ିଯା'ନ୍ତି (ସେତେବେଳେ କଟକରେ ବିଜୁଳି-ଆଲୁଅର ବ୍ୟବସ୍ଥା ନଥିଲା) । ମୁଁ ମଧ୍ୟ ସେପର୍ଯ୍ୟନ୍ତ ଏହି ନିୟମକୁ ପୂର୍ଣ୍ଣରୂପେ ରକ୍ଷା କରିଆସୁଥିଲି; କିନ୍ତୁ ଏଣିକି ଅଗତ୍ୟା ନିୟମ ଲଙ୍ଘି ନିଜ ଲଣ୍ଠଣକୁ ପୂର୍ବବତ୍ ଜଳାଇରଖି ଏଗାରଟା ପର୍ଯ୍ୟନ୍ତ ସଦ୍‌ଗ୍ରନ୍ଥ-ସ୍ୱାଧ୍ୟାୟରେ ବ୍ୟାପୃତ ରହିଲି ଏବଂ ପରିତୃପ୍ତ ଓ ପରିପୁଷ୍ଟ ମନରେ ତତ୍ପରେ ପହୁଡ଼ିଲି । ସତ କହିବାକୁ ଗଲେ, ନିୟମିତ ଅଭ୍ୟସ୍ତ ଧାରାରେ କିଛି-ନା-କିଛି ଜ୍ଞାନପ୍ରଦ ଗ୍ରନ୍ଥପାଠରୁ କିଛି-ନା-କିଛି ନୂତନ ଜ୍ଞାନ ଆହରଣ ନକଲେ ମୋ ଆଖିକି ନିଦ ଆସୁନଥିଲା ଏବଂ ରାତିଟି ବଡ଼ ଅସ୍ୱସ୍ତିରେ ଅତିବାହନ କରିବାକୁ ପଡ଼ୁଥିଲା । ଆଜିର ପରିଣତ ବୟସରେ ଏହା ମଧ୍ୟ ଆନନ୍ଦର ସହିତ ସ୍ୱୀକାର କରୁଛି ଯେ, କ୍ରମାଗତ ପ୍ରାୟ କୋଡ଼ିଏ ବର୍ଷ ଧରି ଏହି ପ୍ରାତ୍ୟହିକ ଗୁରୁ-ପାଦସେବାକାଳରେ ମୁଁ ଯେତିକି ପ୍ରତ୍ୟକ୍ଷ ଜ୍ଞାନ ଆତ୍ମସ୍ଥ କରିଥିଲି ଏବଂ ଜ୍ଞାନରାଜ୍ୟର ଯେଉଁ ନବ ନବ ଦିଗନ୍ତର ଚାବିକାଠି ହାସଲ କରିଥିଲି, ତାହାକୁ ହିଁ ସାରସମ୍ବଳ ଓ ଅଗ୍ରଗାମୀ ପାଥେୟ କରି ସାରସ୍ୱତ ସରଣୀରେ ଆଜଯାଏ ଗତି କରି ଆସିଲି; କିନ୍ତୁ ବୋଧିଦ୍ରୁମରୂପୀ ସେହି ଆରାଧ୍ୟ ଗୁରୁଙ୍କ ଆଶୀର୍ବାଦରୁ ଯେତେ ଜ୍ଞାନ-ସମ୍ପଦ ଆୟତ୍ତ କରିଥିଲି, ସେ ସମସ୍ତର ସଦ୍‌ବ୍ୟବହାର ପୂର୍ଣ୍ଣମାତ୍ରାରେ ଏପର୍ଯ୍ୟନ୍ତ କରିପାରି ନାହିଁ । ଘୋର ପରିତାପରେ ହୃଦୟ ଜର୍ଜରିତ ହୋଇଉଠୁଛି—ଶମନନଗରୀର ଶିଂଶପଦ୍ରୁମା-ବଳୀର ଶୀର୍ଷ ଦିଶିବାର ବେଳ ଯେ ପାଖ ହୋଇଗଲା !

## (୧୦) ପଣ୍ଡିତ କୁଳମଣି ମା’ ବୀଣାପାଣିଙ୍କର କୋଳମଣି

ସାହିତ୍ୟ-ଶିଳ୍ପୀ ପଣ୍ଡିତ କୁଳମଣି ଦାଶ କାବ୍ୟତୀର୍ଥ ୧୯୨୦ ମସିହାରୁ ଲଗାତାର ବହୁ ବର୍ଷ ପର୍ଯ୍ୟନ୍ତ ନର୍ମାଲ୍ ସ୍କୁଲରେ ତଥା ପରବର୍ତ୍ତୀ କଟକ ସେକେଣ୍ଡରି ଟ୍ରେନିଂ ସ୍କୁଲରେ ଖୁବ୍ ଖ୍ୟାତି ଓ ଗୌରବର ସହିତ ଶିକ୍ଷକତା କଲାପରେ କଟକ କଲେଜିଏଟ୍ ସ୍କୁଲକୁ ହେଡ୍ ପଣ୍ଡିତରୂପେ ବଦଳି ହୋଇଥିଲେ ଏବଂ ଚାକିରିରୁ ଅବସର (୧୯୪୭) ନେବା ପର୍ଯ୍ୟନ୍ତ ସେହିଠାରେ ହିଁ ଶିକ୍ଷକତା କରିଥିଲେ । ଏହି କଲେଜିଏଟ୍‌ରେ ମୁଁ ମୋର ଦୁଇ କନିଷ୍ଠ ଭ୍ରାତାଙ୍କୁ ଓ ଜ୍ୟେଷ୍ଠ ପୁତ୍ରକୁ ମଧ୍ୟ ତାଙ୍କର ଶିଷ୍ୟ କରାଇଥିଲି । ଅବସରପ୍ରାପ୍ତି ପରେ ପୂଜ୍ୟ ଗୁରୁଦେବ ପ୍ରାୟ ଛଅ ସାତ ବର୍ଷ ନିମଚଉଡ଼ି ସଦର ରାସ୍ତାର ଉପରାସ୍ତା ପୁରୁଣା କଲେଜ ଲେନ୍‌ରେ ଥିବା ତାଙ୍କ ଭଡ଼ା ବସାରେ ପୂର୍ବବତ୍ ଅବସ୍ଥାନ କରିଥିଲେ କେତେକ ମୂଲ୍ୟବାନ୍ ଗ୍ରନ୍ଥ ପ୍ରଣୟନ କରିବାପାଇଁ । ଯୋଗକୁ ଶିକ୍ଷାସମାପ୍ତି ପରେ କଟକ ହିଁ ହେଲା ମୋର ସବୁଦିନିଆ କର୍ମକ୍ଷେତ୍ର । ଏଣୁ ପୂଜ୍ୟ ଗୁରୁ କଟକରେ ରହିଥିଲା ପର୍ଯ୍ୟନ୍ତ ମୁଁ ପ୍ରତ୍ୟହ ସନ୍ଧ୍ୟାପରେ ତାଙ୍କ ବସାକୁ ଯାଉଥିଲି ଚରଣଚର୍ଯ୍ୟାର ସୁଖଭୋଗପାଇଁ, ଯେତେ ବୃଷ୍ଟି ବାତ୍ୟା ବଜ୍ରପାତ ହେଉଥାଉ ପଛକେ । ଏଥିପାଇଁ ଗୁରୁଦେବ ମହୋଦୟ ମତେ ‘ଚରଣ-ଚାରଣ ଚକ୍ରବର୍ତ୍ତୀ’ ଉପାଧିରେ ଭୂଷିତ କରିଥିଲେ ଏବଂ ନିଃସଙ୍କୋଚରେ ଅନ୍ୟମାନଙ୍କ ଆଗରେ କହୁଥିଲେ, “ଦୀର୍ଘତର ଶିକ୍ଷକ ଜୀବନରେ ମୁଁ ଲକ୍ଷାଧିକ ଛାତ୍ରଙ୍କୁ ଶିକ୍ଷାଦାନ କରିଥିବ; କିନ୍ତୁ କେହି ଯଦି ସ୍ୱଗୁଣର ଶୀତଳ ଛାୟାରେ ମୋ ହୃଦୟକୁ ଆଜିପର୍ଯ୍ୟନ୍ତ ଆଚ୍ଛନ୍ନ କରି ରଖିଥାଏ, ସେ ହେଉଅଛି ଏକମାତ୍ର କୃଷ୍ଣ—ଶିଷ୍ୟୋତ୍ତମ, ଗୁରୁଭକ୍ତିର ମୂର୍ତ୍ତି ପ୍ରତୀକ । ବସ୍ତୁତଃ, ସେ ହିଁ ଏକା ମୋତେ ଜୟକରିପାରିଛି ।”

୧୮୮୫ ଜାନୁଆରି ୩୦ ତାରିଖ ଦିନ ପୁରୀ ଜିଲାର ସୁମନା ଶାସନରେ ଜନ୍ମ ପରିଗ୍ରହ କରିଥିବା ଶୁଦ୍ଧାତ୍ମନିଷ୍ଠ ମନୀଷାଧର ସୁପ୍ରତିଷ୍ଠ ସାହିତ୍ୟିକ ମୋର ଏହି ପରମଗୁରୁ ୧୯୨୧ରୁ ୧୯୬୦ ମଧ୍ୟରେ ବହୁ ଗବେଷଣାମୂଳକ ଜ୍ଞାନଦାୟକ ଗ୍ରନ୍ଥ ରଚନା କରି ଚଉରାଶି ବର୍ଷ ବୟସରେ ୧୯୬୯ ମସିହାରେ ଆକାଂକ୍ଷିତ ନୀଳାଚଳଧାମରେ ମହାପ୍ରୟାଣ କରିଥିଲେ । ଚାକିରିକାଳ ଶେଷ ହେବା ପୂର୍ବରୁ ସେ ଶ୍ରୀକ୍ଷେତ୍ର ପୁରୀ ସହରରେ ଝିଣ୍ଟିଏ ଏକତାଲା କୋଠାଘର ନିର୍ମାଣ କରି ରଖିଥିଲେ । କଟକ ଛାଡ଼ିବାପରେ (ପ୍ରାୟ ୧୯୫୪) ସେହି ପୁରୀ ବାସଭବନରେ ଅବସ୍ଥାନ କରି ପ୍ରତ୍ୟହ ସକାଳେ ଓ ସନ୍ଧ୍ୟାରେ ଜଗତର ନାଥ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବାପାଇଁ ଶ୍ରୀମନ୍ଦିରକୁ ଯାଉଥିଲେ । ମୋ ନିଜ ଅନୁଭୂତିର ଗୋଟିଏ ବିସ୍ମୟକର କଥା ଏଠାରେ ଉଲ୍ଲେଖ ନକରି ରହିପାରୁ ନାହିଁ । ମୁଁ ଥାଏଁ କଟକରେ, ସେ ଥାଆନ୍ତି ପୁରୀରେ । କି ଅଦୃଶ୍ୟ ଯୋଗସୂତ୍ର ଉଭୟଙ୍କୁ ବାନ୍ଧିରଖିଥାଏ କେଜାଣି, ମୁଁ ଯେତେବେଳେ ତାଙ୍କ କଥା ଭାବେଁ, ଠିକ୍ ସେତେବେଳେ ସେ ମଧ୍ୟ ମୋ କଥା ଭାବିଥାନ୍ତି—ଏହା ମୁଁ ବହୁବାର ବୁଝିଛି ଓ ଆଶ୍ଚର୍ଯ୍ୟରେ ମୁହ୍ୟମାନ ହୋଇଛି । ଏପରିକି ସେ ଯେଉଁଦିନ ମତେ ସଶରୀରରେ ଦେଖିବାକୁ ମନ ବଳାନ୍ତି, ସେହିଦିନ ରାତିରେ

ମୁଁ ନିଶ୍ଚୟ ତାଙ୍କୁ ସ୍ୱପ୍ନରେ ଦେଖେଁ । ତା' ଆରଦିନ ଛୁଟି ନେଇ ତାଙ୍କୁ ଦେଖିବାପାଇଁ ଛୁଟିପିଟି ହୋଇ ପୁରୀ ପଳାଏଁ—ସେ ମୋ ସ୍ୱର ଶୁଣିବାପାଇଁ ଉତ୍କଣ୍ଠ ହୋଇ ରହିଥାନ୍ତି ।

ଗୁରୁଦେବ ମିଡ଼ିଲଭର୍ଣ୍ଣାକୁଲାର୍ ପାସ୍ କଲାପରେ ନର୍ମାଲ୍ ସ୍କୁଲରେ ତିନି ବର୍ଷ ଅଧ୍ୟୟନ କରି କୃତିତ୍ୱ ସହକାରେ ଉତ୍ତୀର୍ଣ୍ଣ ହୋଇଥିଲେ । ସେତେବେଳେ ଓଡ଼ିଶା ଏକ ଉପବିଭାଗ ରୂପେ ବଙ୍ଗପ୍ରଦେଶ ସହିତ ସଂଯୁକ୍ତ ହୋଇ ରହିଥିଲା । ତେଣୁ ସେ ଆତ୍ମଚେଷ୍ଟାରେ ସଂସ୍କୃତର ବିଭିନ୍ନ ପରୀକ୍ଷା-ସ୍ତର ଅତିକ୍ରମ କରି କଲିକତା ୟୁନିଭର୍ସିଟିରୁ 'କାବ୍ୟତୀର୍ଥ' ଉପାଧି ଲାଭ କରିଥିଲେ । ତାଙ୍କର ଶିକ୍ଷକଜୀବନ ଆରମ୍ଭ ହୋଇଥିଲା ବାଲେଶ୍ୱର ଜିଲା ସ୍କୁଲରେ ଏବଂ ସେଇଠାରୁ ବଦଳି ହୋଇଥିଲା ନର୍ମାଲ ସ୍କୁଲକୁ ୧୯୨୦ରେ । ବାଲେଶ୍ୱରରେ ଶିକ୍ଷକ ଥିବା ସମୟରେ ପଣ୍ଡିତ ମହାଶୟ ଘରୋଇ ଛାତ୍ରରୂପେ ମାଟ୍ରିକୁଲେସନ୍ ପରୀକ୍ଷାରେ କୃତକାର୍ଯ୍ୟ ହୋଇ ଉକ୍ତ ୟୁନିଭର୍ସିଟିରୁ ଉତ୍ତୀର୍ଣ୍ଣତାର ଶଂସାପତ୍ର ହାସଲ କରିଥିଲେ ।

'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ' ସଂକଳନରେ ରାୟବାହାଦୁର ଗୋପାଳଚନ୍ଦ୍ର ପ୍ରହରାଜଙ୍କର ଦକ୍ଷିଣବାହୁରୂପୀ ଅପରିହାର୍ଯ୍ୟ ସହାୟକ ପଣ୍ଡିତ କୁଳମଣି ଦାଶଙ୍କ ସାହିତ୍ୟିକ ଜୀବନାଦର୍ଶ ପ୍ରତ୍ୟେକ ସାହିତ୍ୟବ୍ରତୀର ଅନୁକରଣୀୟ ଓ ଅନୁସରଣୀୟ । ତାଙ୍କ ପ୍ରଣୀତ ନିମ୍ନବର୍ଣ୍ଣିତ ଦ୍ୱାଦଶ ଗ୍ରନ୍ଥ ଓଡ଼ିଆ ସାରସ୍ୱତ ଭଣ୍ଡାରରେ ଉଜ୍ଜ୍ୱଳରତ୍ନ ପରି ଚିରଦେଦୀପ୍ୟମାନ ରହିବ ବୋଲି ବିଶ୍ୱାସ କରାଯାଏ ।

୧ । କାଳିଦାସସନ୍ଦର୍ଭ — (ମହାକବି କାଳିଦାସ-ବିରଚିତ ସଂସ୍କୃତ କାବ୍ୟାନ୍ତର୍ଗତ ବିଭିନ୍ନ କଥାବସ୍ତୁର ଗଦ୍ୟସଂକଳନ)

୨ । ହିମାଳୟପଥେ — (ଦର୍ଶନୀୟ ହିନ୍ଦୁତୀର୍ଥ ଓ ବିଶିଷ୍ଟ ସ୍ଥାନସମୂହ ଭ୍ରମଣର ମନୋରମ କାହାଣୀ)

୩ । ସୁନାକୁଲେଇ — ('ଶୂଦ୍ରକ' ପ୍ରଣୀତ ସଂସ୍କୃତ 'ମୃଚ୍ଛକଟିକ' ନାଟକର କଥାବସ୍ତୁର ଛାୟାବଲମ୍ବନରେ ଲିଖିତ ହୃଦୟଗ୍ରାହୀ ଉପନ୍ୟାସ)

୪ । କବିସୂର୍ଯ୍ୟ ଗ୍ରନ୍ଥାବଳୀ — (କବିସୂର୍ଯ୍ୟ ବଳଦେବ ରଥଙ୍କ ରଚିତ 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ', ଅପୂର୍ଣ୍ଣାଙ୍ଗ 'ଚନ୍ଦ୍ରକଳା' କାବ୍ୟ, 'ସଙ୍ଗୀତକଳ୍ପଲତା', 'ଚଉପଦୀରତ୍ନାକର', 'କବିତାକଲ୍ଲୋଳିନୀ', 'ହାସ୍ୟକଲ୍ଲୋଳ' ଗଳ୍ପ ଏବଂ ସଂକଳକଙ୍କ ଲିଖିତ କବିଜୀବନୀ ସମ୍ବଳିତ ମହାର୍ଘ କୃତି)

୫ । ଶ୍ରୀମଦ୍ଭଗବଦ୍ଗୀତା — (ସରଳ ସୁବୋଧ ଭାଷାରେ ବ୍ୟକ୍ତ ସର୍ବୋତ୍କୃଷ୍ଟ ଗୀତାଭାଷ୍ୟ)

୬ । ସରଳ ଉତ୍କଳ ଅଭିଧାନ

୭ । ମୋହମୁଦ୍‌ଗର (ଶଙ୍କରାଚାର୍ଯ୍ୟଙ୍କ ମୂଳ ସଂସ୍କୃତ ରଚନାର ଓଡ଼ିଆ ପଦ୍ୟାନୁବାଦ)

୮ । ଆବୃତ୍ତିଦର୍ପଣ (ପୁରସ୍କାର ବିତରଣ ଉତ୍ସବରେ ଅଭିନେୟ ହାସ୍ୟରସାତ୍ମକ ଏକାଙ୍କିକାଗୁଚ୍ଛ)

୯ । ଧର୍ମଶିକ୍ଷା (ସ୍କୁଲମାନଙ୍କରେ ପାଠ୍ୟରୂପେ ଅନୁସୃତ ନୀତିଶିକ୍ଷା ପୁସ୍ତକ)

୧୦ । ଅଳଙ୍କାର ତରଙ୍ଗିଣୀ

୧୧ । ସାହିତ୍ୟସୁଧା

୧୨ । ବ୍ୟାକରଣବୋଧ

(ଷଷ୍ଠ-ସପ୍ତମ ଶ୍ରେଣୀର ପାଠ୍ୟପୁସ୍ତକ)

ଏହା ବ୍ୟତୀତ ସେ ମଧ୍ୟ ଥିଲେ ଶ୍ରେଷ୍ଠତମ ସାହିତ୍ୟପତ୍ରିକା 'ଉତ୍କଳସାହିତ୍ୟ'ର ଧାରାବାହିକ ପ୍ରତିଷ୍ଠିତ ଲେଖକ ଏବଂ 'ସମ୍ମାର୍ଜକ' ଏହି ଛଦ୍ମନାମରେ ଉକ୍ତ ପତ୍ରିକାନ୍ତର୍ଗତ 'ସମ୍ମାର୍ଜନୀ' ବିଭାଗର ଶାଣିତ ଭାଷା-ସମାଲୋଚକ ।

## (୧୧) ନର୍ମାଲ୍ ସ୍କୁଲର ଜନ୍ମ : 'ଆଲୋଚନାସଭା'ର ସୁଦୂରପ୍ରସାରୀ ପ୍ରଭାବ

ପରମ୍ପରା ସହଯୋଗୀ ଉତ୍କଳ ସମ୍ମିଳନୀ ଓ ଉତ୍କଳ ସାହିତ୍ୟ ସମାଜ ଯେଉଁ ଶ୍ରେଷ୍ଠତମ ସାରସ୍ୱତ ଶିକ୍ଷାୟତନଟି ଯୋଗୁଁ ମୁଁ ଏହି ଆମରଣପୂଜ୍ୟ ଜ୍ଞାନଗୁରୁଙ୍କୁ ପାଇବାର ସୌଭାଗ୍ୟ ଅର୍ଜନ କରିଥିଲି, ତାହା ପ୍ରତିଷ୍ଠିତ ହୋଇଥିଲା ୧୮୬୯ ମସିହାରେ—ଓଡ଼ିଶାର ମେରୁଦଣ୍ଡକୁ ଅର୍ଦ୍ଧଭଗ୍ନ କରି ଜନସମାଜର ଅସ୍ଥିପଞ୍ଜରକୁ ଦୋହଲାଇଦେଇଥିବା କରାଳ 'ନଅଙ୍କ' (୧୮୬୬) ଦୁର୍ଭିକ୍ଷର ଠିକ୍ ଦୁଇବର୍ଷ ପରେ । ସର୍ବଶ୍ରେଷ୍ଠ ବାଣୀଚର୍ଚ୍ଚାପୀଠ ଏହି ସର୍ବଜନପ୍ରିୟ ବିଦ୍ୟାଭବନର ଲୋକକଥିତ ସାଧାରଣ ନାମ ଥିଲା ନର୍ମାଲ୍ ସ୍କୁଲ—ଶିକ୍ଷିତ ସମ୍ପ୍ରଦାୟର କାହାରି କାହାରି ମୁଖରେ ନର୍ମାଲ୍ ଟ୍ରେନିଂ ସ୍କୁଲ ବା କଟକ ଟ୍ରେନିଂ ସ୍କୁଲ । ଏହି ଅନନ୍ୟ ପ୍ରତିଷ୍ଠାନର ପ୍ରଥମ ଅଧ୍ୟକ୍ଷଙ୍କ ନାମ ଦ୍ୱାରକାନାଥ ଚକ୍ରବର୍ତ୍ତୀ, ସ୍ୱନାମଖ୍ୟାତ ଶିକ୍ଷାବିତ୍, ସୁଶିକ୍ଷକ ନିର୍ମାତା ଏବଂ ତାଙ୍କ ପରବର୍ତ୍ତୀ ଅଧ୍ୟକ୍ଷଙ୍କ ନାମ ମଧୁସୂଦନ ରାଓ, ଭକ୍ତକବି, ଓଡ଼ିଆ ଗଦ୍ୟଶୈଳୀର ମାର୍ଜିତ ସଂସ୍କାରକ, ସୁସାହିତ୍ୟ ନିର୍ମାତା । ଦୂରଦର୍ଶୀ ମଧୁସୂଦନ ନର୍ମାଲ୍ ସ୍କୁଲର ଗୁରୁଶିଷ୍ୟମାନଙ୍କୁ ସାହିତ୍ୟସାଧନା ପ୍ରତି ଶ୍ରଦ୍ଧାଳୁ ଓ ସ୍ପୃହାଶୀଳ କରାଇ ସେମାନଙ୍କ ହୃଦୟରେ ସୃଜନାତ୍ମକ ସାହିତ୍ୟିକ ଚେତନାର ପ୍ରସ୍ଫୁରଣ ଘଟାଇବା ଉଦ୍ଦେଶ୍ୟରେ ୧୮୯୪ ମସିହାରେ 'ଆଲୋଚନାସଭା' ନାମକ ଏକ ସାପ୍ତାହିକ ମିଳନୀର ଶୁଭାରମ୍ଭ କରିଥିଲେ । ତାହାର ପ୍ରତିଷ୍ଠାତା-ସଭାପତି ହେଲେ ସ୍ୱୟଂ ଅଧ୍ୟକ୍ଷ ମଧୁସୂଦନ ରାଓ ଏବଂ ସୁଯୋଗ୍ୟ ସମ୍ପାଦକରୂପେ କାର୍ଯ୍ୟ ପରିଚାଳନା କଲେ ସେହି ସ୍କୁଲର ଶିକ୍ଷକୋତ୍ତମ ତଥା 'ଉତ୍କଳସାହିତ୍ୟ' ପତ୍ରିକାର ବରିଷ୍ଠ ଲେଖକ, ବୈୟାକରଣ ଚନ୍ଦ୍ରମୋହନ

ମହାରଣା । ଏହି ସାମ୍ପ୍ରାହିକ ସାରସ୍ୱତ ମିଳନୀର ଶ୍ଳାଘ୍ୟ ନବୋଦ୍ୟମ ପ୍ରତି ଗଭୀର ଶୁଭେଚ୍ଛା-ଯୁକ୍ତ ଆନ୍ତରିକ ସହଯୋଗ ପ୍ରଦାନ କଲେ ଉତ୍କଳଗୌରବ ମଧୁସୂଦନ ଦାସ । ସପ୍ତାହ-ଶେଷ ପ୍ରତି ଶନିବାର ଦିନ ସ୍କୁଲକକ୍ଷରେ 'ଆଲୋଚନାସଭା'ର ବୈଠକ ବସିଲା ଏବଂ ମେଧାବୀ ଗୁରୁଛାତ୍ରମାନେ ପରମ ଉତ୍ସାହିତ ହୋଇ ପ୍ରତି ଅଧିବେଶନର ଗୁରୁତ୍ୱପୂର୍ଣ୍ଣ ଆଲୋଚନାରେ ଅଂଶଗ୍ରହଣପୂର୍ବକ ଆପଣା ଆପଣାର ଜ୍ଞାନସୀମା ବିବର୍ଦ୍ଧିତ କରିବାକୁ ଲାଗିଲେ । ଦିନକୁ ଦିନ ଏହି 'ସଭା' ଅଧିକତର ସକ୍ରିୟ ଓ ପ୍ରାଣବନ୍ତ ହୋଇଉଠିଲା ଏବଂ ଅଭିଳଷିତ ସଫଳତା ଓ ସୁନାମ ଅର୍ଜନ କରି କଟକର ଶିକ୍ଷିତ ମହଲରେ ଆଶାତୀତ ଆଦର ଲାଭ କଲା, ଯାହା ଫଳରେ ବହୁ ଦେଶଭକ୍ତ ସାହିତ୍ୟପ୍ରେମୀ ତତ୍ପ୍ରତି ଆକୃଷ୍ଟ ହୋଇପଡ଼ିଲେ । ଯେଉଁ ଓଡ଼ିଆଭାଷାନୁରାଗୀମାନେ ସର୍ବପ୍ରଥମେ ସଭ୍ୟ ତାଲିକାଭୁକ୍ତ ହୋଇ ଏହି ପବିତ୍ର ଉଦ୍ୟୋଗରେ ନିଜ ନିଜକୁ ଓତପ୍ରୋତଭାବରେ ମିଶାଇଦେଇଥିଲେ, ସେମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ନାୟକ ଥିଲେ 'ଉତ୍କଳସାହିତ୍ୟ' ପତ୍ରିକାର ବରେଣ୍ୟ ସମ୍ପାଦକ ବାଗ୍ମୀ ବିଶ୍ୱନାଥ କର ଓ ତାଙ୍କ ଅନୁଗାମୀ ନନ୍ଦକିଶୋର ବଳ, କୃଷ୍ଣପ୍ରସାଦ ଚୌଧୁରୀ, ମିଛ ନନ୍ଦ, ରାଜମୋହନ ବସୁ । ଏହି ପଞ୍ଚକଙ୍କ ପଛେ ପଛେ ଧାଡ଼ି ବାନ୍ଧିଥିଲେ କଟକର ଓ କଟକ ବାହାରର ବହୁ ସାହିତ୍ୟପ୍ରିୟ ଓ ସାହିତ୍ୟସେବକ ।

ବର୍ଣ୍ଣିତ କାଳରେ ଓଡ଼ିଆଭାଷା ଭୟାବହ ଦୁର୍ଦ୍ଦିନର ଝଞ୍ଜା ମଧ୍ୟଦେଇ ଗତି କରୁଥାଏ । ପଡ଼ୋଶୀ ପ୍ରଦେଶମାନଙ୍କର ଶାସକାସନରେ ଆସୀନ ଥିବା ସ୍ୱାର୍ଥସର୍ବସ୍ୱ ଦଳାବଳ ଗୋଷ୍ଠୀ ଓଡ଼ିଆଭାଷାକୁ ନିଜ ଭାଷାର କୁକ୍ଷିଗତ କରିବାପାଇଁ ଚକ୍ରାନ୍ତର ଜାଲ ବିଛାଇଦେଇଥା'ନ୍ତି । ଇତିପୂର୍ବରୁ ମଧ୍ୟପ୍ରଦେଶରେ ସାମିଲ ହୋଇ ରହିଥିବା ସମ୍ବଲପୁର ଇଲାକାର ବିଦ୍ୟାଳୟ-ମାନଙ୍କରୁ ୧୮୯୬ ମସିହା ଜାନୁଆରି ପହିଲାରେ ଓଡ଼ିଆଭାଷା ଉଠିଯାଇ ତତ୍ପରିବର୍ତ୍ତେ ହିନ୍ଦୀଭାଷା ପ୍ରଚଳିତ ହୋଇସାରିଥିଲା । ଏଣେ ବଙ୍ଗପ୍ରଦେଶରେ ଯୋଡ଼ା ହୋଇଥିବା ଆମ ଓଡ଼ିଶା ଡିଭିଜନର ସମୁଦାୟ ବିଦ୍ୟାଳୟରୁ ଓଡ଼ିଆଭାଷା ଉଠାଇଦେଇ ତା' ସ୍ଥାନରେ ବଙ୍ଗଳାଭାଷା ଚଳାଇବାକୁ ବଙ୍ଗୀୟ ଶାସକଗୋଷ୍ଠୀ ଯେଉଁ ପରିକଳ୍ପନା କରିଆସୁଥିଲେ, ତାହା କ୍ରମଶଃ ନିର୍ଦ୍ଦିଷ୍ଟ ଆକାର ଧରିଆସୁଥାଏ । ଭାଷା ସଂକଟର ଏହି ଉତ୍କଟ ଘଡ଼ିସନ୍ଧି ବେଳାରେ ଅର୍ଥାତ୍ ୧୯୦୩ ମସିହାରେ, 'ଉତ୍କଳ ସମ୍ମିଳନୀ' ଜନ୍ମଲାଭ କଲା ଏବଂ ମୟୂରଭଞ୍ଜ ଷ୍ଟେଟ୍‌ର ପୁଣ୍ୟଶ୍ଳୋକ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେବଙ୍କ ସଭାପତିତ୍ୱରେ ଗଞ୍ଜାମ ଜିଲ୍ଲାନ୍ତର୍ଗତ ରମ୍ଭାଠାରେ ତାର ଐତିହାସିକ ପ୍ରଥମ ଅଧିବେଶନ ଅନୁଷ୍ଠିତ ହେଲା । ଉକ୍ତ ଗୁରୁତ୍ୱପୂର୍ଣ୍ଣ ଅଧିବେଶନରେ ପ୍ରାକୃତିକ ଉତ୍କଳର ଅଧିକାଂଶ ଦେଶପ୍ରେମୀ, ଭାଷାପ୍ରେମୀ, ସାହିତ୍ୟପ୍ରେମୀ, ସଂସ୍କୃତିପ୍ରେମୀ ବ୍ୟକ୍ତି ଓ ନେତୃସ୍ଥାନୀୟ ରାଜା ମହାରାଜା ଯୋଗଦାନ କରିଥିଲେ । ସେହି ଚିନ୍ତାନାୟକମାନଙ୍କର ସମ୍ମିଳିତ ସିଦ୍ଧାନ୍ତ ଅନୁଯାୟୀ ଭକ୍ତକବି ମଧୁସୂଦନ ରାଓଙ୍କ ଦ୍ୱାରା ପ୍ରତିଷ୍ଠିତ 'ଆଲୋଚନାସଭା' ୧୯୦୩ର ମେ ମାସ ୭ ତାରିଖ ଦିନ 'ଉତ୍କଳ ସାହିତ୍ୟ ସମାଜ' ନାମ ଧାରଣପୂର୍ବକ ସମଗ୍ର ଓଡ଼ିଶା ଓ ଅନ୍ୟାନ୍ୟ ଓଡ଼ିଆଭାଷୀ ଅଞ୍ଚଳର ଶୀର୍ଷତମ ସାରସ୍ୱତ ପୀଠ ତଥା ଓଡ଼ିଆଭାଷା ଓ ଓଡ଼ିଆସାହିତ୍ୟର

ରକ୍ଷକ, ନିୟାମକ, ଦିଗ୍‌ଦର୍ଶନଦାୟକ ହିସାବରେ ଏକ ରେଜିଷ୍ଟ୍ରିଭୁକ୍ତ ଅନୁଷ୍ଠାନରୂପେ ଆତ୍ମପ୍ରତିଷ୍ଠ ହେଲା । କବିବର ରାଧାନାଥ ରାୟ ହେଲେ 'ଉତ୍କଳ ସାହିତ୍ୟ ସମାଜ'ର ପ୍ରଥମ ସଭାପତି ଏବଂ ଉତ୍କଳଗୌରବ ମାନ୍ୟବର ମଧୁସୂଦନ ଦାସ ହେଲେ ତାର ସର୍ବାଙ୍ଗୀଣ ହିତକାମୀ ଆଜୀବନ ଅଭିଭାବକ-ସଭ୍ୟ । ଉତ୍କଳ ସମ୍ମିଳନୀ ଓ ଉତ୍କଳସାହିତ୍ୟ ସମାଜର ଯୌଥ ସକ୍ରିୟତା ଫଳରେ ୧୯୦୫ ମସିହାରେ ସମ୍ବଲପୁରର ବିଦ୍ୟାଳୟ-ମାନଙ୍କରେ ପୁଣି ଓଡ଼ିଆଭାଷା ପ୍ରଚଳିତ ହେଲା ଏବଂ ଓଡ଼ିଆଭାଷା-ବିଲୋପପ୍ରୟାସୀ ବଙ୍ଗୀୟ ଚକ୍ରାନ୍ତକାରୀମାନଙ୍କ ସକଳ ହୀନ ପ୍ରଚେଷ୍ଟା ବିଫଳତାରେ ହିଁ ସମାଧିପ୍ରାପ୍ତ ହେଲା ।

ସଚେତନ ଚିତ୍ତ ଓ ସର୍ବଦର୍ଶୀନୀ କଳ୍ପନା ବିଧାତାର ଦୁର୍ଲଭ ଦାନ । ପୁଣି, ଜାଣିବାର ଶକ୍ତି ଓ ଜଣାଇବାର ଶକ୍ତି ମଧ୍ୟ ସେହିପରି ଦୁର୍ଲଭ । ସର୍ବନିୟନ୍ତା ଭଗବାନ୍ ଏହି ଉଭୟବିଧ ଦୁର୍ଲଭ ବିଭବକୁ ମଧୁସୂଦନ ଦାସ ଓ ମଧୁସୂଦନ ରାଓ ଉଭୟଙ୍କୁ ଦାନ କରିଥିଲେ । ଏହି ଚିରସ୍ମରଣୀୟ ଦୁଇ ରଥୀ ଆମରଣ କାୟମନୋବାକ୍ୟରେ ଉକ୍ତ ଅମୂଲ୍ୟ ବିଭବର ଚୂଡ଼ାନ୍ତ ସଦ୍‌ବ୍ୟବହାର କରିଯାଇଛନ୍ତି । ଉତ୍କଳକେଶରୀ ମଧୁସୂଦନ ଦାସ ଥିଲେ ମାତୃଭୂମି ଉତ୍କଳ-ଜନନୀଙ୍କର ବରପୁତ୍ର ଏବଂ ଭକ୍ତକବି ମଧୁସୂଦନ ରାଓ ଥିଲେ ମାତୃଭାଷାର ଜନନୀ ଉତ୍କଳ-ଭାରତୀଙ୍କର ବରପୁତ୍ର । ଉଭୟେ ପ୍ରତ୍ୟେକ ମୁହୂର୍ତ୍ତକୁ କର୍ମବ୍ୟାପୃତିରେ ମହୀୟାନ୍ କରି ଜୀବନକୁ ସଫଳାୟିତ କରିଛନ୍ତି, ଜନ୍ମକୁ ସାର୍ଥକ କରିଛନ୍ତି ଏବଂ ନାସାପୁଟରେ ଶେଷନିଶ୍ୱାସ ଥିବା ପର୍ଯ୍ୟନ୍ତ ସମନ୍ୱିତ ଶୃଙ୍ଖଳାରେ କାର୍ଯ୍ୟ କରି ମାତୃଭୂମି ଓ ମାତୃଭାଷାର ପୂର୍ବ ଗୌରବ ଯଥାସମ୍ଭବ ଫେରାଇଆଣିବାପାଇଁ ଆପ୍ରାଣ ଲାଗିପଡ଼ିଛନ୍ତି । ପରମପିତା ପରମେଶ୍ୱର ସମସାମୟିକଉଦ୍‌ଯୋଗୀ ଉଭୟ ମଧୁସୂଦନଙ୍କୁ ଯେଉଁ ଯେଉଁ କର୍ମପାଇଁ ଧରାଧାମକୁ ପଠାଇଥିଲେ, ସେ ଦୁହେଁ ସେହି ସେହି କର୍ମକୁ ଯଥା ଯଥା ସମୟରେ ସମାପନପୂର୍ବକ ନିଜ ନିଜ ମାଟିପିଣ୍ଡକୁ ଏଇ ମରଧାମରେ ଫିଙ୍ଗିଦେଇ ଅଦୃଶ୍ୟ ପ୍ରେରକ ତଥା ପ୍ରେରଣା-ଦାୟକ ପରମପିତାଙ୍କ ଅମରଧାମକୁ ହସି ହସି ବାହୁଡ଼ିଯାଇଛନ୍ତି । ଆଉ, ଆମକୁ ଯାହା ଦେଇଯାଇଛନ୍ତି, ତାହା ଆମର ଚିରନ୍ତନ ସମ୍ପଦ—ସମଗ୍ର ଓଡ଼ିଶାର ଓ ଓଡ଼ିଆ ଜାତିର ଶ୍ରେଷ୍ଠତମ ସମ୍ବଳ । ମାତ୍ର ଆମେ ଦାୟାଦମାନେ ସେହି ଚିରନ୍ତନ ସମ୍ପଦର, ଶ୍ରେୟସ୍କର ସମ୍ବଳର ସଂରକ୍ଷଣ ଓ ସଦୁପଯୋଗ କରିବାକୁ କେତେଦୂର ସମର୍ଥ ଓ ଉପଯୁକ୍ତ, ଭବିତବ୍ୟ ହିଁ ତାହା ଗଣନା କରି ଯଥାକାଳରେ ଘୋଷଣା କରିବ ।

ଆଦିମାତାହିରୂପିଣୀ ବହୁଚର୍ଚ୍ଚିତା ବହୁଅର୍ଚ୍ଚିତା ଏହି 'ଆଲୋଚନାସଭା' ସ୍ୱଳ୍ପକାଳ ମଧ୍ୟରେ ଅସାମାନ୍ୟ ସାଫଲ୍ୟର ଅଧିକାରିଣୀ ହୋଇ ଯେଉଁ ତେଜୋମୟୀ ଭାବମୂର୍ତ୍ତି ପ୍ରକଟାଇ ପାରିଥିଲା, ତାହାର ସୁଦୂରପ୍ରସାରୀ ପ୍ରଭାବ ସର୍ବପ୍ରଥମେ ପଡ଼ିଥିଲା କଲେଜର କେତେକ ଘନିଷ୍ଠ ଛାତ୍ରବନ୍ଧୁଙ୍କ ଉପରେ । ସେମାନେ ସର୍ବସମ୍ମତିକ୍ରମେ 'ସାନ୍ଧ୍ୟ ସମିତି' ନାମରେ ଗୋଟିଏ ସାହିତ୍ୟାଲୋଚନା ଗୋଷ୍ଠୀ ଗଠନ କରି ତାହାର ମାଧ୍ୟମରେ ବାଣୀ-ସେବା ଆରମ୍ଭ କରିଥିଲେ ପ୍ରତି ସନ୍ଧ୍ୟାରେ ଏକତ୍ର ସମ୍ମିଳିତ ହୋଇ । ଏହି ସାରସ୍ୱତ

ଗୋଷ୍ଠୀର ମୁଖ୍ୟ ଉତ୍ସାହୀ ପ୍ରଯୋଜକ ଓ ପ୍ରବର୍ତ୍ତକ ଥିଲେ ଅଭିରାମ ଭକ୍ତ— କୁଶଳୀ ସାହିତ୍ୟ ସଙ୍ଗଠକ, ସ୍ୱାଧୀନ ଚିନ୍ତକ ଓ ପ୍ରାବନ୍ଧିକ । ତାଙ୍କର ଯୁବନେତୃତ୍ୱ ହିଁ ବହୁସଭ୍ୟସମ୍ପନ୍ନ ଏହି ସାହିତ୍ୟଗୋଷ୍ଠୀର ପ୍ରତ୍ୟେକଙ୍କୁ ପରସ୍ପରର ଅଧିକତର ନିକଟବର୍ତ୍ତୀ କରାଇପାରିଥିଲା । 'ସାନ୍ଧ୍ୟ ସମିତି' ଏହି ସୁନ୍ଦର ନାମଟି ମଧ୍ୟ ଅଭିରାମଙ୍କ କଳ୍ପନାପ୍ରସୂତ । ଅନ୍ୟ ତିନି ମୁଖ୍ୟ ସହଯୋଗୀ ହେଲେ ନନ୍ଦକିଶୋର ବଳ, ଗୋପାଳଚନ୍ଦ୍ର ପ୍ରହରାଜ ଓ କାମପାଳ ମିଶ୍ର । ଏହି ଆଦ୍ୟ'ଦସ୍ୱିକ କାଳରେ ନନ୍ଦକିଶୋର ପ୍ରଥମେ ଶିଶୁସାହିତ୍ୟପାଇଁ ରଚନା କରିଥିଲେ 'ନାନାବାୟା ଗୀତ' । ତାଙ୍କ ଆଦର୍ଶର ଅନୁସରଣରେ ଗୋପାଳଚନ୍ଦ୍ରଙ୍କ କଲମରୁ ଝରିଲା ଶିଶୁକବିତା 'ଧୋ ରେ ବାୟା ଧୋ' । କିନ୍ତୁ କାମପାଳଙ୍କ ଲେଖନୀର ପ୍ରୀତି ହେଲା ରଙ୍ଗମଞ୍ଚ ପ୍ରତି—ସେ ଲେଖିଲେ 'ସୀତା ବିବାହ' ନାଟକ । ଅଭିରାମ ଭକ୍ତ ରଚନା କଲେ ଉଚ୍ଚ ଚିନ୍ତାର ବାହକ କେତେକ ଉପଭୋଗ୍ୟ ପ୍ରବନ୍ଧ । ଅତି କ୍ଷୀଣ ପରିସରର ଆୟୁଷ୍କାଳ ଘେନି ସଂସାରକୁ ଆସିଥିଲେ ଅଭିରାମ ୧୮୮୦ ମସିହାରେ ଏବଂ ସାହିତ୍ୟାକାଶରେ ଉଜ୍ଜ୍ୱଳ ଜୀବନ-ଜ୍ୟୋତିର ବିଜୁଳି-ଚମକ ଖେଳାଇ ଅତି ଆକସ୍ମିକ ଭାବରେ ସଂସାରରୁ ଲିଭି-ଯାଇଥିଲେ ୧୯୦୮ ମସିହାରେ । 'ସାନ୍ଧ୍ୟ ସମିତି'ରେ ପ୍ରତି ସନ୍ଧ୍ୟାରେ ବିଭିନ୍ନ ସାହିତ୍ୟିକ ପ୍ରସଙ୍ଗକୁ କେନ୍ଦ୍ରକରି ଯେପରି ଧାରାବାହିକ ଭାବରେ ଆଲୋଚନା-ବିଲୋଚନା ହେଉଥିଲା, ଗୋପାଳଚନ୍ଦ୍ରଙ୍କ ଲିଖିତ ପରବର୍ତ୍ତୀ ଆଲୋଚନାଗ୍ରନ୍ଥ 'ଭାଗବତ ଟୁଙ୍ଗୀରେ ସନ୍ଧ୍ୟା' ହେଉଛି ଅବିକଳ ତାହାର ରୂପ ଓ ଢାଞ୍ଚାର ଅନୁସରଣରେ ସର୍ଜିତ ଏକ ଅନୁରୂପ ଅନବଦ୍ୟ ରୂପକ—କେବଳ ପର୍ଯ୍ୟାଲୋଚନୋପଯୋଗୀ ପ୍ରସଙ୍ଗାବଳୀର ସୁନିର୍ବାଚନରେ ଯାହାର ବିଶେଷତ୍ୱ ଓ ପାର୍ଥକ୍ୟ ।

'ସାନ୍ଧ୍ୟ ସମିତି' ଜନ୍ମିବାର ଅଳ୍ପ ବ୍ୟବଧାନ ପରେ ହିଁ ଜନ୍ମଲାଭ କରିଥିଲା ଚିରଞ୍ଜୀବ 'ଉତ୍କଳ ସାହିତ୍ୟ ସମାଜ' ।

ଏହାପରେ ଉପରିସୂଚିତ ସୁଦୂରପ୍ରସାରୀ ପ୍ରଭାବର ରଶ୍ମିପାତ ଘଟିଥିଲା ୧୯୧୫ ମସିହାରେ ସତ୍ୟବାଦୀ ଜାତୀୟ ବିଦ୍ୟାଳୟର ପଞ୍ଚସଖାଙ୍କ ଲେଖନୀରେ । ଏକ ନୂତନ ଧାରାର ଓ ଅଭିନବ ଶୈଳୀର ସାହିତ୍ୟ ସୃଜନ ହେଲା ସତ୍ୟବାଦୀ ଗୋଷ୍ଠୀର ଚେତନାଶୀଳ ଅଭିମୁଖ୍ୟ ଏବଂ ସେହି ସଂକଳ୍ପନିଷ୍ଠ ଗୋଷ୍ଠୀର ମୁଖପତ୍ର 'ସତ୍ୟବାଦୀ' ହେଲା ଉକ୍ତ ଅଭିମୁଖ୍ୟର ପ୍ରଚାରର ମାଧ୍ୟମ । ଏହି ଜାତୀୟତାବାଦୀ ଗୋଷ୍ଠୀର ପ୍ରମୁଖ ସାହିତ୍ୟିକ ତଥା ଜନମାନସର କବି ପଣ୍ଡିତ ଗୋଦାବରୀଶ ମିଶ୍ର ତାଙ୍କ ସୁମହାନ୍ ଆତ୍ମଚରିତ ଗ୍ରନ୍ଥରେ ମୁକ୍ତ କଣ୍ଠରେ ପ୍ରକାଶ କରିଛନ୍ତି ଯେ, 'ଉତ୍କଳସାହିତ୍ୟ' ସମ୍ପାଦକ ବାଗ୍ମୀ ବିଶ୍ୱନାଥ କରଙ୍କ ହୃଦସ୍ପର୍ଶୀ ଉତ୍ସାହ-ବାକ୍ୟର ପ୍ରେରଣା ତାଙ୍କୁ ଆଜୀବନ ସାହିତ୍ୟସେବାବ୍ରତୀ ହେବାପାଇଁ ଆଦ୍ୟରୁ ହିଁ ପ୍ରଣୋଦିତ କରିଥିଲା ।

'ଆଲୋଚନାସଭା'ର ଐକ୍ୟଗତ ଆଦର୍ଶର ଶେଷ (ଚତୁର୍ଥ) ସ୍ଫୁରଣ ଘଟିଥିଲା ୧୯୨୧ ମସିହାରେ ପଞ୍ଚସଖାବଶିଷ୍ଟ ସବୁଜଗୋଷ୍ଠୀର ଆଧୁନିକଧର୍ମୀ ସାହିତ୍ୟସୃଷ୍ଟିରେ, ବିଶେଷ କରି

କବିତା ରଚନା ପଦ୍ଧତିର ଗୁଣାତ୍ମକ ଛନ୍ଦବିଳାସରେ । ଏହି ନବ୍ୟପନ୍ଥୀ ଗୋଷ୍ଠୀଦ୍ୱାରା ସ୍ଥାପିତ ସାହିତ୍ୟ ସଂସ୍ଥାର ନାମ ଥିଲା 'ସବୁଜ ସାହିତ୍ୟ ସମିତି' ଏବଂ ତାର ମୁଖପତ୍ରର ନାମ 'ଯୁଗବୀଣା' । ଓଡ଼ିଆସାହିତ୍ୟ-ରାଜ୍ୟରେ ଆଗାମୀ ଯୁଗର ଅଗ୍ରଦୂତର ଆବାହକ 'ଉତ୍କଳସାହିତ୍ୟ' ମାସିକ ସାହିତ୍ୟପତ୍ରର ପ୍ରାତଃସ୍ମରଣୀୟ-ସମ୍ପାଦକ ବିଶ୍ୱନାଥ କର ଗତ-ଯୁଗତ୍ୟାଗୀ ଏବଂ ନବ୍ୟଦୃଷ୍ଟି ଓ ନବ୍ୟସ୍ୱାଦ ସୃଷ୍ଟିକାରୀ ଏହି ସବୁଜଗୋଷ୍ଠୀର ଶ୍ଳାଘ୍ୟ ଭୂମିକାକୁ ପୂର୍ଣ୍ଣାଙ୍ଗୀକରଣରେ ସମର୍ଥନ ଓ ସ୍ୱାଗତ କରିଥିଲେ ଦୃଢ଼ତମ ସ୍ୱରରେ । ତେଣୁ ଅସପତ୍ନ ସମ୍ପାଦକ ବିଶ୍ୱନାଥଙ୍କୁ 'ସବୁଜ ସାହିତ୍ୟ ସମିତି'ର ପ୍ରବଳ ପ୍ରବକ୍ତା ଓ ପୃଷ୍ଠପୋଷକ-ପ୍ରତିଷ୍ଠାତା କହିଲେ ଆଦୌ ଅତ୍ୟୁକ୍ତି ବା ସତ୍ୟର ଅପଳାପ ହେବ ନାହିଁ । ଉତ୍କଳ ସମ୍ମିଳନୀ ଓ ଉତ୍କଳ ସାହିତ୍ୟ ସମାଜ ଏହି ପରସ୍ପର-ସହଯୋଗୀ ଦୁଇ ମହଦନୁଷ୍ଠାନ ମଧ୍ୟରେ ସମନ୍ୱୟରକ୍ଷାର୍ଥ ଯୋଗସୂତ୍ରକାରକ ଗୋଟିଏ ସ୍ଥାୟୀ କମିଟି ଗଢ଼ା ହୋଇଥିଲା । ତାହାର ସଭାପତି ରହିଥିଲେ ଭକ୍ତକବି ମଧୁସୂଦନ ରାଓ ଓ ସମ୍ପାଦକ ରହିଥିଲେ ବାଗ୍ମୀ ବିଶ୍ୱନାଥ କର । କମିଟିର ସଭ୍ୟରୂପେ ନିର୍ବାଚିତ ହୋଇଥିଲେ :

ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ
ରାଜା ବୀରବର ହରିଚନ୍ଦନ (ତାଳଚେର)
ରାଜା ବୈକୁଣ୍ଠନାଥ ଦେ ବାହାଦୁର (ବାଲେଶ୍ୱର)
ଫକୀରମୋହନ ସେନାପତି
ନୀଳମଣି ବିଦ୍ୟାରତ୍ନ (ବାଙ୍କୀ)
ରାମଶଙ୍କର ରାୟ
ଗୋପାଳବଲ୍ଲଭ ଦାସ
ଦାମୋଦର ପଟ୍ଟନାୟକ (ଢେଙ୍କାନାଳ)
ବ୍ରଜସୁନ୍ଦର ଦାସ
କାମପାଳ ମିଶ୍ର (ଯାଜପୁର)
ଗୋପାଳଚନ୍ଦ୍ର ପ୍ରହରାଜ
ନନ୍ଦକିଶୋର ବଳ
ଅଭିରାମ ଭଞ୍ଜ
ନୀଳମଣି ଗୁହ ଦେ

ନବପ୍ରତିଷ୍ଠିତ ଉତ୍କଳ ସାହିତ୍ୟ ସମାଜର ଘନ ଘନ ଅନୁଷ୍ଠିତ ଅଧିବେଶନମାନଙ୍କରେ ନର୍ମାଲ୍ ସ୍କୁଲର ଆତ୍ମୋନ୍ନତିକାମୀ ପ୍ରତିଭାଧର ଅଧ୍ୟାୟୀମାନେ ସକ୍ରିୟ ସହଯୋଗ କରିବା ସଙ୍ଗେ ସଙ୍ଗେ ବିଭିନ୍ନ ସାହିତ୍ୟିକ ବିଷୟ ଉପରେ ତାର୍କିକ ଆଲୋଚନା-ସମାଲୋଚନା କରିବାଦ୍ୱାରା ସେମାନଙ୍କ ଅନ୍ତର୍ନିହିତ ଶକ୍ତି ବହୁମୁଖୀ ସାହିତ୍ୟସାଧନା ପ୍ରତି ଉନ୍ମୁଖ ହୋଇଉଠିଥିଲା । ନର୍ମାଲ୍ ସ୍କୁଲର ତାତ୍କାଳିକ ପ୍ରଖରପ୍ରଜ୍ଞାବନ୍ତ ଅଧ୍ୟାୟୀମାନଙ୍କୁ ବାଣୀ-ସେବା-ମାର୍ଗରେ ସତତ ଆଗେଇ ନେଉଥିଲା ଏହି ଋତବାକ୍ୟଟିର ଉଦାତ୍ତ ଉଦ୍‌ବୋଧନ—

"ବଡ଼ ହେବାପାଇଁ ଅଛୁ ଯେବେ ଆଶା
ବଡ଼ କର ଆଗ ନଜ ମାତୃଭାଷା ।"

ଦ୍ୱୈବର୍ଷିକ ପାଠ୍ୟକ୍ରମ ସମ୍ବଳିତ ନର୍ମାଲ୍ ସ୍କୁଲ ସୁପ୍ରତିଷ୍ଠାରେ ଜୀବନ୍ତ ଥିଲପର୍ଯ୍ୟନ୍ତ ଉତ୍କଳ ସାହିତ୍ୟ ସମାଜ ସହିତ ଏହି ବିଖ୍ୟାତ ବାଣୀପୀଠର ପାରସ୍ପରିକ ସମ୍ପର୍କ ଅବିଚ୍ଛେଦ୍ୟ ରହିଥିଲ । ତାହାର ଫଳରେ ବହୁ ଲବ୍ଧ-ପ୍ରତିଷ୍ଠ ସାହିତ୍ୟିକ ଓ କବିଙ୍କୁ ଜନ୍ମ ଦେଇ-ଥିଲ ଐତିହାସିକ ଗୌରବସମ୍ପନ୍ନ ଏହି ନର୍ମାଲ୍ ସ୍କୁଲ । ଏ କଥା ବ୍ୟକ୍ତ କରିବାକୁ ଗଲବେଳେ ସ୍ୱତଃ ଆଖି ଆଗରେ ଭାସିଉଠନ୍ତି ଯେଉଁ କେତେଜଣ ପ୍ରମୁଖ ଲେଖକ, ଉତ୍କଳ ଭାରତୀଙ୍କର ପ୍ରିୟ ସନ୍ତାନ, ସେମାନେ ହେଲେ—

ଗୋବିନ୍ଦଚନ୍ଦ୍ର ରଥ
ଆର୍ତ୍ତତ୍ରାଣ ଶତପଥୀ
ଦୈତ୍ୟାରି କର
ମୃତ୍ୟୁଞ୍ଜୟ ରଥ କାବ୍ୟତୀର୍ଥ
କୁଳମଣି ଦାଶ କାବ୍ୟତୀର୍ଥ
ବିନାୟକ ମିଶ୍ର
ରାଘବ ମିଶ୍ର
ଜଗନ୍ନାଥ ମହାପାତ୍ର
ଭୁବନେଶ୍ୱର ମିଶ୍ର
ଉପେନ୍ଦ୍ର ତ୍ରିପାଠୀ
ଭଗବାନ ପତି
ବନମାଳୀ ପଣ୍ଡା (ବ୍ରହ୍ମଚାରୀ)

ଏମାନଙ୍କ ଛଡ଼ା ସ୍ୱାଧୀନମନା ପ୍ରାଣକୃଷ୍ଣ ପଢ଼ିଆରି (ପଣ୍ଡିତ କୁଳମଣି ଦାଶଙ୍କ ସହାଧ୍ୟାୟୀ ଓ ଭକ୍ତକବି ମଧୁସୂଦନ ରାଓଙ୍କ ଶିଷ୍ୟ) ଗାନ୍ଧି ମହାରାଜଙ୍କ ଆଗ୍ନେୟ ଆହ୍ୱାନରେ ନିଜ ସରକାରୀ ଚାକିରିର ମୋହକୁ ତୁଚ୍ଛ କରିଦେଇ ଦେଶମାତାର ବୃହତ୍ତର ସ୍ୱାର୍ଥଦୃଷ୍ଟିରୁ ମହାଭାରତୀୟ ମୁକ୍ତିସଂଗ୍ରାମକୁ ଲମ୍ଫ ଦେଇଥିଲେ । ତାଙ୍କ ଉଦ୍‌ବୃଦ୍ଧ କରିଥିଲା ଅନ୍ୟ ଏକ ମହତ୍ତର ଋତବାଣୀ—

"ମାତୃଭୂମି ମାତୃଭାଷା ଉଭୟେ ଜନନୀ,
ସେବ ତାଙ୍କୁ ଭକ୍ତିଭରେ ଦିବସ ରଜନୀ ।"

ଉଲ୍ଲିଖିତ ବରେଣ୍ୟ ଲେଖନୀଧରମାନଙ୍କ ପବିତ୍ର ସାରସ୍ୱତ ମାର୍ଗର ମୁଁ ହେଉଛି ସର୍ବଶେଷ ଯାତ୍ରୀ, ଯେହେତୁ ନର୍ମାଲ୍ ସ୍କୁଲର ସର୍ବଶେଷ ଛେକ (batch)ରେ ମୋର ଅଧ୍ୟାୟୀ ଜୀବନ, ପୁଣି ଏହି ସ୍କୁଲର ଇତିହାସରେ ମୁଁ ଥିଲି ବୟସରେ ସର୍ବକନିଷ୍ଠ । ଆମ ପରେ ଅନୁଷ୍ଠାନଟିର ଉଚ୍ଚତମ ସାହିତ୍ୟିକ ମାନ୍ୟତା ଖର୍ବିତ ହେଲ ଏବଂ ତାହାର ପଟ୍ଟ-ପରିବର୍ତ୍ତିନ

ଘଟି ନୂତନ ନାମ ହେଲା 'କଟକ ସେକେଣ୍ଡରି ଟ୍ରେନିଂ ସ୍କୁଲ' ଏବଂ ପୂର୍ବର ଏକବର୍ଷିକ ପାଠ୍ୟକ୍ରମ ସଙ୍କୁଚିତ ହୋଇ ଦ୍ୱିବର୍ଷିକରେ ପରିଣତ ହେଲା । ଏହି ପରିବର୍ତ୍ତିତ ପ୍ରଶିକ୍ଷଣ ବିଦ୍ୟାଳୟରେ ଯୋଗ ଦେବାକୁ ଯେଉଁମାନେ ପ୍ରାର୍ଥୀ ହେଲେ ସେମାନଙ୍କର ପ୍ରବେଶ ଯୋଗ୍ୟତା ସର୍ବନିମ୍ନ ମାଟ୍ରିକୁଲେସନ୍ (ଫାଷ୍ଟ ଡିଭିଜନ୍) କିମ୍ବା ତଦୂର୍ଦ୍ଧ୍ୱ ବୋଲି ବିଜ୍ଞାପିତ ହୋଇଥିଲା ।

## (୧୬) କାଳିଦାସ ଗ୍ରନ୍ଥାବଳୀ ଅଧ୍ୟୟନ

ପିପଠିଷାର ପରିପୂର୍ତ୍ତି ଓ ଜ୍ଞାନାହରଣ-ପିପାସାର ଉପଶାନ୍ତି ନିମନ୍ତେ ଦ୍ୱିତୀୟ ବର୍ଷର ଗ୍ରୀଷ୍ମାବକାଶରେ ଗ୍ରାମକୁ ଗଲାବେଳେ ମୁଁ ସଙ୍ଗରେ ନେଇଗଲି ସଟୀକ ସାନୁବାଦ 'କାଳିଦାସ ଗ୍ରନ୍ଥାବଳୀ'ର ପୂରା ସେଟ୍ । ପଣ୍ଡିତ କୁଳମଣି ଦାଶଙ୍କ ପ୍ରଣୀତ 'କାଳିଦାସ ସନ୍ଦର୍ଭ' ପୁସ୍ତକ ପଢ଼ିଲା ପରେ କାଳିଦାସଙ୍କ ସମସ୍ତ କାବ୍ୟ, ଅଭିଜ୍ଞାନଶାକୁନ୍ତଳମ୍ ନାଟକ ଓ ଅନ୍ୟାନ୍ୟ କ୍ଷୁଦ୍ର ରଚନାର ରସାସ୍ୱାଦ ବାସନା ମୋ' ମନରେ ବଳବତୀ ହୋଇଉଠିଥିଲା । ଏଣୁ ଦୀର୍ଘ ଗ୍ରୀଷ୍ମାବସର ହିଁ ଏଥିପାଇଁ ପ୍ରକୃଷ୍ଟ ସମୟ ହେବ ବୋଲି ଆଗରୁ ସ୍ଥିର କରିସାରିଥିଲି ।

ମୁଁ ଇତିପୂର୍ବରୁ କାଳିଦାସଙ୍କ ସମ୍ବନ୍ଧରେ ଗୁରୁଦେବଙ୍କଠାରୁ ହାସଲ କରିଥିଲି ଗୋଟାଏ ଅନତିବିସ୍ତୃତ ପ୍ରାଥମିକ ଧାରଣା । ଚୁମ୍ବକରେ ତାହା ଏହିପରି :

> ସଂସ୍କୃତ ମହାକବି କାଳିଦାସଙ୍କ ଶ୍ରେଷ୍ଠତ୍ୱ କେବଳ ଭାରତର ସୀମା ମଧ୍ୟରେ ଆବଦ୍ଧ ନୁହେଁ; ସେ ହେଉଛନ୍ତି ସମଗ୍ର ବିଶ୍ୱର ଅଦ୍ୱିତୀୟ ଅପ୍ରତିଦ୍ୱନ୍ଦ୍ୱୀ ମହାକବି ଓ ଆନ୍ତର୍ଜାତିକ କ୍ଷେତ୍ରରେ ପ୍ରତିଷ୍ଠାସମ୍ପନ୍ନ ସମସ୍ତ କବିଙ୍କର ଗୁରୁସ୍ଥାନୀୟ । ଜର୍ମାନ୍ ମହାକବି 'ଗେଟେ' ମୁକ୍ତ କଣ୍ଠରେ ଏହା ଉଦ୍‌ଘୋଷଣ କରିଛନ୍ତି ଏବଂ କାଳିଦାସ-ବିରଚିତ 'ଅଭିଜ୍ଞାନ-ଶାକୁନ୍ତଳମ୍' ନାଟକକୁ ପୃଥିବୀର ସର୍ବଶ୍ରେଷ୍ଠ ସାରସ୍ୱତ ସୃଷ୍ଟି ବୋଲି ସୁସ୍ପଷ୍ଟ ମତ ବ୍ୟକ୍ତ କରିଛନ୍ତି । ପରବର୍ତ୍ତୀ ଯେତେ ଅନ୍ତର୍ଜାତୀୟ କବି, ଏପରିକି ଗ୍ରୀସ ମହାକବି (ଗ୍ରୀକ୍ ଭାଷାରେ) ହୋମର୍, (ଲାଟିନ୍ ଭାଷାରେ) ଦାନ୍ତେ, (ଇଂରାଜୀ ଭାଷାରେ) ସେକ୍‌ସ୍‌ପିୟର୍ ଓ (ଜର୍ମାନୀ ଭାଷାରେ) ଗେଟେ ମଧ୍ୟ ମହାକବି କାଳିଦାସଙ୍କଦ୍ୱାରା ପ୍ରଭାବିତ । କାଳି-ଦାସଙ୍କ ତୁଳନା କେବଳ ସେହି କାଳିଦାସ ।

ଏହି ଧାରଣାକୁ ଭିତ୍ତି କରି ମୁଁ କାଳିଦାସ ଗ୍ରନ୍ଥାବଳୀର ଅଧ୍ୟୟନ ଆରମ୍ଭ କରିଦେଲି ଗ୍ରାମରେ । ସମସ୍ତ ପାଠ ବଙ୍ଗଳା ହରଫରେ ମୁଦ୍ରିତ ହୋଇଥିଲା । ପ୍ରଥମେ ଶ୍ଳୋକ, ପ୍ରତି ଶ୍ଳୋକତଳେ ଅନ୍ୱୟମୁଖୀ ଟୀକା ଓ ଶେଷରେ ଶ୍ଳୋକର ବଙ୍ଗଳା ଭାଷାରେ ପ୍ରାଞ୍ଜଳ ମନୋମୁଗ୍‌ଧକର ଅନୁବାଦ । ଯେତିକି ଆଗଉଥାଏଁ ମୋର ପୂର୍ବ ସୀମିତ ଧାରଣା ସେତିକି ପରିପୁଷ୍ଟ ଓ ବ୍ୟାପକ ହୋଇଉଠୁଥାଏ । କି ଅନୁପମ ବର୍ଣ୍ଣନାଚାତୁରୀ, ମନୋରମ ଶବ୍ଦ-ମାଧୁରୀ—ସବୁ ହିଁ ଅପୂର୍ବ, ଅବିନଶ୍ୱର ! ସତ୍ୟ ସତ୍ୟରେ ପ୍ରତ୍ୟେକ କୃତି, କାବ୍ୟ ହେଉ ବା ନାଟକ ହେଉ, ଗୋଟିଏ ଗୋଟିଏ ଅତଳ ରତ୍ନାକର । ସେଥିରେ କେତେ ଯେ ଦୁର୍ଲଭ

ଜ୍ଞାନ-ରତ୍ନ କୁଡ଼ କୁଡ଼ ଭର ରହିଛୁ, ତାର ଇୟତ୍ତା ନାହିଁ କ କଳନା ନାହିଁ । ମୋର ତରୁଣ ପାଠକଚିତ୍ତ ମୁଗ୍ଧଚକିତ ହୋଇଯାଉଥାଏ । ଅମୃତସ୍ରାବୀ ଭାବଧାରାର ପ୍ଲାବନରେ ମୁଁ ବୁଡ଼ିରହୁଥାଏଁ ସେତେବେଳେ । ମୋ' ମନ-ମରାଳଟି ସ୍ୱପ୍ନ-ଲୋକର ଜ୍ୟୋତ୍ସ୍ନାଲୋକରେ ପହଁର ପହଁର ବୁଲୁଥିଲା ପରି ଅନୁଭୂତ ହେଉଥାଏ । କ୍ଷୁଧା-ତୃଷାର ଅସ୍ତିତ୍ୱ ପୂରା ନିର୍ବାସିତ ହୋଇଯାଇଥାଏ । ଯେବିଦ୍ୟାମୃତଭୋଗରେ ଆତ୍ମସମାହିତ, ତାକୁ ପାର୍ଥିବ ଆହାର୍ଯ୍ୟର ଆକର୍ଷଣ କେବେ କ ଧ୍ୟାନଭ୍ରଷ୍ଟ କରିପାରେ ?

ଅନନ୍ୟଚିତ୍ତ ହୋଇ ସୁଦ୍ଧା ମୁଁ ସମଗ୍ର ଗ୍ରୀଷ୍ମାବସର ମଧ୍ୟରେ ଉକ୍ତ ବିଶାଳକାୟ ଗ୍ରନ୍ଥାବଳୀର ଏକତୃତୀୟାଂଶ ପୃଷ୍ଠାରୁ ଅଧିକ ଦୂର ଆଗେଇପାରିଲି ନାହିଁ । ଏଣେ କଟକ ପ୍ରତ୍ୟାବର୍ତ୍ତନର ସମୟ ଅତି ଆସନ୍ନ ହୋଇଗଲା । ଏଣୁ ଅବଶିଷ୍ଟ ଅଂଶତକ ପରବର୍ତ୍ତୀ ଅବକାଶମାନଙ୍କରେ ପଢ଼ି ଯେକୌଣସିମତେ ଶେଷ କରିବାକୁ ସଂକଳ୍ପବଦ୍ଧ ହେଲି ।

## (୧୩) ବୋର୍ଡ଼ ପରୀକ୍ଷାର କୋକୁଆଭୟ

ଏହି ଦ୍ୱିତୀୟ ବର୍ଷୀୟ ଶ୍ରେଣୀର ବର୍ଦ୍ଧିତ ପାଠ୍ୟକ୍ରମ ବଡ଼ କଠିନ ଓ କଷ୍ଟସାଧ୍ୟ । ସେହି କାରଣରୁ ଦ୍ୱିତୀୟ ବାର୍ଷିକ ପରୀକ୍ଷାରେ ସସମ୍ମାନରେ କୃତକାର୍ଯ୍ୟ ହେବା ମଧ୍ୟ କଠୋର ଅଧ୍ୟବସାୟସାପେକ୍ଷ । ତହିଁରେ ପୁଣି ପରୀକ୍ଷା ନଭେମ୍ବର ମଝିଲା ପରେ ପରେ ଆରମ୍ଭ ହୋଇ ସେହି ସପ୍ତାହରେ ସରିବ ଏବଂ ଫଳ ପ୍ରକାଶ ପାଇବ ଡିସେମ୍ବର କୋଡ଼ିଏ ତାରିଖ ପୂର୍ବରୁ । ଛାତ୍ରମାନେ ଫଳ ଶୁଣି ବଡ଼ଦିନ ଛୁଟିରେ ଘରକୁ ଯିବେ । ମୁଁ ହିସାବ କରି ଦେଖିଲି, ପୂଜାବକାଶର ସମୟକୁ ବାଦ୍ ଦେଲେ ପରୀକ୍ଷା ରହିଲା ମୋଟେ ଚାରିଟି ମାସ । ତେଣୁ ବାହାର ପାଠରୁ ମନକୁ ସମ୍ପୂର୍ଣ୍ଣରୂପେ ଓହରାଇଆଣି କେବଳ ନିର୍ଦ୍ଦିଷ୍ଟ ସ୍କୁଲ-ପାଠ୍ୟରେ ନିବଦ୍ଧ ରଖିବା ହିଁ ଶ୍ରେୟସ୍କର କର୍ତ୍ତବ୍ୟ ।

ଉଦ୍‌ବେଗର ଆତିଶଯ୍ୟ ହେତୁ ଦିନଗୁଡ଼ାକ ବଡ଼ ବେଗି ବେଗି ଗଡ଼ିଯାଉଥିଲା ପରି ଲାଗୁଥାଏ । ଯେତିକ ସମୟ ହାତରୁ ହ୍ରାସ ପାଉଥାଏ, ସେତିକ ଦ୍ୱୈଗୁଣ୍ୟ ମନରେ ବଢ଼ିଯାଉଥାଏ । ଚାହୁଁ ଚାହୁଁ ନଭେମ୍ବର ଆସି ହାବୋଡ଼ିଗଲା; ସେଇଟା ହେଲା ସବୁ ସହପାଠୀଙ୍କ ପରି ମୋ ପକ୍ଷରେ ମଧ୍ୟ ଗ୍ରହଣଆର ମାସ । ସେକାଳରେ ଯେଉଁ ଛାତ୍ରମାନେ ବେଶୀ ଭଲ ପଢ଼ୁଥିଲେ, ସେମାନଙ୍କ ମୁଣ୍ଡକୁ ପରୀକ୍ଷା ପୂର୍ବରୁ ଏହି ଗ୍ରହଣଆଭୂତ ବେଶୀ ଗ୍ରାସୁଥିଲା । ଯଦି କିଛି ଦୈବୀ ଅସୁବିଧା ଘଟିଯିବ କମ୍ବା ଅବାଗିଆ ପ୍ରଶ୍ନ ପଡ଼ିଯିବ, ତା'ହେଲେ ଅନଳସ ଆୟାସର ଆଶାନୁରୂପ ଫଳ ଭଣ୍ଡୁର ହୋଇଯିବ, ଏହା ହିଁ ଥିଲା ସେମାନଙ୍କ କୋକୁଆଭୟର ପ୍ରଧାନ କାରଣ । ମନସ୍ତତ୍ତ୍ୱ ମାନୁ ବା ନମାନୁ, ପରୀକ୍ଷା ସନ୍ଧାନ୍ତରେ ମୋ ମନଗଢ଼ା 'ଫର୍ମୁଲା' ଥିଲା ଅନ୍ୟମାନଙ୍କଠାରୁ ସ୍ୱତନ୍ତ୍ର । ନିଜ ନିଜ ଦକ୍ଷତାର ମାପ ଅନୁରୂପେ ସଭିଏଁ ଭଲ ପାସ୍‌ର ଆଶା ରଖନ୍ତି—ସେଥିରେ ଉଣେଇଶ-ବିଶ ହୋଇଗଲେ ସେମାନଙ୍କର ବିଶେଷ କିଛି ଯାଏ ଆସେ ନାହିଁ । ମୋ ମନ କିନ୍ତୁ ଗତି କରୁଥାଏ ଆଶା-

ନିର୍ଭରଶୀଳ ଦ୍ୱନ୍ଦ୍ୱଜନିତ ପରିଣତିର ମଧ୍ୟ ଦେଇ । ତେଣୁ ମୋର ଭୟ ଥିଲା ସର୍ବାପେକ୍ଷା ଅଧିକ ଉତ୍କଟ । ଅଧ୍ୟକ୍ଷଙ୍କଠାରୁ ଆରମ୍ଭ କରି ଶିକ୍ଷକମାନଙ୍କ ପର୍ଯ୍ୟନ୍ତ ସମସ୍ତେ ନିଃସଂଶୟ ଥିଲେ ମୋର ସର୍ବୋଚ୍ଚ କୃତକାର୍ଯ୍ୟତା ସମ୍ପର୍କରେ । ଯଦି କୌଣସି ଅପ୍ରତ୍ୟାଶିତ କାରଣରୁ ସେମାନଙ୍କ ଆଶା ମୁଁ ଚରିତାର୍ଥ କରି ନପାରେଁ, ମୋର ପରୀକ୍ଷାଗତ ପୂର୍ବ ମର୍ଯ୍ୟାଦା ଯଦି ଅକ୍ଷୁଣ୍ଣ ନରହେ, ଗୋଟିଏ ମାତ୍ର କମ୍ ନମ୍ବରର ବ୍ୟବଧାନରେ ସୁଦ୍ଧା ଯଦି ଯୋଗ୍ୟତା ତାଲିକାରେ ଦ୍ୱିତୀୟ ସ୍ଥାନକୁ ମୁଁ ଖସିଆସେଁ, ତାହାହେଲେ ଗୁରୁମାନଙ୍କ ଆଗରେ କିପରି ବାଟ ଚାଲିବି ? କେବଳ ଏହି ମାନସିକ ବ୍ୟାଧିଟି ଯୋଗୁ ହିଁ ମୁଁ ଏତେ ଶଙ୍କାଗ୍ରସ୍ତ, ଏତେ ଭୟଭୀତ ।

ନିର୍ଘଣ୍ଟ ଫର୍ଦ୍ଦ ଆସିଗଲା—୧୯୨୩ ନଭେମ୍ବର ୨୦ ତାରିଖ ସୋମବାରଠାରୁ ପରୀକ୍ଷା ଆରମ୍ଭ । ଛାତି ଧଡ଼ଧଡ଼େଇ ଉଠିଲା । ରାତିଦିନ ଛାତ୍ରମାନେ ପାରୁପର୍ଯ୍ୟନ୍ତେ ଲାଗିପଡ଼ିଲେ ସବୁ ବିଷୟର ପାଠ୍ୟବହିମାନ ଶେଷଥର ପାଇଁ ଅଣ୍ଟିରେ ଆମୂଳାନ୍ତ ଆଉଡ଼େଇବାରେ । ଗଡ଼ଗଡ଼ିଆ ପଡ଼ିଆର ତିନିଦିନବ୍ୟାପୀ ପାରମ୍ପରିକ 'ବାଲିଯାତ୍ରା' ମେଳାର ଆନନ୍ଦ-ଉପଭୋଗ ଏ ବର୍ଷ ଭାଗ୍ୟରେ କାହିଁ ?

## (୧୪) ମଣିଷର ପାଞ୍ଚ ଦଇବର ପେଞ୍ଚ—ଦାରୁଣ ପିତୃବିୟୋଗ

ବିହାର-ଓଡ଼ିଶା ଶିକ୍ଷା ବୋର୍ଡ଼ଦ୍ୱାରା ପରିଚାଳିତ ଆମ ବାର୍ଷିକ ପରୀକ୍ଷା ଆଉ ଛଅଟି ଦିନ ଥାଏ । ବିଦ୍ୟାଳୟର ଅଧ୍ୟକ୍ଷ ଦାଶରଥି ପାଣିଗ୍ରାହୀ ସନ୍ଧ୍ୟା ସାଢ଼େ ସାତଟା ବେଳେ ଗୋଟାଏ ସାଂଘାତିକ ଶୋକସମ୍ବାଦର ତାରବାର୍ତ୍ତା (ଟେଲିଗ୍ରାମ୍) ପାଇଲେ । ତାର-ପ୍ରେରକ ଥିଲେ ଭୋଲାନାଥ କର, ଯାହାଙ୍କୁ ମୋର ପିତୃଦେବ ରାମପୁର (ରେଢ଼ାଖୋଲର ରାଜଧାନୀ) ଗଡ଼ର ଫ୍ରେଜର ବାଳିକା ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକରୂପେ ବହୁ ବର୍ଷ ପୂର୍ବେ ନିଯୁକ୍ତ କରାଇଦେଇଥିଲେ । ପଲିଟିକାଲ୍ ଏଜେଣ୍ଟ ଫ୍ରେଜର୍ ସାହେବଙ୍କ ନିକଟରେ ବାରମ୍ବାର ଅନୁନୟ-ବିନୟ, ଆବେଦନ-ନିବେଦନ ଓ ଆନୁଷଙ୍ଗିକ ନାନା ଉଦ୍ୟମ କରି ବାପା ପହିଲେ ରାମପୁରସ୍ଥ ଉଚ୍ଚ ପ୍ରାଥମିକ ବାଳକ ବିଦ୍ୟାଳୟ ଏବଂ ତା'ପରେ ଏହି ବାଳିକା ବିଦ୍ୟାଳୟଟି ପ୍ରତିଷ୍ଠିତ କରାଇଥିଲେ । ପ୍ରଧାନଶିକ୍ଷକ ଭୋଲାନାଥ ହେବେ ପ୍ରତିବେଶୀ ଜ୍ଞାତି ହିସାବରେ ମୋର ଜଣେ ବୟୋଜ୍ୟେଷ୍ଠ ଭ୍ରାତା । ଟେଲିଗ୍ରାମ୍‌ର ବିଷୟବସ୍ତୁ ଥିଲା—"ରୋଗି ଚିକିତ୍ସା କରୁଥିବା ଅବସ୍ଥାରେ ଅତି ଆକସ୍ମିକ ଓ ଆଶ୍ଚର୍ଯ୍ୟକର ଭାବରେ ଉଦୟନାଥ କରଙ୍କର ନଭେମ୍ବର ୧୨ ତାରିଖ (ପବିତ୍ର କାର୍ତ୍ତିକ ମାସର ପଞ୍ଚକ ଏକାଦଶୀ ତିଥି) ଦିନ ଅକାଳ ବିୟୋଗ ଘଟିଲା ।"

ବିଷାଦବ୍ୟଥିତ ଅଧ୍ୟକ୍ଷ ମହୋଦୟ ଟେଲିଗ୍ରାମ ହସ୍ତରେ ଛାତ୍ରାବାସକୁ ଆସି ତତ୍ତ୍ୱାବଧାୟକ ପଣ୍ଡିତ କୁଳମଣି ଦାଶଙ୍କ ପ୍ରକୋଷ୍ଠରେ ପ୍ରବେଶକଲେ । କିପରି କି ଭାଷାରେ ଏ ଦାରୁଣ ଦୁଃସମ୍ବାଦ ମତେ ଜଣାଇବେ, ତାହା ଶୁଣିବାକ୍ଷଣି ମୋର କି ଶୋଚନୀୟ ଅବସ୍ଥା ହେବ, ଇତ୍ୟାଦି ବିଷୟରେ ଉଭୟେ ପରସ୍ପର ବିଚାର କରି ଗୋଟିଏ ମୀମାଂସାରେ

ଉପନୀତ ହେଲେ । ତପୂରେ ମୋ ନିକଟକୁ ଆସି ଅଭିଜ୍ଞବୟୋଚିତ ନାନା ଉପଦେଶ ବ୍ୟପଦେଶରେ କୌଶଳକ୍ରମେ ମୋ ମନକୁ ଭୁଲାଇ ଶେଷରେ ପିତୃବିୟୋଗ ବାର୍ତ୍ତାଟି ଫିଟାଇ କହିଲେ ।

'ବାପା ! ବାପା !' ବୋଲି କାତର ଚିତ୍କାରରେ ହଗ୍‌ବଗ୍‌-ଜ୍ଞାନଶୂନ୍ୟ ହୋଇ ଅଶ୍ରୁପ୍ଲାବିତ ଗଣ୍ଡରେ ଭେ-ଭେ ଡକାପାରିଲି ଖଟ ଉପରେ ଗୁଡ଼ିପିଡ଼ି ହୋଇ । ହିତାକାଂକ୍ଷୀ ଗୁରୁଦ୍ୱୟ ମତେ ତୋଳିଧରି ଖଟରେ ବସାଇଲେ ଏବଂ ନାନାପ୍ରକାରେ ବୁଝାଇ ଧୈର୍ଯ୍ୟ ଧାରଣ କରିବାକୁ ପିତୃସୁଲଭ ଭାଷାରେ ସାନ୍ତ୍ୱନାପ୍ରଦାନପୂର୍ବକ କୌଣସିମତେ ଶାନ୍ତ ସାଷ୍ଟମ କଲେ ।

ବିଜ୍ଞ ବିସ୍ତରଶୀଳ ଅଧ୍ୟକ୍ଷ ମହାଶୟ ମତେ ଗ୍ରାମକୁ ଛାଡ଼ିଲେ ନାହିଁ । ନବାରବ୍ଧ ଦ୍ୱୈବର୍ଷିକ ପାଠ୍ୟକ୍ରମସମ୍ବଳିତ 'ସେକେଣ୍ଡରି ଟ୍ରେନିଂ ସ୍କୁଲ'ର ଦୁଇଜଣ ପ୍ରଥମ ବର୍ଷୀୟ ଛାତ୍ରଙ୍କୁ ସଙ୍ଗେ ସଙ୍ଗେ ରେଳଯୋଗେ ମୂଳବସନ୍ତକୁ ରମାନା କରିଦେଲେ ଏବଂ ସ୍ୱହସ୍ତଲିଖିତ ଖଣ୍ଡିଏ ଚିଠି ତାଙ୍କ ହାତରେ ବଦେଇଙ୍କ ପାଖକୁ ପଠାଇଲେ । ସେଥିରେ ଏହି ମର୍ମରେ ଲେଖାଥିଲା—"କୃଷ୍ଣ ଏଠାରେ ରହି ପରୀକ୍ଷା ଦେବ ଏବଂ ଜ୍ୟେଷ୍ଠପୁତ୍ର ହିସାବରେ ବିଧିରକ୍ଷା ପାଇଁ ଆଜ ରାତିଠାରୁ ନିୟମିତରୂପେ ହବିଷ୍ୟ କରିବ । ଆପଣ ସେଠାରେ ସ୍ୱର୍ଗତ ସାନଭାଇଙ୍କ ଅନ୍ତ୍ୟେଷ୍ଟିକ୍ରିୟା ପୂର୍ଣ୍ଣାଙ୍ଗରୂପେ ଯଥାବିଧି ସମ୍ପାଦନ କରିବେ ।"

## (୧୫) ଶୋକୋଚ୍ଛ୍ୱାସ ମଧ୍ୟରେ ଅନ୍ତ୍ୟେଷ୍ଟି ଓ ପରୀକ୍ଷା ଶେଷ

ଗଙ୍ଗାଧର ମହାପାତ୍ର ସେତେବେଳେ ସେକେଣ୍ଡରି ଟ୍ରେନିଂ ସ୍କୁଲର ସର୍ବପ୍ରଥମ ଦଫାରେ ନିର୍ବାଚିତ ହୋଇ ପ୍ରଥମବର୍ଷୀୟ ଶ୍ରେଣୀର ଅଧ୍ୟାୟୀ ଥାଆନ୍ତି । ସେ ଥିଲେ ପୁରୀଜିଲାସ୍ଥ ଷୋଳ ଶାସନ ମଧ୍ୟରେ ସର୍ବୋଚ୍ଚପ୍ରତିଷ୍ଠ ସାମନ୍ତ ବ୍ରାହ୍ମଣ ପରିବାରର ସନ୍ତାନ ଏବଂ କର୍ମ-କର୍ମଣି ବିଦ୍ୟାରେ ଖୁବ୍ ପାରଙ୍ଗମ—ସଂସ୍କୃତଜ୍ଞ ଓ I. A. ପାସ୍ ସାର୍ଟିଫିକେଟ୍‌ଧାରୀ ମଧ୍ୟ । ତାଙ୍କୁ ଡକରା ଗଲା । ସେ ସ୍ୱତଃପ୍ରବୃତ୍ତ ହୋଇ ଅନ୍ତ୍ୟେଷ୍ଟିକ୍ରିୟା ସମ୍ପାଦନର ଯଥାବିହିତ ସମସ୍ତ ଦାୟିତ୍ୱ ଗ୍ରହଣ କଲେ । ହଷ୍ଟେଲ୍ ବାଲକ ହକରା ହୋଇ ଡା'ଘରୁ ଆସିଲା ଏବଂ ପୁରୋହିତ ଗଙ୍ଗାଧରଙ୍କ ବରାଦୀ ତାଲିକାନୁଯାୟୀ ଭୁଠକୁ ଯିବା ସରଞ୍ଜାମମାନ ବଜାରରୁ କିଣିଆଣିଲା । ରାତି ପ୍ରାୟ ସାଢ଼େ ନଅଟାବେଳେ ମହାପାତ୍ର ସାଆନ୍ତେ ମତେ କଡ଼େ କଡ଼େ ରଖି କାଠଯୋଡ଼ି ବଉଳତଳକୁ ବାହାରିଲେ । ଜଣକ ସପକ୍ଷ ୨େକ ଗୋବିନ୍ଦ ବାରିକ ଆଗେ ଆଗେ ବାଟ କଢ଼ାଉଥାଏ । ବିଶ୍ୱସ୍ତ ଫାଟକ-ରକ୍ଷକ ମାଳମଣି ଉଜାଲି ହାରିକେନ୍ ଲଣ୍ଠଣ ଧରି ମଝିରେ ଚାଲିଥାଏ । ନିର୍ଦ୍ଦିଷ୍ଟ ଭୁଠରେ ପହଞ୍ଚିଯାଇ ଅଟକିଲୁଁ । ଦିନ ଦିବସର କ୍ରିୟା ସେହି ରାତିରେ ଠିକ୍ ବୈଦିକ ବିଧାନମତେ ଶେଷ କରି ବାରଟା ପୂର୍ବରୁ ସମସ୍ତେ ହଷ୍ଟେଲ୍‌କୁ ଫେରିଆସିଲୁଁ । ହବିଷ୍ୟର ବିଧାନାନୁସାରେ ଏଣିକି ପ୍ରତ୍ୟହ ପୂର୍ବାହ୍ଣରେ ଭୁଠକାମ ଚାଲିଲା । ଚତୁର୍ଥ, ସପ୍ତମ ଓ ନବମ ଦିନ ସକ୍ଷିପ୍ତ ଆୟୋଜନରେ ବ୍ରାହ୍ମଣଭୋଜନର ମଧ୍ୟ ବ୍ୟବସ୍ଥା ହେଲା ।

'ରାଜଦ୍ୱାରେ ଶ୍ମଶାନେ ଚ ଯ ତିଷ୍ଠତି ସ ବାନ୍ଧବଃ'—ମୋର ପିତୃବିୟୋଗଜନିତ ଘୋର ବିପଦବେଳେ ପ୍ରକୃତ ବନ୍ଧୁରୂପେ ସହାୟତା କରିଥିବା ବିସ୍ମୋକୋ୍ୟଯୁତାସମ୍ପନ୍ନ ଏହି ଗଙ୍ଗାଧର ମହାପାତ୍ରଙ୍କୁ ମୁଁ ବରାବର 'ଗଙ୍ଗାଭାଇନା' ଡାକି ଭକ୍ତି କରିବାକୁ ଲାଗିଲି ସେହିଦିନଠାରୁ । ଦୁଇବର୍ଷର ଅଧ୍ୟାପ୍ତି ଜୀବନ ପରେ ସେ ପ୍ୟାରୀମୋହନ ଏକାଡେମୀରେ ଶିକ୍ଷକର ଜୀବନ ଆରମ୍ଭ କଲେ ଏବଂ ଶେଷପର୍ଯ୍ୟନ୍ତ ସେହି ହାଇସ୍କୁଲରେ ପ୍ରଶଂସାର ସହିତ ଶିକ୍ଷକତା କରି ଓ ଶତ ଶତ ଛାତ୍ରଛାତ୍ରୀଙ୍କୁ ଘରୋଇ ଶିକ୍ଷକରୂପେ ଅଧ୍ୟାପନା କରି କଟକ ଜନସାଧାରଣଙ୍କର ଅଶେଷ ଶ୍ରଦ୍ଧାଭକ୍ତିର ଭାଜନ ହୋଇପାରିଥିଲେ ।

କଟକରେ ଆମ ଗ୍ରାମର ବହୁ ଛାତ୍ର ମେସ୍‌ରେ ରହି ସ୍କୁଲ କଲେଜରେ ଅଧ୍ୟୟନ କରୁଥିଲେ ଓ ଚାକିରି କରିଥିବା କେତେକ ବ୍ୟକ୍ତି ବସା କରି ସପରିବାର ବାସକରୁଥିଲେ । ମୋ ଉପରେ ଏଡ଼େ ବଡ଼ ବିପତ୍ପାତ ହୋଇଗଲା, ଅଥଚ ଜଣେ ହେଲେ କରିବଂଶୀ କେହି ଖବର ପାଇପାରିଲେ ନାହିଁ । ମିସନ୍ ହାଇସ୍କୁଲରେ ହେଡ୍‌ପଣ୍ଡିତରୂପେ ଶିକ୍ଷକତା କରୁଥିବା ପଣ୍ଡିତ ମାୟାଧର ଦାଶ କାବ୍ୟତୀର୍ଥ ହିଁ କେବଳ ଦୈବାତ୍ କୌଣସି ସୂତ୍ରରୁ ଦୁଃସମ୍ବାଦଟି ପାଇ ଟେଲିଗ୍ରାମ୍ ମିଳିବାର ପରଦିନ ଭୋର୍ ସମୟରେ ମୋ ନିକଟରେ ପହଞ୍ଚି ବହୁଭାବରେ ମୋତେ ସାନ୍ତ୍ୱନିତ କରିଥିଲେ । ତାଙ୍କଦ୍ୱାରା କଟକସ୍ଥ ଗ୍ରାମବାସୀମାନଙ୍କ ମଧ୍ୟରେ ବାପାଙ୍କ ଆକସ୍ମିକ ଦେହାନ୍ତର ଶୋକବାର୍ତ୍ତାଟି ପ୍ରଚାରିତ ହୋଇଗଲା । ପରେ ପରେ ସେମାନେ ଜଣ ଜଣ ହୋଇ ମତେ ସନ୍ତୋଳିବାକୁ ଆସିଥିଲେ ।

ବାପାଙ୍କ ମହାପ୍ରୟାଣର ନବମ ଦିବସ ପଡ଼ିଲା ଆମ ପରୀକ୍ଷାର ପ୍ରଥମ ଦିନ (ନଭେମ୍ବର ୨୦ ତାରିଖ ସୋମବାର) । ସେଦିନର ଘାଟକାମ ସରୁଁ ସରୁଁ ପୂର୍ବାହ୍ନ ପ୍ରାୟ ଦଶଟା ପାଖ ହୋଇଗଲା । ପରୀକ୍ଷା ଆରମ୍ଭ ହେବାର କଥା କଣ୍ଟାଏ କଣ୍ଟାଏ ଠିକ୍ ୧୦ଟାରେ । ତେଣୁ ସେହି ଶୋକାହତ ମାନସରେ ଘାଟରୁ ସିଧାସଳଖ ସ୍କୁଲକୁ ଆସି ଯୋଡ଼ହସ୍ତରେ 'ନିରାଶ୍ରୟଂ ମାଂ ଜଗଦୀଶ ରକ୍ଷ' କହି ଓ ଗ୍ରାମର ଇଷ୍ଟଦେବ ବିଘ୍ନବିନାଶନ ସିଦ୍ଧିଦାତା ବିଦ୍ୟାଦାତା ଶ୍ରୀ ଶ୍ରୀ ଗଣେଶଙ୍କ ନାମ ସ୍ମରଣ କରି କରି ପରୀକ୍ଷା-କକ୍ଷ ମଧ୍ୟକୁ ପ୍ରବେଶ କଲି । ଦଶାହରେ ମଧ୍ୟ ଅବିକଳ ଏହି ବିଶ୍ରାମହୀନ ଅବସ୍ଥା । କୌଣସିପ୍ରକାରେ ଦ୍ୱାଦଶାହ ପର୍ଯ୍ୟନ୍ତ ସବୁ କାମ ନିର୍ବିଘ୍ନରେ ତୁଟିଗଲା । ଦ୍ୱାଦଶାହରେ ଅପେକ୍ଷାକୃତ ଅଧିକସଂଖ୍ୟକ ନିମନ୍ତ୍ରିତ ବ୍ୟକ୍ତି ଓ କଟକସ୍ଥ ଗ୍ରାମୀୟ ଜ୍ଞାତିଙ୍କ ପାଇଁ ଭୋଜ୍ୟସାମଗ୍ରୀ ପ୍ରସ୍ତୁତ ହୋଇଥିଲା । ଏହିରୂପେ ଅନ୍ତ୍ୟେଷ୍ଟି-କ୍ରିୟା ନିଷ୍ପାଦନ ରୂପ 'ପିତୃକାର୍ଯ୍ୟ' ଓ ବିଭାଗୀୟ ପରୀକ୍ଷାର ସମସ୍ତ ପତ୍ରର ସନ୍ତୋଷଜନକ ଉତ୍ତରଦାନ ରୂପ 'ରାଜକାର୍ଯ୍ୟ' ଏ ଉଭୟର ସମାନ୍ତରାଳଭାବରେ ପରିସମାପ୍ତି ଘଟିଲା ଏକ ହିଁ ଦିବସରେ, ଅର୍ଥାତ୍ ନଭେମ୍ବର ୨୩ ତାରିଖରେ ।

ଏଠାରେ ଗୋଟିଏ ଅତ୍ୟାଶ୍ଚର୍ଯ୍ୟକର ବିଷୟ ବିଶେଷ ଉଲ୍ଲେଖନୀୟ । ଟେଲିଗ୍ରାମ୍ ମିଳିବାର ପ୍ରାୟ ଦଶଦିନ ପୂର୍ବରୁ ଦେବୋପମ ପିତାଙ୍କଠାରୁ ଖଣ୍ଡିଏ ଚିଠି ଘରକୁ ଓ ଆଉ ଖଣ୍ଡିଏ ଚିଠି ମୋ ପାଖକୁ ଆସିଥିଲା ସମକାଳରେ । ଉଭୟରେ ଲେଖା ଥିଲା ଯେ, ନଭେମ୍ବର

୧୨ ତାରିଖ (କାର୍ତ୍ତିକ ପଞ୍ଚକାରମ୍ଭ ପ୍ରବୋଧନୀ ଏକାଦଶୀ) ଦିନ ସେ ଗୃହରେ ପହଞ୍ଚିବେ । ବିଚିତ୍ର କଥା, ଠିକ୍ ସେହି ପ୍ରବୋଧନୀ ବଡ଼-ଏକାଦଶୀ ଦିନ ହିଁ ତାଙ୍କର ସ୍ୱର୍ଗଯାତ୍ରା ହେଲା । ମୋ ପିତୃଦେବ କେଡ଼େ ପୁଣ୍ୟଶ୍ଳୋକ ଓ ଦେବତାତ୍ମା ଥିଲେ, ତାହା ଏହି ଘଟଣାରୁ ସହଜରେ ପ୍ରମାଣିତ ହୁଏ । ଚିଠିରେ ତାଙ୍କଦ୍ୱାରା ପ୍ରୟୋଗ ହୋଇଥିବା 'ଗୃହ' ଶବ୍ଦଟିର ଅର୍ଥ ଯେ ପାର୍ଥିବ ଅର୍ଥ 'ସ୍ୱଗୃହ' ନ ହୋଇ ପାରମାର୍ଥିକ ତାତ୍ପର୍ଯ୍ୟାର୍ଥ 'ସ୍ୱର୍ଗଗୃହ' ହେବ, ତାହା ଆମେ ମୂଢ଼ କଳୁଷିତାତ୍ମାମାନେ ଜାଣିପାରିଥା'ନ୍ତୁ କପରି ?

'ଅମଙ୍ଗଳ ହିଁ ମଙ୍ଗଳର ଜନକ', 'ବିପଦ ହିଁ ମନୁଷ୍ୟର ହିତକାରୀ ବନ୍ଧୁ ଓ ମାର୍ଗ-ନିର୍ଦ୍ଦେଶକ'—ପିତୃମୁଖନିଃସୃତ ଏହି ଅଭୟ ବାଣୀକୁ ବେଦବାକ୍ୟରୂପେ ମାନ୍ୟ କରି ସତର ବର୍ଷ ବୟସର ସମ୍ପୂର୍ଣ୍ଣ ଅସହାୟ ସନ୍ତାନଭଙ୍କ ମୁଁ ପରିବାରଚାଳନାର ଗୁରୁଭାରକୁ ନତମସ୍ତକରେ ଗ୍ରହଣ କଲି ଏବଂ ସେହି ଦାୟିତ୍ୱ ସହିତେ ଅନାଗତ ଭବିଷ୍ୟତର ଯାବତୀୟ ଭଲ-ମନ୍ଦକୁ ସର୍ବନିୟନ୍ତା ପରମକାରୁଣିକ ପରମେଶ୍ୱରଙ୍କ ପାଦପଦ୍ମରେ ସମର୍ପଣ କରିଦେଲି ।

ସେତିକବେଳେ ମନେପଡ଼ିଗଲା ଗତବର୍ଷ ପୂଜାବକାଶରେ ପ୍ରମୋଦଭ୍ରମଣକାଳୀନ 'ଘୋଡ଼ାଗଡ଼ ମନ୍ଦିର'ର ପିତୃହରା ତେରବର୍ଷ ବୟସ୍କ ପୂଜକାରି ପିଲାଟିର କଥା । ସେ ବୟସରେ ମୋ'ଠାରୁ ଚାରିବର୍ଷ ସାନ ହୋଇ ମଧ୍ୟ ଅସୀମ ସାହସ ଓ ଅଟଳ ଆତ୍ମବିଶ୍ୱାସ ସହିତ ପିତୃଶୋକର ମର୍ମୁରଦାହକୁ ଅବଜ୍ଞା କରି ସମଗ୍ର ପରିବାରର ଦାୟିତ୍ୱ ମୁଣ୍ଡାଇ ଜଟିଳ ଜୀବନପଥରେ ଆଗେଇ ଚାଲିଛି ଏବଂ ତା' ପିତାର ଅପୂର୍ଣ୍ଣ ଆଶାକୁ ପରିପୂର୍ଣ୍ଣ କରିବାକୁ ଦମ୍ଭରେ ତାର ଅଣ୍ଟା ଭିଡ଼ିଛି । ମୁଁ ମଧ୍ୟ ସେଇ ମନସ୍ୱୀ ପିଲାଟି ପରି ସଦ୍ୟ ପିତୃହରା ଆଜି । ଭଗବାନଙ୍କ କୃପା ଭିକ୍ଷା କଲି ଏବଂ ତାର କର୍ମମୁଖର ଆନନ୍ଦମୁଖର ଉଦ୍‌ଯୋଗୀ ଜୀବନରୁ ଶିକ୍ଷଣୀୟ ପ୍ରେରଣାର ସମିଧ ସଂଗ୍ରହ କରିଆଣି ପ୍ରବୋଧନାରେ ଉଦ୍‌ବୋଧିତ ହେଲି—ମୋ ପିତା ମଧ୍ୟ କେତେ ଆଶାର ଅଳକାପୁରୀ ତୋଳିବାକୁ କାର୍ଯ୍ୟାରମ୍ଭ କରିଥିଲେ; ମାତ୍ର ବିଧିବିଡ଼ମ୍ବନାରୁ ଅକାଳରେ କାଳକବଳିତ ହୋଇଗଲେ; ତାହାହେଲେ ମୁଁ କାହିଁକି ମୋର ଅଟଳ ଅବିଚଳ ଭଗବଦ୍ ବିଶ୍ୱାସ ବଳରେ ପିତାଙ୍କ ଅପୂର୍ଣ୍ଣ ଆଶା-ଅଳକାର ସୌଧଗୁଡ଼ିକୁ ସମ୍ପୂର୍ଣ୍ଣ କରିନପାରିବି ? କେବଳ ଏତିକି ନୁହେଁ, ଭାବନା-ରାଜ୍ୟରେ ବହୁ ଦୂର ଆଗେଇଯାଇ ନିଜ ଅନୁଭବକୁ ଭିତ୍ତି କରି ମନେ ମନେ ସିଦ୍ଧାନ୍ତ କରିନେଲି—ପିତୃହରା ବାଳକମାନେ ଭାଗ୍ୟବନ୍ତ, ସେମାନଙ୍କ ଭବିଷ୍ୟତ ଆଲୋକ-ମୟ; ଯେହେତୁ ଅସରନ୍ତି ମାତୃସ୍ନେହ ପିତୃବିୟୋଗ ଚିନ୍ତାକୁ ତା' ମନରୁ ପାସୋରାଇ-ଦେଇଥାଏ । ମାତ୍ର ମାତୃହରା ବାଳକମାନେ ଏକାନ୍ତ ଭାଗ୍ୟହୀନ, କାରଣ ଦୁର୍ଲଭ ମାତୃସ୍ନେହର ସ୍ୱାଦମାଧୁରୀ ସେମାନଙ୍କ ଜୀବନରେ ଚିରଦିନପାଇଁ ଅନୁପଲବ୍ଧ ରହିଯାଏ ।

## (୧୭) ଦୀର୍ଘ ପଦଯାତ୍ରା—ମୂଳବସନ୍ତରୁ ତେରେଡ଼ାଖୋଲ

ମୋ ମାନସିକ ସ୍ଥିତିରେ କିଛିଟା ପରିବର୍ତ୍ତନ ଆଣିବା ଉଦ୍ଦେଶ୍ୟରେ ମର୍ମଜ୍ଞ ଅଧକ୍ଷ ମହୋଦୟ ପରୀକ୍ଷା ଶେଷ ହେବା ପରେ ମତେ ଗ୍ରାମକୁ ଚାଲିଯିବାପାଇଁ ଅନୁଜ୍ଞା ଦେଲେ ।

ତଦନୁଯାୟୀ ମୁଁ ମୋ ମନକୁ ପ୍ରକୃତିସ୍ଥ କରି ଗ୍ରାମାଭିମୁଖୀ ହେଲି । ମାତ୍ର ଦାଣ୍ଡଘରର ଏରୁଣ୍ଡିବନ୍ଧରେ ପାଦପାତ କରୁନକରୁଣୁ ଶୋକଶୀର୍ଣ୍ଣା ବୋଉ ମତେ ବକ୍ଷରେ ଜଡ଼ାଇ-ଧରି ବିଳପିବାକୁ ଲାଗିଲା । ତାର ସିନ୍ଦୂରଲୁପ୍ତ କପାଳ, କାଚକଙ୍କଣବିହୀନ ନଗ୍ନ ହସ୍ତ, ତୈଳହୀନ ରୁକ୍ଷକେଶ ଓ ଛେଦାପରିହିତ ମ୍ଳାନମଳିନ ବେଶ ଦେଖିଦେଲାମାତ୍ରେ ଅଜ୍ଞାତ-ସାରରେ ମୋ ଅନ୍ତସ୍ତଳ ମଧ୍ୟରୁ ରୁହାକୁ ରୁହା କୋହର ହପ୍‌ଟା ଉଦ୍‌ଗତ ହେବାକୁ ବସିଲା । ମୁଁ ତାକୁ ଧୈର୍ଯ୍ୟର ସହିତ ଦମନ କରି ଅଧୀରହୃଦୟା ବୋଉକୁ ନାନାମତେ ପ୍ରବୋଧିବାକୁ ଲାଗିଲି ଏବଂ ଦୁଃଖ, ଅଭାବ ବାଳୁତ ପୁତ୍ରକନ୍ୟାଙ୍କ ଭବିଷ୍ୟତ, ଏସବୁ ଭାଳେଣିକୁ ଆଦୌ ମୁଣ୍ଡରେ ସ୍ଥାନ ନଦେଇ ମନରେ ସାହସ ବାନ୍ଧିବାକୁ ବୁଝାଇଲି । ଯେଉଁ ଭଗବାନ୍ ଦୁଃଖ, ଅଭାବରେ ଘାରନ୍ତି, ସେଇ ପୁଣି ବେଳ ଆସିଲେ ଦୁଃଖ ଅଭାବ ହରନ୍ତି, ତା' ବଦଳରେ ସୁଖ ସଦ୍ଭାବ ଭରନ୍ତି ।

ଶୋକୋଚ୍ଛ୍ୱାସର ବେଗ କ୍ରମେ ଥମିଲା, ଚନ୍ଦ୍ରାର ଲଦନ ମଧ୍ୟ କମିଲା । ଏହି ସମୟରେ ରେଢ଼ାଖୋଲ ରାଜ୍ୟର ଜଣେ ମାନ୍ୟଗଣ୍ୟ ବିଶିଷ୍ଟ ଧନିକ ଓ ବାପାଙ୍କ ଅଜ୍ଞାବହ ଅନୁଗତ ଶାମଣିଙ୍ଗାବାସୀ ଯୁବକ ଜନସେବକ କୃଷ୍ଣବିହାରୀ ଗଡ଼ତିଆଙ୍କଠାରୁ ମୁଁ ଖଣ୍ଡିଏ ସମବେଦନାଜ୍ଞାପକ ତଥା ସହାନୁଭୂତି ପୂରିତ ପତ୍ର ପାଇଲି । ତହିଁରୁ ସାହାଯ୍ୟପ୍ରଦାନର ପ୍ରଚ୍ଛନ୍ନ ଇଚ୍ଛା ସୂଚିତ ହେଉଥାଏ । ଦରଦୀ କୃଷ୍ଣବିହାରୀ ମତେ ସନିର୍ବନ୍ଧ ଅନୁରୋଧ କରିଥାନ୍ତି ଅବିଳମ୍ବେ ସେଠାକୁ ଯିବାପାଇଁ । ଚିଠିଟି ହସ୍ତଗତ ହେବାର ତିଆସିଦିନ ତାଙ୍କଠାରୁ ପଚିଶ ଟଙ୍କାର ଗୋଟିଏ ମନିଅର୍ଡ଼ର ମଧ୍ୟ ମୋ ହାତକୁ ଆସିଲା । ଶୁଦ୍ଧିକ୍ରିୟାରେ ବହୁତ ଅର୍ଥ ବ୍ୟୟିତ ହୋଇଯାଇଥିବା ଯୋଗୁଁ ଟଙ୍କାପଇସା ଆଉ ଘରେ ନଥିବ, ଏହି ଆଶଙ୍କା କରି ମୋ ବାଟଖର୍ଚ୍ଚ ଉଦ୍ଦେଶ୍ୟରେ ସେ ଏତିକି ଟଙ୍କା ପଠାଇଛନ୍ତି ବୋଲି କୁପନ୍‌ରେ ଲେଖିଥାନ୍ତି । କୃଷ୍ଣବିହାରୀଙ୍କ ଆଶଙ୍କା ଥିଲା ନିରାଟ ସତ୍ୟ ଓ ବାସ୍ତବ । ଅର୍ଥାଭାବ ହେତୁରୁ ରେଳରେ ଯିବାର କଳ୍ପନାକୁ ପୁରାପୁରି ଛାଡ଼ିଦିଆଯାଇଥିଲା । ତେଣୁ ଘରୁ ରେଢ଼ାଖୋଲ ପର୍ଯ୍ୟନ୍ତ ଚାଲି ଚାଲି ଯିବା ଛଡ଼ା 'ନାନ୍ୟଃ ପନ୍ଥା ବିଦ୍ୟତେଽୟନାୟ' ବୋଲି ଚୂଡ଼ାନ୍ତ ନିଷ୍ପତ୍ତି କରିଥିଲି । ଏବେ ମନିଅର୍ଡ଼ର ପାଇବା ପରେ ବି ସେହି ନିଷ୍ପତ୍ତି ଅପରିବର୍ତ୍ତିତ ରହିଲା ।

ସୁହୃଦ୍‌ବର କୃଷ୍ଣବିହାରୀଙ୍କ ଶ୍ରଦ୍ଧାଶୀଳ ମୂର୍ତ୍ତି ମୋ ମନଶ୍ଚକ୍ଷୁ ଆଗରେ ଜଳଜଳ ହୋଇ ପ୍ରତିନିୟତ ଭାସିଉଠିଲା । ଦଦେଇଙ୍କ ସଙ୍ଗରେ ଯେବେ ଅବିଳମ୍ବେ ରେଢ଼ାଖୋଲ ବାହାରିଲି, ସମ୍ଭବତଃ ଡିସେମ୍ବର ପହିଲା କି ଦୁଇ ତାରିଖ ଦିନ । ପାଞ୍ଜି ଦେଖି ଦଦେଇ ଅନୁକୂଳ ଯାତ୍ରାର ଅମୃତ ବେଳା ସ୍ଥିର କରିଥିଲେ । ପଦବ୍ରଜରେ ଅନ୍ୟୂନ ଶହେ ମାଇଲ ଦୀର୍ଘ ପଥଯାତ୍ରାର ଅପୂର୍ବ ସୁଖାନୁଭୂତି—ମୋ ଜୀବନରେ ତାହା ହିଁ ପ୍ରଥମ ଓ ତାହା ହିଁ ଶେଷ । ମୋର ଆତ୍ମବିଶ୍ୱାସ ବେଳକୁ ବେଳ ପ୍ରବୃଦ୍ଧ ହୋଇ ରୁଦ୍ଧ ଅନ୍ତସ୍ତଳଟାକୁ ବିସ୍ତାରିତ କରିଦେଉଥାଏ । ମନେହେଉଥାଏ, ପିତୃହରାର ସହାୟ ପରମେଶ୍ୱର ସତେ ଯେପରି ଆଗେ ଆଗେ ରହି ମତେ ବାଟ ଦେଖାଉଛନ୍ତି ।

କାଲିପରି ମନେଅଛି ସେଇ ଛଅଦିନିଆ ଯାତ୍ରାର କଥା । ପ୍ରଥମଦିନ ଗାଁରୁ ଖାଇପିଇ ସକାଳ ୮ଟାରେ ବାହାରିଲୁଁ । ପ୍ରାୟ ଦଶ କୋଶଠେଇଁ ମହାନଦୀକୂଳ 'ଚହଟା' ଗାଁରେ ସଞ୍ଜବେଳିଆ ପହଞ୍ଚିଲୁଁ । ସେଠୁ ଝିଟିଝିଟିଆ ପୂର୍ବରୁ ବାହାରି ଠିକ୍ ଦଶକୋଶ ପରେ ଢେଙ୍କାନାଳଗଡ଼ ହାଟରେ ଡେରା ବାନ୍ଧିଥିଲୁଁ । ସେଠିକି ଅନୁଗୁଳ ସହର କୋଡ଼ିଏ କୋଶ । ସେତିକି ବାଟ ଯିବାକୁ ଝଡ଼ା ଦୁଇଦିନ ଲାଗିଥିଲା । ପଞ୍ଚମ ଦିନରୁ ପଡ଼ିଲା ଜଙ୍ଗଲିଆ ରାସ୍ତା । ସେଦିନ ସନ୍ଧ୍ୟାରେ ଆମର ରହଣି ହୋଇଥିଲା ଏକ ବଣୁଆ ବସ୍ତିରେ । ସେଠା ଲୋକଙ୍କ ଅତିଥିସତ୍କାର ଅନ୍ୟାନ୍ୟ ଠାଆଁର ସତ୍କାର ତୁଳନାରେ ଅଧିକ ସ୍ମରଣୀୟ । ଖୁବ୍ ଶାନ୍ତିରେ ସେ-ରାତିଟି ଗାଢ଼ନିଦ୍ରା-ସୁଖ ଉପଭୋଗ କରିଥିଲୁଁ । ସୂର୍ଯ୍ୟୋଦୟର ପ୍ରାକ୍କାଳରେ ଆମର ନିଦ୍ରା ଭଙ୍ଗ କରିଦେଲା କୁମ୍ଭାଟୁଆ ପକ୍ଷୀର ଉଚ୍ଚ ନିନାଦ । ସେତିକିବେଳେ ମୋର ମନେପଡ଼ିଗଲା କବିବରଙ୍କ ଅମର ଲେଖନୀର ଅମୂଲ୍ୟ ପଦଟି—

"କୁମ୍ଭାଟୁଆ ଖଗ ପ୍ରଭାତ-ଡଗର
ରଙ୍ଗେ ବଜାଇଲା କାନନ-ନାଗର ।"

ସେତେବେଳେ ତାଳଚେର ରେଳଲାଇନ୍ ତିଆରି କ୍ଷିପ୍ର ଗତିରେ ଚାଲିଥାଏ । ହଜାର ହଜାର କୁଲି ପରିବାର କାମରେ ଲାଗିରହିଥା'ନ୍ତି । ବର୍ଷାଧିକ କାଳ ହେଲା ସେମାନେ ଆପଣା ଆପଣାର ଘରଦ୍ୱାର ଛାଡ଼ି ଏ ଅପରିଚିତ ଦୂର ମୁଲକରେ ଆସି ପେଟପାଇଁ ମୁଣ୍ଡଝାଳ ତୁଣ୍ଡେ ମାରୁଛନ୍ତି । ତଥାପି ସମସ୍ତେ ସଦାପ୍ରଫୁଲ୍ଲ—ମୁଖରେ ପ୍ରସନ୍ନତାର ହାସ୍ୟ, ଓଷ୍ଠାଧର ତାମ୍ବୂଳରସରଞ୍ଜିତ । ମଝେ ମଝେ ଶ୍ରମରତ ନରନାରୀଙ୍କ ଦିଗଉଚ୍ଛୁଳା ସମବେତ କଣ୍ଠସଙ୍ଗୀତ ହାଡ଼ଭଙ୍ଗା ଖଟଣି-ଜ୍ୱାଳାରେ ଶାନ୍ତିର ପ୍ରଲେପ ମାଖିଦେଉଥାଏ । କି ସୁନ୍ଦର ସ୍ୱଚ୍ଛନ୍ଦ ଜୀବନ ସତେ ! କେଡ଼େ ନିରଳସ ନିର୍ବିକାର ! ମାଟି-ମାଆର ପ୍ରିୟ ସନ୍ତାନ ପ୍ରକୃତରେ ଏଇମାନେ—ଏଇମାନଙ୍କ ସ୍ୱେଦ-ସମୁଦ୍ରରୁ ଉଦ୍ଭୂତ ହୁଏ ଦେଶ-ମହାଦେଶର ରାଜଲକ୍ଷ୍ମୀ ।

ଲାଇନ୍ କଡ଼େ କଡ଼େ ଧାଡ଼ି ଧାଡ଼ି ହୋଇ ପଡ଼ିଥାଏ ଛୋଟ ଛୋଟ ଅସଂଖ୍ୟ ଉଠା-କୁଡ଼ିଆ । କେତେକ କୁଡ଼ିଆରୁ ସଦ୍ୟଭୂମିଷ୍ଠ ଶିଶୁଙ୍କ କୁଆଁ-କୁଆଁ ପ୍ରଥମ ଶବ୍ଦ ଶୁଣା-ଯାଉଥାଏ, ଆଉ କେତେକ କୁଡ଼ିଆ ପୁଣି ଫାଟିପଡ଼ୁଥାଏ ମାଆକୋଡ଼-ଛଡ଼ା ନବଜାତକ-ମାନଙ୍କ ରାହାଧରା କ୍ରନ୍ଦନରୋଳରେ । ମାଇଲ୍ ମାଇଲ୍ ବିସ୍ତୃତ ଜନପଦବିରଳ ଅପନ୍ତରା ଭୂଖଣ୍ଡଟା ଅଗଣିତ ଶ୍ରମିକ-ପରିବାରର ଅସ୍ଥାୟୀ ସମାବେଶରେ ଠାଆକୁ ଠାଆ କଳ-କୋଳାହଳମୟ ଜନଗହଳ ବସତିରେ ପରିଣତ ହୋଇଥାଏ । ଆମେ ଦୀର୍ଘ ସଡ଼କ-ରାସ୍ତାରେ ଯାତ୍ରା କରୁଥିବାବେଳେ ଏହିସବୁ ବିଚିତ୍ର ଦୃଶ୍ୟ ଲୁବ୍ଧ ମାନସକୁ ଆନନ୍ଦ-ଆମୋଦର ପର୍ଯ୍ୟାପ୍ତ ରସଦ ଯୋଗାଉଥାଏ, ପଥକ୍ଲେଶ ମଧ୍ୟ ଯଥେଷ୍ଟ ଲାଘବ କରି-ଦେଉଥାଏ ।

ଘରୁ ବାହାରିବାର ପଞ୍ଚମ ଦିନ ଆମେ ନିରାପଦରେ ବନପଥ ଲଙ୍ଘି ଲକ୍ଷ୍ୟସ୍ଥଳରେ ପ୍ରାୟ ପହଞ୍ଚିଗଲୁଁ ଫୁଲସଞ୍ଜ ହେଉ ନ ହେଉଣୁ । ଧୂଆଁଳିଆ କୁହୁଡ଼ିର ବିରାଟ ଜାଲଟା ଊର୍ଦ୍ଧ୍ୱ

ଆକାଶବିତାନରୁ ଝରି ଝରି ଆସି ବନାଞ୍ଚଳ-ମଥାରେ ଏମିତି ମାଡ଼ିହୋଇଯାଇଥାଏ ଯେ, ଚାରିଆଡ଼ ଖାଲି ଜାଲଜାଲୁଆ ଦିଶୁଥାଏ । ମାଘର ଆଗମ ପ୍ରାୟ ମାସେ ବାକି ଥିଲେହେଁ ସଞ୍ଜୁଆ ବାଆ ପାଖ ପାହାଡ଼-ଶିଖରୁ ତୁହାକୁରୁହା ବାଘୁଆ ଶୀତ ବୋହିଆଣି ଆମ ଉପରେ ଝାଙ୍କେ ଝାଙ୍କେ ଅଜାଡ଼ିଦେଉଥାଏ । ମନ୍ତ୍ର ଥରିଉଠେ । ······ନିକଟ ସମ୍ମୁଖରେ ଚୁଲ୍ଲୀଟିଏ ।

ତରୁଲତାଘେରା ଶ୍ରୀମଞ୍ଜୁଳ ବନାନୀ-ସୀମାନ୍ତରେ ଶାନ୍ତକାନ୍ତ ନାତିବୃହତ୍ ଏହି ପଲ୍ଲୀଟି । ଗଳବସ୍ତ୍ରା ନତମସ୍ତକା ଅବଗୁଣ୍ଠନବତୀ ଗୃହବନିତାମାନେ ସନ୍ଧ୍ୟାଦୀପ ହସ୍ତରେ ନିଜ ନିଜ ଅଙ୍ଗନ ତୁଳସୀଚଉରା ମୂଳକୁ ଆସୁଥାନ୍ତି ବୃନ୍ଦାବତୀପୀଠରେ ଆତ୍ମନିବେଦନ ପାଇଁ । ଗାଆଁ ଦାଣ୍ଡର ପ୍ରଶସ୍ତ ମଝିଛକରେ ପୁଅ-ଝିଅ ମିଶି ପଞ୍ଚାଏ ପିଲା ମୋଟା ମୋଟା ଯୋଡ଼ାଏ ଶୁଖିଲା କାଠଗଡ଼ର ଦୁଇ ମୁଣ୍ଡକୁ ଲମ୍ବା ବାଗରେ ଯୋଡ଼ିଦେଇ ଅଗ୍ନିସଂଯୋଗ କରୁଥାନ୍ତି ସେଇ ଯୋଡ଼-ସନ୍ଧିରେ ପୁଆଳବଡ଼ିଆ ଖଞ୍ଜି । ନିଆଁ ଧରିବାକୁ ଉପକ୍ରମ କରନ୍ତେ ଦର-ଫୁଙ୍ଗୁଲା ଏଇ ଧୂଳିଆ ବାଆଙ୍କ ଦଳଟି ମଣ୍ଡଳାକାରରେ ନାଚି ନାଚି ତାଳି ବଜାଇ ବଜାଇ ସମନ୍ୱିତ ତାଳରେ ଗୀତ ଗାଇବା ଆରମ୍ଭ କରିଦେଲେ—

"ମାଆଘ ମାସର ଜାଡ଼ ବୋଇଲି ଲୋ
ମାଆଘ ମାସର ଜାଡ଼,
ଶୀତେ କମ୍ପେ ମେରୁହାଡ଼ ଲୋ ବୋଇଲି
ଶୀତେ କମ୍ପେ ମେରୁହାଡ଼ ।" (ଇତ୍ୟାଦି)

ଜୋର୍‌ରେ ଯହୁଁ ଧୁନି ଜଳିଉଠିଲା, ସମସ୍ତେ ନାଚ-ଗୀତ ବନ୍ଦ କରିଦେଇ ତା' ଚାରିପାଖ ଘେରି ବସିଗଲେ । ବନାନ୍ତବାସୀ ଶ୍ରେଷ୍ଠ ପିଲାମାନଙ୍କର ଏହି ସାନ୍ଧ୍ୟଲୀଳା ଓ ଧୁନିଜଳା ବିଦେଶୀ ଦର୍ଶକଙ୍କ ପାଇଁ ବେଶ୍ ଉପଭୋଗ୍ୟ ଓ ଅନ୍ତର୍ଗ୍ରାହ୍ୟ । ଗିରିଜନ-ପରିବୃତ ଗଡ଼ଜାତଗୁଡ଼ିକର ପ୍ରାୟ ପ୍ରତ୍ୟେକ ଅଞ୍ଚଳରେ ପିଲାଙ୍କଠାରୁ ବୁଢ଼ାବୁଢ଼ୀ ପର୍ଯ୍ୟନ୍ତ ସମସ୍ତେ ଶୀତପ୍ରକୋପ ଅନୁଭୂତ ହେବା ମାତ୍ରେ ପ୍ରଭାତ ଓ ସନ୍ଧ୍ୟାରେ ନିତ୍ୟ ଦୁଇଥର ଅଗ୍ନ୍ୟୁତ୍ସବ କରନ୍ତି—ଯାହାର ଉଦ୍‌ଯାପନ ହୁଏ ମାଘପୂର୍ଣ୍ଣିମାର ସାର୍ବଜନୀନ 'ଅଗ୍ନ୍ୟୁତ୍ସବ' ପର୍ବରେ । ଆଉ, ଅଳ୍ପ ବୟସର ବାଳକବାଳିକାଙ୍କର ଏପ୍ରକାର ନୃତ୍ୟାମୋଦକୁ 'ହଲ୍ଲୀଷକ' ବା 'ରାସଲୀଳା'ର ଏକ ନିର୍ଦ୍ଦୋଷ ଶିଶୁସଂସ୍କରଣ ବୋଲି ନିର୍ଦ୍ୱନ୍ଦ୍ୱରେ ବୋଲାଯାଇପାରେ ।

ଦାଣ୍ଡରେ ଯାଉ ଯାଉ ହଠାତ୍ କ୍ଷିପ୍ର ପଦକ୍ଷେପରେ ଉଠିଗଲି ମୁଁ ଅତିପରିଚିତ ସେଇ ଉଁଚ ପିଣ୍ଡାଟି ଉପରକୁ, ଯାହା ମୋର ଦିନେ ଥିଲା ସୁଖବିହାରର ଏକ ମୂକ ପୀଠସ୍ଥଳୀ । ଯେଉଁ ଅନ୍ତରଙ୍ଗ ବନ୍ଧୁଟି ମତେ ଚିଠିରେ ଡକେଇଥିଲେ, ଏଇଟି ତାଙ୍କରି ଖାନ୍ଦାନ ଘର । ଅଞ୍ଚଳଟିଯାକର ଜଣେ ଖୁବ୍ ଜଣାଶୁଣା ଗଡ଼ତିଆଙ୍କର ଜ୍ୟେଷ୍ଠ ପୁତ୍ର ସେ । ମୁଁ ବାଳୁତ-କାଳରେ ବାପାଙ୍କ ପାଖରେ ଥିଲାବେଳେ ସେ ଥିଲେ ମୋର ପ୍ରିୟ ସହପାଠୀ ଓ ନିତ୍ୟ ସହଚର ।

ବସ୍ତୁତଃ ବନ୍ଧୁଙ୍କର ଦୃଷ୍ଟି ପଡ଼ିଗଲାକ୍ଷଣି ସେ ଅଗଣାମଧ୍ୟରୁ ଛୁଟିଆସି ମତେ ଜାପୁଡ଼ି ଧରି ଖଞ୍ଜା ଭିତରକୁ ନେଇଗଲେ । ବିଜୁଳି ବେଗରେ ପଡ଼ାପାରି ଖବର ଚହଟିଗଲା—'ବାବୁ ଆସିଛୁ' । କେତେଟା ମୁହୂର୍ତ୍ତ ମଧ୍ୟରେ ଶତାଧିକ ନରନାରୀ, ଅଣ୍ଡାବଚ୍ଚା ମୋ ଚାରିପଟ ଘେରି ମଣ୍ଡଳୀ ରଚନା କରିଦେଲେ । ସେହି ବୃତ୍ତାକାର ପ୍ରକାଣ୍ଡ 'ଠ'ର କେନ୍ଦ୍ରବିନ୍ଦୁରେ ଥାଇ ହତଚକିତ ଆଗନ୍ତୁକମାନଙ୍କ ପ୍ରତି ଚକ୍ଷୁଚାଳନ କରିବାକୁ ଯାଇ ଦେଖିଲି, ବିଷାଦ-ମଳିନ ସଭିଁଙ୍କ ମୁଖମଣ୍ଡଳରେ 'ହାସ୍ୟ-ହାସ୍ୟ'ର ଘନକୃଷ୍ଣ ଛାୟା, ସଭିଁଙ୍କ ଆଖି ଅଶ୍ରୁ ଛଳଛଳ, କଣ୍ଠ ବାଷ୍ପବିଜଡ଼ିତ, କଥା ଫୁଟିବାର ପଥ ଯେତେ ଯେପରି କିଏ ରୁଦ୍ଧ କରି-ଦେଇଛି । ଅଶିବର୍ଷର ବୁଢ଼ାଟିଏ ବାପାଙ୍କ ଗୁଣ ବାଖ୍ୟାନି ବାଖ୍ୟାନି ଆସୁଥିବା ଅବସ୍ଥାରେ ମତେ ଦେଖିଦେଲାମାତେ ହେ-ହେ ଡକାପାରି ଗଛ କାଟିଲା ପରି ତଳେ ପଡ଼ିଗଲା । ସେ ଘଟନା ବଡ଼ କରୁଣ, ବଡ଼ ମର୍ମବିଦାରକ । ମୁଁ କୋହ ସମ୍ଭାଳି ନପାରି କହିଁ-କହିଁ ହୋଇ କାନ୍ଦିଉଠିଲି ।

ବେଶ୍ କିଛି ସମୟ ଶୋକପର୍ବ ଲାଗିରହିଲା । ବେଦନାର ବଡ଼ବାଗ୍ନି ଲେଲିହାନ ଶିଖା ବିସ୍ତାରି ବିଳାପ-ଜଳଧିରେ ସନ୍ତରଣ ହେବାକୁ ବସିଲା । ପ୍ରାଣାଧିକ ପୋଷଣାହାରି ଗାଈର ଆକାଶ-ଛଡ଼ା ମୁଖରେ ସଭିଁଠୁ ବେଶୀ ଆହତ ହୋଇଥିଲେ ଦଦେଇ ମୋର । ବାହା ତାଙ୍କର ଛିଡ଼ିଯାଇଥିଲା ଯେମିତି । ଚକ୍ଷୁରୁ ତାଙ୍କର ସବୁଯାକ ଲୁହ ନିଃଶେଷ ହୋଇଯାଇଥାଏ । ନିସ୍ତେଜ ନିସ୍ପନ୍ଦ ସ୍ଥାଣୁ ପରି କେବଳ ବସିରହିଥା'ନ୍ତି ସେ ଜଡ଼ପ୍ରାୟ ଏକ କୋଣରେ ।

କ୍ରମେ ବାଞ୍ଛିତ ପରିସ୍ଥିତି ଶାନ୍ତ ପଡ଼ିଆସନ୍ତେ ଖିଆପିଆର ଆୟୋଜନ ଚାଲିଲା । ରାତି ପହରକଯାଏ ମୋ ପାଖରୁ ଲୋକ ଛାଡ଼ ହେଲେ ନାହିଁ । ବସ୍ତୁସ୍ଥ ଲୋକେ ବାପାଙ୍କ ପରୋପକାରପରତାର ଗୁଣଗାରିମ ଝୁରିହୋଇ ହତାଶ କଣ୍ଠରେ କହୁଥାନ୍ତି—"ରେଢ଼ା-ଖୋଲର ସୂର୍ଯ୍ୟ ବୁଡ଼ିଗଲା ! କିଏ ଆଉ ଗାଏଁ ଗାଏଁ ବୁଲି କତରାଧରା ମଲାଙ୍କୁ ଜୀବନ୍ୟାସ ଦେବ ? ରାଇଜଯାକର ଲୋକ ଏବେ ଅନାଥ ହୋଇଗଲୁଁ । ଆମ ଦୁଃଖ, ହାରଗୁହାରି କିଏ ସେ ଯାଇ ମଣିମାଙ୍କ ଶ୍ରୀଚ୍ଛମୁରେ ଆଉ ଜଣା କରିବ ?"

ଲୋକମାନଙ୍କର ଏଭଳି ହା-ହୁତାଶର ମୂଳରେ ଥିଲା ବାପାଙ୍କର ଅସମ୍ଭବ ପ୍ରକାରର ଲୋକପ୍ରିୟତା । ପୁଣି ସେ ଥିଲେ ଅମୃତହସ୍ତା । ଚିକିତ୍ସାବିଦ୍ୟାରେ ଅବ୍ୟର୍ଥ ସିଦ୍ଧହସ୍ତତା ତାଙ୍କ ପ୍ରତି ଭଗବାନଙ୍କର ଏକ ଦୁର୍ଲଭ ଦାନ । ଏସବୁ ଛଡ଼ା କ୍ରମାଗତ ଦୀର୍ଘ-କାଳବ୍ୟାପୀ ରୋଗୀସେବା ଫଳରେ ସେ ଅଦ୍ଭୁତ ପ୍ରାବୀଣ୍ୟ ଅର୍ଜନ କରିଥିଲେ । ବଡ଼ବଡ଼େଙ୍କ ଅମଳରୁ ପ୍ରାମାଣିକ ବଚନ ଗଢ଼ିଆସିଛି—

"ଘିଅ ଗୁଡ଼ ମହୁ ଚାଉଳ ମଦ୍ୟ
ଆଚାର ପଣ୍ଡିତ ତଇଳ ବୈଦ୍ୟ
ଏ ନବ ଜାଣ
ଯେତକ ପୁରୁଣା ସେତକ ଗୁଣ ।"

ରାଜବୈଦ୍ୟରୂପେ ଅଧିକାଂଶ ଗଡ଼ଜାତର ରାଜପରିବାରରେ ବାପାଙ୍କର ବିପୁଳ ସୁଖ୍ୟାତି ଓ ସମାଦର ଥିଲା । ପ୍ରାୟ ପ୍ରତି ମାସରେ ଅନ୍ୟୁନ ଗୋଟାଏ ରାଜବାଟୀରୁ ଡାକରା ଆସୁଥିଲା । ବର୍ଷ ମଧ୍ୟରେ ନଅରମାନଙ୍କରୁ ମର୍ଯ୍ୟାଦାସୂଚକ ଉପାୟନ ସହ ଯେଉଁ ବିଦାୟ-ଦକ୍ଷିଣା ମିଳୁଥିଲା, ତାହା ବାପାଙ୍କର ଆର୍ଥିକ ପ୍ରୟୋଜନ-ପୂରଣ ଅପେକ୍ଷା ଯଥେଷ୍ଟ ଅଧିକ ଥିବାରୁ ଉଦ୍‌ବୃତ୍ତ ଅର୍ଥର କିୟଦଂଶରେ ସେ ଯାବତୀୟ ଔଷଧ ପ୍ରସ୍ତୁତ କରି ଗଚ୍ଛିତ ରଖୁଥିଲେ । ତେଣୁ ବଦାନ୍ୟ ହୃଦୟରେ ରାଜ୍ୟବାସୀ କି ତାଳଚର କି ଗରିବ, କି ତେଲିଆ, କି ମଲମୁଣ୍ଡିଆ, କି ଋଷି କି ମୂଲିଆ, ସବୁ ଶ୍ରେଣୀର ପୀଡ଼ିତଙ୍କ ପାଟରେ ପହଞ୍ଚି ସେମାନଙ୍କୁ ମାଗଣା ଚିକିତ୍ସାଦ୍ୱାରା ପୀଡ଼ାମୁକ୍ତ କରିବାପାଇଁ ସଙ୍କଳ୍ପବଦ୍ଧ ହୋଇଥିଲେ । ନିରଳସ ନିରାମୟ ଜୀବନ ଉପରେ 'ବିନା ମେଘେ ବଜ୍ରପାତ' ଯୋଗ ନ ଆସିବା ପର୍ଯ୍ୟନ୍ତ ତାଙ୍କର ଏହି ଅନନ୍ୟସୁଲଭ ସାଧୁସଙ୍କଳ୍ପଟି ଅକ୍ଷରେ ଅକ୍ଷରେ ପାଳିତ ହେବାରେ ବିନ୍ଦୁ-ମାତ୍ର ବ୍ୟତ୍ୟୟ ଘଟିନଥିଲା । ଗାଆଁକୁ ଗାଆଁ ରୋଗିସେବା ଓ ରୋଗିଦେଖା ରାସ୍ତାରେ ବାପାଙ୍କର ଗମନାଗମନପାଇଁ ଅଞ୍ଚଳାଧିକାରୀ ଗଉଡ଼ିଆମାନେ ପୋଢ଼ଗାଡ଼ି ଯୋଗାଇ-ଦେଉଥିଲେ ।

ଅର୍ଥଲାଭର ଲେଶ ଅଂଶ ନ ରଖି ବ୍ୟବସାୟିକାପ୍ରବୃତ୍ତିବିରହିତ ଯେଉଁ ଚିକିତ୍ସକ ରୋଗୀମାନଙ୍କ ଯନ୍ତ୍ରଣାର ଅପସାରଣ ଓ ରୋଗର ଉପଶମନ କରାଇ ନିଜେ ପରମ ଆନନ୍ଦ ଉପଭୋଗପୂର୍ବକ ଭଗବତ୍‌କୃପାର ମାହାତ୍ମ୍ୟ କୀର୍ତ୍ତନ କରେ, ସେହି ପରହିତବ୍ରତୀ ହିଁ ପ୍ରକୃତରେ 'ବୈଦ୍ୟ' ପଦବାଚ୍ୟ—ଏହା ହିଁ ଥିଲା ପିତୃଦେବଙ୍କର ପ୍ରଗାଢ଼ ପ୍ରତ୍ୟୟ ଓ ପ୍ରତ୍ୟକ୍ଷ ଉପଲବ୍ଧି । ସେ କହୁଥିଲେ—ଟଙ୍କା ଲୁଣ୍ଠେଇବାପାଇଁ ତା' ପଛରେ ଯେ ଯେତେ ଅଣନିଶ୍ୱାସିଆ ଦୌଡ଼େ, ଟଙ୍କା ତାକୁ ଭଣ୍ଡେଇ ଭଣ୍ଡେଇ ସେତେ ଦୂରକୁ ଦୂରକୁ ଚାଲିଯାଏ । ଯେଉଁ ବ୍ୟକ୍ତି ଟଙ୍କା-ଲାଳସା ଛାଡ଼ି ସାଧୁଜନୋଚିତ କର୍ତ୍ତବ୍ୟ କର୍ମରେ ସର୍ବଦା ଲାଗି ରହିଥାଏ, ଟଙ୍କା ତା ପଛରେ ଛାଏଁ ଗୋଡ଼ାଏ । ପୁଣି, ଯିଏ ସ୍ୱାର୍ଥସର୍ବସ୍ୱ ହୋଇ କେବଳ ନିଜ କଥା ହିଁ ସଦାବେଳେ ଭାବେ, ସେ କେବେହେଲେ ଅନ୍ୟ କାହାଠାରୁ ସାହାଯ୍ୟ ସହାନୁଭୂତି ପାଇପାରେ ନାହିଁ—କେହି ତା' କଥା ଭାବେ ନାହିଁ । ମାତ୍ର ଯିଏ ନିଜ କଥା ପଛକୁ ପକେଇ ନିସ୍ୱାର୍ଥ ପରସେବା ପରୋପକାରରେ ହିଁ ଆତ୍ମନିୟୋଗ କରେ, ଲକ୍ଷ ଜନ ତା' କଥା ଭାବନ୍ତି ଏବଂ ଅଯାଚିତ ଭାବରେ ତାକୁ ସକଳପ୍ରକାର ସାହାଯ୍ୟ ସହଯୋଗ ଦିଅନ୍ତି, ପ୍ରୟୋଜନ ହେଲେ ନିଜନିଜର ସର୍ବସ୍ୱ ଉତ୍ସର୍ଗ କରିଦେବାକୁ ମଧ୍ୟ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ । ଏଭଳି ପରାର୍ଥୀ ବ୍ୟକ୍ତି ସର୍ବଜନର ସ୍ନେହସହାନୁଭୂତି ଆକର୍ଷଣ କରେ, ଅଥଚ ସ୍ୱାର୍ଥୀର ଭାଗ୍ୟରେ ଜଣେ ଜନର ସ୍ନେହ ସହାନୁଭୂତି ବି ଜୁଟେ ନାହିଁ ।

ଢେଙ୍କାନାଳ ରାଜ୍ୟର ଗଉଡ଼ିଆ-ପରିବାରମାନେ ମଧ୍ୟ ନିୟମିତ ଦାତବ୍ୟ ଚିକିତ୍ସାର ଅବାଧ ସୁବିଧା ପାଉଥିବାରୁ ବାପାଙ୍କ ନିକଟରେ ଚିରଋଣୀ ଥିଲେ । ସେହି ଅପରିଶୋଧ୍ୟ ଋଣପାଶରୁ କଥଞ୍ଚିତ୍ ମୁକ୍ତ ଲଭିବା ବିଶ୍ୱାସରେ କେତେକ ବିତ୍ତଶାଳୀ ଗଉଡ଼ିଆ ବାପାଙ୍କ

ନାମରେ କିଛି କିଛି ଅଚଳ ଚାଷଜମି ଉତ୍ସର୍ଗ କରିଦେଇଥିଲେ । ସେହିମାନେ ଉକ୍ତ କ୍ଷେତ ସବୁ ନିଜ ନୌକରଙ୍କଦ୍ୱାରା ଚାଷ କରାଉଥିଲେ, ଅମଳ ଫସଲରୁ ଆଇନ୍ଦା ବର୍ଷପାଇଁ ଆବଶ୍ୟକ ପରିମାଣର ଉତ୍କୃଷ୍ଟ ବିହନ ପୁଡ଼ୁଗ ବାନ୍ଧି ରଖିଦେଉଥିଲେ ଏବଂ ଅବଶିଷ୍ଟ ସମସ୍ତ ଶସ୍ୟ ବାପାଙ୍କ ନାମରେ ସ୍ୱତନ୍ତ୍ର ଭାବରେ ଖଟିପକାଇଦେଉଥିଲେ ଅଥବା ସ୍ୱତନ୍ତ୍ର ଅମାରରେ ସାଇତି ରଖୁଥିଲେ । ବାପା ଯେଉଁ ବର୍ଷ ଗାଁକୁ ଆସନ୍ତି, ସେମାନେ ସେହିସବୁ ଖାଦ୍ୟସମ୍ଭାର (ଅର୍ଥାତ୍ ସଞ୍ଚିତ ଧାନର ଚାଉଳ ଏବଂ ବିରି, ମୁଗ, ହରଡ଼ ଆଦି) ନୌକାରେ ଭରି ମହାନଦୀରେ ପଠାନ୍ତି । ଗଡ଼ଝିଆମାନଙ୍କ ପକ୍ଷରୁ ଦୁଇ ଜଣ ତତ୍ତ୍ୱାବଧାୟକ ମଧ୍ୟ ସେହି ନୌକାରେ ବାପାଙ୍କ ସହିତ ଆସିଥାନ୍ତି । ନୌକା କଟକ ଘାଟରେ ପହଞ୍ଚିଲା ପରେ ମହାନଦୀର ଶାଖା ବିରୂପା ନଦୀରେ ଯାଇ ଆମ ଗାଁ ଘାଟରେ ଲାଗେ ଏବଂ ସେଠାରୁ ମାଲସବୁ ଉତୁରାଯାଇ ଖୁବ୍ ସୁବିଧାରେ ଆମ ଘରକୁ ବୁହାହୋଇ ଆସେ ।

ରାଜବୈଦ୍ୟ ତ ଚିରଦିନପାଇଁ ଆଖି ବୁଜିଲେ, ଏବେ ଗୋଦସ୍ତା ବର୍ଷର ଫସଲ-ଦ୍ରବ୍ୟତକ କିପରି ପଠାଯିବ ? ଏହାର ଭାର ମୋର ଅନ୍ତରଙ୍ଗ ବାଲ୍ୟସହଚର କୁଞ୍ଜବିହାରୀ ଆମର ଏ ବିପତ୍କାଳରେ ପ୍ରକୃତ ବନ୍ଧୁର କାର୍ଯ୍ୟ କଲେ । ସମ୍ପୃକ୍ତ ବିଭିନ୍ନ ଗଡ଼ଝିଆ-ପରିବାରରୁ ପଠାଯିବା ଶସ୍ୟସାମଗ୍ରୀ ଲଗିପଡ଼ି ସଂଗ୍ରହ କରିପକାଇଲେ କେତୋଟିମାତ୍ର ଦିନ ମଧ୍ୟରେ । ଯୋଡ଼ିଏ ମାଲବାହୀ ଡଙ୍ଗା ଆଗରୁ ଠିକ୍ କରି ରଖିଲେ । ମୁଁ ଓ ଦଦେଇ ଡିସେମ୍ବର ୨୦ ତାରିଖ ପର୍ଯ୍ୟନ୍ତ ରେଢ଼ାଖୋଲରେ ରହିଲୁଁ ।

ମତେ ଦେଖିବାପାଇଁ ଦୂର ନିକଟ କେତେ ଅଞ୍ଚଳରୁ ନିତି ଧାଡ଼ି ଛୁଟିଥାନ୍ତି । କାହିଁ ନଅ ବର୍ଷ ସେ-ପାଖେ କେବେ ଯାଇ ମତେ ଦେଖିଥିଲେ; ଏଥିଭିତରେ ମୁଁ କେତେ ବଡ଼ ହେଲିଣି, ଦେଖିବାକୁ ଉଦ୍‌ଗ୍ରୀବ ହେବା ସେମାନଙ୍କ ପକ୍ଷରେ ଅତି ସ୍ୱାଭାବିକ । ମୋ ତଳ ଭାଇ 'ସୂର୍ଯ୍ୟ'ର ଏଇ ରେଢ଼ାଖୋଲ ରାଜ୍ୟରେ ଜନ୍ମ । ତା' କଥା, ବୋଉ କଥା, ସାନ ଟିକି ଭାଇଭଉଣୀ 'ଇନ୍ଦ୍ର', 'ସୌଦାମିନୀ' କଥା କିଏ କେତେ ପ୍ରକାରେ ପଚାରୁଥାନ୍ତି—ଏପରି ପଚାରିବା ତାଙ୍କର ପୁରା ସାଜେ; ମାତ୍ର ଏତେ ଲୋକଙ୍କୁ ଉତ୍ତର ଦେଇ ସମାନ ଭାବରେ ସମସ୍ତଙ୍କୁ ତୃପ୍ତ କରିବା ମୋ ପକ୍ଷରେ ସବୁ ସମୟରେ ସହଜସାଧ୍ୟ ହୋଇପାରେ ନାହିଁ—ଜିଜ୍ଞାସାର କସରତ୍ ଏତେ ବେଶୀ ହୁଏ ଯେ, ବେଳେ ବେଳେ ସେ ମଧ୍ୟ ବେଦମ୍ ହୋଇ ଥକା ମାରିଯାଏ । ଅନେକ ବିଶିଷ୍ଟ ଲୋକ ସ୍ନେହାତିଶଯ୍ୟବଶତଃ ଗଭୀର ଆଗ୍ରହରେ ମତେ ସେମାନଙ୍କ ଘରକୁ ଘେନିଯାନ୍ତି, ପୁଣି ମୋ ବନ୍ଧୁ ଘରେ ଆଣି ଛାଡ଼ିଦେଇଯାନ୍ତି । ଯେଉଁଠି ମୁଁ ପହଞ୍ଚେ, ଗୋଟାଏ ଅସ୍ଥାୟୀ ମେଳା ବସିଯାଏ । ପ୍ରାଣରେ ଆନନ୍ଦ ଆସେ ଯେତିକି, ପୂର୍ବ ସୁଖସ୍ମୃତି ମନେପଡ଼ି ବିଷାଦ ଆସେ ସେତିକି କିମ୍ବା ତତୋଽଧିକ ।

## (୧୭) ସବୁଠୁ ପ୍ରିୟ ମୋ 'କଦଳୀଗଡ଼'

'କଦଳୀଗଡ଼' ଗାଆଁଟି ମୋର ସବୁଠୁ ବଳି ପ୍ରିୟ । ମୋ ଶୈଶବ-ଶିକ୍ଷକ ତଥା ଦେହରକ୍ଷୀ ଜୀବନହିତମନାସୀ ପୂଜ୍ୟ ଦ୍ୱିତୀୟ ବାପଙ୍କ ପୈତୃକ ଘର ଏଇ ଗାଁରେ ।

ତାଙ୍କ ଗୃହଟି ହେଲା ମୋ ରହଣିର ଶ୍ରେଷ୍ଠ କେନ୍ଦ୍ରବିନ୍ଦୁ । ପିଲାଦିନେ ସେଇଟା ଥିଲା ମୋର ଆଡ୍ଡା ଜାଗା । ବିବିଧ ବ୍ୟବସାୟର ପେଣ୍ଠସ୍ଥଳରୂପେ ସାରା ରେଢ଼ାଖୋଲ ରାଜ୍ୟରେ ତାର ପ୍ରତିଷ୍ଠା । ସେହି ଗ୍ରାମଟି ଗୁଣ୍ଡିଚାଯାତ୍ରା ଓ ବାହୁଡ଼ାଯାତ୍ରା ପାଇଁ ମଧ୍ୟ ପ୍ରସିଦ୍ଧ । ଏହି ପାରମ୍ପରିକ ରଥଯାତ୍ରା ସମୟରେ ପରିଚ୍ଛନ୍ନ ସୁପ୍ରଶସ୍ତ ରଥଦାଣ୍ଡଟି କୋଳାହଳମୟ ଲୋକାରଣ୍ୟରେ ପରିଣତ ହୁଏ । ସମଗ୍ର ରାଜପରିବାର ଉତ୍ସାହଉଦ୍ଦୀପନାପୂର୍ଣ୍ଣ ସେହି ସାଡ଼ମ୍ବର ଉତ୍ସବରେ ପ୍ରତିବର୍ଷ ଯୋଗଦିଅନ୍ତି । ଚବିଶ ଗଡ଼ଜାତ ମଧ୍ୟରେ ରେଢ଼ାଖୋଲ ଗଡ଼ଜାତର ରଥଯାତ୍ରାରେ କେତେକ ବିଶେଷତ୍ୱ ପରିଲକ୍ଷିତ ହୁଏ । ଅନ୍ୟାନ୍ୟ ଗଡ଼ଜାତରେ ରାଜଉଆସ ଥିବା ରାଜଧାନୀ ଗଡ଼ରେ ଏହି ଉତ୍ସବ ଅନୁଷ୍ଠିତ ହୁଏ; କିନ୍ତୁ ଏଠାରେ ତା'ର ବ୍ୟତିକ୍ରମ ଘଟିଛି । ଏହାଛଡ଼ା ଏ ରାଜ୍ୟଟି ଆୟତନରେ କ୍ଷୁଦ୍ର ହେଲେହେଁ ଏହାର ତିନି ରଥ, ତ୍ରିମୂର୍ତ୍ତି, ରଥଦାଣ୍ଡ, ଉତ୍ସବରେ ଘନଘଟା ଆଦି ବିଶାଳ, ବିପୁଳ । କଦଳୀଗଡ଼ରେ ଥିବା ଗଡ଼ତିଆଙ୍କ ଘର ଓ 'ଗୁରୁବୈଦ୍ୟ'ଙ୍କ ଘର ମଧ୍ୟ ମୋର ଆଉ ଦୁଇଟି ସୁଖ-ବିହାର ସ୍ଥାନ । ଅଳ୍ପ କେତେ ବର୍ଷ ପରେ 'ଦ୍ୱିତୀୟା'ଙ୍କୁ ସ୍କୁଲ ଇଲାକା ଛାଡ଼ିବାକୁ ପଡ଼ିଥିଲା । ତାଙ୍କ ସ୍ୱଭାବସୁଲଭ କର୍ମଠତା, କର୍ତ୍ତବ୍ୟନିଷ୍ଠା ଓ ବିଶ୍ୱାସଭାଜନତାର ପୁରସ୍କାରସ୍ୱରୂପ ରାଜାସାହେବ ତାଙ୍କୁ ଦାୟିତ୍ୱପୂର୍ଣ୍ଣ ଭଣ୍ଡାର-ମୋହରିର ପଦରେ ନିଯୁକ୍ତ କରିଥିଲେ । ସେହି 'ଦ୍ୱିତୀୟା' ମତେ ଗାଡ଼ିରେ ବସାଇ ଭୋର୍-ଭୋର୍ ତାଙ୍କ ଘରକୁ ନେଇଗଲେ । ଗାଆଁଟା-ଯାକର ମାଇପେ-ମିଣିପେ ସୁଅଜଳପରି ଛୁଟିଆସି ଦ୍ୱିତୀୟାଙ୍କ ଛୋଟ ଅଗଣାରେ ଅଜାଡ଼ି ହୋଇପଡ଼ିଲେ—'ବାବୁ-ବାବୁ' ଚିତ୍କାରରେ ଗୋଟାକ ଉପରେ ଗୋଟାଏ ପଡ଼ି ମତେ ଝିଙ୍କିଭିଡ଼ି ଆପଣା ଆପଣା ଆଡ଼କୁ ଆଉଜେଇ ନେବାପାଇଁ ତୀବ୍ର ପ୍ରତିଯୋଗିତାରେ ମାତି-ଗଲେ । ରଙ୍କ ପରି କିଏ କୁଣ୍ଢେଇ ଧଇଲା ତ କିଏ କାଖେଇ ଧଇଲା ଆଉ କିଏ ବା ଛଡ଼େଇନେଇ କାନ୍ଧରେ ବସେଇ 'ଧେଇନାଚ' ଆରମ୍ଭ କରିଦେଲା । ଜଣେ ମୁଢ଼ି-ଗୁଡ଼ ଖୁଆଇଦେଲେ ଆଉ ଜଣେ ମକାଲିଆ ଖୁଆଇ ଦେଉଥାଏ, ପୁଣି ଆଉ ଜଣେ ଟଟକା ଆଖୁ-ଦୋରୁଅ ପିଆଇ ଦେଉଥାଏ—ସତେ ଯେମିତି ତାଙ୍କର ଗେଲବସରିଆ ଆଦରର ସେଇ ସେରନ୍ଧ୍ରା 'ବାବୁ'ଟି ଏପର୍ଯ୍ୟନ୍ତ ସେଇମିତି ଛୁଆ ହୋଇ ରହିଛି !! ମତେ ଭାରି ସରମ ଲାଗୁଥିଲେ ହେଁ ସେମାନଙ୍କ ଆବେଗ-ଉଦ୍‌ବେଗଭରା ପ୍ରାଣର ଉଦ୍‌ବେଳନରେ ମୁଁ ନିଜର ସତ୍ତା ସମ୍ପୂର୍ଣ୍ଣ ହଜାଇବସିଲି । ସମସ୍ତ ସଂକୋଚ-ସମ୍ଭ୍ରମ ଫିଙ୍ଗିଦେଇ ଅସହାୟ ଅଣଆୟତ୍ତ କୁଣ୍ଢେଇଟି ପରି ସେମାନଙ୍କ କାଖରେ କୋଡ଼ରେ ନିଜକୁ ଗୋଟାପଣେ ସମର୍ପିଦେବାକୁ ବାଧ୍ୟ ହେଲି । ସ୍ନେହ କେଡ଼େ ଅନ୍ଧ ସତେ ! ଆଖି ଦେଖି ବି ଅବସ୍ଥକୁ ମାପେ ନାହିଁ—ବୟସବୃଦ୍ଧିର ବିଟକରାକୁ ତଉଲରେ ପକାଏ ନାହିଁ ।

ମନ ଛାଡ଼ିଲା ନାହିଁ—ସେ ଦିନ ଓ ରାତି କଦଳୀଗଡ଼ରେ ରହିଲି, ଗାଁର ଏମୁଣ୍ଡ ସେମୁଣ୍ଡ ସବୁରି ଘର ଗୋଟି ଗୋଟି ସନ୍ଧୋଳିଲି । ରାତିରେ ଦ୍ୱିତୀୟା ମାଷ୍ଟ୍ରଙ୍କ ସ୍ନେହମୟୀ ପତ୍ନୀ ଥାଳପାଖରେ ବସି ରଣନିୟମ ପକେଇ ଗୁଡ଼ାଏ ପିଠାପଣା ଖୁଆଇଦେଲେ । ଖୋଦ୍

ତାଙ୍କର ହାତବୁଣା ଦଉଡ଼ିଆ ଖଟିଆଟିରେ କିଛି ସମସ୍ୟା ଗଡ଼ବଡ଼ ହେଲା । ନିଦ୍ରାଦେବୀ କାହିଁକି କେଜାଣି ମୋ ଢୋଲାପଲଙ୍କକୁ ବିଜେ ହେବାକୁ ଡେରି କଲେ । ସେହି ବ୍ୟବଧାନ-ସମୟଟିକ ମାଷ୍ଟ୍ରେ ଓ ତାଙ୍କ ପତ୍ନୀଙ୍କ ସହ ସୁଖାଳାପରେ ବିତିଗଲା । ତା'ପରେ ସେ ଦୁହେଁ ଚାଲିଗଲେ—ମତେ ଜଲ୍‌ଦି ଶୋଇପଡ଼ିବାକୁ ସ୍ନେହବୋଳା ଆଦେଶ ସ୍ୱରରେ ତାଗିଦ କରିଦେଇ । ହେଲେ, ମୁଁ ସାଙ୍ଗେ ସାଙ୍ଗେ ଶୋଇଲି ନାହିଁ । ରାତିଟା ଖୁବ ଲମ୍ବା ଲାଗୁଥାଏ ।

## (୧୮) ପାଞ୍ଚଖଣ୍ଡୀ ଠାକୁରାଣୀଙ୍କ ସ୍ୱତଃନାଦିତ ପାହାନ୍ତି ବାଜା

ସନ୍ଧ୍ୟାବେଳଠୁ ମନ ଉଚ୍ଛନ୍ନ ହୋଇଉଠିଲାଣି; ଭାବୁଥାଏଁ—କେତେବେଳେ ପାହାନ୍ତା ହେବ, 'ପାଞ୍ଚଖଣ୍ଡୀ' ଆଜ୍ଞା ହେବେ, ବାଜା ବାଜିବ, ଦୀର୍ଘ ନଅବର୍ଷ ପରେ ଆଜି ମୁଁ ଶୁଣିବି । ରାତି ସ୍ୱା' ମଧ୍ୟରେ ଅଧରୁ ବଳିଗଲା । ଆଉ ବେଶୀ ଅନିଦ୍ରା ରହିବା ଉଚିତ ହେବନାହିଁ ବୋଲି ଜାଣୁଥାଏଁ; ମାତ୍ର ଶୋଇହୁଏ ନାହିଁ । ଜବରଦସ୍ତି ଆଖି ବୁଜିବାକୁ ଚେଷ୍ଟା କଲେ ଟିକେ ଗ୍ରାଇନିଦ ଆସିଯାଏ ସିନା, ସାମାନ୍ୟ ପରେ ଚାଉଁକିନା ଭାଙ୍ଗିଯାଏ । ଏହିପରି ଛକାପଞ୍ଝା ଅବସ୍ଥା ପାହାନ୍ତାଯାଏ ଚାଲିଲା । ଆଶ୍ଚର୍ଯ୍ୟ କଥା, ପାହାନ୍ତା ପହର ଗଡ଼ିଲା ପଛେ, ବାଜାଶବ୍ଦ ମୋ କାନ-ଗିସ୍ତରେ ବାଜିଲା ନାହିଁ । କାରଣ କିଛି ଖୋଜି ପାଇଲି ନାହିଁ । କେବଳ ମୁଁ ଭାବୁଥାଏଁ—ଭାବୁଥାଏଁ, ଆଉ ମୋ ଆଖି ଆଗରେ ଗୁଡ଼ାଏ ଅଡ଼ୁଆତଡ଼ୁଆ ପ୍ରଶ୍ନର ନଗ୍ନ କବନ୍ଧ ଧାଡ଼ି ବାନ୍ଧି ନାଚିବାରେ ଲାଗିଥାନ୍ତି । ସହସା ସେ ନାଚର ଅବସାନ ଘଟାଇଲା ପଡ଼ୋଶୀକଣ୍ଠର ନିଦଭଙ୍ଗା ପ୍ରଭାତ ଅବକାଶ—

"ଉଠ ଧନ ନୀଳମଣି ପାହିଲାଣି ରାତି,
ରାବ ଦେଇ ଉଡ଼ିଲେଣି ପକ୍ଷୀ ଜାତି ଜାତି ।"

ଦରଜା ଖୋଲି ବାରନ୍ଦାକୁ ବାହାରିପଡ଼ିଲାକ୍ଷଣି ପ୍ରଭାତ ବାଆର ସ୍ପର୍ଶଚମକରେ ନିଦ୍ରାଳସ ତନ୍ଦ୍ରାର ମାନ୍ଦ୍ୟ ଯଥେଷ୍ଟ ଦୂର ହୋଇଗଲା ।

'ପାଞ୍ଚଖଣ୍ଡୀ' ଓ ପାହାନ୍ତି ବାଜା ସମ୍ପର୍କରେ ସାମାନ୍ୟ ଉଲ୍ଲେଖ ନକଲେ ନଚଳେ । ରଥଦାଣ୍ଡ ପାଖାପାଖି ଗାଆଁମୁଣ୍ଡର ସୀମା-ଦାଢ଼ରେ 'ପାଞ୍ଚଖଣ୍ଡୀ' ଠାକୁରାଣୀଙ୍କର ବଜେ ଚକଡ଼ା । ଘଞ୍ଚ ବାଡ଼ଘେରା ସେହି ଚକଡ଼ାଟିର ମଧ୍ୟସ୍ଥଳରେ ଏକ ବିଶାଳ ଝଙ୍କା ଗଛ । ଗଣ୍ଡି ଦେହର ଘନସିନ୍ଦୂରିତ ସ୍ଥୂଳ ମୂଳଭାଗରେ ଦେବୀଙ୍କର ଆସ୍ଥାନ । ଘରଘାଟି କିଛି ନାହିଁ । ଆସ୍ଥାନପାର୍ଶ୍ୱରେ ପାଞ୍ଚଟି ଖାପଯୁକ୍ତ ଝଣ୍ଡା ପରସ୍ପର କୋଣାକୋଣି ଭାବରେ ସଂଲଗ୍ନ । ଭୂତଳରେ ମୃତ୍ତିକା ନିର୍ମିତ କେତୋଟି ଘୋଡ଼ା ହାତୀ ଓ ଅନ୍ୟାନ୍ୟ ମୂର୍ତ୍ତି ବିଶୃଙ୍ଖଳଭାବରେ ଅବସ୍ଥାପିତ । ମା 'ପାଞ୍ଚଖଣ୍ଡୀ' ଭାରି ପ୍ରତ୍ୟକ୍ଷ ଦେବତା । ତାଙ୍କ ଚକଡ଼ା ଭିତରେ କେହି ରହନ୍ତି ନାହିଁ କି କୌଣସି ଲୋକ ତା' ଭିତରେ ପଶିବାକୁ ଦିନରେ ବି ସାହସ କରେ ନାହିଁ । ବାଡ଼ରେ ଥିବା ପୁରୁଣା ବରକୋଳି ଗଛର ପତ୍ରବହୁଳ ବଡ଼ ଶାଖାଟିଏ ଓସାରିଆ ଟା ଗୋହିରିଦାଣ୍ଡ ଆଡ଼କୁ ଊର୍ଦ୍ଧ୍ୱରେ ପ୍ରସାରିତ ହୋଇଥାଏ । ଫୁଲସନ୍ଧ୍ୟା ପରେ ଭୁଲବଶତଃ

ଯଦି କେହି ଏକୁଟିଆ ସେ-ବାଟ ଦେଇ ଯାଏ, ତେବେ ସେଇ ପ୍ରସାରିତ ଶାଖାଟା ହଠାତ୍ ସଶବ୍ଦରେ ତଳକୁ ଓହ୍ଲେଇହୋଇପଡ଼ି ଯିବା ଲୋକର ମୁଣ୍ଡପର୍ଯ୍ୟନ୍ତ ଚାଲିଆସେ; କିନ୍ତୁ ମୁଣ୍ଡ ସ୍ପର୍ଶ କରେ ନାହିଁ । ଏଥିପାଇଁ ଭୟରେ କେହି ଫୁଲସନ୍ଧ ପରେ ସେ-ବାଟେ ଏକାକୀ ଯା-ଆସ କରନ୍ତି ନାହିଁ । ନିତାନ୍ତ କେବେ ଯିବାକୁ ପଡ଼ିଲେ ପାଞ୍ଚ ସାତ ଜଣ ମେଳ ବାନ୍ଧି ପରସ୍ପର ଲଗାଲଗି ହୋଇ ସେଇ ସେତିକ ବାଟ ଟପନ୍ତି । ତାହାହେଲେ ବରକୋଳି ଡାଳ ଅଉ ତଳପଟକୁ ନଇଁଆସେ ନାହିଁ କି ଶବ୍ଦ କରେନାହିଁ ।

ଜଣେ ଶବର ଜାତିର ଲୋକ ପାଞ୍ଚଖଣ୍ଡୀ ଠାକୁରାଣୀଙ୍କର ପୂଜକ । ଜଙ୍ଗଲ ଭିତରେ ତାର ପଲ୍ଲି । ସେ ପ୍ରତିଦିନ କିଛି-ନା-କିଛି ଫଳ ଜଙ୍ଗଲରୁ ସଂଗ୍ରହ କରି ଦେବୀଙ୍କ ଭୋଗ-ପାଇଁ ଆଣେ । ବିଭିନ୍ନ ଗ୍ରାମର ଲୋକେ ବାଡ଼ ପାଖରେ ଛେନାପଣା କି ପିଠାପଣା ଯାହା ଦିଅନ୍ତି, ସବୁ ମାଆଙ୍କ ପାଖରେ ଭୋଗ ଲଗାଏ । ପୂଜାର୍ଚ୍ଚନା ନୀତି ସରିଗଲେ ନିଜ ପଲ୍ଲିକୁ ବାହୁଡ଼େ । କାହାରି କିଛି ମାନସିକ ଥିଲେ ସେହି ଦିନଟି କେବଳ ସେ ଓ ତା' ଆତ୍ମୀୟ-ସ୍ୱଜନମାନେ ନୈବେଦ୍ୟ ସାମଗ୍ରୀ ସହ ପୂଜକର ଉପସ୍ଥିତିରେ ଦେବୀଙ୍କ ଚକଡ଼ା ମଧ୍ୟକୁ ଯାଆନ୍ତି । ପୂଜକ ଉକ୍ତ ସାମଗ୍ରୀସକଳ ଗ୍ରହଣପୂର୍ବକ ମାଆଙ୍କ ତୃପ୍ତି ପାଇଁ ଓ ମାନସିକକାରୀର ମନକାମନା ପୂର୍ତ୍ତିପାଇଁ ନିଜେ ଭୋଗରାଗ ପ୍ରସ୍ତୁତ କରି ନୈବେଦ୍ୟରୂପେ ଦେବୀଙ୍କୁ ସମର୍ପଣ କରେ ।

ଗୋଟିଏ ଖଣ୍ଡିତ ଲାଙ୍ଗୁଳ ବିଷଧର ସର୍ପ 'ପାଞ୍ଚଖଣ୍ଡୀ'ଙ୍କୁ ଆଶ୍ରା କରି ଚକଡ଼ାରେ ରହିଥାଏ । ଅଧିକାଂଶ ସମୟରେ ଠାକୁରାଣୀଙ୍କ ପାଖରେ ଶୋଇରହେ । ପୂଜକ ପୂଜା ସାରି ଚାଲିଗଲା ପରେ ସେ ଭୋଗ ଖାଏ, ପଣା ପିଏ । କ୍ୱଚିତ୍ ପଦାକୁ ବାହାରେ, ଥରେ ଥରେ କାହାରି କାହାରି ଖଞ୍ଜାକୁ ଯାଏ, ଅଗଣାରେ ବୁଲେ; ମାତ୍ର କେବେହେଲେ କାହାରି କିଛି ଅନିଷ୍ଟ ସାଧେ ନାହିଁ । ତାକୁ ଦେଖି କେହି ମଧ୍ୟ ଭୟଭୀତ ହୁଅନ୍ତି ନାହିଁ । ସର୍ପଟି ଘର ଭିତରକୁ ପଶିଲେ କିମ୍ବା ଖଞ୍ଜା-ଅଗଣାରେ ବୁଲିଲେ ଗୃହନାରୀମାନେ ହୁଳହୁଳି ପକାଇ ତାକୁ ବନ୍ଦାନ୍ତି ଏବଂ ଗୋଟିଏ ଶୁଦ୍ଧ ପାତ୍ରରେ ଛେନାପଣା ଭରି ତା' ଆଗରେ ଥୋଇଦିଅନ୍ତି ଓ ଲମ୍ବକାଳ ହୋଇ ସମସ୍ତେ ସାଷ୍ଟାଙ୍ଗ ମୁଣ୍ଡିଆ ମାରନ୍ତି । ଆନନ୍ଦରେ ପଣାତକ ପିଇଦେଇ ସଙ୍କୁଚିତଫଣ ସର୍ପଟି ନୀରବରେ ବହି ପରିକ୍ରମା ସାରି ଧୀରେ ଧୀରେ ଠାକୁରାଣୀଙ୍କ ଚକଡ଼ାକୁ ଫେରିଯାଏ ।

'ପାଞ୍ଚଖଣ୍ଡୀ' ଦେବୀଙ୍କ ପାର୍ଶ୍ୱରେ ଝାଞ୍ଜ, ନାଗରା, ମୃଦଙ୍ଗ, ମହୁରି ଏହିପରି କେତୋଟି ବାଦ୍ୟ ରହିଥାଏ । ସେଗୁଡ଼ିକରେ କେହି କେବେ ହାତ ମାରେ ନାହିଁ—ପୂଜକ ମଧ୍ୟ । ରାତ୍ରିର ଶେଷ ପ୍ରହର ଆରମ୍ଭ ହୋଇଯିବାମାତ୍ରେ ସବୁଯାକ ବାଦ୍ୟ ଚାଆଁକୁ ଏକକାଳୀନ ବାଜିଉଠେ । ସେହି ସମବେତ ବାଦ୍ୟଧ୍ୱନିର ମନ୍ଦ୍ର-ମଧୁର ଝଙ୍କାରରେ ନିଦ୍ରିତ ପଲ୍ଲୀଟି ସହସା ଜାଗ୍ରତ ହୋଇଉଠେ । ଆବାଳବୃଦ୍ଧବନିତା ଶଯ୍ୟାରେ ବସି ମାଆ 'ପାଞ୍ଚଖଣ୍ଡୀ'ଙ୍କର ମହିମା ସ୍ମରଣ କରନ୍ତି, ସ୍ତବ ଗାଆନ୍ତି, କେହି କେହି ବାଦ୍ୟସ୍ୱର ଅନୁସାରେ ତାଳ ମଧ୍ୟ

ଦିଅନ୍ତି । ପ୍ରାୟ ପନ୍ଦର ମିନିଟ୍ ପର୍ଯ୍ୟନ୍ତ ବାଦ୍ୟଗୁଡ଼ିକ ବାଜି ତା'ପରେ ଘୁଆଁକୁ ବନ୍ଦ ହୋଇଯାଏ ।

ପିଲାଦିନେ ରେଢ଼ାଖୋଲ ରାଜ୍ୟରେ ମୋର ତିନି ବର୍ଷ ଅବସ୍ଥାନ ମଧ୍ୟରେ ବହୁବାର ମୁଁ ଏହି ପାହାନ୍ତି ବାଦ୍ୟନାଦ ଶୁଣିଛି, ଦୁଇ ତିନିଥର ସାପଟିକୁ ସ୍ୱଚକ୍ଷୁରେ ଦେଖିଛି ଓ ଥରୁଟିଏ ସ୍ୱହସ୍ତରେ ପଣା ଦେଇଛି । ଏଇସବୁ ପୁରୁଣା ଅନୁଭୂତି ଏବେ ଗୋଟି ପରେ ଗୋଟି ମୋର ସ୍ମୃତିପଥାରୂଢ଼ ହେଲା । ଦ୍ୱିତୀୟା ମାଷ୍ଟ୍ରେ ଆସିଯା'ନ୍ତେ ଅଥୟ ହୋଇ ତାଙ୍କୁ ପଚାରିଲି, "ଠାକୁରାଣୀଙ୍କ ବାଜା ପାହାନ୍ତାରେ ଆଜି ବାଜୁନାହିଁ କାହିଁକି ?"

ଦ୍ୱିତୀୟା ଦୁଃଖର ସ୍ୱରରେ କହିଲେ, "ଆଉ ସେ ବାଜା ବାଜିବା ନାହିଁ କି ସେ ସାପ ବି ନାହିଁ । ଦେଢ଼ବର୍ଷ ହେଲା ସବୁ ଉଭେଇଯାଇଛିରେ ବାବୁ ! ସେକଥା ଶୁଣିଲେ ତୁ ଆଚମ୍ବିତ ହୋଇଯିବୁ । ଯେଉଁଦିନ ପାହାନ୍ତାରେ ହଠାତ୍ ବାଜା ବାଜିବା ଠକ୍‌କିନା ବନ୍ଦ ହୋଇଗଲା, ଲୋକେ ଆଉ ସମ୍ଭାଳା ପଡ଼ିଲେ ନାହିଁ, ଦଳ ଦଳ ହୋଇ ଘରୁ ବାହାରିଆସିଲେ । ବୁଢ଼ାବୁଢ଼ୀଏ କହିଲେ, 'ଗାଆଁ ଉପରକୁ ନିଶ୍ଚୟ ଏଥର ବିପତ୍ତି ମାଡ଼ିଆସିଲା !' ପଛକୁପଛ ଖୁଣି ଜଣାପଡ଼ିଗଲା ଯେ, ଠାକୁରାଣୀଙ୍କ ସାପ ମଧ୍ୟ ଆଉ ନାହିଁ । ଘରଆଡ଼େ ତନ୍ନତନ୍ନ ଖୋଜାଗଲା, କେଉଁଠି ତାର ପତ୍ତା ମିଳିଲା ନାହିଁ କି ତା ମଲା ଦେହର ଦର୍ଶନ ଦେଖାଗଲା ନାହିଁ । ଖୋକଡ଼-ବୟସିଆ ବୁଢ଼ାଏ କହିଲେ, ସେ କ'ଣ ପ୍ରକୃତରେ ସାପ ? ତାର କାତି ଛାଡ଼ିବାର କେହି କେବେ ଦେଖିଛି ? ସେ ପରା ସାକ୍ଷାତେ ଗୋଟିଏ ଦେବତା, ସାପ-ଶରୀର ବହି ଠାକୁରାଣୀଙ୍କ ସାନ୍ନିଧିରେ ରହିଥିଲେ, ଏବେ ଅନ୍ତର୍ଦ୍ଧାନ ହୋଇଗଲେ । ତୁମେ ଆଉ ତାଙ୍କ ଦେହ ଦେଖିବ କେମିତି ? ସତକୁସତ ଲୋକଙ୍କର ପୂରା ବିଶ୍ୱାସ ହୋଇଯାଇଛି ଯେ, 'ପାଞ୍ଚଖଣ୍ଡା' ଦେବୀ ସଙ୍ଗରେ ସର୍ପଦେବତାଙ୍କୁ ଯେଣୁ ନିଶ୍ଚୟ ଅନ୍ୟତ୍ର ଚାଲିଯାଇଛନ୍ତି । ମାଆ ତ ବିମୁଖ ହୋଇ ଏ ମୁଲକ ଛାଡ଼ି ଗଲେ, ଆଉ କାହା ଆଜ୍ଞାରେ ବାଜା ବାଜିବ ?"

ମୁଁ କାବାଭୂତ ହୋଇଗଲି ଏ ବିସ୍ମୟକର କାହାଣୀ ଶୁଣି । ଘଟଣାଟି ମତେ ପୁରାଣ-କଥାଣୀ ପରି ମନେହେଲା । ପୁରାଣ ଆଉ କାହାକୁ କହନ୍ତି କି ? ଧର୍ମ, ଶାସନ, ସମାଜ ଜୀବନ, ଏଇସବୁର ସତ୍ୟ ବିବରଣ ହିଁ ଇତିହାସର ମୁଖ୍ୟ ଖାଦ୍ୟ । ଖାଦ୍ୟର ଆନୁଷଙ୍ଗିକ-ରୂପେ ବ୍ୟଞ୍ଜନର ପ୍ରୟୋଜନ ଅପରିହାର୍ଯ୍ୟ ହେଲାପରି ବ୍ୟକ୍ତିବିଶେଷର କାର୍ଯ୍ୟକଳାପ, ଧର୍ମୀୟ ଧାରଣା, ଅଲୌକିକ କୃତି ଆଦିର ସତ୍ୟ ଚିତ୍ର ଇତିହାସର ମଧ୍ୟ ଅଙ୍ଗୀଭୂତ । ସେସବୁର ସ୍ୱତନ୍ତ୍ର ବର୍ଣ୍ଣାଢ଼୍ୟ ରୂପର ନାମ ହିଁ ପୁରାଣ । ତେଣୁ ଏହା ଇତିହାସର ଏକ ଅବିଚ୍ଛେଦ୍ୟ ଶାଖା । ଅନେକ ମୂଲ୍ୟବାନ୍ ସାମାଜିକ ବୃତ୍ତାନ୍ତ ଇତିହାସରୁ ମିଳେ ନାହିଁ— ମିଳେ ପୁରାଣରୁ । ଏହି ଦୃଷ୍ଟିରୁ ପୁରାଣକୁ 'ସାମାଜିକ ଇତିହାସ' ଆଖ୍ୟା ଦିଆଯାଇପାରେ । ପୁରାଣ ଇତିହାସଠାରୁ ପୁରୁଣା । ଏହି କାରଣରୁ ଇତିହାସ ପ୍ରାୟଶଃ ପୁରାଣମୁଖାପେକ୍ଷୀ, ଅର୍ଥାତ୍ ପୁରାଣ ହେଉଛି ଇତିହାସର ସହାୟକ ଭିତ୍ତିଭୂମି । ମୋଟ ଉପରେ ଦେଖିଲେ ଉଣାଅଧିକେ ଉଭୟେ ଉଭୟର ଆପେକ୍ଷିକ ପରିପୂରକ । ପୁରାଣର ବିଷୟବସ୍ତୁକୁ କପୋଳ-

କଳ୍ପିତ ବୋଲି ବାହ୍ୱାସ୍ଫୋଟରେ ଉଡ଼ାଇଦେବା ନିତାନ୍ତ ବାଳୋଚିତ ଓ ଅଯୌକ୍ତିକ; ବରଂ ତାହାକୁ ସତ୍ୟର ମୂଳାଧାର ବୋଲି ମାନ୍ୟ ଦେବା ଅଧିକ ସମୀଚୀନ । ଇତିହାସ ଲେଖକ ପୁରାଣରେ ଅନେକ ଦାମୀ କଥା ଆହରଣ କରି ଭବିଷ୍ୟତର ଇତିହାସକୁ ପରିପୁଷ୍ଟ କରେ ଏବଂ ପୂର୍ବପ୍ରଚଳିତ ଇତିହାସରେ ସଂଶୋଧନୀ ଯୋଡ଼େ । ଯଦି ପୁରୁଣା ଗଡ଼ଜାତ-ମାନଙ୍କର ପୁରାଣ ଲେଖାଯାଏ, ତାହାହେଲେ 'ପାଞ୍ଚଖଣ୍ଡୀ' ସମ୍ପର୍କୀୟ ଉପରିବର୍ଣ୍ଣିତ ପ୍ରତ୍ୟକ୍ଷଜ୍ଞାତ ସତ୍ୟ ବିବରଣୀଟି ଯେ ତାର ଏକ ସ୍ପୃହଣୀୟ ଅଂଶ ହେବ, ଏଥିରେ ଦ୍ୱିମତର ସ୍ଥାନ ନାହିଁ । ପୌରାଣିକ ଚିତ୍ରଣରେ ସ୍ଥଳବିଶେଷରେ ରଙ୍ଗର ଆଧିକ୍ୟ ରହେ ସିନା, ମୌଳିକ କଥାବସ୍ତୁର ଅନ୍ତର୍ନିହିତ ନିର୍ମଳତାରେ ସୂତାଏ ସୁଦ୍ଧା ସତ୍ୟର ଅପଲାପ ହୋଇ ନଥାଏ । ଅବଶ୍ୟ ବ୍ୟାସୋତ୍ତର କାଳରେ ଉଦ୍ଦେଶ୍ୟପ୍ରଣୋଦିତ କେତେକ ପ୍ରକ୍ଷିପ୍ତାଂଶ ଲୋକପ୍ରିୟ ପୁରାଣମାନଙ୍କରେ ଚତୁରତାର ସହିତ ଖଞ୍ଜି ଦିଆଯାଇଥିଲା, ଯେପରି ରାଜା ହରିଶ୍ଚନ୍ଦ୍ରଙ୍କ ଉପାଖ୍ୟାନ । ବୈଦିକ ଉପାଖ୍ୟାନର ହରିଶ୍ଚନ୍ଦ୍ରଚରିତଠାରୁ ପୌରାଣିକ ଉପାଖ୍ୟାନର ହରିଶ୍ଚନ୍ଦ୍ରଚରିତ ପୁରାପୁରି ସ୍ୱତନ୍ତ୍ର ଏବଂ କେନ୍ଦ୍ରନାୟକ ବିଶ୍ୱାମିତ୍ରଙ୍କ ଭୂମିକା ସମ୍ପୂର୍ଣ୍ଣ ବିପରୀତ । ବୈଦିକ ହରିଶ୍ଚନ୍ଦ୍ର ସ୍ୱାର୍ଥସର୍ବସ୍ୱ, ପ୍ରଜାପୀଡ଼କ ଓ ସତ୍ୟଲଙ୍ଘକ; କିନ୍ତୁ ପୌରାଣିକ ହରିଶ୍ଚନ୍ଦ୍ର ମହା ଦାନୀ, ପ୍ରଜାରଞ୍ଜକ ଓ ସତ୍ୟରକ୍ଷକ । ରାଜନ୍ୟମଣ୍ଡଳୀଙ୍କ ରାଜତ୍ୱକୁ ଟେକି ଲୋକପ୍ରିୟ କରିବା ଉଦ୍ଦେଶ୍ୟରେ ହିଁ ହରିଶ୍ଚନ୍ଦ୍ରଙ୍କୁ ଯେ ଆଦର୍ଶ ରାଜାରୂପେ ପ୍ରକ୍ଷିପ୍ତ ଉପାଖ୍ୟାନରେ ଚିତ୍ରିତ କରାଯାଇଛି, ଏହା ସ୍ୱତଃସିଦ୍ଧ ।

## (୧୯) ଘରବାହୁଡ଼ା—ମହାନଦୀ ବକ୍ଷରେ ନୌଯାତ୍ରା

ନୂଆବର୍ଷ (୧୯୬୪)ର ଜାନୁଆରି ପହିଲି ପାଖ ହୋଇଆସିବା ସଙ୍ଗେ ଆମ ରେଢ଼ାଖୋଲ-ରହଣିକାଳର ଶେଷ କିଣ୍ଟଦିବସ ମଧ୍ୟ ପାଖେଇ ଅଇଲା । ଏହି ଅବସରରେ ମୁଁ (ଦିଦେଇଙ୍କ ସହିତ) ରାଜଧାନୀ ରାମପୁରକୁ ଯାଇ ଜ୍ଞାତିସ୍ଥ ଭ୍ରାତା ଭୋଲାନାଥ କରଙ୍କୁ ଓ ସେଠାର ପ୍ରଧାନ ପ୍ରଧାନ ବ୍ୟକ୍ତିଙ୍କୁ ସେମାନଙ୍କ ବାସଭବନରେ ଶେଷରେ ରାଜାସାହେବ ଓ ରାଣୀସାହେବାଙ୍କୁ ରାଜବାଟୀରେ ଭେଟିଲି । ସେମାନେ ସମସ୍ତେ ବାପାଙ୍କ ଅପ୍ରତ୍ୟାଶିତ ମହାପ୍ରସ୍ଥାନଜନିତ ଦୁଃଖରେ ମ୍ରିୟମାଣ ହୋଇ ମୋ ପ୍ରତି ତଥା ପୂର୍ଣ୍ଣ ପରିବାର ପ୍ରତି ଗଭୀର ସମବେଦନା ଓ ଆନ୍ତରିକ ସହାନୁଭୂତି ଜ୍ଞାପନ କଲେ । କେତେକ ଗଡ଼ମୁଖ୍ୟଙ୍କ ମୁଖରୁ ଶୁଣିବାକୁ ପାଇଲି ଯେ, ବାପାଙ୍କ ଅକାଳ ମୃତ୍ୟୁରେ ରାଜ୍ୟର ସମସ୍ତ ଅଫିସ ଓ ବିଦ୍ୟାଳୟ ଦିନକପାଇଁ ବନ୍ଦ ରଖାଯାଇ ଶୋକଦିବସ ପାଳନ କରାଯାଇଥିଲା । ଏହାଛଡ଼ା ବାପାଙ୍କ ଗୁଣମୁଗ୍ଧ ଗଡ଼ବାସିବୃନ୍ଦ ରାଜାସାହେବଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏକ ଶୋକ-ସଭାରେ ସମ୍ମିଳିତ ହୋଇ ସ୍ୱର୍ଗତ ଲୋକସେବୀ ବୈଦ୍ୟରତ୍ନଙ୍କ ଉଦ୍ଦେଶ୍ୟରେ ବହୁମୁଖୀ ଲୋତକାଞ୍ଜଳି ଅର୍ପଣପୂର୍ବକ ତାଙ୍କ କାର୍ଯ୍ୟକଳାପର ସ୍ମୃତିଚାରଣା କରିଥିଲେ ଏବଂ ତଦୀୟ ପବିତ୍ର ଆତ୍ମାର ସଦ୍‌ଗତିକଳ୍ପେ ବିଶ୍ୱପିତା ଅନ୍ତର୍ଯ୍ୟାମୀଙ୍କ ପାଦପଦ୍ମରେ ଅନ୍ତରର ବ୍ୟାକୁଳ ଆବେଦନ ଜଣାଇଥିଲେ ।

ପୂର୍ବାୟୋଜନକ୍ରମେ ନିକଟତମ ମହାନଦୀ ଘାଟରେ ଅପେକ୍ଷା କରି ରହିଥିବା ଡଙ୍ଗା ଯୋଡ଼ିକରେ ପ୍ରେରଣୀୟ ସମସ୍ତ ମାଲ ବୋଝେଇ ହୋଇଗଲା । ମୁଁ ଓ ଦିଦେଇ ମାନ୍ୟଗଣ୍ୟ ଓ ସାହାଯ୍ୟକାରୀ ସଭିଙ୍କଠାରୁ ଶେଷ ବିଦାୟ ମାଗି ସେହି ବୋଝେଇ ଡଙ୍ଗାରେ ଆରୋହଣ କଲୁଁ । ଆମକୁ ସର୍ବଂଶୁଭରେ ଆଣି ଘରେ ପହଞ୍ଚାଇଦେବାପାଇଁ ଦୁଇଜଣ ପୁରୁଖା ଲୋକ ମଧ୍ୟ ଆମ ସହିତ ଆସିଲେ । ସେ ଦୁହେଁ ନ ଆସିଥିଲେ ଆମର ଜଳପଥରେ ପ୍ରତ୍ୟାବର୍ତ୍ତନ ବୋଧହୁଏ ଏତେ ନିର୍ବିଘ୍ନ, ନିରାପଦ, ଆରାମଦାୟକ ଓ କ୍ଷିପ୍ର ହୋଇପାରିନଥାନ୍ତା ।

ସେଦିନ ମହାନଦୀ ଘାଟରେ ହିତାକାଂକ୍ଷୀ ବନ୍ଧୁ ବୟସ୍କ ବୟସ୍କା ଓ ସ୍ନେହୀ ପ୍ରିୟାପ୍ରୀତି ବନ୍ଧୁ ବ୍ୟଥାସ୍ଥିତ ହୃଦୟରେ ଓ ସଜଳ ଆଖିରେ ମତେ ଯେପରି ବିଦାୟ ଦେଇଥିଲେ ବୁଲୁଚିରି ସେ ଚିତ୍ରଟି ଏବେସୁଦ୍ଧା ଶିହରଣ ସୃଷ୍ଟି କରି ମୋ ମାନସ-ପଟରେ ଅମଳିନ ରହିଛି, ଧାପେ ହେଲେ ତହିଁରେ କାହିଁ ମଳିଧୂଳି ଲାଗିନାହିଁ । ଉତ୍କଳରେ ଗଙ୍ଗାରୂପେ ପୂଜିତା ଚିତ୍ରୋତ୍ପଳା (ମହାନଦୀ) ସ୍ରୋତସ୍ୱିନୀର ବିପୁଳ ବକ୍ଷରେ ନୌଯାତ୍ରୀ ହୋଇ ସ୍ୱଗ୍ରାମକୁ ଫେରୁଥିବାବେଳେ ନୌକାରେ ସ୍ତୂପୀକୃତ ଖାଦ୍ୟଶସ୍ୟରାଶି ପ୍ରତି ଦୃଷ୍ଟିପାତ କରି ଭାବୁଥାଏଁ—ପିତୃଦେବଙ୍କ ମୁଖ-ସୃତ 'ପ୍ରତ୍ୟେକ ବାପଛେଉଣ୍ଡ ପିଲା ବିଶ୍ୱପିତାଙ୍କର ପରମ ପ୍ରିୟ' ଉକ୍ତିଟିର ସତ୍ୟତା ପରଖିବାପାଇଁ ଏହାଠାରୁ ବଳି ସାକ୍ଷଲକ୍ଷ୍ୟ ପ୍ରତ୍ୟକ୍ଷ ପ୍ରମାଣ ଆଉ କ'ଣ ହୋଇପାରେ ? ଜଡ଼ବାଦୀଙ୍କ ଚକ୍ଷୁର ପରଳ କାଟିବାପାଇଁ ଏହା ଏକ ଶିକ୍ଷାପ୍ରଦ 'ମୋହମୁଦ୍‌ଗର' ନୁହେଁ କି ?

ଡିସେମ୍ବର ଠିକ୍ ଶେଷାଶେଷି ଆମେ ଗାଆଁରେ ପହଞ୍ଚିଲୁଁ । ଘରଟି ଆମର ଲକ୍ଷ୍ମୀଭଣ୍ଡାର ପ୍ରାୟ ଶୋଭା ଦିଶିଲା । କେବଳ ଶୋଇବାବଖରାକୁ ଛାଡ଼ିଦେଲେ ବାକୀ ଯେତେ ବଖରା, ସବୁଠି ମାଲସବୁ ଖୁନ୍ଦି ହୋଇଗଲା । ପିଣ୍ଡାମାନଙ୍କରେ ବି ଗୋଡ଼ ବୁଲେଇବାକୁ ରାହା ରହିଲା ନାହିଁ । 'ଅନ୍ନଚିନ୍ତା ଚମତ୍କାରୀ' ଅନ୍ତତଃ ଷ୍ଟଶବର୍ଷ ପାଇଁ ପୂରାପୂରି ଦୂରହୋଇଗଲା । ଭାବିଲି—ହୋଲେ ନଥିବ କି ତୋଲେ ନଥିବ, କୁଟୁମ୍ବଟି ପୂର୍ବଭଳି ସ୍ୱଚ୍ଛନ୍ଦରେ ସ୍ୱଚ୍ଛଳ-ଭାବରେ ଚଳିବାପାଇଁ ସ୍ୱର୍ଗବାସୀ ପିତୃଦେବ ନିଶ୍ଚୟ ଅନାଥପିଣ୍ଡଦ କରୁଣାକୂପାରଙ୍କ ହୃଦ-ସିଂହାସନକୁ ଦୋହଲାଇଦେଇ ଏସବୁର ଯଥାବିହିତ ବ୍ୟବସ୍ଥା କରାଇଦେଇଛନ୍ତି । ଅକାଳ ବୈଧବ୍ୟ ଦୁଃଖରେ ଅନୁଦିନ ଘାରିହେଉଥିଲେ ହେଁ ବୋଉ କାହାରି ଆଗରେ କେବେ-ହେଲେ ଧୈର୍ଯ୍ୟ ହରାଇବାର ଦୁର୍ବଳତା ପ୍ରକାଶ କରିନାହିଁ । ନିଜ ପିଲାଙ୍କ ମୁହଁକୁ ଚାହିଁ ଖୁବ୍ ସେ ଛାତି ଦମ୍ଭ କଲା ଏବଂ ବେଶ୍ ଚତୁରତାର ସହିତ ଠିକ୍ ଆଗ ଛାଞ୍ଚାରେ ଘରଟିକୁ ପୁନର୍ବିନ୍ୟାସିତ କରି ଖୁବ୍ ସୁରୁଖୁରୁରେ ଚଳେଇନେଲା । ରୋଜଗାରିଆ ମୁଣ୍ଡର ଅଭାବଟା କେବଳ ଯାହା ରହିଗଲା । ଠାକୁରେ ଚାହିଁଲେ ସେ ଅଭାବ ପୂରିବାଟା କିବା କଥା ?

## (୨୦) ଅଧ୍ୟୟନ-ତପସ୍ୟାର ଶେଷ ପର୍ଯ୍ୟାୟ

ଇତିମଧ୍ୟରେ ଆମ ପରୀକ୍ଷାଫଳ ବାହାରିଗଲା । ପିତୃଶୋକକ୍ଳିଷ୍ଟ ଅବସ୍ଥାରେ ଦ୍ୱିତୀୟ ବର୍ଷୀୟ ଶ୍ରେଣୀର ବାର୍ଷିକ ପରୀକ୍ଷା ଦେଇଥିଲେ ହେଁ ଆଶାତୀତ କୃତିତ୍ୱ ସହ ତୃତୀୟ ବର୍ଷୀୟ

ଶ୍ରେଣୀକୁ ଉନ୍ନୀତ ହୋଇଥିବାର ଶୁଭ ସନ୍ଦେଶ ପାଇ ମୁଁ ୧୯୨୪ ମସିହା ଜାନୁଆରି ପହିଲା ଦିନ ଗ୍ରାମ ଛାଡ଼ି ନର୍ମାଲ୍‌ସ୍କୁଲ ହଷ୍ଟେଲକୁ ଆସିଗଲି ଏବଂ ୨ ତାରିଖରେ ତୃତୀୟବର୍ଷୀୟ ଶ୍ରେଣୀରେ ଯୋଗ ଦେଲି । ଏହାହିଁ ପୁରୁଣା ତିନିବର୍ଷିଆ ପାଠ୍ୟକ୍ରମର ଉପୁଆଁ ବର୍ଷ ଏବଂ ମୋ ଅଧ୍ୟାୟିଜୀବନର ମଧ୍ୟ ଅନ୍ତିମ ବର୍ଷ । ଦେଖୁ ଦେଖୁ ଦଶଟା ମାସ ଗଡ଼ିଗଲା ମାଛ ପରି ଚଟ୍‌ପଟ ଝପିଯାଇ ସମସ୍ତର ପାଳକଆ ଗଡ଼ିଆ-ଗର୍ଭକୁ ଟୁବ୍‌ଟାକି ଡେଇଁପଡ଼ିବ । ତେଣୁ ବଡ଼ଦିନ ଛୁଟି ପରେ ସ୍କୁଲ ଫିଟି ଶେଷବର୍ଷୀୟ ପଢ଼ା ଆରମ୍ଭ ହୋଇଯିବା ସଙ୍ଗେ ଛାତ୍ରମାନଙ୍କ ମଧ୍ୟରେ କମରକଷା ପ୍ରତିଯୋଗିତାର ଲଗାମଛାଡ଼ ଘୋଡ଼ଦୌଡ଼ ମଧ୍ୟ ଆରମ୍ଭ ହୋଇଗଲା । ଗଗନଚୁମ୍ବୀ ଦୁର୍ଲଙ୍ଘ୍ୟ ହିମାଳୟ ଶିଖର ସଦୃଶ ସମ୍ମୁଖରେ ଉଭା ହୋଇଗଲା କଠୋରତମ ସର୍ବଶେଷ ପରୀକ୍ଷା । ଆତଙ୍କରେ ଛାତ୍ରମାନଙ୍କ ଛାତି ଦୁମ୍‌ଦୁମ୍ ଅରିବାକୁ ଉପକ୍ରମ କଲା । ସେତେବେଳେ ଆମମାନଙ୍କର ଭୟ ଛଡ଼ାଉଥାଏ ଛାତ୍ରବତ୍ସଳ ସାହିତ୍ୟାଧ୍ୟାପକ ପଣ୍ଡିତ କୁଳମଣି ଦାଶଙ୍କ କଣ୍ଠର 'ମା ଭୈ ମା ଭୈ' ଅଭୟ ବାଣୀ । ଅଧିକାଂଶ ଅଧ୍ୟାୟୀ କେବଳ ମନ-ଓରମାନ ମେଣ୍ଟାଇବାପାଇଁ ଗ୍ରୀଷ୍ମାବକାଶ ଓ ପୂଜାବକାଶରେ ନାମକୁମାତ୍ର ଗାଆଁ ସନ୍ଦର୍ଶନଦେଇ ବୋଡ଼ିଂକୁ ଲେଉଟିପଡ଼ି ଗ୍ରନ୍ଥକୀଟରୂପେ ପଢ଼ାରେ ହିଁ ନିମଗ୍ନ ରହିଲେ । ପରୀକ୍ଷାପାଠ୍ୟର ସାରଉଦ୍ଧୃତିନରୂପୀ ଏହି ଧାନବେଙ୍ଗଳାର ମୁଁ ଥିଲି ମେଣିଆ ବଳଦ ବା ଅଧିନାୟକ । କଳେଇବିଡ଼ାମାନଙ୍କରୁ ଧାନ ମଳି ବାହାର କରିବାପାଇଁ ମେଣିଖୁଣ୍ଟରେ ମାଳାକାରରେ ବନ୍ଧା ଏଇ ଛାତ୍ରବାହିନୀକୁ ଠିକ୍‌ଭାବରେ ମଡ଼େଇବାର ମାଷ୍ଟର-କମାଣ୍ଡର୍ ହିଅନ୍ତି ସମସ୍ତ ପାଠ୍ୟକ୍ରମରେ ଏକମାତ୍ର ବିଶାରଦ ବୟୋଜ୍ୟେଷ୍ଠତମ ପ୍ରବୀଣ କାବ୍ୟାମୋଦୀ ଛାତ୍ରପ୍ରାଣ ପଣ୍ଡିତ ଆର୍ତ୍ତତ୍ରାଣ ଶତପଥୀ—ନର୍ମାଲ୍ ସ୍କୁଲ ସଂଲଗ୍ନ ପ୍ରାକ୍‌ଟିସିଂ ମିଡ଼ଲ୍ ଇଂଲିଶ୍ ସ୍କୁଲର ହେଡ଼ପଣ୍ଡିତ, କଟକ ସହରର ସବୁଦିନିଆ ସ୍ଥାୟୀ ବାସିନ୍ଦା ହେବାରୁ ସବୁବେଳେ ସହଜଲଭ୍ୟ—ଯେ କି ଆସନ୍ନ ଶେଷ ପରୀକ୍ଷାର ହୃତ୍‌କମ୍ପନର ଭୟରେ 'ଆର୍ତ୍ତ' ହୋଇ-ଉଠିଥିବା ଛାତ୍ରମଣ୍ଡଳୀର 'ତ୍ରାଣ'କର୍ତ୍ତାରୂପେ ବାସ୍ତବରେ ସାର୍ଥକନାମା । ଛତ୍ରପତି ଶିବାଜୀଙ୍କ ଉତ୍ସାହବାଣୀ ପରି ଆର୍ତ୍ତତ୍ରାଣଙ୍କ ଉଦାତ୍ତ କଣ୍ଠୋତ୍‌ଥିତ ଉତ୍ସାହବାଣୀ ଥିଲା—

"ପଞ୍ଚୁଧୁଆ ନାହିଁ ବୀରର ଜାତକେ
ନ ମରେ କେବେ ସେ ପରୀଣ-ଆତଙ୍କେ ।"

## (୨୧) ପ୍ରଚଣ୍ଡ ସୂର—କବି ଆର୍ତ୍ତତ୍ରାଣ

କଟକବାସୀ ପଣ୍ଡିତ ଆର୍ତ୍ତତ୍ରାଣଙ୍କ ସ୍ୱଗୃହ ଥିଲା ତେଲେଙ୍ଗାବଜାର ସଂଲଗ୍ନ ହଂସନାବାଦରେ । ସେ ଥିଲେ ଓଡ଼ିଆ ପ୍ରାଚୀନ କାବ୍ୟକବିତା ଓ ଚମ୍ପୂ ଆଦିରେ ଧୁରନ୍ଧର । ସଂସ୍କୃତ ସାହିତ୍ୟରେ ଉପାଧିଧାରୀ ନ ହେଲେହେଁ ସେ ଜଣେ ଧୁରୀଣ ସଂସ୍କୃତଜ୍ଞ । କବିବର ରାଧାନାଥଙ୍କର ଆର୍ତ୍ତତ୍ରାଣ ଥିଲେ ଧର୍ମପୁତ୍ର । ଭଞ୍ଜୀୟ କାବ୍ୟ ମଧୁପାନ କରିବାରେ କବିବରଙ୍କର ପ୍ରଧାନ ସହାୟକ ଥିଲେ ଆର୍ତ୍ତତ୍ରାଣ । ମୁଦ୍ରିତ ରାଧାନାଥ ଗ୍ରନ୍ଥାବଳୀର ଆଦ୍ୟରେ କବିବରଙ୍କର

ଯେଉଁ ସଂକ୍ଷିପ୍ତ ଜୀବନୀଟି ସଂଯୋଜିତ ହୋଇଛି, ତାର ଲେଖକ ଏହି ଗୁଣଧର ଆର୍ତ୍ତତ୍ରାଣେ । ରାଧାନାଥ ଗ୍ରନ୍ଥାବଳୀ ଓ ମଧୁସୂଦନ ଗ୍ରନ୍ଥାବଳୀର ଆଦ୍ୟୋପାନ୍ତ ଆର୍ତ୍ତତ୍ରାଣଙ୍କ ଜିହ୍ୱାଗ୍ରରେ ବସତି କରି ରହିଥିଲା । ଓଡ଼ିଆ ସାହିତ୍ୟକ୍ଷେତ୍ରରେ ତାଙ୍କ ଆସନ ଅଗ୍ରପଙ୍କ୍ତିଭୁକ୍ତ ନଥିଲେହେଁ ସୁପ୍ରତିଷ୍ଠ ଥିଲା । ସେ ତତ୍କାଳୀନ ଧ୍ୱଜାଧାରୀ ବଡ଼ପଣ୍ଡାମାନଙ୍କ ବଡ଼ ପିଣ୍ଡାରେ ଅଧିଆ ପଡ଼ିବାର ଅପବିଦ୍ୟାରେ କୃତବିଦ୍ୟ ନଥିବାରୁ ଏବଂ ନିଜର ଢେଣ୍ଡୁରା ପିଟିବାରେ ବା ପିଟେଇବାରେ ଏକାନ୍ତ ଉଦାସୀନ ଥିବାରୁ ସାହିତ୍ୟିକ ପାଟକର ଜାତିଆଣ ସଭାରେ ଅପାଂକ୍ତେୟ ହେବାକୁ ବରଂ ଶ୍ରେୟସ୍କର ମଣିଥିଲେ । ଆତ୍ମସଚେତନ ଆର୍ତ୍ତତ୍ରାଣ ବୁଝିଥିଲେ, ସଭାରେ ଥିବା ଅଗ୍ରାସନ-ପୃଷ୍ଠାସନ, ଚୌକି-ବେଞ୍ଚ, ଏସବୁରେ ପାର୍ଥକ୍ୟର ପରଦା ଦେଖେ କେବଳ ମନର ସଂକୀର୍ଣ୍ଣତା । ସାରସ୍ୱତ ଭୂମିକୁ ଆସିଲେ ତ ସଭିଏଁ ସମାନ—ସମସ୍ତେ ସେବକ-ସେବିକା, ଗୁରୁଭାଇ-ଗୁରୁଭଉଣୀ । ବରଦା ବାଗ୍‌ଦେବୀଙ୍କ ଚକ୍ଷୁରେ ସଭିଏଁ ସମାନ ଭାବରେ ଅଲଅଲ, ସଭିଏଁ ତାଙ୍କର ସ୍ନେହର ସନ୍ତାନ ।

ଆର୍ତ୍ତତ୍ରାଣଙ୍କର ସାହିତ୍ୟିକ କୃତି ସଂଖ୍ୟା ବା ପରିମାଣରେ ଅଳ୍ପ ହେଲେହେଁ ସେକାଳର ଗୁଣାତ୍ମକ ମୂଲ୍ୟରେ ଅନଳ୍ପ । କବିପ୍ରତିଭା ଓ ସାହିତ୍ୟିକ ବ୍ୟୁତ୍ପନ୍ନତାରେ ସେ ମଧ୍ୟ ଊଣା ଅଧିକେ ଜଣେ ଯୁଗନ୍ଧର । ଦାରିଦ୍ର୍ୟର ଉପର୍ଯ୍ୟୁପରି କଶାଘାତ ତାଙ୍କ ବାଣୀସେବା ସଙ୍କଳ୍ପକୁ ପଦେ ପଦେ କ୍ଷତବିକ୍ଷତ କରିଦେଇଥିଲା । ତଥାପି ବିଶ୍ୱାସ ହୁଏ, ମଧ୍ୟଜୀବନରେ ଯଦି ରୁଙ୍ଗ ସୁଧୀମହଲରୁ ସମୁଚିତ ଉତ୍ସାହ ମିଳିଥାନ୍ତା, ତାହାହେଲେ ତାଙ୍କ ପ୍ରାଣବନ୍ତ ମଧୁସ୍ରାବୀ ଲେଖନୀରୁ ଆଉ କେତେ ଖଣ୍ଡି କାବ୍ୟ ନିଶ୍ଚୟ ଜନ୍ମଲାଭ କରିପାରିଥାନ୍ତା । ଦୁଃଖ-ଜଞ୍ଜାଳରେ ପୀଡ଼ିତ ହୋଇ ଯେଉଁ କେତେଖଣ୍ଡି ପୁସ୍ତକ ସେ ଲେଖିଯାଇଛନ୍ତି, ସେଗୁଡ଼ିକ ହେଲା—ବାଲ୍ୟାବସ୍ଥା (କବିତା), ବାସବଦତ୍ତା (କାବ୍ୟ), ପ୍ରବନ୍ଧକଳିକା, ଶୁଦ୍ଧିବୋଧକ, ଅପଭ୍ରଂଶବୋଧିନୀ । ତିନି ପୁତ୍ରଙ୍କ ମଧ୍ୟରୁ ଜଣେହେଲେ କେହି ପିତୃଗୁଣର କାଣିଚାଏ ଅଧିକାରୀ ହୋଇପାରିଲେ ନାହିଁ । ସ୍ୱଳ୍ପ ଶିକ୍ଷାପ୍ରାପ୍ତ ସାନପୁଅ ଲକ୍ଷ୍ମୀଧର କେବଳ ବର୍ତ୍ତମାନ ଜୀବିତ । ଏ ମହଙ୍ଗିଆ ଯୁଗକୁ ଚାହିଁଲେ ସାମାନ୍ୟ ବେତନର ସରକାରୀ ଚାକିରି ଖଣ୍ଡିଏ କରିଥିଲେ ସେ ଭୁବନେଶ୍ୱରରେ । ତାଙ୍କର ଅବସର ଗ୍ରହଣର ସମୟ ଏଥିଭିତରେ ହୋଇଯାଇଥାଇପାରେ । ଏହିସବୁ ପ୍ରତିକୂଳତା ଫଳରେ ଅନନ୍ୟଗତିକ ଆର୍ତ୍ତତ୍ରାଣଙ୍କୁ ଆମରଣ ଋଣଜାଲରେ ଛନ୍ଦିହୋଇ ରହିବାକୁ ପଡ଼ିଥିଲା । ଭାଗ୍ୟର ବିଡ଼ମ୍ବନା—'ଦୁଃଖ-ଗୁରୁଙ୍କର ବଡ଼ଶିଷ୍ଟ ହୋଇ ଜୀବନଟା ଗଲା ବିତି' ଏଭଳି ଜଣେ ଗୁଣାଢ୍ୟ କୃଚ୍ଛ୍ରସାଧକଙ୍କର ।

କବି ଆର୍ତ୍ତତ୍ରାଣ ଶତପଥୀଙ୍କ ବିରଚିତ 'ବାସବଦତ୍ତା' ଏକ ଅନବଦ୍ୟ କାବ୍ୟ—ଆମୂଳାନ୍ତ ଅଳଙ୍କାରମୟ ଏବଂ ରସପ୍ରଚୁରିମା ଓ କବିତ୍ୱବିଭବର ସମୃଦ୍ଧ ଭଣ୍ଡାର । କାବ୍ୟରସପିପାସୁ ପାଠକପାଠିକାଙ୍କୁ ତଦ୍‌ଗତ ଓ ମନ୍ତ୍ରମୁଗ୍‌ଧ କରି ରଖେ । ଏଥିର କାବ୍ୟରୀତି ଓ ବର୍ଣ୍ଣନପାଟବ ଏତେ ମାଧୁର୍ଯ୍ୟଭରା ଯେ, 'କେଦାରଗୌରୀ-ଯଯାତିକେଶରୀ-ଚନ୍ଦ୍ରଭାଗା-ମେଘଦୂତ'ର ବରେଣ୍ୟ କବି ରାଧାନାଥଙ୍କ ଅମୃତ ଲେଖନୀପ୍ରସୂତ ଆଉ ଖଣ୍ଡିଏ ରସୋତ୍ତୀର୍ଣ୍ଣ କାବ୍ୟ

ବୋଲି ବରାବର ଭ୍ରମ ହୁଏ । ଦୀର୍ଘ ଷାଠିଏ ବର୍ଷ ତଳେ ପଢ଼ିଥିବା ଏହି 'ବାସବଦତ୍ତା'ର ପାଦଟିଏ ଆଜି ମଧ୍ୟ କଣ୍ଠତଟରୁ ଉଦ୍ଗତ ପଡ଼ୁଛି—

"ତଳପରେ ବସି ଅଳୋ।ଦରୀପାଳି
ଗନ୍ଧାମୋଦେ ଥିଲେ ରସି ।"

ମନଟା ଚହଲିଉଠେ ଏକ ଅପ୍ରତ୍ୟାଶିତ ଆବେଗରେ—ଷାଠିଏ ବର୍ଷ ତଳକୁ ଫେରିଯିବାପାଇଁ ବାଟ ଦରାଣ୍ଡି ବସେ; ମାତ୍ର ପାଏନାହିଁ । ଶତ ହୁଲିଆକାଶ ସତ୍ତ୍ୱେ 'ବାସବଦତ୍ତା'ର ସନ୍ଧାନ କାହିଁ ଆଉ ନମିଳେ । ସତେ ଯେମିତି ଅଭିଶାପଗ୍ରସ୍ତା ହୋଇ ସାହିତ୍ୟ-ସ୍ୱର୍ଗରୁ ଅଦୃଶ୍ୟ ହୋଇଯାଇଛି । ମା ସରସ୍ୱତୀଙ୍କ କୃପାରୁ ମୋ ବଞ୍ଚିଥିବା ଭିତରେ ଯଦି ଅଭିଶାପ କାଳଟା କଟିଯାନ୍ତା, କୋଟିନିଧି ପରି ତାକୁ ସମ୍ବାଦ ରଖନ୍ତି । ମୋଠପରି ସହସ୍ର ଆଶାପ୍ରାର୍ଥୀଙ୍କ ତୃଷ୍ଣା ମଧ୍ୟ ମେଣ୍ଟିଯାନ୍ତା ।

ଏହି ଶକ୍ତିଧର ଲେଖକଙ୍କ ରଚନାବଳୀର ପୂର୍ଣ୍ଣାଙ୍ଗ ତାଲିକା ପ୍ରସ୍ତୁତ କରିବା ଅନୁସନ୍ଧାନ-ସାପେକ୍ଷ । ଏସବୁ ସତ୍ତ୍ୱେ ଏହି କୃତକର୍ମୀଙ୍କର ନାମ ଆଧୁନିକ ସାରସ୍ୱତ ମହଲରେ ବିସ୍ମୃତ ପ୍ରାୟ । ତାଙ୍କର ତିରୋଧାନ ସମ୍ଭବତଃ ୧୯୩୩ ବା ୧୯୩୪ ମସିହାରେ । ରାଧାନାଥଙ୍କ ସୁଯୋଗ୍ୟ ପୁତ୍ର ସୁଲେଖକ ଶଶିଭୂଷଣ ରାୟଙ୍କ ପ୍ରଯତ୍ନରେ ସାରସ୍ୱତ ଶ୍ମଶାନପୀଠ 'ସତୀ-ଚଉରା'ରେ ସ୍ଥାପିତ କ୍ଷୁଦ୍ର ସମାଧିସ୍ତମ୍ଭଟି ଝଡ଼ବର୍ଷା ବାଲିଝଡ଼ ସହି ସୁକବି ଆର୍ତ୍ତତ୍ରାଣଙ୍କ ବର୍ଣ୍ଣମାନ ନାମକୁ ଆଉ କେତେ ଦିନ ବଞ୍ଚାଇରଖିପାରିବ ? ଓଡ଼ିଆ ସାହିତ୍ୟପଞ୍ଜୀର ଗଣକାରମାନଙ୍କ ଗଣନାରେ ଅଦ୍ୟାବଧି ସୁଧୀକବି ଆର୍ତ୍ତତ୍ରାଣଙ୍କ ନାମରେ ଖଡ଼ିଗାର ପୁଡ଼ା ପଡ଼ିନାହିଁ । ଦୁଃଖ ଲାଗେ, କ୍ଷୋଭ ମଧ୍ୟ ଆସେ—

"କ୍ଷୁଦ୍ର ଶିପ୍ରାସ୍ରୋତ ବିଖ୍ୟାତ ଜଗତେ,
ମହାନଦୀ ନାମ ରହିଲା ଗୁପତେ ।"

'ଉତ୍କଳ ସାହିତ୍ୟ ସମାଜ' ପକ୍ଷରୁ ଯଦି ତୁରନ୍ତ ଯତ୍ନ ନ ନିଆଯାଏ, ତାହାହେଲେ ଅର୍ଦ୍ଧଜୀର୍ଣ୍ଣ ଏହି ସ୍ମୃତିସ୍ତମ୍ଭଟି ପ୍ରକୃତିର କ୍ଷୟଂକରୀ ଲୀଳାରେ ଅଳ୍ପଦିନେ ଭୂଲୁଣ୍ଠିତ ହୋଇଯିବା ସୁନିଶ୍ଚିତ । ତେଣିକି ରାଧାନାଥ ଗ୍ରନ୍ଥବଳୀର ପ୍ରାରମ୍ଭସ୍ଥ ଆର୍ତ୍ତତ୍ରାଣଙ୍କ ଲିଖିତ ସଂକ୍ଷିପ୍ତ ରାଧାନାଥ ଜୀବନୀଟି କେବଳ ଶେଷ ସ୍ମାରକ ହୋଇ ରହିବ । ଲୀନଭାଗ୍ୟ ଆର୍ତ୍ତତ୍ରାଣ ସେହି ଜୀବନୀଟି ଭିତରେ ନିଜେ ନିଜ ନାମର ନୀରବ ଡାକୁକ ହୋଇ କେତେ କାଳ ବା ଜିଇରହିପାରିବେ ? ଚଉବାହା ସାହା ହୁଅନ୍ତୁ, ସୁଦୟା କରନ୍ତୁ, କଟିକଟି ଉଆଁସୀ ଅନ୍ଧାର ତାଙ୍କ ଅଦୃଷ୍ଟର ମରଣୋତ୍ତର ଲିପି ନ ହେଉ ।

ଯାହାହେଉ, ଆଶା-ନିଆଶା, ଭୟ-ନିର୍ଭୟର ବ୍ୟୂହ ଭେଦି ଆଗେଇଗଲୁଁ ଆମେ ଯେତେ ଅଧ୍ୟୟନବ୍ରତୀ ପରୀକ୍ଷାର୍ଥୀ । ଆର୍ତ୍ତତ୍ରାଣ ସାର୍‌ଙ୍କ ଆପ୍ରାଣସାଧ୍ୟ ପ୍ରଯତ୍ନରୁ ଏହି ସର୍ବଶେଷ ପରୀକ୍ଷାରେ ସମସ୍ତେ ହୋଇଥିଲୁଁ ଉଦ୍ୟମରେ ସଫଳକାମ—କିଏ ତଳ କିଏ ଉପର, କିଏ ସାତ କିଏ ସତର । ଗୋଟାଏ ବିଶେଷ କଥା ଏଠାରେ ଜଣାଇବାର ଅଛି।

‘ସାହିତ୍ୟ’ ପତ୍ରକୁ ଅଧିକାଂଶ ଛାତ୍ରଙ୍କର ଡରଥାଏ; କାରଣ ସେଥିରେ ଯେତେ ପ୍ରଶ୍ନ ପଡ଼େ, ସବୁଗୁଡ଼ାକ ଖପଣ କଡ଼ା । ଯଦି କେହି ଶେଷ ପରୀକ୍ଷାରେ କେବେ ଅକୃତକାର୍ଯ୍ୟ ହୁଏ, ତାହାହେଲେ ଏହି ସାହିତ୍ୟପତ୍ରରେ ଫେଲ୍ ହେବାଯୋଗୁଁ । ମୋ ପଢ଼ାସାଥୀଙ୍କ ମଧ୍ୟରୁ ପାଞ୍ଚ ଛଅ ଜଣ ‘ସାହିତ୍ୟ’ ଓ ‘ବ୍ୟାକରଣ’ରେ ନିପଟ ଦୁର୍ବଳ ଥିଲେ । ସେଥିପାଇଁ ପଣ୍ଡିତ ମହାଶୟଙ୍କ ନିର୍ଦ୍ଦେଶମତେ ପରୀକ୍ଷାପୂର୍ବ ଦୁଇମାସଯାକ ସେମାନେ ରାତିରେ ମୋ ପାଖକୁ ବରାବର ଆସୁଥାନ୍ତି । ମୁଁ ମୋ ସାଧ୍ୟମତେ ତାଙ୍କମାନଙ୍କର ଦୁର୍ବଳତାକୁ ସୁଧାରି ସଜଡ଼ା ବାଗରେ ଆବଶ୍ୟକତାଠିକ ଭରଣା କରିଦେବାପାଇଁ ଆନ୍ତରିକ ପ୍ରଯତ୍ନ କରିଥିଲି । ଅନ୍ତତଃ ମୋର ଏତିକି ହୃଦ୍‌ବୋଧ ହୋଇଥିଲା ଯେ, ପାସ୍ ନମ୍ବରଠୁଁ କିଛି ଅଧିକା ରହିବା ମାନଆରେ ମୁଁ ସେମାନଙ୍କୁ ଶେଷ-ମୁହୂର୍ତ୍ତିଆ ତାଲିମ ଦେଇପାରିଛି । ସୁଖର କଥା, ସେଇତକ ମସଲାର ସମ୍ବଳରେ ସେମାନେ ବେଶ୍ ଭବ୍ୟ ନମ୍ବର ରଖି ‘ସାହିତ୍ୟ’ ପତ୍ରରେ ପାସ୍ କରିଯିବାର ଉଜ୍ଜ୍ୱଳ ଆଶାରେ ବଳୀୟାନ୍ ହୋଇଉଠିଥିଲେ ।

## (୨୨) ମୋର ପ୍ରଥମ ଶିଶୁସାହିତ୍ୟ କୃତି ‘ଲବକୁଶ’

ପରୀକ୍ଷାନ୍ତ ବଳକା ସମୟତକ ଗଳ୍ପାମୋଦ ଓ ଅସ୍ଥସବିନୋଦାଦିରେ ସମସ୍ତଙ୍କର ସୁଖରେ ବିତିଗଲା; କିନ୍ତୁ ମୋ ପିଣ୍ଡଟି ଭିନ୍ନ ଉପାଦାନରେ ଗଢ଼ା ହୋଇଥିବାରୁ ମସ୍ତିଷ୍କ ମୋର ଏକ ଆୟାସସାଧ୍ୟ ସାଧନାର ଗୁରୁ ଚିନ୍ତାରେ ଭାରାକ୍ରାନ୍ତ ହୋଇଉଠିଲା । ସେହି ସାଧନାଟିର କଥା ଯଥାସ୍ଥାନରେ ବଳେ ଫିଟିବ । ତା’ ପୂର୍ବରୁ ମୋ ଭାଇଭଉଣୀମାନଙ୍କ କଥା ପ୍ରୟୋଜନ ଦୃଷ୍ଟିରୁ ଉଲ୍ଲେଖ କରୁଛି ।

ଆମେ ଥିଲୁଁ ଚାରି ଭାଇ ଓ ଗୋଟିଏ ଭଉଣୀ । ଅନ୍ୟ ତିନି ଭାଇଙ୍କ ନାମ ଯଥାକ୍ରମେ ସୂର୍ଯ୍ୟମଣି, ଚନ୍ଦ୍ରମଣି, ଇନ୍ଦ୍ରମଣି ଏବଂ ବୟସରେ ସର୍ବକନିଷ୍ଠା ଏକମାତ୍ର ଭଉଣୀଟିର ନାମ ସୌଦାମିନୀ । ସୂର୍ଯ୍ୟମଣି ଓ ଚନ୍ଦ୍ରମଣି ଏ ଦୁହିଁଙ୍କ ଜନ୍ମ ବାପାଙ୍କ ପ୍ରବାସସ୍ଥଳ ରେଢ଼ାଖୋଲରେ; ଆଉ ଇନ୍ଦ୍ରମଣି ଓ ସୌଦାମିନୀ ଦୁହିଁଙ୍କର ଜନ୍ମ ସ୍ୱଗ୍ରାମ ମୂଳବସନ୍ତରେ । ସୌଦାମିନୀ ଭୂମିଷ୍ଠ ହୋଇଥିଲା ୧୯୨୨ ମସିହାରେ । ପିତା ସେତେବେଳେ ଥିଲେ ରେଢ଼ାଖୋଲରେ ଏବଂ ସେହିଠାରେ ତାଙ୍କର ଦେହାନ୍ତ ଘଟିଥିଲା ୧୯୨୩ରେ । ଏଣୁ ଅଭାଗିନୀ ସୌଦାମିନୀ ପିତୃମୁଖ ଦର୍ଶନରୁ ବଞ୍ଚିତା ରହିଗଲା ଏ ଜନ୍ମଟିପାଇଁ ।

ଆମେ ଚାରିଭାଇଙ୍କ ମଧ୍ୟରେ ‘ଚନ୍ଦ୍ର’ର ରୂପକାନ୍ତି ଜନ୍ମବେଳୁଁ ଥିଲା ଚନ୍ଦ୍ରପ୍ରାୟ ଶୁଭ୍ରୋଜ୍ଜ୍ୱଳ, ଶାରୀରିକ ଗଠନ ସୌଷ୍ଠବ ଅତୁଳନୀୟ, ପୁଣି ଅବୟବ ଥିଲା ଅସାଧାରଣ ଭାବରେ ସ୍ଥୂଳ, ପୁଷ୍ଟ ଓ ବୃହଦାକାର । ଯେ ଦେଖିବ, କହିବ ବର୍ଷକର ଛୁଆପୁଅଟିଏ । ଦେବଶିଶୁପ୍ରାୟ ଏତାଦୃଶ ନବଜାତକଟିକୁ ଚାହିଁଦେଇମାତ୍ରେ ପିତା ସନ୍ଦେହାକ୍ରାନ୍ତ ସ୍ୱରରେ କହିଥିଲେ, “ଏ ପିଲା କେବେହେଁ ମୋ ଘରେ ଜନ୍ମିବାର ନୁହେଁ, ଭୁଲ୍‌ରେ କେମିତି ଏଠିକି ଚାଲିଆସିଛି ।” ସ୍ୱାମୀଙ୍କର ଏଭଳି ପ୍ରକାଶ୍ୟ ଆକ୍ଷେପରେ ଗର୍ଭଧାରିଣୀ ମୁକ୍ତାଙ୍କ ମାତୃବକ୍ଷ ଘୋର ମର୍ମବେଦନାରେ କୁହରିଉଠିଥିଲା ।

ଚନ୍ଦ୍ରମଣି ଚନ୍ଦ୍ରକଳା ପରି ଦିନକୁ ଦିନ ବଢ଼ିବାକୁ ଲାଗିଲା । କୃଷ୍ଣପକ୍ଷରେ ଚନ୍ଦ୍ରର କଳାରେ କ୍ଷୟ ଘଟେ; କିନ୍ତୁ ନବଜାତକ ଏହି 'ଚନ୍ଦ୍ର'ର କଳାରେ କେବେହେଲେ କ୍ଷୟିଷ୍ଣୁ କୃଷ୍ଣପକ୍ଷର ଛାୟାପାତ ହେଉନାହିଁ । କ୍ରମବର୍ଦ୍ଧିଷ୍ଣୁ ଶିଶୁକୁମାରଟି ତିନିବର୍ଷ ଅତିକ୍ରମ କରି ଚତୁର୍ଥ ବର୍ଷରେ ପଦାର୍ପଣ କରନ୍ତେ ତାହାର ସହଜାତ ବୁଦ୍ଧିବୃତ୍ତିରେ ଅଦ୍ଭୁତ ବିଚକ୍ଷଣତା ପ୍ରକାଶ ପାଇଥିଲା । ଅତି ନିର୍ଭୟରେ ସେ କେତେବେଳେ ବାଉଁଶବଣିରେ, କେତେବେଳେ ବା ଆମ୍ବତୋଟାରେ ଏକା ଏକା ବୁଲିବାକୁ ଲାଗିଲା । ସଭିଙ୍କ ଅଗୋଚରରେ ଦିନେ ଚନ୍ଦ୍ରମଣି ବାଉଁଶକଣିଟିଏ ଯୋଗାଡ଼ କରି ତାକୁ ଦୁଇ ହାତରେ ବଙ୍କେଇଲା, ଲମ୍ବା ଝୋଟକୁ ବଳି ବଳି ସରୁ ଦଉଡ଼ି କରି ତଦ୍ଦ୍ୱାରା ବଙ୍କା ବାଉଁଶକଣିର ଦୁଇମୁଣ୍ଡକୁ ବାନ୍ଧିଦେଲା । ଏ ହେଲା ତାର ଧନୁ । ତା'ପରେ ହାତେ ଦେଢ଼ହାତର ଲମ୍ବା ଖଣ୍ଡେ କାଉଁରିଆ ଆଣି ତା' ଅଗରେ ଶିମ୍ବୁଡ଼ାଙ୍କର ଟିକି ଖୋଳପାଟିଏକୁ ମୁଦିଆ ପରି ପିନ୍ଧେଇଦେଲା । ଏଇ ମୁଦିଆପିନ୍ଧା କାଉଁରିଆ ହେଲା ତାର ଶର । ଏବେ ବାଳବୀର 'ଚନ୍ଦ୍ର' ବାଆଁ କାନ୍ଧରେ ଧନୁ ଓହଳାଇ ଓ ଡାଆଁ ହାତରେ ଶର ହଲେଇ ହଲେଇ ଶିକାର ଅନ୍ୱେଷଣରେ ବାହାରିପଡ଼ିଲା । ଅଳ୍ପ ଦୂରରେ ଗୋଟାଏ ଝଙ୍କା ଡାଳରେ ଚକଚକିଆ କଜଳପାତି ଚଢ଼େଇଟିଏ ବସିଥିଲା । ଚନ୍ଦ୍ର ବଡ଼ କଦରରେ ଗୋଡ଼ ଚପି ଚପି ଯାଇ ଧନୁରେ ଶରକୁ ଯୋଖି କଜଳପାତିକୁ ଲକ୍ଷ କରି ଏଡ଼େ ଜୋର୍‌ରେ ଦେଲା ଛାଡ଼ି ଯେ, ସେଇ ଶରଘାତରେ ପକ୍ଷୀଟି ଛଟ୍‌ଛଟ୍ ହୋଇ ତଳକୁ ଖସିପଡ଼ିଲା । ଏହିପରି କେତେ କୁଆ, ବଣି, ଗୁଣ୍ଡୁଚିମୂଷାଙ୍କୁ ମାରି କଅଁଳ ବାଲ୍ୟତ ବେଳାରୁ ସେ ଟାଣୁଆ ବାଣୁଆ ବନିଗଲା । ବାଗ୍ମୀ ବିଶ୍ୱନାଥ କର ତାର ଲକ୍ଷ୍ୟଭେଦରେ ଏପରି ସିଦ୍ଧହସ୍ତତା ଦେଖି ଆଚମ୍ବିତ ହୋଇଯାଇଥିଲେ ଏବଂ ସେହିଦିନୁଁ ତାକୁ 'ବୀରବାହାଦୁର' ବୋଲି ଡାକିବାକୁ ଲାଗିଲେ ।

ଏହା ୧୯୧୭ ମସିହାର କଥା । ସେତେବେଳକୁ ମତେ ଦଶ ବର୍ଷ ପୂରି ଏଗାର ଚାଲିଥାଏ । ସେହି ବର୍ଷ ବସନ୍ତିକା ମହାମାରୀ ଗାଁଏ ଗାଁଏ ପଶି ସଂହାରର ତାଣ୍ଡବଲୀଳା ଖେଳାଇଦେଲା । ଘରେ ଘରେ ଆତଙ୍କ, କୋକୁଆଭୟ, କ୍ରନ୍ଦନରୋଳ । ସନ୍ତ୍ରସ୍ତ ଲାଗିବା ପରେ ପରେ ସବୁ ଘରର ତାଟିକବାଟ କିଳା । ମଶାଣିପଦାକୁ ଚଉଦିଗରୁ ଶବକୋକେଇ ପଟୁଆର ଛୁଟିଥାଏ ପଛକୁପଛ—କି ଦିନ କି ରାତି । ଏକା ମୂଳବସନ୍ତରୁ ଶହେ ବିଶାଶହେ ମୁଣ୍ଡ ବଳି ପଡ଼ିଲା ସେଇ 'ବୁଢ଼ୀଗୋଲ'ରେ । ସେହି ଈତିଭୟ ଭିତରେ ନନ୍ଦିତା ମାତାଙ୍କର ସୁଖକୋଡ଼ଶାୟୀ କନ୍ଦର୍ପସୁନ୍ଦର ତନୁ ଚନ୍ଦ୍ରମୁଖ ବାଳୁତ 'ଚନ୍ଦ୍ର'ଟି ମହାକାଳର ନିର୍ମମ ଫୁତ୍କାରରେ ଅଚାନକେ ଅସ୍ତମିତ ହୋଇଗଲା ଚିରଦିନ ପାଇଁ ଏକ ନିବିଡ଼ ତମୋମୟୀ ପ୍ରଳୟଙ୍କରୀ ରଜନୀର ପାହାନ୍ତ ପ୍ରହରରେ । ପିତୃଦେବଙ୍କ ସେଦିନର ଫଳସ୍ୱାମୂକ୍ ଆକ୍ଷେପୋକ୍ତି ଏହିରୂପେ ନିଷ୍ଠୁର ସତ୍ୟରେ ପରିଣତ ହେଲା ।

ବୀରବାହାଦୁର 'ଚନ୍ଦ୍ର'ର ଅପୋଗଣ୍ଡକାଳୀନ ଆକସ୍ମିକ ବିୟୋଗର କରୁଣ ଦୃଶ୍ୟ ଦୀର୍ଘ ଆଠ ବର୍ଷ ଧରି ମୋ ବୁକୁତଳେ ମୁର୍ମୁର ଦାହପରି ଜୁଳୁଜୁଳୁ ହୋଇ ରହିଥାଏ ।

ତାର ଅବ୍ୟର୍ଥ କାଣ୍ଡଶର କାହାଣୀ ପୁରାଣ ଆଖ୍ୟାନ ସହ ଆଦୌ ଭିନ୍ନ ହେଉନଥାଏ । କ୍ଷୀଣତର ପରମାୟୁର ଲଙ୍ଗଳା ବୟସରେ ସମସ୍ତଙ୍କୁ କନ୍ଦାଇ ଅଦୃଶ୍ୟପୁରୀକୁ ଚାଲିଯାଇଥିବା ସେହି ଧନୁର୍ଦ୍ଧାରୀ କୁନିଭାଇଟିର ପବିତ୍ର ସ୍ମୃତିରେ ଅନୁରୂପ କୁନି ବହିଟିଏ ଲେଖି ହୃଦୟର ଭାର ଉଶ୍ୱାସ କରିବାକୁ ସ୍ଥିର କଲି । ତେବେ ବହିଟିର କଥାବସ୍ତୁ କ'ଣ ହେବ ? ଭାବି ଭାବି ନିର୍ବାଚନ କଲି ଧନୁର୍ବାଣଧାରୀ ଯାଆଁଳାଭାଇ 'ଲବକୁଶ'ଙ୍କ ମର୍ତ୍ତ୍ୟଦୁର୍ଲଭ ବୀରତ୍ୱ କାହାଣୀ । ଏହି ଅବସରରେ ମନେପଡ଼ିଗଲା 'ବିଲ୍ୱମଙ୍ଗଳ' ପାଣ୍ଡୁଲିପିକୁ ତନ୍ନ ତନ୍ନ ପଢ଼ିଲା ପରେ 'ମୋ ବାଇଧନ' ଶିଶୁକବିତା ଟିକି ବହିର ଲେଖକ ପୂଜ୍ୟ ଶିକ୍ଷକ କୃଷ୍ଣଚନ୍ଦ୍ର ସେନଗୁପ୍ତ ଦେଇଥିଲେ ଯେଉଁ ସାରବାନ୍ ମନ୍ତବ୍ୟଟି । ସେହି ମନ୍ତବ୍ୟର ଗୂଢ଼ମର୍ମ ଥିଲା—'ଶୈଶବାବସ୍ଥାରୁ ଯେତେବେଳେ କୃଷ୍ଣର ଲେଖନୀ ଦୁରାରୋହ ପର୍ବତଶିଖରକୁ ଉଠିଲାଣି, ଭବିଷ୍ୟତରେ ତାହା ଯେ ଆଉ ସମତଳ ପ୍ରଦେଶକୁ ଖସିବ, ଅର୍ଥାତ୍ ସରଳଭାଷାରେ ଭାବପ୍ରକାଶ କରିବାକୁ ପସନ୍ଦ କରିବ, ଏ ଆଶା ସୁଦୂରପରାହତ ।' ଗୁରୁ କୃଷ୍ଣଚନ୍ଦ୍ରଙ୍କର ଆଶୀର୍ବାଦବର୍ଷୀ ମନ୍ତବ୍ୟଟି ଏବେ ଶିଷ୍ୟ କୃଷ୍ଣଚନ୍ଦ୍ରର ଲେଖନୀକୁ ଶିଶୁସାହିତ୍ୟାଭିମୁଖୀ କରାଇବାରେ ହେଲା ପର୍ଯ୍ୟାପ୍ତ ପ୍ରେରଣାର ଉତ୍ସ । ପ୍ରତିଜ୍ଞା କଲି ମୁଁ "ଲବକୁଶ ବହିଟିକି ଏପରି ଶିଶୁକଥା ସହଜତମ ଭାଷାରେ ଲେଖିବି ଯେ, ଗୁରୁ ସେନଗୁପ୍ତ ମହୋଦୟଙ୍କ ମନ୍ତବ୍ୟରେ ପ୍ରଚ୍ଛନ୍ନ ରହିଥିବା ଶୁଭେଚ୍ଛାପୂର୍ଣ୍ଣ ଆହ୍ୱାନର ତାହାହିଁ ହେବ ଯଥାର୍ଥ ବିନମ୍ର ଉତ୍ତର ।"

ଷାଠିଏ ସତୁରି ପୃଷ୍ଠାର ଏହି ଶ୍ରେଷ୍ଠ ବହିଟି ଲେଖିବାପାଇଁ ଦଶ ଦିନରୁ ଅଧିକ ସମୟ ଲାଗି ନଥିଲା । ଲେଖାରମ୍ଭ ପୂର୍ବରୁ ମୁଁ ନିଜର ମନକୁ ଚାରିବର୍ଷ ବୟସର ଶିଶୁମନ ସ୍ତରକୁ ଖସାଇଆଣିଥିଲି । ତେଣୁ ମୋ ଲକ୍ଷ୍ୟର ଆଭିମୁଖ୍ୟ ସର୍ବତୋଭାବରେ ସାଫଲ୍ୟମଣ୍ଡିତ ହେବାପାଇଁ ସ୍ୱଚ୍ଛନ୍ଦ ବାତାବରଣର ସୁଯୋଗ ପାଇଲି । ଙ୍କ ଞ ନ୍ତ ଣ୍ଟ ଣ୍ଡ ପ୍ରଭୃତି ଛଅ ସାତୋଟି ଯୁକ୍ତାକ୍ଷରବିଶିଷ୍ଟ ଯେଉଁ ଅଳ୍ପ କେତୋଟି ମାତ୍ର ଶବ୍ଦ ଶିଶୁର ଅତି ପରିଚିତ ଏବଂ ସେଗୁଡ଼ିକୁ ସେ ଶୁଣି ଶୁଣି ଅର୍ଥ ବୁଝିଥାଏ ଓ ସେହି ସେହି ଅର୍ଥରେ ବ୍ୟବହାର ମଧ୍ୟ କରିଥାଏ, ସେଇ ସେତକ ଶବ୍ଦ ଛଡ଼ା ବହିର ସମଗ୍ର କଳେବରଟି କେବଳ ଅଫଳା ଓ ଫଳା ଅକ୍ଷରର ପୁଞ୍ଜ ପୁଞ୍ଜ ସୁଖଶ୍ରାବ୍ୟ ଶବ୍ଦ ସମାବେଶରେ ଏକ କୌତୁକକୁଞ୍ଜର ମନୋହାରିତା ପ୍ରାପ୍ତ ହେଲା ।

ଏହିରୂପେ ଚଠା ପାଣ୍ଡୁଲିପି କାମ ସରିଗଲା ପରେ ତାକୁ ଟିକିଏ ମଠାମଠି କରିଦେଇ ତହିଁରୁ 'ଲବକୁଶ'ର ସାଫ ପାଣ୍ଡୁଲେଖ ଖଣ୍ଡିଏ ତୁରନ୍ତ ପ୍ରସ୍ତୁତ କରିଦେଲି ଏବଂ ତାକୁ ମନ୍ତବ୍ୟକାରୀ ଗୁରୁ ସେନଗୁପ୍ତଙ୍କ ସାହେବଜାଦା ବଜାରସ୍ଥ ତାଙ୍କ ବାସଭବନରେ ଦେଇ ଆସିଲି, ଦୟାକରି ମନୋନିବେଶ ସହ ଆମୂଳାନ୍ତ ପଢ଼ି ନିରପେକ୍ଷ ମତାମତ ପ୍ରଦାନ କରିବାପାଇଁ । ସେନଗୁପ୍ତ ମହାଶୟ ନିଜେ ଜଣେ ପ୍ରତିଷ୍ଠିତ ସାହିତ୍ୟିକ ଓ ବହୁ ପୁସ୍ତକର ଲେଖକ, ତଦୁପରି ମହାପୁରୁଷ ଶ୍ରୀରାମକୃଷ୍ଣ ପରମହଂସଙ୍କର ଏକାନ୍ତ ଭକ୍ତ ଓ କଟକରେ 'ରାମକୃଷ୍ଣ କୁଟୀର'ର ଆଦ୍ୟ ସ୍ଥାପୟିତା । ସାତିଶୟ ଆଦର ଓ ଆଗ୍ରହର ସହିତ ସେ

ପାଣ୍ଡୁଲେଖଟି ମୋ ହସ୍ତରୁ ଗ୍ରହଣ କଲେ ଏବଂ ଦିନକ ପରେ ଏଇ ବେଳେ୍ ସାତଟାରେ ତାଙ୍କ ନିକଟକୁ ଆସିବାଲାଗି ସସ୍ମିତ ନିର୍ଦ୍ଦେଶ ଦେଲେ ।

ପୂର୍ବନିର୍ଦ୍ଧାରଣମତେ ଠିକ୍ ଦିନକ ପରେ ଠିକ୍ ସେଇ ସକାଳ ସାତଟା ସମୟରେ ମୁଁ ସାର୍‌ଙ୍କ ବାସଗୃହରେ ଉପସ୍ଥିତ ହେଲି । ସାର୍ ଦୋମହଲର ନିଜ ପ୍ରକୋଷ୍ଠରେ ବସି ସେତେବେଳେ କ'ଣ କାମ କରୁଥିଲେ, ମୋ ଉପରେ ଦୃଷ୍ଟି ପଡ଼ିଗଲାମାତ୍ରେ 'ଲବକୁଶ' ପାଣ୍ଡୁଲେଖଟି ଧରି ତଳ ମହଲର ବାରଣ୍ଡାକୁ ଓହ୍ଲାଇଆସିଲେ ଏବଂ ଗଦ୍‌ଗଦୋଚ୍ଛ୍ୱସିତ ସ୍ୱରରେ ମତେ କହିଲେ, "ଲେଖାତକ ଏକ ନିଶ୍ୱାସରେ ପଢ଼ି ଶେଷ କରିଦେଲି । ଶିଶୁ-ଭାଷାରେ ଭାବ ପ୍ରକାଶ କରି ତୁ ଯେ ଛୁଆଠଁୁ ବୁଢ଼ାଯାଏ ସମସ୍ତଙ୍କ ପ୍ରାଣକୁ ଅଦୃଶ୍ୟ ଡୋରରେ ଟାଣିନେଇପାରିଛୁ, ଏହା ତୋର ନାହିଁ-ନ-ଥିବା କୃତିତ୍ୱ । ଏଥିରେ ଥିବା 'ଏଣୁ ହସ ତେଣୁ କାନ୍ଦ' ଓ 'ମଲି ଗଛରେ କଅଁଳ ପତର' ପାଖ ପାଖ ଅଧ୍ୟାୟ ଦୁଇଟି ମତେ ଠକ୍ ଠକ୍ କନ୍ଦାଇଦେଇଛି ସମ୍ବେଦନାର ଅଶ୍ରୁରେ ଅଭିଭୂତ କରି । ଏହାହିଁ ତୋ ଲେଖା ଓ ଲେଖନୀର ଚରମ ଉତ୍କର୍ଷର ସାର୍ଟିଫିକେଟ୍ । ତୋତେ ଆଜି ଖୋଲା ହୃଦୟରେ କହୁଛି, ତୋ କଲମରୁ ଯେ କୁନୁମୁନି ଶିଶୁମାନଙ୍କ ଛନଛନିଆ ପ୍ରାଣକୁ ଛୁଇଁଲା ଭଳି ଏଡ଼େ ଚମତ୍କାର ସାହିତ୍ୟ ଝରିପାରିବ, ଏହା କେବେହେଲେ ମୋ କଳ୍ପନାର ଧାର ସୁଦ୍ଧା ସ୍ପର୍ଶ କରି ନଥିଲା । ମୋ ବିଚାରରେ ପ୍ରକୃତ 'ଶିଶୁସାହିତ୍ୟ'ର ଏହାହିଁ ଅସୁମାରମ୍ଭ ଆମ ଓଡ଼ିଶା ମାଟିରେ ।"

ଏତିକ ଗୁଣାନୁବାଦ କରି ସେ ମୋ 'ଲବକୁଶ' ପାଣ୍ଡୁଲେଖଟି ଫେରାଇଦେବା ସଙ୍ଗେ ସଙ୍ଗେ ତାଙ୍କ ନିଜ ଲିଖିତ 'ଧ୍ରୁବ' ଓ 'ପ୍ରହ୍ଲାଦ' ନାମରେ ଦୁଇଖଣ୍ଡି ବହିର ହାତଲେଖା ଖାତା ମୋ ହସ୍ତରେ ଅର୍ପଣପୂର୍ବକ କହିଲେ, "ଏ ଦୁଇଟି ଶିଶୁପାଠ୍ୟ ବହିର କଥାବସ୍ତୁ 'ବିଷ୍ଣୁପୁରାଣ'ରୁ ଗୃହୀତ । ତୁ ଉଭୟକୁ ମନଦେଇ ମୂଳରୁ ଶେଷଯାଏ ପଢ଼ିବୁ ଏବଂ ଯେଉଁ ଯେଉଁ ସ୍ଥଳରେ ଭାଷାର ଉଚ୍ଚାବଚତା ଥିବ, ସେସବୁକୁ ସମତୁଲ କରିଦେଇ ଶିଶୁପଯୋଗୀ ସରଳ ଶୈଳୀରେ ପରିଣତ କରିଦେବୁ । ତୋ ହାତ ବାଜି ଥରେ ମାଜି ହୋଇଗଲେ ବହି ଦିଓଟି ଶିଶୁସମ୍ପ୍ରଦାୟର ଅଧିକ ଉପଭୋଗ୍ୟ ହୋଇଉଠିବ ।"

ସେନଗୁପ୍ତ ସାର୍‌ଙ୍କଠାରୁ ବିଦାୟ ନେଇ ଛାତ୍ରାବାସକୁ ଫେରିଲି । ତାଙ୍କ ପ୍ରଦତ୍ତ ପାଣ୍ଡୁଲିପିଦ୍ୱୟକୁ ପଢ଼ି ତହିଁରେ ଥିବା ଶାବ୍ଦିକ ବନ୍ଧୁରତାକୁ ଯଥାସମ୍ଭବ ଦୂର କରି କେତେକ ସ୍ଥାନର ଭାଷା ମଧ୍ୟ ପରିବର୍ତ୍ତିତ କରି ଅପେକ୍ଷାକୃତ ସହଜତର କରିଦେଲି । ସାର୍‌ଙ୍କ ଅଭିପ୍ସା ମୁତାବକ କାଟଛାଣ୍ଟ ଓ ମାର୍ଜିତ କରିଦେଲା ପରେ ଉକ୍ତ ପାଣ୍ଡୁଲିପି ଦୁଇଟିକୁ ଗୁରୁ ସେନଗୁପ୍ତଙ୍କୁ ପ୍ରତ୍ୟର୍ପଣ କରିଦେଇଆସିଲି ।

ଏହି ଘଟଣାର ଦେଢ଼ବର୍ଷ ପରେ ଅର୍ଥାତ୍ ୧୯୨୬ ଡିସେମ୍ବରରେ ମୋ 'ଲବକୁଶ' ପାଣ୍ଡୁଲେଖଟି 'ଦତ୍ତ ପ୍ରେସ୍'ରେ ମୁଦ୍ରିତ ହୋଇ ସଚିତ୍ର ରୂପ ସହ ଆତ୍ମପ୍ରକାଶ କଲା— ମୁଁ ନିଜେ ହୋଇଥିଲି ବହିଟିର ପ୍ରକାଶକ ଏବଂ ତାହାକୁ ପ୍ରାଣାଧିକ ସହୋଦର ସ୍ୱର୍ଗତ 'ଚନ୍ଦ୍ରମଣି' ଉଦ୍ଦେଶ୍ୟରେ ଉତ୍ସର୍ଗ କରିଥିଲି । ସେହି ପ୍ରଥମ ସଂସ୍କରଣରେ ଦୁଇହଜାର ଖଣ୍ଡ

ବହି ଛପା ହୋଇଥିଲା । କଟକ, ପୁରୀ, ବାଲେଶ୍ୱର ଓ ସମ୍ବଲପୁର ଚାରି ଜିଲ୍ଲା ବୋର୍ଡ଼ର ଚାହିଦା ମେଣ୍ଟାଇବାକୁ ସେତିକ ଅଭାବ ହେବାରୁ ପ୍ରଥମ ମୁଦ୍ରଣର ପନ୍ଦର ଦିନ ମାତ୍ର ପରେ ଦ୍ୱିତୀୟ ମୁଦ୍ରଣ କରିବାକୁ ପଡ଼ିଥିଲା ପାଞ୍ଚ ହଜାର ଖଣ୍ଡ ।

ଏହି ଲବକୁଶ ଶିଶୁରାଇଜରେ ନବୋଦିତ ବାଳଭାନୁରୂପେ ଜଅଁଲ କିରଣ ଢାଳି ନବଯୁଗାରମ୍ଭର ଶୁଭ ଆଗମନୀ ଘୋଷଣା କରିଥିଲା । ଅକ୍ଷର-ପରିଚୟର ଦେହଳି ମାତ୍ର ଅତିକ୍ରମ କରିଥିବା ପଠନୋତ୍ସୁକ ସହସ୍ର ସହସ୍ର ଶିଶୁ ଏହି ସୁଖପାଠ୍ୟ ଗଳ୍ପପୁସ୍ତକର ପୌରାଣିକ କଥାବସ୍ତୁକୁ ଢକ ଢକ ପାଣି ପିଇଲାପରି ଅନାୟାସରେ ଗଡ଼ ଗଡ଼ ପଢ଼ିଯାଇ କାହିଁ-ନ-ଥିବା ଆନନ୍ଦ ଉପଭୋଗ କରିବାକୁ ଲାଗିଲେ ।

ସେ ସମୟରେ ଓଡ଼ିଶା ଡିଭିଜନ ବା ମୋଗଲବନ୍ଦି ପ୍ରଧାନ ଅଞ୍ଚଳଠାରୁ ଗଡ଼ଜାତ ମହାଲ (Eastern States Agency) ସ୍ୱତନ୍ତ୍ର ହୋଇଯାଇଥାଏ । ସେହି ମହାଲ-ଅନ୍ତର୍ଗତ ଛବିଶ ଗଡ଼ଜାତ (States)ର ସର୍ବୋଚ୍ଚ ଶିକ୍ଷାବିଭାଗୀୟ କର୍ତ୍ତାଙ୍କୁ 'ଏଜେନ୍ସି ଇନ୍‌ସ୍ପେକ୍ଟର୍' କୁହାଯାଉଥିଲା । ଡିପି ସାହେବ (Mr. H. Dippie) ସେହି ସମ୍ମାନଜନକ ପଦବୀରେ ଅଧିଷ୍ଠିତ ଥା'ନ୍ତି ସେତେବେଳେ । ସେ ଥିଲେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଜଣେ ଉଚ୍ଚସ୍ଥାନୀୟ ଶିଶୁମନୋବିଜ୍ଞାନୀ ତଥା ଉଚ୍ଚାଭିଳାଷୀ ଶିଶୁଶିକ୍ଷାବିତ୍ । ଡିପି ସାହେବ ଅକ୍ଷର ଶିକ୍ଷାପାଇଁ ଏକ ନୂତନ ପଦ୍ଧତି ଉଦ୍ଭାବନ କରି ଓଡ଼ିଆରେ ଖଣ୍ଡିଏ ଚିତ୍ରଭିତ୍ତିକ ବହି ମଧ୍ୟ ପ୍ରଣୟନ କରିଥିଲେ । ସେହି ପଦ୍ଧତିର ଜନପ୍ରିୟ ନାମ ଥିଲା 'ମା ରମା ପଦ୍ଧତି' । ପୂର୍ବ-ପ୍ରଚଳିତ ବର୍ଣ୍ଣଶିକ୍ଷାରେ ଅନୁସୃତ ହେଉଥିଲା 'ଅଜ୍ଞାତରୁ ଜ୍ଞାତ' ରୀତି; କିନ୍ତୁ ଏଥିରେ ପ୍ରବର୍ତ୍ତିତ ହେଲା ଛବି ମାଧ୍ୟମରେ 'ଜ୍ଞାତରୁ ଅଜ୍ଞାତ' ରୀତି । ସମଗ୍ର ଗଡ଼ଜାତ ମହାଲର ପ୍ରାରମ୍ଭିକ-ଶିଶୁଶ୍ରେଣୀୟ ପିଲାଏ ଏହି ଅଭିନବ ପଦ୍ଧତିରେ ମୋଟେ ନବେଟି ଦିନ ମଧ୍ୟରେ ବନା ଅବନା ସମସ୍ତ ଅକ୍ଷର ଚିହ୍ନିପାରିଲେ ଓ ଲେଖିପାରିଲେ, ଯେଉଁଥିପାଇଁ 'ଅଜ୍ଞାତରୁ ଜ୍ଞାତ' ପ୍ରଣାଳୀରେ ପୂରା ବର୍ଷେ ବା ତତୋଽଧିକ ସମୟ ବିତିଯାଉଥିଲା ।

ଅତି ଅପ୍ରତ୍ୟାଶିତରୂପେ ମୁଁ ଦିନେ ସେହି ଏଜେନ୍ସି ଇନ୍‌ସ୍ପେକ୍ଟର ଶ୍ରୀଯୁକ୍ତ ଡିପି ସାହେବଙ୍କଠାରୁ ଖଣ୍ଡିଏ ଚିଠି ପାଇଲି । ସେଥିରେ ଯାହା ଉଲ୍ଲେଖ ଥିଲା, ତାର ସାର ଚୁମ୍ବକ ଏହିପରି : ଦୈବପ୍ରସାଦରୁ ସେ ଖୋଜିଲା-ଧନ ହଠାତ୍ ପାଇଯାଇ ଅପାର ଆନନ୍ଦରେ ବିଭୋଳ ହୋଇଯାଇଛନ୍ତି । ବର୍ଣ୍ଣପରିଚୟ ପରେ ଅଫଟ ଶିଶୁଙ୍କ ଭୋକିଲା ମନକୁ ଶାନ୍ତ କରିବାପାଇଁ 'ଲବକୁଶ' ହିଁ ଏକମାତ୍ର ଭିଟାମିନ୍‌ବହୁଳ ଉପାଦେୟ ଖାଦ୍ୟ । ସେଥିପାଇଁ ମତେ ସେ ଅଶେଷ ସାଧୁବାଦ ଓ ଧନ୍ୟବାଦରେ ବୁଡ଼ାଇଦେଇଥା'ନ୍ତି ଏବଂ ଶିଶୁମହଲର ପ୍ରଥମ ପଠନୋପଯୋଗୀ ଗଳ୍ପପୁସ୍ତକ-ରଚନାର ଯଶସ୍ୱୀ ଆଦିଜନକ-ରୂପେ ସ୍ୱାଗତ ଅଭିନନ୍ଦନ ଜଣାଇଥାନ୍ତି । ପୁଣି ଲେଖକ ଓ ପ୍ରକାଶକ ହିସାବରେ ମୋ ପାଇଁ ତହିଁରେ ଏକ ସୁସମ୍ବାଦ ଥିଲା ଯେ, ସେ ଏହି ପୁସ୍ତକଟିକୁ ସମସ୍ତ

ଗଡ଼ଜାତର ଶିଶୁଶ୍ରେଣୀରେ ଅକ୍ଷରପରିଚୟବୋଧର ଅବଶ୍ୟପାଠ୍ୟରୂପେ ପ୍ରଚଳିତ ହେବା ନିମନ୍ତେ ମଞ୍ଜୁର ଦେଇ ତତ୍‌ସମ୍ପର୍କୀୟ ଜରୁରୀ ଆଦେଶନାମା ଜାରି କରିସାରିଛନ୍ତି । ପରିଶେଷରେ ଅନୁରୋଧ କରିଥାନ୍ତି, ପ୍ରକାଶକରୂପେ ମୁଁ ଗଡ଼ଜାତ ରାଜ୍ୟମାନଙ୍କର ଚାହିଦା ମେଣ୍ଟାଇବା ସକାଶେ ଯଥେଷ୍ଟ ପୁସ୍ତକ ଗଚ୍ଛିତ ରଖିବାର ବ୍ୟବସ୍ଥା କରିବି ଏବଂ ପରବର୍ତ୍ତୀ ସ୍ତରୋପଯୋଗୀ ଆଉ ଖଣ୍ଡିଏ ସରଳ ଶିଶୁପାଠ୍ୟ ବହି ଯଥାଶୀଘ୍ର ଲେଖି ତାଙ୍କୁ ଜଣାଇବି ।

ଏଜେନ୍‌ସି ଇନ୍‌ସ୍ପେକ୍ଟର୍ ମହୋଦୟଙ୍କ ଅନୁରୋଧ ରକ୍ଷା କରି ଏହି ନଗଣ୍ୟ ଲେଖକ 'ପରଶୁରାମ' ନାମକ ପୁସ୍ତକଟିଏ ପ୍ରଣୟନ କରିଥିଲି । ତାହା ମଧ୍ୟ ତପି ସାହେବଙ୍କ ସଦୟ ମଞ୍ଜୁରିକ୍ରମେ ଗଡ଼ଜାତମୋହାଲରେ ପାଠ୍ୟପୁସ୍ତକଭାବରେ ପ୍ରଚଳିତ ହୋଇଥିଲା ।

ଇତି ମଧ୍ୟରେ 'ଲବକୁଶ' ଗଞ୍ଜାମ ଜିଲ୍ଲାର ପ୍ରାଥମିକ ବିଦ୍ୟାଳୟମାନଙ୍କରେ ପଢ଼ୁଥିବା ଓଡ଼ିଆ ଛାତ୍ରଙ୍କପାଇଁ ପାଠ୍ୟପୁସ୍ତକରୂପେ ମଞ୍ଜୁର ହୋଇଗଲା ମାନ୍ଦ୍ରାଜ ଟେକ୍‌ସ୍ଟ ବୁକ୍ କମିଟି-ଦ୍ୱାରା । ଏବେ ମୋଗଲବନ୍ଦି, ଗଡ଼ଜାତ ଓ ଗଞ୍ଜାମ ଲଗାଏତ ସମସ୍ତ ଓଡ଼ିଆ ଅଞ୍ଚଳରେ 'ଲବକୁଶ'ର ଚାହିଦା ବହୁତ ବଢ଼ିଗଲା ଏବଂ ତାର ବାର୍ଷିକ ବିକ୍ରୀସଂଖ୍ୟା କୋଡ଼ିଏ ହଜାରର ନିକଟବର୍ତ୍ତୀ ହୋଇଗଲା । ତତ୍କାଳୀନ ବିଦ୍ୟାଳୟସମୂହର ସଂଖ୍ୟାଳ୍ପତା ଦୃଷ୍ଟିରୁ ବିଚାର କରି ନିର୍ବିବାଦରେ କୁହାଯିବ ଯେ, ସେତେ ବଡ଼ କୃତିତ୍ୱ ଓ ପ୍ରତିଷ୍ଠା ଅର୍ଜନ ଆଉ କୌଣସି ଶିଶୁସାହିତ୍ୟ ପୁସ୍ତକର ଭାଗ୍ୟରେ ଏଯାବତ୍ ସମ୍ଭବପର ହୋଇପାରିନାହିଁ ।

## (୬୩) ଅତି ଲେମ୍ବୁ ଚିପୁଡ଼ିଲେ ପିତା

ତିନିବର୍ଷ ବ୍ୟାପୀ ଅଧ୍ୟାପକଜୀବନର ଉଦ୍‌ଯାପନରୂପୀ ତୃତୀୟ ବର୍ଷୀୟ ଚୂଡ଼ାନ୍ତ ପରୀକ୍ଷା ଶେଷ ହେଲା ପରେ, ସମ୍ଭବତଃ ଡିସେମ୍ବର ଦଶ ତାରିଖ ମଧ୍ୟରେ ଆମ ପଚିଶ ସହପାଠୀଙ୍କର ସ୍ୱାସ୍ଥ୍ୟ ପରୀକ୍ଷା ଅନୁଷ୍ଠିତ ହୋଇଥିଲା । ପରୀକ୍ଷକରୂପେ ଆସିଥାନ୍ତି ଚଉହଦା ଡାକ୍ତର ନାରାୟଣ ଦାସଦତ୍ତ—ସୁଦର୍ଶନ ଶୁଭ୍ରଶ୍ୱେତତନୁ ବଳିତାବୟବ ପ୍ରଶାନ୍ତମୂର୍ତ୍ତି ଗୁରୁବାକ୍ ମାନବୋତ୍ତମ । ତାଙ୍କୁ ପ୍ରେରଣ କରିଥିଲେ ପ୍ରଥମ ଓଡ଼ିଆ ସିଭିଲ୍ ସର୍ଜନ ଜନମାନ୍ୟ ଜୟନ୍ତ ରାଓ, ନର୍ମାଲ୍ ସ୍କୁଲର ଦ୍ୱିତୀୟ ବରେଣ୍ୟ ଅଧ୍ୟକ୍ଷ ଭକ୍ତକବି ମଧୁସୂଦନ ରାଓଙ୍କ ଜ୍ୟେଷ୍ଠପୁତ୍ର । ବରିଷ୍ଠ ଡାକ୍ତର ଜୟନ୍ତ ରାଓ ପ୍ରତ୍ୟହ ସକାଳ ୮ଟା ପୂର୍ବରୁ ଆମ ଛାତ୍ରାବାସକୁ ଆସନ୍ତି ଏବଂ ପୀଡ଼ିତ ଅନ୍ତେବାସୀମାନଙ୍କୁ ଦେଖି ରୋଗାନୁଯାୟୀ ଅଲଗା ଅଲଗା ବ୍ୟବସ୍ଥା-ପତ୍ର ଲେଖିଦେଇଯାନ୍ତି । ବିଶ୍ୱସ୍ତ ଦ୍ୱାରରକ୍ଷକ ନୀଳମଣି ସେହିସବୁ ବ୍ୟବସ୍ଥାପତ୍ର ଦେଖାଇ 'ରାମଶଙ୍କର ଦାତବ୍ୟ ଚିକିତ୍ସାଳୟ'ରୁ ଯଥାଯଥ ଔଷଧ ଆଣି ରୋଗୀମାନଙ୍କୁ ଯୋଗାଇ-ଦିଏ । ଡାକ୍ତର ଜୟନ୍ତ ରାଓ ହଷ୍ଟେଲ ରୋଗୀଙ୍କର ବିହିତ ବ୍ୟବସ୍ଥା କରିସାରି ସିଧାସଳଖ ତାଙ୍କ ଅଫିସକୁ ଯାଆନ୍ତି । ଏହି ଅତିରିକ୍ତ କାର୍ଯ୍ୟପାଇଁ ତାଙ୍କୁ ନିୟମିତ ଦରମା ବାହାରେ କିଛି ଅଧିକ ଭତ୍ତା ପ୍ରତି ମାସରେ ମିଳୁଥିଲା ।

ଡାକ୍ତର ନାରାୟଣ ଦାସଦତ୍ତ ହଷ୍ଟେଲର ବିଶାଳ ହଲ୍‌ରେ ଯଥାନିର୍ଦ୍ଦିଷ୍ଟ ସମୟରେ ଉପସ୍ଥିତ ହୋଇ ଜଣ ଜଣ କରି ଆମ ବ୍ୟାଚର ସମସ୍ତ ଛାତ୍ରଙ୍କର ସ୍ୱାସ୍ଥ୍ୟପରୀକ୍ଷା ରିପୋର୍ଟ ପ୍ରସ୍ତୁତ କଲେ ଛାତି, ଆଖି, ଜିଭ, ଦାନ୍ତ, ପେଟ ପ୍ରଭୃତିକୁ ଭିନ୍ନ ଭିନ୍ନ ଯନ୍ତ୍ରଦ୍ୱାରା ଯାଞ୍ଚ କରି ନିର୍ଦ୍ଧାରିତ ଫର୍ମୁଲା ଅନୁସାରେ । ଏହି ପରୀକ୍ଷା ଦୁଇ ଦିନ ଧରି ଚାଲିଥିଲା । ସ୍ୱାସ୍ଥ୍ୟସମ୍ପୃକ୍ତ ରିପୋର୍ଟ ପ୍ରସ୍ତୁତ ଶେଷ ହୋଇଗଲା ପରେ ସ୍ୱାସ୍ଥ୍ୟ ପରୀକ୍ଷକ ଡାକ୍ତର ଦାସଦତ୍ତ ପରୀକ୍ଷିତ ଛାତ୍ରମାନଙ୍କୁ ଅଲଗା ଅଲଗା ଉପଦେଶ ଦେଇ ସର୍ବଶେଷରେ ମୋତେ କହିଲେ, "ତୁମର ସ୍ୱାସ୍ଥ୍ୟ ସବୁ ଦିଗରୁ ସର୍ବାପେକ୍ଷା ଉତ୍ତମ । ତୁମେ ଦୀର୍ଘାୟୁ ଓ ନୀରୋଗ ହେବ । ମୋଟା ହେବନାହିଁ କି ପତଳା ହେବ ନାହିଁ—ବେଶ୍ ପ୍ରମାଣ (standard) ଗଢ଼ଣ । ସବୁଠାରୁ ବଡ଼ ବିଶେଷତ୍ୱ ହେଉଛି ତୁମର ଅସାଧାରଣ ଦୃଷ୍ଟିଶକ୍ତି । ଚକ୍ଷୁର ଏପରି ତୀକ୍ଷ୍ଣତମ କ୍ଷମତା ଭଗବାନଙ୍କର ଏକ ଦୁର୍ଲଭ ଦାନ ବୋଲି ବୁଝିବାକୁ ହବ । କିନ୍ତୁ ମନେ-ରେଖିଥାଅ 'ଅତି ବେଶୀ ଭଲ'ର ପରିଣତି ଅନେକ ସମୟରେ 'ଅତି ମନ୍ଦ'ହିଁ ହୋଇଥାଏ । ଏଥିପାଇଁ ସଂସ୍କୃତରେ ପ୍ରମାଣ ବାକ୍ୟ ଅଛି 'ସର୍ବମତ୍ୟନ୍ତ ଗର୍ହିତମ୍', ଅତି ସର୍ବତ୍ର ବର୍ଜୟେତ୍ । ' ଓଡ଼ିଆ ବାକ୍ୟ ମଧ୍ୟ ରଚିଆସୁଛି 'ଅତି ଲେମ୍ବୁ ଚିପୁଡ଼ିଲେ ପିତା', ସନ୍ଥ ତୁଳସୀଙ୍କ କବିଭାଷାରେ 'ଅତି ସଫା ବାବୁ ମହା ବିପମ' । ଏ କାରଣରୁ କହିରଖୁଛି, ସ୍ୱାସ୍ଥ୍ୟ ପରୀକ୍ଷା ପ୍ରତିଯୋଗିତାରେ ପ୍ରଥମ ସ୍ଥାନର ଅଧିକାରୀ ହୋଇଛ ବୋଲି ମନରେ କେବେ-ହେଲେ ଗର୍ବଭାବ ବା ଅତ୍ୟାନନ୍ଦକୁ ସ୍ଥାନ ଦେବ ନାହିଁ ।"

ଏ ପ୍ରାମାଣିକ ଉକ୍ତିର ସତ୍ୟତା ମୋ ଶରୀରର ସ୍ୱାଭାବିକ ନୀରୋଗତା ଉପରେ ଓ ମୋ ଚକ୍ଷୁର ସ୍ୱାଭାବିକ ତୀକ୍ଷ୍ଣତମ ଶକ୍ତି ଉପରେ କେବେ କିପରି ପ୍ରତିଫଳିତ ହେବ, ଏହା ଦେଖିବାର ଦୁରନ୍ତ ବାସନା ମନରେ ବରାବର ପ୍ରବଳରୂପେ ଜାଗିରହିଲା ।

## (୬୪) ବୋର୍ଡର ନିର୍ଦ୍ଦେଶରେ ସରକାରୀ ଚାକିରିର ଲୋଭ ଛାଡ଼ିଲି

୧୯୬୫ ଫେବୃୟାରି ପହିଲି ତାରିଖରେ ଆମ ପରୀକ୍ଷାଫଳ ପ୍ରକାଶ ପାଇଲା । ସୀମାତୀତ ସଫଳତା ସହ ମୋର ନର୍ମାଲ୍ ସ୍କୁଲ-ଶିକ୍ଷାଜୀବନ ପରିପୂର୍ଣ୍ଣାଙ୍ଗ ହେଲା । ତତ୍କାଳୀନ ନିୟମାନୁସାରେ ଶ୍ରେଷ୍ଠ କୃତିତ୍ୱବନ୍ତ ପରୀକ୍ଷୋତ୍ତୀର୍ଣ୍ଣ ପ୍ରଥମ ତିନିଜଣଙ୍କୁ ଶିକ୍ଷକ ପଦରେ ସରକାରୀ ନିଯୁକ୍ତି ପାଇବାପାଇଁ ଆବେଦନ କରିବାକୁ ପଡ଼ୁ ନଥିଲା । ନିଯୁକ୍ତିପତ୍ର ବଳେ ଆସି ସେମାନଙ୍କ ନିକଟରେ ପହଞ୍ଚୁଥିଲା । ବିହାର-ଓଡ଼ିଶା ପ୍ରଦେଶାନ୍ତର୍ଗତ ଓଡ଼ିଶା ଡିଭିଜନର ସ୍କୁଲବିଭାଗୀୟ ଇନ୍‌ସ୍ପେକ୍ଟର ସାହେବଙ୍କ ବ୍ୟବସ୍ଥାମତେ ନର୍ମାଲ୍ ସ୍କୁଲର ଅଧ୍ୟକ୍ଷ ଏଭଳି କୃତିତ୍ୱଧାରୀଙ୍କ ପାଖକୁ ନିଯୁକ୍ତିନାମା ପଠାଇଦେଉଥିଲେ । ସୌଭାଗ୍ୟବଶତଃ ଫଳଘୋଷଣା ପରେ ପରେ ବାଲେଶ୍ୱର ଜିଲ୍ଲା ସ୍କୁଲରେ ଗୋଟିଏ ଶିକ୍ଷକ ସ୍ଥାନ ଖାଲି ପଡ଼ିଲା । ଯୋଗକୁ ମୁଁ ସେତେବେଳେ କଟକରେ ଥାଏଁ । ପରମ୍ପରାନୁଯାୟୀ ମତେ ସେହି ସ୍ଥାନପାଇଁ ନିଯୁକ୍ତିନାମା ମିଳିଲା । ଆନନ୍ଦୋଚ୍ଛ୍ୱାସରେ ହୃଦୟରୁ ମୋର ପ୍ରଭାବତୀ ଉଦ୍‌ବେଳ ହୋଇଯିବାର କଥା ।

ବୋଉକୁ ଏ ଖୁସି-ଖବର ଦେବାପାଇଁ ଅସମ୍ଭାଳ ହୋଇ ଗ୍ରାମକୁ ଧାଇଁଲି । ଇଂରାଜୀ ହରପରେ ଟାଇପ୍ ହୋଇଥିବା ନିଯୁକ୍ତିନାମାଟି ଦେଖିଲେ, ଏତେ ବେଗି ସରକାରୀ ନୌକରୀଟା ମିଳିଗଲା ବୋଲି ଶୁଣିଲେ ସେ କେତେ ଖୁସୀ ହୋଇ ନ ଯିବନ୍ତି ! ବାଟସାରା ଏଇପରି ଭାବି ଭାବି ସିନା ମୁଁ ଯାଉଥାଏ........କିନ୍ତୁ ହାୟ୍, ବୋଉପାଖରେ ପହଞ୍ଚିଲାମାତ୍ରେ ମୋ ଭାବନା-କଳେଇର ସୂତାପିଣ୍ଡୁଲାଟା ଏମିତି ଅଡୁଆତଡୁଆ ଧରିଗଲା ଯେ, ଖିଅ ତା'ର ମୋଟେ ଠାବ କରିହେଲା ନାହିଁ । ବୋଉର କାନ୍ଦକାନ୍ଦ ମୁହଁ, ଛଳଛଳ ଆଖି, ଥରଥର ଓଠ ଦେଖି ମୋର ସମସ୍ତ ସୁନେଲି ସୁଖସମ୍ଭାବନା ନିମେଷକେ ବାମ୍ଫ ହୋଇ କୁଆଡ଼େ ଉଡ଼ିଗଲା । ସେ ଏହି ସରକାରୀ ନଉକରି ବିରୁଦ୍ଧରେ ପ୍ରବଳ ଆପତ୍ତିର ସ୍ୱର ତୋଳିଲା । କହିଲା, "ଏତେ ଦୂରକୁ ତତେ କେବେଁ ଛାଡ଼ିବି ନାହିଁ । ଜାଣିଚୁ ତ, ପ୍ରବାସରେ ତୋ ବାପାଙ୍କ ଦିହକ ଗଲା । ସେଠି ସେ ରୁପିଆର ଚକଚକିଆ ରୂପ ବହୁତ ଦେଖୁଥିଲେ ସିନା, ଘରମୁହଁ ଜୀବନରେ କେଇଥର ଦେଖିଲେ ? ପୋଡ଼ା ଦଇବ ପୁଣି ଏମିତି ଗ୍ରେଟ ବସେଇଲା ଯେ, ସେଇ ଅପନ୍ତରା ମୂଲକରେ ଶେଷକୁ ତାଙ୍କର ପ୍ରାଣ ଗଲା । ସେତେବେଳେ ତୁମମାନଙ୍କୁ ସେ ଦେଖିପାରିଲେ ନା ତୁମେମାନେ ତାଙ୍କୁ ଦେଖିପାରିଲ ? ତେଣୁ ମୋ ବୋଲ ମାନି ବେଶୀ ଟଙ୍କା ଲୋଭରେ ଦୂର ଜାଗାକୁ ମନ ବଳାନା । ଟଙ୍କା ମତେ ସ୍ୱର୍ଗକୁ ନବ ନାଇଁ, ତୁ ପାଖରେ ଥିଲେ ମୋର ସ୍ୱର୍ଗସୁଖ । କୋଠପଦା ଇସ୍କୁଲରେ ରହିଲେ ନାକରୀ କ'ଣ ହେବ ? ତୁ ତ ପୁଣି ଏଇଠି ପଢ଼ିଥିଲୁ ? ଆଉ ଯଦି 'ଗାଆଁ କିନିଆ ସିଙ୍ଘାଣି-ନାକୀ' ଲୋକବୋଲିକି ଭଲ ଏଠିକି ମନ ନ ରୁଚୁଛି, ତାହାହେଲେ କଟକରେ ଗୋଟାଏ କିଛି ଚାକିରି କର । ସରକାରୀ ଚାକିରି ଆମର ଦରକାର ନାଇଁ । ମୋ ଧନଟି ପରା, ପ୍ରବାସ ନା ମୋଟେ ତୁଣ୍ଡରେ ଧରନା ।"

ଚାକିରି ତ ଗଛରେ ଫଳୁ ନାହିଁ କି ଡାଳରେ ଝୁଲୁ ନାହିଁ ଯେ ଯେତେବେଳେ ଯିଏ ଚାହିଁବ ତୋଳିଆଣିବ ! ଇଚ୍ଛାନୁସାରେ ଚାକିରି ଛାଡ଼ିଦେଇ ହେବ ସିନା, ଇଚ୍ଛାନୁସାରେ କେଉଁଠି ଚାକିରି ମିଳିଲାଣି ? ସେ କ'ଣ କାହାର ଦରକାର ବାଟକୁ ଚାହିଁ ବସିଥିବ, ଲୋଡ଼ିବାମାତ୍ରେ ହାତକୁ ଡେଇଁପଡ଼ିବ ? କଦବା ଯଦି ହଜାରକେ ଲକ୍ଷକେ ଗୋଟାଏ କାହା ଭାଗ୍ୟରେ ଏଭଳି ସୁଯୋଗ ଜୁଟୁଥିବ, ସେଇଟା ତା' ପୂର୍ବଜନ୍ମ ସୁକୃତିର ଫଳ ବୋଲି ଭାବିବାକୁ ହେବ । ହେ-ଦଇବା ମୋ କପାଳକୁ ତ ବଡ଼ିଆ ସୁଯୋଗଟାଏ ଆସିଥିଲା ଯେ, ବୋଉ ତାର ବାଇଘି ହେଲା—ଏବେ କରେଁ କ'ଣ ? ବିଷମ ଦୋଧାଇରେ ପଡ଼ିଲି । ଅବସ୍ଥା 'ନ ଗିରଂ ନ ଓଗିରଂ'କୁ ବଳିଗଲା । ଯାହାହେଉ, ମାତୃଆଜ୍ଞା ଶିରୋଧାର୍ଯ୍ୟ କରିବା ହିଁ ତ ବିଧେୟ । ନିର୍ବିଘ୍ନରେ ନିର୍ବିରୋଧରେ ତାହା ଶିରୋଧାର୍ଯ୍ୟ କଲି, ଅଜ୍ଞାତ ଭବିଷ୍ୟତର ଭାର ପରମପିତାଙ୍କ ଉପରେ ପୁରାପୂରି ଛାଡ଼ିଦେଲି ।

ଚାକିରି-ଧାସ୍ତୀ ମନ ଗାଆଁ-ପରିବେଶ ଛାଡ଼ି ସହରକୁ ଉଡ଼ିଯିବାପାଇଁ ଖାଲୋଇ-ବନ୍ଦ ମୀନ ଭଳି ଛଟପଟ ହେବାକୁ ଲାଗିଲା । ପ୍ରିୟ ଜନ୍ମମାଟି ମୋର ଭବିଷ୍ୟତ୍ କର୍ମଚକ୍ରର

ତାଡ଼ନାଯୋଗୁଁ ଆଗପରି ଶାନ୍ତିମୟ ଜଣାଗଲା ନାହିଁ । ଏହି ଅତିବ୍ୟଗ୍ରତାର କୌଣସି ସୂଚନା ତାହାଙ୍କୁ ପ୍ରକାଶ ନକରି କୌଣସିମତେ ଆଉ ଯୋଡ଼ିଏ ଦିନ ଗାଁରେ କଟେଇଲି ପରେ ବିରୁଡ଼ି ମାରିଲା ପରି ବାଇବିଛି ହୋଇ କଟକ ପଳେଇ ଆଇଲି । ଅଧ୍ୟକ୍ଷଙ୍କୁ ଭେଟି ହାତପଇଠ ନିଯୁକ୍ତିକ ହାତଛଡ଼ା କରିବାର କାରଣ ସବିସ୍ତାର ଜଣାଇ ନିଯୁକ୍ତିପତ୍ରଟି ଉଆପସ ଦେଲି । ସେ ତ ମୋର ଅତି ହିତାଭିଳାଷୀ ଓ ଉନ୍ନତିକାମୀ, ତେଣୁ ପରିସ୍ଥିତିଟା ଭଲରୂପେ ହୃଦୟଙ୍ଗମ କରି କଟକ ସହରରେ ଚାକିରିର ସ୍ଥାୟୀ ସନ୍ଧାନ ହେବା ପର୍ଯ୍ୟନ୍ତ ହଷ୍ଟେଲରେ ମୋ ରହିବାର ସ୍ୱତନ୍ତ୍ର ସୁବିଧା କରିଦେଲେ । ଯେଉଁ ପ୍ରଶସ୍ତତର ହଲ୍‌ଟି ମୁଖ୍ୟତଃ ସଭାସମିତି ଓ ସରସ୍ୱତୀ ପୂଜା, ଗଣେଶ ପୂଜାଦିରେ କେବଳ ବ୍ୟବହୃତ ହୋଇ ଅନ୍ୟ ସମୟରେ ତାଲା ପଡ଼ି ଆବଦ୍ଧ ରହିଥାଏ, ହଷ୍ଟେଲର ସବାଶେଷରେ ଥିବା ସେଇ ସୁସଜ୍ଜିତ କକ୍ଷଟିର ଚାବି ମୋ ହାତକୁ ଆସିବାପାଇଁ ଅଧଘଣ୍ଟାରୁ ଅଧିକ ଲାଗିଲା ନାହିଁ । ସଦାଶୟ ଅଧ୍ୟକ୍ଷ ମହୋଦୟଙ୍କର ଏହି ସ୍ୱତଃପ୍ରବୃତ୍ତ ସଦୟତାରେ କୃତଜ୍ଞ ମଥା ମୋର ତଳକୁ ନଇଁଯାଇଥିଲା । ଏଇଟା ୧୯୬୫ ମସିହା ମାର୍ଚ୍ଚ ମାସର କଥା ।

## ୧୧ । ଅଧ୍ୟୟନ ଓ ଅଧ୍ୟାପନ, ଛାତ୍ର-ଶିକ୍ଷକ ସମ୍ପର୍କ— କ’ଣ ଥିଲା, କ’ଣ ହୋଇଛି

ସୌଭାଗ୍ୟ କି ଦୌର୍ଭାଗ୍ୟ ଯାହା ହେଉ, ଈପ୍ସିତ ଶିକ୍ଷକଜୀବନ ସିନା ମୋର କାମ୍ୟ ହୋଇପାରିଲା ନାହିଁ, ସେକାଳର ଅଧ୍ୟୟନ ଓ ଅଧ୍ୟାପନ ସମ୍ପର୍କୀୟ ଆନୁଭୂତିକ ଜ୍ଞାନରେ କିନ୍ତୁ ମୁଁ ଦରିଦ୍ର ରହିନାହିଁ । ଉଣାଅଧିକେ ପ୍ରାୟ ସବୁ ଶିକ୍ଷାୟତନର ଶିକ୍ଷକ-ଶିକ୍ଷୟିତ୍ରୀମାନେ ନିଜ ନିଜ ପାଠନ ବିଦ୍ୟାରେ ନିଦାଜ୍ଞନର ଅଧିକାରୀ ଥିଲେ । ଶିକ୍ଷାଦାତା ବା ଶିକ୍ଷାଦାତ୍ରୀର ଆସନ ଅଳଂକୃତ କରିଥିଲେ ହେଁ, ସେମାନଙ୍କୁ ପ୍ରତ୍ୟହ ଛାତ୍ରଠାରୁ ଅଧିକେ ପଢ଼ିବାକୁ ପଡ଼ୁଥିଲା । ଯେଉଁଦିନ ଯେଉଁ ଶ୍ରେଣୀରେ ଯାହା ପଢ଼ାଇବାକୁ ଥିବ, ପୂର୍ବ ରାତ୍ରିରେ ସେଥିପାଇଁ ସେମାନେ ପୂର୍ଣ୍ଣପ୍ରାଣରେ ପ୍ରସ୍ତୁତ ହେଉଥିଲେ । ଦେଶୀ ବିଦେଶୀ ବିଭିନ୍ନ ଗ୍ରନ୍ଥ ଓ ପତ୍ରପତ୍ରିକାରୁ ପାଠ୍ୟାଂଶ ସହିତ ସମ୍ପୃକ୍ତ ନୂଆ ନୂଆ କଥା, ବିଶେଷ କରି ବିଜ୍ଞାନ, ଭୂଗୋଳ, ଇତିହାସ, ଶିକ୍ଷା-ବିଜ୍ଞାନ ସମ୍ବନ୍ଧୀୟ ସର୍ବାଧୁନିକ ଉଦ୍ଭାବନ, ଆବିଷ୍କାର, ତଥ୍ୟ ବିବରଣ ଆହରଣ କରି ସଞ୍ଚିତ ଜ୍ଞାନ ସହିତ ସାମିଲ କରିନେଉଥିଲେ, ଅଥବା ପୂର୍ବର ସର୍ବଜନଗୃହୀତ କୌଣସି ପ୍ରତିଷ୍ଠିତ ଧାରଣା ଭ୍ରମାତ୍ମକ ବୋଲି ଧରାପଡ଼ିଲେ ତାହାର ସଂଶୋଧନ କରିନେଉଥିଲେ । ଗଡ୍ଡଳିକା ପ୍ରବାହ ବା ଗତାନୁଗତିକ ଧାରାରେ କେବଳ ଚର୍ବିତ-ଚର୍ବଣ ନକରି ପାଠ୍ୟପୁସ୍ତକର ହାଡ଼ବାଡ଼ ପରି ଡେଇଁ ସେମାନେ ଛାତ୍ରମାନଙ୍କପାଇଁ

ବିଭିନ୍ନ ନୂତନ ନୂତନ ଖାଦ୍ୟ ଆହାର୍ଯ୍ୟର ଆୟୋଜନ କରୁଥିଲେ ଏବଂ ସେଗୁଡ଼ିକର ପରିବେଷଣଦ୍ୱାରା କୌତୂହଳୀ ଛାତ୍ରମହଲର ଭୂୟୋଦୃଷ୍ଟି (outlook) ପ୍ରସାରିତ କରିବାରେ ସର୍ବାଧିକ ଆତ୍ମସନ୍ତୋଷ ଲାଭ କରୁଥିଲେ । କ୍ଲାସକୁ ପଶୁ ନପଶୁଣୁ ସବ୍-ଜାନ୍ତାଗିରି ଦେଖେଇହେବାପାଇଁ ବ୍ରହ୍ମାଙ୍କ ଭଳି ବଳବଳେଇ ବେଦ ସୃଷ୍ଟି କରିବାର ବଡ଼ାଇ ସେମାନଙ୍କ ଜାତକରେ ନଥିଲା । ଗୋଟିଏ କଥାରେ କହିଲେ, ସେକାଳର ଶିକ୍ଷା, ଶିକ୍ଷକ, ଶିକ୍ଷାର୍ଥୀ ଓ ଶିକ୍ଷାୟତନର ପରାକାଷ୍ଠା ଶୀର୍ଷତମ ସ୍ତରରେ ପହଞ୍ଚିପାରିଥିଲା । କିନ୍ତୁ ଉପର ଶିକ୍ଷକଗୋଷ୍ଠୀ ହିଁ ଥିଲେ ଏହି ପରାକାଷ୍ଠାର ସ୍ରଷ୍ଟା, ନିୟାମକ, ମୂଳପିଣ୍ଡ ଓ ମେରୁଦଣ୍ଡ । ଏଥିପାଇଁ ଗୁରୁଗଣଙ୍କୁ ଜାତିଧର୍ମବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଦେଉଥିଲେ ସର୍ବୋଚ୍ଚ ସମ୍ମାନ ।

ଏବେ କିନ୍ତୁ ସେକଥା ନାହିଁ । ଜ୍ଞାନଦୁର୍ଗ ଭୂମିସାତ୍ ହେଉଛି । ନିର୍ଦ୍ଧାରିତ ନୈତିକ କର୍ତ୍ତବ୍ୟକୁ ଯେତେ ବେଶୀ ସମ୍ଭବ ଫାଙ୍କି ଓ ଜବରଦସ୍ତି ଖିଲାପ କରି ସର୍ବନିମ୍ନ ଶ୍ରମରେ, ଏପରି କି ବିନା ଶ୍ରମରେ ସର୍ବାଧିକ ଅର୍ଥ ଶୋଷିବା ନୀତିର ହାଉଆ ଆଜିକାଲି ଅନ୍ଧବିବନ୍ଧ ଖେଦି ବୁଲୁଛି । ଅଭାବ-ଅନଟନ ଜଞ୍ଜାଳପୀଡ଼ିତ ରୋଜଗାରଆକୁଳ ଏ ନୂଆ ନୀତିଶାସ୍ତ୍ରର ପ୍ରଣେତା, ପ୍ରବର୍ତ୍ତକ, ପ୍ରବକ୍ତା ଓ ପ୍ରଚାରକ । ଗୋଠ ମାରିଲେ ଖଣ୍ଡିଆ ମାତେ । ଆମ ପୂଜ୍ୟ ଶିକ୍ଷକ ସମ୍ପ୍ରଦାୟ ମଧ୍ୟ ନିଜର ପବିତ୍ର ନୀତିରେ ଜଳାଞ୍ଜଳି ଦେଇ ଏଇ ବଦନଅତପଡ଼ିଙ୍କ 'ହୋ'ରେ ମାତି-ଯାଇଛନ୍ତି । ଆଉ, ପିଲାଯାକ କପି କରି ହେଉ କି 'କପ୍ କଦର୍‌ମେ' ହେଉ ନିଜର ଦେଖିଲା କାମ କରି ନିଷ୍କଳଙ୍କଭାବରେ ଉଲବର୍ଜନରେ ପାସ୍ କରିବାର ଶ୍ରେଷ୍ଠ ସୁଡ଼ଙ୍ଗ ଖୋଳିବାରେ ଲାଗିପଡ଼ିଛନ୍ତି । ଚକ ଘୂରିଯାଇ ଉପର ତଳ ଓ ତଳ ଉପର ହୋଇଯାଇଛି । ଆଗେ ନାବ ଉପରେ ଶଗଡ଼ ରହୁଥିଲା ସିନା, ଆଜିକାଲି ଶଗଡ଼ଉପରେ ନାବ ରହିଲାଣି, ଆମ୍ବ ଗଛରେ ଆମ୍ବଡ଼ା ଫଳିଲାଣି । କାଳ ତ ବିପରୀତ ହେଲା, ଦୃଶ୍ୟ କ'ଣ ? ସୃଷ୍ଟିସର୍ଜନାକାରୀର ଏଇଟା ଗୋଟାଏ ଖିଆଲୀ ପରୀକ୍ଷା (experiment) ଛଡ଼ା ଆଉ କ'ଣ ହୋଇପାରେ ବୋଲି ଭାବିବା ?

ଟିପରୁ ଚୋଟପଟାଏ ବିଦ୍ୟାର୍ଥୀ ଓ ବିଦ୍ୟାଦାତାଙ୍କ ମଧ୍ୟରେ ଆଜି ଯେଉଁ ସାଭରା ଲୀଳାସବୁ ଚାଲିଛି, ତାହାର ମୂଳ ବା ଚେର ଖୋଜିବସିଲେ ଥୋଡ଼ାଏ ପଛକୁ ଉଜାଣି ଉଠିବାକୁ ହେବ । ତାହାହେଲେ ଆମେ ବୁଝିପାରିବା, ଏ କାଳର ଶିଷ୍ୟ ଓ ଗୁରୁଙ୍କ ମଧ୍ୟରେ କାହିଁକି ଏପରି ପଥର ପାଚେରି ପଡ଼ିଗଲା । ଆଧୁନିକ ଶିକ୍ଷାନୀତିର ମୌଳିକ ଲକ୍ଷ୍ୟ ଯଦି ପୂର୍ବ-କାଳବତ୍ ଚରିତ୍ରଗଠନ ଭିତ୍ତିକ ହୋଇଥାନ୍ତା, ତାହାହେଲେ ଏ ପଥରପାଚେରି କେବେହେଲେ ପଡ଼ିପାରି ନଥାନ୍ତା । ଆଗେ ଚରିତ୍ର ହିଁ ମଣିଷର ଶ୍ରେଷ୍ଠ ଭୂଷଣରୂପେ ମାନିତ ହେଉଥିଲା । ତେଣୁ ସେକାଳର ଶିକ୍ଷା ଶିଶୁମାନଙ୍କୁ ମୂଳରୁ ସେହି ଆଡ଼କୁ ମୁହାଁଇ ଦେଉଥିଲା । ଛାତ୍ରମାନେ ଗୁରୁଙ୍କୁ ଯେପରି ଅଗାଧ ଭକ୍ତି ଓ ଭୟମିଶ୍ରିତ ସମ୍ଭ୍ରମ ପ୍ରଦର୍ଶନ କରୁଥିଲେ ଗୁରୁମାନେ ଛାତ୍ରଙ୍କୁ ମଧ୍ୟ ସେହିପରି ନିବିଡ଼ ସ୍ନେହାଦର ସହକାରେ ଶାସନ କରୁଥିଲେ ।

ଏଣୁ ଉଭୟ ଗୋଷ୍ଠୀର ପାରସ୍ପରିକ ବନ୍ଧନ ଆଜୀବନ ଅଚ୍ଛେଦ୍ୟ ରହୁଥିଲା । ତତ୍କାଳୀନ ଶିକ୍ଷା ବ୍ୟବସ୍ଥା ମୂଳରୁ ପିଲାଙ୍କ ମନରେ କପଟ ଗୁରୁଭକ୍ତି, ଚରିତ୍ରବତ୍ତା ଓ ବିଦ୍ୟାର୍ଜନ ସ୍ପୃହାର ବୀଜ ରୋପିଦେଉଥିଲା, 'କହନ୍ତି ମାଏ ଯେ ଶ୍ରୀକୃଷ୍ଣ ଆଗେ, କଥା ଶୁଣ ବାବୁ ଅତି ସରାଗେ' ଗୀତଟି ତାର ଗୋଟିଏ ଉଜ୍ଜ୍ୱଳ ଦୃଷ୍ଟାନ୍ତ । ତହିଁର କେତୋଟି ପଦ ଶୁଣନ୍ତୁ—

"ଖେଳୁଆଳ ବୁଦ୍ଧି ଛାଡ଼ରେ ବାବୁ !
ଖଡ଼ି ଛୁଇଁଲେ ତୁ ବିଦ୍ୟା ପଢ଼ିବୁ ।
ଗୁରୁଙ୍କ ଆଗେ ଓଳଗିବୁ ଯାଇ,
ଗୋବିନ୍ଦ ସୁମରି ଲେଖିବୁ ଭୁଇଁ ।
ଘେନ ଖଡ଼ି ହସ୍ତେ ଶ୍ରୀ ସ୍ୱା ଲେଖିବୁ,
ଘଷଣ ନେଇ କପୋଳେ ବୋଳିବୁ ।
ଛୁଟକୁରେ ବାବୁ ! ଭୟ ନ କର,
ଛଚୀନ୍ଦ୍ର ହୋଇ ବିଦ୍ୟା ପଢ଼ିବାର ।
ଯାହା ଖାଇବୁ ତୁ ଦ୍ୱିଜଗ କର,
ଯତନେ ଦେବୁ ଗୁରୁଙ୍କ ଛାମୁର ।
ଟଙ୍କା ପୂଜା ଲୁଗା ଧାନ କଉଡ଼ି
ଟେକ ଗୁରୁଙ୍କ ଦେବୁ କର ଯୋଡ଼ି ।
ଠିକ ସ୍ୱରଗୋଟି ଆଗେ ପଢ଼ିବୁ,
ଠିଆ ହୋଇଲେ ଗୁରୁଙ୍କ ବନ୍ଦିବୁ ।
ଡାକ ହାକ କରି ପଢ଼ିବୁ ପାଠ
ଡଙ୍ଗର ତୁଲ୍ୟ ନ ଚାଲିବୁ ବାଟ ।
ଢାଳେ ହେଁ ବାବୁ ରେ ! ମୂରୁଖ ନୋହ,
ଢମପଣ କଲେ ବିଦ୍ୟା ନ ପାଇ ।
ଅମେଣିଷ ରେ ନ ପଢ଼େ ଯେହୁ,
ଅଣପଢ଼ିଣ ହୁଅଇ ରେ ସେହୁ ।
ଦୂଇ ଦୂଇ ନେଣ ସକଳ ଜନ,
ଦେଖ ବିଦ୍ୟାବନ୍ତ ସସ୍ୱଲୋଚନ ।
ଧର୍ମ ଥିଲା ଲୋକର ସ୍ୱର ଆଖି,
ଧର୍ମରୁ ଅଧିକ ଜ୍ଞାନୀଙ୍କି ଲେଖି ।
ନାନା ଦେଶ ଗଲେ ବିଦ୍ୟାକୁ ପୂଜା,
ନ ଜାଣିବା ଲୋକେ ବିଦେଶେ ଲଜ୍ଜା ।
ବହନ୍ତେ ବିଦ୍ୟା ନୋହେ ବୋଝସର,
ବୋହୁ ନ ନଅନ୍ତି ଖଣ୍ଡ ଚୋରର ।

ଭଲ ଭଲ ଲୋକେ ଭଲ ବୋଲନ୍ତି,
ଖାଇ ଭଙ୍ଗାର ବାଣ୍ଟି ନ ଜାଣନ୍ତି ।
ଯେହ୍ନ ନ ପଢ଼େ ସେ ପଶୁରେ ଲେଖ
ଜାଣି ହେଉଛୁ କର ରେ ଚନ୍ଦ୍ରମୁଖ !''

ସ୍ଥଳବିଶେଷରେ ଦେଖାଯାଉଥିବା ଜନ୍ମଗତ ଆଙ୍ଗିକ ବିକୃତି ପରି ପ୍ରକୃତିଗତ କିଛି-ନା-କିଛି ଅବଗୁଣ ମଧ୍ୟ ଭଗବାନଙ୍କ ସର୍ଜନାର ଅଂଶ । ଏହି ପ୍ରକୃତିଗତ ଦୋଷକୁ ବାଦ୍‌ଦେଲେ ସେତିକା ଶିକ୍ଷକ ସାଧାରଣଙ୍କ ହୃଦୟସ୍ପର୍ଶୀ ଓ ପୁତ୍ରୋପମ ଛାତ୍ରବତ୍ସଳତା ଜନସମାଜରେ ଥିଲା ପଟାନ୍ତରସ୍ଥାନ । ସେ ସ୍ୱର୍ଗୀୟ ଗୁଣ ଏବେ ସ୍ୱପ୍ନରାଜ୍ୟର କାହାଣୀରେ ପରିଣତ ହୋଇଯାଇଛି । ମଲା ଗଛରେ ଆଉ ଯେ କେବେ ପତର କଅଁଳିବ, ସେ ଗୁରୁ-ଶିଷ୍ୟ ସଯୋଗ ଯୁଗ ପଡ଼େ ଯେ ଆଉ ଫେରିବ, ତ୍ରିକାଳଦର୍ଶୀ ମହର୍ଷି ବାଲ୍ମୀକି ସୁଦ୍ଧା କହିବାକୁ ଶଙ୍କିଯିବେ । ଏହି ଛାତ୍ରବତ୍ସଳତାର ମୋ ଅଙ୍ଗେ-ନିଭା ଗୋଟିଏ ବାସ୍ତବ ଦୃଷ୍ଟାନ୍ତ ଏଠାରେ ଉପସ୍ଥାପନ କରୁଛି ।

୧୯୧୯ ମସିହାର ଏପ୍ରିଲ ତୃତୀୟ ସପ୍ତାହ ବୋଧହୁଏ । ମୁଁ ସେତେବେଳେ ସ୍ଥାନୀୟ କୋଠପଦା ମଧ୍ୟଇଂରାଜୀ ବିଦ୍ୟାଳୟର ଷଷ୍ଠ ଶ୍ରେଣୀସ୍ଥ ଛାତ୍ର । ସକାଳୁଆ ସ୍କୁଲ ୭ଟାରୁ ୧୧ଟା, ଚାରି ଘଣ୍ଟା । ଦିନକର ଅଙ୍କ ପିରିଅଡ୍‌ର କଥା । ସେହି ବର୍ଷ ମ୍ୟାକ୍‌ମିଲାନ୍ କମ୍ପାନୀ ପ୍ରକାଶିତ ମଧୁସୂଦନ ଦାଶଙ୍କ 'ଅଙ୍କ ପୁସ୍ତକ' ନୂଆ ହୋଇ ଆମ ସ୍କୁଲରେ ଷଷ୍ଠ-ସପ୍ତମ ଶ୍ରେଣୀରେ ଚଳିଥାଏ । ଅଙ୍କ ଶିକ୍ଷକଙ୍କ ଅନୁପସ୍ଥିତି ଯୋଗୁଁ ସେଦିନ ସ୍ୱୟଂ ପ୍ରଧାନଶିକ୍ଷକ ଯୁବକ ଆନନ୍ଦଚନ୍ଦ୍ର ମିଶ୍ର ଆମ ଶ୍ରେଣୀକି ଆସିଲେ ଅଙ୍କ ପଢ଼ାଇବାପାଇଁ । ତାଙ୍କ ଅଧ୍ୟାପନାର ଧାରା ଏଡ଼େ ସୁନ୍ଦର ଯେ, ନିତାନ୍ତ ଗଧ ମଧ୍ୟ, ଟିକିଏ ଡେରିରେ ହେଉପଛେ, ନିଶ୍ଚୟ ବୁଝିପାରିବ । ଆଦର୍ଶ ଧର୍ମପ୍ରାଣ ପୁରା ଶାସନୀ ବ୍ରାହ୍ମଣ । ଚବିଶ ଏକାଦଶୀ ପାଳନା କରନ୍ତି—ଜଳଖିଆ କଥା ଦୂରେ ଥାଉ, ଫଳମୂଳ ସୁଦ୍ଧା ସ୍ପର୍ଶ ନକରି ଉପବାସ ଅବସ୍ଥାରେ କେବଳ ଥରୁଟିଏ ମିଶିରିପଣା ପିଅନ୍ତି ।

ହେଡ୍‌ମାଷ୍ଟ୍ରେ ସରଳ ତ୍ରୈରାଶିକ ଅଙ୍କ ବୁଝାଇବାକୁ ଆରମ୍ଭ କଲେ । କଳାପଟାରେ ଖଣ୍ଡିଏ ଅଙ୍କ କଷି ତାହାର ଧାରା ସମ୍ବନ୍ଧରେ ଏକ ପ୍ରାଥମିକ ଧାରଣା ଆମ ମନରେ ଜନ୍ମାଇଦେଲେ । ଆମେ ଥାଉଁ ସଂଖ୍ୟାରେ ପ୍ରାୟ ଷାଠିଏ, ସେଥିରୁ ଚାରି ପାଞ୍ଚ ଜଣ ଛାତ୍ର ସେଦିନ ଅନୁପସ୍ଥିତ ଥାଇପାରନ୍ତି । ଏତେ ପିଲାଙ୍କ ମନକୁ ଛୁଇଁଲା ଭଳି ପାଠ ପଢ଼େଇବା ସେକାଳର ଶିକ୍ଷକମାନଙ୍କ ପକ୍ଷରେ ବିଶେଷ କିଛି କଠିନ ନଥିଲା । ସେମାନେ ପ୍ରତ୍ୟେକେ ସବୁ ପାଠ୍ୟ ବିଷୟ (subject)ରେ ଊଣାଅଧିକେ ଯୋଗ୍ୟତର ଥିଲେ । କେବଳ ସେକେଣ୍ଡ୍ ପଣ୍ଡିତ ଓ ହେଡ୍ ପଣ୍ଡିତ ଓଡ଼ିଆ ସାହିତ୍ୟ ଓ ବ୍ୟାକରଣ, ରଚନା ଓ ଅଙ୍କ ଏଇ ବିଷୟ କେତୋଟିରେ ବିଶେଷଜ୍ଞ ଥିଲେ । ତ୍ରୈରାଶିକ ଧାରାର ଧାରଣା ଦେଇସାରିଲା ପରେ ହେଡ୍‌ମାଷ୍ଟ୍ରେ ସେହି ଧାରାର ଆଉ ଖଣ୍ଡିଏ ଅଙ୍କ ଆମକୁ କଷିବାକୁ ଦେଲେ । ସେ ବରାବର

ଆମ ପାଖକୁ ଆସି କିଏ କେଉଁଠି ଧାରା ଭୁଲ୍ କରୁଛୁ, ବତାଇଦେଉଥାନ୍ତି । ପିରିଅଡ଼୍ ଶେଷ ବେଳକୁ ସେ ସମସ୍ତଙ୍କ ଅଙ୍କକଷାର ଯାଞ୍ଚ କାମ ସାରିଦେଇଥିଲେ । 'ଅଙ୍କ ପୁସ୍ତକ'ରେ ସେହି ଧାରାର ଯେଉଁ ପ୍ରଶ୍ନମାଳାଟି ଥିଲା, ତାହାର ସମସ୍ତ ପ୍ରଶ୍ନକୁ ଘରେ କଷି ପରଦିନ କ୍ଲାସକୁ ଆଣିବାକୁ ସକ୍ତ ଦେଲେ । ସଞ୍ଜାଳୁଆ ସ୍କୁଲ ସମୟରେ ପିଲାଏ ଘରେ ଏତେଗୁଡ଼ାଏ ଅଙ୍କ କଷିବାକୁ ବେଳ ପାଇବେ କାହୁଁ ? ଏହା ଜାଣି ସୁଦ୍ଧା ଶ୍ରେଣୀ ଛାଡ଼ିବା ପୂର୍ବରୁ କଡ଼ା ଆଦେଶ ଦେଇଗଲେ—ଯେଉଁମାନେ ସଲ୍ଲତକ ପୁରାପୁରି ଘରୁ କରି ଆଣିପାରିବ ବୋଲି ସ୍ଥିର କରୁଛ, ସେମାନେ ଛୁଟି ପରେ ନିଜ ନିଜ ଘରକୁ ଚାଲିଯିବ । କିନ୍ତୁ ଯେଉଁ-ମାନେ ଏହା ପୂର୍ଣ୍ଣଭାବରେ କରିପାରିବ ନାହିଁ ବୋଲି ଭାବୁଛ, ସେମାନେ ଛୁଟିପରେ ଏଠି ଡିଟେନ୍ (detained) ହୋଇ 'ଷ୍ଟାଣ୍ଡ-ଅପ୍ ଅନ୍ ଦି ବେଞ୍ଚ୍' ଦଣ୍ଡ ଭୋଗିବ । ହେଡ୍-ମାଷ୍ଟ୍ରେ ମୁହଁରେ ସିନା ଏଭଳି କଡ଼ା, ହୃଦୟ କିନ୍ତୁ ଅତି ନରମ ତାଙ୍କର—ଠିକ୍ ନାଗକେଳି ପରି, ଯାହାର ଉପରେ ଟାଣୁଆ ସଢ଼େଇ ସିନା ଭିତରେ କଅଁଳ ସୁଆଦୁ ଶସ ଓ ସୁଶୀତଳ ମଧୁର ଜଳ ।

ପିରିଅଡ଼୍ ପରେ ପିରିଅଡ଼୍ ଯାଇ ଶେଷ ପିରିଅଡ଼୍ ସରିଲା, ଛୁଟିଘଣ୍ଟା ବାଜିଲା । ଚାହୁଁ ଚାହୁଁ ଅନ୍ୟ ସବୁ କ୍ଲାସର ପିଲା ଘରମୁହାଁ ହେଲେ । ପିଅନ ସେସବୁ ଘର ବନ୍ଦ କରି ତାଲା ପକେଇଦେଲା । କେବଳ ରହିଗଲା ଆମ ବଡ଼ ହଲ୍‌ଟା ଓ ଆମେ ଯେତେ ଷାଠିଏ ପାଖାପାଖି ପିଲା । ଆମ ଭିତରେ ତର୍କ-ବିତର୍କ, ଭିଡ଼ା-ଓଟରା ଚାଲିଲା—ବଡ଼ ସାର୍‌ଙ୍କ ସକ୍ତ ବିଷୟରେ କ'ଣ ସିଦ୍ଧାନ୍ତ କରିବା ? ପାଞ୍ଚ ଜଣ ଆଉ ମୋ ଛଡ଼ା ଅନ୍ୟ ସମସ୍ତେ ଦଳ ବାନ୍ଧି ବିଚାର କଲେ—କାଲି ଅଙ୍କମାଷ୍ଟ୍ରେ ଆସିବେ, ତାଙ୍କୁ ତ ବଡ଼ ସାର୍‌ଙ୍କ ହୁକୁମ ଜଣାନାହିଁ; ତେଣୁ ସକ୍ତ ଦେଖାଇବା କାହାକୁ ? ତାପରେ ପ୍ରଶ୍ନମାଳାଟାଯାକର ଉତ୍ତର କରିବା ତ ଅସମ୍ଭବ, ଦରକାଣ୍ଡିଆ କରି ସ୍କୁଲକୁ ଆଣିବାରେ କି ଲାଭ ? ବଡ଼ ସାର୍ ନିତାନ୍ତ ଭୋଳା ଲୋକ, ଏଠୁ ଗଲାପରେ ସେ ନିଶ୍ଚୟ ସକ୍ତକଥା ଭୁଲିଯାଇଥିବେ ।

ମୁଁ କିନ୍ତୁ ମୋ ମତରେ ଅଟଳ ରହିଲି । ସିଧାସଳଖ କଥା—ସକ୍ତର ଅଙ୍କଯାକ ଘରେ କଷି କାଲି ସ୍କୁଲକୁ ଆଣିବା ମୋ ପକ୍ଷରେ ଅସମ୍ଭବ, ତେଣୁ ମୁଁ ନିଶ୍ଚୟ ଗୁରୁଦେବତାଙ୍କ ଆଦେଶ ମାନି ବେଞ୍ଚ ଉପରେ ଠିଆହୋଇ ରହିବି । ମୋ ଯୁକ୍ତିଯୁକ୍ତ କଥା ଶୁଣି ଯେଉଁ ପାଞ୍ଚ ଜଣ ଦୋଦୋପାଞ୍ଚ ହେଉଥିଲେ ସେମାନେ ମୋ ପଟକୁ ଆଉଜିଗଲେ । ମୁଁ ହେଡ୍-ମାଷ୍ଟ୍ରଙ୍କର ଅତି ସ୍ନେହଭାଜନ ଥିବାରୁ ମୋ ଲାଙ୍ଗୁଡ଼ ଧରି ଚିତ୍ରବୈତରଣୀ ପାରି ହୋଇଯିବା ଖୁବ୍ ସହଜ ହେବ ବୋଲି ସେମାନଙ୍କର ଦୃଢ଼ ବିଶ୍ୱାସ ହେଲା । ଶେଷରେ ଆମ ହଲ୍ ମେଲା ରହିଲା ଏବଂ ଆମେ ଛଅଜଣଯାକ ବେଞ୍ଚ ଉପରେ ଠିଆହୋଇ ରହିଲୁଁ । ଅନ୍ୟ ସବୁ ସହପାଠୀ ନିଜ ନିଜ ଘରକୁ ଚାଲିଗଲେ । ଯେଉଁ ପାଞ୍ଚଜଣ ମୋ ସହିତ ଦଣ୍ଡଭୋଗର ସାଥୀ ହେଲେ, ସେମାନଙ୍କର ନାମ ହେଉଛି ଆମ ଗାଁର ଯଦୁନାଥ କର ଓ ଉପେନ୍ଦ୍ର ତ୍ରିପାଠୀ, ଚାଷାଁପାଳର ରାଜକିଶୋର କର, ମହାନ୍ତିପଡ଼ାର ଅବନୀ ମହାନ୍ତି ଓ ନେତ୍ରାନନ୍ଦ ମହାନ୍ତି ।

୧୧ଟାରୁ ପ୍ରାୟ ଦେଢ଼ଘଣ୍ଟା ବିତି ସାଢ଼େ ୧୨ଟା ହୋଇଗଲା । ଇତି ମଧ୍ୟରେ ହେଡ଼୍-ମାଷ୍ଟ୍ରେ ଖିଆପିଆ କାମ ସାରି ଖଟରେ ଟିକେ ଗଡ଼ି ବାହାର ବାରଣ୍ଡାକୁ ଆସିଲାବେଳେ ସାମନାସାମନି ଆମ କ୍ଲାସ୍‌ରୁମ୍ ଉପରେ ତାଙ୍କର ଦୃଷ୍ଟି ପଡ଼ିଗଲା । କାହିଁକି ସେ ଘର ଖୋଲା ରହିଛି, କିଛି ବୁଝିପାରିଲେ ନାହିଁ । ଝଡ଼ମାଡ଼ ସଙ୍ଗେ ସଙ୍ଗେ ସ୍କୁଲ ଆଡ଼କୁ ମାଡ଼ି-ଆସିଲେ ଏବଂ ହଲ୍ ଭିତରେ ପଶିବାମାତ୍ରେ ଆମ ଛଅଜଣଙ୍କୁ ବେଞ୍ଚରେ ଠିଆହୋଇଥିବାର ଦେଖି ଦୁଃଖରେ ଅଭିଭୂତ ହୋଇପଡ଼ିଲେ । ଅଙ୍କସନ୍ଥ ସମ୍ବନ୍ଧୀୟ ତାଙ୍କ ନିର୍ଦ୍ଦେଶ ଯେ ଏପରି ବିଷମ ପରିସ୍ଥିତି ସୃଷ୍ଟି କରିପାରେ, ଏହା ତାଙ୍କ କଳ୍ପନା-ସୀମାର ସମ୍ପୂର୍ଣ୍ଣ ବାହାରେ ଥିଲା । ଆତ୍ମଗ୍ଲାନିରେ ବିଦାହିତ ହୋଇ ସେ ଆମ ସମସ୍ତଙ୍କୁ ସ୍ୱହସ୍ତରେ ବେଞ୍ଚରୁ ଓହ୍ଲାଇ ଆଣିଲେ ଏବଂ ସ୍ନେହରେ ସବୁରି ପିଠି ଆଉଁସି ଆଉଁସି ତାଙ୍କ ନିଜ କକ୍ଷକୁ ନେଇଗଲେ । ଆମପାଇଁ ସେତେବେଳେ ସେ ଏପରି ଅଥୟ ଓ ଅସ୍ତବ୍ୟସ୍ତ ହୋଇଯାଉଥାନ୍ତି ଯେ, ତାହା ଦେଖି ଆମ ମନରେ ଭାରି ବ୍ୟଥା ଆସିଲା । ଲଣ୍ଡଭଣ୍ଡ ହୋଇ ବୋତଲରୁ ରନ୍ଧା ନଡ଼ିଆ-ତେଲ ବାହାର କରି ଆମ ଦେହ ମୁଣ୍ଡରେ ଲଗାଇଦେଲେ । ତାଙ୍କ ଇଙ୍ଗିତରେ ଦୁଇଜଣ ବୋର୍ଡ଼ିଂ ଚାକର କୂଅରୁ ବାଲ୍‌ଟି ବାଲ୍‌ଟି ପାଣି କାଢ଼ି କୁଣ୍ଡରେ ଭର୍ତ୍ତି କରିଦେଲେ । ଆମେ ସେହି ପାଣିରେ ସ୍ନାନ ସାରିବାକୁ ବାହାରିଗଲୁଁ ।

ସେହି ଅବସରରେ ପିତୃକଳ୍ପ ଗୁରୁଦେବ ବୋର୍ଡ଼ିଂର ଗୋଟିଏ ରୁମ୍‌ରେ ଜଳଖିଆ ସରଞ୍ଜାମ ଥିବାର ସୂଚନା ପାଇ ସେଠାକୁ ଗଲେ । ଛତିଆ 'ନନ୍ଦ' ବଂଶୀ ଜମିଦାର ପରିବାରର ଦୁଇଟି ପିଲା ଦୁଃଶାସନ ନନ୍ଦ ଓ ତା' ଭାଇ ସେଇ ରୁମ୍‌ରେ ରହି ଆମ ସ୍କୁଲର ତଳ ଶ୍ରେଣୀରେ ପଢ଼ୁଥାନ୍ତି । ତା' ପୂର୍ବଦିନ ସନ୍ଧ୍ୟା ପ୍ରାୟ ୭ଟାରେ ତାଙ୍କ ଘରୁ କଷାକଷି ଭାରେ 'କଚୁଆନ' ଆସି ପହଞ୍ଚିଥିଲା । 'କ' ବୋଇଲେ ସହକାରିଆ ପାଚିଲାକଦଳୀ, 'ଚୂ' ବୋଇଲେ ସରୁଚୂଡ଼ା, 'ଆ' ବୋଇଲେ ଶ୍ରେଷ୍ଠ ଶିଳପୁଆ ଆକାରର ରସୁଆଳ ଆମ୍ବ, 'ନ' ବୋଇଲେ ବଡ଼-ଗୁଳା ମିଠା ନଡ଼ିଆ । ଦୁଃଶାସନ ଛଅ ଜଣଙ୍କୁ ଭେଟେଇଲା, ମାନିଆ ଚୂଡ଼ା ଆମ୍ବ କଦଳୀ ନଡ଼ିଆ ବାହାର କରିଦେଲା । ଦୁଇଜଣ ସାଥୀ ତାହା ଆଣି ଗୁରୁଦେବଙ୍କ କାମରାରେ ପହଞ୍ଚାଇଦେଲେ । ସାର୍‌ଙ୍କ ବରାଦମତେ ଆମ୍ବରସ-ନଡ଼ିଆକୋରା-କଦଳୀଚକଟା ବରୁରା ଚୂଡ଼ାରେ ମିଶି ଦିବ୍ୟ ଆହାର ପ୍ରସ୍ତୁତ ହୋଇଗଲା । ଆମେ ସ୍ନାନରୁ ଫେରିବାବେଳକୁ ସ୍କୁଲବଗିଚାରୁ କଦଳୀପତ୍ର କଟାହୋଇ ସେଇ କାମରା ମଧ୍ୟକୁ ଆସି-ଯାଇଥିଲା । ଆସନ ପରା ହେଲା, ପତର ପଡ଼ିଲା, ତହିଁରେ ଭୋଜ୍ୟତକ ବଢ଼ା ହୋଇଗଲା । ମହା ଆନନ୍ଦରେ ପେଟେ ପେଟେ ଖାଇ ପରମ ପରିତୃପ୍ତି ଲାଭ କଲୁଁ । ଭୋକରେ କରଡ଼ି ଜଳୁଥିଲେ ହେଁ ସାର୍‌ଙ୍କ ଆଗରେ ବେଶୀ ଖାଇବାକୁ ଭାରି ସଙ୍କୋଚ ଲାଗୁଥାଏ; ମାତ୍ର ସାର୍‌ଙ୍କ 'ଆଉ ଖା, ଆଉ ଖା' ଚାପରେ ଆକଣ୍ଠ ଭୋଜନ କରିବାକୁ ବାଧ୍ୟ ହେଲୁଁ । ଦୁଃଖକୁ ଆଦରିଥିଲେ ସୁଖ ବଳେ ବଳେ ଆସେ । ଆମ କପାଳରେ ଆଜି ସେଇଆ ଘଟିଲା । ଖାଇସାରି ଘୁଇଲେଜ୍‌ଟାଏ ବୋର୍ଡ଼ିଂରେ ବିଶ୍ରାମ ନେଇ ତା'ପରେ ଘରକୁ ଗଲୁଁ । ଏଭଳି ସଦ୍‌ଗୁରୁ ଏବେ କାହାନ୍ତି ?

ଯେତେ ଦୂର ସ୍ମରଣ ହୁଏ, ଏଇ ଘଟଣାର ଦଶ ବାରଦିନ ପରେ—ସେଇ ମର୍ଣ୍ଣିଙ୍ଗ୍ ସ୍କୁଲ୍ ପ୍ରାୟ ନଅଟା-ସାଢ଼େନଅଟା ବେଳ, ହେଡ୍‌ମାଷ୍ଟରଙ୍କ ଇଂଲିଶ୍ ଗ୍ରାମାର୍ ପିରିଅଡ୍ । ପ୍ରବଳ ଗରମ ହେଉଥାଏ ବୋଲି କାମିଜଟାକୁ ବସିଥିବା ଚେୟାରର ପଛପଟେ ଝୁଲେଇ-ଦେଇ ଖାଲି-ଦେହରେ ଆମକୁ ପଢ଼ାଉଥାନ୍ତି ନୀରସ ଗ୍ରାମାର୍ ପାଠକୁ ବେଶ୍ ସରସ ଭାବରେ ବୁଝେଇ । ଏହି ସମୟରେ ବାମ ପାର୍ଶ୍ୱସ୍ଥ ସଡ଼କ ଆଡ଼ୁ ସବାରି-ବାହକଙ୍କ ଆଶୁକବିତ୍ୱପୂର୍ଣ୍ଣ କର୍ଣ୍ଣରସାୟନ ଗୀତ ଭାସିଆସି ଆମ କାନକୁ ଓ ଆଖିକୁ ସେଇଆଡ଼କୁ ଟାଣିନେଲା—

"ହାକୁମ୍ ଧାବ ଲେ    ସଡ଼କ ଗୁଡ଼ ଲେ
                  ଡାହାଣ ମାଡ଼ ଲେ,
ହାକୁମ୍ ଧାବ ଲେ    କୋଠାକୁ ଦେଖ ଲେ
                  ଏଇଠି ରଖ ଲେ ।"

ସବାରିଟି ସଦର ସଡ଼କ ଗୁଡ଼ ସେଇଠୁ ଡାହାଣପଟକୁ ବାହାରିଥିବା ଶାଖା ରାସ୍ତାରେ ଆସି ଆମ ସ୍କୁଲ୍ ସାମନାରେ ଅଟକିଲା, 'ହାକୁମ୍ ଧାବ ଲେ' ସ୍ୱରଲହରି ଅଚାନକ ଥମକି ଗଲା । ସବାରି ଭିତରୁ ଜଣେ ଚଷମାପିନ୍ଧା ଗୋରାସାହେବ ବାହାରିପଡ଼ି ଆମର କ୍ଲାସ୍-ହଲ୍ ଆଡ଼କୁ ମାଡ଼ିଆସିଲେ—ତୁଣ୍ଡରେ ତାଙ୍କର ଗାଉଁଲି ଓଡ଼ିଆ ଭାଷା । ଆମେ ଡରଯାଇ ସାର୍‌ଙ୍କୁ ଦେଖାଇଦେଲାକ୍ଷଣି ସେ ଚଟାପଟ୍ କାମିଜଟା ଗଳେଇପକେଇ ଜୋତାହଳକ ପିନ୍ଧିଦେଇ ସାହେବଙ୍କ ପାଖକୁ ଧାଇଁଗଲେ ପାଛୋଟି ଆଣିବାପାଇଁ । ଆମେ ଯିନା ଜାଣିନାହୁଁ ସେ କଏସେ ବୋଲି, ବଡ଼ସାର୍ କିନ୍ତୁ କଲେଜିଏଟ୍ ସ୍କୁଲରେ ପଢ଼ିବା ଦିନରୁ ତାଙ୍କୁ ଭଲଭାବରେ ଚିହ୍ନିଥାନ୍ତି । ସେତେବେଳେ ଯେଉଁ ହାଣ୍ଡ୍ରସନ୍ ସାହେବ ତାଙ୍କ ସ୍କୁଲର ହେଡ୍‌ମାଷ୍ଟର୍ ଥିଲେ, ଏ ହେଉଛନ୍ତି ସେଇ । ମାତ୍ର ଏବେ ସେ ଉପର ପାହାଚକୁ ଉଠି ଓଡ଼ିଶା ସ୍କୁଲସମୂହର ଇନ୍‌ସ୍ପେକ୍ଟର୍ ହୋଇଛନ୍ତି । କି ଇଂଲିଶ୍ କି ଓଡ଼ିଆ ଉଭୟ ଭାଷାରେ ସେ ଜଣେ ପୋଖତ୍ ବିଦ୍ୱାନ୍ ଏବଂ ଖ୍ୟାତନାମା ଶିକ୍ଷାବିତ୍ । ତାଙ୍କ ପ୍ରଣୀତ ଇଂଲିଶ୍-ଓଡ଼ିଆ ଟ୍ରାନ୍‌ସଲେସନ୍ ପୁସ୍ତକ ଓଡ଼ିଶାର ହାଇସ୍କୁଲମାନଙ୍କରେ ପାଠ୍ୟପୁସ୍ତକରୂପେ ପ୍ରଚଳିତ ଥାଏ । ହେଡ୍‌ମାଷ୍ଟ୍ରେ ଏହି ଆଗନ୍ତୁକଙ୍କଠାରେ ଦୁଇଟି ବିଶେଷ ଚିହ୍ନ ଦେଖି ତାଙ୍କୁ ହାଣ୍ଡ୍ରସନ୍ ସାହେବ ବୋଲି ନିଃସଂଶୟରୂପେ ଜାଣିଲେ । ତାଙ୍କର ଗୋଟିଏ ଆଖି କୌଣସି କାରଣରୁ ନଷ୍ଟ ହୋଇଯାଇଥିଲା; ତେଣୁ ତା' ସ୍ଥାନରେ ଅବିକଳ ସ୍ୱାଭାବିକ ଆଖିପରି ଦେଖା-ଯାଉଥିବା ଗୋଟିଏ କୃତ୍ରିମ ଆଖି ଲଗାଇଥିଲେ, ଯହିଁରେ ଦୃଷ୍ଟିଶକ୍ତି ଆଦୌ ନଥିଲା । ଏହାଛଡ଼ା ସେ ଯେଉଁ ସୁନାମୁଦିଟି ଆଙ୍ଗୁଠିରେ ପିନ୍ଧିଥିଲେ, ତାର ପଥରବସାଣ ଜାଗାରେ ଗୋଟିଏ ବହୁମୂଲ୍ୟ ଟିକି ଘଣ୍ଟା ଖଞ୍ଜାଯାଇଥିଲା । ନ ଜାଣିଥିବା ଲୋକ ପକ୍ଷରେ ଏ ଦୁଇଟି ଚିହ୍ନ ବାରିବା ଅସମ୍ଭବ । କାଳିଆ ବେହେରାଙ୍କ ସୂତ୍ରରୁ ଜଣାଗଲା ଯେ, ଗୋରା ସାହେବ ନିକଟବର୍ତ୍ତୀ ଜୟପୁର ଡାକବଙ୍ଗଳାରୁ ଏଠାକୁ ଆସିଛନ୍ତି ଏବଂ ଏଠା କାମ ସାରି ସେଇ ବଙ୍ଗଳାକୁ ଫେରିଯିବେ । ଖାନସାମା ସେଠି ଖାନା ତିଆରି କରି ରଖିଥିବ, ସାହେବ

ଫେରିଲେ ମଧ୍ୟାହ୍ନଭୋଜନ କରି ଖରାବେଳଟା ବିଶ୍ରାମ ନେବେ ଏବଂ ସନ୍ଧ୍ୟା ପୂର୍ବରୁ ଏହି ସବାରିରେ 'ବଇରି' ଷ୍ଟେସନକୁ ଯାଇ ରେଳଯୋଗେ କଟକ ପ୍ରତ୍ୟାବର୍ତ୍ତନ କରିବେ ।

ସେତିକାଳେ ପାଠଶାଳା ପଢ଼ା ଖୁବ୍ ସରସ ଓ କଡ଼ା ଥିଲା । ଅପର ପ୍ରାଇମେରି ପୁରା ପାସ୍ କଲାବେଳକୁ ପିଲାଙ୍କ ବୟସ ଅନ୍ୟୂନ ଚଉଦ ହୋଇଯାଉଥିଲା । ମାଇନର ପାସ୍ ପରେ ମାଟ୍ରିକୁଲେସନ୍ ପଢ଼ା ସାରି ପାସ୍ ସାର୍ଟିଫିକେଟ୍ ହାସଲ କଲାବେଳକୁ ବୟସ କୋଡ଼ିଏରୁ କମ୍ ହେଉ ନଥିଲା । ତା' ପୂର୍ବରୁ ଅର୍ଥାତ୍ ୧୯୧୦ ସୁଦ୍ଧା ଯେଉଁମାନେ ଏଣ୍ଟ୍ରାନ୍ସ ପାସ୍ କରୁଥିଲେ, ସେମାନଙ୍କ ବୟସ ନିତାନ୍ତ କମ୍‌ରେ ୨୨।୨୩ ନିଶ୍ଚୟ ହେଉଥିଲା । ଜଗିନପୁରର ବାଲକୃଷ୍ଣ କର (ଶିକ୍ଷକ), ପାଟପୁରର ରାମଚନ୍ଦ୍ର ଦାଶ (ଓକିଲ), କାଶୀପୁରର ସୋମନାଥ କର (ଓକିଲ), ଧୂନାଖଣ୍ଡିର ବ୍ରଜବନ୍ଧୁ ଦାଶ (ଶିକ୍ଷକ) ଓ ରାମକୃଷ୍ଣ ତ୍ରିପାଠୀ (ପୋଷ୍ଟାଲ୍ ଇନ୍‌ସ୍ପେକ୍ଟର୍), ଝଣ୍ଡିସାହିର ଅଗଣି ଦାଶ (ଶିକ୍ଷକ) ପ୍ରଭୃତିଙ୍କର ବୟସସୀମା ପ୍ରବେଶିକା ପରୀକ୍ଷା ଦେଲାବେଳକୁ ବାଇଶି ତେଇଶିକୁ ସ୍ପର୍ଶ ବା ଅତିକ୍ରମ କରିଥିଲା ।

ମିଷ୍ଟର୍ ହାଣ୍ଡ୍ରସନ୍ ସ୍କୁଲସମୂହର ଇନ୍‌ସ୍ପେକ୍ଟର୍ ଥିଲାବେଳେ ଆମ ଖଣ୍ଡିତ ଓଡ଼ିଶା ଗୋଟିଏ ଡିଭିଜନ୍ ମାତ୍ର ଥିଲା ଏବଂ ତାହା ବିହାର ପ୍ରଦେଶ ସହିତ ଯୋଡ଼ାହେବା ଫଳରେ ସଂଯୁକ୍ତ ପ୍ରଦେଶର ନାମ 'ବିହାର-ଓଡ଼ିଶା ପ୍ରଦେଶ' ଏବଂ ସଂଯୁକ୍ତ ପ୍ରଶାସନର ନାମ 'ବିହାର-ଓଡ଼ିଶା ସରକାର' ହୋଇଥିଲା । ଓଡ଼ିଶାର ସ୍କୁଲମାନଙ୍କପାଇଁ ଜଣେମାତ୍ର ଇନ୍‌ସ୍ପେକ୍ଟର୍ ଥିଲେ ଏବଂ ତାଙ୍କ କର୍ତ୍ତୃତ୍ୱାଧୀନରେ ଥିବା ପ୍ରତ୍ୟେକ ପ୍ରାଇମେରି ଶିକ୍ଷା-ସର୍କଲ୍ ପାଇଁ ଜଣେଲେଖାଏଁ ସବ୍‌ଇନ୍‌ସ୍ପେକ୍ଟର୍ ନିଯୁକ୍ତ ହେଉଥିଲେ । ଆଜିକାଲି ପରି ଏତେ ଡିଷ୍ଟ୍ରିକ୍ଟ ଇନ୍‌ସ୍ପେକ୍ଟର, ଡେପୁଟି ଇନ୍‌ସ୍ପେକ୍ଟର୍ ଆଦୌ ନଥିଲେ । ଇନ୍‌ସ୍ପେକ୍ଟର୍ ହାଣ୍ଡ୍ରସନ୍ ସାହେବଙ୍କୁ ସାହାଯ୍ୟ କରିବାପାଇଁ ବର୍ଣ୍ଣିତ ସମୟର ଅଳ୍ପ ପୂର୍ବରୁ ଆସିଷ୍ଟାଣ୍ଟ୍ ଇନ୍‌ସ୍ପେକ୍ଟର୍ ପଦବୀଟିଏ ନୂଆ ହୋଇ ସୃଷ୍ଟି କରାଯାଇଥିଲା ଏବଂ ଶିକ୍ଷକ ନନ୍ଦକିଶୋର ବଳଙ୍କୁ ସେହି ପଦବୀରେ ଅସ୍ଥାୟୀ ନିଯୁକ୍ତି ଦିଆଯାଇଥିଲା । ନନ୍ଦକିଶୋରଙ୍କ ଜନ୍ମଗ୍ରାମ କୃଷ୍ଣପୁର । ସେହି ଗ୍ରାମରେ ଗୋଟିଏ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ଥିଲା । ତାହା ଆମ କୋଠପଦା ମଧ୍ୟଇଂରାଜୀ ବିଦ୍ୟାଳୟଠାରୁ ପ୍ରାୟ ତିନି ମାଇଲ ଦୂରବର୍ତ୍ତୀ । ସେହି ଗ୍ରାମର ତଥା ଆଖପାଖ କେତୋଟି ଗ୍ରାମର ପିଲାଏ ସେଠାରେ ପଢ଼ୁଥିଲେ ଏବଂ ସେଠାରୁ ପାସ୍ କରିଥିବା ପିଲାମାନେ ଆମ କୋଠପଦା ସ୍କୁଲରେ କିଏ ପଞ୍ଚମ ବା କିଏ ଷଷ୍ଠ ଶ୍ରେଣୀରେ ନାମ ଲେଖାଇ ପ୍ରତ୍ୟହ ପଢ଼ିବାକୁ ଆସୁଥିଲେ ।

ନନ୍ଦକିଶୋର ବଳ ଆସିଷ୍ଟାଣ୍ଟ୍ ଇନ୍‌ସ୍ପେକ୍ଟର୍ ହୋଇଯିବାରୁ କୃଷ୍ଣପୁର ଉ: ପ୍ରା: ବିଦ୍ୟାଳୟର ଗ୍ରାମୀଣ ପରିଚାଳକମାନଙ୍କର ଗର୍ବ ଓ ସାହସ ବଢ଼ିଗଲା । ସେମାନେ କୃଷ୍ଣପୁରରୁ କୋଠପଦା ମି: ଇଂ: ବିଦ୍ୟାଳୟର ଦୂରତା ଅନ୍ୟୂନ ଛଅ ମାଇଲ ବୋଲି ଗୋଟିଏ ମନଗଢ଼ା ନକ୍ସାରେ ଦେଖାଇ କୃଷ୍ଣପୁର ଉ: ପ୍ରା: ବିଦ୍ୟାଳୟକୁ ମଧ୍ୟଇଂରାଜୀ ବିଦ୍ୟାଳୟରେ ପରିଣତ କରିବାପାଇଁ ଇନ୍‌ସ୍ପେକ୍ଟର୍‌ସାହେବଙ୍କ ନିକଟକୁ ଆବେଦନପତ୍ର ପଠାଇଲେ ।

ଆସିଷ୍ଟାଣ୍ଟ୍ ଇନ୍‌ସ୍ପେକ୍ଟର୍ ବଳି ମହୋଦୟ ଉକ୍ତ ଆବେଦନକୁ ସୁପାରିସ କରି ଇନ୍‌ସ୍ପେକ୍ଟରଙ୍କ ଟେବୁଲ ଉପରେ ଫାଇଲ୍ ପେସ୍ କଲେ ଏବଂ ଇନ୍‌ସ୍ପେକ୍ଟର ସେ ସମ୍ପର୍କୀୟ ନଥି ପାଟନାକୁ ପଠାଇ ବିଭାଗୀୟ ଡିରେକ୍ଟର (D. P. I.) ମହୋଦୟଙ୍କଠାରୁ ଚୂଡ଼ାନ୍ତ ଅନୁମୋଦନ ଆଣି କୃଷ୍ଣପୁର ସ୍କୁଲକୁ ମାଇନର ସ୍କୁଲର ମଞ୍ଜୁରି ପ୍ରଦାନ କଲେ । ଅସିଷ୍ଟାଣ୍ଟ ଇନ୍‌ସ୍ପେକ୍ଟର୍ ନନ୍ଦକିଶୋର୍ ବଳି ଉଦ୍ଦେଶ୍ୟମୂଳକଭାବରେ କେତେକ ଭ୍ରାନ୍ତିପୂର୍ଣ୍ଣ ତଥ୍ୟ ପ୍ରଦାନ କରି କୋଠପଦା ମଧ୍ୟଇଂରାଜୀ ବିଦ୍ୟାଳୟକୁ ମଧ୍ୟଭର୍ଣ୍ଣାକୁଲର୍ ବିଦ୍ୟାଳୟ ସ୍ତରକୁ ଅବନମିତ କରିବାକୁ ମଧ୍ୟ ଦୃଢ଼ ପ୍ରସ୍ତାବ ଦାଖଲ କରିଥିଲେ । ଏହି ପ୍ରସ୍ତାବ ମୂଳରେ ପ୍ରଚ୍ଛନ୍ନ ସ୍ୱାର୍ଥ ଥିଲା ଯେ, କୋଠପଦାରେ ପଢ଼ୁଥିବା ପଞ୍ଚମରୁ ସପ୍ତମ ଶ୍ରେଣୀର ସମସ୍ତ ଛାତ୍ର, ବିଶେଷତଃ ମୂଳବିସନ୍ତ ଓ ଗୁଁ ସ୍ତାପାଳର ଅନ୍ତତଃ ଚାଳିଶ ପଚିଶ୍ଚାଳିଶ ପିଲା କୃଷ୍ଣପୁର ମଧ୍ୟଇଂରାଜୀ ବିଦ୍ୟାଳୟକୁ ଚାଲିଆସିବାକୁ ଅଗତ୍ୟା ଆଗ୍ରହୀ ହେବେ, ଯଦ୍ୱାରା ଭବିଷ୍ୟତରେ କେବେହେଲେ ଉକ୍ତ ନବୋନ୍ନୀତ ମଧ୍ୟଇଂରାଜୀ ସ୍କୁଲରେ ଛାତ୍ରଦୈନ୍ୟର ଆଶଙ୍କା ରହିବ ନାହିଁ । ଇନ୍‌ସ୍ପେକ୍ଟର ହାଣ୍ଡରସନ୍ ଖିଆଲର ବଶବର୍ତ୍ତୀ ହୋଇ ଗୋଟାଏ ପୁରୁଣା ମଧ୍ୟଇଂରାଜୀ ସ୍କୁଲର ସ୍ତରକୁ ହଠାତ୍ ଫଟାଇଦେବାକୁ ଉଚିତ ମନେ ନକରି ନନ୍ଦକିଶୋରଙ୍କ ପ୍ରଦତ୍ତ ତଥ୍ୟାବଳୀର ସତ୍ୟାସତ୍ୟ ଅବଧାରଣ କରିବାର ଗୁପ୍ତ ଅଭିପ୍ରାୟରେ ଆଜି ଏହି ଅଗ୍ରୀମ ପରିଦର୍ଶନ ଗସ୍ତରେ ଆସିଛନ୍ତି ।

ପରିଦର୍ଶକ ସାହେବ ମହୋଦୟ ସମ୍ମୁଖସ୍ଥ ଷଷ୍ଠ ଶ୍ରେଣୀ ଗୃହ ମଧ୍ୟକୁ ପ୍ରବେଶ କରିବାମାତ୍ରେ ଡ୍ରିଲ୍ ଶିକ୍ଷା ଭଙ୍ଗୀରେ ଆମେ ସମସ୍ତ ଛାତ୍ର ଏକ ସମୟରେ ଠିଆହୋଇଯାଇ ତାଙ୍କୁ ଅଭିବାଦନ ଜଣାଇଲୁଁ । ପଞ୍ଚାଶାଧିକ ମୁଣ୍ଡମାଳର ସମାନ ତାଳରେ ଉର୍ଦ୍ଧ୍ୱୋତ୍ତୋଳନ ଦୃଶ୍ୟ ସାହେବଙ୍କୁ ମୁଗ୍ଧ କରିଦେଲା । ସ୍ୱତଃସ୍ଫୂର୍ତ୍ତିଭାବରେ ତାଙ୍କ ତୁଣ୍ଡରୁ ବାହାରିପଡ଼ିଲା "ଗାଉଁଲି ସ୍କୁଲରେ ଗୋଟିଏ ଶ୍ରେଣୀରେ ଏତେ ଛାତ୍ର ଦେଖିବା ଏଇ ମୋର ପ୍ରଥମ ।" ଅତି ଭଦ୍ରସ୍ୱରରେ ସେ ଆମମାନଙ୍କୁ କହିଲେ, "ବସିଯାଅ" । ଆମେ ସମସ୍ତେ ବସିଗଲୁଁ; ସେ କିନ୍ତୁ ଠିଆହୋଇ ରହିଲେ ଏବଂ ହଲ୍‌ଟି ମଧ୍ୟରେ ବୁଲି ବୁଲି ଆମମାନଙ୍କ ସହିତ ପରିଚିତ ହେବା ଭଳି ଢଙ୍ଗରେ କଥାବାର୍ତ୍ତା ଆରମ୍ଭ କଲେ । ସେହି ଆଳାପ ମଧ୍ୟରେ "ସବୁଠାରୁ ବେଶୀ ଦୂରରୁ କିଏ କିଏ ଆସିଛ ?" ବୋଲି ପଚାରିଦେବାରୁ ସାତ ଆଠୋଟି ପିଲା ଏକସଙ୍ଗେ ଠିଆ ହୋଇଗଲେ । ସାହେବ ସେମାନଙ୍କୁ ପଚାରିଲେ, "ତୁମମାନଙ୍କ ଗାଆଁ ନାଁ କ'ଣ ? ତାହା ଏଠୁଁ କେତେ ବାଟ ?" ସେମାନେ ଉତ୍ତର ଦେଲେ, "କୃଷ୍ଣପୁର ଓ ତାକୁ ଲାଗିଥିବା ଯୋଡ଼ିଏ ଗାଆଁରୁ ଆମେ ସାଙ୍ଗସୁଙ୍ଗା ହୋଇ ନିତି ଆସୁଁ । କୃଷ୍ଣପୁରରୁ କୋଠପଦା ସଦର ରାସ୍ତାରେ ଆସିଲେ ପ୍ରାୟ ତିନି ମାଇଲ—ଘଣ୍ଟାକର ବାଟ । କିନ୍ତୁ ଗାଉଁଲି ସଳଖ ରାସ୍ତା ଦେଇ ଆମେ ଆସୁଛୁଁ—ପ୍ରାୟ ଅଢ଼େଇ ମାଇଲର ବାଟ, ଅନ୍ଦାଜ ପଚିଶ୍ଚାଳିଶ ମିନଟ୍ ଲାଗୁଛି ଆସିବାକୁ ।" ଏବେ ସାହେବଙ୍କର ପୂର୍ଣ୍ଣ ହୃଦ୍‌ବୋଧ ହେଲା ଯେ, କୃଷ୍ଣପୁରବାସୀଙ୍କ ଆବେଦନରେ ଲିଖିତ ସମସ୍ତ ତଥ୍ୟ ଅସତ୍ୟ, ଅଭିସନ୍ଧିମୂଳକ ଓ ସ୍ୱାର୍ଥ-

ପ୍ରଣୋଦିତ ଏବଂ ଆସିଷ୍ଟାଣ୍ଟ ଇନ୍‌ସ୍ପେକ୍ଟରଙ୍କ ନୀତିବିରହିତ ସୁପାରିସ ଚମତ୍କତାପୂର୍ଣ୍ଣ ଓ ଦୂଷଣୀୟ । ଏହାପରେ ସାହେବ ଅନ୍ୟାନ୍ୟ ଶ୍ରେଣୀକୁ ମଧ୍ୟ ଖୁବ୍ ଅଳ୍ପ ଅଳ୍ପ ସମୟପାଇଁ ଗଲେ ଏବଂ ତଥ୍ୟଗତ ଅନୁସନ୍ଧେୟ ବିବରଣ ସମ୍ବନ୍ଧରେ ସେସବୁ ଶ୍ରେଣୀରେ ପଢୁଥିବା କୃଷ୍ଣପୁର ଅଞ୍ଚଳିଆ ଛାତ୍ରମାନଙ୍କ ମୁଖରୁ ବି ସେଇ ଏକା ଧରଣର ଉତ୍ତର ପାଇଲେ । ସର୍ବଶେଷରେ ହେଡ୍‌ମାଷ୍ଟରଙ୍କ ଅଫିସ୍ ରୁମ୍‌କୁ ଯାଇ ସ୍କୁଲର ମୋଟ ଛାତ୍ରସଂଖ୍ୟା, ବାର୍ଷିକ ସରକାରୀ ସାହାଯ୍ୟ ପରିମାଣ, ଲାଇବ୍ରେରୀବହି ଓ ପ୍ରାଇଜ୍ ବହି ନିମନ୍ତପାଇଁ ବାର୍ଷିକ ଅନୁଦାନ, ବ୍ୟାୟାମ ଓ ଖେଳର ଆବଶ୍ୟକ ସରଞ୍ଜାମ ନିମନ୍ତପାଇଁ ଅନୁଦାନ ଇତ୍ୟାଦି ସମ୍ପର୍କରେ କେତେକ ଅବଶ୍ୟଜ୍ଞାତବ୍ୟ ବିବରଣ ସଂଗ୍ରହପୂର୍ବକ 'ପରିଦର୍ଶକଙ୍କ ମନ୍ତବ୍ୟ ରେଜିଷ୍ଟର'ଟିକୁ ସଙ୍ଗରେ ନେଇ ସେହି ସବାରିଯାନରେ ଜୟପୁର ଡାକବଙ୍ଗଳାକୁ ଚାଲିଗଲେ । ହେଡ୍-ମାଷ୍ଟରଙ୍କ ସମେତ ଅନ୍ୟ ସମସ୍ତ ଶିକ୍ଷକ ଇନ୍‌ସ୍ପେକ୍ଟର ସାହେବଙ୍କୁ ସସମ୍ଭ୍ରମ ବିଦାୟ-ସମ୍ବର୍ଦ୍ଧନା ଜ୍ଞାପନ କଲେ । ସେତେବେଳକୁ ଛୁଟିଘଣ୍ଟା ବାଜିବାକୁ ପ୍ରାୟ ଅଧଘଣ୍ଟା ବାକି ଥାଏ । ଉଦାରହୃଦୟ ଇନ୍‌ସ୍ପେକ୍ଟର ମହୋଦୟ ଯାନାରୋହଣବେଳେ କୃଷ୍ଣପୁରବାସୀଙ୍କ କାରସାଦି ଓ ତତ୍‌ସହିତ ଜଡ଼ିତ ନନ୍ଦକିଶୋରଙ୍କ ଅନ୍ୟାୟ ସମର୍ଥନ ସମ୍ପର୍କରେ ହେଡ୍‌ମାଷ୍ଟରଙ୍କୁ ସୂଚନାରେ ଅବହିତ କରାଇଥିଲେ । ହେଡ୍‌ମାଷ୍ଟ୍ରେ ଅତିଶୟ ବିବ୍ରତ ହୋଇପଡ଼ି ଏହି ଦାରୁଣ ବିପଦରୁ ବିଦ୍ୟାପୀଠଟିକୁ ମୁକ୍ତ କରିବାପାଇଁ ଦୟାବତାର ହାକିମଙ୍କୁ କାକୁତିମିନତି ସହ ପ୍ରାର୍ଥନା କଲେ । ବିଚ୍ଚରବନ୍ତ ହାକିମ ଅଳ୍ପ କଥାରେ କହିଲେ, "ଅଯ ଧରି ଅପେକ୍ଷା କର; ସ୍କୁଲର ଭାଗ୍ୟ ଫାଟିବ କି ଫିଟିବ, ଦିନ କେଇଟା ମଧ୍ୟରେ ଜଣାପଡ଼ିଯିବ ।" ଏଥିସହିତ ପରୋକ୍ଷ ଭାଷାରେ ମଧ୍ୟ ଇଙ୍ଗିତ ଦେଇଗଲେ, ଚ୍ଛୋଟ ଧରଣର ହେଉ ପଛେ, ଏହି ଘଟନାକୁ କେନ୍ଦ୍ର କରି ଗୋଟାଏ କିଛି ବିକ୍ଷୋଭ ପ୍ରଦର୍ଶନ କରିବାପାଇଁ ।

ଇନ୍‌ସ୍ପେକ୍ଟର ସାହେବ ଚାଲିଗଲା ପରେ ହେଡ୍‌ମାଷ୍ଟ୍ରେ ସମସ୍ତ ଶିକ୍ଷକଙ୍କୁ ଅଫିସ୍ ରୁମ୍‌କୁ ଡାକିନେଇ ସ୍କୁଲ ଉପରେ ପଡ଼ିଥିବା ବିପଦର ଦୁଃଖଦାୟକ ବାର୍ତ୍ତାଟି ସେମାନଙ୍କ ଆଗରେ ପ୍ରକାଶ କଲେ । ତିନିବର୍ଷ ତଳେ ଏକକାଳୀନ ତିନିଜଣ ଯୁବଶିକ୍ଷକ ସ୍କୁଲରେ ଯୋଗ ଦେଇଥିଲେ—ଆନନ୍ଦଚନ୍ଦ୍ର ମିଶ୍ର, ବାଞ୍ଛାନିଧି ଶତପଥୀ ଓ ରାମଚନ୍ଦ୍ର ମହାପାତ୍ର ଯଥାକ୍ରମେ ହେଡ୍‌ମାଷ୍ଟର, ଆସିଷ୍ଟାଣ୍ଟ ହେଡ୍‌ମାଷ୍ଟର ଓ ସେକେଣ୍ଡ୍ ପଣ୍ଡିତରୂପେ । ସେମାନଙ୍କ ଉତ୍ସାହ-ଉଦ୍ଦୀପ୍ତ ଶିକ୍ଷାଦାନ ଓ ଉନ୍ନୟନମୂଳକ କାର୍ଯ୍ୟକଳାପ ଫଳରେ ସ୍କୁଲ ପରିଚାଳନା ଇତିହାସରେ ଏକ ନୂତନ ଅଧ୍ୟାୟର ଆରମ୍ଭ ଓ ଏକ ନୂତନ ହାଉଆର ସଞ୍ଚାର ହୋଇ-ଥିଲା । ସନ୍ନିହିତ କନ୍ଦମୂଳ ପଡ଼ିଆର ପ୍ରଥମାଂଶଟି ଖେଳପଡ଼ିଆ ନାମରେ ଅଭିହିତ ହୋଇ ପିଲାମାନଙ୍କର ଡ୍ରିଲ୍, ବ୍ୟାୟାମ ଓ ଫୁଟ୍‌ବଲ ଖେଳ ଅଭ୍ୟାସର ପ୍ରାଙ୍ଗଣରୂପେ ବ୍ୟବହୃତ ହେଲା । ଗୀତାନ୍ତ ଓ ଶ୍ଳୋକାନ୍ତ ପ୍ରତିଯୋଗିତା ଅଧିକ ସଜିଯ ଓ ଜୀବନ୍ତ ହୋଇ ଅଚିରେ ଅଭିଭାବକମଣ୍ଡଳୀର ସୁଦୃଷ୍ଟି ଆକର୍ଷଣ କଲା । ନବପ୍ରବର୍ତ୍ତିତ ଏହିସବୁ ଫଳପ୍ରଦ ଯୋଜନା

ଯୋଗୁଁ କୋଠପଦା ମଧ୍ୟଇଂରାଜୀ ବିଦ୍ୟାଳୟର ଅଧ୍ୟାପନାଗତ ସୁଖ୍ୟାତି ଓ ଛାତ୍ରମାନଙ୍କ କୃତିତ୍ୱ ସମଗ୍ର କଟକ ଜିଲ୍ଲାର ଆଦର୍ଶରୂପେ ପ୍ରଶଂସିତ ହେଉଥିଲା । ଏବେ ଏହି ଅଚାନକ ବିପତ୍ପାତ ଯୋଗୁଁ ଶିକ୍ଷକମାନଙ୍କ ମନରେ ଘୋର ବିଷାଦର କଳା ବାଦଲ ଘୋଟିଗଲା ସତ; କିନ୍ତୁ ହେଡ୍‌ମାଷ୍ଟର ଓ ଆସିଷ୍ଟାଣ୍ଟ ହେଡ୍‌ମାଷ୍ଟର ଉକ୍ତ ସଙ୍କଟମୟ ପରିସ୍ଥିତିକୁ ଯଥାଶୀଘ୍ର ହଟାଇଦେବାପାଇଁ ଅଦମ୍ୟ ସାହସିକ ପଦକ୍ଷେପମାନ ଗ୍ରହଣ କଲେ । ଛାତ୍ର-ସମ୍ପ୍ରଦାୟ ମାଧ୍ୟମରେ ଗ୍ରାମେ ଗ୍ରାମେ 'କଳା ସପ୍ତାହ'ର ବାର୍ତ୍ତା ସେହିଦିନଠାରୁ ପ୍ରଚାରିତ ହେବାକୁ ଲାଗିଲା । ତା'ପରଦିନଠାରୁ ସାତଦିନ ପର୍ଯ୍ୟନ୍ତ ଶିକ୍ଷକମାନଙ୍କ ନେତୃତ୍ୱରେ ଛାତ୍ର ପଟୁଆର ଶୋଭାଯାତ୍ରାରେ ବାହାରି ଗ୍ରାମକୁ ଗ୍ରାମ ପରିକ୍ରମା କଲା ଏବଂ ଶିକ୍ଷକବର୍ଗ ପେଣ୍ଠ ଜାଗାମାନଙ୍କରେ, କୁମୁଡ଼ା ହାଟରେ ଓ ବିରୂପା-ବାଲିରେ ସାଧାରଣ ସଭାମାନ କରି ଉକ୍ତ ଅଞ୍ଚଳର ଛାତ୍ରଗୋଷ୍ଠୀଙ୍କ ପଢ଼ାରେ ଯେଉଁ ନିର୍ମମ କୁଠାରାଘାତ ହେବାକୁ ଯାଉଛି, ତାହାକୁ ପ୍ରତିହତ କରିବାପାଇଁ ସମ୍ମିଳିତ ଉଦ୍ୟମ କରିବାକୁ ଉପସ୍ଥିତ ଜନତାକୁ, ବିଶେଷତଃ ଅଭିଭାବକମାନଙ୍କୁ ନିବେଦନ କଲେ ।

ଏହାଦ୍ୱାରା ଆଶାତୀତ ସୁଫଳ ମିଳିଲା । ଗ୍ରାମମୁଖ୍ୟଗଣ ଓ ଅଭିଭାବକମଣ୍ଡଳୀ ସଙ୍ଗଠିତ ଭାବରେ ଏକଜୁଟ ହୋଇ କର୍ତ୍ତୃପକ୍ଷଙ୍କ ଦ୍ୱାରା ହେବାକୁ ଯାଉଥିବା ନିଷ୍ପତ୍ତିର ବିରୋଧରେ ପ୍ରତିବାଦ ସଭାମାନ ଆହ୍ୱାନ କଲେ ଏବଂ ଶତାଧିକ ବିଦ୍ୟୋତ୍ସାହୀଙ୍କ ସ୍ୱାକ୍ଷରଯୁକ୍ତ ପ୍ରତିବାଦ-ମୂଳକ ଲେଖାମାନ 'ଉତ୍କଳଦୀପିକା' ପତ୍ରିକାରେ ଏକାଧିକବାର ପ୍ରକାଶିତ ହେଲା । ଏହା ଫଳରେ ବିହାର-ଓଡ଼ିଶା ସରକାରର ସଂପୃକ୍ତ ଶିକ୍ଷାବିଭାଗୀୟ କର୍ତ୍ତାଙ୍କ ଆଦେଶରେ କୋଠପଦା ମିଡ଼୍‌ଲ ଇଂଲିଶ୍ ସ୍କୁଲର ସମ୍ମାନ ପୂର୍ବବତ୍ ଅବ୍ୟାହତ ରହିଲା—ସ୍କୁଲଟି ଅଣ ମଧ୍ୟଭର୍ଣ୍ଣାକୁଲାର୍ ଗ୍ରେଡ୍‌କୁ ଅଧୋଗତ ହେଲାନାହିଁ । ପକ୍ଷାନ୍ତରେ, ପରୀକ୍ଷାମୂଳକ ଭାବରେ ଯେଉଁ ଆସିଷ୍ଟାଣ୍ଟ ଇନ୍‌ସ୍ପେକ୍ଟରର ପାହ୍ୟାଟି ସୃଷ୍ଟି କରାଯାଇଥିଲା, ତାହାକୁ ଉଠାଇଦିଆଗଲା ଏବଂ ସେହି ପାହ୍ୟାକୁ ଉନ୍ନୀତ ହୋଇଥିବା ନନ୍ଦକିଶୋର ବଳଙ୍କୁ ତହିଁରୁ ଓହରାଇ ଆଣି ତାଙ୍କ ପୂର୍ବ ଚାକିରିରେ ଅବସ୍ଥାପିତ କରାଗଲା । ସେବେକା ନିଷ୍ଠାପର ଶିକ୍ଷକମହଲ ନିଜ ସ୍କୁଲକୁ କିପରି ଆପଣାର ଗୃହସ୍ଥଳୀ ଓ ଛାତ୍ରଗଣଙ୍କୁ ଆପଣାର ସନ୍ତାନ ସଦୃଶ ମଣୁଥିଲେ ଏବଂ ଏ ଉଭୟର ମଙ୍ଗଳ ଲାଗି ପ୍ରାଣପାତ ଯତ୍ନ କରୁଥିଲେ, ଉପର ଦୃଷ୍ଟାନ୍ତଟି ତାର ଏକ ଜ୍ୱଳନ୍ତ ପ୍ରମାଣ ।

ବିଶ୍ୱର ପ୍ରାଚୀନତମ ଜ୍ଞାନଗରିଷ୍ଠ ଆର୍ଯ୍ୟ ଭାରତର ବ୍ୟବସ୍ଥାକର୍ତ୍ତାଗଣ ଶିକ୍ଷାଗୁରୁଙ୍କୁ ସାମାଜିକ ବ୍ୟବସ୍ଥାରେ ଯେପରି ଶୀର୍ଷତମ କୋଟିର ପରାତ୍ପରସ୍ଥାନୀୟ ମର୍ଯ୍ୟାଦାପୁରୁଷରୂପେ ସଂପୂଜନ କରିବାର ଅବଶ୍ୟପାଳନୀୟ ବିଧାନ ରଚିଥିଲେ, ବିଶ୍ୱ ଇତିହାସରେ ତାର ପଟାନ୍ତର ନାହିଁ । ନିମ୍ନୋଦ୍ଧୃତ ଚତୁଷ୍ପଦୀ ଗୁରୁବନ୍ଦନାଟି ସେହି ସଂପୂଜନ ବିଧାନର ମହାର୍ଘ ଘୋଷଣାନାମା :

"ନମସ୍ତେ ଗୁରୁଦେବାୟ ସର୍ବସିଦ୍ଧିପ୍ରଦାୟିନେ
ସର୍ବମଙ୍ଗଳରୂପାୟ ସର୍ବାନନ୍ଦବିଧାୟିନେ ।
ଅଖଣ୍ଡମଣ୍ଡଳାକାରଂ ବ୍ୟାପ୍ତଂ ଯେନ ଚରାଚରଂ
ତତ୍ପଦଂ ଦର୍ଶିତଂ ଯେନ ତସ୍ମୈ ଶ୍ରୀଗୁରବେ ନମଃ ।
ଅଜ୍ଞାନତିମିରାନ୍ଧସ୍ୟ ଜ୍ଞାନାଞ୍ଜନଶଳାକୟା
ଚକ୍ଷୁରୁନ୍ମୀଳିତଂ ଯେନ ତସ୍ମୈ ଶ୍ରୀଗୁରବେ ନମଃ ।
ଗୁରୁର୍ବ୍ରହ୍ମା ଗୁରୁର୍ବିଷ୍ଣୁଃ ଗୁରୁର୍ଦ୍ଦେବ ମହେଶ୍ୱରଃ
ଗୁରୁଃ ସାକ୍ଷାତ୍ ପରଂବ୍ରହ୍ମ ତସ୍ମୈ ଶ୍ରୀଗୁରବେ ନମଃ ।

ସୃଷ୍ଟିପ୍ରକ୍ରିୟାର ଆଦିମ କାଳରୁ ଆରମ୍ଭ କରି ଆଜିପର୍ଯ୍ୟନ୍ତ ପୃଥିବୀର କୌଣସି ଦେଶ, କୌଣସି ଜାତି, କୌଣସି ଭାଷା ବା କୌଣସି ସାହିତ୍ୟର କବିମାନସରେ ଗୁରୁଦେବଙ୍କ ଭାବମୂର୍ତ୍ତିକୁ ଏଭଳି ଅତୀନ୍ଦ୍ରିୟ ସମ୍ମାନଦାନ କଳ୍ପନାର ସୂତ୍ରପାତ ସୁଦ୍ଧା ଘଟିନାହିଁ ।

ଉତ୍କଳଗୌରବ ମଧୁସୂଦନ ଦାସ, ବାଗ୍ମୀବର ବିଶ୍ୱନାଥ କର, ଉତ୍କଳମଣି ଗୋପବନ୍ଧୁ ଦାସ ପ୍ରମୁଖ ପ୍ରାତଃସ୍ମରଣୀୟ ଜାତୀୟ ବୀରଙ୍କ ଜୀବନଚରିତରେ ସେମାନଙ୍କ ଶୈଶବଶିକ୍ଷା-ଗୁରୁ ଓଝା ବା ମାଷ୍ଟିବଂଶ ଅବଧାନମାନଙ୍କ ନାମ ମଧ୍ୟ ଚିରଦିନପାଇଁ ଗ୍ରଥିତ ହୋଇଛି । ଚାହାଳିଗୁରୁମାନଙ୍କ ଦକ୍ଷତାପୂର୍ଣ୍ଣ ଅଧ୍ୟାପନାର ସୁଦୂରପ୍ରସାରୀ ପ୍ରଭାବ ଯେ ସେକାଳର ନେତୃସ୍ଥାନୀୟ କର୍ଣ୍ଣଧାରମାନଙ୍କୁ ଆମରଣ ଦିଗ୍‌ଦର୍ଶନ ଦେଇପାରିଥିଲା, ଏହାହିଁ ଏଥିରୁ ପରିସ୍ଫୁଟ ହୁଏ ।

ଭାରତସାରା ବହୁଚର୍ଚ୍ଚିତ ଗୁରୁପୂଜାର ସାଡ଼ମ୍ବରମୟ ଗୁରୁଗମ୍ଭୀର ଆୟୋଜନ କଥା କହିଲେ ନସରେ । କି ରାଜ୍ୟ, କି କେନ୍ଦ୍ର, ସବୁଠି ଉତ୍ସବର ଘନଘଟା, ଧ୍ୱନିର ଅନ୍ତ ନାହିଁ; କିନ୍ତୁ ତଳେଇ ଦେଖିଲେ ସବୁ ଫମ୍ପା, ସବୁ ଆନ୍ତରିକତାହୀନ, ସବୁହିଁ ଲୋକଦେଖା । ଓଡ଼ିଶାରୁ ଆମେରିକାଯାଏ ପରିପ୍ରସରର ସୀମା ନାହିଁ, ଅଥଚ ତା' ମଧ୍ୟରୁ ଆଧ୍ୟାତ୍ମିକତା ପଳାତକ, ପ୍ରଣବ ଓଁକାରର ସତ୍ତା ନିର୍ବାସିତ; ସେହି ଅନ୍ତଃସାରଶୂନ୍ୟ ବାହ୍ୟ ପ୍ରସରରେ ନା ଅଛି ଆତ୍ମିକ ଆଲିଙ୍ଗନ, ନା ଅଛି ପାରମାର୍ଥିକ ସ୍ପର୍ଶନ, ନା ଅଛି ଅନ୍ତରର ଆବେଦନ ।

ଉପରିଉଦ୍ଧୃତ ଗୁରୁବନ୍ଦନାଟି ଏ ଯୁଗରେ ପୋଥି-ଅକ୍ଷରର କୋକେଇରେ ବନ୍ଧା ହୋଇ ରହିଗଲା । ମାନସିକ ଉପଲବ୍‌ଧିର ପରିସରରୁ ନିର୍ମଳ ଆଧ୍ୟାତ୍ମିକତା ଏକାବେଳେ ଉଭେଇଗଲା । ଅମାନିଶୀଥିନୀର ସୂଚୀଭେଦ୍ୟ ନୀରନ୍ଧ୍ର ଧ୍ୱାନ୍ତ ମଧ୍ୟରେ ବାଟ ଦେଖାଇବ କିଏ— କାହା ହାତରେ ଅଛି ବଢ଼ିଆ-ଆଲୁଅ ? ଏହି ସଙ୍କଟମୟ ଅବସ୍ଥାରେ ଶିକ୍ଷକସମ୍ପ୍ରଦାୟ ନିବିଡ଼ଭାବରେ ଭାବନ୍ତୁ—ଜାତୀୟ ସମ୍ମାନ ସ୍ତରରେ ସେମାନଙ୍କ ସ୍ଥାନ ବର୍ତ୍ତମାନ କେଉଁଠି ? ପୃଥିବୀର ଦାଣ୍ଡ-ଦରଜାରେ ଠକ୍-ଠକ୍ ଅଙ୍ଗୁଳି-ଘାତଦ୍ୱାରା ଆବାଜ କରୁଥିବା ଆସନ୍ନ ଶତାବ୍ଦୀର ଅର୍କ ଦେଉଳ ଟୋଳାଇବ କିଏ ? ଶିବେଇ ସାଆନ୍ତରା କାହିଁ ? ଧର୍ମପଦ କାହିଁ ? ବାରଶ ବନ୍ଧାଣି ଆସିବେ କାହୁଁ ?

## ୧୨ । ମାଧ୍ୟମିକ ଶିକ୍ଷାପରିଷଦର ସୁଦୂରପ୍ରସାରୀ ଭୂମିକାରେ ଶ୍ଳାଘ୍ୟ ବିଜ୍ଞତାର ସ୍ୱରୂପ ପ୍ରସ୍ଫୁରିତ ହେଉ

ଅଭିଯୋଗାତ୍ମକ ଉପରୋକ୍ତ ପର୍ଯ୍ୟାଲୋଚନାର ବଳୟ ଭିତରୁ ମାଧ୍ୟମିକ ଶିକ୍ଷା ପରିଷଦ (Board of Secondary Education, Orissa) ବାଦ୍ ପଡ଼ିନପାରେ । ମାଟ୍ରିକ୍ୟୁଲେସନ୍ ସ୍ତର ପର୍ଯ୍ୟନ୍ତ ଶିକ୍ଷା-ଶିକ୍ଷକ-ଶିକ୍ଷାୟତନ ଉପରେ ଏହି ପରିଷଦର ସୁଦୂରପ୍ରସାରୀ ପ୍ରଭାବ ବହୁମୁଖୀ, ଅତି ବ୍ୟାପକ ଓ ଗୁରୁତ୍ୱପୂର୍ଣ୍ଣ । ପକ୍ଷାନ୍ତରେ ଶିକ୍ଷାଗତ ଓ ପ୍ରଶିକ୍ଷଣାଗତ ଉତ୍କର୍ଷ ସୃଜନାରେ ଏହାର କର୍ତ୍ତବ୍ୟବୋଧ ଓ ଦାୟିତ୍ୱର ପରିସର ବିରାଟ ଓ ବିଶାଳ । ଆନ୍ତରିକ ବ୍ୟାକୁଳତା, ମାନସିକ ନିର୍ମଳତା, ସାଧୁ ସଙ୍କଳ୍ପ ଓ ଚରିତ୍ରଶୁଦ୍ଧତା ନଥିଲେ ଦାୟିତ୍ୱବହୁଳ କର୍ତ୍ତବ୍ୟର ସମ୍ପାଦନ କେବେହେଲେ ଆକାଂକ୍ଷିତ ସମ୍ଭାବନାନୁଯାୟୀ ସୁଫଳଦାୟକ ହୁଏ ନାହିଁ । ବାହ୍ୟାଟୋପସମ୍ବଳିତ କେବଳ ବାଚନିକ 'ପଞ୍ଚଗବ୍ୟ' ଓ ନାମକୁମାତ୍ର ଅଷ୍ଟୋତ୍ତରଶତ ଗାୟତ୍ରୀ ସ୍ମରଣରେ ଦୋଷତ୍ରୁଟିର ପରିହାର ବା କଳୁଷ-କଳଙ୍କର ପ୍ରକ୍ଷାଳନ-ସମ୍ଭବପର ହୋଇନପାରେ । ମାଧ୍ୟମିକ ଶିକ୍ଷା ବୋର୍ଡ଼ର ଆଭ୍ୟନ୍ତରିକ ବ୍ୟବସ୍ଥାରେ ନିଶ୍ଚୟ କିଛି-ନା-କିଛି ବଡ଼ ଧରଣର ଖିଲାପ ରହିଥିବାରୁ, ବ୍ୟବସ୍ଥାପନାର ଦାୟିତ୍ୱରେ ଥିବା ବ୍ୟକ୍ତି ବା ବ୍ୟକ୍ତିବର୍ଗଙ୍କଠାରେ ଜ୍ଞାନାନୁଶୀଳନର ପରିପକ୍ୱତା ନଥିବାରୁ କିମ୍ବା ଦାୟିତ୍ୱବୋଧ ଓ କର୍ତ୍ତବ୍ୟଜ୍ଞାନର ଯଥାଯଥ ପ୍ରାୟୋଗିକ କୌଶଳ ବ୍ୟବସ୍ଥାପକଙ୍କୁ ଜଣାନଥିବାରୁ ବହୁ ସାଂଘାତିକ ବିଭ୍ରାଟ ଓ ଅବାଞ୍ଛିତ ବିଶୃଙ୍ଖଳାର ଉଦ୍ଭବ ହେଉଛି । ଭାତହାଣ୍ଡିରୁ ଏଠୁସେଠୁ ଗୋଟିଏ ଲେଖାଏଁ ଚିପାଯାଏ । ସେହି ନ୍ୟାୟରେ ପ୍ରମାଣସ୍ୱରୂପ ଗୋଟିଏ ଗୋଟିଏ ପ୍ରତ୍ୟକ୍ଷ ଦୃଷ୍ଟାନ୍ତ ଏଠାରେ ଦେଖାଇଦିଆଯାଉଛି ।

ଅଳ୍ପ କାଳ ଆଗେ ଜଣେ ପ୍ରତିବେଶୀ ଅଭିଭାବକ ହାତରେ ଖଣ୍ଡିଏ ବହି ଧରି ମୋ ନିକଟକୁ ଆସିଥିଲେ । ବହିଟି ଥିଲା 'ମାଧ୍ୟମିକ ଶିକ୍ଷା ବୋର୍ଡ଼, ଓଡ଼ିଶା' ଦ୍ୱାରା ମଞ୍ଜୁରିପ୍ରାପ୍ତ ଓ ୧୯୮୨ରେ ପ୍ରକାଶିତ ନବମ ଓ ଦଶମ ଶ୍ରେଣୀ ପାଇଁ ଉଦ୍ଦିଷ୍ଟ ଜାତୀୟକରଣ 'ସାହିତ୍ୟ' ପାଠ୍ୟପୁସ୍ତକ ।

ଶିକ୍ଷିତ ଅଭିଭାବକ ଜଣକ ନବମ ଶ୍ରେଣୀରେ ପଢୁଥିବା ତାଙ୍କ କନ୍ୟାକୁ 'ଖଦ୍ୟୋତିକା' (ପୃଷ୍ଠା ୭) କବିତାଗୁଚ୍ଛଟି ବୁଝାଇବାପାଇଁ ନିଜର ସୀମିତ ଜ୍ଞାନ ଯଥେଷ୍ଟ ନୁହେଁ ବୋଲି ଅନୁଭବ କରି ମୋ'ଠାରୁ ପ୍ରଥମେ ଭଲଭାବରେ ବୁଝିନେବାପାଇଁ ଆସିଥିଲେ । ସେହି ସୁଯୋଗରେହିଁ ମୁଁ ଆଲୋଚ୍ୟ ସଙ୍କଳନଟିରେ ବହୁ ଗୁରୁତର ଭ୍ରମପ୍ରମାଦ ରହିଥିବାର ନିର୍ଦ୍ଦିଷ୍ଟ ପ୍ରମାଣ ପାଇଲି । ପୃଷ୍ଠା ୯ରେ ଥିବା 'ସୂଚନା'ରେ କବିତାଗୁଚ୍ଛ-ଅନ୍ତର୍ଗତ ଶବ୍ଦ-

ମାନଙ୍କ ମଧ୍ୟରୁ ଦଶଟିମାତ୍ର କଠିନ ଶବ୍ଦର ଅର୍ଥ ପ୍ରଦତ୍ତ ହୋଇଛି; ସେଥିରୁ ତିନଟିର ଅର୍ଥ ଏହିପରି—

ନିରଳସ—ଅଳସଶୂନ୍ୟ, କର୍ମଠ

ପକ୍ଷ୍ମ—ପକ୍ଷ, ଡେଣା

ସ୍ତିମିତ—ନିର୍ବାପିତ, ଲିଭିଯାଇଥିବା, ଲୁପ୍ତ

ଯେକୌଣସି ବିଜ୍ଞ ବ୍ୟକ୍ତି ଏ ଅଜବ ଅଭିନବ ଅର୍ଥ ଦେଖି ଚମକିଉଠିବ, ମୁଁ ବି ଚମକି-ଉଠିଥିଲି । ପ୍ରଥମ ଶବ୍ଦର ଅର୍ଥରେ ଥିବା 'ଅଳସଶୂନ୍ୟ' ବ୍ୟାକରଣଦୋଷଦୁଷ୍ଟ, ଏହା ହୋଇଥାନ୍ତା 'ଆଳସ୍ୟଶୂନ୍ୟ', କାରଣ ସଂସ୍କୃତ 'ଅଳସ' ଶବ୍ଦଟି ବିଶେଷଣ—ବିଶେଷ୍ୟ ନୁହେଁ । ଦ୍ୱିତୀୟ ଓ ତୃତୀୟ ଶବ୍ଦର ଯେଉଁ ଅର୍ଥ ଦିଆଯାଇଛି, ତାହା ଅଜ୍ଞତାର ପରିଚାୟକ । 'ପକ୍ଷ୍ମ'ର ଅର୍ଥ ହେଉଛି 'ଆଖିପତାର ଲୋମ'—ପକ୍ଷ ବା ଡେଣା ନୁହେଁ । 'ସ୍ତିମିତ' ଅର୍ଥର 'ମିଞ୍ଜିମିଞ୍ଜି' (ଉଦାହରଣ—ସ୍ତିମିତ ଚକ୍ଷୁ, ସ୍ତିମିତ ନକ୍ଷତ୍ର, ସ୍ତିମିତ ପ୍ରଦୀପ ବା ଦୀପଶିଖା)—'ନିର୍ବାପିତ' ନୁହେଁ କି 'ଲୁପ୍ତ' ନୁହେଁ । ଅତି ସାଧାରଣ ଅକଲର କଥା, ପ୍ରଦୀପଟି ଯଦି ଲିଭିଯିବ ଅର୍ଥାତ୍ ମରିଯିବ, ସେ ଆଉ 'ସ୍ତିମିତ' କିପରି (କବି ବିଦ୍ୟୁତ୍‌ପ୍ରଭା ଏଠାରେ ପରି ଲେଖିଛନ୍ତି 'ସ୍ତିମିତ ପ୍ରଦୀପ ସ୍ତହେଁ'), ପୁଣି ତାର ବା 'ଶିଖା' ଆସିବ କାହୁଁ (କବି ସ୍ୱୟଂ ପରି ଏଠାରେ ଲେଖିଛନ୍ତି 'ଶିଖା ଶୂନ୍ୟେ ମିଳାଇଯାଏ') ?

'ସୂଚନା' ଅଂଶ ପରେ ସେହି ପୃଷ୍ଠା ୯ରେ ଥିବା 'ପ୍ରଶ୍ନ' ବିଭାଗ ଅନ୍ତର୍ଗତ ଦ୍ୱିତୀୟ ପ୍ରଶ୍ନଟି ହେଉଛି ଏହିପରି—

> "୨ । ନିରୁପମା, ବିହଗ, ଇନ୍ଦ୍ରଧନୁ ଓ ସରାଗ—ଏଗୁଡ଼ିକର ବ୍ୟାସବାକ୍ୟ ସହ ସମାସର ନାମ ଲେଖ ।"

ପ୍ରଶ୍ନକର୍ତ୍ତା 'ବିହଗ' ଶବ୍ଦଟିକୁ ଏହି ପ୍ରଶ୍ନର ଅନ୍ତର୍ଭୁକ୍ତ କରିବା ଦ୍ୱାରା ବ୍ୟାକରଣ ବିଧିସୂତ୍ରର ମସ୍ତକ ଚର୍ବଣ କରିଛନ୍ତି । ଏ ପ୍ରକାର ଅପପ୍ରଶ୍ନରୁ ସ୍ପଷ୍ଟ ପ୍ରତିଭାତ ହୁଏ ଯେ, ପ୍ରଶ୍ନକର୍ତ୍ତାଙ୍କୁ 'ସମାସ'ର ସଂଜ୍ଞା ଜମା ଜଣାନାହିଁ । ଯଦି ଜଣାଥାନ୍ତା, ତାହାହେଲେ ସେ କୃତ୍ ପ୍ରତ୍ୟୟନିଷ୍ପନ୍ନ କୃଦନ୍ତ ଶବ୍ଦ (ବିହାୟସ୍—ଗମ୍-ଅ) 'ବିହଗ'ର ବ୍ୟାସବାକ୍ୟ ଓ ସମାସର ନାମ ଲେଖିବାକୁ କହି ଏଡ଼େ ବଡ଼ ଅକ୍ଷମଣୀୟ ଭୁଲ୍ କରି ନଥାନ୍ତେ । କୃଦନ୍ତ ଶବ୍ଦର କ'ଣ କେବେହେଲେ ସମାସ ହୁଏ ? ସମାସ ନଥିଲେ ବ୍ୟାସବାକ୍ୟ ଆସିବ କାହୁଁ ?

ଶବ୍ଦର ସମାସ ନାହିଁ । ଯେଉଁ ଅକ୍ଷର ସମଷ୍ଟିର ନିର୍ଦ୍ଦିଷ୍ଟ ଅର୍ଥ ଥାଏ, ତାହା 'ଶବ୍ଦ' । ଏପ୍ରକାର କେତେଗୁଡ଼ିଏ ଶବ୍ଦ ସଂଯୋଜିତ ହୋଇ ଯଦି ମନର ଗୋଟିଏ ଭାବକୁ ପୂର୍ଣ୍ଣରୂପେ ପ୍ରକାଶ କରେ, ତାହାର ନାମ ହୁଏ 'ବାକ୍ୟ' ଏବଂ ଉକ୍ତ ବାକ୍ୟରେ ବ୍ୟବହୃତ ପ୍ରତ୍ୟେକ ଶବ୍ଦକୁ 'ପଦ' ବୋଲି ନାମିତ କରାଯାଏ । ବାକ୍ୟ ମଧ୍ୟରେ ଥିବା ପରସ୍ପର ସମ୍ବନ୍ଧବିଶିଷ୍ଟ ଦୁଇ ବା ତତୋଽଧିକ 'ପଦ' ମିଳିତ ହୋଇ ଏକ ପଦରେ ପରିଣତ ହେବା ପଦ୍ଧତିର

ନାମ 'ସମାସ' । "ଏହି ବୃକ୍ଷର ଶାଖା ପତ୍ର, ପୁଷ୍ପ ଓ ଫଳଦ୍ୱାରା ମଣ୍ଡିତ ହୋଇଛି" ଏହି ବାକ୍ୟଟିକୁ ସମାସଦ୍ୱାରା ସଂକ୍ଷେପିତ କରାଗଲେ ତାହା ହେବ "ଏହି ବୃକ୍ଷଶାଖା ପତ୍ରପୁଷ୍ପ-ଫଳମଣ୍ଡିତ ହୋଇଛି ।" ଏଠାରେ ଦେଖାଯିବ ଯେ, ବୃକ୍ଷ ସହିତ ଶାଖାର ସମ୍ବନ୍ଧ ଥିବାରୁ ଏବଂ ଶାଖା ସହିତ ପତ୍ର, ପୁଷ୍ପ ଓ ଫଳର ସମ୍ବନ୍ଧ ଥିବାରୁ ବାକ୍ୟର ଏହି ଦୁଇଟି ସ୍ଥଳରେ ପ୍ରଥମେ ସମାସ ହୋଇଛି । ବୃକ୍ଷର ଶାଖା = ବୃକ୍ଷଶାଖା ଏବଂ ପତ୍ର, ପୁଷ୍ପ ଓ ଫଳ = ପତ୍ରପୁଷ୍ପଫଳ । ତୃତୀୟତଃ ପତ୍ରପୁଷ୍ପଫଳଦ୍ୱାରା ମଣ୍ଡିତ = ପତ୍ରପୁଷ୍ପଫଳମଣ୍ଡିତ ନିଷ୍ପନ୍ନ ହୋଇଛି । ଏଠାରେ 'ବୃକ୍ଷର ଶାଖା', 'ପତ୍ର, ପୁଷ୍ପ ଓ ଫଳ' ଓ 'ପତ୍ରପୁଷ୍ପଫଳଦ୍ୱାରା ମଣ୍ଡିତ' ଏହି ତିନୋଟି 'ବ୍ୟାସବାକ୍ୟ' ବା 'ସମାସବାକ୍ୟ' । ଆଉ, 'ବୃକ୍ଷଶାଖା', 'ପତ୍ରପୁଷ୍ପଫଳ' ଓ 'ପତ୍ରପୁଷ୍ପଫଳମଣ୍ଡିତ' ଏ ତିନୋଟି 'ସମସ୍ତ ପଦ' । ଏହି ସଙ୍ଗରେ ବ୍ୟବହୃତ 'ସମସ୍ତ' ଶବ୍ଦଟିର ଅର୍ଥ 'ସମାସନିଷ୍ପନ୍ନ' ।

ବିଂଶ ଶତାବ୍ଦୀର ପ୍ରାରମ୍ଭରୁ ୧୯୬୭ ମସିହା ଅବଧି ଦୀର୍ଘକାଳ ଶିଶୁ ଶ୍ରେଣୀଠାରୁ ସପ୍ତମ ଓ ତଦୂର୍ଦ୍ଧ୍ୱ ଶ୍ରେଣୀ ପର୍ଯ୍ୟନ୍ତ ସକଳ ସ୍ତରରେ ପଠିତ ପ୍ରବୀଣ ଶିକ୍ଷାବିତ୍ ମଧୁସୂଦନ ରାଓଙ୍କ ପ୍ରଣୀତ ବର୍ଣ୍ଣବୋଧ ଶିଶୁବୋଧଠାରୁ ସାହିତ୍ୟ ପ୍ରସଙ୍ଗ ପ୍ରବନ୍ଧମାଳା ଯାଏ ଆରୋହି ପଦ୍ଧତିରେ ସଙ୍କଳିତ ସମସ୍ତ 'ସାହିତ୍ୟ' ପାଠ୍ୟପୁସ୍ତକ, ଏପରିକି ବିଭିନ୍ନ ଲେଖକଙ୍କ ପ୍ରଣୀତ ବ୍ୟାକରଣ, ଅଙ୍କ, ଇତିହାସ, ଭୂଗୋଳ, ବିଜ୍ଞାନ, ଜ୍ୟାମିତି, ସ୍ୱାସ୍ଥ୍ୟରକ୍ଷା ପ୍ରଭୃତି ଅନ୍ୟାନ୍ୟ ଯେତେ ଓଡ଼ିଆ ପାଠ୍ୟପୁସ୍ତକ, ସେ ସମସ୍ତର ଏକଚାଟିଆ ପ୍ରକାଶକ ଥିଲି ବିଦେଶୀ ମ୍ୟାକ୍‌ମିଲନ୍ କମ୍ପାନୀ । ସେତେବେଳେ କଲିକତା ମାଛୁଆବଜାରରେ ଅଧର କର୍ମକାରଙ୍କ ଦ୍ୱାରା ପ୍ରତିଷ୍ଠିତ 'ଅଧର ଟାଇପ୍ ଫାଉଣ୍ଡ୍ରି'ରେ ତିଆରି ହୋଇ ବାହାରୁଥିବା ମୁଦ୍ରଣୀସ୍ଥ ଓଡ଼ିଆ ଟାଇପ୍ ସେଟ୍ ଥିଲି ସବୁ ଦୃଷ୍ଟିରୁ ସର୍ବୋତ୍କୃଷ୍ଟ—ଖୁବ୍ ଦମ୍ଭ, ଦୀର୍ଘସ୍ଥାୟୀ, ଅଭଙ୍ଗଶୀଳ । ପ୍ରଚଳିତ ଓଡ଼ିଆ ଭାଷାରେ ଯେତେ ଯୁକ୍ତାକ୍ଷର ଓ ସଂଯୁକ୍ତାକ୍ଷର (ମାତ୍ରାଯୁକ୍ତ ଅକ୍ଷର, ଫଳାଯୁକ୍ତ ଅକ୍ଷର ରେଫ୍‌ଯୁକ୍ତ ଅକ୍ଷର) ଥିଲି, ସେ ସବୁଥିପାଇଁ ସ୍ୱତନ୍ତ୍ର ସ୍ୱତନ୍ତ୍ର ଟାଇପ୍ ନିର୍ମିତ ହୋଇଥିଲି । ତେଣୁ ମୁଦ୍ରଣବେଳେ ମାତ୍ରା, ଫଳା, ରେଫ୍, ହଳନ୍ତ ଆଦି ସ୍ଖଳିତ ବା ଭଗ୍ନ ହେବାର ଆଦୌ ଆଶଙ୍କା ନଥିଲି । ମୂଳ କଥା, 'ସାହିତ୍ୟ' ପାଠ୍ୟ-ପୁସ୍ତକମାନଙ୍କର କି ବିଷୟବସ୍ତୁ ଅଂଶ କି ପ୍ରଶ୍ନାଂଶ କୌଣସିଥିରେ ଗୋଟାଏ ହେଲେ ଭାଷାଗତ, ବ୍ୟାକରଣଗତ ବା ମୁଦ୍ରଣଗତ ଦୋଷତ୍ରୁଟି ପରିଲକ୍ଷିତ ହେଉ ନଥିଲି । ସାହିତ୍ୟେତର ଅନ୍ୟାନ୍ୟ ପାଠ୍ୟପୁସ୍ତକ ସମ୍ବନ୍ଧରେ ମଧ୍ୟ ଠିକ୍ ଏହି ମନ୍ତବ୍ୟ ପ୍ରଯୋଜ୍ୟ ।

ଆଲୋଚ୍ୟ କାଳସୀମାର ଶେଷଭାଗ ଆଡ଼କୁ ଦିହୁଡ଼ିଧାରୀ (torch-bearer) ସାର୍ଥକ ଓଡ଼ିଆ ପ୍ରକାଶକରୂପେ ପ୍ରତିଯୋଗିତା କ୍ଷେତ୍ରରେ ସର୍ବପ୍ରଥମେ ଅବତୀର୍ଣ୍ଣ ହୋଇଥିଲେ ନିମ୍ନ ପ୍ରାଥମିକ ଗଣିତ ପୁସ୍ତକର ଲେଖକ ପଣ୍ଡିତ ରତ୍ନାକର ଗର୍ଗବଡ଼ୁ (କଟକ ନର୍ମାଲ୍ ସ୍କୁଲ ସଂଲଗ୍ନ ଆଭ୍ୟାସିକ ମଧ୍ୟଇଂରାଜୀ ବିଦ୍ୟାଳୟର ସେକେଣ୍ଡ୍ ପଣ୍ଡିତ)—ମୁକୁର ପ୍ରେସର ସ୍ୱତ୍ୱାଧିକାରୀ ବିଦ୍ୟୋତ୍ସାହୀ ଜମିଦାର ବ୍ରଜସୁନ୍ଦର ଦାସଙ୍କ ପ୍ରୋତ୍ସାହନ ଓ ଆର୍ଥିକ ସାହାଯ୍ୟ

ସହଯୋଗରେ ଉଦ୍‌ବୁଦ୍ଧ ହୋଇ ଏବଂ ତାଙ୍କ ପରେ ଉଚ୍ଚ ପ୍ରାଥମିକ ନବବିଧାନ ଗଣିତର ଲେଖକ ଓ ପ୍ରକାଶକ ଖ୍ୟାତନାମା ଗାଣିତିକ ଦାଶରଥି ପାଣିଗ୍ରାହୀ । 'ସାହିତ୍ୟ' ବିଭାଗରେ ମ୍ୟାକ୍‌ମିଲନ୍ କମ୍ପାନୀ ସହିତ ଟକ୍‌କର ଦେବାପାଇଁ ଦୁଃସାହସ କରି ବିଜୟୀ ହୋଇଥିଲେ ସୁସାହିତ୍ୟିକ ବାଳକୃଷ୍ଣ କର, କେନ୍ଦ୍ରାପଡ଼ା ହାଇସ୍କୁଲର ଆସିଷ୍ଟାଣ୍ଟ ହେଡ୍‌ମାଷ୍ଟର । ତାଙ୍କ ପ୍ରଣୀତ ଓ ପ୍ରକାଶିତ ନୂଆପାଠ ୧ମ, ୨ୟ ଓ ୩ୟ ଭାଗ ଯଥାକ୍ରମେ ୧ମ, ୨ୟ ଓ ତୃତୀୟ ଶ୍ରେଣୀର ଏକକ ପାଠ୍ୟପୁସ୍ତକରୂପେ ବିହାର-ଓଡ଼ିଶା ଟେକ୍‌ସ୍ଟ ବୁକ୍ କମିଟିଦ୍ୱାରା ମଞ୍ଜୁରିପ୍ରାପ୍ତ ହୋଇ ମ୍ୟାକ୍‌ମିଲନ କମ୍ପାନୀର ସାର୍ବଭୌମତ୍ୱ ଉପରେ ପ୍ରଚଣ୍ଡ କୁଠାରାଘାତ କରିଥିଲା । ଏହାପରେ କଟକ ଟ୍ରେଡ଼ିଂ କମ୍ପାନୀର ସୁନାମଖ୍ୟାତ ପ୍ରତିଷ୍ଠାତା—ପରିଚାଳକ ପଣ୍ଡିତ ଆକୁଳ ମିଶ୍ର କାବ୍ୟତୀର୍ଥଙ୍କ ବ୍ୟାବସାୟିକ ଦୃଷ୍ଟିଭଙ୍ଗୀ ନୂତନ ମୋଡ଼ ନେଇଥିଲା । ସେ ରାୟବାହାଦୁର ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଲିଖିତ ସୁକୁମାର ପାଠ (ନିମ୍ନ ପ୍ରାଥମିକ) ଓ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ପ୍ରଣୀତ ସାହିତ୍ୟ ଶିକ୍ଷା (ଉଚ୍ଚ ପ୍ରାଥମିକ) ପୁସ୍ତକଦ୍ୱୟ ପ୍ରକାଶ କରିବାକୁ ସାହସୀ ହୋଇଥିଲେ । ଏ ଦୁଇଟିଯାକ ପାଠ୍ୟପୁସ୍ତକରୂପେ ମଞ୍ଜୁରି ଲାଭ କରିଥିଲା । ଏଣିକି ପ୍ରକାଶକମାନଙ୍କ ପାଇଁ ମାହାର ଖୋଲିଗଲା ।

ସୁଖର କଥା, ମ୍ୟାକ୍‌ମିଲନ୍ କମ୍ପାନୀ ପ୍ରକାଶିତ ପାଠ୍ୟପୁସ୍ତକାବଳି ସଦୃଶ ଓଡ଼ିଆ ଲେଖକ ତଥା ପ୍ରକାଶକଙ୍କ ସାହସିକ ଉଦ୍ୟମରେ ପ୍ରଣୀତ ଓ ପ୍ରକାଶିତ ଉର୍ଦ୍ଧ୍ୱବର୍ଣ୍ଣିତ ସମସ୍ତ ଗଣିତ ଓ ସାହିତ୍ୟ ପୁସ୍ତକ ମଧ୍ୟ ଅତି ଦକ୍ଷତା ଓ ସାବଧାନତା ସହକାରେ ଲିଖିତ ଓ ମୁଦ୍ରିତ ହୋଇଥିବା ହେତୁ ସମ୍ପୂର୍ଣ୍ଣ ବିଶୁଦ୍ଧ, ନିର୍ଦ୍ଦୋଷ ଓ ମୁଦ୍ରଣପ୍ରମାଦବିରହିତ ହୋଇପାରିଥିଲା । ବୋଲିବା ବାହୁଲ୍ୟ ଯେ, ଏହି ପାଠ୍ୟପୁସ୍ତକଗୁଡ଼ିକର ମୁଦ୍ରଣରେ କେବଳ 'ଅଧର ଟାଇପ୍ ଫାଉଣ୍ଡ୍ରି'ର ଓଡ଼ିଆ ଟାଇପ୍‌ମାନ ହିଁ ବ୍ୟବହୃତ ହୋଇଥିଲା । ମନୋଜ୍ଞ ଭାଷାଭଙ୍ଗୀ ଓ ମନସ୍ତାତ୍ତ୍ୱିକ ଉପସ୍ଥାପନାର ଆକର୍ଷଣୀୟ ବିଶେଷତ୍ୱ ଯୋଗୁଁ ସାହିତ୍ୟ ପାଠ୍ୟାନ୍ତର୍ଗତ ବିଷୟବସ୍ତୁର ପ୍ରତ୍ୟେକ ଛନ୍ଦ ବେଦବାକ୍ୟବତ୍ ସତ୍ୟ ଓ ଅଭ୍ରାନ୍ତ ରୂପେ ଆଦୃତ ଓ ଗୃହୀତ ହେଉଥିଲା । ମାତ୍ର ଦୁଃଖର କଥା, ଭାଷାଶୁଦ୍ଧି-ଅନୁଶୀଳନର ଅସଦ୍‌ଭାବ ଯୋଗୁଁ ଶିକ୍ଷାର ମାନ ଦିନୁଦିନ ହ୍ରାସମାନ ହେଉଥିବାରୁ ଏବେ ପାଠ୍ୟପୁସ୍ତକମାନଙ୍କରେ ଭରଣ ଭରଣ ଭ୍ରମପ୍ରମାଦ ଖଣି ପଡ଼ିବାର ଦେଖାଯାଏ । ଶିକ୍ଷାକ୍ଷେତ୍ରର ନିର୍ମଳ ପରିବେଶ ପ୍ରଦୂଷିତ ହୋଇଯାଇଥିବାରୁ ହିଁ ମାଧ୍ୟମିକ ଶିକ୍ଷା ବୋର୍ଡ଼ ମୁଣ୍ଡକୁ ଦୋଷ-ଦୂଷଣର ବୋଝ ମାଡ଼ିଆସିଛି । ଏଭଳି ଅବସ୍ଥାରେ ପିଲାଏ ପ୍ରକୃତ ଜ୍ଞାନ ଆହରଣ କରିବେ ନା ଅଜ୍ଞାନ ଅର୍ଜନ କରି 'ପ୍ରମାଦ ଅଭିଧାନ' ସୃଷ୍ଟି କରିବେ ?

ଶିକ୍ଷାବୋର୍ଡ଼ସମ୍ପର୍କୀୟ ସମୀକ୍ଷା ଏତିକିରେ ମୁଣ୍ଡି ମାରିଦେବାକୁ ବସିଲାବେଳେ ଦୁର୍ଭାଗ୍ୟବଶତଃ ୧୭-୫-୧୯୮୭ର ଦୈନିକ 'ସମାଜ' (ପୃଷ୍ଠା ୭) ଆଉ ଗୋଟିଏ ସାଙ୍ଘାତିକ ସଦ୍ୟ ସମ୍ବାଦ ହାତରେ ଆଣି ପହଞ୍ଚାଇଦେଲା । ଉକ୍ତ ସମ୍ବାଦରେ ପରିବେଷିତ ବିବୃତିଟି ସ୍ୱୟଂସମ୍ପୂର୍ଣ୍ଣ ଓ ଆତ୍ମବ୍ୟାଖ୍ୟେୟ ହୋଇଥିବାରୁ କୌଣସି ଟୀକାଟିପ୍‌ପଣୀର ଅପେକ୍ଷା

ରଖେ ନାହିଁ । ତେଣୁ 'ସମାଜ' ପ୍ରକାଶିତ ସମଗ୍ର ବିବୃତିଟି ଏଠାରେ ଅବିକଳ ଆକ୍ଷରିକ-ଭାବରେ ଉଦ୍ଧାର କରିଦେବାହିଁ ସମୀଚୀନ ହେବ :

## ପ୍ରଶ୍ନପତ୍ରଟିଏ ବି ନିର୍ଭୁଲ ହେଉନାହିଁ

କଟକ, ତା ୧୧।୫—ଓଡ଼ିଶାରେ ଶିକ୍ଷା ଓ ପରୀକ୍ଷାର ମାନ ଯେ କେତେ ତଳକୁ ଗଲଣି, ତାହା ଭାବିଲେ ଲଜ୍ଜାରେ ମୁଣ୍ଡ ତଳକୁ ହୋଇଯାଏ । ଏବେ ମାଧ୍ୟମିକ ଶିକ୍ଷା ପରିଷଦର ପ୍ରଶ୍ନପତ୍ରଟିଏ ମଧ୍ୟ ନିର୍ଭୁଲଭାବରେ ପ୍ରସ୍ତୁତ ହୋଇପାରୁ ନାହିଁ । ଚଳିତ ସପ୍ତମ ଶ୍ରେଣୀର 'ସାହିତ୍ୟ' ପ୍ରଶ୍ନପତ୍ରରେ ବହୁ ତଥ୍ୟଗତ ତଥା ମୁଦ୍ରଣଗତ ତ୍ରୁଟି ରହିଛି, ଯଥା—

୧ । ତୃତୀୟ ପ୍ରଶ୍ନ (ଘ)—'ବୁଦ୍ଧଦେବଙ୍କର ପିତା ହଂସଟିକୁ ଆକାଶକୁ ଛାଡ଼ିଦେଇଥିଲେ କାହିଁକି ?'

କିନ୍ତୁ ବହିରେ ଅଛି ଯେ, ବୁଦ୍ଧଦେବ ନିଜେ ହଂସଟିକୁ ଉଡ଼ାଇଦେଇଥିଲେ ।

୨ । ତୃତୀୟ ପ୍ରଶ୍ନ (ଙ)—'ବନ୍ଦୀର ଆତ୍ମକଥା କବିତାରେ ଗୋପବନ୍ଧୁ ଭଗବାନଙ୍କ ନିକଟରେ ନିଜପାଇଁ କି ଆଶୀର୍ବାଦ ଭିକ୍ଷା କରିଥିଲେ ?'

ଏଭଳି ପ୍ରଶ୍ନ ଗୋପବନ୍ଧୁଙ୍କ ପ୍ରତି ଅବଜ୍ଞା ବ୍ୟତୀତ ଆଉ କିଛି ନୁହେଁ ।

୩ । ସପ୍ତମ ପ୍ରଶ୍ନ (କ)—'ତୁମେ କି ଦୋଷ କରିଛ ଯେ ତୁମକୁ କ୍ଷମା କରିବ ?'

ଏହା ତ ପ୍ରତ୍ୟକ୍ଷୋକ୍ତି, ଏହାକୁ ପ୍ରତ୍ୟକ୍ଷୋକ୍ତିରେ ପରିଣତ କରିବାକୁ କୁହାଯାଇଛି କିପରି ?

୪ । ସେହିପରି, ସପ୍ତମ ପ୍ରଶ୍ନ (ଖ) ରେ ପରୋକ୍ଷୋକ୍ତିକୁ ପରୋକ୍ଷୋକ୍ତିରେ ପରିଣତ କରିବାକୁ କୁହାଯାଇଛି ।

୫ । ପାଠ୍ୟ ବହିରେ ଅଛି 'ତୃଣତରୁ ତଳେ ନୀରବ ମଉନେ'; କିନ୍ତୁ ପ୍ରଶ୍ନରେ ଛପା ହୋଇଛି 'ତୃଣ ତରୁ ତଳେ ନୀରବ ସଜନେ' ।

୬ । ପାଠ୍ୟ ବହିରେ ଅଛି 'ଭିକ୍ଷା କରିବା ଯେପରି ଗୋଟିଏ ହୀନ ବୃତ୍ତି'; କିନ୍ତୁ ପ୍ରଶ୍ନରେ ଅଛି 'ଭିକ୍ଷା କରିବା ଯେପରି ଗୋଟିଏ ବୃତ୍ତି' ।

୭ । ମୁଦ୍ରଣତ୍ରୁଟି ଅନେକ, ଯଥା—

'ନିବାସ' ସ୍ଥାନରେ 'ଶିବାସ'

'ପାଳିବା' ସ୍ଥାନରେ 'ପାଳିକା'

'ପୁଷ୍କର' ସ୍ଥାନରେ 'ପୁଷ୍ଟିର'

'ଲେଖ' ସ୍ଥାନରେ 'ଲେଖ'

.........ଇତ୍ୟାଦି

ପରୀକ୍ଷା ନାମରେ ଏହା ଖେଳ ନୁହେଁ ତ ଆଉ କ'ଣ ? (ନି. ପ୍ର.)

ପ୍ରଶ୍ନପତ୍ରରେ ଏହି ପ୍ରଶ୍ନପତ୍ର ପଢ଼ି ପରୀକ୍ଷାର୍ଥୀମାନେ ଆଖୁବାଡ଼ିରେ ପଶି ବାଟ ନପାଇ ଭୂଆଁ ବୁଲିବେ ସିନା, ଠିକ୍ ଉତ୍ତର ଦେଇପାରିବେ କାହିଁ ? ଏଭଳି ପ୍ରଶ୍ନପତ୍ର ପ୍ରସ୍ତୁତର ନିର୍ଲଜ୍ଜ ପ୍ରହସନ ଆଉ କେତେ କାଳ ଦେପରବାୟ ଚାଲିବ ?

ଉପସଂହାରରେ ମନ୍ତବ୍ୟରେ ବିନା ଦ୍ୱିଧାରେ ଚେତାଇ ଦିଆଯାଇପାରେ ଯେ, ଏହି ଦୁରପନେୟ ଅସ୍ୱାସ୍ଥ୍ୟକର ପରିସ୍ଥିତିର ମୁକାବିଲା ପାଇଁ ଶିକ୍ଷାବୋର୍ଡ଼ ଆଶୁ 'ଶୁଶ୍ରୁତ' ନିର୍ଦ୍ଦେଶିତ ପଦ୍ଧତିରେ ଅସ୍ତ୍ରୋପଚାର ବ୍ୟବସ୍ଥା ଗ୍ରହଣ ନକଲେ ଏଣିକି ଅବସ୍ଥା ଅସମ୍ଭାଳ ହୋଇ ଆୟତ୍ତର ବାହାରକୁ ଚାଲିଯିବ । କ୍ରମବର୍ଦ୍ଧମାନ ବଳିଗାହିନ ବ୍ୟକ୍ତିସ୍ୱାଧୀନତା ବନାମ ଯଥେଚ୍ଛାଚାରିତା ବ୍ୟଷ୍ଟିରୁ ସମଷ୍ଟିକୁ ଲମ୍ପପ୍ରଦାନ କଲେ ବ୍ୟାପକ ଉଚ୍ଛୃଙ୍ଖଳତା କ୍ରମଶଃ ଅରାଜକତାର ନଗ୍ନ ରୂପ ସୃଷ୍ଟି କରିବା ବିଚିତ୍ର ନୁହେଁ ।

## ୧୩ । ବେସରକାରୀ କର୍ମକ୍ଷେତ୍ର

### ୧ । କଟକ ଟ୍ରେଡ଼ିଂ କମ୍ପାନୀ—

ବାଲେଶ୍ୱର ଜିଲା ସ୍କୁଲରେ ସରକାରୀ ଶିକ୍ଷକଜୀବନ ଗ୍ରହଣ କରିବା ପାଇଁ ଯେଉଁ ଉଦଗ୍ର ବାସନା ଥିଲା, ତାହା ବୋଉର ନିଷେଧାଦେଶରେ ନିର୍ବାଣପ୍ରାପ୍ତ ହେଲା । ତାହାର ନିର୍ଦ୍ଦେଶାନୁଯାୟୀ ବଦଳିସ୍ଥାନ ବେସରକାରୀ ଚାକିରିଟିଏ କଟକରେ ଖୋଜାଖୋଜି କରିବା ଉଦ୍ଦେଶ୍ୟରେ ନଗରାଭିମୁଖୀ ହେଲି ଏବଂ ନର୍ମାଲ୍ ସ୍କୁଲର ଅଧ୍ୟକ୍ଷଙ୍କୁ ବୋଉର ଏକାନ୍ତ ଇଚ୍ଛାଟି ଜଣାଇ ନିଯୁକ୍ତିପତ୍ରଖଣ୍ଡି ଉଠାଇ ଦେଲି । କଟକରେ ନିଯୁକ୍ତିର ସୁଯୋଗ ଆସିବା ପର୍ଯ୍ୟନ୍ତ ହଷ୍ଟେଲ୍‌ର କମନ୍ ରୁମ୍‌ରେ ଅବସ୍ଥାନ କରିବାକୁ ମତେ ସେ ଅବାଧ ସୁବିଧା ଦେଲେ । ଏହା ୧୯୨୫ ମସିହା ମାର୍ଚ୍ଚ ମାସର କଥା ।

ଅପ୍ରେଲ୍ ମାସରେ ବୋଉର ଇଚ୍ଛା ସହିତ ଗୋଟାପଣେ ଖାପ ଖାଇଲା ଭଳି ଗୋଟାଏ ମୋ ମନଲାଖି ଚାକିରିର ପ୍ରସ୍ତାବ ଭେ-ଦଇବା ଆସି ପହଞ୍ଚିଗଲା । ସେତେବେଳେ ବାଲୁବଜାରରେ ଅବସ୍ଥାପିତ 'କଟକ ଟ୍ରେଡ଼ିଂ କମ୍ପାନୀ' କଟକ ସହରର ତଥା ଓଡ଼ିଶାର ବୃହତ୍ତମ ପୁସ୍ତକବିକ୍ରୟ ଦୋକାନ ଓ ଅପ୍ରତିଦ୍ୱନ୍ଦ୍ୱୀ ପ୍ରକାଶନ ସଂସ୍ଥାରୂପେ ସୁଖ୍ୟାତି ଅର୍ଜନ କରିଥାଏ । ତାହାର ଅଭ୍ୟୁଦୟ ଫଳରେ ପୂର୍ବରୁ ଏକଚାଟିଆ ପଡ଼ାବହି ବେପାର କରିଆସୁଥିବା ବଙ୍ଗାଳୀମାନଙ୍କ ପୁସ୍ତକ ଦୋକାନସବୁ ପୁରାପୁରି ମୂଳପୋଛ ହୋଇଯାଇଥାଏ । ନୂଆ ହୋଇ ଆଉ ଯେଉଁ କେତୋଟି ଓଡ଼ିଆ ବହିଦୋକାନ ମୁଣ୍ଡ ଟେକିଥାଏ, ସେଗୁଡ଼ିକ ହେଲା—ପଣ୍ଡିତ ରତ୍ନାକର ଗର୍ଗବଡ଼ୁଙ୍କ ରାଧାରମଣ ପୁସ୍ତକାଳୟ, ପଣ୍ଡିତ ନରସିଂହ ମିଶ୍ର କାବ୍ୟତୀର୍ଥଙ୍କ ପୁସ୍ତକାଳୟ, ମନମୋହନ ପୁସ୍ତକାଳୟ, ଅରୁଣୋଦୟ ପୁସ୍ତକାଳୟ ।

ଏଗୁଡ଼ିକ ଛଡ଼ା ବ୍ରହ୍ମପୁର ସହରରେ ସଦ୍ୟ ଆରମ୍ଭ ହୋଇଥିବା ଷ୍ଟୁଡେଣ୍ଟ୍‌ସ ଷ୍ଟୋର୍ ଓ ଗଞ୍ଜାମ ଷ୍ଟୋର୍ । ଟ୍ରେଡ଼ିଂ କମ୍ପାନୀର ମେନେଜର ଓ ସର୍ବମୟ କର୍ତ୍ତା ଥିଆନ୍ତି ଖଣ୍ଡସାହି ଗ୍ରାମର ପଣ୍ଡିତ ଆକୁଳ ମିଶ୍ର କାବ୍ୟତୀର୍ଥ । ସେ ରହୁଥାନ୍ତି 'ରାମକୃଷ୍ଣ କଲେଜ'ର ଛାତ୍ରାବାସରେ—ତାର ତତ୍ତ୍ୱାବଧାୟକରୂପେ । ସେତେବେଳେ ପଣ୍ଡିତ ମହାଶୟ ଟ୍ରେଡ଼ିଂ କମ୍ପାନୀର ପ୍ରକାଶନ ବିଭାଗର ଦାୟିତ୍ୱ ସମ୍ଭାଳିବା ଭଳି ଜଣେ ଉପଯୁକ୍ତ ବିଶ୍ୱାସୀ ବ୍ୟକ୍ତି ଖୋଜି ପାଉ ନଥିଲେ । ତାଙ୍କ ବଡ଼ଭଉଣୀ ଆମ ଗ୍ରାମର ଏକ ସ୍ୱଚ୍ଛଳ ପରିବାରରେ ବିବାହ କରିଥିଲେ । ସେହି ଭଉଣୀ ଆକୁଳଙ୍କୁ ନିଜ ପାଖରେ ରଖି ଗ୍ରାମ ସରକାରୀ ସାହାଯ୍ୟପ୍ରାପ୍ତ ସଂସ୍କୃତ ଟୋଲ୍‌ରେ ପଢ଼ାଇ କାବ୍ୟୋପାଧିକ ପଣ୍ଡିତରେ ପରିଣତ କରାଇଥିଲେ । ମୋ ବୋଉ ସେହି ଖଣ୍ଡସାହି ଗ୍ରାମର ଝିଅ ହୋଇଥିବାରୁ ପଣ୍ଡିତ ଆକୁଳ ମିଶ୍ରଙ୍କୁ ମୋର ସବୁ ହାଲ ଅବଗତ ଥିଲା । ମୁଁ ସରକାରୀ ଚାକିରିକୁ ପ୍ରତ୍ୟାଖ୍ୟାନ କରି ନର୍ମାଲ୍ ସ୍କୁଲ ହଷ୍ଟେଲରେ ଅବସ୍ଥାନପୂର୍ବକ କଟକରେ ସବୁଦିନେ ରହିହେବା ଭଳିଆ ଏକ ଚାକିରିର ଅନ୍ୱେଷଣରେ ଥିବା କଥା ସେ ଶୁଣିବାକୁ ପାଇଲେ ।

ଏବେ ତାଙ୍କ ଅଭିପ୍ସା ପୂରଣପାଇଁ ସୁବର୍ଣ୍ଣ ସୁଯୋଗ ଜୁଟିଗଲା । ସେ ରାମକୃଷ୍ଣ-ପରମହଂସ-ଭକ୍ତ ବନ୍ଧୁ କୃଷ୍ଣଚନ୍ଦ୍ର ସେନଗୁପ୍ତଙ୍କ ସହ ନର୍ମାଲ୍ ସ୍କୁଲ ଛାତ୍ରାବାସର ଅଧୀକ୍ଷକ ପଣ୍ଡିତ କୁଳମଣି ଦାଶ କାବ୍ୟତୀର୍ଥଙ୍କ ନିକଟକୁ ଆସିଲେ । ମତେ ତାଙ୍କ ପ୍ରକାଶନ ବିଭାଗର ପରିଚାଳକରୂପେ ନିଯୁକ୍ତ ଦେବାପାଇଁ ଏକାନ୍ତ ଲାଳାୟିତ ବୋଲି ଖୋଲିଖୋଲି ପ୍ରକାଶ କଲେ । ପ୍ରସ୍ତାବଟି ଅଧକ୍ଷ ଦାଶରଥି ପାଣିଗ୍ରାହୀଙ୍କର ଅନୁମୋଦନ ମଧ୍ୟ ଲଭିକଲା । ତା'ପରେ ମତେ କମନ୍ ରୁମ୍‌ରୁ ଡକେଇନେଇ ସେମାନେ ଉକ୍ତ ସାଧୁ ପ୍ରସ୍ତାବଟି ଜଣାଇଲେ । ମୋର ବିଶେଷ କିଛି ବିଚାରିବାର ନଥିଲା—ବିନା ଦ୍ୱିଧାରେ ତହିଁରେ ସମ୍ମତି ଦେଲି । ମାସିକାନା ଛୁଡ଼ିଲା ପଚିଶଟଙ୍କା । ସରକାରୀ ଦପ୍ତରରେ ମଧ୍ୟ ମାସିକ ଗ୍ରଢଆ ଥିଲା ସେଇତା । ଏହିରୂପେ ସ୍କୁଲ ବିଭାଗୀୟ 'ଟ୍ରେନିଂ' ଶିକ୍ଷା ମୋର ଆଗଭର ହେଲା 'ଟ୍ରେଡ଼ିଂ' ଦୀକ୍ଷା ଗ୍ରହଣ କରିବାକୁ । ମୁଁ ଏ ଯେଉଁ ଲାଇନ୍ ଧରିଲି, ଏଥିରେ ଜୀବନ ଗଢ଼ିବାର ରାସ୍ତା ପ୍ରଶସ୍ତ ଓ ବହୁମୁଖୀ, ଯାହାର ଆଶା ଅବଧାରୀ ନୌକରିରେ ସୁଦୂରପରାହତ । ଅଧିକନ୍ତୁ ଏଥିରେ ବାରମାସି କଟକରେ ରହିବାର ସର୍ବୋଚ୍ଚ ସୁଖସୁବିଧା ଅଛି ।

ଟ୍ରେଡ଼ିଂ କମ୍ପାନୀ ପୁସ୍ତକଦୋକାନ ସମ୍ମୁଖସ୍ଥ ଏକ ସ୍ୱତନ୍ତ୍ର ଗୃହ ପ୍ରକାଶନ ବିଭାଗର କାର୍ଯ୍ୟାଳୟପାଇଁ ଭଡ଼ା ନିଆଯାଇଥାଏ । ନିର୍ଦ୍ଧାରିତ ୧-୫-୧୯୬୫ ଦିନ ସେହିଠାରେ ମୁଁ କାର୍ଯ୍ୟଭାର ମୁଣ୍ଡେଇଲି । ବୋଲହାକ ତାମିଲ କରିବାଲାଗି ମୋ ପାଖରେ ଜଣେ ବୟସ୍କ ଚାକର ଖଞ୍ଜାହେଲା ।

### (କ) ପକେଟ୍ ଓଡ଼ିଆ ଅଭିଧାନ—

ମୁଁ ଦାୟିତ୍ୱର ଆସନ ଗ୍ରହଣ କରିବା ସଙ୍ଗେ ସଙ୍ଗେ ହିଁ ମେନେଜର ଆକୁଳ ମିଶ୍ର ପଣ୍ଡିତ ମୃତ୍ୟୁଞ୍ଜୟ ରଥ କାବ୍ୟତୀର୍ଥଙ୍କ ସଙ୍କଳିତ 'ପକେଟ ଓଡ଼ିଆ ଅଭିଧାନ'ର ମୁଦ୍ରିତ ହୋଇ-

ସାରିଥିବା ପ୍ରଥମ ଫର୍ମାର ପୃଷ୍ଠାତକ ମୋ ହାତକୁ ବଢ଼ାଇଦେଇ କହିଲେ, "ଏତକ ପଢ଼ିଯାଅ; ଯଦି କେଉଁଠି କିଛି ଭ୍ରମ ପ୍ରମାଦ ପାଇବ, ତାକୁ ପେନ୍‌ସିଲ୍‌ରେ ସଂଶୋଧନ କରିଦେବ ।"

ଅଧଘଣ୍ଟା ପରେ ମେନେଜର ପୁଣି ଆସିଲେ । ମୁଁ ଛପାପୃଷ୍ଠା ବତିଶଟିଯାକ ତନ୍ନ ତନ୍ନ ଯାଞ୍ଚ କରି ଚଉଦଟି ଜାଗାରେ ସଂଶୋଧନ କରିଦେଇଥାଏଁ । ତାହା ଦେଖି ସେ ବୋଧହୁଏ ମୋ ଅଧିଗତ ଜ୍ଞାନର ଉଚ୍ଚ କେତେ ପୋତା କେତେ କଳନା କରିନେଲେ । କହିଲେ, "ଏଣିକି ଏ ଅଭିଧାନର ସମସ୍ତ ପ୍ରୁଫ୍ ତୁମେ ହିଁ ଦେଖିବ । ଏହାର ସଙ୍କଳନ କାର୍ଯ୍ୟ ଶେଷ ହୋଇନାହିଁ । ମୃତ୍ୟୁଞ୍ଜୟବାବୁ ପ୍ରାୟ ଦୁଇତୃତୀୟାଂଶ ଲେଖା ଶେଷ କରୁଥିବା ଅବସ୍ଥାରେ ମୃତ୍ୟୁମୁଖରେ ପତିତ ହେଲେ । ଅବଶିଷ୍ଟ ଅଂଶତକ ତାଙ୍କର ନିକଟତମ ବନ୍ଧୁ (ଶାଳକ) ବାଞ୍ଛାନିଧି ମିଶ୍ର (ବଡ଼ଚଣା ମଧ୍ୟଇଂରାଜୀ ବିଦ୍ୟାଳୟର ପ୍ରଧାନଶିକ୍ଷକ) ପୂରଣ କରିବାର ଭାର ନେଇଛନ୍ତି । ତାଙ୍କ ଲେଖା ଅଂଶତକର ପାଣ୍ଡୁଲିପିକୁ ତୁମେ ଗମ୍ଭୀରତର ଧ୍ୟାନର ସହିତ ଯାଞ୍ଚ କରିବ ଏବଂ ଆବଶ୍ୟକ ସ୍ଥଳମାନଙ୍କରେ ସମାର୍ଜନ-ସଂଯୋଜନ-ପରିବର୍ତ୍ତନାଦି କରିସାରିଲା ପରେ ଯାଇ କମ୍ପୋଜ ପାଇଁ 'ସାହିତ୍ୟ ପ୍ରେସ୍'କୁ ଦେବ ।"

ଏ ଗୁରୁତର ଦାୟିତ୍ୱ କଥା ଶୁଣୁଥିବାବେଳେ ମୋ ହଲକ ଶୁଖିଯାଉଥିବା ପରି ଅନୁଭୂତ ହୋଇଥିଲା । ବାହ୍ୟତଃ କିନ୍ତୁ ତାର କୌଣସି ସୂଚନା ମୁଁ ଦେଇନଥିଲି । ପ୍ରୁଫ୍ ସଂଶୋଧନ ବିଦ୍ୟାଭଳି କଠିନତର ବିଜ୍ଞାନର ଅସ୍ମାରମ୍ଭ ଧାରଣା ସୁଦ୍ଧା ସେପର୍ଯ୍ୟନ୍ତ ଗଜୁରି ନଥିଲା ମୋର—ଭୁଲ୍ କାଟିବା ପଦ୍ଧତିର କାଇଦା କଟକଣା ଆୟତ୍ତ କରିବା ତ ଦୂରର କଥା । 'ଉତ୍କଳ ସାହିତ୍ୟ ପ୍ରେସ୍'ରେ ଦୁଇ ଚାରିଥର ପ୍ରୁଫ୍-କଟା କାମ ଉପରେ ମୋର ନଜର ପଡ଼ିଥିଲା ପୂର୍ବରୁ । ସେତିକମାତ୍ରକୁ ସାନ୍ତ୍ୱନାର ସମ୍ବଳ କରି ସେ-ଦିନ ମତେ 'ଓଳିଆରୁ ପଡ଼ି ଗଳା' ହେବାକୁ ପଡ଼ିଥିଲା । ସେହି ମୁଦ୍ରିତ ଡବଲ୍ କ୍ରାଉନ୍ ବତିଶ ପେଜ ଫର୍ମାଟିର ବତିଶ ପୃଷ୍ଠାଯାକର ପ୍ରୁଫ୍ ସାତିଶୟ ଆସ୍ବାଦ ସହକାରେ ଠିକନଖି ଦେଖି ଯେତେବେଳେ ଶେଷ କରିଦେଲି, ଗୋଟାଏ ଅଜେୟ ଗଡ଼କୁ ଜୟ କଲାପରି ମତେ ବୋଧହୋଇଥିଲା । ଏହାପରେ ମୋ ମନରୁ କୋକୁଆ ଭୂତ ଛାଡ଼ିଗଲା—ଅମିତ ସାହସ ଓ ଦମ୍ଭରେ ବଳୀୟାନ୍ ହୋଇଗଲି ମୁଁ । ଏହି ଠିକ ଅଭିଧାନଟିର ନାମକରଣ କରିଥିଲେ ଉତ୍କଳ ସାହିତ୍ୟ-ସମ୍ପାଦକ ବିଶ୍ୱନାଥ କର ।

ସେତେବେଳେ ବହିଛପା କାଗଜ ରିମ୍‌କର ଦାମ୍ ଥାଏ ଡବଲ୍ କ୍ରାଉନ୍ ସାଢ଼େ ତିନି-ଟଙ୍କାରୁ ସାଢ଼େ ଚାରିଟଙ୍କା ମଧ୍ୟରେ ଏବଂ ମୁଦ୍ରଣ ଖର୍ଚ୍ଚ ପଡ଼ୁଥାଏ ଫର୍ମାକୁ ସାତଟଙ୍କା ବା ସାଢ଼େ ସାତଟଙ୍କା । ଗ୍ରେଟ ଟାଇପ୍ (ସ୍ମଲ୍ ପାଇକା)ରେ ଛପା ହେଉଥିବା 'ପକେଟ ଓଡ଼ିଆ ଅଭିଧାନ'ର ପ୍ରୁଫ୍‌ଦେଖା ଅଧିକତର କଷ୍ଟକର, ଜଟିଳ ଓ ଜ୍ଞାନସାପେକ୍ଷ ହୋଇଥିବାରୁ, ବିଶେଷତଃ ଏହା ତୀକ୍ଷ୍ଣତର ଦୃଷ୍ଟିଶକ୍ତି ଆବଶ୍ୟକ କରୁଥିବାରୁ ଫର୍ମା ପିଚ୍ଛା ଚାରିଅଣା ଲେଖାଏଁ ପାରିଶ୍ରମିକ ଦେବେ ବୋଲି କଲେଜଶିକ୍ଷାପ୍ରାପ୍ତ ଭକ୍ତକାବ୍ୟପ୍ରେମୀ ମେଧାବୀ

ବଂଶୀଧର ମିଶ୍ରଙ୍କ ସହିତ ମେନେଜର ଅକୂଳ ମିଶ୍ର ଚୁକ୍ତି କରିଥିଲେ । ଏବେ ସେ ଚୁକ୍ତିର ଅବସାନ ଘଟିଲା । ଭବିଷ୍ୟତରେ ଯାବତୀୟ ପ୍ରୁଫ୍‌ଦେଖା କାମ ଏକା ମୋ'ଦ୍ୱାରା ତୁଟିଯିବ ଏବଂ ସେ-ବାବଦ ବହୁତ ଟଙ୍କା କମ୍ପାନୀର ରହିଯିବ ବୋଲି ମନେ ମନେ ଭାବି ବ୍ୟାପାର-ଚତୁର ମିଶ୍ର ଆପଣେ ଖୁବ୍ ଆତ୍ମପ୍ରସାଦ ଅନୁଭବ କଲେ ।

ଡିସେମ୍ବର ପର୍ଯ୍ୟନ୍ତ କାମ ହାଲୁକା ଜଣାଗଲା; ତେଣୁ ସେହି ସମୟ ମଧ୍ୟରେ 'ମହାଭାରତ କଥା' ୧ମ ଓ ୨ୟ ଭାଗ ଏହି ବହି ଦିଓଟି ଲେଖିପାରିଲି । ଉଭୟ ପୁସ୍ତକ ଟ୍ରେଡ଼ିଂ କମ୍ପାନୀ-ଦ୍ୱାରା ପରବର୍ଷ ପ୍ରକାଶପ୍ରାପ୍ତ ହୋଇଥିଲା ।

## (ଖ) କୃଷ୍ଣସିଂହ ମହାଭାରତ—

୧୯୨୭ ବେଳକୁ କଠୋର ଶ୍ରମର ଜୁଆର ମାଡ଼ିଅଇଲା । ସେ ସମୟରେ 'ସତ୍ୟବାଦୀ ପ୍ରେସ୍' ତାର ଜନ୍ମସ୍ଥାନ ସତ୍ୟବାଦୀରୁ ଉଠିଆସି ପୁରୀ ସହରରେ ଅବସ୍ଥାପିତ ହୋଇଥାଏ । ଦକ୍ଷିଣାଞ୍ଚଳର ଧରାକୋଟ-ରାଜା କୃଷ୍ଣଚନ୍ଦ୍ର ସିଂହଙ୍କଦ୍ୱାରା ଅନୂଦିତ 'ମହାଭାରତ'ର ଏକ ସଂସ୍କରଣ ବୌଦ-ରାଜାଙ୍କଦ୍ୱାରା ପୂର୍ବେ ପ୍ରକାଶିତ ହୋଇଥିଲା । ମେନେଜର ଅକୂଳ ମିଶ୍ର ଉକ୍ତ ମହାଗ୍ରନ୍ଥରୁ ଗୋଟିଏ ସେଟ୍ ବୌଦ ରାଜବାଟୀରୁ ସଂଗ୍ରହ କରି ସତ୍ୟବାଦୀ ପ୍ରେସ୍‌ରେ ତାହାର ଛପା ଆରମ୍ଭ କରାଇଦେଇଥାନ୍ତି । ଦାଣ୍ଡି ସାରଳା ମହାଭାରତ ପରି କୃଷ୍ଣସିଂହ ମହାଭାରତ ମଧ୍ୟ ଦାଣ୍ଡିବୃତ୍ତରେ ରଚିତ ଥିଲା । କିନ୍ତୁ ମୋଗଲବନ୍ଦି ଅଞ୍ଚଳରେ ଯେଉଁ ସାରଳା ମହାଭାରତ ପ୍ରଚଳିତ ଥିଲା, କଟକର ପ୍ରକାଶକମାନେ ତାହାକୁ ଚୌଦ-ଅକ୍ଷରାରେ ପରିଣତ କରିଦେଇଥିଲେ । ବ୍ୟବସାୟକୁଶଳ ମିଶ୍ର ଆପଣେ ମଧ୍ୟ ପୂର୍ବ କଟକୀ ପ୍ରକାଶକ-ମାନଙ୍କ ପଦାଙ୍କ ଅନୁସରଣ କରି କୃଷ୍ଣସିଂହ ମହାଭାରତକୁ ଚୌଦ-ଅକ୍ଷରୀ କରାଇ ଛପାଉଥାନ୍ତି । ସତ୍ୟବାଦୀ ପ୍ରେସ୍‌ର ମେନେଜର ରାଧାନାଥ ରଥ ସ୍ୱତଃପ୍ରବୃତ୍ତଭାବରେ ଚତୁର୍ଦ୍ଦଶାକ୍ଷରୀକରଣ ଦାୟିତ୍ୱ ବହନ କରିଥାନ୍ତି ।

ଦିନେ ମେନେଜର ଅକୂଳ ମିଶ୍ର ସତ୍ୟବାଦୀ ପ୍ରେସ୍‌ରୁ ମୁଦ୍ରିତ ହୋଇ ଆସିଥିବା ରୟାଲ୍ ଆଠପେଜୀ ସାଇଜର ଗୋଟିଏ ଫର୍ମକୁ ମୋ ଟେବୁଲ ଉପରେ ଥୋଇଦେଇ କହିଲେ, "ଏହାର ପ୍ରଥମ କେତେ ପୃଷ୍ଠା ଉପରେ ଟିକେ ଆଖି ଗଡ଼େଇଯାଅ; ଦେଖ, ପ୍ରତ୍ୟେକ ପଙ୍କ୍ତିରେ ଠିକ୍ ଚୌଦଟି ଲେଖାଏଁ ଅକ୍ଷର ରହିଛି କି ନାହିଁ, ଆଉ ଶୁଦ୍ଧ ଭାବରେ ପାଠସବୁ ଛପା ହୋଇଛି କି ନାହିଁ ।"

ମୁଁ ମୂଳରୁ ଦୁଇଟି ଫର୍ମା ଅର୍ଥାତ୍ ଷୋହଳଟି ମାତ୍ର ପୃଷ୍ଠା ପଢ଼ି ଯେଉଁ କେତେକ ପଙ୍କ୍ତିରେ ଚୌଦ ଅକ୍ଷରରୁ କମ୍ କିମ୍ବା ବେଶୀ ଅକ୍ଷର ଥିଲା, ତାକୁ ସବୁ ପେନ୍‌ସିଲ୍‌ରେ ଚିହ୍ନଟ କରିଦେଲି ଏବଂ ବନାନ ଅଶୁଦ୍ଧି ସମେତ ଅନ୍ୟ ଯେଉଁ ଛପା ଭୁଲ୍‌ମାନ ରହିଯାଇ-ଥିଲା, ସେଗୁଡ଼ିକୁ ମଧ୍ୟ ଯଥାସ୍ଥଳରେ ପେନ୍‌ସିଲଦ୍ୱାରା ସୂଚାଇଦେଲି । ଅକୂଳ ପଣ୍ଡିତେ ଏସବୁ ଗୁରୁତର ତ୍ରୁଟି ଦେଖି ଗଭୀର କ୍ଷୋଭ ପ୍ରକାଶ କଲେ । ମୋ ପ୍ରତି କିନ୍ତୁ ଏହାର ପ୍ରତ୍ୟକ୍ଷ ଫଳ ହେଲା 'ଆ ବଳଦ, ମତେ ବିନ୍ଧ' ।

ମିଶ୍ରେ ସିଦ୍ଧାନ୍ତ ନେଲେ—ଏ ବିଷୟ ସତ୍ୟବାଦୀ ପ୍ରେସ୍‌ର ମେନେଜର୍‌ଙ୍କୁ ତୁରନ୍ତ ଜଣାଇ ଭବିଷ୍ୟତରେ କଠୋର ସତର୍କତା ଅବଲମ୍ବନ କରିବାପାଇଁ ଚେତାବନୀ ଦେବେ ଏବଂ ଏଣେ ବିଶ୍ୱନାଥ କରଙ୍କ ଉତ୍କଳ ସାହିତ୍ୟ ପ୍ରେସ୍‌ରେ ମଧ୍ୟ ପରବର୍ତ୍ତୀ ପର୍ବମାନଙ୍କ ଆଶୁ ଛପାଇ ବ୍ୟବସ୍ଥା କରାଇଦେଇପାରିବେ; କାରଣ ଏହି ସାହିତ୍ୟ ପ୍ରେସ୍ ଓ ବିଶ୍ୱନାଥ ବାବୁଙ୍କ ବାସଗୃହ ଟ୍ରେଡ଼ିଂ କମ୍ପାନୀକୁ ଲଗିଥିବାରୁ କାର୍ଯ୍ୟର ଗତି କ୍ଷିପ୍ରତର ହେବା ସଙ୍ଗେ ସଙ୍ଗେ ଅଧିକତର ସାବଧାନତା ସହି ମହାଗ୍ରନ୍ଥଟିର ମୁଦ୍ରଣ କାମ ପାର୍ବଣ ପର୍ବ ପୂର୍ବରୁ ପୁରୁଖୁରୁରେ ସମାପ୍ତ ହୋଇପାରିବ ।

ଏହି ଆୟୋଜନ ଅନୁସାରେ ମତେ ପ୍ରତ୍ୟହ ଗୋଟିଏ ଫର୍ମା (ରୟାଲ୍ ଆଠପେଜି ସାଇଜ୍‌ର ଦୁଇକଲମିଆ ଆଠ ପୃଷ୍ଠା) ଦାଣ୍ଡିପାଠର ପ୍ରତି ଧାଡ଼ିକୁ ଚୌଦ-ଅକ୍ଷରିଆ କରିବାକୁ ପଡ଼ିଲା । ପୁଣି, ଗୋଟିଏ ଫର୍ମାର ଗ୍ୟାଲି ପ୍ରୁଫ୍ ଓ ଗୋଟିଏ ଫର୍ମାର ପେଜ୍ ପ୍ରୁଫ୍ ସଂଶୋଧନ କରିବାକୁ ହେଲା । ଫଳରେ, ଦିନ ଦଶଟାଠାରୁ ସନ୍ଧ୍ୟା ସାତଟା ପର୍ଯ୍ୟନ୍ତ ନିଶ୍ୱାସ ମାରିବାକୁ ପୁଛା ତର ମିଳିଲା ନାହିଁ । ପ୍ରେସ୍‌ର କଡ଼ା ତାଗଦାମତେ ଏ ତିନୋଟିଯାକ କସମାଣ କାମକୁ ମୁଁ ଗୋଳେଇମିଶେଇ ଯଥା ଯଥା ସମୟରେ ଥୋକ ଥୋକ କରି ସାରିବାକୁ ବାଧ୍ୟ ହେଲି, ଯେପରି କମ୍ପୋଜିଟର୍‌ଙ୍କ ହାତ ବନ୍ଦ ହେବ ନାହିଁ କି ଗ୍ୟାଲି ପ୍ରୁଫ୍ ଓ ପେଜ୍ ପ୍ରୁଫ୍‌ର କରେକ୍ଟରମାନଙ୍କ ହାତ ଖାଲି ରହିବ ନାହିଁ । ମହାଭାରତ କାମ ଛଡ଼ା ବେଳେବେଳେ ପକେଟ ଓଡ଼ିଆ ଅଭିଧାନ ବା ଅନ୍ୟ କୌଣସି କୌଣସି ବହିର ପ୍ରୁଫ୍ ମଧ୍ୟ ଆସିଯାଏ; ତାକୁ ସବୁ ସନ୍ଧ୍ୟା ସାତଟା ପରେ ନ ଦେଖି ଚଳିବ ନାହିଁ । କ୍ରମାଗତ ଏତେ ଘଣ୍ଟା ଖଟି ଖଟି ମୁଁ କ୍ଳାନ୍ତ ହୋଇଯାଏଁ ସିନା, ହାରେଇ ନାହିଁ କେବେ । ଅଣ୍ଟା ପିଠି ଲଗିଗଲେ ପୁଛା କାମ ମତେ ହଟାଇପାରେ ନାହିଁ । ଆଜିର କାମ କାଲିକି ପକେଇ-ରଖି ଆଳସ୍ୟକୁ ପ୍ରଶ୍ରୟ ଦେବାର ଦୁର୍ବଳତା ଭଗବାନ୍ ବୋଧହୁଏ ମୋ ମନ-ଉଦ୍ୟାନରେ ରୋଇ ନଥିଲେ । କାଲିପାଇଁ ଟେବୁଲ ସଫା ରଖିବାଦ୍ୱାରା ଯେଉଁ ନିର୍ମଳ ଆନନ୍ଦ ମିଳେ, ତାହାର ସୁଖସ୍ୱାଦ ଅବର୍ଣ୍ଣନୀୟ ।

ନିର୍ଦ୍ଧାରିତ ଯୋଜନାନୁଯାୟୀ ଦଶହରାର କିଛି ପୂର୍ବରୁ କୃଷ୍ଣସିଂହ ମହାଭାରତର ଅଠରଟିଯାକ ପର୍ବ ବାହାରିପଡ଼ିଲା । ସେ-ବର୍ଷର 'ପୂଜା ଉପହାର' ବିଜ୍ଞାପନମାନଙ୍କ ମଧ୍ୟରେ ଟ୍ରେଡ଼ିଂ କମ୍ପାନୀର ଏହି ନୂତନ ସଂସ୍କରଣ କୃଷ୍ଣସିଂହ ମହାଭାରତ ହେଲା ସର୍ବୋତ୍କୃଷ୍ଟ ଆକର୍ଷଣ । ମୋଗଲବନ୍ଦି ଓଡ଼ିଶାରେ ବହୁକାଳାବଧି ଏକମାତ୍ର ସାରଳା ମହାଭାରତ ପଢ଼ାହୋଇ ଆସୁଥିବାରୁ ଲୋକଙ୍କ ମନକୁ ପୁରୁଣା ଓ ଘସରା ବୋଧହେଉଥିଲା । ତେଣୁ ଅତି ସରଳ ଗାଉଁଲି ଭାଷାରେ ଲିଖିତ କୃଷ୍ଣସିଂହ ମହାଭାରତ ଲୋକସାଧାରଣର ଗତାନୁ-ଗତିକ ରୁଚିରେ ପରିବର୍ତ୍ତନ ଆଣି ଏକ ନୂତନ ସ୍ୱାଦର ଅବତାରଣା କଲା ଏବଂ ନବାଗତ ଅତିଥିରୂପେ ବିପୁଳ ଆଦର ପାଇଲା । ଏହାଫଳରେ ଟ୍ରେଡ଼ିଂ କମ୍ପାନୀର ପୂଜା ବିଜ୍ଞାପନ ଶତକରା ଅଶୀ ଭାଗ ମହାଭାରତ-କ୍ରୟେଚ୍ଛୁଙ୍କୁ ଟାଣିଆଣିଲା । ଏହି କାରଣରୁ ପ୍ରକାଶକ

ପ୍ରତିଷ୍ଠାନଟିର ବାର୍ଷିକ ଲାଭ ପରିମାଣ ଅପର୍ଯ୍ୟାପ୍ତ ବୃଦ୍ଧିପ୍ରାପ୍ତ ହେବା ସଙ୍ଗେ ସଙ୍ଗେ ଖ୍ୟାତି ମଧ୍ୟ ବହୁତ ପ୍ରବର୍ଦ୍ଧିତ ହେଲା । ଏହି ଆଶାତୀତ ସାଫଲ୍ୟ ସମ୍ପର୍କରେ ପଣ୍ଡିତ ଆକୁଳ ମିତ୍ର ମୋର ଅଦମ୍ୟ ଶ୍ରମନିଷ୍ଠା ଓ ଲେଖନୀ-ପତ୍ରିକାଖ୍ୟାତ ପ୍ରଶଂସା ଗାଇବୁଲିବାରେ କହୁକାଳ ଶତକଣ୍ଠ ହୋଇଉଠିଥିଲେ । 'ସଳିଳ ନ ସିଞ୍ଚି ଖାଲି ଦଣ୍ଡବତ' ପଦ୍ଧତିରେ ଏ ପ୍ରକାର ଶୁଷ୍କ ପ୍ରଶସ୍ତିଗାୟନ ଯେ 'ସ୍ୱର୍ଣ୍ଣଅଣ୍ଡା-ପ୍ରସବଣୀ ହଂସୀ' ପୋଷଣର ବ୍ୟବସ୍ଥା ପାଇଁ ବ୍ୟବସାୟୀତନ୍ତ୍ରର ଏକ ଆଭିସ୍ୱଶକ କୌଶଳ, ଏହା ସହଜରେ ଜଣାପଡ଼ିଯାଉଥିଲା ।

## (ଗ) ପକେଟ ଓଡ଼ିଆ ଅଭିଧାନର ମୁଖବନ୍ଧ—

'ମହାଭାରତ' ପରେ ପରେ 'ପକେଟ ଓଡ଼ିଆ ଅଭିଧାନ'ର ଆଶୁ ପ୍ରକାଶ ଉପରେ ଜୋର୍ ଦିଆଗଲା । ତାହାର ମୁଦ୍ରଣ ମଧ୍ୟ ମାସକତିପୟ ମଧ୍ୟରେ ଶେଷ ହୋଇଗଲା । କେବଳ ବାକି ରହିଲା ପ୍ରକାଶକଙ୍କ ପକ୍ଷରୁ ଗୋଟିଏ ନାତିକ୍ଷୁଦ୍ର ମୁଖବନ୍ଧର ପ୍ରସ୍ତୁତି । ସେହି ଭାରଟି ନ୍ୟସ୍ତ ହେଲା ମୋ ଉପରେ । ଭାଷାକୁ ଖୁବ୍ ଜଗି ଜଗି ମୁଖବନ୍ଧଟିଏ ଲେଖିଲି । ତାହାକୁ ପ୍ରକାଶକ ପଣ୍ଡିତ ମହାଶୟ ସାହିତ୍ୟ ପ୍ରେସ୍‌କୁ ପଠାଇଦେଲେ । ଦୈବଯୋଗକୁ ସେହି ଲେଖାଟି ମୁଦ୍ରକ ତଥା ପ୍ରୋପ୍ରାଇଟର୍ ବିଶ୍ୱନାଥ କରଙ୍କ ହାତରେ ପଡ଼ିଲା । ସେ ତାହା ପଢ଼ି ଗୋଟିଏ ଶବ୍ଦ ତଳେ ନାଲିଗାର ଦେଇ ବୈଠକଘରର ଟେବୁଲ ଉପରେ ଥୋଇଦେଲେ । ଏହା ଫୁଲସଜ୍ଜ ବେଳର କଥା । ସେହି ସମୟରେ ପଣ୍ଡିତ କୁଳମଣି ଦାଶ କାବ୍ୟତୀର୍ଥ ଆସି ପହଞ୍ଚିଗଲେ ସବୁଦିନର ଅଭ୍ୟସ୍ତ ରୀତିରେ ।

'ଉତ୍କଳସାହିତ୍ୟ'-ସମ୍ପାଦକ ପୂଜ୍ୟ ବିଶ୍ୱନାଥ କର ମୁଖବନ୍ଧ ଲେଖାଟି କୁଳମଣି ପଣ୍ଡିତଙ୍କ ହସ୍ତକୁ ବଢ଼ାଇଦେଇ ବକ୍ରଭଙ୍ଗୀରେ କହିଲେ, "ଦେଖ ତୁମ ଶିଷ୍ୟମଣିଙ୍କ ପାଣ୍ଡିତ୍ୟ !" ପଣ୍ଡିତ ମହୋଦୟଙ୍କ ଆଖି ସ୍ୱଭାବତଃ ପ୍ରଥମେ ପଡ଼ିଗଲା ନାଲିଗାରଦିଆ ସେହି ଶବ୍ଦଟି ଉପରେ । ସେ ତତ୍‌ଦଣ୍ଡେ ବିଶ୍ୱନାଥଙ୍କ କଟାକ୍ଷର ମର୍ମ ବୁଝିଗଲେ ।

ସଙ୍ଗେ ସଙ୍ଗେ ମତେ ଡକାଆରମ୍ଭ ହେଲା । ମୁଁ ବୈଠକଖାନାର ଏରୁଣ୍ଡି ଏପଟେ ସେ ଦୁହିଙ୍କ ଗମ୍ଭୀର ନୀରବ ମୂର୍ତ୍ତି ଦେଖିଦେଲାମାତ୍ରେ ଭୟରେ ଟିପରୁ ଟୋପରଯାଏ ଥରିଉଠିଲି । ସାମନା ଧରିବାକୁ ସହଜେ ସାହସ ଆସିଲା ନାହିଁ । ଶିଷ୍ଟାଚାରଲଙ୍ଘନ ଦୋଷ ଏଡ଼ାଇବାପାଇଁ ନମସ୍କାର କରି କଣିକଆ ଠିଆ ହେଲି ମୁଣ୍ଡ ନୋଇଁ । ପଣ୍ଡିତ ଆପଣେ ଅବଧାନ ସ୍ୱରରେ ପଚାରିଲେ, "ତୁ ଏଥିରେ ଯେଉଁ 'କେତେକଣ' ଶବ୍ଦଟି ବ୍ୟବହାର କରିଛୁ, ତାର ବ୍ୟୁତ୍ପତ୍ତି କ'ଣ ?" ମୁଁ ଉତ୍ତର ଦେଲି—"କେତେକ + ଣ ।"

ପଣ୍ଡିତେ—'କେତେକ' ଶବ୍ଦଟି କ'ଣ ସଂସ୍କୃତ ?

ମୁଁ—ନା, 'ତଦ୍ଭବ' ।

ପଣ୍ଡିତେ—ତାହାହେଲେ 'କେତେକଣ' ଶବ୍ଦ ଶୁଦ୍ଧ ହେବ କପରି ?

ମୁଁ—ଯେପରି 'ଖଣିକ', 'ଆଇନଜୀବୀ', 'ଖ୍ରୀଷ୍ଟୀୟ' ପ୍ରଭୃତି ।

ଏହିଠାରେ ପଣ୍ଡିତ ମହାଶୟଙ୍କଠାରୁ ଛଡ଼ାଇନେଇ ସାହିତ୍ୟକ-ସ୍ରଷ୍ଟା ବିଶ୍ୱନାଥ ମତେ ବୁଝାଇଦେଲେ, "ଅତୀତର ବିଭିନ୍ନ ସମୟରେ କେତେକ ତଦ୍ଭବ ଶବ୍ଦ ସଂସ୍କୃତ ଶବ୍ଦ ପ୍ରାୟ ଆମ ଓଡ଼ିଆ ଭାଷାରେ ବ୍ୟବହୃତ ହୋଇଯାଇଛି. ଯଥା—ଖୋଦନ, ଖୋଦିତ, ସଙ୍ଗଠନ, ସଙ୍ଗଠିତ ପ୍ରଭୃତି । ଖଣିଜ ଶବ୍ଦଟି ସେହିପରି ଏକ ତଦ୍ଭବ ଶବ୍ଦ । ଏଭଳି ଶବ୍ଦଗୁଡ଼ିକୁ ଆଉ ଅଶୁଦ୍ଧ ବୋଲି ଉଡ଼ାଇଦେଇ ହେବ ନାହିଁ । ତା'ପରେ 'ଆଇନଜୀବୀ' ଓ 'ଖ୍ରୀଷ୍ଟୀୟ' ଶବ୍ଦ । ଏ ଦୁଇଟି ଶବ୍ଦର ଆଦ୍ୟରେ ଥିବା 'ଆଇନ' ଓ 'ଖ୍ରୀଷ୍ଟ' ଯଥାକ୍ରମେ ଯାବନିକ ଓ ବୈଦେଶିକ ଶବ୍ଦ; ତେଣୁ ଏ ସ୍ଥଳରେ ସ୍ୱତନ୍ତ୍ର ବିଗ୍ରହର ଆବଶ୍ୟକ । ଏଭଳି ଅଣସଂସ୍କୃତ ଶବ୍ଦମାନଙ୍କରେ ସଂସ୍କୃତ ଶବ୍ଦ ବା ସଂସ୍କୃତ ପ୍ରତ୍ୟୟ ଯୋଗ କରି ଅତ୍ୟାବଶ୍ୟକ ନୂଆ ନୂଆ ଶବ୍ଦ ଆମ ଭାଷାକୁ ଆମଦାନି କରିବାକୁ ହେବ । ତଦ୍ଦ୍ୱାରା ଓଡ଼ିଆ ଶବ୍ଦ-ଗନ୍ତାଘରର ସମ୍ପଦ ବଢ଼ିବ ଏବଂ ଭାବର ସୁଷ୍ଠୁ ପ୍ରକାଶ ପାଇଁ ନଅଣ୍ଟ ଥିବା ଶବ୍ଦଗୁଡ଼ିକ ଭରଣା ହୋଇଯିବ । ମାତ୍ର 'କେତେକତ୍ର'ରେ ଥିବା 'କେତେକ' ଶବ୍ଦଟି ତଦ୍ଭବ ବା ଅପଭ୍ରଷ୍ଟ ଓଡ଼ିଆ ହୋଇଥିବାରୁ ତହିଁରେ ସଂସ୍କୃତ 'ତ୍ର' ପ୍ରତ୍ୟୟ ଯୋଗ କରିବା ବ୍ୟାକରଣଶାସ୍ତ୍ରର ନିୟମବିରୁଦ୍ଧ । ଏଣୁ ଏପ୍ରକାର ଶବ୍ଦଗଠନ ଅଶୁଦ୍ଧ ଓ ଅସାଧୁ । 'କେତେକତ୍ର' ଶବ୍ଦକୁ ପରିହାର କରି ସେହି ଅର୍ଥରେ 'କେତେକ ସ୍ଥାନରେ' ବା 'କେତେକ ସ୍ଥଳରେ' ପ୍ରୟୋଗ କରିବା ସମୀଚୀନ ।"

ଅପରାଧୀଟି ପରି ନବାକ୍ ରହି ସବୁ ଶୁଣିଲି । କୌଣସିମତେ ବାଘମୁହଁରୁ ରକ୍ଷା ପାଇବାପାଇଁ କୃତ୍ରିମ ଆଳ ସୃଷ୍ଟି କରି ସେହି ବିପଦ-ଘାଟିରୁ ଖସିଆସିଲି । 'ଯଃ ପଳାୟତି ସଃ ଜୀବତି' ।

ଅଧୁନା ଭାଷାରାଜ୍ୟରେ ବହୁତ ଓଲଟପାଲଟ ହୋଇଯାଇଛି ଏବଂ ଅସମ୍ଭାବିତପୂର୍ବ ବେମୁରବୀ ଉଚ୍ଛୃଙ୍ଖଳତାର ନଗ୍ନ ବିପ୍ଳବ ଦେଖାଦେଇଛି । ଭିତରଆଡ଼େ ବନ୍ଧନହୀନତାର କବନ୍ଧନୃତ୍ୟ, ଅଣବାରୁଆ ମାତର ଅବାଧ ରାଜତ୍ୱ । ଅବସ୍ଥା ଏପରି ହେଲାଣି ଯେ, 'ଦେବ-ରାଜ' ଶବ୍ଦ 'ଦେବ୍ରାଜ', 'ଗୁରୁଦେବ' ଶବ୍ଦ 'ଗୁର୍ଦେବ', 'ଷିରଚଟା' ଶବ୍ଦ 'ଷିର୍ଚ୍ଟା' ରୂପ ଧରିବାକୁ ବସିଲାଣି । ଆଗଭଳି ଟାଣୁଆ ବୁଝାଇବା ଲୋକ ନାହାନ୍ତି କି ଲୋକେ ବୁଝିବାକୁ ପ୍ରସ୍ତୁତ ନୁହନ୍ତି । ସମସ୍ତେ ତ ଯେଝା ହାତରେ ସେ ବୈଦ-ପା, କିଏ ମାନୁଛି କାହାକୁ ? ବ୍ୟକ୍ତିସ୍ୱାଧୀନତାର କୁଫଳ ହୋଇଛି ବେମୁରବିପୁଲିଭ ବୈତଣ୍ଡିକତା ଓ ସର୍ବଜ୍ଞାନତାଗିରିର ମୂର୍ଦ୍ଧା ।

## (ଘ) 'ପଞ୍ଚାମୃତ'—

କଟକ ଟ୍ରେଡ଼ିଂ କମ୍ପାନୀଦ୍ୱାରା ୧୯୨୦ ମସିହା ପଣାସଂକ୍ରାନ୍ତି (ବୈଶାଖ ପହିଲି) ଠାରୁ ସୁଖେ-ଦୁଃଖେ ପ୍ରକାଶଲାଭ କରିଆସୁଥିଲି 'ପଞ୍ଚାମୃତ' ନାମରେ ଖଣ୍ଡିଏ ମାସିକ ଶିଶୁପତ୍ରିକା । ତାର ଯୁଗ୍ମ ସମ୍ପାଦକ ଥିଲେ—ପ୍ରଖ୍ୟାତ ଆଇନଜୀବୀ ଐତିହାସିକ ଚନ୍ଦ୍ରମଣି ଆଚାର୍ଯ୍ୟ ଓ ପ୍ରବୀଣ ଶିକ୍ଷକ ଅଗଣି ଦାଶ । ଏହି 'ପଞ୍ଚାମୃତ' ହିଁ ପ୍ରାକୃତିକ ଓଡ଼ିଶାର ସର୍ବପ୍ରଥମ ଶିଶୁ-

ମାସିକାର ଗୌରବ ବର୍ଦ୍ଧନ କରେ । ଏ ଦିଗରେ ସର୍ବପ୍ରଥମ ସାର୍ଥକ ଉଦ୍‌ଯୋକ୍ତା ପଣ୍ଡିତ ଆର୍ତ୍ତତ୍ରାଣ ମିଶ୍ର କାବ୍ୟତୀର୍ଥଙ୍କ ନାମ ବିଶେଷ ଉଲ୍ଲେଖଯୋଗ୍ୟ । ଅବଶ୍ୟ ୧୯୦୯ରେ ରେବା ରାୟ 'ପ୍ରଭାତ' ନାମକ ଶିଶୁପତ୍ରିକାଟିଏର କାମ ଆରମ୍ଭ କରିଥିଲେ; ମାତ୍ର ଗ୍ରାହକ ଅଭାବରୁ ତାହା କେତୋଟି ମାତ୍ର ମାସ ପରେ ବନ୍ଦ ହୋଇଗଲା ।

ଯେକୌଣସି ସାହିତ୍ୟ ପତ୍ରିକାର, ବିଶେଷତଃ ଶିଶୁସାହିତ୍ୟ ପତ୍ରିକାର ପାଠକପ୍ରିୟତା ତାର ଆଙ୍ଗିକ ଓ ଆତ୍ମିକ ଶ୍ରୀଲତାଉପରେ ନିର୍ଭର କରେ । ରୁଚିଶୀଳ ପାଠକପାଠିକାଙ୍କ ମାନସିକ କ୍ଷୁଧା ମେଣ୍ଟାଇବାର ଉପଯୁକ୍ତ ଖାଦ୍ୟସାମଗ୍ରୀ ପରିବେଷଣ କରି ନପାରିଲେ କୌଣସି ପତ୍ରିକା ତିଷ୍ଠିପାରିବ ନାହିଁ । ଏ କାର୍ଯ୍ୟର ଦାୟିତ୍ୱ ଅଙ୍ଗାଙ୍ଗୀଭାବରେ ସମ୍ପାଦକ ଓ ପରିଚାଳକ ଉଭୟଙ୍କର । 'ପଞ୍ଚାମୃତ' କ୍ଷେତ୍ରରେ ପରିଚାଳକ-ପ୍ରକାଶକ କଟକ ଟ୍ରେଡ଼ିଂ କମ୍ପାନୀ ଓ ସମ୍ପାଦକଦ୍ୱୟଙ୍କର ଗଭୀର ଆଗ୍ରହ ଥିଲେହେଁ ଶିଶୁମନ ରସିଲା ମାତିଆ ବିଭିନ୍ନ ସ୍ୱାଦର ସରସ ଲେଖା ଯୋଗାଡ଼ ଓ ସଂଗ୍ରହ କରିବାକୁ ଉପଯୁକ୍ତ ଯୋଜନା ଓ ଯଥେଷ୍ଟ ଅବସର ନଥିଲା । ତେଣୁ ପ୍ରକୃତ ଶିଶୁଭୋଗ୍ୟ ଲେଖାର ଉତ୍କଟ ଅଭାବ ଯୋଗୁଁ ପତ୍ରିକାଟି ନିୟମିତରୂପେ ପ୍ରତି ମାସରେ ବାହାରିପାରୁ ନଥିଲା । ସମୟ ସମୟରେ ଦୁଇ ମାସରେ ଏକତ୍ର ଦୁଇ ମାସର ବିଷୟ ପ୍ରକାଶ କରିବା ମଧ୍ୟ କଷ୍ଟସାଧ୍ୟ ହୋଇପଡ଼ୁଥାଏ ।

ମୁଁ ପରିଚାଳନା ଭାର ମୁଣ୍ଡେଇବା ପରେ ପତ୍ରିକାଟିର ଦୁରବସ୍ଥା ଦୂର କରିବାପାଇଁ ସର୍ବାଦୌ ଧ୍ୟାନ ଦେଲି । ମାନବଶିଶୁ ପ୍ରତି ଇତିକର୍ତ୍ତବ୍ୟରୂପେ ଅବଧାରିତ 'ଲାଲଯେତ୍ ପଞ୍ଚବର୍ଷାଣି' ନୀତି ନିର୍ଦ୍ଦେଶକୁ ପତ୍ରିକାଶିଶୁ ପ୍ରତି ପ୍ରୟୋଗ କରିବା ଫଳୋପଧାୟକ ହେବ ବୋଲି ବିଚାରି 'ପଞ୍ଚାମୃତ'ର ନାମାନୁରୂପ ସୁନ୍ଦର ସୁନ୍ଦର କବିତା, ଗପ ଓ ଅନ୍ୟାନ୍ୟ କୌତୁକାବହ ଶିକ୍ଷାପ୍ରଦ ଲେଖା ସଂଗ୍ରହ କରିବାକୁ ସଙ୍କଳ୍ପବଦ୍ଧ ହେଲି । ଏଥିପାଇଁ ଅକ୍ଳାନ୍ତ ଶ୍ରମ ଓ ଅମାପ ସମୟ ଦାନ କରିବାକୁ ପଡ଼ିଲା । କଟକବାସୀ ପ୍ରଫେସର ଶ୍ୟାମଚନ୍ଦ୍ର ତ୍ରିପାଠୀ, ପ୍ରଫେସର ପ୍ରାଣକୃଷ୍ଣ ପରିଜା, ଗୋପାଳଚନ୍ଦ୍ର ପ୍ରହରାଜ, ଭିକାରିଚରଣ ପଟ୍ଟନାୟକ, କୁନ୍ତଳାକୁମାରୀ ସାବତ, ସୁଶୀଳତା ରାଓ, ପଣ୍ଡିତ କୁଳମଣି ଦାଶ, କୃଷ୍ଣଚନ୍ଦ୍ର ସେନଗୁପ୍ତ, ଶଶିଭୂଷଣ ରାୟ, ଚନ୍ଦ୍ରଶେଖର ମିଶ୍ର ପ୍ରଭୃତିଙ୍କ ପାଖକୁ ବାରମ୍ବାର ଯାଇ ଶିଶୁମନରୋଚକ ଲେଖାମାନ ଆଦାୟ କଲି । ବେଳେ ବେଳେ ଗୋଟାଏ ଗୋଟାଏ ପ୍ରକାଶ୍ୟଯୋଗ୍ୟ ଲେଖା କଟକ ବାହାରୁ ଆସେ ଅଜ୍ଞାତ ନୂଆ ଲେଖକଙ୍କଠାରୁ । ଡାକ ଚିଠିଦ୍ୱାରା ଅନୁରୋଧ କରି ପଦ୍ମଚରଣ ପଟ୍ଟନାୟକ, ବାଙ୍କନିଧି ପଟ୍ଟନାୟକ, ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ, ଡାକ୍ତର ରାଧାଚରଣ ପଣ୍ଡା ଆଦିଙ୍କଠାରୁ ମଧ୍ୟ ଲେଖା ପାଏଁ । ମଜାଦାର ଗପ ଲେଖିବାରେ ବେଶ୍ ଶକ୍ତିଧାରୀ ସମ୍ପାଦକ ଅଗଣୀ ଦାଶଙ୍କୁ ଗଳ୍ପ-ଅଭଳ ରାସ୍ତାରେ ବରାବର ଟିହାଇ ଓ ପଠାଣସିଆଁଦା ଭଳି ପକପକ ତାଗଦା କରି ତାଙ୍କ ଅଳସୁଆ କଲମରୁ ମଝେ ମଝେ ବଢ଼ିଆ ବଢ଼ିଆ ଗପ ବାହାର କରେଇଲି, ଯାହାକୁ 'ପଞ୍ଚାମୃତ'ର ଶିଶୁପାଠକ-ପାଠିକାମାନେ ପଢ଼ି ହସି ହସି ଗଡ଼ିଯାଇ ଆନନ୍ଦରେ କୁତୁକୁଇଉଠୁଥିଲେ । ମୁଁ ବି ଫୁରୁସତ

ପାଇଲେ ସାନ ସାନ ପୁଅ-ଝିଅଙ୍କ ମନକୁ ଘେନିଲା ଭଳି ଛୋଟ ଛୋଟ କବିତା ଯୋଗାଏଁ— ଅବଶ୍ୟ ସବୁ ମାସରେ ଏହା ସମ୍ଭବ ହୁଏ ନାହିଁ । ଏସବୁ ଫଳରେ ଲେଖାଦୈନ୍ୟ ଅଚିରେ ଅପସାରିତ ହୋଇଗଲା ଏବଂ ରୁଗ୍ଣ 'ପଞ୍ଚାମୃତ' ସୁସ୍ଥ ଶ୍ରୀମନ୍ତ କଳେବର ଘେନି ସମ୍ପୂର୍ଣ୍ଣ ବ୍ୟବସ୍ଥିତ ଢଙ୍ଗରେ ପ୍ରତି ମାସର ନିର୍ଦ୍ଦିଷ୍ଟ ଦିବସରେ ପ୍ରକାଶ ପାଇଲା । ଏଣିକି ପ୍ରତ୍ୟେକ ସଂଖ୍ୟାର ରୂପ ଓ ବିଷୟବସ୍ତୁ ଆକର୍ଷଣୀୟ ହେଲା ଏବଂ ଛୁଅଛୁଅୀ ମହଲର ଆଶାତୀତ ସମାଦର ଲାଭ କଲା । ବାଳୁତ ଗ୍ରାହକଗ୍ରାହିକାଗଣ ସତୃଷ୍ଣ ନୟନରେ ପ୍ରକାଶଦିବସକୁ ଚାହିଁ ରହିଲେ । ମାସକୁ ମାସ ଗ୍ରାହକସଂଖ୍ୟା ମଧ୍ୟ ବୃଦ୍ଧି ପାଇବାରେ ଲାଗିଲା ।

ମୋର ଯେଉଁ ଛୋଟିଆ ଗଳ୍ପକବିତାଟି 'ପଞ୍ଚାମୃତ'ରେ ପହିଲେ ପ୍ରକାଶିତ ହୋଇଥିଲା, ତାହା ନିମ୍ନରେ ଉଦ୍ଧାର କରୁଛି । ପତ୍ରିକାରେ ପ୍ରକାଶ ଉଦ୍ଦେଶ୍ୟରେ ରଚିତ ଏହାହିଁ ମୋ ଲେଖକଜୀବନର ସର୍ବପ୍ରଥମ ଶିଶୁକବିତା :

## ପାତିର ମାଛଧରା

ନଈକୂଳ ଗଛଡାଳେ　　ବସି ଏକ ପାତି<br>
ଦେଖିଲା, କେଉଟେ ଜାଲ　　ନଈରେ ପକାନ୍ତି ।<br>
ମାଛ ମାରି ଅତାଡ଼ିରେ　　ଜାଲ ଦେଇ ପାରି<br>
ଆନନ୍ଦେ କେଉଟେ ଗଲେ　　ଘରକୁ ବାହାରି ।<br>
ତା ଦେଖି ଗଛରୁ ପାତି　　ଆଇଲା ଓହ୍ଲାଇ<br>
କେଉଟଙ୍କ ପରି ଜାଲ　　ପକାଇବା ପାଇଁ ।

ଭାଳିଲା, "ଏ ଜାଲେ ଆଜି　　ମାଛ ମୁଁ ଧରିବି,<br>
ଘରେ ନେଇ ଶିରଧାରେ　　ପଡ଼ୋଶୀଙ୍କି ଦେବି ।"

ଏତେ ବୋଲି ଜାଲମୁଠା　　ଧରିଲା ହାତରେ<br>
ପକାଇବସିଲା ତାକୁ　　ଗମ୍ଭୀର ଜଳରେ ।<br>
ନିର୍ବୁଦ୍ଧିଆ ଜୀବ, ପୁଣି　　ସହଜେ ତ ପାତି,<br>
ସେ କାହୁଁ ଜାଣିବ ଜାଲ　　ପକାଇବା ରୀତି ?

ତରବରେ ଜାଲଟାକୁ　　ଦିଅନ୍ତେ ପକାଇ<br>
ଆପେ ଛନ୍ଦି ହୋଇ ଜଳେ　　ପଡ଼ିଲା ସେ ଯାଇ ।

ଘୁଷୁଁ ଘୁଷୁଁ ଜାଲ ସଙ୍ଗେ　　ପାତି ଗଲା ବୁଡ଼ି,<br>
ସେକାଳେ ବୋଇଲା ଉଚ୍ଚେ　　ଛୁଡ଼ି ଭେମାରଡ଼ି—<br>
"ଜାଲ ଫିଙ୍ଗିବାର ଛଳେ　　ନ ଜାଣି କୌଶଳ<br>
ତାକୁ ଘେନି ଖେଳିବାର　　ଏହି ପ୍ରତିଫଳ ।"

‘ପଞ୍ଚାମୃତ’ ପାଇଁ ଲେଖିବା, ଲେଖା ସଂଗ୍ରହ କରିବା ଓ କଞ୍ଚା ଲେଖାକୁ ମାଜିବାଟାକୁ ମୁଁ ଚାକିରି-ପରିସରର ଏକ ନୈତିକ କର୍ତ୍ତବ୍ୟରୂପେ ଧରିନେଇଥିଲି । ଏହା ସତ୍ତ୍ୱେ ସହକାର, ମୁକୁର, ସାହିତ୍ୟସୋପାନ, ଉତ୍କଳମଧୁପ ଏବଂ ବ୍ରହ୍ମପୁରରୁ ପ୍ରକାଶିତ ‘ମଞ୍ଜରୀ’, ଯୁବରାଜ କୃପାସିନ୍ଧୁ ପଟ୍ଟଦେବଙ୍କ ସମ୍ପାଦିତ ‘ନବୀନ’ (ସାପ୍ତାହିକ) ଓ ‘ଶିଶିର’ (ମାସିକ) ପତ୍ରିକାକୁ ମଧ୍ୟ ସୌଖୀନ ଅଭ୍ୟାସକ୍ରମେ ଲେଖା ଯୋଗାଉଥିଲି ।

## (ଙ) ଶିଶୁସାହିତ୍ୟ ସୃଷ୍ଟି—

ଏହାପରେ ସରଳ ଶିଶୁସାହିତ୍ୟ ଦିଗ ପ୍ରତି ମୋ ମନ ପ୍ରଧାବିତ ହେଲା । ଟ୍ରେଡ଼ିଂ କମ୍ପାନୀର କର୍ମଚାରୀମାନେ ବ୍ୟକ୍ତିଗତଭାବରେ ସେପର୍ଯ୍ୟନ୍ତ ପୁସ୍ତକ-ପ୍ରକାଶନ ଅଧିକାରରୁ ବଞ୍ଚିତ ଥିଲେ । ତେଣୁ ମୁଁ ମୋ ‘ଲବକୁଶ’ ପାଣ୍ଡୁଲିପିଟି ଇତିପୂର୍ବରୁ ମେନେଜର ଆକୁଳ ମିଶ୍ରଙ୍କୁ ଦେଇଥିଲି ପ୍ରକାଶ କରିବାପାଇଁ । ତାହାର ରଚନା ରୀତି ଅତିଶୟ ଶିଶୁଭାଷାବହୁଳ ହୋଇଥିବାରୁ ତାଙ୍କ ପଣ୍ଡିତିଆ ରୁଚିକୁ ବିସ୍ୱାଦ ବୋଧହେଲା । ଏଥିଯୋଗୁଁ ପ୍ରକାଶ କରିବାକୁ ଅକ୍ଷମତା ଜଣାଇ ସେ ପାଣ୍ଡୁଲିପିଟି ମତେ ଫେରାଇଦେଲେ ଏବଂ ନିଜ ଖର୍ଚ୍ଚରେ ମୁଁ ତାହା ଛପାଇପାରେ ବୋଲି ସଦୟ ଅନୁମତି ଦେଲେ । ‘କମ୍ପାନୀ’ ନିୟମର ବ୍ୟତିକ୍ରମାତ୍ମକ ଏହି ଅନୁମତିଟି ମିଳିଯିବା ଫଳରେ ବହିଟିକୁ ମନମାଫି ପରିପାଟିରେ ଛାପିବାପାଇଁ ମୋର ସର୍ବବିଧ ସୁବିଧା ହୋଇଗଲା । ଆକୁଳ ପଣ୍ଡିତଙ୍କ ମାନ୍ଧାତିଆ ଧାରଣାର ଦୃଷ୍ଟିକୋଣକୁ ବଦଳାଇ ଆଧୁନିକମାର୍ଗୀ କରାଇବା ଉଦ୍ଦେଶ୍ୟରେ ମୁଁ ନିଜ ବ୍ୟୟରେ ‘ଲବକୁଶ’କୁ ପ୍ରକାଶ କଲି ସର୍ବାଙ୍ଗସୁନ୍ଦର ରୂପରେ ଏବଂ ମୁଦ୍ରିତ ସମସ୍ତ ପୁସ୍ତକ ଜମା ଦେଲି ଟ୍ରେଡ଼ିଂ କମ୍ପାନୀରେ । ଆଶାତୀତଭାବରେ ହଜାର ହଜାର ସଂଖ୍ୟାରେ ବହିଟି ବିକ୍ରି ହେବାର ଦେଖି ପଣ୍ଡିତେ କାବାଭୂତ ହୋଇଗଲେ । ତାଙ୍କ ପୂର୍ବ ଧାରଣା ଯେ ଆଦୌ ଯୁଗାନୁସାରୀ ନୁହେଁ, ଏବେ ସ୍ପଷ୍ଟ ବୁଝିପାରିଲେ । ତାଙ୍କ ବ୍ୟବସାୟିକ ପାଟିରୁ ଲାଳ ବୋହିବାକୁ ଉପକ୍ରମ କଲା । ଏପ୍ରକାର ସହଜବୋଧ ସରଳ ଭାଷାର ଶ୍ରେଷ୍ଠ ଶ୍ରେଷ୍ଠ ବହି ପ୍ରକାଶ କରିବାକୁ ମନ ତାଙ୍କର ଯୋରେଇଉଠିଲା । ଏକଥା ସେ ଖୋଲିକରି ମଧ୍ୟ ମତେ କହିପକାଇଲେ ।

ସେତେବେଳେ ଶିଶୁଙ୍କ ପାଇଁ ଯେଉଁ କେଇଖଣ୍ଡି ବହି ମିଳୁଥିଲା, ତାହା ଆଉ ନଥିବା ସଙ୍ଗେ ସମାନ କହିଲେ ଚଳେ । ଟ୍ରେଡ଼ିଂ କମ୍ପାନୀ ପ୍ରକାଶିତ ‘ବାଳ ମହାଭାରତ’ର କାୟା ଥିଲା ବିଶାଳ—ତାର ସୁଯୋଗ୍ୟ ଲେଖକ ଶାଳପ୍ରାଂଶୁ ମଧୁସୂଦନ ଦାଶଙ୍କ ବିଶାଳ କାୟାର ଠିକ୍ ଅନୁରୂପ । ବହିଟିର ଲେଖାଶୈଳୀ ପ୍ରଶଂସନୀୟ ହେଲେହେଁ ଭାଷାଦୃଷ୍ଟିରୁ ତାହାକୁ ‘ବାଳ ମହାଭାରତ’ ନ କହି ବରଂ ବିନା ଦ୍ୱିଧାରେ ‘ବୃଦ୍ଧ ମହାଭାରତ’ ବୋଲାଯାଇପାରେ । ସାହିତ୍ୟିକ ମଧୁସୂଦନ ଦାଶ ଶିଶୁସାହିତ୍ୟ ଲେଖକ ନଥିଲେ କି ଶିଶୁମାନଙ୍କ ଉଦ୍ଦେଶ୍ୟରେ ଏହି ପୁସ୍ତକଟି ଲେଖି ନଥିଲେ । ନିର୍ଭରଯୋଗ୍ୟ ସୂତ୍ରରୁ ଜାଣିଥିଲି, ଲେଖକ ଏପରି

ନାମକରଣ ଆଦୌ କରିନଥିଲେ—ପ୍ରକାଶକ ସ୍ୱୟଂ ପଣ୍ଡିତ ଆକୁଳ ମିଶ୍ର କାଟତିର ଅଧିକ ସୁଯୋଗ ସୃଷ୍ଟି କରିବା ଲକ୍ଷ୍ୟରେ ଓ ତଦ୍ୱାରା ଅଧିକ ଲାଭ ଉଠାଇବା ଅଭିପ୍ରାୟରେ ବହିଟିକୁ 'ବାଳ ମହାଭାରତ' ନାମ ଦେଇଥିଲେ ଏବଂ ମୂଲ୍ୟ ମଧ୍ୟ ପାଞ୍ଚଅଣା ରଖିଥିଲେ । ପ୍ରକାଶଥାଉକ, ସେକାଳରେ ପ୍ରଚଳିତ ଥିବା ମୂଲ୍ୟ-ହାର ତୁଳନାରେ ଏହି ମୂଲ୍ୟାୟନ ନିଶ୍ଚିତରୂପେ ଅତ୍ୟଧିକ । ସେଯାଏଁ ଶିଶୁସାହିତ୍ୟ-କ୍ଷେତ୍ରରେ ଲଙ୍ଗଳା-ସିଆର ପଡ଼ିନଥିଲା ବୋଲି ପଣ୍ଡିତ ମହାଶୟଙ୍କ ବ୍ୟବସାୟାତ୍ମିକା ବୃତ୍ତିରୁ ଏ କ୍ଷେତ୍ରରେ ଉଣା-ଅଧିକେ ଆର୍ଥିକ ଲକ୍ଷ୍ୟ ବେଶ୍ ହାସଲ କରିପାରୁଥିଲା । ଏହାଛଡ଼ା ଟେକ୍ରେଙ୍ଗ କମ୍ପାନୀ ପ୍ରକାଶିତ ଫର୍ଦ୍ଦିଏ ମାତ୍ର ଶିଶୁଭୋଗ୍ୟ ପୁସ୍ତକ ଥିଲା ପଣ୍ଡିତ ମୃତ୍ୟୁଞ୍ଜୟ ରଥ କାବ୍ୟତୀର୍ଥଙ୍କ ରଚିତ 'ରତ୍ନାବଳୀ'—କେତୋଟି ମନୋଜ୍ଞ ସରଳ କବିତାର ସମାହାର ।

ତେବେ ପିଲାଙ୍କ ମନ ଛୁଇଁଲା ଭଳି ମୁଷ୍ଟିମେୟ ଅନ୍ୟ ଯେଉଁ କେତେକ ବହି ସେତେବେଳେ ସୁଲଭ ଥିଲା, ସେଗୁଡ଼ିକ ହେଉଛି—ବାଳକୃଷ୍ଣ ପଟ୍ଟନାୟକଙ୍କ 'ଫୁଲବଉଳବେଣୀ' ଓ 'ଗୁରୁଳିବଙ୍ଗଳତା', ନନ୍ଦକିଶୋର ବଳଙ୍କ 'ନାନାବାୟା ଗୀତ', ଗୋପାଳଚନ୍ଦ୍ର ପ୍ରହରାଜଙ୍କ 'ଧୋ ରେ ବାୟା ଧୋ', କୃଷ୍ଣଚନ୍ଦ୍ର ସେନଗୁପ୍ତଙ୍କ 'ମୋ ବାଇଧନ' ଓ 'ଚୁଛାକୁ ଏଡ଼େ', ଅନନ୍ତ ପଦ୍ମନାଭ ପଟ୍ଟନାୟକଙ୍କ 'କୁମାରୀ ନୀତିଶିକ୍ଷା', ଦାମୋଦର ପଟ୍ଟନାୟକଙ୍କ 'ଭଲପିଲା', ମାଧବଚନ୍ଦ୍ର ମିଶ୍ରଙ୍କ 'ଧନମାଳୀ' । ଏଗୁଡ଼ିକ ପଦ୍ୟବନ୍ଧ । ଗଦ୍ୟ ବହି ବୋଇଲେ ବାଳକୃଷ୍ଣ କରଙ୍କ 'ଶିଶୁରାମାୟଣ' ଓ 'ଫୁଲଗୁଚ୍ଛ', କୃଷ୍ଣଚନ୍ଦ୍ର ସେନଗୁପ୍ତଙ୍କ 'ଧ୍ରୁବ' ଓ 'ପ୍ରହ୍ଲାଦ' । ପ୍ରକାଶପ୍ରାପ୍ତିର କାଳକ୍ରମରେ ପଣ୍ଡିତ ନୀଳକଣ୍ଠ ଦାଶଙ୍କ 'ପିଲାଙ୍କ ରାମାୟଣ' ଓ 'ପିଲାଙ୍କ ମହାଭାରତ' ଏବଂ ମୋ ଲିଖିତ 'ଲବକୁଶ' ଉପରୋକ୍ତ ପୁସ୍ତକମାନଙ୍କର କିଛିଟା ପରବର୍ତ୍ତୀ ।

ଶିଶୁସାହିତ୍ୟରାଜ୍ୟର ଏହି ଶୋଚନୀୟ ପରିସ୍ଥିତିର ମୁକାବିଲା କରିବାପାଇଁ ଆକୁଳ ମିଶ୍ରଙ୍କ ହିମ୍ମତକୋଳରେ ମୁଁ ଅଣ୍ଟା ଭିଡ଼ିଲି । ଗୋଦାବରୀଶ ମହାପାତ୍ର, ଜଗନ୍ନାଥ ମହାପାତ୍ର, ବାସୁଦେବ ମହାପାତ୍ର ଓ ବାଙ୍କନିଧି ପଟ୍ଟନାୟକ ମୋ ଅନୁରୋଧରେ ଶିଶୁସାହିତ୍ୟ ଲେଖିବାପାଇଁ କଲମ ଚାଳନା କଲେ । ଗୋଦାବରୀଶ ଓ ଜଗନ୍ନାଥଙ୍କ ଅବଦାନ ହେଲା 'ରଞ୍ଜିତଶତମାଳା' ଅନ୍ତର୍ଗତ ଡଜନାଧିକ ବହି, ବାସୁଦେବଙ୍କର 'ଦମୟନ୍ତୀ' ଓ ବାଙ୍କନିଧିଙ୍କର 'ସୁନାପାହାଡ଼' । ମୁଁ ମଧ୍ୟ ଲେଖିଲି 'ପରଶୁରାମ', 'ଅଭିମନ୍ୟୁ', 'ଜନମେଜୟ', 'ସତୀ', 'ଋଷିକଥା' ୧ମ ଓ ୨ୟ ଭାଗ ଓ 'ପୁରାଣକାହାଣୀ' ୧ମ ଓ ୨ୟ ଭାଗ । ଏହିସବୁ ଶିଶୁପ୍ରିୟ ପୁସ୍ତକ ପଛକୁପଛ କ୍ରମପର୍ଯ୍ୟାୟରେ ବାହାରିପଡ଼ିବା ଦ୍ୱାରା ଶିଶୁସାହିତ୍ୟର ଦୁର୍ଭିକ୍ଷ ଘୁଞ୍ଚିବାର ଆଦିପର୍ବ ଆରମ୍ଭ ହୋଇଗଲା ।

ମୁଁ ନର୍ମାଲ ସ୍କୁଲରେ ଛାତ୍ରରୂପେ ଯୋଗଦେବାର ତିନିବର୍ଷ ପୂର୍ବରୁ ଅର୍ଥାତ୍ ୧୯୧୯ ମସିହାରେ ତତ୍କାଳୀନ ମାନ୍ଦ୍ରାଜପ୍ରଦେଶାଧୀନ ଗଞ୍ଜାମ ଜିଲାର ବ୍ରହ୍ମପୁର ସହରରେ 'ଷ୍ଟୁଡେଣ୍ଟସ୍ ଷ୍ଟୋର' (ଛାତ୍ର ଭଣ୍ଡାର) ନାମକ ଏକ ଷ୍ଟେସନାରି ଦୋକାନ ମୁଖ୍ୟତଃ ଓଡ଼ିଆ

ଛାତ୍ରଛାତ୍ରୀଙ୍କ ଉଦ୍ଦେଶ୍ୟରେ ପ୍ରତିଷ୍ଠିତ ହୋଇଥିଲା । ପଣ୍ଡିତ ଅକୁଳ ମିଶ୍ର କାବ୍ୟତୀର୍ଥ କଟକ ବାଲୁବଜାରର ସଙ୍ଗତ ଲେନ୍‌ରେ ପ୍ରଥମେ ଷ୍ଟେସନାରି ଦୋକାନଟିଏ ଆରମ୍ଭ କରିଥିଲେ, ଯାହା ଦୁଇ ତିନିବର୍ଷ ମଧ୍ୟରେ ଖୁବ୍ ଲାଭଜନକ ହେବାରୁ ୧୯୧୪ ମସିହାରେ ଓଡ଼ିଶାର ସର୍ବପ୍ରଥମ ଓଡ଼ିଆ ପୁସ୍ତକ ଦୋକାନ ତଥା ପ୍ରକାଶନ ସଂସ୍ଥା 'କଟକ ଟ୍ରେଡ଼ିଂ କମ୍ପାନୀ' ନାମ ଧାରଣ କରି ଯୌଥ ପ୍ରତିଷ୍ଠାନରୂପେ ବାଲୁବଜାର ସଦର ରାସ୍ତାରେ ପ୍ରତିଷ୍ଠିତ ହୋଇଥିଲା । ଷ୍ଟୁଡ଼େଣ୍ଟସ୍ ଷ୍ଟୋର୍‌ର ଉଦ୍ୟୋକ୍ତାବୃନ୍ଦ ଆକୁଳ ମିଶ୍ରଙ୍କ 'ଷ୍ଟେଟରୁ ଆରମ୍ଭି ବଡ଼କୁ ଗତି' ନୀତିକୁ ପୁରାପୁରି ଅନୁସରଣ କରି ସଫଳକାମ ହୋଇଥିଲେ । ଷ୍ଟୁଡେଣ୍ଟସ୍ ଷ୍ଟୋର୍ ଥିଲା ଖାଣ୍ଟି ଓଡ଼ିଆ ପ୍ରତିଷ୍ଠାନ । ଷ୍ଟେସନାରି ଦୋକାନଟି ଭଲ ଚାଲିବାରୁ କେତେ ବର୍ଷ ପରେ ତହିଁରେ ପୁସ୍ତକ ପ୍ରକାଶନ ଯୋଗ କରାଗଲା । ଷ୍ଟୋର୍‌ର ପରିଚାଳକଗଣ ଗଞ୍ଜାମ ଜିଲାର ପ୍ରାଥମିକ ସ୍କୁଲସମୂହରେ ଅଗତ୍ୟା ତେଲୁଗୁ ଭାଷା ମାଧ୍ୟମରେ ଶିକ୍ଷାପାଉଥିବା ଓଡ଼ିଆ ଛାତ୍ରଛାତ୍ରୀମାନଙ୍କପାଇଁ କେତେକ ସରଳ ଓଡ଼ିଆ ପୁସ୍ତକ ଛାପିବାର ଯୋଜନା ସଫଳତାର ସହିତ କାର୍ଯ୍ୟକାରୀ କଲେ । ତାହାର ଫଳରେ ରାମଚନ୍ଦ୍ର ଆଚାର୍ଯ୍ୟଙ୍କ ଛବିଭରା ଦ୍ଵିରଙ୍ଗ 'ଅକ୍ଷର ଶିକ୍ଷା', ଦାମୋଦର ମିଶ୍ରଙ୍କ 'ଗୋପଲୀଳା' ଓ ଉଦୟନାଥ ଷଡ଼ଙ୍ଗୀଙ୍କ 'ଓଡ଼ିଶାର ଇତିହାସ କଥା' ବହି ତିନୋଟି ବେଶ୍ ପରିପାଟୀର ସହିତ ପ୍ରକାଶିତ ହୋଇପାରିଥିଲା । ଅବଶ୍ୟ ଏଗୁଡ଼ିକ ବାହାରିବା ପୂର୍ବରୁ ନୀଳକଣ୍ଠ ରଥ ଓ ନିତ୍ୟାନନ୍ଦ ବହିଦାରଙ୍କର କେତେ-ଟିଣ୍ଡି କାବ୍ୟ ଏବଂ ରାମଚନ୍ଦ୍ର ଆଚାର୍ଯ୍ୟଙ୍କର କେତେକ ଗଦ୍ୟପୁସ୍ତକ ଉକ୍ତ ଷ୍ଟୋର୍‌ଦ୍ଵାରା ପ୍ରକାଶିତ ହୋଇସାରିଥିଲା । କିନ୍ତୁ ଉଲ୍ଲିଖିତ ସାହିତ୍ୟ ପୁସ୍ତକଗୁଡ଼ିକର କାରବାର ୧୯୨୭ ଆରମ୍ଭ ପର୍ଯ୍ୟନ୍ତ ସେହି ଗଞ୍ଜାମ ଜିଲାର ସୀମା ମଧ୍ୟରେ ହିଁ ଆବଦ୍ଧ ରହିଥିଲା ।

## (ଚ) 'ବିଲ୍ଵମଙ୍ଗଳ'ର ସଙ୍ଗୀତରଚନା—

କୌଣସି ବିଶ୍ଵସ୍ତ ସୂତ୍ରରୁ 'ବିଲ୍ଵମଙ୍ଗଳ'ର ପ୍ରଶଂସା ଶୁଣିପାରି ଷ୍ଟୁଡ଼େଣ୍ଟସ୍ ଷ୍ଟୋର୍‌ର ପାରଖୀ ଅଂଶୀଦାର ପ୍ରଡମଧ୍ୟ ଗୋପୀନାଥ ଦାସ ୧୯୨୩ ମସିହା ଅଗଷ୍ଟ ମାସରେ ନର୍ମାଲ୍ ସ୍କୁଲ ହଷ୍ଟେଲ୍‌କୁ ଆସି ମୋର ଅତିଥି ହୋଇଥିଲେ । ତରୁଣ ଲେଖକଟିଏ ପାଇଲେ ତାଙ୍କର ଆନନ୍ଦ-ସାଗର ବେଳା ବୁଡ଼ାଇ ଉଚ୍ଛୁଳିଉଠେ । ସ୍ନେହାକ୍ତ ବ୍ୟବହାରରେ ଓ ମଧୁମଖା ଆଳାପରେ ଅପରିଚିତଙ୍କୁ ଦଣ୍ଡକେ ସୁପରିଚିତରେ ପରିଣତ କରି ଆପଣେଇ ନିଅନ୍ତି ସେ । ଚମତ୍କାର ଲୋକ । ଅସୀମ ବନ୍ଧୁପ୍ରୀତି । ମୁଗ୍ଧ ହେଲି ମୁଁ । ମୋ ପାଖକୁ ଆସିବାର ଉଦ୍ଦେଶ୍ୟ ପଚାରିଲି । ହସି ହସି ଉତ୍ତରିଲେ ସେ, "ମୁଁ ଗୋଟାଏ ଲୁଟେରା, ଆପଣଙ୍କ ବେତପେଡ଼ାରୁ ଜବରଦସ୍ତି 'ବିଲ୍ଵମଙ୍ଗଳ' କପି ଲୁଟିନେବାକୁ ଆସିଛୁ ।" କହୁଁ କହୁଁ ମୋ ବେତପେଟରାକୁ ଫିଟାଇ 'ବିଲ୍ଵମଙ୍ଗଳ'ର ପାଣ୍ଡୁଲିପିଟି କରଗତ କରିନେଲେ ।

ଜାଣିବାର କଥା ଯେ, ସେପର୍ଯ୍ୟନ୍ତ ଟ୍ରଙ୍କ, ସୁଟ୍‌କେସ୍ କି ଆଟାଚି କିଛୁ କଟକ ବଜାରକୁ ଆସିନଥାଏ । ମାରୁଆଡ଼ପଟିର ପୂର୍ବପଟ ଶେଷମୁଣ୍ଡରେ ତିନି ଚାରିଟା ପେଟରା ଦୋକାନ

ଥାଏ । ସେଠି ଛୋଟରୁ ବଡ଼ ପର୍ଯ୍ୟନ୍ତ ଭଳିକି ଭଳି ଡିଜାଇନ୍‌ର ବେତନିର୍ମିତ ପେଟରିମାନ ସଦାବେଳେ ବିକ୍ରୟାର୍ଥ ଗଚ୍ଛିତ ଥାଏ । ବିଭା, ପୁଆଣି ଆଦି ନ୍ୟାସ୍ତନିମିତ୍ତ ଓ ଅନ୍ୟାନ୍ୟ ଘରୋଇ କାର୍ଯ୍ୟପାଇଁ ସବୁ ଅଞ୍ଚଳର ଲୋକେ ସେହିଠାରୁ ହିଁ ପସନ୍ଦମୁତାବକ ପେଟରି କିଣିଥା'ନ୍ତି ।

ସେହି ପାଣ୍ଡୁଲିପିଟି ଚଉଷଠି-ପାଉଣ୍ଡିଆ ଉତ୍କୃଷ୍ଟତମ ସ୍ୱିଡ଼ିଶ୍ ଆଇଭରି-ଫିନିଶ୍ ପେପର୍‌ରେ ପୂର୍ଣ୍ଣପୃଷ୍ଠା କେତେକ ହାଫ୍‌ଟୋନ୍ ଛବିସଜ୍ଜା ସହ ମୁଦ୍ରିତ ହେବାଲାଗି ଷ୍ଟୋର୍ କର୍ତ୍ତୃପକ୍ଷଙ୍କ କର୍ତ୍ତୃକ କଟକ ଉତ୍କଳ ସାହିତ୍ୟ ପ୍ରେସ୍‌କୁ ବରାଦ ଦିଆଯାଇଥିଲା, ଯାହା ଅନ୍ୟ କୌଣସି ଓଡ଼ିଆ ପୁସ୍ତକର ଭାଗ୍ୟରେ ଏପର୍ଯ୍ୟନ୍ତ ଘଟିନାହିଁ କି ଭବିଷ୍ୟତରେ ଘଟିବାର ମଧ୍ୟ ସମ୍ଭାବନା ନାହିଁ । ୧୯୨୫ ମସିହାରେ 'ବିଲ୍ୱମଙ୍ଗଳ' ମୁଦ୍ରାଯନ୍ତ୍ର-ଗର୍ଭରୁ ମୁକ୍ତିଲାଭ କରି ବହି ବଜାରରେ ଆତ୍ମପ୍ରକାଶ କଲା । ଉନ୍ନତ ମାର୍ଜିତ ରୁଚିର ଭାଷା-ଭାବ-ସମନ୍ୱିତ ଏହି ଗଦ୍ୟକାବ୍ୟଟି ତତ୍କାଳୀନ ମଧୁସୂଦନୀୟ ଗଦ୍ୟଶୈଳୀର ଶେଷ ଶ୍ରେଷ୍ଠ କୃତିରୂପେ ବିଦ୍ୱଜ୍ଜନତାର ସ୍ୱୀକୃତି ଅର୍ଜନ କରି ଓଡ଼ିଆ ସାହିତ୍ୟର ଇତିହାସରେ ନିଜର ସ୍ୱତନ୍ତ୍ର ଆସନ ପ୍ରତିଷ୍ଠିତ କରିଯାଇଛି ।

'ବିଲ୍ୱମଙ୍ଗଳ'ର ହୀରକ ଜୟନ୍ତୀ ବର୍ଷ ୧୯୮୨ରେ ଶେଷ ହୋଇଯାଇଛି, କଳିଷଠା ଷାଠିଏ ବୟସ ଉତ୍ତୀର୍ଣ୍ଣ ହୋଇ ସେ ସେହି ୧୯୮୨ ଶେଷାର୍ଦ୍ଧରେ ଏକଷଠିକି ଲମ୍ଫ ଦେଇଛି । ସୌଭାଗ୍ୟର କଥା ଏହି ଯେ, ଏଯାବତ୍ କାଳ ତାର ମର୍ଯ୍ୟାଦା ଉପରକୁ କଣିକାଏ ସୁଦ୍ଧା ଧୂଳି ବା ମଳି ଫିଙ୍ଗିପାରି ନାହିଁ । ତାର ଭାଗ୍ୟଚକ୍ରରେ ଏ ସୌଭାଗ୍ୟ ଯୋଗର ସୀମା କେତେ ଦୂର ଯାଏ ଅଛି, ତାହା ପରମଜ୍ୟୋତିଷିଣୀ ସେହି ଭଗବତୀ ଉତ୍କଳବୀଣାପାଣିଙ୍କୁ କେବଳ ଜଣା ।

ଏହି 'ବିଲ୍ୱମଙ୍ଗଳ' ତତ୍କାଳୀନ ଆନ୍ଧ୍ର ବିଶ୍ୱବିଦ୍ୟାଳୟ-ଅଧୀନସ୍ଥ ହାଇସ୍କୁଲସମୂହର ଓଡ଼ିଆ ଛାତ୍ରଛାତ୍ରୀମାନଙ୍କ ଏସ୍. ଏସ୍. ଏଲ୍. ସି. (ମାଟ୍ରିକୁଲେସନ୍) ପରୀକ୍ଷାପାଇଁ ବାଧ୍ୟତା-ମୂଳକ ପାଠ୍ୟପୁସ୍ତକ ଭାବରେ ନିର୍ବାଚିତ ହୋଇ ବହୁ ବର୍ଷ ଚାଲିଥିଲା । କିନ୍ତୁ ବିହାର-ଓଡ଼ିଶା ପ୍ରଦେଶର 'ପାଠ୍ୟପୁସ୍ତକ ନିର୍ବାଚନ କମିଟି'କୁ ପ୍ରକାଶକ ଷ୍ଟୁଡେଣ୍ଟସ୍ ଷ୍ଟୋର୍ ଲଗ ଲଗ ଦୁଇଥର 'ବିଲ୍ୱମଙ୍ଗଳ' ପଠାଇଥିଲେହେଁ ତାହା ଉକ୍ତ କମିଟିଦ୍ୱାରା ମାଟ୍ରି-କୁଲେସନ୍ କ୍ଲାସ୍‌ର ପାଠ୍ୟପୁସ୍ତକରୂପେ ନିର୍ବାଚିତ ହେଲା ନାହିଁ । ନିର୍ବାଚନ କମିଟିର କାର୍ଯ୍ୟାଳୟ ଥାଏ ପାଟନା ସହରରେ । ତାର ସେକ୍ରେଟେରି ଥିଲେ କାଳିକାପ୍ରସାଦ ସିଂହ, ଆଇ. ସି. ଏସ୍. । ଓଡ଼ିଆ ପୁସ୍ତକମାନଙ୍କର ଭାଗ୍ୟନିୟନ୍ତ୍ରା ସର୍ବେକ୍ଷକ ସଭ୍ୟ ଥା'ନ୍ତି ତିନିଜଣ —ବିହାର-ଓଡ଼ିଶା କାଉନ୍‌ସିଲ୍‌ର ପୂର୍ବତନ ସଦସ୍ୟ ବାଗ୍ମୀ ବିଶ୍ୱନାଥ କର ଓ ତତ୍କାଳୀନ ସଦସ୍ୟ ପଣ୍ଡିତ ଗୋଦାବରୀଶ ମିଶ୍ର ଏବଂ କଟକ ରେଭେନ୍‌ସା କଲେଜର ଓଡ଼ିଆ ସାହିତ୍ୟ ବିଭାଗ ତଥା ସଂସ୍କୃତ ସାହିତ୍ୟ ବିଭାଗର ମୁଖ୍ୟ ପ୍ରଫେସର କାଶୀନାଥ ଦାଶ ।

ପୁସ୍ତକଟି ନିର୍ବାଚିତ ହୋଇପାରୁନଥିବାର ମୂଳରେ ଥିଲେ ବିଶ୍ୱନାଥ କର । ନିୟମାନୁଯାୟୀ ବହିର ଯୋଗ୍ୟତାକୁ ନିରପେକ୍ଷ ଭାବରେ ବିଚାର କରି ସର୍ବେକ୍ଷକ ସଭ୍ୟମାନେ ମୂଲ୍ୟାଙ୍କନ କରି ନମ୍ବର ଦେବା କଥା । ପଣ୍ଡିତ ମିଶ୍ର ଓ ପ୍ରଫେସର୍ ଦାଶ ନିୟମକୁ ଅକ୍ଷରେ ଅକ୍ଷରେ ପାଳନ କରି ନମ୍ବର ଦେଉଥିଲେ; କିନ୍ତୁ ବିଶ୍ୱନାଥବାବୁ ନମ୍ବର ନଦେଇ ଓ କୌଣସି ପ୍ରତିକୂଳ ମନ୍ତବ୍ୟ ବ୍ୟକ୍ତ ନକରି କେବଳ ଲେଖିପଠାଉଥିଲେ "ବର୍ତ୍ତମାନପାଇଁ ଏ ବହିଟିର ବିଚାର ସ୍ଥଗିତ ରହୁ" । କମିଟିର ପ୍ରେସିଡେଣ୍ଟ କାଳିକାପ୍ରସାଦ ସିଂହ ବିହାର-ଓଡ଼ିଶା କାଉନ୍‌ସିଲ୍‌ର ପୂର୍ବତନ ସଦସ୍ୟ ଓ ପାଟନାରେ ବହୁସମ୍ମାନିତ ବାଗ୍ମୀ ବିଶ୍ୱନାଥଙ୍କ ମତକୁ ସମ୍ମାନ ଦେବାକୁ ଯାଇ 'ବିଲ୍ୱମଙ୍ଗଳ'ର ନିର୍ବାଚନ ଦିଗରେ ବୈଧାନିକ ପଦକ୍ଷେପ ନେଇପାରୁନଥିଲେ ।

ପ୍ରକାଶକ ସଂସ୍ଥା ହତୋଦ୍ୟମ ନହୋଇ ପରବର୍ତ୍ତୀ ବର୍ଷ ପୁଣି ଥରେ ବହିଟି ପଠାଇଲେ ଉକ୍ତ ପାଠ୍ୟପୁସ୍ତକ ନିର୍ବାଚନ କମିଟିଙ୍କୁ । ଏଥର ଗୋଦାବରୀଶବାବୁ ଓ କାଶୀନାଥ-ବାବୁ ଏକଜୁଟ ହୋଇ ବିଶ୍ୱନାଥବାବୁଙ୍କ ପାଖକୁ ଗଲେ ଏବଂ 'ବିଲ୍ୱମଙ୍ଗଳ'ର ନିର୍ବାଚନ ବିଚାରଣା ସ୍ଥଗିତ ରଖିବାକୁ ସେ ବାରମ୍ବାର କାହିଁକି ମତ ଦେଉଛନ୍ତି, ଦୟାପୂର୍ବକ ତାହାର କାରଣ ପ୍ରକାଶ କରିବାକୁ ନିବେଦନ କଲେ ।

ଏବେ ବିଶ୍ୱନାଥବାବୁ ଅନ୍ତର୍ନିହିତ ଗୂଢ଼ କାରଣଟି ଫିଟାଇ କହିଲେ, "ଜ୍ଞାତି ସମ୍ପର୍କରେ କୃଷ୍ଣ ମୋର ଭ୍ରାତୃଷ୍ପୁତ୍ର । ବାଲ୍ୟ ବୟସରୁ ତା'ଠାରେ ଥିବା ପ୍ରତିଭାର ସ୍ଫୁରଣ ମୁଁ ଲକ୍ଷ୍ୟ କରିଆସୁଛି । ଏଣୁ ମୁଁ ତା' କଲମରୁ ବହୁତ କିଛି ଆଶା କରେଁ । ଏ 'ବିଲ୍ୱମଙ୍ଗଳ'ଟି ତାର ଷୋଳ ବର୍ଷ ବୟସ ପୂରିବା ବେଳର ରଚନା—ତରୁଣ ଜୀବନର ପ୍ରଥମ ସାହିତ୍ୟିକ କୃତି । ମାଟ୍ରିକ୍ ଶେଷ ବର୍ଷରେ ପଢ଼ୁଥିବା ଛାତ୍ରଛାତ୍ରୀଙ୍କ ମଧ୍ୟରୁ ଅଧିକାଂଶଙ୍କର ବୟସ ଷୋଳରୁ ଅଧିକ । ଏ ବହିଟି ଯଦି ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ମାଟ୍ରିକୁଲେସନ୍‌ର ପାଠ୍ୟ ହୋଇଯାଇଥାନ୍ତା, ତାହାହେଲେ ଗର୍ବରେ ଫୁଲି ତାର କୁଣ୍ଡେମୋଟ ହୋଇଯାଇ ନଥା'ନ୍ତା କି ? ଗର୍ବ ହିଁ ପତନକୁ ଆବାହନ କରିଆଣେ । ମୁଁ ସେଥିପାଇଁ ତାକୁ କଡ଼େ କଡ଼େ ଜଗିଛି । ମୋ 'ଉତ୍କଳ ସାହିତ୍ୟ'କୁ ସେ ଯେତେ ଲେଖା ପଠାଇଲାଣି, ସବୁଗୁଡ଼ିକର ପ୍ରକାଶ ଯୋଗ୍ୟତା ଅଛି; ମୁଁ କିନ୍ତୁ ତହିଁରୁ ଗୋଟିଏ ହେଲେ ପ୍ରକାଶପାଇଁ ନିର୍ବାଚନ କରିନାହିଁ । ମୁଁ ଯେ ଏପର୍ଯ୍ୟନ୍ତ 'ବିଲ୍ୱମଙ୍ଗଳ'କୁ ନିର୍ବାଚନ କରିବାର ପକ୍ଷପାତୀ ନଥିଲି, ତା' ମୂଳରେ ଏହାହିଁ ଏକମାତ୍ର କାରଣ । ମୋର ଏହି ପ୍ରତିକ୍ରିୟା କେବଳ ତାହାର ଭବିଷ୍ୟତ୍ ମଙ୍ଗଳ ପାଇଁ ।"

ଜିଜ୍ଞାସୁ ବନ୍ଧୁଦ୍ୱୟ ବିସ୍ମୟବିହ୍ୱଳ ହୋଇଗଲେ ବାସ୍ତବ-ହିତକାମୀ ଦୂରଦର୍ଶୀ ବିଶ୍ୱନାଥଙ୍କର ଏହି ପ୍ରଜ୍ଞାବାଣୀ ଶୁଣି । ଯାହାହେଉ, ଏଥର ଗୋଟାଏ ସୁପ୍ରବୃତ୍ତି ସାଲିସ ହୋଇପାରିଲା । ବରିଷ୍ଠ ସର୍ବେକ୍ଷକ ବିଜ୍ଞବର ବିଶ୍ୱନାଥଙ୍କର ସମ୍ମତିଗତ ମୂଲ୍ୟାବଧାରଣ ଫଳରେ 'ବିଲ୍ୱ-ମଙ୍ଗଳ' ତାର ନ୍ୟାଯ୍ୟ ଆସନ ପାଇ ମାଟ୍ରିକୁଲେସନ୍ ପରୀକ୍ଷାର୍ଥୀମାନଙ୍କର ଅବଶ୍ୟ ପାଠ୍ୟ-

ରୂପେ ନିର୍ବାଚିତ ହେଲି । (ପ୍ରଫେସର କାଶୀନାଥ ଦାଶ ପାଟନାରେ ବସିଥିବା ବିହାର-ଓଡ଼ିଶା ଟେକ୍ସ୍ଟ ବୁକ୍ କମିଟି ଅଧିବେଶନର ଉଦ୍‌ଘାଟନରେ କଟକ ଫେରିଲା ପରେ ପ୍ରସଙ୍ଗ କ୍ରମେ ଉଲ୍ଲିଖିତ ରହସ୍ୟମୟ ବିବରଣୀଟି ମୋ ଆଗରେ ବ୍ୟାଖ୍ୟାନ କରିଥିଲେ ।)

ଏହି ଘଟଣା ପରେ ପରେ 'ଉତ୍କଳସାହିତ୍ୟ' ମାସିକ ପତ୍ରିକାରେ ମୋ ଲେଖା ବାହାରିବାର ପ୍ରତିବନ୍ଧକ ଦୂର ହୋଇଗଲା । ବସ୍ତୁତଃ ସମ୍ପାଦକ ବିଶ୍ୱନାଥଙ୍କ ଫାଇଲ୍‌ରେ ପଡ଼ିରହିଥିବା ମୋ ପୂର୍ବପ୍ରେରିତ କବିତାଦି ଲେଖା ଗୋଟିକ ପରେ ଗୋଟିଏ ପ୍ରକାଶ ପାଇବାକୁ ଲାଗିଲା । ପରିଣାମରେ 'ଉତ୍କଳସାହିତ୍ୟ'ର ସ୍ଥାୟୀ ଲେଖକ ତାଲିକାରେ ମୋ ନାମଟି ସଂଯୋଜିତ ହେବାର ସୁଯୋଗ ମଧ୍ୟ ମିଳିଥିଲା । କୌଣସି କୌଣସି ସଂଖ୍ୟାପାଇଁ ମୋ ପାଖରୁ କବିତା ଯିବାରେ ବିଳମ୍ବ ଘଟିଲେ ସମ୍ପାଦକ ଅଧୀର ହୋଇଯାଇ ବିଶ୍ୱସ୍ତ ପିଅନ ଲଛମନ ସିଂହଙ୍କୁ ବରଗି ଇପ୍‌ସିତ ଲେଖାଟି ଆଦାୟ କରିନିଅନ୍ତି । ଗଭୀର କୃତଜ୍ଞତାର ସହିତ ଆଜି ସ୍ୱୀକାର କରୁଛି ଯେ ପୂଜ୍ୟ ବିଶ୍ୱନାଥଙ୍କର ଆଶୀର୍ବାଦ ପିଲା ବୟସରେ ମୁଁ ପଦ୍ୟ ଲେଖିବା ଦିନୁଁ ମୋ ଉପରେ ବର୍ଷି ନ ଥିଲେ ସାହିତ୍ୟିକ ଓ କବି ଜୀବନର ସ୍ୱପ୍ନ ଏ ଜନ୍ମରେ ଆକାଶକୁସୁମରେ ହିଁ ପରିଣତ ହୋଇଥା'ନ୍ତା ।

## (ଛ) ମାତୃଭାଷାର ମର୍ଯ୍ୟାଦା—

ଜନ୍ମଦାତ୍ରୀ ମାତା ଓ ଭୂତଧାତ୍ରୀ ମାତୃଭୂମି ଅମର ଯେପରି ଜନନୀ, ମାତୃଭାଷା ମଧ୍ୟ ସେହିପରି ଆଉ ଏକ ଜନନୀ । ନିଜକୁ ବଡ଼ କରିବାକୁ ହେଲେ ତା' ପୂର୍ବରୁ ନିଜ ମାତୃଭାଷାକୁ ବଡ଼ କରିବା ଆବଶ୍ୟକ । ମାତୃଭାଷାର ମର୍ଯ୍ୟାଦା ଯେତେ ବଢ଼ାଇବ, ନିଜର ମର୍ଯ୍ୟାଦା ସେତେ ବଢ଼ିବ । ଜାତିର ଉନ୍ନତି ଓ ମର୍ଯ୍ୟାଦା ତାର ଭାଷାର ଉନ୍ନତି ଓ ମର୍ଯ୍ୟାଦା ଉପରେ ନିର୍ଭର କରେ । ମାତୃଭାଷାଭକ୍ତ ଆଶାବାଦୀ କବି ଦିନେ ଗାଇଥିଲେ—

''ପାହିଲାଣି ଘୋର    ତାମସୀ ଯାମିନୀ,
ଫୁଟିବ ଉତ୍କଳ-    ଭାଷା-କମଳିନୀ ।''

ଦୁଃଖର କଥା, କବିଙ୍କର ସେହି ଆଶା ପୂର୍ଣ୍ଣହେବାକୁ ଆହୁରି ଦୀର୍ଘସମୟ ବାକି ଅଛି । ଏ ଦିଗରେ ପ୍ରତିବେଶୀ ବଙ୍ଗୀୟଗଣ ସମଧିକ ସଚେତନ ଏବଂ ସେମାନଙ୍କ ଭାଷା ଅଧିକତର ପ୍ରଗତିବନ୍ତ ଓ ସମୁନ୍ନତ । ସେହି ଅନୁପାତରେ ବଙ୍ଗଳା ସାହିତ୍ୟ ମଧ୍ୟ ଅତି ବ୍ୟାପକ ଓ ବିପୁଳ ଗତିଶୀଳ ଏବଂ ତାର ପାଠକସଂଖ୍ୟା ଅପରିମେୟ । ଅନ୍ୟ ଭାଷାଭାଷୀଙ୍କ ସହିତ କଥାବାର୍ତ୍ତାବେଳେ ବଙ୍ଗାଳୀମାନେ ନିଜ ମାତୃଭାଷାର ଟେକକୁ କେବେହେଲେ କ୍ଷୁଣ୍ଣ କରନ୍ତି ନାହିଁ । ବଙ୍ଗଳା ଭାଷା ଛଡ଼ା ଅନ୍ୟ କୌଣସି ଭାଷାରେ କହି ଜିହ୍ୱାକୁ ଅଜାଣତରେ ଦୋଷଦୁଷ୍ଟ କରିବା ସେମାନଙ୍କ ଜାତିଆଣ ଧର୍ମର ସମ୍ବିଧାନ ଅନୁଯାୟୀ ଏକ ଗୁରୁ ଅପରାଧ ରୂପେ ଗଣ୍ୟ ହୋଇଥାଏ । ଆମ ଶିକ୍ଷିତ ଓଡ଼ିଆପୁଏ କିନ୍ତୁ ଏ ଦିଗରେ ଆଦୌ ସଚେତନ ନୁହନ୍ତି । ଏମାନେ ଭାରତର ଯେକୌଣସି ପ୍ରାନ୍ତୀୟ ଭାଷାଭାଷୀଙ୍କ ସହିତ ସମ୍ଭାଷଣ କଲାବେଳେ ତତ୍ତତ୍ ଭାଷାରେ ବ୍ୟୁତ୍ପନ୍ନ ବୋଲି ଦେଖାଇହୋଇ ନିଜକୁ ଖୁବ୍ ଗର୍ବିତ ମନେ-

କରିଥାନ୍ତି; କିନ୍ତୁ ଏହା ଯେ ସ୍ୱାଭିମାନନାଶକ ହୀନମ୍ମନ୍ୟତାର ସ୍ପଷ୍ଟ ପରିଚାୟକ ଓ ଗୁରୁତର ଭାବରେ ମାତୃଭାଷା ଓଡ଼ିଆର ସମ୍ମାନହାନିକାରକ, ଏକଥା ଆଦୌ ଭାବିପାରନ୍ତି ନାହିଁ । ପୁଣି, ତୁଳନାତ୍ମକ ଭାବରେ ବିଚାର କଲେ ଜଣାଯିବ ଯେ, ଏବେ ଗତିଶୀଳ ହେବାକୁ ଆରମ୍ଭ କରିଥିବା ଆମ ଓଡ଼ିଆ ସାହିତ୍ୟ ବଙ୍ଗଳା ସାହିତ୍ୟର ବହୁ ପଛରେ ପଡ଼ିଛି ଏବଂ ବିଂଶ ଶତାବ୍ଦୀର ଓଡ଼ିଆ ପ୍ରକାଶନଗୁଡ଼ିକର ପ୍ରକୃତ ଚାହିଦା ଓ ବିସ୍ମିତ ପାଠକ ମଧ୍ୟ ସଂଖ୍ୟାନରେ ନିତାନ୍ତ ନଗଣ୍ୟ । ଏହି କାରଣରୁ ଆମ ଜାତୀୟତାବାଦୀ ସ୍ୱଭାବକବି ଗଙ୍ଗାଧର ମେହେର ମର୍ମାନ୍ତିକ ବେଦନାରେ ସନ୍ତୁଳ ହୋଇ ଖେଦଭରେ ଶିକ୍ଷିତ ସମ୍ପ୍ରଦାୟରେ ଜାତୀୟ ଚେତନାର ବିକାଶ ଘଟିବା ଆଶାରେ ଲେଖିଯାଇଛନ୍ତି—

"ମାତୃଭାଷା ପୋଥି   ଛୁଇଁବାକୁ କରେ
ଅନ୍ୟ କେଉଁ ଜାତି   ଲଜ୍ଜା ବୋଧ କରେ ?"

× × ×

"ମାତୃଭୂମି ମାତୃ-   ଭାଷାରେ ମମତା
ଯା ହୃଦେ ଜନମି ନାହିଁ
ତାକୁ ଯେବେ ଜ୍ଞାନି-   ଗଣରେ ଗଣିବା
ଅଜ୍ଞାନ ରହିବେ କାହିଁ ?"

ନର୍ମାଲ୍ ସ୍କୁଲରେ ଅଧ୍ୟୟନ କଲି ଦିନଠାରୁ ମୋର ମାତୃଭାଷା ପ୍ରତି ଶ୍ରଦ୍ଧା, ପ୍ରୀତି, ସମ୍ମାନ ସ୍ୱଭାବତଃ ବଢ଼ିଯାଇଥିଲା । ଗଙ୍ଗାଧର, ଚିନ୍ତାମଣି ମହାନ୍ କବିଦ୍ୱୟଙ୍କ ଜାତିଜାଗରଣ-ଉଦ୍‌ବୋଧକ ବହୁ ଛନ୍ଦ ଏ ଦିଗରେ ମୋ ହୃଦୟରେ ପ୍ରେରଣା ସଞ୍ଚାରିବାର ପ୍ରଧାନ ଉତ୍ସ ହୋଇଥିଲା । ଏତଦ୍‌ବ୍ୟତୀତ, ଜ୍ଞାନଦୁର୍ଗରୂପେ ପ୍ରଥିତ ଉକ୍ତ ବିଦ୍ୟାପୀଠର ଶିକ୍ଷୟିତାମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ସାହିତ୍ୟାଲୋଚକ ଓ ଗ୍ରନ୍ଥକାର, ଯଥା—କୁଳମଣି ଦାଶ, କୃଷ୍ଣଚନ୍ଦ୍ର ସେନଗୁପ୍ତ, ଆର୍ତ୍ତତ୍ରାଣ ଶତପଥୀ, ଜଗନ୍ନାଥ ତ୍ରିପାଠୀ, ମୃତ୍ୟୁଞ୍ଜୟ ରଥ, ଜଗନ୍ନାଥ ମହାପାତ୍ର, ଚନ୍ଦ୍ରମୋହନ ମହାରଣା, ଦାଶରଥି ପାଣିଗ୍ରାହୀ । ମୁଁ ପ୍ରତ୍ୟକ୍ଷଭାବରେ ଏମାନଙ୍କ ନିକଟ-ସଂସ୍ପର୍ଶରେ ଆସିବାର ସୁଯୋଗ ପାଇଥିବାରୁ ମାତୃଭାଷାନୁରକ୍ତ ସମ୍ବନ୍ଧରେ କେତେକ ଉପଦେଶାତ୍ମକ ଅଙ୍ଗେ-ନିଭା କାହାଣୀ ମଧ୍ୟ ସେମାନଙ୍କ ତୁଣ୍ଡରୁ ଶୁଣିଥିଲି । ସେଥିରୁ ମନେ-ଥିବା ଗୋଟିଏ କାହାଣୀ ଏଠାରେ ଉଲ୍ଲେଖ କରୁଛି, ଯାହାର ଉଦ୍‌ଗାତା ଥିଲେ ଆଦର୍ଶବାଦ-ପ୍ରବକ୍ତା ସେନଗୁପ୍ତ ମହୋଦୟ ।

ଏହି କୃଷ୍ଣଚନ୍ଦ୍ର ସେନଗୁପ୍ତ କଟକ ସବ୍‌ଡିଭିଜନ-ଅନ୍ତର୍ଗତ କେରୁବଙ୍ଗାଲା ବହୁଳ ମାହାଙ୍ଗା ଗ୍ରାମର ପୁରୁଷାନୁକ୍ରମିକ ସ୍ଥାୟୀ ଅଧିବାସୀ ଥିଲେ । ସ୍ନାତକ (ଗ୍ରାଜୁଏଟ୍) ହେଲା-ପରେ ସେ ସମ୍ମାନଜନକ ଶିକ୍ଷକ ପଦରେ ନିଯୁକ୍ତ ପାଇଥିଲେ ଏବଂ ପ୍ରାୟ ସମଗ୍ର ଚାକିରିକାଳ କଟକରେ ହିଁ ଅବସ୍ଥାପିତ ହୋଇ ପରିଶେଷରେ କଟକ ସେକେଣ୍ଡାରି ଟ୍ରେନିଂ ସ୍କୁଲର (ଘଟାନ୍ତରପ୍ରାପ୍ତ ନର୍ମାଲ୍ ସ୍କୁଲର) ପ୍ରଧାନଶିକ୍ଷକ ପଦରୁ ଅବସର ଗ୍ରହଣ କରିଥିଲେ ।

ଓଡ଼ିଶା ମାଟିରେ ଜନ୍ମି, ଓଡ଼ିଶା ପାଣି ପବନରେ ବଢ଼ି, ସ୍କୁଲଠୁଁ କଲେଜଯାଏ ଓଡ଼ିଆ ପିଲାଙ୍କ ସାଙ୍ଗରେ ଓଡ଼ିଆ ଭାଷାରେ ଶିକ୍ଷାପାଇବା ଫଳରେ କୃଷ୍ଣଚନ୍ଦ୍ର ବଙ୍ଗଳା ହାତ-ଲେଖା ହରଫ ଆଦୌ ଲେଖି ଜାଣିନଥିଲେ କି ବଙ୍ଗଳା ଭାଷାରେ ଲେଖା ଚିଠିପତ୍ରାଦିର ଛଟା ହରଫ ପଢ଼ି ଶିଖି ନଥିଲେ । କେବଳ ଛପା ବହିର ବଙ୍ଗଳା ଅକ୍ଷରତକ ଭଲଭାବରେ ଆୟତ୍ତ କରିଥିଲେ । ଶୁଦ୍ଧ ବଙ୍ଗୀୟ ଉଚ୍ଚାରଣ ସହିତ ସାଧୁ ବଙ୍ଗଳା ଭାଷାରେ ସ୍ୱଚ୍ଛନ୍ଦ ଗତିରେ ଅଧିକ ସମୟ କଥା କହିପାରିବା ତାଙ୍କ ପକ୍ଷରେ ବଡ଼ ଆୟାସସାଧ୍ୟ ଥିଲା । ବଙ୍ଗଳା କଥ୍ୟ ଭାଷା ମଧ୍ୟ ତାଙ୍କର ଥିଲା ଅଗୋଚର । ସତର୍କତାର ସହିତ ଶତଚେଷ୍ଟା କଲେ ସୁଦ୍ଧା କଲିକତାର ଖାଣ୍ଟି ବଙ୍ଗାଳୀଙ୍କ ପରି ଅନାୟାସରେ କହିଯିବାର ପ୍ରୟାସ ତାଙ୍କର ଥିଲା ସ୍ୱପ୍ନାତୀତ ।

ସ୍ଥାନଭେଦରେ ବଙ୍ଗଭାଷାର ରୂପ ବିବିଧ ଏବଂ ତଦନୁଯାୟୀ ବଙ୍ଗୀୟ ଗୋଷ୍ଠୀ ମଧ୍ୟ ବିବିଧ । ପଶ୍ଚିମ-ବଙ୍ଗର ଭାଷା ମୌଳିକ ବଙ୍ଗଳା ଏବଂ ସେହି ଶୁଦ୍ଧ ଭାଷାଭାଷୀମାନଙ୍କୁ ପ୍ରକୃତ 'ବଙ୍ଗାଳୀ' ରୂପେ ଶ୍ରେଷ୍ଠତ୍ୱ ପ୍ରଦାନ କରାଯାଇଥାଏ । ପୂର୍ବ-ବଙ୍ଗ (ଆଧୁନିକ 'ବଙ୍ଗଳା ଦେଶ')ର ବଙ୍ଗୀୟ ଗୋଷ୍ଠୀ ସାମାଜିକ ଆଭିଜାତ୍ୟରେ ନ୍ୟୂନ ଶ୍ରେଣୀୟ ଏବଂ ସେମାନଙ୍କୁ ବଙ୍ଗଳାଭାଷାରେ 'ବାଙ୍ଗାଲ' ନାମରେ ଅଭିହିତ କରାଯାଇଛି । ପଶ୍ଚିମ-ବଙ୍ଗ ଓ ପୂର୍ବ-ବଙ୍ଗରୁ ଜୀବିକା ଉଦ୍ଦେଶ୍ୟରେ ଓଡ଼ିଶାକୁ ଆସି ଏଠାରେ ସ୍ଥାୟୀଭାବରେ ବସତିସ୍ଥାପନ କରିଥିବା 'ବଙ୍ଗାଳୀ' ଓ 'ବାଙ୍ଗାଲ'ମାନଙ୍କ ଗୋଷ୍ଠୀ 'କେରୁବଙ୍ଗାଳୀ' ନାମରେ ପରିଚିତ । ଓଡ଼ିଶାବାସୀ ଏହି ବଙ୍ଗୀୟମାନଙ୍କ ଭାଷା ବଙ୍ଗଳା ଓ ଓଡ଼ିଆ ଶବ୍ଦ ମିଶ୍ରିତ ଏକ ବିଚିତ୍ର ଖେଚୁଡ଼ି ଭାଷା । ଉଦାହରଣସ୍ୱରୂପ କୃଷ୍ଣଚନ୍ଦ୍ର ସେନଗୁପ୍ତଙ୍କର ଗୋଟିଏ ମୁଖୋକ୍ତି ନିମ୍ନରେ ଅବିକଳ ଉଦ୍ଧାର କରୁଛି, ଯାହା ମୁଁ ଟ୍ରେଡ଼ିଂ କମ୍ପାନୀରେ ଚାକିରି କଲାବେଳେ ସ୍ୱକର୍ଣ୍ଣରେ ଶୁଣିଥିଲି । ତାଙ୍କ ଗ୍ରାମର ନିମାଇଁଚରଣ ସେନଗୁପ୍ତ (ଡାକ ନାମ 'ହାଡ଼ବାବୁ') ବାଲୁବଜାରସ୍ଥ କଟକ ଟ୍ରେଡ଼ିଂ କମ୍ପାନୀର ବରିଷ୍ଠ କର୍ମଚାରୀ ଥାଇ କୃଷ୍ଣଚନ୍ଦ୍ର ସେନଗୁପ୍ତଙ୍କର ସାହେବଜାଦା ବଜାରସ୍ଥ ବାସଗୃହରେ ଅବସ୍ଥାନ କରୁଥିଲେ । କୃଷ୍ଣବାବୁ ପ୍ରତ୍ୟହ ସନ୍ଧ୍ୟାରେ ଚାକରପିଲାଟିକୁ ସାଙ୍ଗରେ ନେଇ ଟ୍ରେଡ଼ିଂ କମ୍ପାନୀ ହୋଇ ଚୌଧୁରୀବଜାର ହାଟ ପର୍ଯ୍ୟନ୍ତ ଯାଆନ୍ତି ପନିପରିବା ପ୍ରଭୃତି ସଉଦା କିଣିବା ଉଦ୍ଦେଶ୍ୟରେ । ଦିନେ ସେ ଟ୍ରେଡ଼ିଂ କମ୍ପାନୀରେ ଅଟକି ଏକାନ୍ତରେ ହାଡ଼ବାବୁଙ୍କୁ ସେଦିନର ଗୋଟିଏ ଘଟଣା ଦୁଃଖର ସହିତ ଜଣାଇଲେ ତାଙ୍କ କେରୁ ଭାଷାରେ—

> "ଓ ରେ ହତ୍‌ତି, ତୋକେ କି କହିବ ରେ ! ଓଇ କାଲିଆ ଷାଁଡ଼ଟା ଗିଡ଼୍‌ଗିଡ଼୍-ଗିଡ଼୍‌ଗିଡ଼୍ କରେ ଦୌଡ଼ିଏସେ ବାଡ଼େର୍ ଓପର୍ ଏମ୍‌ନି ଚଢ଼େ-ଗେଲ ଯେ ତୋର ବୌଦିର୍ ନତୁନ୍ କେନା କାପଡ଼୍‌ଟା ସାଙ୍ଗେ ସାଙ୍ଗ୍ ଫଡ଼୍‌ଫାଡ଼୍ ହୟେ ଫେଟେଗେଲ ।"

କୃଷ୍ଣଚନ୍ଦ୍ର ସେନଗୁପ୍ତଙ୍କର ପରିଣୟ ସମ୍ପାଦିତ ହୋଇଥିଲା କଲିକତାର ଏକ ଭଦ୍ର ବଙ୍ଗାଳୀ ପରିବାରର ଶିକ୍ଷିତା କନ୍ୟା ସହିତ । ବିବାହ ପରେ କୃଷ୍ଣଚନ୍ଦ୍ର ସସ୍ତ୍ରୀକ କଟକରେ ବାସକରୁଥାନ୍ତି । ଶ୍ୟାଳକଙ୍କଠାରୁ ଏକ ପରେ ଏକ କେତେଖଣ୍ଡ ଚିଠି ଆସିଲା, ସବୁଗୁଡ଼ିକ ବଙ୍ଗଳା ଛିଟା ଅକ୍ଷରରେ ଲେଖା । କୃଷ୍ଣବାବୁ ତାହା ପଢ଼ିବାକୁ ଅକ୍ଷମ ଥିବାରୁ ସ୍ତ୍ରୀଙ୍କୁ ଦିଅନ୍ତି । ସ୍ତ୍ରୀ ଯାହା ପଢ଼ନ୍ତି, ସ୍ୱାମୀ ତାକୁ ଖଣ୍ଡେ ସାଦା କାଗଜରେ ଓଡ଼ିଆ ହରଫରେ ଟିପି-ନିଅନ୍ତି ଏବଂ ଅବସରକ୍ରମେ ଚିଠିର ଉତ୍ତର ଲେଖନ୍ତି ଇଂରାଜୀ ଭାଷାରେ । ଏହି ପାଳି ଲାଗି-ରହିବା ଯୋଗୁଁ ପ୍ରତି ଥର ଉତ୍ତର ପଠାଇବାରେ ଅତିଶୟ ବିଳମ୍ବ ଘଟେ, ଯାହା ଫଳରେ ସ୍ମୃତକପ୍ରାପ୍ତ ଉତ୍କଣ୍ଠାକୁଳ ଶ୍ୱଶୁରାଳୟରୁ ତାଗିଦା ଆସିଯାଏ । 'ଜାମାଇବାବୁ' ବାରମ୍ବାର ଇଂରାଜୀ ଭାଷାରେ ଉତ୍ତର ଦେବାରୁ ଶ୍ୟାଳକ ମହାଶୟ ଅତ୍ୟନ୍ତ କ୍ଷୁବ୍ଧ ହୋଇ ଶେଷରେ ନିଜର ଅଭିଯୋଗ ଚିଠିରେ ଜଣାଇବାକୁ ବାଧ୍ୟ ହେଲେ, ଯାହାର ମାର୍ମିକ ତାତ୍ପର୍ଯ୍ୟ ଏହିପରି—

"ବଙ୍ଗାଳୀ ହୋଇ ଆପଣ ବିଦେଶୀ ଭାଷା ଇଂରାଜୀରେ ଚିଠି ଲେଖୁଛନ୍ତି କିପରି ? ନିଜ ମାତୃଭାଷା ପ୍ରତି ଅବଜ୍ଞା-ପ୍ରଦର୍ଶନ ଏବଂ ବିଜାତୀୟ ଭାଷା ପ୍ରତି ଅହେତୁକ ଅନୁରାଗ ନିତାନ୍ତ ଅସ୍ପୃହଣୀୟ ଓ ଆପତ୍ତିକର, ଯେହେତୁ ଏହା ନିଜ ଜାତୀୟତା ପ୍ରତି ବିଶ୍ୱାସଘାତକତା । ଏଠିକାର ବଙ୍ଗାଳୀ ସମ୍ପ୍ରଦାୟ ଏପ୍ରକାର ମାରାତ୍ମକ ଆଚରଣକୁ ମାତୃଦ୍ରୋହ ଅପରାଧ ବୋଲି ବିଚାର କରେ । ଏଥିପାଇଁ ସାଇଭାଇ, ବନ୍ଧୁବାନ୍ଧବଙ୍କ ଆଗରେ ଆମ ମୁଣ୍ଡ ଲଜ୍ଜାରେ ତଳକୁ ନଇଁଯାଉଛି । ଯୋଡ଼ହସ୍ତରେ ଅନୁରୋଧ କରୁଛୁ, ଆଉ ଇଂରାଜୀରେ ପତ୍ର ଲେଖିବେ ନାହିଁ । ଆମ ସମସ୍ତଙ୍କର ଦୃଢ଼ ବିଶ୍ୱାସ, ଆପଣଙ୍କ ସ୍ୱାକ୍ଷରାଙ୍କିତ ପରବର୍ତ୍ତୀ ପତ୍ରମାନ ନିଶ୍ଚୟ 'ସୋନାର ବାଂଲା'ର ସମ୍ମାନ ବଜାୟ ରଖିବ ।"

ଡାକ ପିଅନଠାରୁ ଖାମଖଣ୍ଡି ହସ୍ତଗତ ହେବାମାତ୍ରେ ପତ୍ନୀ ତା' ଭିତରୁ ଚିଠିଟି କାଢ଼ି ଉଲ୍ଲିଖିତ ବିଷୟବସ୍ତୁ ଆଦ୍ୟୋପାନ୍ତ ପଢ଼ିଗଲେ । କୃଷ୍ଣଚନ୍ଦ୍ର ଶ୍ୟାଳକଙ୍କ ଅଭିଯୋଗପତ୍ର ନିହିତ ପ୍ରଚ୍ଛନ୍ନ ଭବ୍ୟ ଭର୍ତ୍ସନା ଓ ଧୀରଧିକ୍କୃତିର ମଧୁଦଗ୍ଧ ଶରାଗ୍ରରେ ବିଦ୍ଧ ହେଲେ ଯେତିକି, ଅଶୁ ଆତ୍ମସଂଶୁଦ୍ଧିପାଇଁ ଉଦ୍‌ବୁଦ୍ଧ ଓ ବ୍ୟଗ୍ର ହୋଇଉଠିଲେ ତତୋଽଧିକ । ଉତ୍ତର ପ୍ରେରଣରେ ଯେତେ ବିଳମ୍ବ ଘଟୁ ପଛକେ ତତ୍‌ପ୍ରତି ଭ୍ରୂପାତ ନକରି ସପ୍ରୟୋନାସ୍ତି ଚେଷ୍ଟାପୂର୍ବକ ପକ୍ଷକ ମଧ୍ୟରେ ବଙ୍ଗଳା ଅକ୍ଷର ଲିଖନ ନିଶ୍ଚୟ ପୂର୍ଣ୍ଣମାତ୍ରାରେ ଅଭ୍ୟାସ କରିବେ ଏବଂ ବଙ୍ଗଳା ଲିପିରେ ସ୍ୱହସ୍ତଲିଖିତ ଉତ୍ତର ପ୍ରସ୍ତୁତ କରି ଅଭିଯୋକ୍ତା ବନ୍ଧୁଙ୍କ ନିକଟକୁ ପଠାଇବେ, ଯାହା ତାଙ୍କ ମନର ଅବଶୋଷ ଓ ବୈରୂଣ୍ୟକୁ ନିରସନ ଲାଗି କବର ଦେବ । ସତକୁ ସତ ଜାମାଇବାବୁଙ୍କର ଆଉ ଆତ୍ମଗ୍ଲାନିରେ ପଡ଼ିବାର ଅବସ୍ଥା ଆସିଲା ନାହିଁ । ସେ ନିଜ ପ୍ରତିଜ୍ଞାକୁ ଅନଧିକ ଦୁଇ ସପ୍ତାହ ମଧ୍ୟରେ ପରିପୂର୍ଣ୍ଣ କରି ଶ୍ୱଶୁରାଳୟର ପ୍ରତ୍ୟେକ ବ୍ୟକ୍ତିଙ୍କୁ, ଅଧିକନ୍ତୁ ଜୀବନସଙ୍ଗିନୀଙ୍କୁ ପରମ ଆପ୍ୟାୟିତ କରିଦେଲେ ।

ନର୍ମାଲ୍ ସ୍କୁଲର ମାନେଜିଂ କମିଟିର ବହୁ ବର୍ଷ ଧରି ସୁରେଧା ଥିଲେ 'ଉତ୍କଳସାହିତ୍ୟ'-ସମ୍ପାଦକ ବିଶ୍ୱନାଥ କର । ମାତୃଭାଷା ମର୍ଯ୍ୟାଦାବର୍ଦ୍ଧକ ଭାବରେ ଓଡ଼ିଆ ପୁଅରୂପେ ତାଙ୍କର ଯେଉଁ ଅଖଣ୍ଡ ପ୍ରତିଷ୍ଠା ଓ ଐତିହାସିକ ଖ୍ୟାତି ଥିଲା, ସେ ସମ୍ବନ୍ଧରେ ମୁଁ ଥିଲି ଉଣାଅଧିକେ ବେଶ୍ ଅବହିତ । ତାଙ୍କର ସେହି ଅନନ୍ୟସାଧାରଣ ଗୁଣ ଯେ ମୋ' ଜୀବନ ଉପରେ ପ୍ରଭୂତ ପ୍ରଭାବ ବିସ୍ତାର କରିଥିଲା, ଏହା ଅନସ୍ୱୀକାର୍ଯ୍ୟ । ତେଣୁ ବ୍ୟବସ୍ଥାପକ ଜୀବନରେ ବିଶ୍ୱନାଥ ଯେଉଁ ଚିରସ୍ମରଣୀୟ ଅମ୍ଳାନ ଦୃଷ୍ଟାନ୍ତ ଥାପି ଯାଇଛନ୍ତି, ତାହା ନିମ୍ନରେ ବିବୃତ କରୁଛି ।

ଇତିହାସପ୍ରସିଦ୍ଧ 'ବଙ୍ଗଭଙ୍ଗ' (୧୯୦୫ ଅକ୍ଟୋବର) ରାଜନୀତିକ ଆନ୍ଦୋଳନଜନିତ ବ୍ୟାପକ ଜନଅସନ୍ତୋଷର ସମୀକରଣପାଇଁ ଭାରତସମ୍ରାଟ୍ ପଞ୍ଚମ ଜର୍ଜ ଭାରତକୁ ଆଗମନ କରି ୧୯୧୧ ଡିସେମ୍ବର ୧୨ ତାରିଖର 'ଦିଲ୍ଲୀ ଦରବାର'ରେ ଯେଉଁ ପ୍ରକାଶ୍ୟ ଘୋଷଣା କଲେ, ତଦନୁଯାୟୀ ୧୯୧୨ ଅପ୍ରେଲ ପହିଲାଠାରୁ ପୂର୍ବ-ବଙ୍ଗ ଓ ପଶ୍ଚିମ-ବଙ୍ଗ ପୁନର୍ମିଳିତ ହୋଇ ପୂର୍ବର ଅଖଣ୍ଡ ବଙ୍ଗରୂପେ ପ୍ରତିଷ୍ଠିତ ହେଲା; ପୁଣି, ବିହାର ସହିତ ଓଡ଼ିଶା ମିଶି ଜଣେ ଲେଫଟେନାଣ୍ଟଙ୍କ ଶାସନାଧୀନ ରହିଲା । ଅଳ୍ପକାଳ ପରେ ବିହାର-ଓଡ଼ିଶା କାଉନ୍‌ସିଲ (ବ୍ୟବସ୍ଥା ସଭା) ମଧ୍ୟ ଗଠିତ ହେଲା । ବଙ୍ଗୀୟ ରାଜନୀତି କ୍ଷେତ୍ରର 'ମୁକୁଟହୀନ ରାଜା' ଅପ୍ରତିଦ୍ୱନ୍ଦ୍ୱୀ ବାଗ୍ମୀ ସୁରେନ୍ଦ୍ରନାଥ ବନ୍ଦ୍ୟୋପାଧ୍ୟାୟ ଓ 'ଉତ୍କଳର ସୁରେନ୍ଦ୍ରନାଥ' ବାଗ୍ମୀ ବିଶ୍ୱନାଥ କର 'ବଙ୍ଗଭଙ୍ଗ' ରାଜନୀତିକ ଆନ୍ଦୋଳନବେଳେ ଯଥାକ୍ରମେ ବଙ୍ଗ ଓ ଉତ୍କଳର ନେତୃତ୍ୱ ନେଇଥିଲେ । ଏଣୁ ଓଡ଼ିଶାର ଅଦ୍ୱିତୀୟ ଅଗ୍ନିବର୍ଷୀ ବକ୍ତା ବିଶ୍ୱନାଥ କରଙ୍କୁ ମହାମାନ୍ୟ ଲେଫଟେନାଣ୍ଟସାହେବ ପାଞ୍ଚ ବର୍ଷପାଇଁ ଉକ୍ତ କାଉନ୍‌ସିଲର ଜଣେ ମାନ୍ୟବର ବ୍ୟବସ୍ଥାପକରୂପେ ମନୋନୀତ କରିଥିଲେ ।

ସେ ସମୟର କାଉନ୍‌ସିଲରେ କେବଳ ଇଂରାଜୀ ଭାଷାରେ ବକ୍ତୃତା ଦେବାର ବା ବକ୍ତବ୍ୟ ପ୍ରକାଶ କରିବାର ଧାରା ପ୍ରଚଳିତ ଥିଲା । ବାଗ୍ମୀ ବିଶ୍ୱନାଥ କିନ୍ତୁ ସେହି ଗତାନୁଗତିକ ଧାରାକୁ ଉପେକ୍ଷା କରି ନିଜ ମାତୃଭାଷା ଓଡ଼ିଆରେ ଭାଷଣ ଦେବାକୁ ସାହସର ସହିତ ଉଦ୍ୟତ ହେଲେ । ତାଙ୍କ ମୁଖରୁ କେତୋଟିମାତ୍ର ଶବ୍ଦ ବାହାରିଛି କି ନାହିଁ, ଅଣଓଡ଼ିଆ ମଞ୍ଚର ସଭ୍ୟମାନେ ଇଂରାଜୀରେ ଯେଉଁ ତୁମୁଳ ପ୍ରତିବାଦର ସ୍ୱର ଉତ୍ତୋଳନ କଲେ, ତାର ଅର୍ଥ ହେଲା, "ମାନ୍ୟବର ଓଡ଼ିଶା ସଦସ୍ୟ ଓଡ଼ିଆ ଭାଷାରେ କହିପାରିବେ ନାହିଁ, ତାଙ୍କୁ ଅଳବତ୍ତ ଇଂରାଜୀ ଭାଷାରେ କହିବାକୁ ପଡ଼ିବ । ଏ ବ୍ୟବସ୍ଥା ସଭାରେ ଓଡ଼ିଆ କଥା ଚଳିବ ନାହିଁ ।"

ବାଗ୍ମୀ ବିଶ୍ୱନାଥ ଶତଫୁଲ୍ଲ ସିଂହ ପ୍ରାୟ ହୁଙ୍କାର ସହିତ ସେହି ଅହେତୁକ ପ୍ରତିବାଦର ଖଣ୍ଡନକାରକ ଉପଯୁକ୍ତ ଜବାବ ଦେଲେ :

"ଓଡ଼ିଆ ଏକ ସ୍ୱୀକୃତ ପ୍ରାଚୀନ ଭାଷା; ମୁଁ ଓଡ଼ିଆ, ମୋର ଭାଷା ଓଡ଼ିଆ, ମୋ' ଓଡ଼ିଆ ଜିଭକୁ କାଟିଦେବାର ଅଧିକାର ଏଠାରେ କୌଣସି ସଭ୍ୟଙ୍କର

ନାହିଁ । ମତେ ଓଡ଼ିଆ ଭାଷାରେ କୁହାଇ ନଦେବାକୁ ଅପଚେଷ୍ଟା କରିବାର ପରୋକ୍ଷ ଅର୍ଥ ଯେ ମୋର ପରମାରାଧ୍ୟା ଉତ୍କଳମାତା ଓ ଉତ୍କଳଭାରତୀଙ୍କ ପ୍ରତି ଅବଜ୍ଞା ଓ ଅସମ୍ମାନ ପ୍ରଦର୍ଶନ ଛଡ଼ା ଆଉ କିଛି ନୁହେଁ, ଏହା ବିରୋଧକାରୀ ସଭ୍ୟବନ୍ଧୁବର୍ଗ ଶୀତଳ ମସ୍ତିଷ୍କରେ ହୃଦୟଙ୍ଗମ କରିବା ଉଚିତ ।”

ସ୍ୱୟଂ ମହାମାନ୍ୟ ଲାଟ ସାହେବଙ୍କୁ ଏହି ବିବାଦୀୟ ସମସ୍ୟାର ତାତ୍‌କ୍ଷଣିକ ସମାଧାନ କରିବାକୁ ପଡ଼ିଥିଲା । ତାଙ୍କର ବିଜ୍ଞୋଚିତ ରାୟ ହେଲା :

“ଗୃହର ସୁବିଧା ଦୃଷ୍ଟିରୁ ଇଂରାଜୀ ଭାଷାରେ ବକ୍ତୃତା ଦେବାର ବା ବକ୍ତବ୍ୟ ପ୍ରକାଶ କରିବାର ପରମ୍ପରା ଏପର୍ଯ୍ୟନ୍ତ ଗଢ଼ି ଆସିଥିଲେହେଁ ଏହା ବିଧାନଗତ ବାଧ୍ୟବାଧକତାଦ୍ୱାରା ନିୟନ୍ତ୍ରିତ ନୁହେଁ । କେହି ମାନ୍ୟବର ସଭ୍ୟ ନିଜ ମାତୃଭାଷାରେ ଭାଷଣ ଦେବାକୁ କିମ୍ବା ବକ୍ତବ୍ୟ ପ୍ରକାଶ କରିବାକୁ ଅଭିଳାଷ କଲେ ସେଥିପାଇଁ କୌଣସି ବାଧାପ୍ରତିବନ୍ଧ ନାହିଁ ।”

‘ବୀରଭୋଗ୍ୟା ବସୁନ୍ଧରା’ । ବାଗ୍ମୀର ବିଶ୍ୱନାଥଙ୍କର ବିଜୟ ହେଲା । ସେ ଦ୍ୱିଗୁଣ ତେଜରେ ମାତୃଭାଷା ଓଡ଼ିଆରେ ବକ୍ତୃତା ଆରମ୍ଭ କରିଦେଲେ । ତାଙ୍କ ଓଜସ୍ୱିନୀ ଭାଷାର ବିରାମବିହୀନ ଗୁରୁଗମ୍ଭୀର ଭାଷଣ ସଭାଗୃହକୁ ପ୍ରବଳ ଚମକିତ କରିଦେଲା । ଅଗ୍ନି ଓ ଆବେଗର ଏକାଧାରରେ ସନ୍ନିବେଶ ଦୃଷ୍ଟିରୁ ତାଙ୍କ ଭାଷଣ ଥିଲା ପଟାନ୍ତରହୀନ । ଭିନ୍ନ ଭାବ-ଭାବନା ସମୁଚ୍ଚୟକୁ ପ୍ରାଞ୍ଜଳ ଓ ମଞ୍ଜୁଳ ଶୈଳୀରେ ପ୍ରକାଶ କରିବାକୁ ଓଡ଼ିଆ ଭାଷା-ଭଣ୍ଡାରରେ ଯେ ଏତେ ବିପୁଳ ଶବ୍ଦସମ୍ପଦ ଠୁଳ ହୋଇ ରହିଛି, ବ୍ୟବସ୍ଥାଗୃହର ସଦସ୍ୟବୃନ୍ଦ ସେଦିନ ତାହାର ପ୍ରତ୍ୟକ୍ଷ ପ୍ରମାଣ ପାଇ ସ୍ତମ୍ଭିତ ହୋଇଯାଇଥିଲେ ।

ମାତୃରୂପା ମାତୃଭାଷା ପ୍ରତି ଭକ୍ତିପ୍ରବଣ ଆନ୍ତରିକ ଆନୁଗତ୍ୟର ଦୃଢ଼ଭଙ୍ଗୀ ବହନ କରି ପ୍ରଣତ ସନ୍ତାନରୂପେ ତାର ମହନୀୟ ମର୍ଯ୍ୟାଦାକୁ ପ୍ରାଣପଣେ ରକ୍ଷା କରିବାକୁ ଦୃଢ଼ସଂକଳ୍ପ ଯେବେ ମୁଁ ନର୍ମାଲ୍ ସ୍କୁଲର ବାଙ୍ମୟ ପରିବେଶରୁ ଆସି ଟ୍ରେଡ଼ିଂ କମ୍ପାନୀର ପ୍ରଶସ୍ତ ପ୍ରକାଶନ ପରିସରରେ ପ୍ରବେଶ କରିବାର ପ୍ରାୟ ଦେଢ଼ବର୍ଷ ପରେ ଏକ ସଙ୍କଟଜନକ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହେଲି ।

ଟ୍ରେଡ଼ିଂ କମ୍ପାନୀର ପୁସ୍ତକାଳୟ ସକାଳ ୯ଟାରେ ଫିଟି ଦିନ ଗୋଟାକରେ ବନ୍ଦ ହୁଏ, ପୁଣି ଅପରାହ୍ନ ୫ଟାରେ ଫିଟି ରାତି ୧୦ଟାରେ ତାଲା ପଡ଼େ । ପ୍ରକାଶନ କାର୍ଯ୍ୟାଳୟ କିନ୍ତୁ ଦିନ ୧୧ଟାରୁ ରାତି ୮ଟା ଯାଏ କ୍ରମାଗତ ଖୋଲା ରହେ । ପୁସ୍ତକାଳୟ ଗୃହର ଚାବି ରହେ ବୟୋଜ୍ୟେଷ୍ଠ ହାଡ଼ିବାବୁଙ୍କ ପାଖରେ ଏବଂ ପ୍ରକାଶନ କାର୍ଯ୍ୟାଳୟ ଗୃହର ଚାବି ରଖେ ମୁଁ ।

ଦିନେ ସ୍ୱାସ୍ଥ୍ୟଗତ କାରଣରୁ ହାଡ଼ିବାବୁ ୫ଟା ବେଳେ ଆସିନପାରି ବହିଦୋକାନ ଗୃହର ଚାବି ମୋ’ ପାଖକୁ ଦେଇପଠାଇଲେ । ସେ ବିକ୍ରି ଦପ୍ତରର ଦାୟିତ୍ୱରେ ଥିବାରୁ ମୁଁ ବାଧ୍ୟହୋଇ ମୋ’ ଆସନ ଛାଡ଼ି ଉକ୍ତ ଦପ୍ତରରେ ଯାଇ ବସିଲି । ଆକୁଳ ପଣ୍ଡିତଙ୍କ

ସହପାଠୀ ସ୍କୁଲ ମେଡ଼ିକାଲ୍ ଅଫିସର୍ ଡାକ୍ତର ସତ୍ୟବାଦୀ ମିଶ୍ର (ମୋ'ଠାରୁ ବୟସରେ ତେର ବର୍ଷ ବଡ଼) ସବୁଦିନିଆ ସାନ୍ଧ୍ୟ ଗପ୍ପରେ ଆସି ବହିଦୋକାନରେ ଉପସ୍ଥିତ ହେଲେ । ଉଭୟେ ସୁଖାଳାପରେ ରତହୋଇଗଲୁଁ ।

ଏହି ସମୟରେ ରେଭେନ୍‌ସା କଲେଜର ଜଣେ ଅଧାବୟସିଆ ପ୍ରଫେସର୍ ନିଜ ଏକାଶ୍ୱବାହିତ ଟମ୍‌ଟମ୍ ଯାନରେ ବସି ବହିଦୋକାନ ସମ୍ମୁଖରେ ଆବିର୍ଭୂତ ହେଲେ । ଜାତିରେ ସେ ବଙ୍ଗାଳୀ, କଲିକତାର ବାସିନ୍ଦା ବୋଧହୁଏ (ଠିକ୍ ମନେନାହିଁ) 'ଦେ' କୁଳୋପାଧିକ; ଓଡ଼ିଶା ଡିଭିଜନ୍ ବଙ୍ଗ ସହିତ ଯୋଡ଼ା ହୋଇ ବଙ୍ଗ-ଓଡ଼ିଶା ପ୍ରଦେଶ ଗଠିତ ହୋଇଥିଲାବେଳେ ଯେଉଁ ସହସ୍ରାଧିକ ବଙ୍ଗାଳୀ ଓଡ଼ିଶାକୁ ଚରାଭୂଇଁ କରି ସମସ୍ତ ସ୍ୱକର ବିଭାଗରେ ସିଦ୍ଧି ହୋଇଯାଇଥିଲେ ରକ୍ତଶୋଷକ ଛାରପୋକ ଦଳ ପରି, ଏଇ ଭଦ୍ରବ୍ୟକ୍ତି ସେଇ ସାହାଣମେଲ୍ଲ ସୁଯୋଗରେ କଟକ ରେଭେନ୍‌ସା କଲେଜରେ ଢୁକି-ଯାଇଥିଲେ । କଲିକତାରେ ଏହି 'ଦେ' ପରିବାରର 'ହେୟାର୍ ପ୍ରେସ୍' ନାମରେ ଏକ ବଡ଼ ଆକାରର ଛାପାଖାନା ଥାଏ । ସେଥିରେ ବଙ୍ଗଳା, ଓଡ଼ିଆ, ଇଂଲିଶ୍ ତିନି ଭାଷାରେ ଛାପାକାର୍ଯ୍ୟ ହେବାର ସକଳ ସୁବ୍ୟବସ୍ଥା ରହିଥିଲା । ଉକ୍ତ ପ୍ରେସ୍ କେତେକ ମୂଲ୍ୟବାନ୍ ଗ୍ରନ୍ଥ ମଧ୍ୟ ପ୍ରକାଶ କରିଥିଲା । ତହିଁମଧ୍ୟରୁ ଦିଓଟି ବିଶାଳ ଓଡ଼ିଆ ଗ୍ରନ୍ଥ 'ନିମ୍ନ ଶିକ୍ଷକ ସୁହୃଦ୍' ଓ 'ଉଚ୍ଚ ଶିକ୍ଷକ ସୁହୃଦ୍'ର ନାମ ବିଶେଷ ଉଲ୍ଲେଖଯୋଗ୍ୟ । ପ୍ରଖ୍ୟାତ ଶିକ୍ଷାବିତ୍ ମଧୁସୂଦନ ରାଓ ଏହି ଗ୍ରନ୍ଥଦ୍ୱୟକୁ ସେଇ ନାମଧେୟ ବଙ୍ଗଳା ଗ୍ରନ୍ଥରୁ ଅନୁବାଦ କରିଥିଲେ । ଓଡ଼ିଶାର କଟକ ନର୍ମାଲ୍ ସ୍କୁଲରେ ଓ ଗୁରୁ ଟ୍ରେନିଂ ସ୍କୁଲଗୁଡ଼ିକରେ ଶିକ୍ଷା ପାଉଥିବା ଗୁରୁଛାତ୍ର-ମାନଙ୍କର ତଥା ଶିକ୍ଷକସାଧାରଣଙ୍କର ଏହା ଥିଲା ଦିଗ୍‌ଦର୍ଶନଦାୟକ ପ୍ରକୃତ ସୁହୃଦ୍ । ପ୍ରଫେସର ଦେ ସେଥିରୁ କିଛି କିଛି ବହି ଟ୍ରେଡ଼ିଂ କମ୍ପାନୀରେ ଜମା ଦିଅନ୍ତି ଏବଂ ବର୍ଷ ଶେଷରେ ତାର ଦାମ୍ ନେଇଯାନ୍ତି । ଏଥର ମଧ୍ୟ ଜମା ଦେବା ଉଦ୍ଦେଶ୍ୟରେ ସେ ଉଭୟ ଗ୍ରନ୍ଥରୁ କୋଡ଼ିଏ ଖଣ୍ଡ ଲେଖାଏଁ ଗାଡ଼ିରେ ଲଦି ଆଣିଥାନ୍ତି ।

ନିମାଇଁଚରଣ ସେନଗୁପ୍ତ ବହି-ଷ୍ଟେସନାରି ଆଦି ବ୍ୟବସାୟର ନଗଦ (cash) ରକ୍ଷକ ଏବଂ ଜମା ବହିମାନଙ୍କର ହିସାବରକ୍ଷକ ଥିଲେ । ତେଣୁ ତାଙ୍କର ସହିତ ହିଁ ପ୍ରଫେସର ଦେଙ୍କର ଦେଣନେଣ କାରବାର ଏପର୍ଯ୍ୟନ୍ତ ସୁରୁଖୁରୁରେ ଚାଲିଆସିଥିଲା । ଏବେ ନିମାଇଁଙ୍କ ଆସନରେ ମତେ ଦେଖି ସେ ବଡ଼ ହଡ଼ବଡ଼ରେ ପଡ଼ିଗଲେ । ଅଗତ୍ୟା ମତେ ପଚାରିଲେ ଗାଡ଼ିରେ ବସିରହି—

"ସେନ୍‌ଗୁପ୍ତ ମଶାୟ୍ କୋଥାୟ୍ ?"

ମୁଁ—"କିଏ, ହାଡ଼ିବାବୁ ? ସେ ତ ଆଜି ଆସିନାହାନ୍ତି ।"

ଦେ—"କି ବଲ୍‌ଲେନ୍ ? ଏକ୍‌ଟୁ ବାଂଲାତେ ବଲ୍‌ଲେ ଭାଲ ହତ ନା ?"

ମୁଁ—"ଆପଣ ତ କଟକରେ ରହି ରହି ବେଶ୍ ଓଡ଼ିଆ କହି ଜାଣିଛନ୍ତି, ମତେ ବଙ୍ଗଳାରେ କହିବାକୁ ଇଙ୍ଗିତ ଦେବା ଅପେକ୍ଷା ନିଜେ ଓଡ଼ିଆରେ କହିଲେ କ'ଣ ଭଲ ହୁଅନ୍ତା ନାହିଁ ?"

ସେ—"ତା' କି ସମ୍ଭବ !"

ମୁଁ—"ଓଡ଼ିଆ ଜାଣି ମଧ୍ୟ ଆପଣଙ୍କ ପକ୍ଷରେ ଯଦି ଓଡ଼ିଆରେ କହିବା ସମ୍ଭବ ନୁହେଁ, ବଙ୍ଗଳା ନଜାଣି ବଙ୍ଗଳାରେ କହିବା ମୋ ପକ୍ଷରେ କିପରି ସମ୍ଭବ ହେବ ? ସର୍ବୋପରି ମୋ ମାତୃଭାଷା ମୋ ଆଖିରେ ସ୍ୱର୍ଗଠୁ ବଳି ସେରା ।"

ଏହିପରି କଥା-କଟାକଟିରେ କିଛି ବେଳ କଟିଗଲା । ଉଭୟେ ନିଜ ନିଜ ମାତୃଭାଷାର ମର୍ଯ୍ୟାଦା ରକ୍ଷା ସଂକଳ୍ପରେ ଅଟଳ ରହିଲୁଁ । ମୋ ସଂକଳ୍ପର ସ୍ଥିତିକୁ ଟାଳିବା ଉଦ୍ୟମରେ ବ୍ୟର୍ଥକାମ ହେବା ପରେ ମନେ ମନେ ଗରଗର ପ୍ରଫେସର ସେ ମୁହଁ ଫୁଲେଇ 'ଲେଉଟାଇଲେ ରଥ ଅଥୟ ମନେ' । ଶୁଣିବାକୁ ପାଇଲି, ଏଠାରୁ ସେ ଗାଡ଼ି ନେଲେ ମେନେଜର ଆକୁଳ ମିଶ୍ରଙ୍କ ଆବାସକୁ । ସେଠାରେ ମୋ' ବିରୋଧରେ କିଛି ବିଷୋଦ୍‌ଗାର କରି ମନ-ଓରମାନ ମେଣ୍ଟାଇଲେ ଏବଂ ବହିତକ ଆକୁଳ ପଣ୍ଡିତଙ୍କ ପାଖରେ ଜମା ଦେଇ ପ୍ରାପ୍ତି ସ୍ୱୀକାରସୂଚକ ରସିଦଟିଏ ନେଲେ ।

ଜାତୀୟ ସ୍ୱାଭିମାନନିଷ୍ଠ ଡାକ୍ତର ସତ୍ୟବାଦୀ ମିଶ୍ର ନୀରବରେ ବସି ଏହି ଛକାପଞ୍ଝା ବିତଣ୍ଡାକାର ସ୍ୱାଦମୟ ଆମୋଦକୁ ଗମ୍ଭୀର ଆଗ୍ରହର ସହିତ ଉପଭୋଗ କରୁଥିଲେ । ସେ ମହାଶୟ ଚାଲିଗଲା ପରେ ସେ ମତେ ଅଶେଷ ସାଧୁବାଦ ଓ ସାବାସି ଦେଇ ତାଙ୍କ କଲିକତା ଅନୁଭୂତିର ଯେଉଁ ସକରୁଣ କାହାଣୀ ବର୍ଣ୍ଣନା କରିଥିଲେ, ତାହା ଭାଷାର ଇତର ବିଶେଷରେ ଏହିପରି :

"କଲିକତା ମେଡ଼ିକାଲ୍ କଲେଜରେ ଅଧ୍ୟୟନ କଲାବେଳେ ଆମେ ମୁଷ୍ଟିମେୟ ଓଡ଼ିଆ ପିଲାଯାକ ବଙ୍ଗାଳୀ ପିଲାଏ ରହୁଥିବା ସରକାରୀ ଛାତ୍ରାବାସର ଏକ ସ୍ୱତନ୍ତ୍ର ଅଂଶରେ ବାସ କରୁଥିଲୁଁ; କିନ୍ତୁ ଆମପାଇଁ ଉଦ୍ଦିଷ୍ଟ ରନ୍ଧନଶାଳା ଓ ଭୋଜନକକ୍ଷ ସଂଖ୍ୟାବହୁଳ ବଙ୍ଗାଳୀ ଅନ୍ତେବାସୀଙ୍କ ରନ୍ଧନଶାଳା ଓ ଭୋଜନକକ୍ଷର ଠିକ୍ ବିପରୀତ ପାର୍ଶ୍ୱରେ ସାମନାସାମନି ଅବସ୍ଥିତ ଥିଲା । ଓଡ଼ିଆ ଅନ୍ତେବାସୀମାନଙ୍କ ମଧ୍ୟରେ ପ୍ରମୁଖ ଥାଉଁ ଚାରିଜଣ— ବିନବିହାରୀ ପଟ୍ଟନାୟକ, ବାଲମୁକୁନ୍ଦ ନାୟକ, ଅଟଳବିହାରୀ ଆଚାର୍ଯ୍ୟ ଓ ମୁଁ । ଆମେ ସବୁ ଭୋଜନକକ୍ଷରେ ବସି ଖାଇବାକୁ ଉଦ୍ୟତ ହେବାମାତ୍ରେ ବର୍ଷାକାଳର ଐକତାନିକ ବେଙ୍ଗରଡ଼ି ଭଳି ବଙ୍ଗାଳୀ ପିଲାଏ ଆମମାନଙ୍କୁ ତାଚ୍ଛଲ୍ୟଦୃଷ୍ଟିରେ ଚାହିଁ ବିଦ୍ରୂପାତ୍ମକ ସମବେତ ସ୍ୱରରେ କୁହାଟି ଉଠିଲେ—'ବେଟା ଉଡ଼େ, ବେଟା ଉଡ଼େ' । ଦିନ ପରେ ଦିନ ଏହି ସ୍ୱନ ପାଲି ଲାଗିରହିଲା ।

"ଏହି ଘୋର ଜାତୀୟ ନିନ୍ଦା-ଅପମାନ ଆମମାନଙ୍କ ଆତ୍ମାକୁ ବଡ଼ ବାଧିଲା, ଆଉ ଅଧିକ ବରଦାସ୍ତ କରିହେଲା ନାହିଁ । ଉଦ୍ଧତ ବଙ୍ଗାଳୀ ଅନ୍ତେବାସୀଙ୍କ ମୁହଁକୁ ବନ୍ଦ କରିବା ଉଦ୍ଦେଶ୍ୟରେ କଟୁତିକ୍ତକଷାୟରସିକ ବ୍ୟଙ୍ଗଶିଳ୍ପିକ ସାଥୀ ବିନବିହାରୀ ସେମାନଙ୍କ 'ବେଟା ଉଡ଼େ' ଧ୍ୱନିକୁ ଜବର ଠୋକର ଦେବାଭଳିଆ ସମତାଳୀୟ ଠିକଣା ଧ୍ୱନିଟିଏ ଖୋଜି ବାହାର କଲେ 'ବେଟା ବ୍ୟାଙ୍ଗ୍' । ଦିନେ ରାତ୍ରି ଭୋଜନବେଳେ ବିପକ୍ଷ ଶିବିରରୁ ନିତ୍ୟ-

ନୈମିତ୍ତିକ ଆବୃତ୍ତି 'ବେଟା ଉଡ଼େ, ବେଟା ଉଡ଼େ' ଧ୍ୱନିର ଲହରି ଉତ୍‌ଥିତ ହେଲମାତେ ତାର ଯଥାର୍ଥ ଉତ୍ତରରୂପେ ଆମ ଶିବିରରୁ 'ବାଦୀପାଲି ଆରମ୍ଭ ହୋଇଗଲା ଉଚ୍ଚତର 'ବେଟା ବ୍ୟାଙ୍ଗ୍, ବେଟା ବ୍ୟାଙ୍ଗ୍' ଧ୍ୱନିରେ । ବଙ୍ଗାଳୀ ଟୋକାଙ୍କ ଦଳରେ ଚହଳ ପଡ଼ିଗଲା । ସେମାନେ ପଞ୍ଚାଦାଶିଆ ହଷ୍ଟେଲ ସୁପରିନ୍‌ଟେଣ୍ଡେଣ୍ଟ୍‌ଙ୍କୁ ଭେଟି ଓଡ଼ିଆ ଛାତ୍ରମାନଙ୍କ ମୁଖ-ନିଃସୃତ ଅପମାନସୂଚକ 'ବେଟା ବ୍ୟାଙ୍ଗ୍, ବେଟା ବ୍ୟାଙ୍ଗ୍' ଧ୍ୱନିର ତୀବ୍ର ପ୍ରତିବାଦ ଲିଖିତାକାରରେ ଜଣାଇଲେ । ହଷ୍ଟେଲ୍ ସୁପରିନ୍‌ଟେଣ୍ଡେଣ୍ଟ୍ ଜଣେ ନୀତିମନ୍ତ ନ୍ୟାୟପର ନିର୍ବିକାର ନିରପେକ୍ଷ ପୁରୁଷ ଓ ମେଡ଼ିକାଲ୍ କଲେଜର ଏକ କୃତବିଦ୍ୟ ବରିଷ୍ଠ ପ୍ରଫେସର । ପରଦିନ ସେ ଆମମାନଙ୍କୁ ଡକାଇପଠାଇଲେ । ମୁଖପାତ୍ରରୂପେ ଆମେ ଘ୍ୱର ବନ୍ଧୁ ଘଟଣାର ବାସ୍ତବ ବିବରଣୀ ଆଦ୍ୟୋପାନ୍ତ ଜଣାଇ ଓଡ଼ିଆ ଅନ୍ତେବାସିଗୋଷ୍ଠୀ ପ୍ରତି ବଙ୍ଗାଳୀ ପିଲଙ୍କ-ଆଡ଼ୁ ପହିଲେ ଆରମ୍ଭ ହୋଇଥିବା ଉତ୍ତେଜନାମୂଳକ 'ବେଟା ଉଡ଼େ, ବେଟା ଉଡ଼େ' ଧ୍ୱନି ହିଁ ବଙ୍ଗୋତ୍କଳ ସଦ୍ଭାବ ଓ ମୈତ୍ରୀ ଉପରେ କୁଠାରାଘାତ ହେବାର ମୂଳ କାରଣ ବୋଲି ପାଲଟା ଅଭିଯୋଗ ଉପସ୍ଥାପିତ କଲୁଁ । ସୁପରିନ୍‌ଟେଣ୍ଡେଣ୍ଟ୍ ମହାଶୟ ନ୍ୟାୟ-ବିଚାରରେ ବଙ୍ଗୀୟ ଅନ୍ତେବାସୀ ଗୋଷ୍ଠୀକୁ ଦୋଷୀ ସାବ୍ୟସ୍ତ କରି ପ୍ରିନ୍‌ସିପାଲ୍‌ଙ୍କ ପାଖରେ ରିପୋର୍ଟ ପେସ୍ କଲେ ଏବଂ ସଂଖ୍ୟାଲଘୁ ଓଡ଼ିଆ ଛାତ୍ରଙ୍କପାଇଁ ତୁରନ୍ତ ଏକ ସ୍ୱତନ୍ତ୍ର ହଷ୍ଟେଲ୍ ନିର୍ମାଣ କରାଇବାକୁ ତହିଁରେ ପ୍ରସ୍ତାବ ଦେଲେ । ସହୃଦୟ ପ୍ରିନ୍‌ସିପାଲ୍ ମହୋଦୟ ନିଷ୍ଠାର ସହିତ ସରକାରଙ୍କ ପଛରେ ଲାଗିବା ଫଳରେ 'ଉତ୍କଳନିବାସ' ନିର୍ମିତ ହେଲା ଏବଂ ସେଠାରେ ରହିବାର ଅଧିକାରୀ ହେଲେ କଲିକତାର ବୈଷୟିକ ଅଣବୈଷୟିକ ନିର୍ବିଶେଷରେ ଯେକୌଣସି କଲେଜରେ ପଢ଼ୁଥିବା ଓଡ଼ିଆ ଛାତ୍ରଛାତ୍ରୀବୃନ୍ଦ ।''

## (ଜ) ବାଳକୃଷ୍ଣଙ୍କ ସାହସିକ ପଦକ୍ଷେପକୁ ଅବାରିତ ସାହାଯ୍ୟ ଦାନ :

### (୧) 'ନୂଆପାଠ' (୧ମ ଭାଗ)ର ମୁଦ୍ରଣ—

ଊନବିଂଶ ଶତାବ୍ଦୀର ଶେଷ ପାଦରେ ଓଡ଼ିଆ ଗଦ୍ୟ ଭାଷା ତାର ପୁରାତନ ନିର୍ମୋକକୁ ପରିତ୍ୟାଗ କରି ନବାୟିତ ରୂପ ପରିଗ୍ରହ କରିଥିଲା । ସେହି ନବାୟନ ବା ଆଧୁନିକୀକରଣର ପ୍ରବର୍ତ୍ତକ ଥିଲେ ସ୍ୱନାମଧନ୍ୟ ଗଦ୍ୟ ଲେଖକ ମଧୁସୂଦନ ରାଓ । ବିଂଶ ଶତାବ୍ଦୀର ଆରମ୍ଭରୁ ବର୍ତ୍ତିତ କାଳପର୍ଯ୍ୟନ୍ତ କେବଳ ତାଙ୍କର ପ୍ରଣୀତ ସାହିତ୍ୟ ପୁସ୍ତକମାନ ଓଡ଼ିଶାର ସବୁ ବିଦ୍ୟାଳୟରେ ଶିଶୁ ଶ୍ରେଣୀଠାରୁ ସପ୍ତମଶ୍ରେଣୀ ପର୍ଯ୍ୟନ୍ତ ପଠିତ ହେଉଥିଲା—ଶିଶୁ ଶ୍ରେଣୀରେ 'ବର୍ଣ୍ଣବୋଧ', ପ୍ରଥମ ଶ୍ରେଣୀରେ 'ଶିଶୁବୋଧ', ଦ୍ୱିତୀୟ ଓ ତୃତୀୟ ଶ୍ରେଣୀରେ 'ବାଲ୍ୟପାଠ' (ପରବର୍ତ୍ତୀ ପରିବର୍ତ୍ତିତ ନାମ 'ବାଳବୋଧ'), ଚତୁର୍ଥ ଓ ପଞ୍ଚମ ଶ୍ରେଣୀରେ 'ସାହିତ୍ୟ-କୁସୁମ' ଏବଂ ଷଷ୍ଠ ଓ ସପ୍ତମ ଶ୍ରେଣୀରେ 'ସାହିତ୍ୟ ତରଙ୍ଗ' (ପରବର୍ତ୍ତୀ ପରିବର୍ତ୍ତିତ ନାମ 'ସାହିତ୍ୟ ପ୍ରସଙ୍ଗ') । ଏ ସମସ୍ତ ପାଠ୍ୟପୁସ୍ତକର ପ୍ରକାଶକ ଥିଲା 'ମ୍ୟାକ୍‌ମିଲନ୍ ଆଣ୍ଡ୍ କମ୍ପାନୀ' ନାମକ ବିଲାତି ଯୌଥ ପ୍ରକାଶନ ସଂଘ, ଯାହାର ଯୋଗାଣ ଅଫିସ ଥାଏ

କଲିକତା, ବମ୍ବେ ଓ ମାନ୍ଦ୍ରାଜରେ । କେବଳ 'ସାହିତ୍ୟ' ପାଠ୍ୟପୁସ୍ତକ ନୁହେଁ, ବିଭିନ୍ନ ଲେଖକଙ୍କ ପ୍ରଣୀତ ଅଙ୍କ, ଜ୍ୟାମିତି, ଇତିହାସ, ଭୂଗୋଳ, ବିଜ୍ଞାନ, ସ୍ୱାସ୍ଥ୍ୟରକ୍ଷା, ଇଂରାଜୀ ପ୍ରଭୃତି ଯେତେ ବିଷୟର ବହି ହାଇସ୍କୁଲ ପର୍ଯ୍ୟନ୍ତ ପଢ଼ାହେଉଥିଲା, ସେ ସମସ୍ତର ମଧ୍ୟ ପ୍ରକାଶକ ଥିଲା ମୁଖ୍ୟତଃ ସେହି ବିଲାତି କମ୍ପାନୀ । ପାଠ୍ୟପୁସ୍ତକ କ୍ଷେତ୍ରରେ ତାର ଏହି ଏକଚାଟିଆ ଆଧିପତ୍ୟ ବିରୁଦ୍ଧରେ ଅଭିଯାନ ଆରମ୍ଭ କରିବାକୁ ଓଡ଼ିଶାର କୌଣସି ବ୍ୟକ୍ତି ବା ପୁସ୍ତକ ବ୍ୟବସାୟୀ ସଂସ୍ଥା ସାହସ କରିପାରୁନଥିଲେ ।

ଦୀର୍ଘକାଳ ପରେ ମ୍ୟାକ୍‌ମିଲାନ୍‌ର ଏକାଧିପତ୍ୟ ଉପରେ ପରଶୁପ୍ରହାର କରିବାକୁ ଅଗ୍ରଣୀ ହୋଇ ବାହାରିଲେ କେନ୍ଦ୍ରାପଡ଼ା ହାଇସ୍କୁଲର ସହକାରୀ ପ୍ରଧାନଶିକ୍ଷକ ସାହିତ୍ୟାଲୋଚକ ବାଳକୃଷ୍ଣ କର । ସେ ହେଉଛନ୍ତି ମୋ' ପିଉସୀପୁଅ ଭାଇ—ମୋ' ଦ୍ୱିତୀୟ ପିଉସୀ 'ପାନ' ଦେଈଙ୍କ ତିନି ପୁତ୍ର ମଧ୍ୟରୁ ମଧ୍ୟମ । ୧୯୨୭ରେ ଗ୍ରୀଷ୍ମଛୁଟି ପାଇଁ ସ୍କୁଲ ବନ୍ଦ ହେଲାମାତ୍ରେ ବାଳକୃଷ୍ଣବାବୁ ସିଧା କଟକ ଆସିଲେ ମୋ' ପାଖକୁ । ମୁଁ ସେତେବେଳେ ରହୁଥାଏଁ କାଜିବଜାରସ୍ଥ ଗୋଟିଏ ମେସ୍‌ରେ । ତାଙ୍କ ଆଗମନର ଉଦ୍ଦେଶ୍ୟ ଥାଏ ଦୁଇଟି—ଗୋଟିଏ ହେଲା ସାଙ୍ଗରେ ଆଣିଥିବା ଶିଶୁଶ୍ରେଣୀ-ଉପଯୋଗୀ 'ନୂଆପାଠ' (୧ମ ଭାଗ)ର ପାଣ୍ଡୁଲିପିଟି ମିସନ୍ ପ୍ରେସ୍‌ରେ ଏଇ ଛୁଟି ଭିତରେ ଛପାଇବେ ଏବଂ ଅନ୍ୟଟି ହେଲା ଶିକ୍ଷାକ୍ଷେତ୍ରର ମୋହ ଛାଡ଼ି କଟକରେ ଛୋଟକାଟିଆ ମୁଦ୍ରଣାଳୟଟିଏ ବସାଇବାର ଯୋଜନା ପ୍ରସ୍ତୁତ କରିବେ । ଏହି ଦୁଇ ସଂକଳ୍ପ ବିଷୟ ଆଗରୁ ସେ ମତେ ଏକାଧିକବାର ଶୁଣାଇଥିଲେ ।

ଶିଶୁସାହିତ୍ୟ ଲେଖା ଦିଗରେ ଓ ପ୍ରେସ୍‌କାର୍ଯ୍ୟ ସମ୍ପର୍କରେ ମୋର ଏଥି ମଧ୍ୟରେ ଅର୍ଜିତ ଅଭିଜ୍ଞତା ତାଙ୍କର ଯଥେଷ୍ଟ ସହାୟକ ହେବ ବୋଲି ବାଳକୃଷ୍ଣବାବୁ ଧରିନେଇଥିଲେ । ତେଣୁ ପ୍ରଥମେ ସେ 'ନୂଆପାଠ' (୧ମ ଭାଗ)ର ଲେଖାଗୁଡ଼ିକ ମତେ ପଢ଼ିବାକୁ ଦେଲେ ଏବଂ ସ୍ଥଳବିଶେଷରେ ପରିବର୍ତ୍ତନାଦି କରିବାରେ ଆବଶ୍ୟକତା ସମ୍ବନ୍ଧରେ ମୋର ମତ ଓ ସକ୍ରିୟ ସହଯୋଗ ଲୋଡ଼ିଲେ ।

ପାଣ୍ଡୁଲିପିଟି ଅଭିନିବେଶର ସହିତ ତନ୍ନ ତନ୍ନ ପଢ଼ିଲି । ଯୋଡ଼ିଏ ଗଦ୍ୟପାଠ ଛଡ଼ା ଅନ୍ୟ ଗଦ୍ୟାଂଶତକ ଚମତ୍କାର ହୋଇଥାଏ । ପଦ୍ୟାଂଶ ମଧ୍ୟରୁ ଗୋଟିଏ କିମ୍ବା ଦୁଇଟି ପଦ୍ୟ ଆଦୌ ସରସ ହୋଇନଥାଏ । ଏହି ତିନୋଟି ବା ଚାରୋଟି ଲେଖାକୁ ଉଠାଇ-ଦେଇ ତା ଜାଗାରେ ନୂଆ ବିଷୟ ଖଞ୍ଜି ଦେଲି । ଗଦ୍ୟାଂଶର କେତେଗୁଡ଼ିଏ ଶବ୍ଦକୁ ସରଳ ଓ କୋମଳ କରିଦେବାକୁ ପଡ଼ିଲା । ପଦ୍ୟଗୁଡ଼ିକୁ ମାଠି ଦୋରସ୍ତ କରିଦେଲି । ବାଳକୃଷ୍ଣ-ବାବୁଙ୍କ ସାହିତ୍ୟିକ ଗଦ୍ୟଭାଷା ମାର୍ଜିତ, ଭାବଦ୍ୟୋତକ ଓ ଉଚ୍ଚକୋଟିର । ସେ ବିଶ୍ୱନାଥ କରଙ୍କ ଭାଷାଶୈଳୀକୁ ନିଜର ଆଦର୍ଶ ଓ ପଥପ୍ରଦର୍ଶକରୂପେ ଗ୍ରହଣ କରିଥିଲେ । ତାଙ୍କ ପ୍ରଣୀତ 'ଚନ୍ଦ୍ରଗୁପ୍ତ' ନାଟକର ଭାଷା ଏହି ଉକ୍ତିର ପ୍ରକୃଷ୍ଟ ନିଦର୍ଶନ । ମାତ୍ର ପଦ୍ୟ ରଚନାରେ ତାଙ୍କ ଦୈନ୍ୟମାତ୍ରାର ଆଧିକ୍ୟ ସର୍ବତ୍ର ପରିସ୍ଫୁଟ ଥିଲା । କବିତା ଲେଖିବାର ଶକ୍ତିରେ ବାଳକୃଷ୍ଣବାବୁ ଥିଲେ ପୁରା ସିଲ୍‌ପଟ । ସେଥିପାଇଁ ଆଖିବାଡ଼ରେ ପଶିବାର ମହାର୍ଘ

ଆକାଂକ୍ଷାକୁ, ଅବସୋସର ସହିତ ହେଲେହେଁ, ଦେ ବସ୍ତରେ ତେପେଇଟରେ ପକ୍କା ବୁଝିଥା କାମ କରିଥିଲେ । 'ଚନ୍ଦ୍ରଗୁପ୍ତ' ନାଟକରେ ଯେଉଁ ଅଳ୍ପ କେତୋଟି ଗୀତ ସଂଯୋଜିତ ହୋଇଛି, ସେତକ ନାଟ୍ୟକାରଙ୍କ ଅନୁରୋଧରେ କେନ୍ଦ୍ରାପଡ଼ାର ଖ୍ୟାତନାମା ସଙ୍ଗୀତ ଲେଖକ ଓ ଗୀତନାଟ୍ୟକାର ଶ୍ରୀଧର ସାହୁ ଲେଖିଦେଇଥିଲେ ।

ଯାହାହେଉ, 'ନୂଆପାଠ' (୧ମ ଭାଗ) ପରିମାର୍ଜିତ ହେଲା ପରେ ଟାଟସମ୍ପନ୍ନିତ ଷ୍ଟିରିଓ ପ୍ଲେଟ୍ (stereo plate) ହୋଇ କଟକ ମିସନ୍ ପ୍ରେସରେ ମୁଦ୍ରିତ ହେଲା । ବିଷୟସଜ୍ଜା ଓ ମୁଦ୍ରଣ-ପରିପାଟୀରେ ତାହା ମଧୁବାବୁଙ୍କ 'ଶିଶୁବୋଧ'କୁ ବଳିଗଲା ।

(୨) ପ୍ରେସ୍ ସ୍ଥାପନ ଯୋଜନାର ରୂପରେଖ—

'ନୂଆପାଠ'ର ମୁଦ୍ରଣକାର୍ଯ୍ୟ ସମାପ୍ତ ହେଲା ପରେ ମୁଁ ପ୍ରସ୍ତାବିତ ଷ୍ଟେଟ ପ୍ରେସ୍‌ଟି ପାଇଁ ପ୍ରୟୋଜନୀୟ ଯାବତୀୟ ଉପକରଣର ତାଲିକା ପ୍ରସ୍ତୁତରେ ଲାଗିପଡ଼ିଲି । ଟିକିନିଖି ସରଞ୍ଜାମର ନାମ ଜାଣିବା ମୋ' ସୀମିତ ମୁଦ୍ରଣଜ୍ଞାନ ପକ୍ଷରେ ସମ୍ଭବ ନଥିଲା । ତେଣୁ ମୋର ଗତାଗତ ଥିବା ଉତ୍କଳସାହିତ୍ୟ ପ୍ରେସ୍, ଅରୁଣୋଦୟ ପ୍ରେସ୍, ଦାଶ ପ୍ରେସ୍ ଓ ପ୍ରିଣ୍ଟିଂ କମ୍ପାନୀ ପ୍ରେସ୍‌କୁ ଯାଇ ସେସବୁର ମେନେଜର ଓ ଅଭିଜ୍ଞ କର୍ମଚାରୀମାନଙ୍କ ପରାମର୍ଶକ୍ରମେ ତାଲିକାଟିକୁ ସଂଶୋଧିତ ଓ ପରିବର୍ଦ୍ଧିତ କରି ସମ୍ପ୍ରାହକ ମଧ୍ୟରେ ପୂର୍ଣ୍ଣାଙ୍ଗ କଲି । ତାହାର ଏକ କପି ମୋ' ପାଖରେ ରଖି ଆଉ କପିଏ ବାଳକୃଷ୍ଣବାବୁଙ୍କୁ ଦେଲି । ସେ ଖୁସି ମନରେ ତାଙ୍କ ଗାଆଁକୁ ଗଲେ ।

(୩) 'ନୂଆପାଠ' (୨ୟ ଓ ୩ୟ ଭାଗ)ର ମୁଦ୍ରଣ—

ଗାଆଁ ହେଇ କେନ୍ଦ୍ରାପଡ଼ା ଫେରିବା ପରେ ବାଳକୃଷ୍ଣବାବୁ ଅଧିକ ଉତ୍ସାହିତ ହୋଇ ଦ୍ୱିତୀୟ ଓ ତୃତୀୟ ଶ୍ରେଣୀପାଇଁ 'ନୂଆପାଠ'ର ପରବର୍ତ୍ତୀ ଭାଗଦ୍ୱୟ ତିଆରି କରିବାରେ ନିୟୋଜିତ ରହିଲେ । ଗୁଡ଼ାଏ ବିଷୟ ଆଗରୁ ଲେଖିରଖିଥିଲେ । ପ୍ରୟୋଜନୀୟ ସଂଖ୍ୟକ ଛବିର ବ୍ଲକ୍ ହୋଇସାରିଥିଲା । ଆଉ କେତୋଟି ନୂଆ ଗଳ୍ପ ଯୋଗ କରିଦେଲାରୁ ପୁସ୍ତକର ନିର୍ଦ୍ଧାରିତ କଲେବରକୁ ବୃଦ୍ଧି ପାଠ ବୁଝେଇଗଲା । ସେଗୁଡ଼ିକୁ ଧରି ବାଳକୃଷ୍ଣବାବୁ ପୁଜାଛୁଟିରେ ଆସି ପହଞ୍ଚିଲେ । ଦୁହେଁ ବସି ଗଦ୍ୟଗୁଡ଼ିକର କ୍ରମ ସ୍ଥିର କରିଦେଲୁଁ । ଯଥୋଚିତ ବ୍ୟବଧାନରେ ମଝେ ମଝେ ପଦ୍ୟମାନ ମଧ୍ୟ ଖଞ୍ଜିଲୁଁ । ତା'ପରେ ମୁଁ ସୁନ୍ଦର ହାତରେ ପାଣ୍ଡୁଲିପିକୁ ଚୂଡ଼ାନ୍ତ କଲି ଲେଖକଙ୍କ ମନକୁ ଚୁମ୍ବିଲା ଭଳି । ଏ ବହି ବି ସେଇ ମିସନ୍ ପ୍ରେସ୍‌ରେ ସାମାନ୍ୟ ପରେ ମୁଦ୍ରିତ ହେଲା । ଶିକ୍ଷାବିଭାଗର ନୋଟିଫିକେସନରେ ଅନୁମୋଦିତ ହୋଇ ପ୍ରତି ବହିରୁ ପାଞ୍ଚ ପାଞ୍ଚ ଖଣ୍ଡ ପାଟନା ପଠାଗଲା । ଲେଖକ ସେତେବେଳେ ସ୍ୱେଚ୍ଛାପ୍ରଣୋଦିତଭାବରେ କହିଥିଲେ, ବହି ମଞ୍ଜୁର ହୋଇ ଚାଲିଲେ ବାର୍ଷିକ ଲାଭରୁ ଗୋଟାଏ ଟୁକୁରା ଅଂଶ (share) ମତେ ଦେବେ । ଭାଗ୍ୟବଳରୁ ଉଭୟ ବହି ମଞ୍ଜୁର ପାଇଲା ଏକ ପରେ ଏକ । ମ୍ୟାକ୍‌ମିଲନ୍ କମ୍ପାନୀର 'ଶିଶୁବୋଧ' ୧୯୨୮ ଜାନୁଆରି

ପଦ୍ଧତିଠାରୁ ଓ 'ବାଳବୋଧ' ପରବର୍ତ୍ତୀରୁ ଉଠିଗଲା । ତା ଜାଗାରେ ପ୍ରଥମ ଶ୍ରେଣୀରୁ ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ବାଲକୃଷ୍ଣ ବାବୁଙ୍କ 'ନୂଆପାଠ' ପ୍ରଥମରୁ ତୃତୀୟଭାଗ ଚାଲିଲା । ଟ୍ରେଡ଼ିଂ କମ୍ପାନୀ ସୋଲ୍ ଏଜେନ୍‌ସି ନେଇଥିବା ଯୋଗୁଁ ବହିର ବହୁ ବିକ୍ରି ହେଲା, ଅଜସ୍ର ଟଙ୍କା ଲାଭ ହେଲା; କିନ୍ତୁ ବାଲକୃଷ୍ଣବାବୁଙ୍କ ସ୍ୱତଃପ୍ରତିଶ୍ରୁତ ବଚନ ସେହି ବଚନରେ ହିଁ ରହିଯାଇଥିଲା । ମୁଁ କିନ୍ତୁ ମୁହୂର୍ତ୍ତେ ଅର୍ଥର ଆଶା ରଖିନଥିଲି । ଏହା ମୂଳରେ ଥିଲା ଦୁଇଟି କାରଣ । ପ୍ରଥମ କାରଣ ହେଲା—ପାଠ୍ୟପୁସ୍ତକ ପ୍ରକାଶନ କ୍ଷେତ୍ରରୁ ବିଦେଶୀ ବେପାରୀଙ୍କୁ ହଟାଇଦେବାପାଇଁ ତାଙ୍କର ଦୁଃସାହସିକ ସାଧୁ ଉଦ୍ୟମ, ଯାହା ଫଳରେ ପାଣିସୁଅ ପରି ବିଦେଶକୁ ବୋହିଯାଉଥିବା ଓଡ଼ିଶାଧନ ଓଡ଼ିଶାରେ ରହିଯିବ । ଦ୍ୱିତୀୟ କାରଣ ହେଲା—ତାଙ୍କ ସହିତ ମୋର ନିକଟତର ରକ୍ତଗତ ସମ୍ପର୍କ ।

## (୪) ପ୍ରେସ୍-ଉପକରଣର ଆୟୋଜନ—

ଉପକରଣ ତାଲିକାରୁ ଜଣାଗଲା, ଗୋଟିଏ ପ୍ରେସ୍‌ଟିକୁ ଠିଆ କରିବାକୁ ହେଲେ ସର୍ବନିମ୍ନ ପାଞ୍ଚହଜାର ଟଙ୍କା ଆବଶ୍ୟକ । କିନ୍ତୁ ବାଲକୃଷ୍ଣ ବାବୁଙ୍କ ପାଖରେ ସର୍ବମୋଟ ପାଣ୍ଠି ଥିଲା ତିନିହଜାର । ସେଥିରୁ ଅର୍ଦ୍ଧେ ନୂଆ ଜର୍ମାନୀ ଟ୍ରେଡ଼୍ଲ ମେସିନ୍‌ଟିର କିଣାରେ (କମିସନ୍ କଟି) ୧୪୪୦ ଟଙ୍କା ତାତ୍କ୍ଷଣିକ ଖର୍ଚ୍ଚ ହୋଇଯିବ । ରେଳରେ ଆସୁଥିବାରୁ ମାଲଶୁଳ୍କାଦି ମଧ୍ୟ ଦେବାକୁ ପଡ଼ିବ । ଏହା-ବାଦ୍ ଓଡ଼ିଆ ଟାଇପ୍ ଓ କମ୍ପୋଜିଂ କେସ୍, ଷ୍ଟାଣ୍ଡ୍, ଟୁଲ୍, ଷ୍ଟିକ, ଟେବୁଲ୍, ଆଲମାରି ଆଦି ନାନା କାଷ୍ଠୋପକରଣ ତିଆରି କରାଇବାକୁ ହେବ । ପୁଣି, ଗୋଟିଏ ପୁରୁଣା ଇଙ୍କ୍‌ଟେବୁଲ ଓ ଗୋଟିଏ ପୁରୁଣା ହାଣ୍ଡ୍‌ପ୍ରେସ୍ କଟକରୁ କିଣାଯିବ ।

ଏସବୁର ଆୟୋଜନ ପାଇଁ ଅର୍ଥାଭାବର ଯେଉଁ ଅସୁବିଧା ଘଟିବ, ତାହା ଦୂର ହେବ କିପରି ? ବାଲକୃଷ୍ଣ ବାବୁ ତାଙ୍କ ପରାମର୍ଶଦାତା ଆକୁଳ ମିଶ୍ରଙ୍କ ପାଖକୁ ଗଲେ । ମିଶ୍ରେ କାଠ କାମର ଶ୍ରେଷ୍ଠ ନିର୍ମାତା ବିନୋଦ ମହାରଣାଙ୍କୁ ଡକାଇଆଣି ସମସ୍ତ କାଠଜିନିଷର ବରାଦ ତାଙ୍କୁ ଦେଲେ । କଥା ହେଲା, ମୋଟ ମୂଲ୍ୟର ଏକଚତୁର୍ଥାଂଶ ମହାରଣାଏ ଅଗ୍ରିମ ନେବେ ଏବଂ ପ୍ରେସ୍ ଖୋଲିବା ପରେ ବର୍ଷକ ମଧ୍ୟରେ ଅବଶିଷ୍ଟ ଟଙ୍କା କେତୋଟି କିସ୍ତିରେ ଶୁଝି ଦିଆଯିବ । ଇଙ୍କ୍‌ଟେବୁଲ୍ ଓ ହାଣ୍ଡ୍‌ପ୍ରେସ୍‌ର ମାଲିକଙ୍କ ସହିତ ମଧ୍ୟ ମିଶ୍ରେ ଅନୁରୂପ ସର୍ତ୍ତ କରିଦେଲେ । ଏହାଫଳରେ ବାଲକୃଷ୍ଣ ବାବୁଙ୍କର ଅର୍ଥାଭାବଘଟିତ ଦୁସ୍ତର ସମସ୍ୟାର ଫଇସଲା ହୋଇଗଲା । ମିଶ୍ର ମହାଶୟଙ୍କ ନିର୍ଦ୍ଦେଶାନୁଯାୟୀ ଟାଇପ୍ ଢଳା ଓ କାଠ-ଉପକରଣ ତିଆରିକୁ ତ୍ୱରାନ୍ୱିତ କରିବାପାଇଁ ବାରମ୍ବାର ତାଗିଦା କରିବାର ଭାର ମୁଁ ଗ୍ରହଣକଲି ।

ସେତେବେଳେ ଦରଘାବଜାର ସଦର ରାସ୍ତା ଉପରେ ଥିବା ପ୍ରିଣ୍ଟିଂ କମ୍ପାନୀ ପ୍ରେସ୍‌ର ମେନେଜର ଥିଲେ କର୍ମୋତ୍ସାହୀ ଯୁବକ କୃଷ୍ଣଚନ୍ଦ୍ର ମହାନ୍ତି । 'ଉତ୍କଳଦୀପିକା' ଓ 'ଉତ୍କଳ

ମଧୁପ'ର ସମ୍ପାଦକ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ସେହି ପ୍ରେସ୍‌ର ଉପରମହଲାସ୍ଥ ଏକ ପ୍ରକୋଷ୍ଠରେ ରହୁଥିଲେ । ତାଙ୍କ ସାନ୍ନିଧ୍ୟଲାଭ ଯେକୌଣସି ଉଦୀୟମାନ ତରୁଣ ଲେଖକ ପକ୍ଷରେ ପ୍ରେରଣାର ଉତ୍ସ ଥିବାରୁ ମୁଁ ନର୍ମାଲ୍ ସ୍କୁଲ ଛାଡ଼ିବା ପରେ ମଧ୍ୟ ମଝିରେ ମଝିରେ ତାଙ୍କ ନିକଟକୁ ଯାଉଥିଲି । ଲେଖକ ଓ ଜାତୀୟତାପ୍ରେମୀଙ୍କ ପାଇଁ ତାଙ୍କ ଦ୍ୱାର ସର୍ବଦା ଥାଏ ଉନ୍ମୁକ୍ତ । ଉପର ତାଲାକୁ ଉଠିବା ବାଟରେ ତଳ ତାଲାରେ ପଡ଼େ କୃଷ୍ଣବାବୁଙ୍କ ଅଫିସ୍ । ତେଣୁ ବିଦ୍ୟାରତ୍ନଙ୍କୁ ଭେଟିବାର ଉପଜାତ ସ୍ୱରୂପ ମେନେଜରଙ୍କ ସହିତ ମୁଲାକାତ କରିବାର ସୁବିଧା ପ୍ରାୟ ସବୁଥର ମିଳେ । ତା ଫଳରେ ଆମେ ଦୁଇ କୃଷ୍ଣଙ୍କ ମଧ୍ୟରେ ପ୍ରିୟତା ବେଶ୍ ଜମିଉଠିଥିଲା । ମୁଁ ତାହାର ଚରମ ସୁଯୋଗ ନେଇଥିଲି ।

ସେହି ପ୍ରିଣ୍ଟିଂ କମ୍ପାନୀ ପ୍ରେସ୍‌ରେ ମେନେଜର କୃଷ୍ଣଚନ୍ଦ୍ର ମହାନ୍ତିଙ୍କ ଉଦ୍ୟମରେ ଗୋଟିଏ ଟାଇପ୍-ଢଳା (type-casting) ବିଭାଗ ସଂଯୁକ୍ତ ହୋଇଥାଏ । ସେଥିରେ ଯେଉଁ ଓଡ଼ିଆ ଟାଇପ୍ (ଅକ୍ଷର ଓ ମାତ୍ରାଫଳାଦି) ଢଳା ହେଉଥିଲା, ତାହା ପ୍ରେସ୍‌ର ପ୍ରୟୋଜନ ମେଣ୍ଟାଇବା ପରେ ବହୁଳ-ବ୍ୟବହୃତ ଟାଇପ୍‌ମାନଙ୍କରୁ କିଛି କିଛି ଉଦ୍‌ବୃତ୍ତ ରହିଯାଏ ରେଜା ବିକ୍ରି ପାଇଁ । ମାତ୍ର କଟକର ବା କଟକ ବାହାରର କୌଣସି ମୁଦ୍ରଣାଳୟ ସେଟ୍‌ଦାରିଆ ବଡ଼ ଅର୍ଡ଼ର (ବରାଦ) ଦେଲେ ସ୍ୱତନ୍ତ୍ର ବ୍ୟବସ୍ଥାଦ୍ୱାରା ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ସମସ୍ତ ବରାଦୀ ଟାଇପ୍ ଯୋଗାଇଦିଆଯାଏ ।

ବାଲକୃଷ୍ଣବାବୁଙ୍କ ମୁଦ୍ରଣାଳୟପାଇଁ ପହିଲି ଦଫାରେ ଆବଶ୍ୟକ ହେଉଥିବା ଗ୍ରେଟ ବଡ଼ ବିଭିନ୍ନ କିସମର ଆଠମହଣ ଓଡ଼ିଆ ଟାଇପ୍ ତିନି ଚାରି ମାସ ମଧ୍ୟରେ ଯୋଗାଇଦେବା ପାଇଁ ପ୍ରିୟ ବନ୍ଧୁ କୃଷ୍ଣବାବୁଙ୍କୁ ମୁଁ ଅନୁରୋଧ କଲି; ସହିସମ୍ଭାଳି ତାର ମୂଲ୍ୟ ଦିଆଯିବ ବୋଲି ମଧ୍ୟ କହିଲି । ସେ ବିନା ଦ୍ୱିଧାରେ ଦୁଇଟିଯାକ କଥାରେ ରାଜିହେଲେ ।

୧୯୨୭ ମସିହାର ଗ୍ରୀଷ୍ମାବକାଶ ହେଲା, ବାଲକୃଷ୍ଣ ବାବୁ କଟକ ଆସିଗଲେ । ଉଦ୍‌ଯୋଗ ପର୍ବ ଠିକ୍ ମାର୍ଗରେ ଆଗେଇଥିବାର ଦେଖି ଭାରି ଖୁସୀ ହେଲେ । ଯା' ମଧ୍ୟରେ ମୁଁ 'ହିଲ୍‌ଟି' ଛଡ଼େଇ ଟ୍ରେଡ଼ଲ୍ ମେସିନ୍‌ଟିକୁ କଟକ ଷ୍ଟେସନ୍ ମାଲଗୋଦାମରୁ ଆଣିସାରିଥିଲି । ଗାର୍ଲ ସ୍କୁଲର ଦକ୍ଷିଣପଟ ପାଚେରୀକୁ ଲାଗିଥିବା ଦୋତାଲା କୋଠାର ଗୋଟିଏ ତଳ ବଖରା ଭଡ଼ା ନେଇ ସେଥିରେ ଓଡ଼ିଆ ଟାଇପ୍‌ତକ ଓ ଏହି ମେସିନ୍‌କୁ ଯତ୍ନରେ ରଖାଇଥିଲି । କେବଳ ଏତିକି ନୁହେଁ, ବାଖରାବାଦରେ ଆମ ମେସ୍ ହୋଇଥିବା ପକ୍କା ଗୃହରୁ ଗୋଟିଏ ବଡ଼ କୋଠରି ଭଡ଼ା ନେଇ ତହିଁରେ ବାଲକୃଷ୍ଣବାବୁଙ୍କ ପ୍ରଦତ୍ତ Anglo-Oriya First Book, ଶିଶୁ ରାମାୟଣ, ଫୁଲଗୁଞ୍ଜୁଡ଼ି ଓ ଚନ୍ଦ୍ରଗୁପ୍ତ ପୁସ୍ତକ ଗଠାମାନ ରଖିଥିଲି । ଏ ବହିଗୁଡ଼ିକ ତାଙ୍କଦ୍ୱାରା ପ୍ରଣୀତ ଓ ପ୍ରକାଶିତ ହୋଇଥିଲା । କଟକର ବହିଦୋକାନୀମାନେ ଦରକାର ମୁତାବକ ଏସବୁ ପୁସ୍ତକ ମୋ'ଠାରୁ କିଣିନେଉଥିଲେ ବେପାରି ଦରରେ । ଏଇଟା ଥିଲା ମୋର ଏକ ଧାରାବାହିକ ଧରମବେଠିଆ କାମ । କୋଠରିଭଡ଼ା ଗଣେଁ ମୁଁ, ଟଙ୍କା ତାଡ଼ା ଗଣନ୍ତି ସେ । ଖେପକୁ ଖେପ ଆସି ହିସାବ ବୁଝି

ଟଙ୍କା ନେଇଯାନ୍ତି, କିଛି କିଛି ବହି ପୁଣି ଜମାଦେଇଯାନ୍ତି; କିନ୍ତୁ କୋଠରିଭଡ଼ାର ନା ଧରନ୍ତି ନାହିଁ କେବେ, ଯଦିବା ଦିନେ ଦେଢ଼ଦିନ ମୋର ଅତିଥିରୂପେ ମେସ୍‌ରେ ପ୍ରତିଥର ରହନ୍ତି, ଖାଆନ୍ତି ପିଅନ୍ତି । ଏସବୁ ହୀନ କଥାକୁ ମୁଣ୍ଡରେ ନ ପୁରାଇ ମାତିଥାଏଁ ମୁଁ ଉଦ୍ଦାମ ଉତ୍ସାହରେ ଗୋଟାଏ ଅରଣା ମଇଁଷି ପରି । ବାଳକୃଷ୍ଣବାବୁ ହେବେ ଭାବୀ ମୁଦ୍ରଣାଳୟର ମାଲିକ-ପ୍ରତିଷ୍ଠାତା; ମୋର କେବଳ ଆତ୍ମଗତ ଆନନ୍ଦ ଯେ, ମୁଁ ତାର ମାଲିକାନାହୀନ ନିର୍ମାଣକର୍ତ୍ତା !

(୫) 'ସାରସ୍ୱତ ପ୍ରେସ୍' ପ୍ରତିଷ୍ଠା—

ଫେବ୍ରୁଆରିତକ କଟକରେ କଟାଇ ବାଳକୃଷ୍ଣବାବୁ ତାଙ୍କ କର୍ମକ୍ଷେତ୍ର କେନ୍ଦ୍ରାପଡ଼ାକୁ ବାହୁଡ଼ିଗଲେ ସତ; କର୍ମରେ କିନ୍ତୁ ସେତେ ମନ ଲାଗିଲା ନାହିଁ । କିପରି ସଦର ରାସ୍ତା ପାଖରେ ପ୍ରେସ୍‌ପାଇଁ ଘର ଖଣ୍ଡିଏ ମିଳିବ, ଏହାହିଁ ତାଙ୍କର ହେଲା ପ୍ରଧାନ ଚିନ୍ତା । ଏ ଚିନ୍ତାକୁ ମଧ୍ୟ ଦୂର କରିଦେଲେ ଆକୁଳ ମିଶ୍ରେ । ବାଲୁବଜାର ମସ୍ତାନବାବୁଙ୍କ ଦୋକାନର ଦକ୍ଷିଣସ୍ଥ ସଙ୍ଗତ ଲେନ୍‌ରେ ପୁରୁଣା ଏକତାଲା ଘରଟିଏ ଖାଲିହେଲା । ସେହି ଘରେ ରହି ମିଶ୍ରେ ପହିଲେ ଗ୍ରନ୍ଥଗ୍ରହୀଙ୍କ ବ୍ୟବହାର୍ଯ୍ୟ ବିଭିନ୍ନ ଷ୍ଟେସନାରି ଜିନିଷର ବ୍ୟବସାୟ ଆରମ୍ଭ କରିଥିଲେ ଏବଂ ତାହା ଯୌଥ ଅନୁଷ୍ଠାନ ସ୍ତରକୁ ଉନ୍ନୀତ ହୋଇ 'କଟକ ଟ୍ରେଡ଼ିଂ କମ୍ପାନୀ' ନାମରେ ନିକଟବର୍ତ୍ତୀ ସଦର ରାସ୍ତାକୁ ଉଠିଯିବା ପରେ ଉକ୍ତ କୋଠାରେ 'ରାମକୃଷ୍ଣ କଟେଜ୍' ସ୍ଥାପିତ ହୋଇଥିଲା, ଯାହାର ତତ୍ତ୍ୱାବଧାୟକ ରହିଥିଲେ ମିଶ୍ରେ ନିଜେ । ଏହି ସୂତ୍ରରୁ ଘରମାଲିକ ତାଙ୍କର ଥିଲେ ଅତି ପରିଚିତ ଓ ବିଶ୍ୱସ୍ତ । ମିଶ୍ରେ ପ୍ରେସ୍ ଉଦ୍ଦେଶ୍ୟରେ ସେହି ଘରଟି ଭଡ଼ା ଦେବାକୁ ଅନୁରୋଧ କରିବାରୁ ଘରମାଲିକ ଖୁସିରେ ରାଜି ହୋଇଗଲେ । ମୁଁ ଏହି ସୁଖବର ବାଳକୃଷ୍ଣବାବୁଙ୍କୁ ଚିଠିରେ ଜଣାଇ ତୁରନ୍ତ ଘର ଦେଖିବାକୁ ଆସିବାପାଇଁ ଲେଖିଥିଲି । ସେ ଆସି ଘରଟିକୁ ଦେଖି ଖୁବ୍ ପସନ୍ଦ କଲେ ଏବଂ ଆକୁଳ ପଣ୍ଡିତଙ୍କ ମଧ୍ୟବର୍ତ୍ତିତାରେ ତାହାକୁ ଟାଣେଇ ଆସୁଥିବା ୧୯୨୭ ସେପ୍‌ଟେମ୍ବର ପହିଲାଠାରୁ ଭଡ଼ା ନେଲେ । ଏଣୁ ଯାଇ ଚାକିରିରୁ ଇସ୍ତଫା ଦେଇ କଟକ ଚାଲିଆସିଲେ । ସବୁ ଜିନିଷ ସେଠାକୁ ବୁହାହୋଇ ଆସିଲା । ଟ୍ରେଡ଼୍‌ଲ ମେସିନ୍ ବସାଗଲା, ଅନ୍ୟାନ୍ୟ ଦ୍ରବ୍ୟୋପକରଣ ଶୃଙ୍ଖଳିତଭାବରେ ଯଥାସ୍ଥାନରେ ରକ୍ଷିତ ହେଲା । ଟ୍ରେଡ଼୍‌ଲମ୍ୟାନ୍, ପ୍ରେସ୍‌ମ୍ୟାନ୍, ଇଙ୍କ୍-ମ୍ୟାନ୍, କରେକ୍ଟର୍, କେତେକ କମ୍ପୋଜିଟର୍ ଗୁଆଁକୁ ଆସି ଜୁଟିଗଲେ । ବାଳକୃଷ୍ଣ ବାବୁଙ୍କ ପ୍ରିୟ ଛାତ୍ର ଗୋପୀନାଥ ଜେନା ପ୍ରେସ୍ ମେନେଜରରୂପେ ନିଯୁକ୍ତ ହେଲେ । ସେହି ସେପ୍‌ଟେମ୍ବର ମାସର ଏକ ଶୁଭ ତିଥିରେ (ସମ୍ଭବତଃ ୨୪ ତାରିଖରେ) ମୁଦ୍ରଣାଳୟଟି 'ସାରସ୍ୱତ ପ୍ରେସ' ନାମରେ ଉଦ୍‌ଘାଟିତ ହେଲା । ମୁଁ ଟ୍ରେଡ଼ିଂ କମ୍ପାନୀରେ ଚାକିରି କରୁଥିଲେହେଁ ବାଳକୃଷ୍ଣବାବୁଙ୍କ ସହିତ ସେହି ପ୍ରେସ୍ ପରିସରରେ ରହିଲି ଏବଂ ତାଙ୍କୁ ପ୍ରେସ୍ କାର୍ଯ୍ୟରେ ଯତ୍ପରୋନାସ୍ତି ସହାୟତା କରିବାକୁ ଲାଗିଲି ।

ଏହି ନବପ୍ରତିଷ୍ଠିତ କ୍ଷୁଦ୍ରାବୟବ ପ୍ରେସ୍‌ଟିପାଇଁ କାମର ଆଦୌ ଅଭାବ ରହିଲା ନାହିଁ; ବରଂ ଅନେକ ସମୟରେ ବିଭିନ୍ନ କାମର ଉପର୍ଯ୍ୟୁପରି ଚାପ ମାତ୍ରାଧିକ ହୋଇଉଠେ । ଏହାର କାରଣ ଥିଲା କାମଦାନଶୌଣ୍ଡ ପଣ୍ଡିତ ଆକୁଳ ମିଶ୍ରଙ୍କ ସହାନୁଭୂତିପୁଷ୍ଟ ସୁଦୃଷ୍ଟିପାତ । ବେଳକୁ ବେଳ କାମ ବୃଦ୍ଧି ସଙ୍ଗେ କର୍ମଚାରୀ ସଂଖ୍ୟା ବଢ଼ିବାରେ ଲାଗିବାରୁ ଏଠାରେ ସ୍ଥାନାଭାବ ତୀବ୍ରଭାବରେ ଅନୁଭୂତ ହେଲା । ତେଣୁ ୧୯୨୮ର ଶେଷଭାଗରେ ପ୍ରେସ୍ ଉଠିଗଲା ସାମାନ୍ୟ ଦୂରସ୍ଥ ନିମଚୌଡ଼ିର କଲେକ୍ଟର-ଗେଟ୍ ସାମନା ଏକ ପ୍ରଶସ୍ତ କୋଠାକୁ, ଯାହାକୁ ତିତାଲି କୁହାଯିବ ନାହିଁ କି ଦିତାଲି ବି କୁହାଯାଇପାରିବ ନାହିଁ, ବରଞ୍ଚ ଅଢ଼େଇତାଲିଆ କହିଲେ ଠିକ୍ ହେବ ।

## (୭) ଅର୍ଥମନର୍ଥଂ—'ସାରସ୍ୱତ ଭଣ୍ଡାର' ପୁସ୍ତକାଳୟର ଜନ୍ମ : ଟ୍ରେଡ଼ିଂ-କମ୍ପାନୀରୁ ମୋର ବିଦାୟଗ୍ରହଣ—

ଏବେ ବାଳକୃଷ୍ଣବାବୁ ନିଜ ପାଠ୍ୟପୁସ୍ତକମାନ ନିଜ ପ୍ରେସ୍‌ରେ ଛାପି ନିଜ ଷ୍ଟୋର୍‌ରେ ଗଚ୍ଛିତ ରଖିଲେ ଏବଂ ଦରକାର ଅନୁଯାୟୀ ସେହିଠାରୁ ବହି କିଣିନେବାପାଇଁ ଟ୍ରେଡ଼ିଂ କମ୍ପାନୀକୁ ଜଣାଇଦେଲେ । ଏତଦ୍ଦ୍ୱାରା ସୋଲ୍‌ଏଜେନ୍‌ସିର ସର୍ତ୍ତ ରଦ୍ଦ ହୋଇଯିବାରୁ ଆକୁଳ ମିଶ୍ର ଉତ୍‌କ୍ଷିପ୍ତ ହୋଇଉଠି ଛାପା ହେବାକୁ ଯାଉଥିବା ମୋ'ଦ୍ୱାରା ପ୍ରସ୍ତୁତ ୧୯୨୯ର ବିସ୍ତୃତ 'ପୁସ୍ତକ ତାଲିକା'ରୁ ବାଳକୃଷ୍ଣବାବୁଙ୍କ ପ୍ରଣୀତ ସମସ୍ତ ପୁସ୍ତକର ପୃଷ୍ଠା ପୃଷ୍ଠା ବ୍ୟାପୀ ସଚିତ୍ର ବିଜ୍ଞାପନଗୁଡ଼ିକୁ ଏକାବେଳେ ଉଠାଇଦେବାକୁ ମତେ ଆଦେଶ ଦେଲେ । ମୁଁ ତଦଣ୍ଡରେ ତାହା ପାଳନ କଲି ଏବଂ ଉକ୍ତ ବିଜ୍ଞାପନରେ ଥିବା ବ୍ଲକ୍‌ଗୁଡ଼ିକୁ ସଙ୍ଗେ ସଙ୍ଗେ ଜଣେ କର୍ମଚାରୀ ହାତରେ ବାଳକୃଷ୍ଣବାବୁଙ୍କ ପାଖକୁ ପଠାଇଦେଲି । କର୍ମଚାରୀଟି ସେଗୁଡ଼ିକୁ ବାଳକୃଷ୍ଣବାବୁଙ୍କୁ ଦେଇ ତାଙ୍କଠାରୁ ୱାପସୀ-ରସିଦ ଆଣି ପଣ୍ଡିତ ମହାଶୟଙ୍କୁ ସମର୍ପିଲା । ଅର୍ଥଲାଳସା ବନ୍ଧୁଭାବ ନଷ୍ଟକରେ, ସୁହୃଦ୍‌ଭେଦ ସୃଷ୍ଟି କରେ, ଏକଥା ଅକ୍ଷରେ ଅକ୍ଷରେ ସତ୍ୟ । 'ଟଙ୍କା ମୁହଁ କରେ ବଙ୍କା' ପ୍ରବଚନଟି ଏଠାରେ ସତ୍ୟ ସତ୍ୟରେ ଫଳିଲା ।

'ଅର୍ଥମନର୍ଥଂ ଭାବୟ ନିତ୍ୟଂ'ର ବିଭେଦକର ଭୟାବହ ସ୍ୱରୂପ ସାକ୍ଷାତ୍ ପ୍ରତ୍ୟକ୍ଷ କରି ମୁଁ ଆତଙ୍କରେ ପ୍ରମାଦ ଗଣିବାକୁ ଲାଗିଲି । ମୋର ଦ୍ୱୈତ ସ୍ଥିତି—ଟ୍ରେଡ଼ିଂ କମ୍ପାନୀରେ ଚାକିରି ଓ ସାରସ୍ୱତ ପ୍ରେସ୍‌ରେ ରହଣି—ଏଣିକି ଆଉ ନିରାପଦ ରହିବ ନାହିଁ । ଭାବିଚିନ୍ତି 'ଏ' ବା 'ସେ' ଏଥିରୁ ଗୋଟିଏ 'ଘର'କୁ ଆଦରିନେବା ହିଁ ବୁଦ୍ଧିଆର କାମ ହେବ । ମୋ' ପକ୍ଷରେ 'ଏ ଘର' ହେଉଛି ଟ୍ରେଡ଼ିଂ କମ୍ପାନୀ, କାରଣ ଆକୁଳ ମିଶ୍ରଙ୍କ ବଡ଼ଭଉଣୀଙ୍କୁ ମୁଁ 'ମାଉସୀ' ବୋଲି ଡାକେଁ; ଆଉ 'ସେ ଘର' ହେଉଛି ସାରସ୍ୱତ ପ୍ରେସ୍, କାରଣ ବାଳକୃଷ୍ଣବାବୁଙ୍କ ବୋଉ ମୋ' ନିଜ 'ପିଉସୀ' ।

ଚାହୁଁ ଚାହୁଁ ସେହି ଦିନହିଁ ଆକୁଳ ଓ ବାଳକୃଷ୍ଣଙ୍କ ମଧ୍ୟରେ 'ଗଜ-ମକର' ଦ୍ୱନ୍ଦ୍ୱ ଆରମ୍ଭ ହୋଇଗଲା । ୱାପସୀ-ରସିଦ ଦେବାର କେତୋଟିମାତ୍ର ଘଣ୍ଟା ମଧ୍ୟରେ

ବାଲକୃଷ୍ଣବାବୁ ବାଲୁବଜାର ରୋଡ୍‌ରେ 'ସାରସ୍ୱତ ଭଣ୍ଡାର' ନାମକ ଗୋଟିଏ ବହି-ଦୋକାନ ଖୋଲିବାର ଚୂଡ଼ାନ୍ତ ଆୟୋଜନ କରିଦେଲେ । ଟ୍ରେଡ଼ିଂ କମ୍ପାନୀଠାରୁ ବାଲୁବଜାର ଛକ ଆଡ଼କୁ ପ୍ରାୟ ତିରିଶ ହାତ ଛଡ଼ାରେ ଗୋଟିଏ ବଡ଼ ମିଷ୍ଟାନ୍ନ ଭଣ୍ଡାର ଥିଲା । ଉକ୍ତ ମିଠାଦୋକାନର ମାଲିକ ଚୌଧୁରୀ ଭୋଳାନାଥ ନନ୍ଦ ବାଲକୃଷ୍ଣଙ୍କ ଗାଁ'ପାଖର ଲୋକ ଏବଂ ସେତେବେଳକୁ ତାଙ୍କ ବଳବୟସ ଖସିଯାଇଥାଏ । କାରବାର ମାନ୍ଦା ଧରିଯାଇଥିବାରୁ ଦୋକାନଟିକୁ ରଖିବେ କି ଭାଙ୍ଗିଦେବେ ଏଇ ଦୋଦାଇରେ ପଡ଼ିଥାନ୍ତି ।

ଏହି ଅନୁକୂଳ ଯୋଗପାଗରେ 'ଶରବନ୍ଧା'ର ଧନୁର୍ଦ୍ଧର ପୁତ୍ର ବାଲକୃଷ୍ଣ ଲକ୍ଷ୍ୟଭେଦ ପାଇଁ ଅବ୍ୟର୍ଥ ଶର ସନ୍ଧାନ କଲେ; ମାତ୍ର ବିନ୍ଧିବା ପର୍ଯ୍ୟନ୍ତ ଗଲା ନାହିଁ—ଶିକାର ଆପେ ଆସି ଧରାଦେଲା । ଚୌଧୁରୀ ଭୋଳାନାଥ ନନ୍ଦେ କଥା ପ୍ରସଙ୍ଗରେ ମିଠେଇ ଦୋକାନର ଦୁରବସ୍ଥା ବଖାଣି ବସିଲେ । 'କାକ' ବସିବାକୁ 'ତାଳ' ଖସିଲା । ବାଲକୃଷ୍ଣ ତୁରନ୍ତ ବହି-ଦୋକାନଟିଏ ଖୋଲିବାପାଇଁ ଘରତଲାସରେ ଥିବା କଥା ପ୍ରକାଶ କରନ୍ତେ ଛନ୍ଦହୀନ ନନ୍ଦଙ୍କ ପାଟିରୁ ହଠାତ୍ ବାହାରିପଡ଼ିଲା, "ଏତେଠି ତଲାସୁଛ କାହିଁକି, ମୋ'ର ଦୋକାନରେ ବହିଦୋକାନ କରୁନା ?"

ସଙ୍ଗେ ସଙ୍ଗେ ଆପୋଷରେ ଉଭୟଙ୍କ ସମସ୍ୟାର ସମାଧାନ ହୋଇଗଲା । ସପ୍ତାହେ ନ ପୁରୁଣୁ ଲୋକେ ଦେଖିବାକୁ ପାଇଲେ, ମିଷ୍ଟାନ୍ନ ଭଣ୍ଡାରଟି 'ସାରସ୍ୱତ ଭଣ୍ଡାର'ରେ ପରିଣତ ହୋଇଯାଇଛି ଏବଂ ତାର ସୁଦୃଶ୍ୟ 'ପୁସ୍ତକ ତାଲିକା' ଗ୍ରାହକମାନଙ୍କୁ ବଣ୍ଟାଯାଉଛି ଓ ସ୍କୁଲ ଆଦି ବିଭିନ୍ନ କ୍ଷେତ୍ରକୁ ପଠାଯାଉଛି । ପୁଣି 'ସାରସ୍ୱତ ଭଣ୍ଡାର'ର ପରିଚାଳନା ଦାୟିତ୍ୱ ନେଇଛନ୍ତି କାନପୁର ମେଟ୍‌କାଫ୍ ମିଡ଼୍‌ଲ୍ ଇଂଲିଶ୍ ସ୍କୁଲର ପୂର୍ବତନ ପ୍ରବୀଣ ହେଡ୍‌ମାଷ୍ଟର, ହସ୍ତାପର ଗାନ୍ଧିବାଦୀ ଓ ବାଲକୃଷ୍ଣଙ୍କ ପ୍ରିୟ ବୟସ୍ୟ ବ୍ରଜବନ୍ଧୁ ଦାଶ ।

ସାଂଘାତିକ ପରିସ୍ଥିତି ମଧ୍ୟରେ ଛିଡ଼ା ହୋଇ ରହିବା ମୋ' ପକ୍ଷରେ ଅସମ୍ଭବ ହୋଇଉଠିଲା । ଭବିଷ୍ୟତ୍ ଆର୍ଥିକ କ୍ଷତିର ଆଶଙ୍କାକୁ ଅଣ୍ଟାରେ ଖୋସି ବାଲକୃଷ୍ଣବାବୁଙ୍କ ଆପାତଆଶାପ୍ରଦ କଥାରେ ଭଲ ମାନେ ମାନେ ଟ୍ରେଡ଼ିଂ କମ୍ପାନୀ ଛାଡ଼ିଲି । ଆକୁଳ ପଣ୍ଡିତେ ଦୁଃଖର ସହିତ ମତେ ବିଦାୟଦେଲେ ।

## (୭) ଦୁଇଟି ରତ୍ନର ସନ୍ଧାନ—

ଅନ୍ଦାଜ ୧୯୬୭ ଅପ୍ରେଲର ଏକ ଉଦୁଉଦିଆ ଦିପହରେ ଖଦଡ଼ପିନ୍ଧା କୃଷ୍ଣଚନ୍ଦ୍ର ପ୍ରଧାନ (କଟକ ଟ୍ରେଡ଼ିଂ କମ୍ପାନୀ ଷ୍ଟକର ଗ୍ରୁଡ଼ି ବାଙ୍କାବଜାରମୁଣ୍ଡ ଚୌଧୁରୀବଜାର ରାସ୍ତା ଉପରେ ନିଜର ସ୍ୱାଧୀନ ପୁସ୍ତକ ବ୍ୟବସାୟ ପ୍ରତିଷ୍ଠାତା ଓ ଔପନ୍ୟାସିକ କାହ୍ନୁଚରଣ ମହାନ୍ତିଙ୍କ ପ୍ରଥମ ଉପନ୍ୟାସ 'ବାଲିରାଜା'ର ପ୍ରକାଶକ) ଝାଳନାଳ ହୋଇ ମୋ' ପାଖରେ ପହଞ୍ଚିଲେ, ଟିକିଏ ଦମ୍ ନେଇ ପୁଣି କାହାଣୀଟିଏ କହିବସିଲେ :

"ମଇତ୍ର ! ଗୋଟିଏ ସଦୁଦ୍ଦେଶ୍ୟରେ ତୁମ ପାଖକୁ ଆସିଲି । ତୁମେ ସହାନୁଭୂତି ପ୍ରଦର୍ଶନ କଲେ ଗୋଟିଏ ମେଧାବୀ କଲେଜପଢ଼ୁଆ ପିଲାର ପ୍ରତିଭା ସହଜରେ ବିକଶିତ

ହୋଇପାରିବ । ଟିକିଏ ମନ ଦେଇ ଶୁଣ । ଆମେ ଯେଉଁ ବାନରସେନା କର୍ମୀଦଳଟି ବଡ଼ଚଣା-ଧର୍ମଶାଳା ଅଞ୍ଚଳରେ ଗାନ୍ଧିବାଣୀ ପ୍ରଚାର କରିବାକୁ ଯାଇଥିଲୁଁ, ବୟୋଜ୍ୟେଷ୍ଠ ବଡ଼ଭାଇ ହିସାବରେ ମୁଁ ଥିଲି ସେହି ଦଳର ଜମାଦାର ଓ ଚାଳକ । ନବମ ଶ୍ରେଣୀକୁ ପ୍ରମୋସନ୍ ପାଇଥିବା କଲେଜିଏଟ୍ ସ୍କୁଲର ଛାତ୍ର ରାମକୃଷ୍ଣ ମହାତ୍ମାଗାନ୍ଧିଙ୍କ ଡାକରାରେ ପାଠ ଛାଡ଼ି କଂଗ୍ରେସରେ ମିଶିଥିଲା । ମୋ' ମାରଫତରେ ଥିବା କର୍ମୀମାନଙ୍କ ମଧ୍ୟରେ ସେ ଥିଲା ସବୁଠୁଁ ସରସ ଓ ମୋର ସର୍ବାଧିକ ପ୍ରିୟ, ସୁଶୀଳ ସାନଭାଇଟି ପରି । ଦୀର୍ଘ ଚାରି ବର୍ଷ ବିତିଗଲେହେଁ ବହୁପ୍ରତୀକ୍ଷିତ 'ସ୍ୱରାଜ'ର ଦର୍ଶନ ମିଳିଲା ନାହିଁ, ଅଥଚ ଆମ ବୟସ-ଗଣ୍ଠିର ମୂଲ୍ୟବାନ୍ ଅସଲ ଅଂଶରୁ ଚାରି ବର୍ଷ ବୃଥା ମାଟି ହୋଇଗଲା । ଯାହାହେଉ, ଶେଷରେ ଚେତନା ଆସିଲା, ଆମେ କେତେଜଣ ପ୍ରଚାର ଦାୟିତ୍ୱରୁ ଅବ୍ୟାହତି ନେଇ ପୂର୍ବ ସ୍ଥିତିକୁ ଫେରିଆସିଲୁ ନିଜ ନିଜର ଭବିଷ୍ୟତ ଗଢ଼ିବାପାଇଁ । ରାମକୃଷ୍ଣ ତା' ପାଠରେ ମନପ୍ରାଣ ଲଗିପଡ଼ିଲା, ଘରେଇ ଛାତ୍ରରୂପେ କଲେଜିଏଟ୍ ସ୍କୁଲରୁ ମାଟ୍ରିକ୍ ପରୀକ୍ଷା ଦେଇ ପ୍ରଥମ ଶ୍ରେଣୀରେ ପାସ୍ କଲା । ଏବେ ସେ ରେଭେନ୍ସା କଲେଜର ଆଇ. ଏ. କ୍ଲାସରେ ନାମ ଲେଖାଇ ନିତ୍ୟ ସେଠାକୁ ଯାଉଥିଲେହେଁ ବସାରେ ପଢ଼ିବାକୁ ଦରକାରମତେ ସମୟ ପାଉନାହିଁ— ଏତେ ଦୂରରୁ କଲେଜ ପର୍ଯ୍ୟନ୍ତ ଚାଲି ଚାଲି ଯିବା ଓ କ୍ଲାସ୍ ସରିବା ପରେ ସେଠୁଁ ଚାଲି ଚାଲି ଆସିବାରେ ଝଡ଼ା ଦୁଇ ଘଣ୍ଟା ସମୟ ନଷ୍ଟ ହୋଇଯାଉଛି; ଏହାଛଡ଼ା, ହାତରେ ଦୁଇ ବଖତ ରୋଷେଇ କରିବାରେ ଦୁଇଘଣ୍ଟାରୁ କମ୍ ଯାଉନାହିଁ । ଏ ଅବସ୍ଥାରେ ବେଳ ଆଉ ରହିଲା କେତେ ଯେ ବହି ଧରି ଶଇଥିଲରେ ପଢ଼ିବସିବ ସେ ? ଏପରି ସ୍ଥଳେ କଲେଜ ପରୀକ୍ଷାରେ ଭଲ ଫଳ ଦେଖାଇବା କି ସମ୍ଭବ ? ଏଣୁ ତାକୁ ଯଦି ସାଇକେଲ୍‌ଟିଏ ମିଳନ୍ତା, ତାହାହେଲେ ତାର ଆଉ ଅଯଥା ସମୟ ବରବାଦ ହୁଅନ୍ତା ନାହିଁ କି ଏତେ ଦୀର୍ଘ ପଥ କଲେଜକୁ ଯିବା-ଆସିବା କରିବାରେ ସେ ଏପରି ହାଲିଆ ହୋଇପଡ଼ନ୍ତା ନାହିଁ ।"

ଧୈର୍ଯ୍ୟର ସହିତ ସମଗ୍ର କାହାଣୀଟି ଶୁଣିଲା ପରେ ସମବ୍ୟଥୀ ବନ୍ଧୁଙ୍କୁ ଜଣାଇଲି, "ତୁମେ ପ୍ରତିଭାବାନ୍ ଛାତ୍ରଟିର ଦୈନନ୍ଦିନ ଅସୁବିଧାରେ ଯେ ଅତ୍ୟନ୍ତ ଦରଦୀ, ଏହା ମୁଁ ବେଶ୍ ବୁଝିପାରୁଛି; ମାତ୍ର ସେହି ଅସୁବିଧା ଦୂର କରିବା ଉଦ୍ଦେଶ୍ୟରେ ମୋ' ଆଗରେ ଏତେ ଓକିଲାତି କରିବା ଅପେକ୍ଷା ହାତରୁ କିଛି ଟଙ୍କା ଖର୍ଚ୍ଚ କରି ଛାତ୍ରଟିକୁ ଖଣ୍ଡିଏ ଗ୍ରିନ୍ ମଡ଼େଲ୍ ର୍ୟାଲେ ସାଇକେଲ୍ ଯୋଗାଇଦେବା ତୁମ ପକ୍ଷରେ ଉଚିତ ନଥିଲା କି ? ମୁଁ ଯଦି ତୁମ ସ୍ଥାନରେ ଥାଆନ୍ତି, ଆଉ ଗୁଣଶାଳୀ ଛାତ୍ରଟି ତାର ଅସୁବିଧା ମତେ ଜଣାଇଥାନ୍ତା, ତାହାହେଲେ କେବେଠୁଁ ମୁଁ ପ୍ରତିକାର ବିଧାନ କରିଦେଇସାରନ୍ତିଣି ।"

ପ୍ରଧାନେ ଖୋଲା ହୃଦସ୍ୱରରେ ପ୍ରକାଶ କଲେ, "ମଇଜେ ! ବର୍ତ୍ତମାନ ସମ୍ବଳହୀନ ମୁଁ, ଜାଣିଛ ତ ଧାରଉଧାର କରି ଅଳ୍ପଦିନ ହେଲା ବହିଦୋକାନଟିଏ ଫିଟେଇଛି, ମୋର କ'ଣ ଏଡ଼େ ଚଞ୍ଚଳ ଏତେ ଟଙ୍କା ସାହାଯ୍ୟ ଦେବାର ବଳ ଆସିଲାଣି ?"

ଏହାପରେ ମୁଁ ତାଙ୍କୁ କହିଲି, "ତାହାହେଲେ ରାମକୃଷ୍ଣଙ୍କୁ ମୋ' ପାଖକୁ ପଠେଇଦିଅ, ମୁଁ ତାଙ୍କ ସହିତ କିଛି କଥାଭାଷା କରିବି ।"

ପରଦିନ ସନ୍ଧ୍ୟାରେ ରାମକୃଷ୍ଣ ମୋ ନିକଟକୁ ଆସିଲେ । କଥା ହେଉଁ ହେଉଁ ତାଙ୍କଠାରୁ ଜାଣିବାକୁ ପାଇଲି ଯେ, ମାଇନର୍ କ୍ଲାସ୍‌ରେ ସେ ମଧୁସୂଦନ ରାଓଙ୍କ 'ସାହିତ୍ୟପ୍ରସଙ୍ଗ' ପଢ଼ିଥିଲେ ଏବଂ ତହିଁରେ ଥିବା କଠିନ କଠିନ ସମସ୍ତ ତାତ୍ତ୍ୱିକ କବିତାର ମର୍ମାର୍ଥ ଯଥା ସମ୍ଭବ ଆୟତ୍ତ କରିଛନ୍ତି ।

ମୁଁ ପଚାରିଲି, "ସାହିତ୍ୟ ପ୍ରସଙ୍ଗର ଗୋଟିଏ ବିସ୍ତାରିତ ଟୀକା ବହି ଲେଖିପାରିବ ?"

ରାମକୃଷ୍ଣ—"ପାରିବି ।"

ମୁଁ—"ଗ୍ରୀଷ୍ମଛୁଟି ତ ମୁଣ୍ଡ ଉପରେ ହେଲାଣି, ତୁମେ ସେହି ଛୁଟିମଧ୍ୟରେ ଗାଆଁରେ ବହିଟିର ଲେଖା ସାରିଦେଇପାରିବ ?"

ରାମକୃଷ୍ଣ—"ହଁ, ପାରିବି ।"

ସତକୁ ସତ ଗ୍ରୀଷ୍ମାବକାଶ ଶେଷ ନ ହେଉଣୁ ରାମକୃଷ୍ଣ ପ୍ରସ୍ତାବିତ 'ସାହିତ୍ୟପ୍ରସଙ୍ଗ ଟୀକା'ର ଲେଖାକାର୍ଯ୍ୟ ସମାପନ କରି ସାଫି ପାଣ୍ଡୁଲିପିଟି ସହିତ କଟକ ଆସି ତାକୁ ମୋ' ହସ୍ତରେ ଅର୍ପଣ କଲେ । ମୁଁ ତାଙ୍କୁ ଅଶେଷ 'ସାବାସ୍' ସହ ବିଦାୟ ଦେଲି ଏବଂ ପାଣ୍ଡୁଲିପିଖଣ୍ଡି ଆମୂଳାନ୍ତ ପଢ଼ି ଆପ୍ୟାୟିତ ହେଲି । ତ୍ରୁଟିବିଚ୍ୟୁତି ଯାହା ଥିଲା, ସେଗୁଡ଼ିକୁ ସୁଧାରିଦେଲି; ଯାହାସବୁ ଅଭାବ ଥିଲା ପୂରଣ କରିଦେଲି ଏବଂ ପ୍ରତି ପାଠର ଶେଷରେ ସମ୍ଭାବିତ ପ୍ରଶ୍ନମାଳା ସଂଯୋଗ କରିଦେଲି । ଏହିରୂପେ ପାଣ୍ଡୁଲିପିଟି ପୂର୍ଣ୍ଣାଙ୍ଗ ହେବା ଫଳରେ ତାର କଳେବର ଯଥେଷ୍ଟ ଫୁଲିଗଲା ।

ମୋର ଏହି ଆୟୋଜନ ଦେଖି ପୁସ୍ତକବ୍ୟବସାୟୀ କୃଷ୍ଣଚନ୍ଦ୍ର ପ୍ରଧାନଙ୍କ ମନ ଯୋରେଇ ଉଠିଲା । ସେ ପୁସ୍ତକଟିର ପ୍ରକାଶକ ହେବାକୁ ବ୍ୟଗ୍ରତା ପ୍ରକାଶ କଲେ ଏବଂ ସାଇକେଲ୍ କିଣାପାଇଁ ମୋ' ହାତକୁ ପଚିଶଟି ଟଙ୍କା ବଢ଼େଇଦେଲେ । ପ୍ରଧାନଙ୍କଠାରୁ ଖବର ପାଇ ରାମକୃଷ୍ଣ ଆସିଲେ । ପାର୍ଲି ସାଇକେଲ୍ ଷ୍ଟୋର୍‌ରୁ ଗ୍ରିନମଡ଼େଲ୍ ର୍ୟାଲେ ସାଇକେଲ୍‌ଟିଏ ତାଙ୍କୁ କିଣାଇଦେଲି । ଏହା ଫଳରେ ରାମକୃଷ୍ଣଙ୍କର ସମସ୍ତାଭାବ ଅସୁବିଧା ଦୂରୀଭୂତ ହେଲା ଏବଂ ସେ ଇଚ୍ଛାମୁତାବକ ବସାଟିରେ ଦୀର୍ଘତର ସମୟ ପଠନରେ ମନୋନିବେଶ କରିପାରିଲେ ।

ପ୍ରକାଶକ କୃଷ୍ଣଚନ୍ଦ୍ର ପ୍ରଧାନଙ୍କ ଅନୁରୋଧକ୍ରମେ ଟୀକା ବହିଟିକୁ ଦାସ ପ୍ରେସ୍‌ରେ ଛପାଇବାର ଆଶୁ ବ୍ୟବସ୍ଥା କରାଇଦେଲି । ଷାଣ୍ମାସିକ ପରୀକ୍ଷା ଅତି ନିକଟ ହୋଇଆସିବାରୁ ପ୍ରାୟ ପ୍ରତି ସ୍କୁଲର ଛାତ୍ରଛାତ୍ରୀଏ ତୁରନ୍ତ ସେହି ଉପାଦେୟ ପୁସ୍ତକକୁ ହସ୍ତଗତ କରିବାପାଇଁ ତତ୍ପର ହୋଇଉଠିଲେ । ଭାଗ୍ୟବାନ୍ ପ୍ରକାଶକ ପ୍ରଧାନେ ବର୍ଷକ ମଧ୍ୟରେ ତାର ଏକାଧିକ ସଂସ୍କରଣ ମୁଦ୍ରିତ କରି ବିପୁଳ ଅର୍ଥ କରାୟତ୍ତ କଲେ ହେଁ, ଦୁର୍ଭାଗ୍ୟର କଥା, ପ୍ରଚଳିତ ପ୍ରଥାନୁଯାୟୀ ଲେଖକ ରାମକୃଷ୍ଣଙ୍କୁ ତାଙ୍କ ପ୍ରାପ୍ୟ ରାଜସ୍ୱ (royalty)ରୁ ବଞ୍ଚିତ କରି

ବ୍ୟବସାୟିଙ୍କ ସାଧୁତାର ଶିଷ୍ଟାଚାର ବିଧି ଲଙ୍ଘନ କରିଥିଲେ । ତାଙ୍କୁଅପାଇଁ କାହାଣୀର ପାଣିପାଏ ବୋଲି କାହାଣୀର ସର୍ବଦା ତାଙ୍କ ନିକଟରେ କୃତଜ୍ଞ ରହେ । କ୍ଷୋଭର ବିଷୟ, ପ୍ରକାଶକ ପ୍ରଧାନେ କାହାଣୀରଠାରୁ କୃତଜ୍ଞତାର ଦୀକ୍ଷା ନେବାକୁ ମଧ୍ୟ ଶ୍ଳାଘ୍ୟ ମଣିଲେ ନାହିଁ । ଜନ୍ମର ପରିଣତି ମୃତ୍ୟୁ । ପ୍ରାଣୀ ମାତ୍ରେହିଁ ମୃତ୍ୟୁର ଅଧୀନ । ମାତ୍ର ସବୁ ମୃତ୍ୟୁର ମୂଲ୍ୟାୟନ ସମାନ ନୁହେଁ । ଯେଉଁମାନେ ଏହି ଶ୍ରେଣୀସ୍ଥ ଲୋକଙ୍କ ପରି ପରର ଧାରୁଆ ରହି ମୃତ୍ୟୁଗ୍ରାସରେ ପଡ଼ନ୍ତି, ସେମାନଙ୍କର ପାପ ହଳାହଳ ପରି ଏତେ ଉଗ୍ର ଯେ ତାକୁ ଋଣ ଶୁଝିବାପାଇଁ ସେମାନଙ୍କୁ ପରଜନ୍ମରେ ପ୍ରବାଦୋକ୍ତ ଲଙ୍କାମରିଚ ଗଛ ହେବାକୁ ପଡ଼ିବଟି ?

ଉପରବର୍ଣ୍ଣିତ ଘଟଣାର ଦୀର୍ଘ ଅର୍ଦ୍ଧଶତାବ୍ଦୀ ପରେ ଦିନେ ରାମକୃଷ୍ଣବାବୁ ମତେ କହିଥିଲେ ଯେ, ଉକ୍ତ ର୍ୟାଲେ ସାଇକେଲ୍ ଟି ଏପର୍ଯ୍ୟନ୍ତ ଅକ୍ଷତ ନୀରୋଗ ଅବସ୍ଥାରେ ଅଛି ଏବଂ ତାଙ୍କ ଝିଅନା ସେଥିରେ ଚଢ଼ି ଚାଷକ୍ଷେତ ପର୍ଯ୍ୟବେକ୍ଷଣ କରିବାକୁ ବରାବର ଯାଉଛନ୍ତି । ଥରଟିଏ ମାତ୍ର ଯାନଟିରେ ରଙ୍ଗ ଦେବାର ଆବଶ୍ୟକତା ହୋଇଛି । ସେ-ଯୁଗର ଓ ଏ-ଯୁଗର କାରିଗରୀ ପ୍ରସ୍ତୁତିରେ କେତେ ତାରତମ୍ୟ, ଏହି ସାଇକେଲ୍ ର ଜୀବନଇତିହାସ ତାହାର ସାକ୍ଷୀ ।

ଏବେ ଦ୍ୱିତୀୟ ଘଟଣାଟି ଉଲ୍ଲେଖ କରୁଛି । ସେହି ବର୍ଷ (୧୯୬୭)ର ଜାଡ଼ୁଆ ଡିସେମ୍ବର ଆଡ଼ର ଏକ ସନ୍ଧ୍ୟାବେଳର କଥା । ମୁଁ ଶାଲଟିଏ ଦେହରେ ବେଢ଼େଇ ଜାକିଜୁକି ହୋଇ ବସିଥାଏଁ । ଏହି ସମୟରେ ପୂର୍ବତନ ସତ୍ୟବାଦୀ ବିଦ୍ୟାଳୟର ଛାତ୍ର ଓ ପରେ କଟକ ସେକେଣ୍ଡାରି ଟ୍ରେନିଂ ସ୍କୁଲର ଦ୍ୱିବାର୍ଷିକ ଶେଷ ପରୀକ୍ଷାରେ ଉତ୍ତୀର୍ଣ୍ଣ ଯୁବଲେଖକ ଦାମୋଦର ମିଶ୍ର ବହୁଦିନର ବ୍ୟବଧାନ ପରେ ମତେ ଭେଟିବାକୁ ଆସିଲେ । ବନ୍ଧୁସୁଲଭ ସମ୍ଭାଷଣ ଓ ସୁଖଦୁଃଖାଲାପ ଶେଷରେ ତାଙ୍କର ବିଦ୍ୟାଳୟ ବେଳର ସତୀର୍ଥ ଓ ଜଣେ କଲମବନ୍ଧୁ ଉଦୟନାଥଙ୍କ ପାଇଁ କଟକର ଯେକୌଣସି ପ୍ରେସ୍ ରେ ଖଣ୍ଡିଏ ଚାକିରି ଯୋଗାଡ଼ କରିଦେବାକୁ ସନିର୍ବନ୍ଧ ଅନୁରୋଧ କରି ଗୁରୁତ୍ୱର ସହିତ ମୋ' ଉପରେ ଚାପ ପ୍ରୟୋଗ କଲେ ଏବଂ ତାଙ୍କ ସତୀର୍ଥଙ୍କ ପାରିବାରିକ ଦୁଃସ୍ଥତା ସମ୍ପର୍କରେ ଚୁମ୍ବକ ଆଭାସ ଦେଲେ, "ମୋର ଏହି ଅଭାବୀ ବନ୍ଧୁଙ୍କ ସମାଜିକ ସ୍ଥିତି ଓ ଆର୍ଥିକ ମେରୁଦଣ୍ଡ ବଡ଼ ଦୁର୍ବଳ । ସାମାନ୍ୟ ଜମିବାଡ଼ି । ସେଥିରୁ ଯାହା ଅମଳ ହୁଏ, କଷ୍ଟେମଷ୍ଟେ ବର୍ଷକ ଚଳେ କି ନ ଚଳେ । ଘରେ ବଡ଼ଭାଇଙ୍କର ନିଜ ପରିବାର । ସେ ହେଉଛନ୍ତି ଗୃହର ମୁରବି ଓ ଚାଳକ । ନିକଟରେ ମୋ ବନ୍ଧୁଙ୍କର ବିବାହ ସମ୍ପାଦିତ ହୋଇଯିବା ଫଳରେ ତାଙ୍କର ସାଂସାରିକ ବୋଝ ବହୁତ ବଢ଼ିଯାଇଛି । ମାସିକ ପନ୍ଦର କୋଡ଼ିଏଟି ଟଙ୍କାର ସ୍ଥାୟୀ ସନ୍ଧାନ ହୋଇ ନପାରିଲେ କୁଟୁମ୍ବଟିର ଅବସ୍ଥା ଅତି ଦୟନୀୟ ହୋଇପଡ଼ିବ । ଆଉ ଅଧିକ କ'ଣ କହିବି ? ଏଣିକି ମୋ' ବନ୍ଧୁଙ୍କ କଥା ଗୋଟାସାରା ଆପଣଙ୍କୁ ଲାଗିଲା ।" ମୁଁ ଦାମୋଦରଙ୍କୁ କହିଲି, "ପର-ଦିନ ଉଦୟନାଥଙ୍କୁ ଏଠିକି ପଠେଇବ ଚାକିରି ସମ୍ବନ୍ଧରେ ।"

ଦାମୋଦର ନିଜ ମିଯୋଚିତ କର୍ତ୍ତବ୍ୟ ନିଷ୍ଠାପର ଭାବରେ ଶେଷକରି ମୋ ନିକଟରୁ ବିଦାୟ ନେଲେ । ସେହି ମୁହୂର୍ତ୍ତରୁ ମୋ ମୁଣ୍ଡରେ ଚନ୍ଦୁଳିଆ ଚେଷ୍ଟ କାମୁଡ଼ିବାକୁ ଆରମ୍ଭ କଲା । ମୋ ମନଭିତରଟା ଗୁରୁଚିନ୍ତାର ଉଷ୍ମ ତାପରେ ସନ୍ତୁଳି ହୋଇଉଠିଲା । ଭାବି ଭାବି ଚୂଡ଼ାନ୍ତ ଏ ଦାୟିତ୍ୱରୁ ଭଲେ ଭଲେ ଖଲାସ ହେବାର ବାଟ ଖୋଜିଲି । ଏଣୁଅ ଯାଇ ଯାଇ ବାଡ଼ମୂଳ ସିଙ୍ଘୁ ବୁଦା ଯାଏ । ପରଦିନ ଭଗବାନଙ୍କୁ ସୁମରି ସୁମରି କାଳିଗଳିକି ମୁହାଁଇଲି ଉତ୍କଳ ସାହିତ୍ୟ ପ୍ରେସ୍ କର୍ତ୍ତା ଦିଦେଇ ବିଶ୍ୱନାଥ କରଙ୍କ ସନ୍ନିଧିକି । ଅଫିସ ସଂଲଗ୍ନ ତାଙ୍କ ଖାସ୍ କାମରା ଭିତରେ ପ୍ରବେଶି ବଡ଼ ସନ୍ତର୍ପଣରେ କହିଲି ବିହିତ ପ୍ରଣତି ସହ, "ପଣ୍ଡିତ ଗୋପବନ୍ଧୁଙ୍କ ଜାତୀୟ ବିଦ୍ୟାଳୟରେ କିଛି ସମୟ ଶିକ୍ଷାପାଇବାପରେ ଭଦ୍ରୋଶିଆ ସ୍କୁଲରେ ମାଟ୍ରିକ୍ କ୍ଲାସଯାଏ ପଢ଼ିଥିବା ଜଗତ୍‌ସିଂହପୁର ଅଞ୍ଚଳର ଗୋଟିଏ ଗରିବ ବ୍ରାହ୍ମଣ ଯୁବକକୁ ପ୍ରେସ୍‌ରେ ସ୍ଥାନ ଦେଇପାରିଲେ ଭଲ ହୁଅନ୍ତା । ଲେଖାଲେଖିରେ ପ୍ରାର୍ଥୀଟିର ଭଲ ହାତ ଅଛି ବୋଲି ଶୁଣିଲି ।" ଉତ୍ତରରେ ଦିଦେଇ କହିଲେ, "ହେଉ, ଟୋକାଟିକୁ କାଲି ଟିକେ ଏଠାକୁ ଡାକିଆଣ ।"

ବିପୁଳ ଆନନ୍ଦରେ ମୁଁ ମୋ କର୍ମସ୍ଥଳୀକୁ ଫେରିଲି । ତା ଆରଦିନ ଠିକ୍ ସୁରିଟାବେଳେ ଉଦୟନାଥ ମୋ ପାଖରେ ଉପସ୍ଥିତ ହେଲେ । ତାଙ୍କୁ ସଙ୍ଗରେ ଧରି କାଳିଗଳିସ୍ଥ ସାହିତ୍ୟ ପ୍ରେସ୍‌କୁ ଗଲି ଏବଂ ନିଯୁକ୍ତିଦାତା ବିଶ୍ୱନାଥଙ୍କ ସମକ୍ଷରେ ଉଦୟନାଥଙ୍କୁ ହାଜର କରାଇ-ଦେଲି । ଅବିରାମ ଜୀବନଯୁଦ୍ଧରେ ଶ୍ରାନ୍ତକ୍ଲାନ୍ତ ପୁରୁଷସିଂହ ଯୁବକ ପ୍ରାର୍ଥୀଙ୍କୁ କୌଣସି ମୌଖିକ ପ୍ରଶ୍ନ ବା ଲିଖିତ ପରୀକ୍ଷାର ସମ୍ମୁଖୀନ ନ କରାଇ ଟେବୁଲକୋଣସ୍ଥ ବଙ୍ଗଳା 'ଚିଡ଼ିଆଖାନା' ବହିଟିକୁ ଆଣି ଉଦୟନାଥଙ୍କୁ ଆମୂଳାନ୍ତ ଦେଖିଯିବାକୁ ନିର୍ଦ୍ଦେଶ ଦେଲେ । ସେଥିର ପ୍ରତି ପୃଷ୍ଠାରେ ଦେଶବିଦେଶର ଜଳସ୍ଥଳ ଉଭୟର ନାନା ବିଚିତ୍ର ଜୀବଜନ୍ତୁ ପଶୁପକ୍ଷୀଙ୍କ ଛବି ଦିଆଯାଇଥିଲା ଏବଂ ପ୍ରତି ଛବି ତଳେ ଉକ୍ତ ପ୍ରାଣୀର ନାମ ସହ ତା ସମ୍ବନ୍ଧରେ କୌତୂହଳଜନକ ସଂକ୍ଷିପ୍ତ ଜ୍ଞାତବ୍ୟ ବିବରଣୀ ମୁଦ୍ରିତ ହୋଇଥିଲା । ଶେଷରେ ବିଶ୍ୱନାଥ ଯୁବକ ଉଦୟନାଥଙ୍କୁ କହିଲେ, ଶିଶୂପଯୋଗୀ ଏ ବଙ୍ଗଳା ବହିଟିରେ ଚିତ୍ର-ଗୁଡ଼ିକର ସନ୍ନିବେଶ ଯେପରି ହୋଇଛି, ଅବିକଳ ସେହି କ୍ରମ ନରଖିପାରିବ ଯଦି ନିଜ ବୁଦ୍ଧି ପ୍ରୟୋଗ କରି ତହିଁରେ କିଛି ଶୃଙ୍ଖଳିତ ପରିବର୍ତ୍ତନ କରିବ ଏବଂ ପ୍ରାଣୀମାନଙ୍କ ସମ୍ବନ୍ଧୀୟ ଜ୍ଞାତବ୍ୟ ବିବରଣୀସବୁର ମର୍ମକୁ ପ୍ରାଞ୍ଜଳ ଓଡ଼ିଆ ଭାଷାରେ ନିଜ ଶୈଳୀରେ ରୂପ ଦେବ । ଆସନ୍ତା କାଲିଠାରୁ ଆସି କାର୍ଯ୍ୟରେ ଯୋଗଦିଅ । କୌଣସି ସ୍ଥଳରେ କିଛି ଅଡ଼ୁଆ ବା ଅସୁବିଧା ବୋଧକଲେ ନିଃସଙ୍କୋଚରେ ମୋ'ଠାରୁ ପରାମର୍ଶ ନେବ ।"

ଉଦୟନାଥଙ୍କୁ ଅଫିସ ଭିତରକୁ ନେଇଯାଇ ମେନେଜର ପ୍ରଭୃତିଙ୍କ ସହିତ ପରିଚିତ କରାଇଦେବାକୁ ବିଶ୍ୱନାଥ ଦିଦେଇ ମତେ ବରାଦ କରିଦେଲେ । ସେତେବେଳେ ସାହିତ୍ୟ ପ୍ରେସ୍‌ର ଅଫିସରେ ଥାଆନ୍ତି ପାଞ୍ଚଜଣ କର୍ମଚାରୀ—ମେନେଜର୍ ଭଗବତପ୍ରସାଦ ଜେନା, ସହକାରୀ ମେନେଜର୍ ତଥା ଇଂରାଜୀ ଓ ବଙ୍ଗଳା ପ୍ରୁଫ୍ ସଂଶୋଧକ କୁଳମଣି କର, ଓଡ଼ିଆ

ଓ ସମ୍ପୃକ୍ତ ପ୍ରୁଫ୍ ସଶୋଧକ କାବ୍ୟତୀର୍ଥ-ଉପାଧିକ ଜଣେ ପଣ୍ଡିତ ଏବଂ ଦୁଇଜଣ ପାଣ୍ଡୁଲିପି-ଧାରକ । ଏବେ ଉଦୟନାଥ ହେଲେ ଷଷ୍ଠ କର୍ମଚାରୀ । ମୁଁ ତାଙ୍କୁ ଭାଗବତବାବୁ ଓ କୁଳମଣିବାବୁଙ୍କ ପାଖକୁ ନେଇ ଚିହ୍ନା କରାଇଦେଲି ଏବଂ କାଲି ସେ କାର୍ଯ୍ୟରେ ଯୋଗ ଦେବାଲାଗି ମୌଖିକ ଆଦେଶ ପାଇଛନ୍ତି ବୋଲି ମଧ୍ୟ ଜଣାଇଦେଲି । ବିଶ୍ୱସ୍ତ ଅଫିସ୍-ପରିଚାରକ ଲଛମନ ସିଂହ ନବାଗନ୍ତୁକଙ୍କୁ ସ୍ୱାଗତ କରି ତାଙ୍କ ସ୍ଥାନାସନପାଇଁ ସେହି ଅଫିସ୍ ପ୍ରକୋଷ୍ଠର ଏକ ପାର୍ଶ୍ୱରେ କୁରୁଚି-ଟେବୁଲ ପ୍ରଭୃତି ସଜାଇଦେବାର ବ୍ୟବସ୍ଥା କରି ତାର କର୍ତ୍ତବ୍ୟ ଶେଷ କରିବାକୁ ବସିଲା । ଉଦୟନାଥ ଓ ମୁଁ ସାହିତ୍ୟ ପ୍ରେସ୍‌ରୁ ବିଦାୟ ଆଣିଲୁଁ ।

କୋଡ଼ିଏ ଟଙ୍କାର ଚାକିରି ଖଣ୍ଡିଏ ଗାଆଁ ପାଖ କଟକ ସହରରେ ପାଇବା ବଡ଼ ଭାଗ୍ୟର କଥା ବୋଲି ବିଚାରିବାକୁ ହେବ । ଉଦୟନାଥଙ୍କ ଭାଗ୍ୟରେ ସେ ସୁଯୋଗ ମିଳିଲା; ଏଣୁ ସେ ପୂର୍ବର ବେକାରି-ଚିନ୍ତାକୁ ନିର୍ବାସନ ଦେଇ ଆରାମରେ କାଳାତିପାତ କରୁଥାନ୍ତି । ମୁଁ ମଧ୍ୟ ତାଙ୍କର ଚାକିରିପ୍ରାପ୍ତିରେ ନିମିତ୍ତମାତ୍ର ହୋଇ ନୈଷ୍କର୍ମ୍ୟର ପରମ ଆରାମ ଉପଭୋଗ କରୁଥାଏଁ । ଦିନପରେ ଦିନ ଗଡ଼ି ଗଡ଼ି ଠିକ୍ କେତେମାସ ଗଲା, ଏବେ ହେଜ ହେଉନାହିଁ । ଯେଉଁଭିତରେ 'ଚଢ଼ିଆଖାନା'ର ପ୍ରଥମ ପ୍ରସ୍ତ ଛପା ଚିଆରି କାମ ବୋଧହୁଏ ସରିଯାଇଥିଲା ଏବଂ ଉଦୟନାଥଙ୍କୁ ଗ୍ୟାଲି ପ୍ରୁଫ୍ ସଂଶୋଧନାଦି ଲଘୁ କର୍ମରେ ନିଯୁକ୍ତ ରଖାଯାଇଥିଲା । ଏହିପରି ପରିସ୍ଥିତିରେ ହଠାତ୍ ଦିନେ ମତେ ଜରୁରୀ ଡକରା ଆସିଲା ବିଶ୍ୱନାଥ ଦଦେଇଙ୍କ-ଠାରୁ । ସେତେବେଳକୁ କୌଣସି ଗୋଟିଏ ଏକତିରିଶା ଇଂରାଜୀ ମାସ ପୂରିବାକୁ ମୋଟେ ତିନି ଦିନ ବାକୀ ଥାଏ । ଡକରା ପାଇଲାମାତ୍ରେ ବସିଲା ଥାନରୁ ଉଠିଯିବାକୁ ପଡ଼ିଲା । ଦଦେଇ ପ୍ରଥମେ ଉଦୟନାଥଙ୍କର ସନ୍ତସ୍ୱଭାବ, କର୍ତ୍ତବ୍ୟନିଷ୍ଠା, ଶ୍ରମାନୁରାଗାଦି ଗୁଣକୁ ଖୁବ୍ ତାରିଫ୍ କରି ତା'ପରେ ଦୁଃଖର ସହିତ କହିଲେ, "ପ୍ରବାଦୋକ୍ତି 'ଗାଆଁ ପରିମଳ ଧୋବା ତୁଠରୁ' ପରି ପ୍ରତ୍ୟେକ ବ୍ୟବସାୟ ପ୍ରତିଷ୍ଠାନ ବା କାରଖାନାର ମୁକୁର ସ୍ୱରୂପ ହେଉଛି ତାର ଅଫିସ୍ ପ୍ରକୋଷ୍ଠ । ଏଣୁ ଅଫିସ୍ କକ୍ଷର ସଜ୍ଜା-ପରିପାଟୀ ବାହାର ଲୋକଙ୍କ ଚକ୍ଷୁରେ ମନୋରମ ତଥା ଆକର୍ଷଣୀୟ ହେବା ସ୍ୱାଭାବିକ । ବ୍ୟବସାୟ ସଂସ୍ଥାର ପ୍ରତିନିଧିସ୍ଥାନୀୟ ଯେଉଁ କର୍ମଚାରୀମାନେ ଏହି କକ୍ଷରେ ବସି କାର୍ଯ୍ୟ କରନ୍ତି, ସେମାନଙ୍କ ମୁଖମଣ୍ଡଳ ସରସ, ସହର୍ଷ, ସହାସ୍ୟ ଓ ସଦାପ୍ରଫୁଲ୍ଲ ହେବା ଏକାନ୍ତ କାମ୍ୟ । ଗ୍ରାହକବର୍ଗଙ୍କ ସହିତ ସେମାନଙ୍କର ସଦାଳାପ ଓ ସଦ୍‌ବ୍ୟବହାର ଉପରେ ପ୍ରତିଷ୍ଠାନର ମର୍ଯ୍ୟାଦା ଓ ସୁନାମ ପ୍ରସାରର ଅନୁକୂଳ ପ୍ରତିଫଳନ ନିର୍ଭର କରେ । ମାତ୍ର ଏ ପିଲାଟି ଏଡ଼େ କାଉଁରା ଯେ, ଦିନେ ହେଲେ ତା ମୁହଁରେ ଟିକିଏ ହସ ଦେଖାଯାଇ ନାହିଁ କି ସେ ଆଗୁଆ ହୋଇ ଅଫିସ୍‌ର କୌଣସି କର୍ମଚାରୀ ସହିତ କେବେହେଲେ ସାଥୀଜନୋଚିତ ମନଖୁସିରେ ଦି'ପଦ କଥାଭାଷା ହେବାକୁ ଇଚ୍ଛା କରି ନାହିଁ । ଏପ୍ରକାର ବିମର୍ଷ ମୁଖାଭାସ ଓ ଗୋଠଛଡ଼ିଆ ମନୋବୃତ୍ତି ବ୍ୟବସାୟିକ ନୀତିର ପ୍ରତିକୂଳ ଓ ବ୍ୟବସାୟର ଶ୍ରୀବୃଦ୍ଧି ପକ୍ଷରେ ପ୍ରତିବନ୍ଧକର । ଏଣୁ ପିଲାଟିର ଗୁଣଗତ

ଯୋଗ୍ୟତା ବେଶ୍ ସନ୍ତୋଷଜନକ ହେଲେହେଁ ବ୍ୟବସାୟ ଶିଳ୍ପର ମାପକାଠିରେ ସେ ଯୋଗ୍ୟତାହୀନ । କେବଳ ଏହି କାରଣରୁ ପ୍ରେସ୍‌ରେ ଅଫିସପ୍ରକୋଷ୍ଠରେ ଏ ପିଲାଟିକୁ ସ୍ଥାନଦେଇହେଉନାହିଁ । ତାକୁ ବୁଝାଇ କହିଦେବୁ, ଆସନ୍ତା ପହିଲାଠୁଁ ସେ ଆଉ କାମକୁ ଆସିବ ନାହିଁ । ଏ ମାସର ତା' ଦରମା ଟଙ୍କା ତୁ ଆସି ମୋ'ଠାରୁ ନେଇଯିବୁ ।"

ଦଦେଇଙ୍କ ମୁଖରୁ ହାଡ଼ୁଆ କଥା ଶୁଣି ମୁଁ ମର୍ମାହତ ହେଲି ସତ; କିନ୍ତୁ ଘୃଣାକ୍ଷରରେ ସୁଦ୍ଧା ଏ କଲିଣିଆ ବାର୍ତ୍ତାର ଆଭାସ ଉଦୟନାଥଙ୍କୁ ଦେଲିନାହିଁ । ବାଟରେ ଆସୁ ଆସୁ ଗୋଟିଏ ବଢ଼ିଆ ଫିକର ମୋ ମୁଣ୍ଡକୁ ଢୁକିଲା । ଫେରିବା ରାସ୍ତାରେ ଦତ୍ତପ୍ରେସ୍ ପଡ଼େ । ତାର ପ୍ରୋପ୍ରାଇଟର୍ ହରମୋହନ ଦତ୍ତ ମୋ ଆନୁକୂଲ୍ୟରୁ ବହୁତ ଛାପାକାମ ପାଆନ୍ତି ଟ୍ରେଡ଼ିଂ କମ୍ପାନୀରୁ । ମୁଁ ତାଙ୍କୁ କୃତ୍ରିମ ଧମକାଣିଆ ଭାଷାରେ କହିଲି, "ତୁମେ ଆମର ଯେତେ ବହି ଛାପୁଛ, ସବୁଥିରେ ବହେ ବହେ ଭୁଲ୍ ରହୁଛି । ଏଡ଼େ ବଡ଼ ପ୍ରେସ୍‌କର ପ୍ରୁଫ୍ ଦେଖିଲାବାଲାଟିଏ ତ ରଖିବ ନାହିଁ, ପ୍ରୁଫ୍ ଦେଖିବାଠୁ ଆରମ୍ଭ କରି ହିସାବ ରଖିବା ପର୍ଯ୍ୟନ୍ତ ସବୁ କାମ ନିଜେ କରି ପଇସା ସଞ୍ଚିବ, ଏଥିରେ ଗଣ୍ଡା ଗଣ୍ଡା ଭୁଲ୍ ରହିବ ନାହିଁ କାହିଁକି ? ତେଣୁ ଆସନ୍ତା ପହିଲାରୁ ଗୋଟାଏ ସୁଦ୍ଧା କାମ ତୁମେ ଆଶା କରିବ ନାହିଁ ।" ଏହି ରଡ଼ୁଆ କଥା ଶୁଣି ହରମୋହନବାବୁଙ୍କର ଫାକାସି ଉଡ଼ିଲା । ଲଜ୍ଜିତ ହୋଇ ସେ ମତେ ଅନୁରୋଧ କଲେ, ଆପଣ ମତେ ଜଣେ ଭଲ ଜାଣିଲାବାଲା ପ୍ରୁଫ୍‌ଦେଖାଳି ଯୋଗାଇ ଦିଅନ୍ତୁ । ମୁଁ ତିରିଶ ଟଙ୍କା ଯେ ବାବଦରେ ଖର୍ଚ୍ଚ କରିପାରିବି । "ହେଉ, ମୁଁ କାଲିଆଡ଼କୁ ବୁଝି ତୁମକୁ ଜଣେଇବି"—କହି ଚାଲି ଅଇଲି ।

ଉଦୟନାଥ ସାହିତ୍ୟ ପ୍ରେସ୍‌ରୁ କାମ ସାରି ଫେରିଲାବେଳେ ବାଲୁବଜାର ରାସ୍ତା ଦେଇ ତାଙ୍କ ବସାକୁ ଯାଆନ୍ତି । ତା' ଆରଦିନ ଫେରୁଥିବା ସମୟରେ ମୁଁ ତାଙ୍କୁ ଡାକି କହିଲି, "ତୁମ ଲାଗି ମାସିକ ତିରିଶ ଟଙ୍କା ରାଠଆରେ ଭଲ ଚାକିରିଟିଏ ଠିକ୍ କରିଛି । ଏତେ ଅଳ୍ପ ଦରମାରେ ସାହିତ୍ୟ ପ୍ରେସ୍‌ରେ ପଡ଼ିରହିବ କାହିଁକି ? ତେଣୁ ଆସନ୍ତା ପହିଲା ତାରିଖଠୁ ସାହିତ୍ୟ ପ୍ରେସ୍‌କୁ ଯିବା ବନ୍ଦ କରି ଦତ୍ତପ୍ରେସ୍‌ରେ ପ୍ରୁଫ୍‌ସଂଶୋଧକ ରୂପେ ଯୋଗ ଦେବ । ଏ ମାସର ପ୍ରାପ୍ୟ ତୁମ ଦରମା ଟଙ୍କାତକ ମୁଁ ବିଶ୍ୱନାଥବାବୁଙ୍କଠାରୁ ପହିଲା ପରେ ଆଣି ତୁମକୁ ଦେଇଦେବି । ମନେରଖିଥାଅ, ୩୧ ତାରିଖ ସନ୍ଧ୍ୟାରେ ମୋ' ପାଖକୁ ଆସିବ, ମୁଁ ତୁମକୁ ନେଇ ଦତ୍ତପ୍ରେସ୍‌ର ପ୍ରୋପ୍ରାଇଟର୍ ହରମୋହନ ଦତ୍ତଙ୍କ ସହିତ ମୁହାଁମୁହିଁ ପରିଚିତ କରାଇଦେବି ।"

କଟକର ସବୁ ପ୍ରେସ୍ ପରି ଉତ୍କଳ ସାହିତ୍ୟ ପ୍ରେସ୍ କର୍ମଚାରୀମାନଙ୍କର ଦୈନିକ କର୍ମାରମ୍ଭ ହୁଏ ପୂର୍ବାହ୍ଣ ୧୦ଟାରେ ଓ କର୍ମଶେଷ ହୁଏ ଅପରାହ୍ଣ ୫ଟାରେ । ସେହି ମାସ ଶେଷ ୩୧ ତାରିଖ ଦିନ ପ୍ରତ୍ୟାବର୍ତ୍ତ ୫ଟାବେଳେ ଉଦୟନାଥ ସିଧାସଳଖ ମୋ' ସମୀପକୁ ଆସିଲେ । ଦୁହେଁ ମିଶି ନିକଟବର୍ତ୍ତୀ ଦତ୍ତପ୍ରେସ୍‌କୁ ଗଲୁଁ । ମୁଁ ହରମୋହନବାବୁଙ୍କୁ ଅର୍ଦ୍ଧଗମ୍ଭୀର ସ୍ୱରରେ କହିଲି, "ହେଇ ନିଅ ତୁମ ମନମାଫି ପ୍ରୁଫ୍ ସଂଶୋଧକଙ୍କୁ ।" ଉଦୟନାଥଙ୍କୁ

କହିଲା, "ଏଇ ହେଉଛନ୍ତି ପ୍ରେସ୍‌ର ସତ୍ତ୍ୱାଧିକାରୀ, ପରିଚାଳକ, ତୁମର ନିଯୁକ୍ତିଦାତା ଶ୍ରୀ ହରମୋହନ ଦତ୍ତ, ଭାରି ଦିଲ୍‌ଦାର ଲୋକ ।" ଉଭୟେ ଉଭୟଙ୍କୁ ଅଭିବାଦନ କଲେ, ପରସ୍ପରରେ କଥାଭାଷା ଆରମ୍ଭ କଲେ । ଏହି ଅବସରରେ ମୁଁ ସେଠାରୁ ଖସିଆସିଲି ମୋ' କର୍ମସ୍ଥଳୀକୁ ।

ଉପରେ ଯେଉଁ ଦୁଇ ଯୁବକଙ୍କର ଉଲ୍ଲେଖନୀୟ ବିବରଣୀ ପ୍ରଦାନ କଲି, ତାଙ୍କର ପୂର୍ଣ୍ଣ ନାମ ହେଉଛି ରାମକୃଷ୍ଣ ନନ୍ଦ ଓ ଉଦୟନାଥ ଷଡ଼ଙ୍ଗୀ । ପରବର୍ତ୍ତୀ ଜୀବନରେ ଏହି କୃତକର୍ମାଦ୍ୱୟ ହୋଇଛନ୍ତି ଉତ୍କଳଭାରତୀଙ୍କର ଦୁଇ କୃତୀ ସନ୍ତାନ, ଦୁଇଟି ଉଜ୍ଜ୍ୱଳ ରତ୍ନ । ଉଭୟେ ସ୍ୱଗୁଣରେ ସାରସ୍ୱତ କ୍ଷେତ୍ରରେ ସୁପ୍ରତିଷ୍ଠିତ । ସୁସାହିତ୍ୟସ୍ରଷ୍ଟା ଓ ଉତ୍କୃଷ୍ଟ ଶିଶୁ-ସାହିତ୍ୟ ଲେଖକରୂପେ ଏ ଦୁହିଙ୍କ କୃତି ଅମ୍ଳାନ ପ୍ରତିଭାର ପରିଚାୟକ ହୋଇ ରହିବ । ରାମକୃଷ୍ଣ ବାବୁଙ୍କ ରଚିତ 'ଆହେ ଦୟାମୟ ବିଶ୍ୱବିହାରୀ, ଘେନ ଦୟା ବହି ମୋର ଗୁହାରି' କବିତାଟି ଯୁଗଜୟୀ ଶିଶୁକବିତାରୂପେ ମୃତ୍ୟୁହୀନ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଯୁବାବସ୍ଥାରେ ମଣିଷର ଠିକ୍ ବୟସ କଳିହୁଏ ନାହିଁ । ମୁହଁର ଚର୍ମରେ ମୋଡ଼ର ଧାସ ଆସିଲେ ଯାଇ ବା ଈଷତ୍ ପାକଳିମାର ଆଭାସ ମିଳିଲେ ଯାଇ ବୟସର ଆନୁମାନିକ ଅଟକଳ ସମ୍ଭବପର ହୁଏ । ମାତ୍ର ଏକାଧିକ ଯୁବକଙ୍କର ଜନ୍ମ ସାମାନ୍ୟ ଇତରବିଶେଷ ସହି ଏକା ଦଶନ୍ଧି ମଧ୍ୟରେ ହୋଇଥିଲେ ସେମାନଙ୍କ ମଧ୍ୟରେ କିଏ କାହାଠାରୁ କେତେ ବଡ଼ ବା କେତେ ସାନ ଆଦୌ ବାରି ହୁଏ ନାହିଁ । ମୁଁ ମୋର ଶିକ୍ଷା ସନ୍ତୋଷର ସହିତ ସମାପ୍ତ କରି ୧୯୨୫ ମସିହାରୁ ଚାକିରିଜୀବନ ଆରମ୍ଭ କରିପାରିଥିଲି ବୋଲି ରାମକୃଷ୍ଣବାବୁ ଓ ଉଦୟନାଥବାବୁ ଉଭୟେ ନିଜନିଜକୁ ମୋ'ଠାରୁ ବୟୋନ୍ୟୂନ ବିଚାରି ସର୍ବଦା ମତେ ସମ୍ମାନନୀୟ ଦୃଷ୍ଟିରେ ଦେଖୁଥିଲେ । ବୟସ ସମ୍ପର୍କରେ ମୋର ଧାରଣା ମଧ୍ୟ ଥିଲା ତଦ୍ରୂପ । କିନ୍ତୁ ସୁଦୀର୍ଘ ପଞ୍ଚାଶାଧିକ ବର୍ଷ ପରେ ଜାଣିପାରିଲି ଯେ, ମୁଁ ହେଉଛି ଆମ ତିନିଙ୍କ ମଧ୍ୟରେ ବୟଃକନିଷ୍ଠ (ମୋର ଜନ୍ମ ୧୯୦୭ରେ), ମୋ' ବୟସ ତୁଳନାରେ ରାମକୃଷ୍ଣବାବୁ ଜ୍ୟାୟାନ୍ ଓ ଉଦୟନାଥ ବାବୁ ଜ୍ୟେଷ୍ଠ—ଅର୍ଥାତ୍ ୧୯୦୭ରେ ଜାତ ରାମକୃଷ୍ଣବାବୁ ମୋ'ଠାରୁ ପ୍ରାୟ ପାଞ୍ଚ ମାସ ବଡ଼ ଓ ୧୯୦୫ରେ ଜନ୍ମପ୍ରାପ୍ତ ଉଦୟନାଥବାବୁ ମୋ ଅପେକ୍ଷା ପ୍ରାୟ ବର୍ଷେ ବଡ଼ । ଏଣୁ ସେ ଉଭୟେ ମୋର ନମସ୍ୟ ଓ ବୟସ୍ୟ ।

## ୨ । ସାରସ୍ୱତ ପ୍ରେସ୍

ଏଣିକି ମୋର କର୍ମସ୍ଥଳ ହେଲା 'ସାରସ୍ୱତ ପ୍ରେସ୍' । ରାତିଦିନ ଝଟଣିକି ବେତନ ମିଳିଲା ତିରିଶଟିମାତ୍ର ଟଙ୍କା । ବାଳକୃଷ୍ଣବାବୁଙ୍କର ସାହସ ଦ୍ୱିଗୁଣିତ ହୋଇଗଲା । 'ନୂଆପାଠ' ବିକ୍ରିରୁ ନିତି ଅମିତ କଞ୍ଚାପଇସା ମିଳିଲା 'ସାରସ୍ୱତ ଭଣ୍ଡାର'ରୁ । ଧାର-ଉଧାର ତ ଆଗରୁ ଶୁଝିଯାଇଥାଏ; ଏଣୁ ଅଣ୍ଟାରେ ଦମ୍ଭ ଆସିଯାଇଛି, ମଞ୍ଜି ଟାଣ ହୋଇଯାଇଛି । ପ୍ରେସ୍ ବି ନିଜ ଗୋଡ଼ରେ ଠିଆ ହୋଇସାରିଛି । ଏବେ କୂପମଣ୍ଡୂକଟି ଛାଡ଼ି ଛାପାଖାନାର ଗଣ୍ଡି

ଭିତରୁ ମୁଣ୍ଡକାଢ଼ି ପଦାକୁ ବାହାରିବାକୁ ମନ ଯୋଉଥିଲା ବାଳକୃଷ୍ଣବାବୁଙ୍କର । ତାଙ୍କର ଗୋଟାଏ ଭ୍ରାନ୍ତ ଧାରଣା ଥିଲା ଯେ, କଟକରେ ପ୍ରେସ୍ ବ୍ୟବସାୟ କରି ସ୍ୱାଧୀନ ଜୀବନ ଯାପନ କଲେ ତାଙ୍କୁ ପ୍ରଚୁର ସମୟ ମିଳିବ, ଯାହା ଫଳରେ ସେ ଅନେକ ଉଚ୍ଚକୋଟିର ଗ୍ରନ୍ଥ ଲେଖିପାରିବେ । ତାଙ୍କର ଏହି ଅବାସ୍ତବ ଧାରଣାକୁ ମୁଁ ପୁରା ବଦଳାଇଦେଇଥିଲି ଗୋଟିଏ ଘଟନାରେ ।

## (୧) ପ୍ରେସ ଜଞ୍ଜାଳ ଗ୍ରନ୍ଥରଚନାର ପରିପନ୍ଥୀ—

ମେନେଜର ଗୋପୀନାଥ ଜେନା ଏକ ଅଜଣାବ୍ୟାଧିରେ ପଡ଼ି ପ୍ରେସ୍ ବୁଝିବାକୁ ସମ୍ପୂର୍ଣ୍ଣ ଅକ୍ଷମ ହୋଇପଡ଼ିଲେ । ତହୁଁ ବାଳକୃଷ୍ଣ ବାବୁ ମତେ ସେହି ଦାୟିତ୍ୱ ଅର୍ପଣ କରିବାକୁ ବସିଲେ । ମୁଁ କିନ୍ତୁ ଠୋପଟକା ମନାକରିଦେଲି । ସେ କାରଣ ପଚାରିବାରୁ ମୁଁ ବୁଝାଇଦେଲି, "ପ୍ରେସ୍-ପେସି ମୁଣ୍ଡରେ ପଶିଲେ ଚବିଶ ଘଣ୍ଟା ବାନ୍ଧିହୋଇ ପଡ଼ି ରହିବାକୁ ହେବ । ମୋର ବ୍ୟକ୍ତିଗତ ଅବସର ବୋଲି ଆଦୌ କିଛି ରହିବ ନାହିଁ, ଯଦ୍ଦ୍ୱାରା ମୁଁ ଖଣ୍ଡିଏ ସୁଦ୍ଧା ବହି ଲେଖିପାରିବି ନାହିଁ । ତେଣୁ ମେନେଜର୍ ପାହ୍ୟାର ତଥାକଥିତ ମହାର୍ଘ ବହୁଦର୍ଶିତାରେ ମୋଟେ ମୋର ଆକାଂକ୍ଷା ନାହିଁ ।" ଏହା ସଙ୍ଗେ ସଙ୍ଗେ ତାଙ୍କୁ ମଧ୍ୟ ଚେତାଇଦେଲି, "ତୁମେ ଯେଉଁ ଝିଙ୍ଗିଟିଆ ବେପାରରେ ମୁଣ୍ଡ ପୂରେଇଛ, ତାହା ତୁମକୁ ଜମା ନିଶ୍ୱାସ ନେବାକୁ ଦେବ ନାହିଁ କି ଅ.ଗଭଳି ଲେଖେଇଦେବ ନାହିଁ । କେନ୍ଦ୍ରାପଡ଼ା ଗ୍ରନ୍ଥାଗାରର ପାଖାପାଖି ଦୁଇ ବର୍ଷ ପୂରିବାକୁ ବସିଲା, ଦିନେହେଲେ କେବେ ଧାଡ଼ିଏ ଲେଖିବାକୁ କଲମ ଧରିପାରିଲଣି କି ? ତୁମ ମାନସଗୁରୁ ବିଶ୍ୱନାଥ କର ପ୍ରେସ୍ ଜଞ୍ଜାଳରେ ଓତପ୍ରୋତ ଛନ୍ଦିହେବା ଯୋଗୁଁ ତାଙ୍କ ଜୀବନକାଳ ମଧ୍ୟରେ ଝଣ୍ଡେହେଲେ ବହି ପଇଦା କରିବାକୁ ସମୟ ପାଇଛନ୍ତି କି ?"

ଏକଥା ଶୁଣିବା ପରେ ତାଙ୍କର ପୂର୍ବ ଧାରଣା ସଂଶୋଧିତ ହୋଇଗଲା । ସେ ଯେତେ ଚେଷ୍ଟା କଲେ ସୁଦ୍ଧା ପ୍ରେସ୍ ଜଞ୍ଜାଳ ମଧ୍ୟରେ ଆବଦ୍ଧ ରହି କୌଣସି ଉଲ୍ଲେଖଯୋଗ୍ୟ ରଚନାରେ ହାତ ଦେଇପାରିଲେ ନାହିଁ । କେନ୍ଦ୍ରାପଡ଼ାରେ ସେ ସେକ୍ସପିୟରଙ୍କ ବିୟୋଗାନ୍ତ ନାଟକ 'King Lear'ର କଥାବସ୍ତୁକୁ ମୂଳପିଣ୍ଡ କରି 'ଶିବ ଦାସ' ନାମରେ ଯେଉଁ ଓଡ଼ିଆ ନାଟକଟି ଲେଖୁଥିଲେ, ତାହା ଯେତକ ଆରେଇଥିଲା, ସେତକରେ ଅଟକି ରହିଗଲା । ଆମ୍ଭମାନଙ୍କ ପ୍ରବଳ ତାଡ଼ନା ଫଳରେ କାନ୍ଦକୁନ୍ଥେଇ ହୋଇ ବହୁ ବିଳମ୍ବରେ ସେଇଟିକୁ ସେ କୌଣସିମତେ ସମ୍ପୂର୍ଣ୍ଣ କଲେ ସତ; କିନ୍ତୁ କନିକା ହାଇସ୍କୁଲରେ ଶିକ୍ଷକ ଥିଲାବେଳେ 'ଚନ୍ଦ୍ରଗୁପ୍ତ' ନାଟକ ଲେଖି ଯେଉଁ ସୁଖ୍ୟାତି ଅର୍ଜନ କରିଥିଲେ, ତାର କାଣିଚାଏ ବି 'ଶିବ ଦାସ' ଦେଇପାରିଲା ନାହିଁ । ଫଳତଃ, ଓଡ଼ିଶା ରଙ୍ଗମଞ୍ଚର ଖ୍ୟାତି-ଗ୍ରନ୍ଥରେ 'ଶିବ ଦାସ' ନାମରେ କ୍ଷୀଣତମ ଖଡ଼ିଗାରଟିଏ ସୁଦ୍ଧା ପଡ଼ିପାରିଲା ନାହିଁ । ତାଙ୍କର ଆଉ ଖଣ୍ଡିଏ ମାମୁଲି କିତାପ ହେଲା 'ସେ-ଦେଶର ପୁରାଣ କଥା'—ଇଂରାଜୀ ଭାଷାରେ ପ୍ରକାଶିତ ଗ୍ରୀକ୍ ଓ ରୋମୀୟ ପୁରାଣ କାହାଣୀମାନଙ୍କ ମଧ୍ୟରୁ

କେତୋଟିର ଓଡ଼ିଆ ରୂପାନ୍ତର । ପରବର୍ତ୍ତୀ କାଳରେ ସେ ଶ୍ରେଷ୍ଠ ପିଲାଙ୍କପାଇଁ 'ସପନପୁରୀ' ନାମରେ ଛବିଲା ଗପ ବହିଟିଏ ଲେଖିଥିଲେ । ପ୍ରେସ୍ ସ୍ଥାପନଠାରୁ ମୃତ୍ୟୁପର୍ଯ୍ୟନ୍ତ ଅର୍ଥାତ୍ ୧୯୨୭ରୁ ୧୯୫୭ର ସୁଦୀର୍ଘ ତିରିଶ ବର୍ଷ ମଧ୍ୟରେ ଏହି ଖଣ୍ଡିକ ଛଡ଼ା ଶିଶୁସାହିତ୍ୟକୁ ପୁଷ୍ଟ କରିବାକୁ ତାଙ୍କ ଲେଖନୀରୁ ଆଉ କିଛି ବାହାରିନାହିଁ ।

## (୨) ଯାହାର ଦୌଡ଼ ଯେଉଁପାଏ—

ବାଳକୃଷ୍ଣବାବୁଙ୍କର ଶେଷ କୃତି ହେଲା ସାଧାରଣବୋଧ ଟୀକାଯୁକ୍ତ 'ଶ୍ରୀମଦ୍‌ଭଗବଦ୍-ଗୀତା' । ଏ କ୍ଷେତ୍ରରେ ସେ ଲୋକମାନ୍ୟ ବାଳଗଙ୍ଗାଧର ତିଳକଙ୍କ ପାଣ୍ଡିତ୍ୟପୂର୍ଣ୍ଣ ଭାଷ୍ୟଯୁକ୍ତ 'ଗୀତାରହସ୍ୟ'କୁ ପଦେ ପଦେ ଅନୁସରଣ କରିଥିଲେ ।

ଏହି ସଂକଳନଟିକୁ ଶୁଦ୍ଧ ରୂପ ଦେବାପାଇଁ ମୁଁ ଅପ୍ରାଣ ଚେଷ୍ଟା କରିଥିଲି ବହୁ ଆୟାସ ସ୍ୱୀକାର କରି । ସଂକଳକ ବାଳକୃଷ୍ଣବାବୁ ଶ୍ଳୋକଗୁଡ଼ିକର ଆକ୍ଷରିକ ଅନୁବାଦ ଓ ବିଶଦ ବ୍ୟାଖ୍ୟା କେବଳ ଏତିକିମାତ୍ର ଲେଖିଦେଉଥିଲେ । ଅନ୍ୟ ସମସ୍ତ ବିଷୟକୁ ଯଥାସ୍ଥିତ ସଜାଇବାର ଦାୟିତ୍ୱ ଓ ସର୍ବୋପରି ଆମୂଳଚୂଳ ନିର୍ଦ୍ଦୋଷ ପ୍ରୁଫ୍ ସଂଶୋଧନର ଦୁରୂହ କାର୍ଯ୍ୟଭାର ମୋ'ରି ହସ୍ତରେ ନ୍ୟସ୍ତ ଥିଲା । ସେତେବେଳକୁ ସାରସ୍ୱତ ମୁଦ୍ରଣାଳୟର ବିପୁଳ ଅଭିବୃଦ୍ଧି ହୋଇଥାଏ । ତାହା ଅଟେଇତାଳିଆ କୋଠାରୁ ଉଠିଆସିଥାଏ ଦ୍ୱିଚତ୍ୱରବିଶିଷ୍ଟ ଗୋଟିଏ ସୁପ୍ରଶସ୍ତ ଅଟ୍ଟାଳିକାକୁ, ଯାହାର ଏକତୃତୀୟାଂଶ ଦ୍ୱିତଳ । 'ଗୀତା'ର ପ୍ରଥମ ଫର୍ମାଟି ବଡ଼ (ଫ୍ଲାଟ୍) ମେସିନ୍‌ରେ ପଡ଼ି ଛପା ଆରମ୍ଭ ହେଉଥିଲାବେଳେ ଏକ କୌତୁକାବହ ଘଟଣା ଘଟିଲା । ବାଳକୃଷ୍ଣବାବୁ ମେସିନ୍ ଘରକୁ ଯାଇ ଛପା ଫର୍ଦ୍ଦଟିଏ ଟାଣିଆଣି ଠିଆଠିଆ ପଢ଼ିବାକୁ ଲାଗିଲେ ଏବଂ 'ବିଶଦ' ଶବ୍ଦଟି ଯେତେ ସ୍ଥାନରେ ଥିଲା ସବୁଗୁଡ଼ିକୁ ହଲନ୍ତଯୁକ୍ତ (ଦ୍) କରାଇଦେଲେ । ତାଙ୍କ ଅଲଙ୍ଘ୍ୟ ଆଦେଶରେ ଛପାକାର୍ଯ୍ୟ କିଛି ସମୟ ବନ୍ଦ ରହି ସମସ୍ତ 'ବିଶଦ' 'ବିଶଦ୍'ରେ ପରିଣତ ହେଲା ଏବଂ ତା'ପରେ ଛପା ଚାଲିଲା । ଏତିକି 'ଅବ୍ୟାପାରେଷୁ ବ୍ୟାପାରଂ' କରିଦେଲା ପରେ ସେ ମୋର ଗୋଟାଏ ମସ୍ତବଡ଼ ଭୁଲ୍ ପକଡ଼ିଥିବାର ବାହାଦୁରିରେ ମନେ ମନେ ଖୁବ୍ ସ୍ଫୀତ ହୋଇ ମତେ ଆସି ଘଟଣାଟି ନିଠେଇ ନିଠେଇ ଜଣାଇଲେ । ମୁଁ ସାଙ୍ଗେ ସାଙ୍ଗେ ଅଭିଧାନ କାଢ଼ି 'ବିଶଦ' ଶବ୍ଦଟି ଯେମିତି ଦେଖେଇଦେଇଛି, ବାଳକୃଷ୍ଣବାବୁ ନିଜର ଭ୍ରାନ୍ତ ବୁଦ୍ଧିପାଇ ନିତାନ୍ତ ଅପ୍ରତିଭ ହୋଇଗଲେ । 'ଯେ ପକ୍ଷୀ ଉଡ଼େ ଯେତେ ଦୂର, ସେ ଜାଣେ ତାହାର ବେଭାର ।' ମୁଁ ମେସିନ୍ ପାଖକୁ ଧାଇଁଯାଇ ଉକ୍ତ ଶବ୍ଦଟିକୁ ଯଥାପୂର୍ବ ('ବିଶଦ') କରାଇଦେଇଆସିଲି ।

## (୩) ସାରସ୍ୱତ ରାମାୟଣ—

ଅନ୍ୟ ଯେଉଁ ତିନୋଟି ଗ୍ରନ୍ଥ ତାଙ୍କଦ୍ୱାରା ସମ୍ପାଦିତ ବୋଲି ମୁଦ୍ରିତ ହୋଇଥିଲା ତାହା ହେଲା 'ସାରସ୍ୱତ ରାମାୟଣ', 'ପୁରୋହିତ ସର୍ବସ୍ୱ' ଓ 'ଶିଶୁସଙ୍ଗାଳି' । ସଂସ୍କୃତ ବଶିଷ୍ଠ ରାମାୟଣର ଓଡ଼ିଆ ପଦ୍ୟାନୁବାଦ ପ୍ରଥମରୁ ଆରମ୍ଭ କରିଥିଲୁଁ ମୁଁ ଓ ମୋର ସାଥୀ

ଭଗବାନ ପତି । ବ୍ୟବସାୟୀ ବାଳକୃଷ୍ଣଙ୍କର ଲକ୍ଷ୍ୟ ଥିଲା ଗ୍ରନ୍ଥଟିକୁ ଶୀଘ୍ର ପ୍ରକାଶ କରିବା-ପାଇଁ । ମାତ୍ର ଆମେ ଦୁହେଁ ପ୍ରେସ୍‌ରେ ନିଜନିଜର ଗତବନ୍ଧା ଦାୟିତ୍ୱ ପୂର୍ଣ୍ଣଭାବରେ ତୁଲାଇବା ପରେ ଅନୁବାଦ କାର୍ଯ୍ୟ କରୁଥିବାରୁ ଅଗ୍ରଗତିର ଧାରା ପ୍ରଖର ହୋଇପାରୁ ନ ଥିଲା । ବାଳକୃଷ୍ଣବାବୁଙ୍କ ଉକ୍ତ ମନୋଗତି ଦେଖି ମୁଁ ପ୍ରସ୍ତାବ ଦେଲି ଅନ୍ୟ କେତେକ ବନ୍ଧୁଙ୍କୁ ଏ କାର୍ଯ୍ୟକ୍ରମରେ ସାମିଲ କରିବାକୁ । ତଦନୁସାରେ ଗୋଦାବରୀଶ ମହାପାତ୍ର, ଅଲେଖପ୍ରସାଦ ଦାସ ଓ ଉପେନ୍ଦ୍ର ତ୍ରିପାଠୀଙ୍କୁ ନିର୍ଦ୍ଧାରିତ ପାରିଶ୍ରମିକ ଭିତ୍ତିରେ ନିଯୁକ୍ତ କରାଗଲା । ସେମାନଙ୍କୁ ଏପରିଭାବରେ କାର୍ଯ୍ୟଭାର ବଣ୍ଟନ କରାଗଲା ଯେ, ଆମ ଦୁହିଙ୍କ ଅନୁବାଦର ପଛକୁ ପଛ ସେମାନଙ୍କ ଅନୁବାଦ ଅଂଶ ଲାଗିରହିଲା । ଏହା ଫଳରେ ଛପାକାର୍ଯ୍ୟ ଆଦୌ କୌଣସିଠାରେ ଅଟକିଲା ନାହିଁ । ଗ୍ରନ୍ଥଟି ମଧ୍ୟ ଠିକ୍ ସମୟରେ ବାହାରିପଡ଼ିଲା ।

ବାଳକୃଷ୍ଣବାବୁ ମୂଳରୁ ନିଜଆଡ଼ୁ କହିଥିଲେ—ଏହି ପାଞ୍ଚ ଅନୁବାଦକଙ୍କ ନାମ ଗ୍ରନ୍ଥର ଇନର୍ ଟାଇଟ୍‌ଲ ପୃଷ୍ଠାରେ ଛପା ହେବ ଏବଂ ପ୍ରତ୍ୟେକେ ତାଙ୍କ ଅନୁବାଦର ପରିମାଣ ଅନୁସାରେ ନିର୍ଦ୍ଧାରିତ ହାରରେ ଆନୁପାତିକ ପାରିଶ୍ରମିକ ପାଇବେ । କିନ୍ତୁ ଅତି ବିସ୍ମୟକର ଭାବରେ ହଠାତ୍ ଦିନେ 'ସାରସ୍ୱତ ଭଣ୍ଡାର' ପୁସ୍ତକାଳୟର ଶୋ-କେସ୍‌ରେ ଦେଖିବାକୁ ମିଳିଲା ସାତଖଣ୍ଡି ସଦ୍ୟପ୍ରକାଶିତ 'ସାରସ୍ୱତ ରାମାୟଣ'—ଏତେ ତରବରରେ ବନ୍ଧେଇ ହୋଇ ସେଠାକୁ ଆସିଥାଏ ଯେ, ତହିଁରେ ବ୍ୟବହୃତ ହୋଇଥିବା 'ଗମ୍' ଅଠା ସେପର୍ଯ୍ୟନ୍ତ କଞ୍ଚା ରହିଥାଏ । ଆଗ୍ରହାତିଶଯ୍ୟରେ ମୋଟା ମଲାଟଟି ଟେକିଦେଲି ମାତ୍ରେ ଇନର୍ ଟାଇଟଲ୍ ଦେଖି ସ୍ତବ୍ଧ ହେବାକୁ ପଡ଼ିଲା । ଅନୁବାଦକବୃନ୍ଦଙ୍କ ନାମର ଚିହ୍ନବର୍ଣ୍ଣ ନାହିଁ, କେବଳ ଛପା ହୋଇଛି—ଶ୍ରୀ ବାଳକୃଷ୍ଣ କର, ବି. ଏ. ଙ୍କ ଦ୍ୱାରା ସମ୍ପାଦିତ । କେଉଁ ଅନୁବାଦକଙ୍କ ରଚନାକୁ ଯେ ସମ୍ପାଦନା କରିଥିଲେ, ଜାଣିବାର ଉପାୟ ରହିଲା ନାହିଁ ପାଠକସାଧାରଣଙ୍କର; କାରଣ ତଥାକଥିତ ସମ୍ପାଦକଙ୍କ ଟିକି ମୁଖବନ୍ଧଟିରେ ମଧ୍ୟ ତାର କୌଣସି ସୂଚନା ନ ଥିଲା । ଏହିରୂପେ 'ସାରସ୍ୱତ ରାମାୟଣ'ର ରଚନାକାରୀ ପଞ୍ଚକବି ଅଶ୍ୱୀକୃତ ରହିଗଲେ । ଗୋଦାବରୀଶ, ଅଲେଖ, ଉପେନ୍ଦ୍ର ପାରିଶ୍ରମିକ ପାଇଲେ; କିନ୍ତୁ ଭଗବାନବାବୁ ଓ ମୁଁ ସାରସ୍ୱତ ପ୍ରେସ୍‌ର ବନ୍ଧା କ୍ଷେତକର୍ମୀ ହୋଇଥିବାରୁ ଆମ ଭାଗ୍ୟ ଏ ବାବଦରେ ମୂଦା ରହିଗଲା 'ଅଣପାରିଶ୍ରମିକ ଶ୍ରମିକ' ହିସାବରେ ।

## (୪) ପୁରୋହିତ ସର୍ବସ୍ୱ—

ତା'ପରେ 'ପୁରୋହିତ ସର୍ବସ୍ୱ' । ଏହା ରାମାୟଣର ପ୍ରାୟ ଅଢ଼େଇବର୍ଷ ପରେ ମଧୁପୁରବାସୀ ବର୍ଷୀୟାନ୍ ପଣ୍ଡିତ ହଳଧର ଶତପଥୀ କାବ୍ୟତୀର୍ଥଙ୍କ ଦ୍ୱାରା ସଂଗୃହୀତ ଓ ସଂକଳିତ କରାହୋଇଥିଲା । ବାଳକୃଷ୍ଣବାବୁ ପଣ୍ଡିତ ମହାଶୟଙ୍କୁ ପ୍ରେସ୍ ପରିସର ମଧ୍ୟରେ ରଖାଇ ତାଙ୍କଠାରୁ ଉକ୍ତ କାର୍ଯ୍ୟଟି ହାସଲ କରିଥିଲେ ଏବଂ ସେଥିପାଇଁ ତାଙ୍କୁ ମାସିକ କିଛି

କିଛି ପାରିଶ୍ରମିକ ଦେଉଥିଲେ । ଏ ଗ୍ରନ୍ଥଟି ଚାରି ଖଣ୍ଡରେ ସମ୍ପୂର୍ଣ୍ଣ ହୋଇଥିଲା ଏବଂ ପୁରୋହିତ ମହଲରେ ତଥା ବ୍ରାହ୍ମଣ ପରିବାରମାନଙ୍କରେ ସର୍ବାଧିକ ଆଦର ଲାଭ କରିଥିଲା ।

**(୫) ଶିଶୁପଞ୍ଚାଳ—**

'ଶିଶୁପଞ୍ଚାଳ' ବାଳକୃଷ୍ଣବାବୁଙ୍କ ଉଦ୍ୟମର ଶେଷ ଚିହ୍ନ । ଏଥିର ମାସିକ ପାରିଶ୍ରମିକ-ପ୍ରାପ୍ତ ସଂଗ୍ରାହକ ଓ ଲେଖକ ଏକାଧିକ ବୋଲି କଥିତ ଥିଲେ ହେଁ ବସ୍ତୁତଃ ପୂର୍ବତନ ନରସିଂହପୁର ଷ୍ଟେଟ୍‌ର ଅବସରପ୍ରାପ୍ତ ଦେବାନ ଓ ଆଜୀବନ ସଂଗ୍ରହପ୍ରେମୀ ବୟୋବୃଦ୍ଧ ଶ୍ୟାମସୁନ୍ଦର ନନ୍ଦ ସର୍ବପ୍ରଥମେ ନିଜ ସଞ୍ଚିତ ବିବିଧ ଉପାଦେୟ ଶିଶୁସାମଗ୍ରୀଦ୍ୱାରା ଏହି ଗ୍ରନ୍ଥର ମୂଳ ଭିତ୍ତି ଗଢ଼ିଦେଇଥିଲେ ବାଳକୃଷ୍ଣବାବୁଙ୍କ ସଶ୍ରଦ୍ଧ ଅନୁରୋଧରେ । ପ୍ରଥମ ଖଣ୍ଡଟି ମାତ୍ର ପ୍ରକାଶ କରିବାକୁ ବହୁ ବର୍ଷ ଓ ବହୁ ଅର୍ଥ ଲାଗିଥିଲା । ପୂର୍ବ ରୀତିରେ ଏଥିର ମଧ୍ୟ ବାଳକୃଷ୍ଣବାବୁ ଥିଲେ ସମ୍ପାଦକ । ଏହି ବ୍ୟୟବହୁଳ ବହୁଚିତ୍ର ଶୋଭିତ ପ୍ରକାଶନଟିରେ ବ୍ୟବସାୟିକ ଲାଭମାତ୍ରା ପ୍ରାୟ କିଛି ନ ରହିବାରୁ ଦ୍ୱିତୀୟ ଖଣ୍ଡର କଳ୍ପନାକୁ ବିସର୍ଜନ ଦିଆଯାଇଥିଲା ।

**(୬) 'ସହକାର' ମାସିକପତ୍ର—**

ସଙ୍ଗୀତ ଲେନ୍‌ରୁ କଲେଜର ଫାଟକ ସାମନା ନିମଚଉଡ଼ିକୁ ପ୍ରଥମେ ପ୍ରେସ ଉଠିଯିବାର ଅଳ୍ପଦିନ ପରେ ମୁଁ ଅପ୍ରତ୍ୟାଶିତ ନାଟକୀୟ ଭଙ୍ଗୀରେ ବାଳକୃଷ୍ଣବାବୁଙ୍କୁ ସମ୍ପାଦକର ସମ୍ମାନାସ୍ପଦ ଆସନରେ ସମାସୀନ କରାଇବାରେ ସୂତ୍ରଧରର କାର୍ଯ୍ୟ କରିଥିଲି । ନର୍ମାଲ୍ ସ୍କୁଲ୍‌ର ଅଧ୍ୟାପକ ହେବାଦିନୁଁ 'ସହକାର' ମାସିକପତ୍ରର ସମ୍ପାଦକ ଲକ୍ଷ୍ମୀନାରାୟଣ ସାହୁଙ୍କ ସହିତ ମୋର ନିବିଡ଼ତର ସମ୍ପର୍କ ରହି ଆସିଥିଲା । ମୁଁ ହୋଇଯାଇଥିଲି ସହକାରର ଏକପ୍ରକାର ନିୟମିତ ଲେଖକ । ପ୍ରାୟ ପ୍ରତି ରବିବାର ଦିନ ଚାଲି ଚାଲି ଇଦ୍‌ଗାପଡ଼ିଆସ୍ଥ ତାଙ୍କ ବାସଭବନରେ ଭୋର୍-ଭୋର୍ ପହଞ୍ଚିବା ମୋର ଥିଲା ଅଭ୍ୟାସଗତ । ସାହୁପତ୍ନୀ 'ବୀଣା' ଦେବୀ ମତେ ସନ୍ତାନବତ୍ ସ୍ନେହାଦର କରୁଥିଲେ ।

ମାସିକ ସାହିତ୍ୟପତ୍ର ବୋଇଲେ ସେତେବେଳେ ଥାଏ ତିନିଖଣ୍ଡ ମାତ୍ର—ଉତ୍କଳସାହିତ୍ୟ, ମୁକୁର, ସହକାର । ସାହିତ୍ୟିକ ଆଭିଜାତ୍ୟ, ଗୌରବ ଓ ପ୍ରତିଷ୍ଠାରେ ପ୍ରଥମଟି ଅଦ୍ୱିତୀୟ ଓ ଅପ୍ରତିଦ୍ୱନ୍ଦ୍ୱୀ ଥିଲେ ହେଁ ତାର ଲେଖକଗୋଷ୍ଠୀ ଥିଲେ ଧରାବନ୍ଧା । ନୂତନ ଲେଖକ ପକ୍ଷରେ ସମ୍ପାଦକ ବିଶ୍ୱନାଥ କରଙ୍କଠାରୁ ସ୍ୱୀକୃତି ପାଇବା ସହଜସାଧ୍ୟ ନଥିଲା । ଗ୍ରାହକ ସଂଖ୍ୟା ବୃଦ୍ଧି ପ୍ରତି ବର୍ଷିଷ୍ଠ ସମ୍ପାଦକଙ୍କର ଦୃଷ୍ଟି ନଥିଲା ଆଦୌ—ସାହିତ୍ୟ ପତ୍ରଟିର ପ୍ରତିଷ୍ଠିତ ଆଦର୍ଶକୁ ବଜାୟ ରଖିବା ହିଁ ଥିଲା ଏକମାତ୍ର ଆଭିମୁଖ୍ୟ । ଫଳରେ 'ଉତ୍କଳସାହିତ୍ୟ'ର ଗ୍ରାହକ ତାଲିକାରେ ଦିନକୁ ଦିନ ବଢ଼ିଚାଲିଥାଏ କୃଷ୍ଣପକ୍ଷୀୟ କ୍ଷୟିଷ୍ଣୁତାର ରେଖାପାତ ।

'ମୁକୁର' ମାସିକପତ୍ରର ପ୍ରତିଷ୍ଠାତା-ସମ୍ପାଦକ ସୁଶିକ୍ଷିତ ଜମିଦାର ବ୍ରଜସୁନ୍ଦର ଦାସ ଥିଲେ ଅତି ଉଦାରଚେତା, ସମଦର୍ଶୀ ଓ ପ୍ରୋତ୍ସାହନଶୀଳ । ତାଙ୍କ ସାହିତ୍ୟ ପତ୍ରଟି

ନୂଆ-ପୁରୁଣା ଉଭୟ ଲେଖକଗୋଷ୍ଠୀର ଥିଲା ସମନ୍ୱୟକ୍ଷେତ୍ର । ମୋ ଭଳି କଞ୍ଚା ବୟସିଆର ତରଳଭାବପ୍ଲୁତ ହାଲୁକା ରଚନା 'ଛୁଆବୋହୂଙ୍କ ନମତଘର' କ୍ଷୁଦ୍ର ଗଳ୍ପ ଓ 'ସେ କି ଦୋଷ ତାର' ଭଳି ଅକ୍ଷରବୃତ୍ତୀୟ କବିତାକୁ ମଧ୍ୟ ଅବାଧରେ ତହିଁକି ପ୍ରବେଶାଧିକାର ମିଳିପାରୁଥିଲା । ଏହି ମାସିକ ସାହିତ୍ୟପତ୍ରର ଗ୍ରାହକବିରଳତାଜନିତ ପୀଡ଼ା ନଥିଲା କି ଗ୍ରାହକବହୁଳତାଜନିତ ଅସୁଖ ନଥିଲା । ତେଣୁ ତାର ଗତିଭଙ୍ଗୀରେ ଥାଏ ଦୁଃଖ-ସୁଖର ମିଶ୍ରିତ ଛନ୍ଦ ।

ତୃତୀୟ ମାସିକ ସାହିତ୍ୟପତ୍ର 'ସହକାର' ଓ ତାର ପ୍ରତିଷ୍ଠାତା-ସମ୍ପାଦକ ଲକ୍ଷ୍ମୀନାରାୟଣ ସାହୁ ଉଭୟ ଥିଲେ ବୟଃକନିଷ୍ଠ । ଏଣୁ ସ୍ୱଭାବତଃ 'ସହକାର' ହୋଇଥିଲା କନିଷ୍ଠବୟସ୍କ ଉଦୀୟମାନ ଲେଖକକୁଳର ସ୍ଫୁଟନୋନ୍ମୁଖୀ ପ୍ରତିଭାର ସ୍ୱଚ୍ଛନ୍ଦ ବିହାରକୁଞ୍ଜ । 'ଭାରତ ସେବକ ସମିତି'ର ଆଜୀବନ ସଭ୍ୟ ହୋଇଥିବାରୁ ଲକ୍ଷ୍ମୀନାରାୟଣବାବୁ ବରିନେଇଥିଲେ ବାରବୁଲାର ଜୀବନ । ସେଥିପାଇଁ ଅନେକ ସମୟରେ ତାଙ୍କୁ କଟକ ବାହାରେ ରହିବାକୁ ପଡ଼ୁଥିଲା ଦୀର୍ଘ ସମୟ ପାଇଁ । ତାଙ୍କ 'ମହାନଦୀ ପ୍ରେସ୍'ର ପରିଚାଳନା ଦାୟିତ୍ୱରେ ଥିଲେ ରାଧାକୃଷ୍ଣ ସାହୁ । ଲକ୍ଷ୍ମୀନାରାୟଣଙ୍କ ଅନୁପସ୍ଥିତିରେ ସେଇ ବୁଝନ୍ତି 'ସହକାର' କାମ । ମାତ୍ର ସେଭଳି ବେଳେ ପାଖରେ ପଇସା ନଥିଲେ ଲେଖାପ୍ରାଚୁର୍ଯ୍ୟ ସତ୍ତ୍ୱେ ସହକାର କାମ ହାତକୁ ନେଇହୁଏ ନାହିଁ । ଫଳତଃ ମାସିକପତ୍ରଟିର ପ୍ରକାଶ ହୋଇଯାଏ ଅନିୟମିତ ଏବଂ ଗ୍ରାହକମାନଙ୍କ ପ୍ରତୀକ୍ଷାକାଳ ଅସହନୀୟଭାବରେ ବହୁତ ବଢ଼ିଯାଏ । ଏହାକୁ ରୋକିବା ରାଧାକୃଷ୍ଣଙ୍କ ପକ୍ଷରେ ହୁଏ ସାଧ୍ୟାତୀତ । ଲକ୍ଷ୍ମୀନାରାୟଣବାବୁ କଟକ ଫେରିବା ପରେ କେବଳ ବ୍ୟଥିତ ହୁଅନ୍ତି ସିନା, ପ୍ରତିକାରର କୌଣସି ବ୍ୟବସ୍ଥା କରିପାରନ୍ତି ନାହିଁ ।

ଏହି ଦୟନୀୟ ପରିସ୍ଥିତିକୁ ସବୁଦିନପାଇଁ ଏଡ଼ାଇ ସହକାର-ଜଞ୍ଜାଳରୁ ମୁକ୍ତ ହେବାକୁ ମୁଁ ଦିନେ ଲକ୍ଷ୍ମୀନାରାୟଣବାବୁଙ୍କୁ ଗୋଟିଏ ପ୍ରସ୍ତାବ ଦେଲି, "ବାଳକୃଷ୍ଣବାବୁଙ୍କ ସମ୍ପାଦକୀୟ ଯୋଗ୍ୟତା ଓ ସାରସ୍ୱତ ପ୍ରେସ୍‌ର ଆର୍ଥିକ ସ୍ୱଚ୍ଛଳତା ସମ୍ବନ୍ଧରେ ଆପଣ ତ ନିଶ୍ଚୟ ନିଃସନ୍ଦେହ ଥିବେ । ଏଣୁ ମୋର ମତ, 'ସହକାର'-ଧନ୍ଦାରେ ଦାଣ୍ଡି ହୋଇ ଅଜସ୍ର ଅର୍ଥଶ୍ରାଦ୍ଧ କରିବା ଅପେକ୍ଷା ବାଳକୃଷ୍ଣବାବୁଙ୍କୁ ତାହା ହସ୍ତାନ୍ତର କରିଦେବା ଆପଣଙ୍କ ପକ୍ଷରେ ଶତଗୁଣେ ଶ୍ରେୟସ୍କର ଓ ସ୍ୱସ୍ତିକର ହେବ ।"

ମୋର ଏହି ସାଧୁ ପ୍ରସ୍ତାବଟିକୁ ଅତି ଆଗ୍ରହର ସହିତ ଜନମଙ୍ଗଳବ୍ରତୀ ଲକ୍ଷ୍ମୀନାରାୟଣବାବୁ ନିର୍ବିଘ୍ନରେ ଗ୍ରହଣ କରିନେଲେ । ମିଠା ମିଠା ଆମ୍ବର ଓ ସୁନ୍ଦରିଆ ସୁନ୍ଦରିଆ ଗୋଲାପର ଗଛ ଲଗେଇ ସେଗୁଡ଼ିକୁ ବଢ଼େଇକୁଢ଼େଇ ଯୋଗ୍ୟ ଚାଷୀଙ୍କ ହାତରେ ଅର୍ପଣ କରିବାରେ ହିଁ ତାଙ୍କର ଥିଲା ପରମ ଆନନ୍ଦ—ନିଜେ ମହୁଆ ରସ ନ ପିଇ ଅନ୍ୟକୁ ପିଆଇବାରେ ଓ ନିଜେ ମଧୁର ମହକ ନ ଶୁଙ୍ଘି ଅନ୍ୟକୁ ଶୁଙ୍ଘାଇବାରେ ହିଁ ତାଙ୍କର ଥିଲା ଚରମ ତୃପ୍ତି । ତାଙ୍କ ପରାର୍ଥ ଜୀବନର ଏହା ଏକ ଅନନ୍ୟ ବିଶେଷତ୍ୱ ।

ଅତୀତରେ ଶିକ୍ଷକ ବାଳକୃଷ୍ଣ ଓ ସେବକ ଲକ୍ଷ୍ମୀନାରାୟଣଙ୍କ ମଧ୍ୟରେ କେବେ ପ୍ରତ୍ୟକ୍ଷ ପରିଚୟର ସୁଯୋଗ ଘଟିନଥିଲା । ମୁଁ ଅଳ୍ପଦିନ ପୂର୍ବରୁ ଲକ୍ଷ୍ମୀନାରାୟଣଙ୍କୁ ଥରେ ସାରସ୍ୱତ ପ୍ରେସ୍‌କୁ ଡାକିଆଣି ସେହି ସୁଯୋଗର ପଟଭୂମି ପ୍ରସ୍ତୁତ କରିବା ସଙ୍ଗେ ସଙ୍ଗେ ଉଭୟଙ୍କୁ ସଂଯୁକ୍ତ କରିବା ଉଦ୍ଦେଶ୍ୟରେ ବନ୍ଧୁତାର ସେତୁ ନିର୍ମାଣ କରିଥିଲି, ଯାହାଫଳରେ ଉଭୟେ ପରସ୍ପରର ନିକଟତର ଓ ଘନିଷ୍ଠ ଆତ୍ମୀୟ ହୋଇପାରିଥିଲେ । ଏବେ ବାଳକୃଷ୍ଣବାବୁଙ୍କୁ 'ସହକାର' ସମ୍ପର୍କୀୟ ମୋ ଯୋଜନାଟି ଜଣାଇଲି । ଶୁଣି ସେ ଉଲ୍ଲସିତ ହୋଇଉଠିଲେ, କାରଣ ସେହି ମାସିକପତ୍ରଟି ହେବ ତାଙ୍କ ସାହିତ୍ୟିକତା ପ୍ରଚାରର ସର୍ବୋତ୍କୃଷ୍ଟ ମାଧ୍ୟମ ।

ଏହାପରେ ଯୋଗକୁ ଦିନେ ଲକ୍ଷ୍ମୀନାରାୟଣବାବୁ ଆସି ପହଞ୍ଚିଗଲେ ଆମ ପ୍ରେସ୍‌ରେ । ମୁଁ ସେ ଦୁହିଙ୍କ ଆଗରେ 'ସହକାର'-ହସ୍ତାନ୍ତରଣ ପ୍ରସଙ୍ଗଟି ଆନୁଷ୍ଠାନିକଭାବରେ ଉପସ୍ଥାପନ କଲି । ଦାତା-ଗ୍ରହୀତା ଉଭୟଙ୍କ ନିର୍ମଳ ସ୍ୱୀକୃତିରେ ସର୍ତ୍ତହୀନ ଚୂଡ଼ାନ୍ତ ନିଷ୍ପତ୍ତି ହୋଇଗଲା । କଥା ହେଲା, ପରବର୍ତ୍ତୀ ସଂଖ୍ୟାଠାରୁ ବାଳକୃଷ୍ଣବାବୁ ନିଜ ସମ୍ପାଦକତ୍ୱରେ 'ସହକାର' ପ୍ରକାଶ କରିବେ । ଉକ୍ତ ସଂଖ୍ୟାର 'ସମ୍ପାଦକୀୟ' ପୃଷ୍ଠାରେ ଏହି ଦାନ-ପ୍ରତିଗ୍ରହ ସମ୍ପର୍କୀୟ ସନ୍ତକସ୍ୱରୂପ ପ୍ରଥମେ ଲକ୍ଷ୍ମୀନାରାୟଣ ସାହୁଙ୍କ ଲିଖିତ ବିବୃତି ଓ ତାହା ତଳେ ବାଳକୃଷ୍ଣ କରଙ୍କ ଲିଖିତ ବିବୃତି ସ୍ୱାକ୍ଷର ସହ ପ୍ରକାଶିତ ହେବ ।

ଏତଦନୁଯାୟୀ ବାଳକୃଷ୍ଣବାବୁ ହେଲେ ନୂତନ ସ୍ୱତ୍ୱାଧିକାରୀ ସମ୍ପାଦକ । ପରସଂଖ୍ୟା (୧୯୨୯ ପଣାସଂକ୍ରାନ୍ତି)ଠାରୁ 'ସହକାର'ର ରୂପଭେକରେ ପ୍ରବର୍ତ୍ତିତ ହେଲା ବହୁ ନୂତନତ୍ୱ—ଆକାର (size), କଳେବର, ରେଖା, ଲେଖା, ସବୁଥିରେ ଅଭିବୃଦ୍ଧି ଓ ସମୃଦ୍ଧି । ଏହି ପରିବର୍ଦ୍ଧିତ ସଂଖ୍ୟାର ପ୍ରଚ୍ଛଦଚିତ୍ରଟି ହୋଇଥିଲା ଅତ୍ୟାଧୁନିକ ଓ ଚକ୍ଷୁ-ଆକର୍ଷକ । ଏହାର ପରିକଳ୍ପନାରେ ଥିଲା ସର୍ବଧର୍ମସମନ୍ୱୟର ନବଭାରତୀୟ ଶକ୍ତି ସଙ୍କେତ । ଚିତ୍ରଟି ଆଙ୍କିଥିଲେ ଚିତ୍ରଶିଳ୍ପଜଗତର ସାର୍ଥକନାମା ମହାରଥୀ ମୋର ବ୍ୟକ୍ତିଗତ ବନ୍ଧୁ ଉପେନ୍ଦ୍ର ମହାରଥୀ । ସେ କଲିକତା ଆର୍ଟ ସ୍କୁଲରୁ ଫାଇନ୍ ଆର୍ଟ ଓ କମର୍ସିଅଲ୍ ଆର୍ଟ ସଦ୍ୟ ପାସ୍ କରି ଚାକିରି ଅନ୍ୱେଷଣରେ କଟକ ଆସି କେତୋଟି ଦିନପାଇଁ ମୋର ଅତିଥି ହୋଇଥାନ୍ତି ।

## (୭) ଚିତ୍ରଶିଳ୍ପୀ ମହାରଥୀ ଓ ପଣ୍ଡିତ ବାନାମ୍ବର—

ସୌଭାଗ୍ୟକ୍ରମେ ତାହାରି ମଧ୍ୟରେ ବିହାରର ଦରଭଙ୍ଗା ଜିଲ୍ଲାନ୍ତର୍ଗତ ହେରିଆସରାଇରେ ଥିବା ସର୍ବବୃହତ୍ ପୁସ୍ତକ ଭଣ୍ଡାର ଓ ପ୍ରକାଶନ ସଂସ୍ଥାର ସ୍ୱତ୍ୱାଧିକାରୀ ପଣ୍ଡିତ ରାମଲୋଚନ ଶରଣ କଟକ ଆସି 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ'-ସଂକଳୟିତା ରାୟବାହାଦୁର ଗୋପାଳଚନ୍ଦ୍ର ପ୍ରହରାଜଙ୍କର ଅତିଥି ହେଲେ । ଟ୍ରେଡ଼ିଂ କମ୍ପାନୀରେ ମୋର ଯୋଗଦାନ ପରଠାରୁ ମାନନୀୟ ପ୍ରହରାଜଙ୍କ ସହିତ ମୁଁ ଯୋଗସୂତ୍ର ସ୍ଥାପନ କରିପାରିଥିଲି । ଏହି ସୁଯୋଗରେ ମୁଁ ଚିତ୍ରଶିଳ୍ପୀ ଉପେନ୍ଦ୍ର ମହାରଥୀଙ୍କୁ ସଙ୍ଗରେ ନେଇ ପ୍ରହରାଜ ମହାଶୟଙ୍କ 'ଭାଷାକୋଷ ଆଶ୍ରମ'କୁ ଗଲି । ସେଠାରେ ପ୍ରକାଶକ ପଣ୍ଡିତ ରାମଲୋଚନ ଶରଣ କୃତୀ ଶିଳ୍ପୀ ମହାରଥୀଙ୍କ

ଅଙ୍କିତ ଚତ୍ରାବଳୀର ଆଲ୍‌ବମ୍‌ଗୁଡ଼ିକୁ ତନ୍ନ ତନ୍ନ ଭାବରେ ଖୋଲାଇ ଦେଖି ମୁଗ୍ଧ ହୋଇଗଲେ ଏବଂ ତାଙ୍କୁ ସ୍ୱୀୟ ପୁସ୍ତକ ପ୍ରତଷ୍ଠାନର ମୁଖ୍ୟ ଚତ୍ରଶିଳ୍ପୀରୂପେ ନଯୁକ୍ତ ଦେଇ ସଙ୍ଗରେ ଘେନଯିବାକୁ ପ୍ରବଳ ଆଗ୍ରହ ପ୍ରକାଶ କଲେ । ବନ୍ଧୁ ମହାରଥୀଙ୍କର ଆଶା ସଫଳ ହେଲ; ଆଶା କେବଳ ସଫଳ ହେଲ ନାହିଁ, ଭାରତୀୟ ଚତ୍ରକଳା ତଥା ଚୀନା ଚ଼ତ୍ରକଳା କ୍ଷେତ୍ରରେ ଶିଳ୍ପୀଶିରୋମଣିର ଗୌରବ ଅର୍ଜନ ପାଇଁ ଭାଗ୍ୟଦେବତା ତାଙ୍କୁ ବାଛ କଢ଼େଇ-ନେଲ ।

ଏହାପରେ ଆଉ ଗୋଟିଏ ବବରଣୀ ମଧ୍ୟ ଉଲ୍ଲେଖଯୋଗ୍ୟ, ଯାହାର ଘଟନାକାଳ କଅଛନ୍ତ ପରବର୍ତ୍ତୀ ଓ ଯାହାର ନାୟକ ଶିଳ୍ପୀ ନହୋଇ ଜଣେ ସାହତ୍ୟରଥୀ । ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ସାହତ୍ୟାଚାର୍ଯ୍ୟ, ଅପରଚତ ହେଲେହେଁ, ଦନେ ମୋର ଦ୍ୱାରସ୍ଥ ହୋଇଥିଲେ । ଉଦ୍ଦେଶ୍ୟ—ତାଙ୍କପାଇଁ ଅନ୍ତତଃ ପନ୍ଦରଟଙ୍କିଆ କାର୍ଯ୍ୟ କଣ୍ଡେ କୌଣସି ପ୍ରେସ୍‌ରେ ମୁଁ ଯୋଗାଡ଼ କରଦେବ । ତାଙ୍କ ଯୋଗ୍ୟତା ତୁଳନାରେ ଏଭଳି ନକୃଷ୍ଟିଆ ଚାକରର ବ୍ୟବସ୍ଥା କରବାକୁ ମୋ ମନ ଆଦୌ ଡାକଲ ନାହିଁ । "ଦୃଶ୍ୟଆଡ଼େ ଆଖି ବୁଲଉଛୁ" ବୋଲ ତାଙ୍କୁ ଆଶା-ଆଶ୍ୱାସନାର ବାଣୀ ଶୁଣାଇ ବଦା କଲ ଏବଂ ମଝେ ମଝେ ମୋ ପାଖକୁ ଆସି ବୁଝୁଥିବାକୁ କହଲ । ତାଙ୍କ ଘର ଖାନନଗର ପାଖ କାଠଯୋଡ଼ି ନଈ ସେପାର ବେଣ୍ଟକାର ଗ୍ରାମରେ, ଯାହା ସେକାଳରେ ପ୍ରସିଦ୍ଧ ଥିଲ ନାମଜାଦା ଜାଉଆ ଜାଉଆ ମିଠା ଆମ୍ବପାଇଁ ଏବଂ ସେହସବୁ ମର୍ଯ୍ୟାଦାବନ୍ତ ଆମ୍ବରେ କଟକର ଫଳବଜାର ପୁରଉଠୁଥିଲା ।

ଅଳ୍ପକାଳ ପୂର୍ବେ କେନ୍ଦୁଝର ରାଣୀ ମନୋଜମଞ୍ଜରୀ ଦେବୀଙ୍କ ଲଖିତ 'ଗୀତା' ପାଣ୍ଡୁଲପିଟି ସଂଶୋଧନ ଓ ମୁଦ୍ରିତକରଣ ଉଦ୍ଦେଶ୍ୟରେ ମୋର ହସ୍ତଗତ ହୋଇଥିଲ ତାଙ୍କ ନଅର-ଅଧୀକ୍ଷକ (Palace Superintendent) ବଂଶୀଧର ମହାନ୍ତଙ୍କ ଜରଆରେ । ସୁନ୍ଦର ମାର୍ଜିତ ଲେଖା । ମୁଁ ତାହାକୁ ଅଧିକତର ମାର୍ଜିତ କର ସାରସ୍ୱତ ପ୍ରେସ୍‌ରେ ଦ୍ୱିରଙ୍ଗ ପତ୍ରପାଟୀରେ ଛପାଇଦେଇଥିଲ । ରାଣୀସାହେବା ଏଥିରେ ନରତଶୟ ପ୍ରୀତ ହୋଇ କୃତଜ୍ଞତା ଜଣାଇଥିଲେ ଏବଂ ଏହ ଋଣର ପରଶୋଧପାଇଁ ତାଙ୍କୁ ସୁଯୋଗ ଦେବାକୁ ଅନୁରୋଧ କରଥିଲେ ।

ଦୈବଯୋଗକୁ ଏହ ସମୟରେ କେନ୍ଦୁଝର ହାଇସ୍କୁଲରେ ଜଣେ ଉପାଧ୍ୟାୟ ସଂସ୍କୃତ ପଣ୍ଡିତଙ୍କ ନଯୁକ୍ତପାଇଁ ଖବରକାଗଜରେ ବଜ୍ଞାପନ ବାହାରଲ । ମୁଁ ବାନାମ୍ବରଙ୍କୁ ଏଥିଲଗି ପ୍ରାର୍ଥୀ କରାଇଲ ଏବଂ ତାଙ୍କ ପ୍ରାର୍ଥିପତ୍ରଟି ଇଂରାଜୀରେ ଟାଇପ୍ କର ରାଣୀ ମନୋଜମଞ୍ଜରୀଙ୍କ ନକଟକୁ ବଂଶୀଧର ମହାନ୍ତଙ୍କ ମାରଫତରେ ପଠାଇଦେଲ । ଶତ୍ରୁଙ୍କ କଥାକୁ ଏଡ଼େଇଦେବା ବା ଆଡ଼େଇଦେବା ଯୁଗେ ଯୁଗେ ସଦାଶିବଙ୍କର ସାଧାରଣ ତ । ତେଣୁ ରାଜାସାହେବଙ୍କ ଆଦେଶରେ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ସାହତ୍ୟାଚାର୍ଯ୍ୟଙ୍କ ନାମରେ ଅବଲମ୍ବେ ନଯୁକ୍ତିପତ୍ର ପ୍ରେରତ ହେଲ ମୋ କେୟାର୍-ଅଫ୍‌ରେ । ଆଚାର୍ଯ୍ୟ ମହାଶୟଙ୍କଠାରେ ଥିବା ଚତୁରତାର ସୁପ୍ତ ପ୍ରତଭା ସେହ କେନ୍ଦୁଝରରେ ହିଁ ପ୍ରସ୍ଫୁଟତ ହୋଇ ସମଗ୍ର ଓଡ଼ିଶାର ସାହତ୍ୟାଙ୍ଗନରେ

ସୌରଭ ଝେଳାଇଦେଇଥିଲା । ପରବର୍ତ୍ତୀ ଜୀବନରେ ସେ ଅମ୍ଳାନ ଯଶର ଅଧିକାରୀ ହୋଇପାରିଥିଲେ ।

## (୮) 'ସହକାର'ର ପ୍ରବର୍ଦ୍ଧମାନ ନବକଳେବର ପାଇଁ ଅର୍ଥସଂଗ୍ରହର ପରିକଳ୍ପନା—

ଲକ୍ଷ୍ମୀନାରାୟଣ ବାବୁ 'ସହକାର'ର ଗ୍ରାହକମାନଙ୍କ ନାମଧାମ ଓ ହେସାବର ସମସ୍ତ କାଗଜପତ୍ର ଦେଇଯାଇଥିଲେ । ତଦନୁଯାୟୀ ମାସିକପତ୍ରଟି ପଠାଯାଉଥିଲା । ନିୟମିତ ଧାରାରେ ପ୍ରକାଶ ପାଇବା ଫଳରେ କ୍ରମଶଃ ଏହା ଆକର୍ଷଣୀୟ ହେଲା, ଗ୍ରାହକସଂଖ୍ୟା ମଧ୍ୟ ଉତ୍ସାହପ୍ରଦ ଭାବରେ କିଛି କିଛି ବଢ଼ିବାକୁ ଲାଗିଲା ପ୍ରତି ମାସରେ ।

ପ୍ରାୟ ଦେଢ଼ ବର୍ଷ ଅତୀତ ହେଲାପରେ ସହକାରକୁ 'ବାଚୁଣୀ' ପତ୍ରିକା ପରି ଅଧିକତର ଆକର୍ଷଣୀୟ ରୂପ ଦେବାପାଇଁ ବାଳକୃଷ୍ଣ ବାବୁ ମନସ୍ଥ କଲେ; କିନ୍ତୁ ପାଣ୍ଠିର ଅଭାବ ତାହିଁରେ ପ୍ରବଳ ପ୍ରତିବନ୍ଧକ ହେଉଛି ବୋଲି ମୋ' ଆଗରେ ପ୍ରକାଶ କଲେ । ମୁଁ କହିଲି, "ପାଣ୍ଠିର ଅଭାବ କେବେ ଅନ୍ତରାୟ ହେବ ନାହିଁ, ମୁଁ ପାଣ୍ଠି ଯୋଗାଇଦେବି—ଦୁଇ ତିନିଟା ମାସପାଇଁ ମତେ ଏଠୁଁ ଛୁଟିଦିଅ । ପଶ୍ଚିମ ଗଡ଼ଜାତ ସମେତ କେତୋଟି ଅଞ୍ଚଳ ବୁଲିଆଇଲେ ପ୍ରୟୋଜନୀୟ ଅର୍ଥ ଅକ୍ଳେଶରେ ସଂଗ୍ରହ କରିପାରିବି ବୋଲି ମୋର ଦୃଢ଼ ବିଶ୍ୱାସ ।"

ବହୁତର-ଆଲୋଚନା ପରେ ସିଦ୍ଧାନ୍ତ ହେଲା—'ସହକାର'ର କଳେବର ହେବ ଦ୍ୱିଗୁଣିତ ଅର୍ଥାତ୍ ଶହେ ପୃଷ୍ଠା, ବାର୍ଷିକ ମୂଲ୍ୟ ମଧ୍ୟ ହେବ ଦ୍ୱିଗୁଣିତ ଅର୍ଥାତ୍ ଚାରି ଟଙ୍କା । ଏହି ସାଧାରଣ ସଂସ୍କରଣ ଛଡ଼ା ଉତ୍କୃଷ୍ଟ କାଳି ଓ ମୂଲ୍ୟବାନ୍ କାଳି ଓ ଆର୍ଟ୍ ପେପର୍‌ରେ ଗୋଟିଏ ରାଜସଂସ୍କରଣ ମୁଦ୍ରିତ କରାଯିବ, ଯାହାର ବାର୍ଷିକ ମୂଲ୍ୟ ହେବ ଦଶଟଙ୍କା ।

## (୯) ଗଡ଼ଜାତ ଗସ୍ତ—

ମୁଁ ମୋ ଗଡ଼ଜାତ ଗସ୍ତର ପୂର୍ବାୟୋଜନରେ ଲାଗିପଡ଼ିଲି ଉପରୋକ୍ତ ସିଦ୍ଧାନ୍ତ ଭିତ୍ତିରେ । ପ୍ରକଳ୍ପିତ ନବକଳେବରଧର 'ସହକାର' ସମ୍ବନ୍ଧୀୟ ଷୋଳପୃଷ୍ଠାସମ୍ବଳିତ ପରିଚୟ ପୁସ୍ତିକା ଓ ରସିଦ ବହି ଆବଶ୍ୟକ ସଂଖ୍ୟାରେ ଛପିନେଲି । ଏସବୁ ସହ 'ସାରସ୍ୱତଭଣ୍ଡାର' ଦ୍ୱାରା ପ୍ରକାଶିତ 'ଆନନ୍ଦଲହରୀ ଉପନ୍ୟାସମାଳା'ର ଅନ୍ତର୍ଗତ ଉପନ୍ୟାସମାନ ସମେତ ଅନ୍ୟାନ୍ୟ ପୁସ୍ତକ ବିକ୍ରୟାର୍ଥ ସଙ୍ଗରେ ନେଇ ଡିସେମ୍ବର ୩୧ ପାହାନ୍ତି ଯାତ୍ରାରମ୍ଭ କଲି ତାଳଚେର ଟ୍ରେନ୍‌ରେ । ଏହି ଯାତ୍ରାର ପ୍ରାଥମିକ ଖର୍ଚ୍ଚପାଇଁ ବାଳକୃଷ୍ଣବାବୁ ମତେ ଆଦୌ କିଛି ଦେଇ ନଥିଲେ; ତେଣୁ ମୋ' ପାଖରେ ଥିବା ସର୍ବମୋଟ ସମ୍ବଳ ଦଶୋଟିମାତ୍ର ଟଙ୍କା ହିଁ ହେଲା ମୋର ପାଥେୟ ।

ମୁଁ ଯେଉଁ ଯେଉଁଠାକୁ ଯିବାର ଯୋଜନା କରିଥିଲି ତାହାର କ୍ରମ ହେଲା—ଆଠଗଡ଼, ଢେଙ୍କାନାଳ, ହିନ୍ଦୋଳ, ଅନୁଗୁଳ, ତାଳଚେର, ବାମଣ୍ଡା (ଦେବଗଡ଼, କୁଚିଣ୍ଡା, ଗୋବିନ୍ଦ-

ପୁର), ବଣାଇ, ସୁନ୍ଦରଗଡ଼, ଝାରସୁଗୁଡ଼ା, ସମ୍ବଲପୁର, ବରଗଡ଼, ବଲାଙ୍ଗିର, ଭବାନୀ-ପାଟଣା । ଏ ଯେଉଁ ସ୍ଥାନ, ସେଥିରୁ ଅଧିକାଂଶରେ ଆମ ଗାମର ଲୋକ ଥାଆନ୍ତି—କିଏ ଚାକିରି କରି, କିଏ ବ୍ୟବସାୟ କରି, କିଏ ବା ଘରଦ୍ୱାର କରି । ଅବଶିଷ୍ଟ ସ୍ଥାନରେ ଥାଆନ୍ତି ମୋର ସହାଧ୍ୟାୟୀ, ପରିଚିତ ବ୍ୟକ୍ତି ବା ବ୍ୟକ୍ତିଗତ ବନ୍ଧୁ । ଏ ସମସ୍ତଙ୍କ ନିକଟକୁ ଯଥେଷ୍ଟ ଆଗରୁ ମୋର ଗସ୍ତକ୍ରମ ଜଣାଇଦେଇଥିଲି । ତେଣୁ କୌଣସିଠାରେ ବିଶେଷ କିଛି ଅସୁବିଧାର ଆଶଙ୍କା ନଥିଲା ।

ପ୍ରଥମେ ପଦାର୍ପଣ କଲି ଆଠଗଡ଼ ସହରରେ ୧୯୬୧ ଜାନୁଆରି ପହିଲା ଦିନ ସକାଳୁ ସକାଳୁ । ସ୍କୁଲ ସବ୍‌ଇନ୍‌ସ୍ପେକ୍ଟର୍ ବନ୍ଧୁବର ବୃନ୍ଦାବନଚନ୍ଦ୍ର ତ୍ରିପାଠୀ ଷ୍ଟେସନରୁ ପାଛୋଟି ନେଇଥିଲେ ମତେ ତାଙ୍କ ନିଜ ଘରକୁ । ତାଙ୍କ ଚେଷ୍ଟାରେ ଗୁଡ଼ିଏ ଭଦ୍ରଲୋକ, ଷ୍ଟେଟ୍ କର୍ମଚାରୀ, ସ୍କୁଲ ହେଡ଼୍‌ମାଷ୍ଟର ଓ ଛାତ୍ରଛାତ୍ରୀ 'ସହକାର'ର ଗ୍ରାହକ ହୋଇଥିଲେ । ସମସ୍ତଙ୍କଠାରୁ ବାର୍ଷିକ ଦେୟ ଚାରିଟଙ୍କା ଲେଖାଏଁ ଅଗ୍ରିମ ଆଦାୟ ହେଲା ଓ ସମସ୍ତଙ୍କୁ ପ୍ରାପ୍ତିସ୍ୱୀକାରସୂଚକ ଛାପା ରସିଦ ଦିଆଗଲା । ରାଜା, ରାଣୀ ଓ କେତେକ ରାଜବଂଶୀୟ ରାଜସଂସ୍କରଣର ଗ୍ରାହକ ହୋଇ ଅଗ୍ରିମ ଦଶଟଙ୍କା ଲେଖାଏଁ ମଧ୍ୟ ଦେଇଥିଲେ । ଏହାଛଡ଼ା ସଙ୍ଗରେ ନେଇଥିବା ବିଭିନ୍ନ ପୁସ୍ତକ ମଧ୍ୟ ଆଶାନୁରୂପ ସଂଖ୍ୟାରେ ବିକ୍ରି ହୋଇଥିଲା ।

ଆଠଗଡ଼ରୁ କାମ ସାରି ରେଳରେ ଢେଙ୍କାନାଳ ଗଲି । ପ୍ଲାଟ୍‌ଫର୍ମକୁ ପାଦପାତ କଲି ମାତ୍ରେ ଦେଖିଲି, ଢେଙ୍କାନାଳର ଏସ୍. ପି. ମୋର ବନ୍ଧୁ ସାହିତ୍ୟରସିକ ଗଙ୍ଗାଧର ମିଶ୍ର ସମ୍ମୁଖରେ ଦଣ୍ଡାୟମାନ । ପାଶ୍ଚାତ୍ୟ ରୀତିରେ କରମର୍ଦ୍ଦନ କରି ମୋତେ ନେଇଗଲେ ସେ ତାଙ୍କ ଗାଡ଼ିକୁ, ମୋର ସାମାନପତ୍ର ମଧ୍ୟ ତହିଁ ମଧ୍ୟକୁ ବୁହାହୋଇଗଲା । ଢେଙ୍କାନାଳଗଡ଼ ମୋର ବହୁ ପରିଚିତ ସ୍ଥଳ । ଗଙ୍ଗାଧରବାବୁଙ୍କ ଛଡ଼ା କବିଭୂଷଣ ରାଜକିଶୋର ପଟ୍ଟନାୟକ, ଜଜ୍ ଜୟକୃଷ୍ଣ ମିଶ୍ର, ଏସ୍. ଡି. ଓ. ଗୋବିନ୍ଦଚନ୍ଦ୍ର ମହାପାତ୍ର, ଚିଫ୍ ମେଡ଼ିକାଲ୍ ଅଫିସର ଶଙ୍କର ରାଓ, ଡାକ୍ତର ଦୈତ୍ୟାରି ଝା, ଡାକ୍ତର ସୀତାନାଥ ଦାସ, କବିରାଜ ବାଳକୃଷ୍ଣ ନନ୍ଦ, ଗୁରୁ ଟ୍ରେନିଂ ସ୍କୁଲର ସମସ୍ତ ଶିକ୍ଷକ, ଏଡୁକେସନାଲ୍ ଅଫିସର ହଟନାଥ ମହାନ୍ତି ପ୍ରଭୃତିଙ୍କ ସହିତ ମୋର ବନ୍ଧୁତ୍ୱ-ବନ୍ଧନ ଥିଲା ଖୁବ୍ ନିବିଡ଼ । ମୁଁ ଗଲେ ପ୍ରାୟ ସବୁ ଥର ଡାକ୍ତରଖାନା ସମ୍ମୁଖସ୍ଥ 'ମିହିର ମନ୍ଦିର' କୋଠାରେ ରହେଁ—ସେଇଟା ଡାକ୍ତର ସୀତାନାଥଙ୍କ କ୍ୱାର୍ଟର୍ । ସେଠାରେ ପ୍ରତ୍ୟହ ସନ୍ଧ୍ୟା ପରେ ବସେ ବନ୍ଧୁମେଳା—ତାସ, ପଶା, ରଙ୍ଗପଶା, ମୋଦକ, ଭୋଜିଖିଆ, ସବୁର ସମବାୟ ଘଟେ ମୋ ଉପସ୍ଥିତି ଉପଲକ୍ଷେ । ଉପରୋକ୍ତ ବ୍ୟକ୍ତିମାନଙ୍କ ମଧ୍ୟରୁ ଯେଉଁମାନେ ରାଜାଙ୍କ ବିଶ୍ୱସ୍ତ ଓ ଭୟାଳୁ ସେମାନେ ମେଳାରେ ଯୋଗଦିଅନ୍ତି ନାହିଁ । ଢେଙ୍କାନାଳ ଗଲେ ପ୍ରାୟ ପ୍ରତିଥର ରାଜା-ସାହେବ ଓ ସମାଜବାଦୀ ନେତା ଆମେରିକା-ଫେରନ୍ତା ସାରଙ୍ଗଧର ଦାସଙ୍କୁ ଭେଟେଁ ।

ଉଲ୍ଲିଖିତ ବନ୍ଧୁଗଣଙ୍କ ସାହାଯ୍ୟ-ସାହଚର୍ଯ୍ୟରେ ଓ ରାଜାସାହେବଙ୍କ ଆନୁକୂଲ୍ୟରେ ଏଠାରେ ଅର୍ଥସଂଗ୍ରହର ଅଭିଯାନ ଖୁବ୍ ଫଳପ୍ରଦ ଓ ସନ୍ତୋଷଜନକ ହେଲା । ରେଳ

ଯୋଗେ ଢେଙ୍କାନାଳରୁ ହିନ୍ଦୋଳ ଗଲି । ହିନ୍ଦୋଳର ଗୁଣଗ୍ରାହୀ ଦେୱାନ କବି ଓ ସାହିତ୍ୟିକ ଚନ୍ଦ୍ରଧର ଆଚାର୍ଯ୍ୟ ସୁଦୂର ଷ୍ଟେସନଠାରୁ ତାଙ୍କ କ୍ୱାର୍ଟର୍ ପର୍ଯ୍ୟନ୍ତ ମତେ ନେବାପାଇଁ ଗାଡ଼ିର ସୁବ୍ୟବସ୍ଥା କରିଥିଲେ ଏବଂ ମତେ ଅତିଥିରୂପେ ପାଛୋଟି ନେବାପାଇଁ କଚେରି ନଯାଇ ଘରେ ଉପସ୍ଥିତ ରହିଥିଲେ । ହିନ୍ଦୋଳଗଡ଼ ଅତି କ୍ଷୁଦ୍ର ସହର, ସ୍କୁଲ ଓ ଅଫିସ୍ ସଂଖ୍ୟା ନିତାନ୍ତ କମ୍ । ଯାହାହେଉ, ଦେୱାନ ମହୋଦୟଙ୍କ ଉଦ୍ୟମରୁ 'ସହକାର'ର ଉଭୟ ସଂସ୍କରଣର ଯେତେକ ଗ୍ରାହକ ହେଲେ, ତାହା ବେଶ୍ ଉତ୍ସାହପ୍ରଦ । ରାଜବାଟୀ ତରଫରୁ ଉପାୟନ ମଧ୍ୟ ମତେ ପ୍ରଦତ୍ତ ହୋଇଥିଲା । ହିନ୍ଦୋଳରେ ଦୁଇଟି ଦିନ ରହିବା ପରେ ରାଜା ସାହେବଙ୍କ ମଟରକାର୍ ମତେ ନେଇ ଅନୁଗୁଳରେ ପହଞ୍ଚାଇଦେଇଥିଲା ।

ଅନୁଗୁଳରେ ମୋର ଥିଲେ ତିନିଜଣ ଅତି ପ୍ରିୟ ବ୍ୟକ୍ତି—ନର୍ମାଲ୍ ସ୍କୁଲର ସହପାଠୀ ତଥା ଅନୁଗୁଳ ଗୁରୁ ଟ୍ରେନିଂ ସ୍କୁଲର ପ୍ରଧାନଶିକ୍ଷକ ନରସିଂହ ମହାନ୍ତି, ବୈବାହିକ ସୂତ୍ରରେ ମୋର ଅତି ନିକଟସମ୍ପର୍କୀୟ ବନ୍ଧୁ ଓ ସେଠାର କୋର୍ଟ ଇନ୍‌ସ୍ପେକ୍ଟର୍ ତଥା ନବନିଯୁକ୍ତ ପ୍ରବେସନର୍ ଆଇ. ପି. ଏସ୍. (I P. S.) ମାନଙ୍କର ତାଲିମଦାତା ନୀଳକଣ୍ଠ ମହାପାତ୍ର ଏବଂ ତରୁଣ କବି ରାଧାମୋହନ ଗଡ଼ନାୟକ । ମୁଁ କାର୍‌ରୁ ଓହ୍ଲାଇଲି ଗୁରୁ ଟ୍ରେନିଂ ସ୍କୁଲ ସଂଲଗ୍ନ ଛାତ୍ରାବାସରେ ଏବଂ ରହିଲି ନରସିଂହଙ୍କ ରହଣି ପ୍ରକୋଷ୍ଠରେ ।

ରାଧାମୋହନ ଗଡ଼ନାୟକଙ୍କ ସହିତ ପରିଚୟର କାହାଣୀ ଟୁମ୍ବକରେ ଦେଉଛି । 'ସହକାର' ବାଳକୃଷ୍ଣ କରଙ୍କ ସମ୍ପାଦନାଧୀନକୁ ଆସିବାର ପ୍ରାୟ ବର୍ଷେଖଣ୍ଡେ ମଧ୍ୟରେ ରାଧାମୋହନ ଗୋଟିଏ ଚମତ୍କାର କବିତା ପଠାଇଲେ 'ଗୋପବାଳାର କୃଷ୍ଣ' । ପାଇଲା-ମାତ୍ରେ ମୁଁ ତାହା ପଢ଼ି ଏତେ ମୁଗ୍ଧ ହୋଇଗଲି ଯେ, ସେହି ମାସର 'ସହକାର'ରେ ତାର ପ୍ରକାଶର ବ୍ୟବସ୍ଥା କରିଦେଲି ଏବଂ ତାଙ୍କ ପ୍ରଦତ୍ତ ଅନୁଗୁଳ ଠିକଣାରେ ଖଣ୍ଡିଏ ପ୍ରୋତ୍ସାହନୋଦ୍ଦୀପକ ପତ୍ର ପ୍ରେରଣ କଲି । ତାହା ପାଇ ରାଧାମୋହନ ଉତ୍ତର ଦେଲେ ଏବଂ କଟକ ଆସି ମୋ ବସାରେ ଦୁଇ ତିନି ଦିନ ରହିଥିଲେ । ଏହି ଭାଷା ମଧୁର ଛନ୍ଦଲଳିତ ଭାବାଢ଼୍ୟ କବିତାଟି ହିଁ ତାଙ୍କ ସହିତ ମୋର ଅଚ୍ଛେଦ୍ୟ ଭ୍ରାତୃତ୍ୱବନ୍ଧନର ଅବସ୍ମରଣୀୟ ମାଧ୍ୟମ ହୋଇଥିଲା । ସେ ମୋଠାରୁ ପାଞ୍ଚ ବର୍ଷ ତିନି ମାସ ସାନ—ମୋ ଜନ୍ମ ୧୯୦୬ ଜୁନ୍ ଆରମ୍ଭରେ ଓ ତାଙ୍କ ଜନ୍ମ ୧୯୧୧ ଅଗଷ୍ଟ ୨୦ରେ । ତେଣୁ ସେହିଦିନୁଁ ରାଧାମୋହନ ମତେ ଅଗ୍ରଜ ହିସାବରେ 'ଭାଇନା' ସମ୍ବୋଧନର ସମ୍ମାନ ଦେଇଆସୁଛନ୍ତି ।

ମୁଁ ଗସ୍ତରେ ବାହାରିବା ପୂର୍ବରୁ ଅନୁଗୁଳରେ ପହଞ୍ଚିବାର ସମ୍ଭାବ୍ୟ ତାରିଖ ରାଧା-ମୋହନଙ୍କୁ ଚିଠିରେ ଜଣାଇଥିଲି । ସେ ମୋ' ଆସିବାର ଖବର ପାଇ ଗୁରୁ ଟ୍ରେନିଂ ସ୍କୁଲ ଛାତ୍ରାବାସରୁ ମତେ ନେଇଗଲେ ତାଙ୍କ ରହଣିସ୍ଥଳ କାଠଗୋଲା ଘରକୁ । ଶାନ୍ତିର ନିଳୟ, ନିଭୃତ ନିଳୟ, ଜନଜନଲେଉନ, ବାହାରର କୋଳାହଳଠାରୁ ବିଚ୍ଛିନ୍ନ । ବହୁ ସମୟଧରି କାବ୍ୟ-କବିତା ସମ୍ବନ୍ଧରେ ଆଳାପ-ଆଲୋଚନା ହେଲା । ସେତେବେଳେ ସେ 'ମେଘଦୂତ' ଅନୁବାଦ କରିସାରିଥିଲେ । ତା'ର ଭାଷା ଥିଲା ଲାଳିତ୍ୟମୟ । କିନ୍ତୁ

୧୯୫୧ରେ ତାଙ୍କର ଯେଉଁ 'ମେଘଦୂତ' ପ୍ରକାଶିତ ହେଲା, ତା'ର ଭାଷା ହେଲା ପରିବର୍ତ୍ତିତ, ଆଶିଂକ ରୁକ୍ଷ ।

ଅନୁଗୁଳରେ ସାହିତ୍ୟିକ ଅନୁଷ୍ଠାନର ପରିସର ସେତେବେଳେ ଥାଏ ଆଶାନୁରୂପେ ପ୍ରସାରିତ । ରାଧାମୋହନଙ୍କ ଅଦମ୍ୟ ଉଦ୍ୟମ, ଶିକ୍ଷକ ଓ ଛାତ୍ରଙ୍କ ସକ୍ରିୟ ସହଯୋଗ ଏବଂ ଅଫିସରଗୋଷ୍ଠୀଙ୍କ ପୋଷ୍ରାହ ଆନୁକୂଲ୍ୟ ମୋର ଅନୁଗୁଳ ଯାତ୍ରାକୁ ଆର୍ଥିକ ଦିଗରୁ ସମ୍ପୂର୍ଣ୍ଣ ସଫଳ କରିଥିଲା । ସେଠ ରୁ ନାକସିଧା ଗାଡିଳା ରାସ୍ତାରେ ତାଳଚେର ସହର ଅଳ୍ପ ଦୂର । ତେଣୁ କୋର୍ଟ ଇନ୍‌ସ୍ପେକ୍ଟର୍‌ ନୀଳକଣ୍ଠ ମହାପାତ୍ରଙ୍କ ବ୍ୟବସ୍ଥାମତେ ସିପେହି ଓ ଭାରିଆ ଗହଣରେ ମୁଁ ପାଦବ୍ରଜରେ ଯାଇ ତାଳଚେର ହାଇସ୍କୁଲ ବୋର୍ଡିଂରେ ଉପନୀତ ହେଲି । ରାଗସାପ ହୋଇ ହୋଇ ଚାଲିବା ଫଳରେ ତାଳଚେର ଯାତ୍ରାଟି ଅତ୍ୟନ୍ତ ସୁଖକର ଓ ପ୍ରୀତିପ୍ରଦ ହୋଇଥିଲା ।

ପୂର୍ବନିର୍ଦ୍ଧାରିତ ଭ୍ରମଣକ୍ରମ ଅନୁସାରେ ପରବର୍ତ୍ତୀ ସମସ୍ତ ସ୍ଥାନକୁ ମୁଁ ଯାଇଥିଲି—କେବଳ ଭବାନୀପାଟଣାକୁ ଛାଡ଼ି । ବାଳକୃଷ୍ଣ ବାବୁଙ୍କଠାରୁ ତାରବାର୍ତ୍ତା ପାଇବାରୁ ବଲାଙ୍ଗିରରେ ଭ୍ରମଣ ସମାପ୍ତ କରି ମତେ ଅବିଳମ୍ବେ କଟକ ବାହୁଡ଼ିଆସିବାକୁ ପଡ଼ିଲା । ସେତେବେଳକୁ ବୈଶାଖ ସଂକ୍ରାନ୍ତି (ପଣାସଂକ୍ରାନ୍ତି) କୋଡ଼ିଏ ବାଇଶ ଦିନ ମାତ୍ର ବାକି ଥାଏ । ନବ-କଳେବରପ୍ରାପ୍ତ ନୂତନ ପୃଷ୍ଠ ବର୍ଦ୍ଧିତ 'ସହକାର' ସେହିଦିନ ଆତ୍ମପ୍ରକାଶ କରିବାର କଥା । ଏଣୁ ହାତରେ ଥିବା ଏହି ସୀମିତ ସମୟ ମଧ୍ୟରେ ସବୁପ୍ରକାର ସଜ୍ଜାର ଆୟୋଜନ ସାରି ଛପାକାମ ମଧ୍ୟ ବଢ଼େଇଦେବାର ଦାୟିତ୍ବ ମୁଖ୍ୟତଃ ମୋରି ମୁଣ୍ଡରେ ।

ମୋର ଏହି ସାଫଲ୍ୟମଣ୍ଡିତ ଭ୍ରମଣ ସହକାର ତଥା ସାରସ୍ୱତ ପ୍ରେସ୍‌ର ଆଶୁ ଉନ୍ନୟନରେ ପର୍ଯ୍ୟାପ୍ତ ସାହାଯ୍ୟ କରିଥିଲା । ଭ୍ରମଣବେଳେ ମୁଁ ଆଦୌ ବେଶୀ ଟଙ୍କା ପାଖରେ ଗଚ୍ଛିତ ରଖୁ ନଥିଲି । ଗୋଟିଏ ସ୍ଥାନ ଛାଡ଼ି ଅନ୍ୟ ସ୍ଥାନକୁ ଯିବା ପୂର୍ବରୁ ସେଠାର ସମସ୍ତ ଆଦାୟ ଟଙ୍କା ଇନସିଓର୍‌ କରି ବାଳକୃଷ୍ଣବାବୁଙ୍କ ନିକଟକୁ ଡାକଯୋଗେ ପଠାଇଦେଉଥିଲି । ହିନ୍ଦୋଳର ରାଜା, ବଣାଇର ରାଜା (ଧରଣୀଧର ଇନ୍ଦ୍ରଦେଓ ଦେବ), ବାମଣ୍ଡାର ବୃଦ୍ଧୀ-ରାଜମାତା (ବାମଣ୍ଡାଧିପରାଜ ୰ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କ ଧର୍ମପତ୍ନୀ କଦବୋବଦ-ରଙ୍କୁଣୀ ବିଦୁଷୀ ତମ୍ବୁରୁଧରପ୍ରିୟା ଦେବୀ) ଓ ବଲାଙ୍ଗିରପାଟଣାର ଯୁବରାଜ ରାଜେନ୍ଦ୍ର-ନାରାୟଣ ସିଂହଦେଓଙ୍କଠାରୁ ମତେ ଲେଖକର ମର୍ଯ୍ୟାଦାସ୍ୱରୂପ ନଗଦ ପ୍ରାୟ ଆଠ ଶହ ଟଙ୍କା ଓ ଚାରି ଯୋଡ଼ ବହୁମୂଲ୍ୟ ପଟବସ୍ତ୍ର ମିଳିଥିଲା । ସେ ସମସ୍ତ ମଧ୍ୟ ମୁଁ ସହକାରର ଉନ୍ନତିକଳ୍ପେ ଦାନ କରିଦେଇଥିଲି । ଗ୍ରାହକ ଚାନ୍ଦା, ବିଜ୍ଞାପନ ଓ ମୋ ଲେଖକମର୍ଯ୍ୟାଦା, ଏହି ତିନି ବାବଦରୁ ମୁଁ ନଗଦ ସର୍ବମୋଟ ଛଅ ହଜାରରୁ ଅଧିକ ଟଙ୍କା ସଂଗ୍ରହ କରି ବାଳକୃଷ୍ଣବାବୁଙ୍କ ହାତମୁଠା ଟାଣ କରାଇଥିଲି । ପ୍ରକାଶ ଥାଉକି, ଏହି ଟଙ୍କା ପରିମାଣ ତାଙ୍କ ଆକାଂକ୍ଷିତ ଅର୍ଥ ପରିମାଣଠାରୁ ଢେର୍ ବେଶୀ ଥିଲା ।

## (୧୦) ଦେବଗଡ଼ ଓ ବଣାଇଗଡ଼ର ଅଭୁଲା ସ୍ମୃତି—

ବାମଣ୍ଡା ଓ ବଣାଇର ରାଜପରିବାରଦ୍ୱୟ ମତେ ଯେଉଁ ଭଳି ସମ୍ମାନରେ ଅଭ୍ୟର୍ଥିତ କରିଥିଲେ, ତାହା ମୋ ସ୍ମୃତି-ଗନ୍ଧାଘରର ଅମୂଲ୍ୟ ସମ୍ପଦ । ମୁଁ ଯେତେବେଳେ 'ସୁଧୀ-ରାଜହଂସକେଳିସରୋବର' ବାମଣ୍ଡା ରାଜଧାନୀ ଦେବଗଡ଼ରେ ପାଦ ଦେଲି, ସଙ୍ଗେ ସଙ୍ଗେ ରାଜ ଅତିଥିଭବନର ସମଗ୍ର ଦ୍ୱିତଳଟି ମୋପାଇଁ ଉନ୍ମୁକ୍ତ କରିଦିଆଗଲା । ରାଜା ଦିବ୍ୟଶଙ୍କର ସୁଦ୍ଧଳ ଦେବଙ୍କର ଅକାଳ ବିୟୋଗ ଫଳରେ ରାଜସିଂହାସନ ଶୂନ୍ୟ ପଡ଼ିଥାଏ । ଭାବୀ ବାମଣ୍ଡାଧୀଶ ଭାନୁଗଙ୍ଗ ତ୍ରିଭୁବନ ଦେବ ସେତେବେଳେ ଥାଆନ୍ତି ଅପ୍ରାପ୍ତବୟସ୍କ ଯୁବରାଜ । ତେଣୁ ରାଜ୍ୟଟି ପରିଚାଳିତ ହେଉଥାଏ କୋର୍ଟ-ଅଫ୍-ୱାର୍ଡସ୍‌ଦ୍ୱାରା । ରାଜବଂଶର ପାରିବାରିକ ଅଧିକର୍ତ୍ତ୍ରୀ ଥିଲେ ବୟୋବୃଦ୍ଧା ବହୁଭାଷାପ୍ରବୀଣା ଓମ୍ବରୁଧରପ୍ରିୟା (୰ ଦିବ୍ୟଶଙ୍କର ସୁଦ୍ଧଳଦେବଙ୍କ ଜନନୀ) । ସେଇ କରିଥିଲେ ରାଜଅତିଥିଭାବରେ ମୋ ରହଣିର ସୁରୁଚି ବ୍ୟବସ୍ଥା ।

ମୁଁ ଆଗରୁ ସ୍ୱର୍ଗତ ରାଜା ସଚ୍ଚିଦାନନ୍ଦ ତ୍ରିଭୁବନଦେବଙ୍କ ତଳ ଭାଇ ବଡ଼କୁମାର ବଳଭଦ୍ରଦେବଙ୍କୁ ମଧ୍ୟ ମୋ ଦେବଗଡ଼ ଯାତ୍ରା କଥା ପତ୍ରଦ୍ୱାରା ଜଣାଇଥିଲି । ସେ ଅପେକ୍ଷା କରି ରହିଥିଲେ; ସମ୍ବାଦ ପାଇବାମାତ୍ରେ ମଟର୍ ପଠାଇଦେଲେ ମତେ ନେଇ-ଯିବାକୁ । ବଡ଼କୁମାର ଥିଲେ ମହାନ୍ କବି । ତାଙ୍କ ବିରାଟ ଗ୍ରନ୍ଥାବଳୀର ଛପା ଚାଲିଥାଏ ତାଳଚେରର 'କିଶୋର ପ୍ରେସ୍'ରେ । ତିନି ଚାରିଦିନ ପୂର୍ବରୁ ଗୋଟିଏ ଫର୍ମାର ପ୍ରୁଫ୍ ତାଙ୍କ ପାଖରେ ପହଞ୍ଚିଥିଲା । ସେ ତାହାକୁ ସଂଶୋଧନ କରିସାରିଥିଲେ ହେଁ ମତେ ଦେଖାଇବେ ବୋଲି ସେପର୍ଯ୍ୟନ୍ତ ଫେରାଇ ନଥିଲେ । ତାଙ୍କ ସନିର୍ବନ୍ଧ ଅନୁରୋଧରେ ଆଠ ପୃଷ୍ଠାଯାକ ଗମ୍ଭୀର ଅଭିନିବେଶ ସହ ପଢ଼ିଲି । ତହିଁର ଏକାଂଶରେ 'ଅଗରିଆ' ଜାତିର ବର୍ଣ୍ଣନା ଥିଲା । ତନ୍ମଧ୍ୟରେ ଅଗରିଆ ରମଣୀର ବିଶେଷଣରୂପେ 'ଗୌରୀ' ଶବ୍ଦଟି ବ୍ୟବହୃତ ହୋଇଥିଲା । ଉକ୍ତ ଜାତି ସମ୍ବନ୍ଧରେ ମୋର ଆଦୌ କିଛି ଜ୍ଞାନ ନଥିଲା । ବଡ଼କୁମାର ବୁଝାଇଦେଲାରୁ ଜାଣିଲି ଯେ, ଉତ୍ତର-ଭାରତ 'ଆଗ୍ରା' ଅଞ୍ଚଳରୁ ଦଳେ ଲୋକ ଆସି ବାମଣ୍ଡା, ଗାଙ୍ଗପୁର ଆଦି ଗଡ଼ଜାତରେ ସ୍ଥାୟୀ ବାସିନ୍ଦାରୂପେ ରହିଥିବାରୁ ଏମାନେ ଏଠାରେ 'ଆଗରିଆ' ନାମରେ ପରିଚିତ ହୋଇଆସୁଛନ୍ତି । ଆଶ୍ଚର୍ଯ୍ୟ କଥା, ଏହି ଜାତିର ନାରୀମାନେ ସମସ୍ତେ ଶୁଭ୍ରାଙ୍ଗୀ, ଜଣେ ହେଲେ କେହି ଶ୍ୟାମଳୀ ନୁହନ୍ତି । ମୁଁ ସନ୍ତର୍ପଣର ସହିତ ବଡ଼କୁମାରଙ୍କୁ କହିଲି 'ଗୌରୀ' ଶବ୍ଦଟିକୁ ବଦଳାଇଦେବାକୁ, କାରଣ 'ଅଷ୍ଟବର୍ଷା ଭବେଦ୍ ଗୌରୀ'—ଅଷ୍ଟମବର୍ଷୀୟା ବାଳିକାକୁ ମଧ୍ୟ 'ଗୌରୀ' କୁହାଯାଏ । ମର୍ମଗ୍ରାହୀ ଉଦାରଚେତା କବି ତାଙ୍କ ରଚନାଗତ ଏହି ତ୍ରୁଟିଟିର ଅପସାରଣ ଭାର ଜବରଦସ୍ତି ମୋ କଲମ ଉପରେ ଲଦିଦେଲେ । କାରଣସ୍ୱରୂପ ଭାବପ୍ରବଣ କବିଭାଷାରେ କହିଲେ, ଏହି ସ୍ମରଣୀୟ ଘଟଣାଟିର ପ୍ରତିଛବି ତାଙ୍କ ମାନସ-ଦର୍ପଣରେ କୁଆଡ଼େ ଆଜୀବନ ପ୍ରତିଭାତ

ହୋଇ ରହିବ । ଅନନ୍ୟୋପାୟ ହୋଇ 'ଗୌଣ୍ଡ' ସମ୍ବଳିତ ପଙ୍କ୍ତିକୁ 'ଗହଗଣ୍ଡା ଆଗରଆ ଲଲନା'ରେ ପରିଣତ କରିଥିଲି, ଯେତେ ଦୂର ମନେହୁଏ ।

ବାମଣ୍ଡାମଣ୍ଡପତି ବିପୁଳଯଶା ପୁଣ୍ୟଶ୍ଳୋକ ମହାରାଜା ସାର୍ ବାସୁଦେବ ସୁଢ଼ଳଦେବ କେ. ସି. ଆଇ. ଇ.ଙ୍କର ନଅ ପୁତ୍ର ମଧ୍ୟରୁ ଜ୍ୟେଷ୍ଠ ପୁତ୍ର ବିଜ୍ଞାନବିତ୍ ସଚ୍ଚିଦାନନ୍ଦ ଦେବ ରାଜସିଂହାସନର ଉତ୍ତରାଧିକାରୀ ହେବାଯୋଗୁଁ ରାଜବଂଶର ପାରମ୍ପରିକ ନିୟମାନୁଯାୟୀ 'ସଚ୍ଚିଦାନନ୍ଦ ତ୍ରିଭୁବନଦେବ' ନାମ ଧାରଣ କରିଥିଲେ । ତାଙ୍କୁ ଛାଡ଼ିଦେଲେ ଅନ୍ୟ ଆଠ ପୁତ୍ରଯାକ ସେତେବେଳେ ଜୀବିତ ଥିଲେ । ସେମାନଙ୍କ ମଧ୍ୟରେ ବୟସରେ ସବାବଡ଼ ବଡ଼କୁମାର ବଳଭଦ୍ରଦେବ, ପ୍ରଖ୍ୟାତ କବି ଏବଂ ସବା ସାନ କୁମାର ସୀତାନାଥ ଦେବ, ଗାନ୍ଧର୍ବବିଦ୍ୟାପ୍ରବୀଣ । ଅବଶିଷ୍ଟ ଛଅ ପୁଅ ମଧ୍ୟ ପ୍ରତ୍ୟେକେ ବିଶାରଦ ଗୋଟିଏ ଗୋଟିଏ ବିଶିଷ୍ଟ ବିଦ୍ୟାରେ, ଯଥା—ଉଦ୍ୟାନବିଦ୍ୟା, ଉଦ୍ଭିଦ୍‌ବିଦ୍ୟା, କୃଷିବିଦ୍ୟା, ପଶୁବିଦ୍ୟା, ପକ୍ଷିବିଦ୍ୟା, ଯନ୍ତ୍ରକାରିଗରିବିଦ୍ୟା ।

ସେ-ଦିନ ଆମନ୍ତ୍ରଣ ରକ୍ଷା କରିଥାଏଁ ମୁଁ ବଡ଼କୁମାର ବଳଭଦ୍ର ଦେବଙ୍କର । ଓଳିଟିଏ ଆତିଥ୍ୟ ଗ୍ରହଣ କରି ତାଙ୍କଠାରୁ ବିଦାୟ ଆଣିଲି । ଦ୍ୱିତୀୟ ଆମନ୍ତ୍ରଣ କୁମାର ହୃଦୟ-ନାରାୟଣ ଦେବଙ୍କର । ଏହିପରି ଆଠ କୁମାରଙ୍କ ବାସଭବନରେ ଓଳିଏ ଲେଖାଏଁ ରହଣି—ଆହାରବିହାର, ଆମୋଦପ୍ରମୋଦ, ଆଲାପଆଲୋଚନା । ପ୍ରତ୍ୟେକ କୁମାରଙ୍କ ଘରେ ଅନ୍ତତଃ ଖଣ୍ଡେ ଖଣ୍ଡେ ଦାମିକା ମଟର୍‌ଗାଡ଼ି ।

ରାଜଧାନୀ ଏହି ଦେବଗଡ଼ ସହରରେ ବିଭିନ୍ନ ବିଭାଗର ଶ୍ରେଷ୍ଠ ଶ୍ରେଷ୍ଠ ଚାକିରିରେ ରହିଥିବା ଡଜନାଧିକ ମୋଗଲବନ୍ଦିବାସୀ ଅଯାଚିତଭାବରେ ମୋ ପ୍ରତି ସାହାଯ୍ୟ-ସାହଚର୍ଯ୍ୟର ହସ୍ତ ପ୍ରସାରଣ କରିଥିଲେ । ସେମାନଙ୍କ ନିରଳସ ଉଦ୍ୟମରେ ସର୍ବାଧିକ-ସଂଖ୍ୟକ ସହକାର ଗ୍ରାହକ ସଂଗୃହୀତ ହୋଇପାରିଥିଲେ—କି ସାଧାରଣ ସଂସ୍କରଣରେ, କି ରାଜସଂସ୍କରଣରେ । ସମଗ୍ର ରାଜ୍ୟ ମଧ୍ୟରେ ଅଭାବିତପୂର୍ବ ସଫଳତା ମିଳିଥିଲା ଏହି ବିଦ୍ୟାଦୁର୍ଗ ଦେବଗଡ଼ରେ ।

ମୁଁ ଇତି ମଧ୍ୟରେ ସ୍ୱନାମଧନ୍ୟ ପ୍ରାବନ୍ଧିକ ତଥା ସ୍ୱାଧୀନଚିନ୍ତକ ବୟୋବୃଦ୍ଧ ଜଳନ୍ଧର ଦେବଙ୍କୁ ତାଙ୍କ ବାସଭବନରେ ଭେଟିଥିଲି । ସେହି ଅବସରରେ ଆସନ୍ନବର୍ଷର 'ସହକାର' ପାଇଁ ପ୍ରବନ୍ଧଟିଏ ଯାଚନା କରିଥିଲି । ଅତି ଅଳ୍ପ ସମୟ ମଧ୍ୟରେ ସେ 'ନକ୍ଷତ୍ର' ଶିରୋ-ନାମାରେ ବହୁ ତଥ୍ୟସମ୍ବଳିତ ଜ୍ଞାନଗର୍ଭକ ଏକ ଦୀର୍ଘ ପ୍ରବନ୍ଧ ଲେଖିଦେଇ ମତେ ବିସ୍ମିତ କରିଦେଇଥିଲେ । ତାଙ୍କର ବିଚକ୍ଷଣ ବିଦ୍‌ବତ୍ତା ସମ୍ପର୍କରେ ଏହା ହୋଇଥିଲା ମୋର ପ୍ରତ୍ୟକ୍ଷ ଅନୁଭୂତି ।

ମୋର ଦେବଗଡ଼-ଅବସ୍ଥାନ ବାସ୍ତବରେ ପର୍ଯ୍ୟବସିତ ହୋଇଥିଲା ବହୁ ସାହିତ୍ୟସୁରସିକ ସୁଧୀଙ୍କ ସ୍ନେହଶ୍ରଦ୍ଧାମୟ ସଂସ୍ପର୍ଶରେ, ବିଶେଷ କରି ଏକ ସୁଧୀ ସମାବେଶର ମଧୁମିଳନୀରେ । 'ସୁଢ଼ଳଦେବ' କହିଲେ ବାମଣ୍ଡା ରାଜବଂଶର ମଉଡ଼ମଣି 'ମହାରାଜା ବାସୁଦେବ ସୁଢ଼ଳ

ଦେବ'ଙ୍କୁ ହିଁ ବୁଝାଉଥିଲି । ସେ ମୋଟେ ତେପନ ବର୍ଷ ଛଅ ମାସ ଦିନ ଧନର ଜୀବନ ଭୋଗ କରି ୧୯୦୩ ମସିହା ନଭେମ୍ବର ୧୯ ତାରିଖ ଦିନ ଭବଲୀଳା ସାଙ୍ଗ କରିଥିଲେହେଁ ତାଙ୍କ ବହୁମୁଖୀ ପ୍ରତିଭାର ପରାକ୍ରମ ନଥିଲା । ସେ ଯେଉଁ ଓଡ଼ିଆ-ଅଳଙ୍କାର ଗ୍ରନ୍ଥ 'ଅଳଙ୍କାର ବୋଧୋଦୟ' ଓ 'ସାରବାମା', 'ଛନ୍ଦୋସୂଳା' ପ୍ରଭୃତି ପ୍ରଣୟନ କରିଥିଲେ, ତାହାହିଁ ତାଙ୍କ ଗମ୍ଭୀରତର ପାଣ୍ଡିତ୍ୟର ପ୍ରକୃଷ୍ଟ ପରିଚୟସୂଚକ । ଏହାଛଡ଼ା ସେ ଥିଲେ ବାସ୍ତୁବିଜ୍ଞାନରେ ଅତି ବିଜ୍ଞ ଓ ଧୁରୀଣ । ବାମଣ୍ଡା ରାଜ୍ୟରେ ଯେତେ କୋଠାବାଡ଼ି ଦେଖାଯାଏ, ସବୁଗୁଡ଼ିକ ତାଙ୍କରି ପରିକଳ୍ପିତ ଯୋଜନା ଓ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ହିଁ ନିର୍ମିତ ହୋଇଥିଲା । ତତ୍କାଳୀନ ପାଠ୍ୟପୁସ୍ତକ ନିର୍ବାଚନ କମିଟିରେ ଓଡ଼ିଆ ପାଠ୍ୟ-ପୁସ୍ତକ ନିର୍ବାଚନ କରିବାପାଇଁ ସେ ହିଁ ଥିଲେ ଏକମାତ୍ର ସଦସ୍ୟ । କେବଳ ଏତିକି ନୁହେଁ, ବିଦ୍ୱାନ୍ ପୁରୋହିତ ସୃଷ୍ଟିପାଇଁ ସେ ଦେବଗଡ଼ରେ ଗୋଟିଏ କର୍ମକାଣ୍ଡ ବିଦ୍ୟାଳୟ ସ୍ଥାପନ କରିଥିଲେ ଏବଂ କେବଳ ସେହି ଶିକ୍ଷାନୁଷ୍ଠାନରୁ ଉତ୍ତୀର୍ଣ୍ଣତାର ପ୍ରଶଂସାପତ୍ର ପାଇଥିବା ବ୍ରାହ୍ମଣମାନେ ହିଁ ବାମଣ୍ଡାରେ ପୌରୋହିତ୍ୟ କରିପାରିବେ ବୋଲି ବିଧିବଦ୍ଧ ଆଇନ ପ୍ରବର୍ତ୍ତନ କରିଥିଲେ । ବ୍ରିଟିଶ୍ ରାଜତ୍ୱରେ ଓଡ଼ିଶାରେ ଟେଲିଫୋନ୍, କଳପାଣି (pipe-water) ଓ ବିଜୁଳିବତୀର ପ୍ରବର୍ତ୍ତନ ହେବାର ବହୁ ପୂର୍ବରୁ ଦୂରଦର୍ଶୀ ସୁଢ଼ଳଦେବ ତାଙ୍କ ରାଜ୍ୟରେ ଏଗୁଡ଼ିକ ପ୍ରତିଷ୍ଠା କରିଥିଲେ । ଏଥିରୁ ତାଙ୍କ ବୈଜ୍ଞାନିକ ମନୀଷାର କୃତିତ୍ୱ ସହଜେ ଅନୁମେୟ । ଜାତୀୟ ପ୍ରେମ ଓ ଜାତୀୟ ସାହିତ୍ୟ ବିକାଶର ସେ ଥିଲେ ପଞ୍ଚପୁରୋଧା । ଜଣେ ପାଶ୍ଚାତ୍ୟ ଲେଖକ ଇଂରାଜୀରେ ତାଙ୍କ ବିସ୍ତୃତ ଜୀବନୀ ପ୍ରଣୟନ କରି ତାଙ୍କୁ ତତ୍କାଳୀନ ପୃଥିବୀର ସର୍ବଶ୍ରେଷ୍ଠ ପ୍ରଜାରଞ୍ଜକ ଓ ଆଦର୍ଶ ନରପତି ବୋଲି ଉଦ୍‌ଘୋଷ କରିଥିଲେ ।

ମୁଁ ଦେବଗଡ଼ରେ ପହଞ୍ଚିବାର ଚାରି ମାସ ପୂର୍ବେ ପ୍ରଥିତଯଶା ସୁଢ଼ଳଦେବଙ୍କର ଶ୍ରାଦ୍ଧ-ବାର୍ଷିକୀ ପାରମ୍ପରିକ ରୀତିରେ ପାଳନ କରାଯାଇଥିଲା ଏବଂ ତଦୁପଲକ୍ଷେ ଶ୍ରାଦ୍ଧସଭା ମଧ୍ୟ ଅନୁଷ୍ଠିତ ହୋଇଥିଲା । ମୋ ଲିଖିତ 'ସୁଢ଼ଳଦେବ' ପୁସ୍ତକରୁ କେତେ ଖଣ୍ଡ ମୁଁ ସଙ୍ଗରେ ନେଇଥିଲି । ବୁଢ଼ୀ ରାଜମାତା ଓମ୍ବରୁଧରପ୍ରିୟାଙ୍କ ସାଦର ଆହ୍ୱାନକ୍ରମେ ରାଜବାଟୀରେ ତାଙ୍କୁ ଭେଟିବାବେଳେ ଉକ୍ତ ପୁସ୍ତକରୁ ଖଣ୍ଡିଏ ତାଙ୍କ କରକୋରକରେ ଉପହାରସ୍ୱରୂପ ଅର୍ପଣ କରିଥିଲି । ଏହାଛଡ଼ା ବଳଭଦ୍ର ଦେବ, ଜଳନ୍ଧର ଦେବ, ବୃନ୍ଦାବନ ନାଥଶର୍ମା, ଶିକ୍ଷା ବିଭାଗୀୟ କର୍ତ୍ତା ସାଧୁଚରଣ ଜଗଦେବ ପ୍ରଭୃତି ବିଶିଷ୍ଟ ବ୍ୟକ୍ତିଙ୍କୁ ମଧ୍ୟ ଖଣ୍ଡିଏ ଖଣ୍ଡିଏ ଉପହାର ଦେଇଥିଲି ।

ଉଲ୍ଲିଖିତ ବରେଣ୍ୟ ବ୍ୟକ୍ତିବର୍ଗଙ୍କ ସକ୍ରିୟ ସହଯୋଗରେ ଏହି 'ସୁଢ଼ଳଦେବ'—ଲେଖକଙ୍କୁ ରାଜ ଅତିଥିଭବନରେ ଉପାୟନ ପ୍ରଦାନ ସହ ସମୁଚିତ ସମ୍ମାନ ପ୍ରଦର୍ଶନ କରିବାପାଇଁ ଏକ ବର୍ଣ୍ଣାଢ଼୍ୟ ସାହିତ୍ୟସଭା ଆୟୋଜିତ ହୋଇଥିଲା । ସଭାପତିର ଆସନ ଅଳଙ୍କୃତ କରିଥିଲେ ପୂଜ୍ୟ ଜଳନ୍ଧର ଦେବ । ସେ ତାଙ୍କର ପ୍ରାରମ୍ଭିକ ଭାଷଣରେ ଉପସ୍ଥିତ

ଶ୍ରୋତୃମଣ୍ଡଳଙ୍କୁ ମୋର ସଂକ୍ଷିପ୍ତ ପରିଚୟ ଦେଲା ପରେ ମତେ ଦେବଗଡ଼ ଦର୍ଶନର ନିଦର୍ଶନ-ସ୍ୱରୂପ ଗୋଟିଏ ସ୍ୱରଚିତ କବିତା ଆବୃତ୍ତି କରିବାକୁ ଅନୁରୋଧ କରିଥିଲେ । ମୁଁ ଏଥିର ସୂଚନା ପୂର୍ବଦିନ ପାଇ ପ୍ରସ୍ତୁତ ହୋଇ ରହିଥିଲି । ଗୁଣିଗଣାଗ୍ରଗଣ୍ୟ ରାଜସତ୍ତମ ବାସୁଦେବ ସୁଢ଼ଳଦେବଙ୍କ ପ୍ରତିମୂର୍ତ୍ତିରେ ଭକ୍ତିପୂତ ମାଲ୍ୟାର୍ପଣ କରି ପ୍ରଥମେ ତାଙ୍କର ଯଥୋଚିତ ଗୁଣକୀର୍ତ୍ତନ ଓ ସ୍ମୃତିଚାରଣପୂର୍ବକ ମୋର ସଦ୍ୟରଚିତ 'ବସନ୍ତନିବାଶେ' କବିତାଟି ଆବୃତ୍ତି କରିଥିଲି । ସେହି କ୍ଷୁଦ୍ର କବିତାଟି ଏଠାରେ ଉଦ୍ଧାର କରୁଛୁ ଏବଂ ତତ୍ପୂର୍ବରୁ 'ବସନ୍ତ-ନିବାଶ' ସମ୍ବନ୍ଧରେ ଟିକେ ଟୀକାଟିପ୍ପଣୀ ସହ ସାମାନ୍ୟ ଧାରଣା ଦେଉଛୁ । ବାମଣ୍ଡା ରାଜ୍ୟର ରାଜଧାନୀ ଦେବଦୁର୍ଗ ବା ଦେବଗଡ଼ର ଅଦୂର-ଉତ୍ତରପାର୍ଶ୍ୱସ୍ଥ ଉତ୍କଳପ୍ରସିଦ୍ଧ ଜଳପ୍ରପାତ 'ପ୍ରଧାନପାଟ'ର ସମୀପରେ ଗୋଟିଏ ସୁଦୃଶ୍ୟ ଅଟ୍ଟାଳୀ ବିଦ୍ୟମାନ । ଏହି ପରିସରର ନାମ 'ବସନ୍ତନିବାଶ' । ବାମଣ୍ଡାର ପୃଥ୍ୱୀପ୍ରଖ୍ୟାତ ମହାରାଜା ବାସୁଦେବ ସୁଢ଼ଳଦେବଙ୍କ ଗୁଣଧର ଜ୍ୟେଷ୍ଠାତ୍ମଜ ଯୁବରାଜ ସଚ୍ଚିଦାନନ୍ଦ ଦେବଙ୍କର ଏହା ଏକ ମହତୀ କୀର୍ତ୍ତି । ଏହି ପବିତ୍ର ସାରସ୍ୱତ ପୀଠର ମାର୍ବଲ୍‌ପ୍ରସ୍ତରଗାତ୍ରରେ 'ନିବାସ' ଶବ୍ଦର ବନାନଭେଦରେ ତିନି ରୂପ ଓ ତିନିପ୍ରକାର ଅର୍ଥ ବୋଲି ଉତ୍କୀର୍ଣ୍ଣ ହୋଇଛି, ଯଥା ; (୧) 'ନିବାଶ'—କଲକୂଜିତ ସ୍ଥଳ, (୨) 'ନିବାଷ'—ବିହଗକୂଜିତ ସ୍ଥଳ, (୩) 'ନିବାସ'—ବାସସ୍ଥଳ । ଅତିଥି ତଥା କବି, ଲେଖକ, ଗାୟକ, ପଣ୍ଡିତ ପ୍ରଭୃତି ଏହି 'ବସନ୍ତନିବାଶ'ରେ ଅବସ୍ଥାନ କରିବାପାଇଁ ମହାରାଜାଙ୍କଦ୍ୱାରା ସାଦରରେ ଅଭ୍ୟର୍ଥିତ ହେଉଥିଲେ । ଏଠାରୁ ନିରୀକ୍ଷଣ କଲେ ଅତି ଅଳ୍ପ ଦୂରସ୍ଥ 'ପ୍ରଧାନପାଟ' ପ୍ରପାତର ରୁଦ୍ରସୁନ୍ଦର ଦୃଶ୍ୟାବଳୀ ଦର୍ଶକମାନଙ୍କର ମନଃପ୍ରାଣ ମୁଗ୍ଧ କରି ଶାନ୍ତ ରସରେ ରସାଣିତ କରିଦିଏ । ୧୯୩୧ ଫେବୃଆରି ୨୫ ତାରିଖ ଦିନ ମୁଁ ଏହି 'ବସନ୍ତନିବାଶ'ର ମସୃଣ ଶିଳାସ୍ତରଣେ ଉପରେ ବସି 'ପ୍ରଧାନପାଟ'କୁ ଲକ୍ଷ୍ୟ କରି ଯେଉଁ ସ୍ୱତଃସ୍ଫୂର୍ତ୍ତ ରଚନାଟି ଅତ୍ୟଳ୍ପ ସମୟ ମଧ୍ୟରେ ଛନ୍ଦୋବଦ୍ଧ କରିଥିଲି, ତାହାହିଁ ମୋର ଆବୃତ୍ତୀକୃତ 'ବସନ୍ତନିବାଶେ' କବିତା ।

## ବସନ୍ତନିବାଶେ

ଛବିଲ ଉତ୍କଳର  ଛବିର ହାଟ
ପ୍ରକୃତି-ପ୍ରିୟସଖୀ  'ପ୍ରଧାନପାଟ' ?
କବି-ନୟନ-କାରି  ଗିରି-ତନୁଜା !
କବି ବନ୍ଧନେ ଆଜ  କାହିଁ ତୋ ପୂଜା ?
ଶଇଳ-ସାନୁ-ଶିରେ  ଅତଟ ପଟ,
ଭବ-ପସରି ତୋର  ଟଙ୍କିଲ ତଟ,
ହୀରକ-ହାର ସରି  ଶୀକରରାଶି,
ପରାଣ-ତରି ତହିଁ  ଯିବ କି ଭାସି !

ନିବିଡ଼-ପରିଚିତା ବାନ୍ଧବୀ ସମ
ସୋହାଗ ପରକାଶୁ ପାଠ ମରମ ।

କି ଦେଖି ଅକିଂଚନେ ଗଲୁ ତୁ ଭଳି,
ସ୍ୱଜନ ମୁଁ ତ ନୋହେ ତୋ ସଖୀ ଭଳି !

ଆଦରେ ଆଦ୍ରିକାଶି ତୋ ସ୍ମୃତି ଛବି
ବିହ୍ୱଳେ ଦେଖେ ଆଜି ମୁଗ୍ଧ ଏ କବି ।

ଝଟକେ ତୋର ସେହି ବେଶ ମୋହନ
ଦିନେ ଯା ମୋହିଥିଲି କୋଟି ନୟନ ।

ସ୍ଥିରଯୌବନା ଚିର- ସୁଷମାରାଣି ?

ଅମର କଣ୍ଠେ ତୋର ରୂପକାହାଣୀ
ଗାଇ ଯେ ଥିଲେ କବି ମଧୁର ସ୍ୱରେ,

ଆଉ କି ସେ ସୁଦିନ ଆସିବ ଥରେ ?

ଶୋଭାର ସରଧର ତୋ ନବ ତୀର
ମୁଖରୁଥିଲି ଗାନେ ସୁଧୀ କବିର;

ସପନ ପରି ସେ ତ ହୁଏ ପରତେ,
ନାହାନ୍ତି ଭକ୍ତେ ତୋର କେହି ମରତେ ।

ପୂରୁବ କାନ୍ତି ଦ୍ୟୁତି ପୂରୁବ ହାସ,
ବସନ୍ତନିବାଶେ ତୋ ସାଦର ଭାଷ,

ପୂରୁବ ଦିବ୍ୟଭୂଷା ଯୌବନ-ଝଷ,
ସବୁହିଁ ଅଛି ଆଜି ଜୀବନ୍ତ ପରି ।

ମାତ୍ର ଜଣେହେଁ ଆଉ ହାଇ ରେ ହାଇ
ରୂପ-ପୂଜାରୀ ତୋର ଜନ୍ମିଲି ନାହିଁ !

ଝୁରୁଛି ବିଷାଦିନୀ ! ତେଣୁ ବିଜନେ,
ଅଶ୍ରୁ କରୁଛୁ ଏବେ ତୋ ଶୁଭ୍ର ବନେ ।

ଗଲେଣି ରାଧାନାଥ ସୁଢ଼ଳ ସଚ,
ତୋ ବ୍ୟଥା ବୁଝିବାକୁ କେ ଅବା ଅଛି ?

'ସାରଳା' ମାଆର ତ ବୀଣା ନ ବାଜେ,
ତେଣୁ କି ସାରସ୍ୱତ ପୂଜା ତୋ ଭଜେ ?

କାବ୍ୟରସିକେ ଥିଲେ ତୋ ପାଦ ଘେରି,
ସେ ସ୍ୱର୍ଣ୍ଣଯୁଗ କି ଗୋ ଆସିବ ଫେରି !

ହେବ କି ଉତ୍କଳର ଭାଗ୍ୟ ଉଦୟ,
ତୋ ସ୍ରୋତ ହେବ କାବ୍ୟ- କମଳମୟ !

ଉଚ୍ଛ୍ୱସିତ କରତାଳି-ଧ୍ୱନିରେ ବିଶିଷ୍ଟ ସଭାସଦନଟି ଘନ ଘନ ପ୍ରକମ୍ପିତ ହୋଇଉଠିଥିଲା । କବିତାଟିର ଗୁଣାତ୍ମକ ଉତ୍କର୍ଷ ଉପରେ କେତେକ ବକ୍ତା ଆଲୋକପାତ କରିଥିଲେ । ତତ୍ପରେ ସୁଢ଼ଳଦେବଙ୍କ ଜୀବନଦର୍ଶନ ସମ୍ବନ୍ଧରେ ବ୍ୟାପକ ଆଲୋଚନା ହୋଇଥିଲା ।

ସେଠାର ଗୋଟିଏ ଦୃଶ୍ୟ ମତେ ଅତି ଆଶ୍ଚର୍ଯ୍ୟଜନକ ଭାବରେ ଅଭିଭୂତ କରିପକାଇଥିଲା । ଦେବଗଡ଼ ଭଳି ସୁଦୂର ଉପସହରର ଏକ ସାମୟିକ ସାହିତ୍ୟସଭାରେ ଏତେ ସାହିତ୍ୟପ୍ରେମୀ, ବିଦ୍ୱଜ୍ଜନ ଓ ଗୁଣିଗୁଣୀ ଯେ ସମବେତ ହୋଇପାରନ୍ତି, ପ୍ରାକୃତିକ ଓଡ଼ିଶାର ପ୍ରାଣକେନ୍ଦ୍ର କଟକ ନଗରୀରେ ଅନୁଷ୍ଠିତ 'ଉତ୍କଳ ସାହିତ୍ୟ ସମାଜ' ଇତ୍ୟାଦି ସ୍ପନ୍ଦିତ ଯେକୌଣସି ସାହିତ୍ୟସଭାର, ଏପରିକି ବାର୍ଷିକୋତ୍ସବ ସମାରୋହର ଶୋଚନୀୟ ଶ୍ରୋତୃଦର୍ଶକ ଦୈନ୍ୟ ଲକ୍ଷ୍ୟ କରିଥିବା ଲୋକେ କେବେହେଲେ କଳ୍ପନା କରିପାରିବେ ନାହିଁ । ଏହି ବିବୃତିରୁ ପ୍ରିୟ ପାଠକପାଠିକାମାନେ କଦାପି ଏପରି ଭୁଲ୍ ସିଦ୍ଧାନ୍ତକୁ ଆସନ୍ତୁ ନାହିଁ ଯେ, କଟକରୁ ଆସିଥିବା ମୋ'ପରି ଜଣେ ତରୁଣ ଲେଖକକୁ ଦର୍ଶନ କରିବାପାଇଁ ବା ସମ୍ବର୍ଦ୍ଧନା ଦେବାପାଇଁ ଦେବଗଡ଼ର ଜନସମୁଦ୍ର ଘରଦ୍ୱାର ଉଜାଡ଼ିଦେଇ ଏହି ସଭାସ୍ଥଳରେ ଅଜାଡ଼ି ହୋଇପଡ଼ିଥିଲା । ବୁଝିବାକୁ ହେବ ଯେ, କଟକାଗତ ଅତିଥି ହିସାବରେ ମତେ ପରମ୍ପରାଗତ ଭାବରେ ସମ୍ବର୍ଦ୍ଧିତକରଣ ଏହି ଆୟୋଜିତ ସଭାର ଏକ ଲକ୍ଷ୍ୟ ଥିଲେହେଁ ମୁଁ ଥିଲି ଉପଲକ୍ଷ୍ୟ ମାତ୍ର । ସମବେତ ଅଗଣିତ ଜନତାର ମୁଖ୍ୟ ଆକର୍ଷଣ ଥିଲା ସେମାନଙ୍କ ହୃଦ-ସିଂହାସନର ପରମପୂଜ୍ୟ ଦେବତା ମହାରାଜା ସୁଢ଼ଳଦେବଙ୍କ ପବିତ୍ର ଗୁଣାବଳୀ ଶ୍ରବଣ ଓ ତାଙ୍କର ମହିମାମୟ ସ୍ମୃତିରେ ଶ୍ରଦ୍ଧାଞ୍ଜଳି ଅର୍ପଣ ।

ସୁଢ଼ଳଦେବ ଦେବଗଡ଼ରେ ଯେଉଁ ବିଶାଳ ଗ୍ରନ୍ଥାଗାର (library) ସ୍ଥାପନ କରିଥିଲେ, ତାହା ସେପର୍ଯ୍ୟନ୍ତ ସୁଷ୍ଠୁରୂପେ ପରିଚାଳିତ ହୋଇଆସୁଥିଲା । ଗ୍ରନ୍ଥାଗାରିକ (librarian) ଥିଆନ୍ତି ପ୍ରବୀଣ ସାହିତ୍ୟିକ ବୃନ୍ଦାବନ ନାଥ ଶର୍ମା । ବର୍ଦ୍ଧନୋନ୍ମୁଖ 'ସହକାର' ପାଇଁ ତାଙ୍କଠାରୁ ମଧ୍ୟ ନିବନ୍ଧଟିଏ ଆଦାୟ କରିଥିଲି । ପ୍ରତି ମାସରେ ସମ୍ଭବ ନହେଲେ ଅନ୍ତତଃ ମଝେ ମଝେ ସେ ଲେଖା ଯୋଗାଇବେ ବୋଲି ପ୍ରତିଶ୍ରୁତି ଦେଇଥିଲେ ।

ପ୍ରାୟ ପ୍ରତ୍ୟହ ସନ୍ଧ୍ୟାରେ ମୁଁ ତାଙ୍କ ପାଖକୁ ଯାଏଁ, ଲାଇବ୍ରେରିର ଅଧିକାଂଶ ଝଣ୍ଡାଳେ, ଊନବିଂଶ ଶତକର କିଛି ସୁନାମଧେୟ ପୁସ୍ତକ ପାଇଲେ ତାର ପୃଷ୍ଠାମାନ ଆଲୋଡ଼ନ କରେଁ । ଦିନେ ଦେଖିଲି, ଗୋଟିଏ ବଡ଼ ଆଲମାରିରେ ଥାକ ମାରି ହୋଇ 'ସମ୍ବଲପୁର ହିତୈଷିଣୀ' ସାପ୍ତାହିକୀ ପତ୍ରିକାର କେତେ ବର୍ଷର ବନ୍ଧେ ପୁରୁଣା ସଂଖ୍ୟା ଯତ୍ନରେ ରଖାଯାଇଛି । ପୂର୍ବେ ଏହି ପତ୍ରିକାଟି ସୁଢ଼ଳଦେବଙ୍କ ପୃଷ୍ଠପୋଷକତାରେ ଦେବଗଡ଼ରୁ ପ୍ରକାଶିତ ହେଉଥିଲା । କୌତୂହଳାକ୍ରାନ୍ତ ହୋଇ ପୂର୍ବରୁ କେବେ-ନ-ଦେଖା ସେହି ଦୁର୍ଲଭ ସଂଖ୍ୟାଗୁଡ଼ିକ ଉପରେ ଆଖି ଗଡ଼ାଇବାକୁ ଲାଗିଲି । ସେଦିନଟି ଥିଲା ମୋ'ପକ୍ଷରେ ବଡ଼ ସୁଦିନ ନିଶ୍ଚୟ । ହଠାତ୍ ଗୋଟିଏ ପୃଷ୍ଠାରେ ଦୃଷ୍ଟି ନିବଦ୍ଧ ରହିଗଲା । ମନ ମୋର ଅସୀମ ଉଲ୍ଲାସରେ ଝୁଲିଉଠିଲା, ମାଟି ତାଡ଼ୁ ତାଡ଼ୁ ପୋତା ଅସରପି ମିଳିଗଲା ଭଳି । ସତରେ

କିନ୍ତୁ ଠିକ୍ ସେଇଆ—କବିବର ରାଧାନାଥଙ୍କ 'ଚିଲିକା' କାବ୍ୟାନ୍ତର୍ଗତ ଗୋଟିଏ ପଦର ସଂଶୋଧନ । ସଂଶୋଧକ ପୁଣି ନିଜେ ସେଇ କବିବର ବୈୟାକରଣିକ ରାଧାନାଥ ।

ରଚୟିତାଙ୍କ ସ୍ୱହସ୍ତାଙ୍କିତ ସେହି ଲେଖାଟି ଅତି ପାଣ୍ଡିତ୍ୟପୂର୍ଣ୍ଣ ଓ ତାତ୍ପର୍ଯ୍ୟଗର୍ଭିତ । ବର୍ତ୍ତମାନସ୍ଥ ପଦଟିର ପଶ୍ଚାତ୍-ଇତିବୃତ୍ତ ନ ଜାଣିଲେ ଏବର 'ଚିଲିକା' ପାଠକ ଓ କଲେଜ-ଅଧ୍ୟାପକମାନଙ୍କ ପକ୍ଷରେ ଏହି ପ୍ରସଙ୍ଗଗତ ଅଧ୍ୟୟନ ପରିପୂର୍ଣ୍ଣାଙ୍ଗ ହୋଇପାରିବ ନାହିଁ ।

ବହୁ ବର୍ଷ ତଳର ପୁରୁଣା କଥା । କଳାହାଣ୍ଡି ରାଜ୍ୟାନ୍ତର୍ଗତ ଖଡ଼ିଆଳସ୍ଥ ଏଷ୍ଟେଟ୍‌ର ତତ୍କାଳୀନ କାବ୍ୟାମୋଦୀ ଜମିଦାର ଶିବନାରାୟଣ ଦେବ ମହୋଦୟ ସେପର୍ଯ୍ୟନ୍ତ ରାଧାନାଥ ଯେଉଁ କେତୋଟି କାବ୍ୟ ଲେଖିଥିଲେ ସେଗୁଡ଼ିକୁ ଗୁଚ୍ଛୀକୃତ କରି 'ଗ୍ରନ୍ଥାବଳୀ' ଆକାରରେ ମୁଦ୍ରିତ କରିବାକୁ ସାତିଶୟ ଆଗ୍ରହୀ ହୋଇଉଠିଥିଲେ । ରାଧାନାଥ ତହିଁରେ ବାଧାଦାନକୁ ସ୍ପୃହଣୀୟ ମନେକଲେ ନାହିଁ । ଫଳରେ 'ରାଧାନାଥ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ)' ନାମରେ କ୍ଷୁଦ୍ରାବୟବ କାବ୍ୟଗ୍ରନ୍ଥଟିଏ ପ୍ରଥମ ସଂସ୍କରଣରୂପେ ପ୍ରକାଶିତ ହୋଇଥିଲା ୧୯୦୬ ମସିହାରେ ।

ଅପୂର୍ଣ୍ଣାଙ୍ଗଭାବରେ ପ୍ରକାଶିତ ଏହି ଗ୍ରନ୍ଥାବଳୀର ଛପାସଂଖ୍ୟା ଥିଲା ପାଞ୍ଚଶତ ଖଣ୍ଡ ମାତ୍ର । ସେକାଳରେ ପ୍ରାୟ ସବୁ ବହିର (ପୁରାଣ ଛଡ଼ା) ଛପା ଏହି ସଂଖ୍ୟାରେ ସୀମାବଦ୍ଧ ରହୁଥିଲା । ଏହି ପ୍ରଥମ ସଂସ୍କରଣର ସମସ୍ତ କପି, ଉପହାରପ୍ରାପ୍ତି ସୂତ୍ରରେ ହେଉ କିମ୍ବା କ୍ରୟ ସୂତ୍ରରେ ହେଉ, ପ୍ରାକୃତିକ ଉତ୍କଳର ପ୍ରାୟ ସର୍ବାଞ୍ଚଳରେ କାବ୍ୟପ୍ରେମୀମାନଙ୍କ କକ୍ଷ ମଣ୍ଡନ କରିବା ହେତୁ ନିଃଶେଷ ହୋଇଗଲା । ଏହାଫଳରେ ଆଗ୍ରହୀ ଅନ୍ୟ କ୍ରୟେଚ୍ଛୁମାନେ କାବ୍ୟଗ୍ରନ୍ଥଟିର ରସାସ୍ୱାଦରୁ ବଞ୍ଚିତ ରହିଗଲେ । 'ସୁପ୍ରତିଷ୍ଠିତ ଲେଖକଙ୍କର ସମସ୍ତ ସାହିତ୍ୟକୃତି ଏକତ୍ର ଗ୍ରନ୍ଥିତ ହୋଇ ପୂର୍ଣ୍ଣାଙ୍ଗ ଗ୍ରନ୍ଥାବଳୀରୂପେ ପ୍ରକାଶିତ ହେବା ହିଁ ଶାଳୀନ ପ୍ରଥା । ଅଧୀରତା-ବଶତଃ ଜୀବଦ୍ଦଶା ମଧ୍ୟରେ ଖଣ୍ଡିତାବୟବରେ ପ୍ରକାଶ କରାଇବା କୌଣସି ମର୍ଯ୍ୟାଦାବନ୍ତ ଲେଖକ ପକ୍ଷରେ ଶୋଭନୀୟ ନୁହେଁ ।' ସୁଧୀବର ରାଧାନାଥ ଏହି ଶ୍ଳାଘ୍ୟ ମତର ପୂର୍ଣ୍ଣ ସମର୍ଥକ ଥିଲେ । ଏଣୁ ସେ ଖଣ୍ଡିତ ଗ୍ରନ୍ଥାବଳୀଟିର ପୁନର୍ମୁଦ୍ରଣ ପାଇଁ ଅନୁମତି ଦେବାରେ ବୀତସ୍ପୃହ ହେଲେ ।

ସର୍ବମୁଖପ୍ରଶଂସିତ 'ଚିଲିକା' କାବ୍ୟ ଉକ୍ତ ଅପୂର୍ଣ୍ଣ ଗ୍ରନ୍ଥାବଳୀର ଅନ୍ତର୍ଭୁକ୍ତ ଥିଲା । ତହିଁର ଏକ ସ୍ଥଳରେ ପ୍ରୟୋଗ କରାଯାଇଥିବା 'ମାରକତ' ଶବ୍ଦରେ ମାରାତ୍ମକ ପ୍ରାୟୋଗିକ ପ୍ରମାଦ ରହିଯାଇଥିବାର ଦିନେ ରାଧାନାଥ ଲକ୍ଷ୍ୟ କଲେ । ଯେଉଁ ପଦରେ ସେହି ଶବ୍ଦଟି ବ୍ୟବହୃତ ହୋଇଥିଲା, ତାହା ହେଉଛି—

ବିମାନ ଆକାରେ  ଭାସେ ଶତ ଶତ
ନୀଳୋରସେ ତୋର  ଶୈଳ ମାରକତ ।

'ମାରକତ' ଗୋଟିଏ ତଦ୍ଧିତପ୍ରତ୍ୟୟାନ୍ତ ଶୁଦ୍ଧ ସଂସ୍କୃତ ଶବ୍ଦ (ମରକତ + ଅ), ଯାହାର ଅର୍ଥ ହେବ 'ମରକତନିର୍ମିତ' । ଏଠାରେ ଏହି ଶବ୍ଦଟି 'ଶୈଳ'ର ବିଶେଷଣରୂପେ ବ୍ୟବହୃତ

ହୋଇଛି । ଏଣୁ 'ମାରକତ ଶୈଳ'ର ଅର୍ଥ ହେବ 'ମରକତ ମଣିର ପର୍ବତ' । କିନ୍ତୁ କବିବର ଯେଉଁ ଅର୍ଥ ମନରେ ରଖି 'ମାରକତ ଶୈଳ' ଲେଖିଥିଲେ, ତାହା ହେଉଛି 'ମରକତବର୍ଣ୍ଣାଭ ପର୍ବତ' । ପ୍ରକୃତିର ସ୍ୱରୁଚିତ୍ରଶାଳା ନୀଳାମ୍ବୁ ଚିଲିକାର ପ୍ରାଣବିମୋହନ ଦୃଶ୍ୟରାଜିରେ ବୁଡ଼ିରହି ସେ ଏତେ ଭାବବିହ୍ୱଳ ହୋଇପଡ଼ିଥିଲେ ଯେ, ଏହି ଅର୍ଥବିଭ୍ରାଟର ସମ୍ଭାବ୍ୟତା ପ୍ରଶ୍ନ ସେତେବେଳେ ତାଙ୍କ ଚିନ୍ତା-ଚକଡ଼ା ଭିତରକୁ ଆଦୌ ପ୍ରବେଶିପାରି ନଥିଲା ।

ଯାହାହେଉ, ଅଜ୍ଞାତସାରରେ ରହିଯାଇଥିବା ନିଜର ସେହି ପ୍ରମାଦକୁ ରାଧାନାଥ 'ସମ୍ବଲପୁର ହିତୈଷିଣୀ'ରେ ସୂଚାଇଦେଇ ଶଂସିତ ପଦଟିକୁ ଏହିପରି ଭାବରେ ବଦଳାଇ ପଢ଼ିବାକୁ ପାଠକସାଧାରଣଙ୍କୁ ନିବେଦନ କରିଥିଲେ—

"ବିମାନ ଆକାରେ ଭାସେ ଅଗଣନ
ନୀଳୋରସେ ଶୈଳ ବୈଦୂର୍ଯ୍ୟବରଣ ।"

ମାତ୍ର ବିସ୍ମୟର କଥା, କବିବରଙ୍କ ଦେହାବସାନ ପରେ ପୂର୍ଣ୍ଣାଙ୍ଗ 'ରାଧାନାଥ ଗ୍ରନ୍ଥାବଳୀ'ର ଯେତେ ସଂସ୍କରଣ କଟକ ଟ୍ରେଡ଼ିଂ କମ୍ପାନୀଦ୍ୱାରା ସେ ପର୍ଯ୍ୟନ୍ତ ପ୍ରକାଶିତ ହୋଇଥିଲା, କାହିଁରେ ଉଲ୍ଲିଖିତ ପରିବର୍ତ୍ତନଟିକୁ କାର୍ଯ୍ୟକାରୀ କରାଯାଇପାରି ନଥିଲା । ତେଣୁ ମୁଁ ଗସ୍ତ ଶେଷ କରି କଟକକୁ ଫେରିଆସିବାମାତ୍ରେ ନୀତିଗତ କର୍ତ୍ତବ୍ୟ ଦୃଷ୍ଟିରୁ ରାଧାନାଥଙ୍କ ସୁଯୋଗ୍ୟ ଦାମାଦ ଶଶିଭୂଷଣ ରାୟଙ୍କୁ ଦେବଗଡ଼ ଲାଇବ୍ରେରିରୁ ପ୍ରାପ୍ତ 'ମାରକତ' ଶବ୍ଦ-ସଂକ୍ରାନ୍ତ ବୃତ୍ତାନ୍ତଟି ଜଣାଇଦେଲି ।

ସଂକ୍ଷିପ୍ତ ଉତ୍ତରରେ ଶଶୀବାବୁଙ୍କଠାରୁ ଯାହା ଶୁଣିଲି, ତହିଁରେ ମୋର ଆପାତ ଆଶ୍ୱସ୍ତି ଆସିଲା—"ଚଳନ୍ତି ସଂସ୍କରଣର ଖଣ୍ଡିଏ ଗ୍ରନ୍ଥାବଳୀକୁ ପଣ୍ଡିତ ମୃତ୍ୟୁଞ୍ଜୟ ରଥ କାବ୍ୟତୀର୍ଥ ବାଣୀଭୂଷଣ ମୃତ୍ୟୁ ପୂର୍ବରୁ ଆମୂଳଚୂଳ ପଢ଼ି ଯେଉଁଠି ଯେତେ ପ୍ରକାର ପ୍ରମାଦ ଥିଲା ସମସ୍ତ ସଂଶୋଧନ କରିଦେଇଯାଇଛନ୍ତି ଏବଂ 'ଚିଲିକା'ର ସେହି ପଦଟି ମଧ୍ୟ ବଦଳାଇ-ଦେଇଛନ୍ତି । ଉକ୍ତ ସଂଶୋଧିତ କପିଟି ପାଣ୍ଡୁଲିପିରୂପେ ଉତ୍କଳ ସାହିତ୍ୟ ପ୍ରେସ୍‌କୁ ଦିଆଯାଇଛି । ନୂତନ ସଂସ୍କରଣ ପ୍ରକାଶୋନ୍ମୁଖ ।"

ସତକୁ ସତ ଅଳ୍ପ କେତେ ମାସ ପରେ 'ରାଧାନାଥ ଗ୍ରନ୍ଥାବଳୀ'ର ସଂଶୋଧିତ ସଂସ୍କରଣ ବାହାରିଥିବା ସମ୍ବାଦ ପାଇ ମୁଁ ଆଗ୍ରହାତିଶଯ୍ୟରେ ଧାଇଁଲି । 'ଚିଲିକା' ଅଂଶଟିରେ ଆଖି ପକାଇ ଯାହା ଦେଖିଲି, ତହିଁରେ ସ୍ତମ୍ଭୀଭୂତ ହେବାକୁ ପଡ଼ିଲା । ଆଲୋଚ୍ୟ ପଦଟିରେ ପୂର୍ବରୁ ଥିବା ଶବ୍ଦମାନ ନିମ୍ନମତେ ଏପଟ-ସେପଟ ହୋଇ ରାଧାନାଥଙ୍କ କବିମର୍ଯ୍ୟାଦାକୁ ନିର୍ମମଭାବରେ କ୍ଷତବିକ୍ଷତ କରିଦେଇଛି—

"ବିମାନ ଆକାରେ ଶତ ଶତ ଭାସେ
ମରକତଶୈଳ ତୋର ନୀଳୋରସେ ।"

ହାୟ, ସର୍ବପ୍ରଥମ ରଚନାରେ ବ୍ୟାକରଣଘଟିତ ଗୋଟିଏ ଦୋଷ ଥିଲା, ଏବେ ବାଣୀଭୂଷଣ ରଥେ କାବ୍ୟତୀର୍ଥେ ତହିଁରେ ଅଳଙ୍କାର-ଶାସ୍ତ୍ରଘଟିତ ଦ୍ୱିତୀୟ ଦୋଷଟିଏ

ଯୋଡ଼ିଦେଲେ—ଦିଅଁ ଗଢ଼ିବାକୁ ଯାଇ ମାଙ୍କଡ଼ ଗଢ଼ିବସିଲେ । ଏହି ଅଧିକା ଦୋଷଟି ହେଲା ପ୍ରଥମ ଧାଡ଼ି ଶେଷର 'ଭିସେ' ସହିତ ଦ୍ୱିତୀୟ ଧାଡ଼ି ଶେଷସ୍ଥ 'ରସେ'ର ଉପଧା-ମିଳନ ଅଭାବ । ରାଧାନାଥୀୟ କାବ୍ୟକବିତାରେ କୁତ୍ରାପି ଏଭଳି ଅକ୍ଷମଣୀୟ ଦୋଷ ପରିଲକ୍ଷିତ ହୋଇ ନଥିଲା । ବାଣୀଭୂଷଣ ରଥ ମହାଶୟେ ନିଜ ଅବାଣୀଭୂଷଣତ୍ୱର ପରାକାଷ୍ଠା ଦେଖାଇ ରାଧାନାଥଙ୍କ ଅକଳଙ୍କ ମୁଣ୍ଡରେ କଳଙ୍କର ଅଠା ବୋଳିଦେଲେ !

ଏ ଘଟଣାରେ ବିବ୍ରତ ହୋଇ ମୁଁ 'ମୁକୁର' ସମ୍ପାଦକ ବ୍ରଜସୁନ୍ଦର ଦାସଙ୍କୁ ଆମୂଳାନ୍ତ ଜଣାଇଲି । ସେ ଏ ସମ୍ପର୍କରେ ଲେଖାଟିଏ ତୁରନ୍ତ ତାଙ୍କ ପାଖରେ ପହଞ୍ଚାଇବାକୁ ଜାଗିର କଲେ । ଅବିଳମ୍ବେ ତାଙ୍କ ଇଚ୍ଛା ପୂରଣ କରି ମୁଁ ସେହି ନୈତିକ କର୍ତ୍ତବ୍ୟଟି ଶେଷକଲି ।

ଲେଖାଟି 'ମୁକୁର'ରେ ବାହାରିପଡ଼ିଲା । ଶଶୀବାବୁ ତାହା ପଢ଼ି ମନେ ମନେ ମୋ ଉପରେ ବେଜାୟ ଖପା ହେଲେ—କିଛି ଦିନ ପର୍ଯ୍ୟନ୍ତ ମୁହଁ ମଧ୍ୟ ଫୁଲାଇ ରହିଥିଲେ । କିନ୍ତୁ ମୋର ସେହି ଲେଖାର ପ୍ରକାଶନ ଫଳରେ ହିଁ 'ସମ୍ବଲପୁର ହିତୈଷିଣୀ'ରେ ପ୍ରକାଶିତ ରାଧାନାଥଙ୍କ ମୂଲ୍ୟବାନ୍ 'ସଂଶୋଧନୀ'ଟି, ବିଳମ୍ବରେ ହେଲେହେଁ, ଯଥାର୍ଥଭାବରେ ମର୍ଯ୍ୟାଦିତ ହୋଇଥିଲା । ଏହା ଯଦି ନହୋଇପାରିଥାନ୍ତା, ତାହାହେଲେ ନେପଥ୍ୟରେ କୃତ ମୃତ୍ୟୁଞ୍ଜୟ ପଣ୍ଡିତଙ୍କ ଅପଣ୍ଡିତୋଚିତ ସଂଶୋଧନର କଳଙ୍କିତ କୀର୍ତ୍ତି ଯେ କାଳ କାଳ ପାଇଁ କବିଗୁରୁଙ୍କ ରଚନାରେ ରହିଯାଇନଥାନ୍ତା, କିଏ କହିବ ?

ଦେବଗଡ଼ ଛଡ଼ା ବାମଣ୍ଡା ରାଜ୍ୟର ଅନ୍ୟ ଦୁଇ ସବ୍‌ଡିଭିଜନ କୁଚିଣ୍ଡା ଓ ଗୋବିନ୍ଦପୁରର ସଦର ମହକୁମା ମଧ୍ୟ ପରିଦର୍ଶନ କରିଥିଲି ରାଜବଂଶୀୟ ମଟରଯାନରେ । କୁଚିଣ୍ଡାର ଏସ୍. ଡି. ଓ. ବସନ୍ତକୁମାର ବହିଦାର (ସୁନ୍ଦରଗଡ଼ ସହରର ଅଧିବାସୀ ଓ ଗାଙ୍ଗପୁର ଷ୍ଟେଟ୍‌ର ନାମଡାକ ଅଫିସର ରାସବିହାରୀ ବହିଦାରଙ୍କ ପୁଅ) ଓ ସେକେଣ୍ଡ୍ ଅଫିସର୍ (ଡେପୁଟି ମାଜିଷ୍ଟ୍ରେଟ୍) ଅଦ୍ୱୈତଚରଣ ମହାନ୍ତି (ଖୋର୍ଦ୍ଧାର ଅଧିବାସୀ) ଏବଂ ଗୋବିନ୍ଦ-ପୁରର ଏସ୍. ଡି. ଓ. ଗୋବିନ୍ଦ ରାଓ ମତେ ସସମ୍ମାନରେ ଅଭ୍ୟର୍ଥନା କରିନେଇଥିଲେ । କୁଚିଣ୍ଡାରେ ଅଦ୍ୱୈତବାବୁଙ୍କ ବଙ୍ଗଳାରେ ଓ ଗୋବିନ୍ଦପୁରରେ ଗୋବିନ୍ଦବାବୁଙ୍କ ବଙ୍ଗଳାରେ ମୋ ରହିଣିର ବ୍ୟବସ୍ଥା ହୋଇଥିଲା । ସେ ଦୁହିଙ୍କ ବ୍ୟକ୍ତିଗତ ପ୍ରଯତ୍ନରେ 'ସହକାର'ର କେତେଗୁଡ଼ିଏ ଗ୍ରାହକଗ୍ରାହିକା ସଂଗୃହୀତ ହୋଇପାରିଥିଲେ ।

ରାଜବଂଶର ଅନୁକୂଲ୍ୟରୁ ଏହିରୂପେ ବାମଣ୍ଡା ରାଜ୍ୟ ପରିକ୍ରମା କରିବା କାଳରେ ତନ୍ମଧ୍ୟରେ ଥିବା ରମଣୀୟ କମଳା-କାନନ, ଶାଳବନ, ନୀରନ୍ଧ୍ର ଅରଣ୍ୟାନୀ, ଶୈଳସ୍ୟନ୍ଦୀ 'ପ୍ରଧାନପାଟ' ଜଳପ୍ରପାତ, ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ର ଆଦି ବହୁ ସନ୍ଦର୍ଶନୀୟ ସ୍ଥଳର ଲୋମକାନ୍ତ ଦୃଶ୍ୟ ଉପଭୋଗ କରିବାର ସୌଭାଗ୍ୟ ମତେ ମିଳିଥିଲା ।

ବାମଣ୍ଡା ରାଜ୍ୟରୁ ବିଦାୟ ନେଇ ବଣାଇଗଡ଼ ଅଭିମୁଖରେ ଯାତ୍ରା କଲି । ଯେଉଁ ଡାକବସ୍‌ରେ ଯାଉଥିଲି, ଅର୍ଦ୍ଧପଥରେ ହଠାତ୍ ତାର ଯାନ୍ତ୍ରିକ କ୍ରିୟା ବନ୍ଦ ହୋଇଗଲା । ସେତେବେଳକୁ ସନ୍ଧ୍ୟାର ଅନ୍ଧକାର ଅବତରି ଆସୁଥାଏ । ଦୈବୀ ସୁଯୋଗବଶତଃ ଗୋଟିଏ

ଭରୁଆଦ୍ୱାରା ମୋ ଜିନିଷପତ୍ର ବୁହାଇ ତା' ସହିତ ଚାଲି ଚାଲି ପ୍ରାୟ ଚାରି ମାଇଲ ଗଲା-ପରେ ଏକ ବଡ଼ ବସ୍ତିରେ ପହଞ୍ଚିଲି—ନାମ ତାର 'ବାଙ୍କିବଜାର' । ରାତି ପ୍ରାୟ ନଅଟା । ଚତୁର୍ଦ୍ଦିଗ ଘନତମସାବୃତ । ଦୋକାନସବୁ ପଡ଼ିଯାଇଥାଏ । ଅନ୍ଧାରୁଆ ରାସ୍ତାରେ କେହି ଲୋକ ଦେଖାଯାଉ ନଥାନ୍ତି । କେଉଁଠି ଆଶ୍ରୟ ନେଇ ରାତିଟି କଟାଇବି ? ବିଷମ ଚିନ୍ତାରେ ପଡ଼ିଲି ।

ଭରୁଆଟି ଦେଖିଲି ଭାରି ସାହସିଆ, ମିହନତିଆ ଆଉ ନିଅତଦାର । ମତେ ବହୁତ ମଦତ୍ ଦେଲା । ଭାରକୁ ତଳେ ଥୋଇ ପଚିଶ ହାତ ଖଣ୍ଡେ ଦୂରକୁ ଚାଲିଗଲା । କଟିକଟି ଅନ୍ଧାର ଭିତରେ ମୁଁ ତାକୁ ଦେଖିପାରିଲି ନାହିଁ । ମାତ୍ର ଅଳ୍ପ ସମୟ ପରେ ସେ ଫେରିଆସିଲା, ଭାର କାନ୍ଧେଇ ସେଇଆଡ଼କୁ ପୁଣି ଆଗେଇଲା । ମୁଁ ତା' ପଛେ ପଛେ ଚାଲିଲି । ସେ ଗୋଟାଏ ଅଧାକାନ୍ଥିଆ ମେଲା ଘରେ ପଶି ତା' ଭିତରେ ଭାରଟାକୁ ରଖିଦେଲା । ମୁଁ ଅଧାକାନ୍ଥକୁ ଆଉଜି ଟିକଏ ଦମ୍ ନେଲି । ତା'ଠାରୁ ବୁଝିଲି ଯେ, ଏ ଫସକଢିଆ ଲମ୍ବା ବଖରାଟି ହେଉଛି ଗୋଟିଏ ଚାଟଶାଳୀ । ଏହି ସମୟରେ ପାଖ ପଡ଼ିଶାଘରର ଜଣେ ଦୟାବନ୍ତ ଲୋକ ଉଜାଳି ହାରିକେନଟିଏ ଧରି ଚାହାଳିଭିତରକୁ ଅଇଲା । ମୁଁ କଟକରୁ ଆସିଛି ଓ ବଣାଇରାଜାଙ୍କୁ ଭେଟିବାକୁ ଯାଉଛି, ଏହା ଜାଣିଲାରୁ ସଦାଶୟତାର ନିଦର୍ଶନ-ରୂପେ ମୋ ନିକଟରେ ହାରିକେନଟିକୁ ଛାଡ଼ିଦେଇଯିବ ବୋଲି ସ୍ୱେଚ୍ଛିକ ସୌଜନ୍ୟ ପ୍ରକାଶକଲା ।

ଚାହାଳିରେ ଆଲୁଅ—ଦିନେ କାଳେ ଦେଖାନାହିଁ, ଆଜି ଏ କି ନୂଆ କଥା ! ଏକବସ୍ତ୍ର ଦରଦରବୁଢ଼ାଟିଏ କୌତୂହଳପରବଶ ହୋଇ ଧୀର ଧୀର ପଦକ୍ଷେପରେ ଆମ ନିକଟକୁ ଅଇଲା । ହାରିକେନ ଆଣି ଆସିଥିବା ପଡ଼ୋଶୀଟି ସେପର୍ଯ୍ୟନ୍ତ ମୋ ସହିତ ଦୁଃଖସୁଖ ହେଉଥାଏ । ଏ ଦରଦରବୁଢ଼ା ମଧ୍ୟ ସେଥିରେ ଯୋଗଦେଲା । ଯେତେବେଳେ ଜାଣିଲା ଯେ, ମୁଁ ଜଣେ ବ୍ରାହ୍ମଣ ଏବଂ ବାଟରେ ଡାକବସ୍‌ର ଇଞ୍ଜିନ୍ ବିଗିଡ଼ିଗଲାରୁ ଅଗତ୍ୟା ଏ ଅପରିଚିତ ଜାଗାରେ ଆଶ୍ରା ନେଇଛି, ଅତି ଉତ୍ସୁକ ସ୍ୱରରେ ସେ ମୋତେ ପଚାରିଲା, "ବାବୁ, ଆପଣ ବୋଧହୁଏ କିଛି ଖାଇନଥିବେ, ଭୋକ ତ ହେଉଥିବ ।" ମୃଦୁ ହାସରେ ଉତ୍ତର ଦେଲି, "ବିଦେଶ କଥା, ରାତି କେଇଟାମାତ୍ର ଘଣ୍ଟା କ'ଣ ଇମିତି ଚଳିଯିବ ନେଇଁ ?"

ଏ କଥା ଶୁଣି ସେ ବଡ଼ ଉଚ୍ଚାଟ ହୋଇଉଠିଲା । କହିଲା, "ମୁଁ ଜଣେ ବିହାରୀ ମାରୱାଡ଼ି, ହେଲେ ସତ୍‌କୁଳ ବ୍ରାହ୍ମଣ । ଏଠି ଅନେକ ବର୍ଷରୁ ଦୋକାନ କରି କୁଟୁମ୍ବ ସହ ରହିଛି । ଦୟାକରି ମୋ ଗରିବ ଘରର ଅତିଥି ହୁଅନ୍ତୁ ।" ଏତିକି କହି ମୋ ସମ୍ମତିକୁ ଅପେକ୍ଷା ନକରି ଭରୁଆକୁ ଜିନିଷପତ୍ର ଉଠାଇବାକୁ ନିର୍ଦ୍ଦେଶ ଦେଲା । ତାର ଏ ସଦାଶୟତା ଦେଖି ଅଭିଭୂତ ହୋଇପଡ଼ିଲି ମୁଁ । ଆଗ ଭଦ୍ରଲୋକଟି ତା ହାରିକେନ-ଆଲୁଅରେ ଆମକୁ ବାଟ ଦେଖାଇଦେଇସାରି ତା'ପରେ ନିଜ ଘରକୁ ଚାଲିଗଲା ।

ମାବୁଅଙ୍କ ପରିବାରର ସଂକ୍ଷିପ୍ତ ରାତିଆହାର-ପ୍ରସ୍ତୁତି ସେପର୍ଯ୍ୟନ୍ତ ଆରମ୍ଭ ହୋଇ-ନଥାଏ । ଚିରସ୍ମିପ୍ରିୟ ଗୃହସ୍ଥଟି ଘର ଭିତରକୁ ପଶିଯିବାମାତ୍ରେ ଗୃହକର୍ତ୍ତ୍ରୀ, ପୁତ୍ର, ପୁତ୍ରବଧୂ ପ୍ରଭୃତି ବାହାରିଆସି ମତେ ପ୍ରଣିପାତଜ୍ଞାପନପୂର୍ବକ ପାଛୋଟିନେଲେ । ହାତଗୋଡ଼ ଆଦି ଧୂଆଧୋଇ ପୋଛାପୋଛି କରିନେଲି । ସେହି ଅବସରରେ ଘରଚାକର ବାହାରେ ଯୋଡ଼ିଏ ଖଟିଆ ଲଗାଲଗି ପକାଇ ତହିଁରେ ଶେଯ ବିଛାଇଦେଲା, ମୁଣ୍ଡତକିଆ ଗୋଡ଼ତକିଆ ସଜାଇଦେଲା । ଗୃହକର୍ତ୍ତା ଓ ମୁଁ ଖଟିଆରେ ଅଙ୍ଗ ଢାଳି ସୁଖାଲାପ ଆରମ୍ଭିଲୁଁ । ତେଣେ ଶାଶୁ ଓ ବୋହୂ ଆହାର୍ଯ୍ୟ ତିଆରିରେ ଲାଗିପଡ଼ିଥାନ୍ତି । ଘଣ୍ଟାକ ଭିତରେ ମୁଁ, ଗୃହସ୍ଥ ଓ ସବୁଆ ତିନିଜଣଙ୍କ ପାଇଁ—ଠାଆ ବଢ଼ା ହୋଇଗଲା ବୁଢ଼ାଚକୁଳି ଭଳି ମୋଟା ଘିଅଜରଜର ପୁରିଦିଆ ପରଟା, ତିନି ଚାରି କିସମର ସୁସ୍ୱାଦୁ ବ୍ୟଞ୍ଜନ, ହରେକ ପ୍ରକାର ଆଚାର, ରାବିଡ଼ି ପ୍ରଭୃତି । ପେଟପୂଜା ସମାପନ ପରେ ଆମେ ଅତିଥି-ଆତିଥେୟ ଦୁହେଁ ସଙ୍ଗ ହୋଇ ବନ୍ଧୁଃସଜ୍ଜିତ ଶଯ୍ୟାସନକୁ ଫେରିଲୁଁ । ଫୁଲୁଫୁଲୁ ନୈଶ ସମୀରଣର ଯାଦୁସ୍ପର୍ଶରେ ତଦ୍‌ଗତ ହୋଇ ନିଦ୍ରାଦେବୀଙ୍କୁ ଆବାହନ କରୁଥିଲାବେଳେ ଭାବୁଥିଲି ମୁଁ—କାହିଁ ସେ ଅପନ୍ତରା ଚାଟଶାଳରେ 'ନିରମ୍ବୁ ଏକାଦଶୀ'ର ଖାଲି ପେଟରେ ବିନିଦ୍ର ଭୂତଳଶୟନ, ଆଉ କାହିଁ ଏ ନବରସ ଖାଦ୍ୟାହାରଜନିତ ପରିପୂର୍ଣ୍ଣ ଉଦରରେ ସୁଖନିଦ୍ରାକର ଦିବ୍ୟ ଶେଯସୁପାତିରେ ଆରାମ ଶୟନ ! ସବୁ ବିଧାତାର ବରଦ !

ସିନ୍ଦୂରିତ ଉଷାରଶ୍ମିରେ ପହଁରି ପହଁରି କାକକୋକିଳ ଖଞ୍ଜନକୁଳ ଯେତେବେଳେ ଆସନ୍ନୋଦୟ ବାଳରବିଙ୍କର ବନ୍ଦନାଗାନରେ ଗଗନାଙ୍ଗନ ମୁଖରିତ କରିଦେଲେ, ସେହି ଧ୍ୱନିବାଦ୍ୟରେ ସହସା ମୋର ନିଦ୍ରାଭଙ୍ଗ ହେଲା । ଶଯ୍ୟାତ୍ୟାଗପୂର୍ବକ ସ୍ନାନାଦି ପ୍ରାତଃ-କ୍ରିୟା ତୁରନ୍ତ ସମାପି ଦେଇ ଏଠି ସେଠି ଗୋଟାଏ ଚକର ମାରି ଆସିବାପାଇଁ ସଜବାଜ ହେଲାବେଳକୁ ଗୃହସ୍ଥପତ୍ନୀ ପ୍ରାତରାଶ (ସାମାନ୍ୟ ଜଳଯୋଗ) ଆଣି ମୋ ଆଗରେ ଥୋଇଦେଲେ—ତା' ପଛକୁ ଘନଦହିର ସର୍ବତ ମଧ୍ୟ । ସେତକର ସଦ୍‌ବ୍ୟବହାର କରିସାରି ବାହାରିପଡ଼ିଲି ବଜାରର କେନ୍ଦ୍ରାଞ୍ଚଳ ଅଭିମୁଖେ । ତାହାରି ମଧ୍ୟରେ ପଡ଼େ ପୋଲିସ୍ ଥାନା ।

ଚାଲି-ଚାଲି ହୋଇ କିଛି ବାଟ ଗଲାପରେ ଥାନା ଫାଟକରେ ପହଞ୍ଚିଲି । ଭିତରେ ଦେଖାଗଲା ଥାନା ଅଫିସ୍—ଛୋଟିଆ ପକ୍କା ଘରଟିଏ । ତାର ଠିକ୍ ପଛକୁ ଏକ ପାର୍ଶ୍ୱରେ ଥାନା ଅଫିସର୍, ଏସ୍. ଆଇ. ଓ ଏ. ଏସ୍. ଆଇ. ଙ୍କର କ୍ୱାର୍ଟର୍ ଏବଂ ଆର ପାର୍ଶ୍ୱରେ ହାବିଲଦାର ଓ ସିପେଇମାନଙ୍କର ଧାଡ଼ିଏ ବାସଗୃହ—ପୋଲିସ୍ ବାରିକ୍ । ମୁଁ ଥାନା ଅଫିସ୍ ଆଡ଼କୁ ମୁହାଁଉଥିବା ସମୟରେ ସେଣୁ ଜଣେ ମୋରି ବୟସର ଏ. ଏସ୍. ଆଇ. ତାଙ୍କ କ୍ୱାର୍ଟର୍‌ରୁ ବାହାରିବାର ଦେଖିଲି । ତାଙ୍କରି ଅପେକ୍ଷାରେ ମୁଁ ଥାନା ବାରଣ୍ଡାରେ ଠିଆହୋଇ ରହିଲି । ସେ ଆସି ଅଫିସ୍‌ରେ ବସନ୍ତେ ମୁଁ ସେଠାକୁ ଯାଇ ନମସ୍କାର କଲି । ପ୍ରତିନମସ୍କାର ଜଣାଇ ସେ ଚୌକିଟିଏ ପ୍ରତି ଅଙ୍ଗୁଳିନିର୍ଦ୍ଦେଶପୂର୍ବକ ମତେ ବସିବାକୁ

କହିଲେ । ପରସ୍ପର ପରିଚିତ ହେଲୁଁ । କଥାବାର୍ତ୍ତାରୁ ଉଦ୍‌ଘାଟିତ ହେଲା ଯେ, ସେ ହେଉଛନ୍ତି ବେଢ଼ାଖୋଲ ରାଜ୍ୟର ଅଧିବାସୀ ଏବଂ ମୋ ବାପାଙ୍କ ସୁପାରିସରୁ ବଣାଇଗଡ଼ ମି.ଇଂ. ସ୍କୁଲରେ ଅଧ୍ୟୟନର ସୁବିଧା ପାଇଥିଲେ, ଯାହା ଫଳରେ ବଣାଇର ରାଜାସାହେବ ଦୟାପରବଶ ହୋଇ ତାଙ୍କୁ ଏହି ପୋଲିସ୍ ଚାକିରିଟି ଦେଇଛନ୍ତି । କଥା ହେଲା, ରେଢ଼ାଖୋଲରାଜା ଯଦୁମଣି ବଣାଇରାଜା ଧରଣୀଧରଙ୍କ କନିଷ୍ଠ ଭ୍ରାତା । ପୂର୍ବତନ ରେଢ଼ାଖୋଲରାଜା ଅପୁତ୍ରକ ଥିବାରୁ ଯଦୁମଣିଙ୍କୁ ପୋଷ୍ୟପୁତ୍ରରୂପେ ଗ୍ରହଣ କରିଥିଲେ । ଏଣୁ ବଣାଇ ରାଜ୍ୟ ଓ ରେଢ଼ାଖୋଲ ରାଜ୍ୟ ମଧ୍ୟରେ ସୌହାର୍ଦ୍ୟ ଓ ସାହଚର୍ଯ୍ୟର ଯୋଗ-ସୂତ୍ର ସେହି ସମୟରୁ ପ୍ରତିଷ୍ଠିତ ହୋଇଥିଲା । ମୋ ବାପା ଅପ୍ରାପ୍ତବୟସ୍କ ଯୁବରାଜ ଯଦୁମଣିଙ୍କର ଗୃହଶିକ୍ଷକ-ଅଭିଭାବକ ଥିବାରୁ ବହୁବାର ଯଦୁମଣିଙ୍କ ସହିତ ବଣାଇ ରାଜବାଟୀକୁ ଆସିଥିଲେ । ତେଣୁ ବଣାଇଗଡ଼ରେ ସମସ୍ତେ ବାପାଙ୍କ ପ୍ରତି ଗଭୀର ସମ୍ମାନ ପ୍ରଦର୍ଶନ କରୁଥିଲେ ।

ମୁଁ ଡାକବସ୍‌ର ଯାନ୍ତ୍ରିକ ତ୍ରୁଟି ଯୋଗୁଁ ବାର୍ଙ୍କିବଜାରରେ ଅଟକି ରହିଛୁ ବୋଲି ଏବେ ଏ. ଏସ୍. ଆଇ. ବନ୍ଧୁ ଜାଣିପାରି ବଣାଇ ରାଜବାଟୀକୁ ଫୋନ୍ କରିଦେଲେ ଏବଂ ସଙ୍ଗେ ସଙ୍ଗେ ବାର୍ଙ୍କିବଜାର ଥାନାକୁ ମଟର୍‌କାର୍ ପଠାଇ ମତେ ଗଡ଼କୁ ନେଇଯିବାଲାଗି ଅନୁରୋଧ ଜଣାଇଲେ । ଏହାପରେ ସେ ଆଉ ମତେ ଛାଡ଼ିଲେ ନାହିଁ । ତାଙ୍କରି ବସାରେ ମୋ’ପାଇଁ ମଧ୍ୟାହ୍ନଭୋଜନର ବ୍ୟବସ୍ଥା ହୋଇଛି ବୋଲି ମାରୁଆଡ଼ି ଭଦ୍ରବ୍ୟକ୍ତିଙ୍କ ଘରକୁ ସିପେହି ହସ୍ତରେ ଖବର ପଠାଇଦେଲେ ।

ରାଜବାଟୀର ମଟରଗାଡ଼ି ଦିନ ପ୍ରାୟ ଗୋଟାକବେଳେ ଥାନାରେ ପହଞ୍ଚିଲା । ମୁଁ ସେଥିରେ ବସି ଆତିଥେୟ ମାରୁଆଡ଼ିଙ୍କ ଘରକୁ ଗଲି ଏବଂ ମୋର ସାମନପତ୍ର କାର୍‌ରେ ରଖାଇ କୃତଜ୍ଞ ହୃଦୟରେ ଉକ୍ତ ପରିବାରର ପ୍ରତ୍ୟେକଙ୍କଠାରୁ ବିଦାୟ ନେଇ ଥାନା-ପରିସରକୁ ଫେରିଲି । ହିତକାରୀ ପୋଲିସ୍‌ବନ୍ଧୁ ଓ ଚର୍ଚ୍ଚାକାରିଣୀ ତାଙ୍କ ପତ୍ନୀଙ୍କୁ ମେଲାଣି ମାଗି ଗାଡ଼ି ଆରୋହଣ କଲି ।

ଯନ୍ତ୍ରଯାନଟି ପବନବେଗରେ ସୁ-ସୁ ଛୁଟିଲା ପ୍ରଶସ୍ତ ରାଜପଥରେ । ବଣାଇଗଡ଼ମଧ୍ୟସ୍ଥ ଚଉଛକ ଛୁଇଁଲାବେଳକୁ ଘଡ଼ି ଦେଖିଲି, ପାଞ୍ଚଟା ବାଜିବାକୁ ତେର୍ ବାକି । କାର୍ ହଠାତ୍ ବ୍ରେକ୍ ଦେଇ ଥମିଗଲା ସେଠି, କେତେକ ଉଦ୍‌ଗ୍ରୀବ ଲୋକଙ୍କ ସମକାଳୀନ ହସ୍ତୋତ୍ତୋଳନ ସଙ୍କେତରେ । ରାଜବାଟୀରୁ ଫୋନ୍‌ବାର୍ତ୍ତା ସଂଗ୍ରହ କରି ସେମାନେ ପ୍ରେରିତ ଯାନର ପ୍ରତ୍ୟାବର୍ତ୍ତନକୁ ଟାକିରହିଥିଲେ ସେହିଠାରେ ଜୁଣ୍ଡ ହୋଇ । ଗାଡ଼ିରୁ ଅବତରଣ କରି ଯେଉଁ ଅପେକ୍ଷମାଣମାନଙ୍କୁ ସସମ୍ଭ୍ରମ ପ୍ରଣାମ କଲି, ସେମାନେ ହେଉଛନ୍ତି ସେଠା ଚିଫ୍ ମେଡ଼ିକାଲ୍ ଅଫିସର୍ ଡାକ୍ତର ନୀଳମଣି ଆଚାର୍ଯ୍ୟ (କଟକର ପ୍ରବୀଣ ଆଡ଼୍‌ଭୋକେଟ୍ ରାୟବାହାଦୁର ଚନ୍ଦ୍ରମଣି ଆଚାର୍ଯ୍ୟଙ୍କ ଅନୁଜ), ଶିକ୍ଷାବିଭାଗୀୟ ମୁଖ୍ୟ ପର୍ଯ୍ୟବେକ୍ଷକ ନାରାୟଣ ନନ୍ଦ ଓ ଶିକ୍ଷକ ପ୍ରାଣନାଥ ମିଶ୍ର (ଏ ଉଭୟେ ମୋ ମାମୁଘର-ଗାଆଁ ଝିଣ୍ଡିପାହିର

ଅଧିବାସୀ) ଏବଂ ବଣାଇଗଡ଼ ମାଇନର୍ ସ୍କୁଲର ହେଡ୍‌ମାଷ୍ଟର ଗୋପୀନାଥ ଦାଶ ଓ ଶିକ୍ଷକ ବୈଦ୍ୟନାଥ କର (ଏ ଉଭୟେ ମୋର ଗାଆଁ ମୂଳବସନ୍ତର) । ମୋଟ ଉପରେ ଏ ସମସ୍ତେ ଏକା ଅଞ୍ଚଳ କଟକ ସଦର ସବ୍‌ଡିଭିଜନ୍‌ର ଅଧିବାସୀ ଏବଂ ପ୍ରଥମ ତିନିଜଣ ଆମ ଗ୍ରାମ ସହିତ ବନ୍ଧୁତା-ସୂତ୍ରରେ ପରସ୍ପର ଜଡ଼ିତ ।

ଗାଡ଼ି ଚାଲିଗଲା ଗ୍ୟାରେଜ୍‌କୁ, ଆଉ ତହିଁରେ ଥିବା ମୋ ଜିନିଷପତ୍ର ବୁହାହୋଇଗଲା ଉକ୍ତ ରାଜମାର୍ଗପାର୍ଶ୍ୱସ୍ଥ ବୈଦ୍ୟନାଥବାବୁଙ୍କ ଘରକୁ । ବନ୍ଧୁପଞ୍ଚକଙ୍କ ସହିତ ବାନ୍ଧିହୋଇ ମୁଁ ମଧ୍ୟ ଚାଲିଲି ସେହି ଡେରାକୁ । ମୋ ରହଣିପାଇଁ ଅତିଥିଭବନ ପୂର୍ବରୁ ନିର୍ଦ୍ଧାରିତ ହୋଇଥିଲେ ହେଁ ରାଜାସାହେବ ଏମାନଙ୍କ ଅନୁରୋଧରେ ବୈଦ୍ୟନାଥ କରଙ୍କ ବାସ-ଭବନରେ ରହିବା ବ୍ୟବସ୍ଥାକୁ ଅନୁମୋଦନ ଦେଇଥିଲେ । ତଦନୁଯାୟୀ ସେଦିନର ରାଜକୀୟ ସଞ୍ଜା ତାଙ୍କ ଗୃହକୁ ଆସିଯାଇଥିଲା । ଯଥାରୀତି ଆପରାହ୍ଣିକ ଜଳଯୋଗ ପର୍ବ ସମାପ୍ତ ହେବା ସଙ୍ଗେ ସଙ୍ଗେ ଦୀର୍ଘ ଚାରିଘଣ୍ଟାବ୍ୟାପୀ ଆଳାପ-ଆଲୋଚନା ଚାଲିଲା । ସେମାନେ 'ସହକାର' ପାଇଁ ଗ୍ରାହକ-ସଂଗ୍ରହର ପୂର୍ଣ୍ଣ ଦାୟିତ୍ୱ ନେଲେ । ରାତ୍ରିଭୋଜନ ଶେଷରେ ଆଚାର୍ଯ୍ୟ, ନନ୍ଦ, ମିଶ୍ର ଓ ଦାଶ ଯେ ଯାହା ଆବାସକୁ ପ୍ରତ୍ୟାଗମନକଲେ ।

ପରଦିନ ସକାଳେ ସେମାନେ ପୁଣି ମୋ ପାଖକୁ ଆସିଲେ । ସମଭିବ୍ୟାହୃତ ହୋଇ ଛଅଜଣଯାକ ଡାକ୍ତର ଆଚାର୍ଯ୍ୟଙ୍କ କାର୍‌ରେ ବସି ରାଜଦର୍ଶନକୁ ବାହାରିଲୁଁ । ଏଥିପାଇଁ ଗତ ରାତିରେ ମନ୍ତ୍ରୀମାନଙ୍କଠାରୁ ଅନୁମତି ଅଣାଯାଇଥିଲା । ଆମ୍ଭେମାନେ ରାଜବାଟୀରେ ପହଞ୍ଚି ସାକ୍ଷାତ୍କାର-ପ୍ରକୋଷ୍ଠରେ ଉପବେଶନ କଲୁଁ । ଠିକ୍ ପୂର୍ବନିର୍ଦ୍ଦିଷ୍ଟ ସମୟରେ ଗୁଣିଗୁଣଗ୍ରାହୀ ରାଜା ଧରଣୀଧର ଇନ୍ଦ୍ରଦେଓ ଦେବ ଅତି ସାଧାରଣ ବେଶରେ ଆସି ଆସନ ଅଳଂକୃତ କଲେ । ସରଳ, ଭଦ୍ର, ନିରହଙ୍କାର, ଉଦାର, ମିଷ୍ଟଭାଷୀ—କଥାକଥାକେ ସାହିତ୍ୟିକ ଛଟା । ମୁଗ୍ଧ ହେଲି ମୁଁ । ମୋ ପ୍ରଣୀତ କେତେଖଣ୍ଡି ପୁସ୍ତକ ଉପହାର ଦେଲି । ସାଗ୍ରହାଦରରେ ଗ୍ରହଣ କଲେ ରାଜାସାହେବ । ରାଜବାଟୀ ପାଇଁ ପାଞ୍ଚଖଣ୍ଡ ରାଜସଂସ୍କରଣ 'ସହକାର'ର ବାର୍ଷିକ ଗ୍ରାହକଚାନ୍ଦା (ପଚିଶ ଟଙ୍କା) ସେହିଠାରେ ମତେ ଦେଇଦେବାକୁ ଜଣେ ନଅର କର୍ମଚାରୀଙ୍କୁ ଆଦେଶ କଲେ । ତତ୍‌ସଙ୍ଗେ ବଣାଇ ରାଜ୍ୟର କେତେକ ଦର୍ଶନୀୟ ସ୍ଥାନ ଦେଖାଇବାର ଯଥୋଚିତ ବନ୍ଦୋବସ୍ତ ମଧ୍ୟ କରିଦେଲେ ସେ । ସେଥିମଧ୍ୟରୁ ନୀରନ୍ଧ୍ରବନାନୀବେଷ୍ଟିତ 'ମେନକାନଗ୍ର' ଗିରିର ସାତ ଶହ ଫୁଟ ଉଚ୍ଚ ଶିଖରଦେଶରୁ ଭୀମଗର୍ଜନ ସହ ନିମ୍ନଦେଶର ସରୋବରାକାର ପ୍ରକାଣ୍ଡ ଏକ ଟାଙ୍ଗରକୁଣ୍ଡକୁ ଲମ୍ଫଦାନକାରୀ ରୁଦ୍ରସୁନ୍ଦର 'ଖଣ୍ଡାଧାର' ପ୍ରପାତ ଥିଲା ମୋ ପକ୍ଷରେ ସର୍ବଶ୍ରେଷ୍ଠ ଆକର୍ଷଣ, କାରଣ ସମଗ୍ର ପ୍ରାକୃତିକ ଉତ୍କଳରେ ଏହାହିଁ ସର୍ବୋଚ୍ଚ ନୈସର୍ଗିକ ଜଳପ୍ରପାତ—ସର୍ବଭାରତୀୟ ବିଚାରରେ ଦାକ୍ଷିଣାତ୍ୟସ୍ଥ 'ଧୂଆଁଧାର' ପ୍ରପାତର ସମକକ୍ଷ କିମ୍ବା ତଦପେକ୍ଷା ବୃହତ୍ତର ଓ ଉଚ୍ଚତର । କିନ୍ତୁ ଏତେ ବିରାଟତା ସତ୍ତ୍ୱେ 'କ୍ଷୁଦ୍ର ଶିପ୍ରାସ୍ରୋତ ବିଖ୍ୟାତ ଜଗତେ,

ମହାନଦୀ ନାମ ରହିଲା ଗୁପତେ’ ନ୍ୟାୟରେ ପରମ ପ୍ରଶସ୍ତ୍ୟାର୍ହ ଖଣ୍ଡାଧାରର ‘ନାମେ ଖ୍ୟାତଗନ୍ଧେ ପଡ଼ିନାହିଁ ଗାର’ ଏପର୍ଯ୍ୟନ୍ତ ।

‘ଖଣ୍ଡାଧାର’ ଦର୍ଶନର ପ୍ରବଳ ଆକାଂକ୍ଷା ମୋ ପ୍ରାଣପୁଟକୁ ଏତେ ଆଚ୍ଛନ୍ନ କରିପକାଇଥିଲା ଯେ, ଔଚିତ୍ୟାନୌଚିତ୍ୟ ବିଚାର ନ କରି କହିପକାଇଲି, “ଗୁରୁଙ୍କ ଅନୁକମ୍ପାରୁ ‘ଖଣ୍ଡାଧାର’ ଓ ତତ୍ସନ୍ନିହିତ ଅରଣ୍ୟାଂଶର ଦୁର୍ଲଭ ଦୃଶ୍ୟବିଭବ ତନ୍ନ ତନ୍ନ ଉପଭୋଗ ଓ ଉପଲବ୍ଧି କରିବାର ସୌଭାଗ୍ୟ ମିଳିପାରିଲେ ମୋ ଜୀବନର ଗୋଟିଏ ମହାନ୍ ଅଭିଳାଷ ଚରିତାର୍ଥ ହୁଅନ୍ତା ।” ରାଜାସାହେବ ସେହି ‘ମହାନ୍ ଅଭିଳାଷ’ଟି ଜାଣିବାକୁ କୌତୂହଳୀ ହୋଇଉଠନ୍ତେ ମୁଁ ଖୋଲି କହିଲି, “ପ୍ରପାତ ‘ଖଣ୍ଡାଧାର’ କେବଳ ବଣାଇର ସୌନ୍ଦର୍ଯ୍ୟ-ଭଣ୍ଡାର ନୁହେଁ, ଏହା ବୈଚିତ୍ର୍ୟମୟୀ ଉତ୍କଳଲକ୍ଷ୍ମୀଙ୍କର ମଧ୍ୟ ଚାରୁଚିତ୍ରଶାଳା । ଏହାର ସ୍ୱର୍ଗୀୟ ଶୋଭାସମ୍ଭାରକୁ ମୋର ଦୀନଭାଷାରେ ଯଥାସମ୍ଭବ ଛନ୍ଦୋବଦ୍ଧ କରି କ୍ଷୁଦ୍ର କାବ୍ୟଟିଏ ଗଢ଼ିବି, ଏହାହିଁ ‘ମହାନ୍ ଅଭିଳାଷ’ ମହିମା !”

ଦୀର୍ଘଶ୍ୱାସ ତ୍ୟାଗ କରି ଗୁରୁ କହିଲେ, “ଯୁବପ୍ରାଣର ସଙ୍କଳ୍ପ ଶୁଣି ଆନନ୍ଦ ପାଇଲି; କିନ୍ତୁ ‘ଖଣ୍ଡାଧାର’ କାବ୍ୟ ଖଣ୍ଡିଏ ଦେଖିବାର ଦୀର୍ଘକାଳପୋଷିତ ଆଶା ମୋର ସେହି ଆଶାରେ ହିଁ ଏପର୍ଯ୍ୟନ୍ତ ପର୍ଯ୍ୟବସିତ ରହିଛି । ଦୀପରୁ ତେଲ ସରି ସରି ଆସିଲାଣି, ଶୁଖିଲା ବଳିତା ଭୁଷିଲା ହେବାକୁ ବସିଲାଣି । କେଉଁଦିନ ଯେ ମିଞ୍ଜି ମିଞ୍ଜି ଆଲୁଅଟିକକ ଠକ୍‌କିନା ଲିଭିଯିବ, କିଏ କହିବ ? ପ୍ରଚାରକ ଅନନ୍ତ ମିଶ୍ର ମଧ୍ୟ ଏହିଭଳି ଆଶା ଦେଇଥିଲେ, ଲୁଆଡ଼େ ଛପି ରହିଲେ ସେ । ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ପ୍ରତିଶ୍ରୁତିରେ ମୋର ଗଭୀର ଆସ୍ଥା ଥିଲା । ତାଙ୍କ କଥା ବି ପାଣିର ଗାର ହେଲା । ଏହି ମୋର ତିକ୍ତ ଅନୁଭୂତି ।”

ଆହତ ମର୍ମର କାକୁତିରେ ଚିତ୍ତ ମୋର ଚାଉଁକିନା ଚହିଁକିଉଠିଲା । ଶ୍ରୀଗୁରୁଙ୍କ ଛାମୁରେ କଠୋର ଅଙ୍ଗୀକାରବଦ୍ଧ ହେଲି ବନ୍ଧୁବର୍ଗଙ୍କ ସାକ୍ଷାତ୍ ଉପସ୍ଥିତିରେ । ଏହାପରେ ଆମେମାନେ ବିଦାୟ ଗ୍ରହଣ କଲୁଁ ।

ରାଜାଦେଶରେ ସେହିଦିନ ଗୋଟିଏ ଆଗୁଆ ଦଳର ମାରଫତରେ ଚାରି ପାଞ୍ଚ ଦିନ ଖୁସିରେ ଚଳିବା ମାନିଆ ଖାଦ୍ୟପେୟାଦି ଯାବତୀୟ ଦ୍ରବ୍ୟସରଞ୍ଜାମଭର୍ତ୍ତି ଶଗଡ଼ମାନ ‘ବୁଢ଼ାଭୁଇଁ’ ଉଦ୍ୟାନମଧ୍ୟସ୍ଥ ବିଶାଳ ‘ବିଶ୍ରାମଭବନ’କୁ ଚାଲାଣ କରିହେଲା । ‘ଖଣ୍ଡାଧାର’ ପ୍ରପାତ ଏହି ରମଣୀୟ ଉଦ୍ୟାନକ୍ଷେତ୍ରଠାରୁ ଛଅ ମାଇଲ ପରେ । ସେହି ଆଗୁଆ ଦଳରେ ରାନ୍ଧୁଣିଆ, ବାଢ଼ୁଣିଆ, ଯୋଗାଣିଆ, ସରଦାରିଆ, ବରିଦକାରିଆ, ନୌକରଚାକର, ତଦାରଖିଦାର ଲଗାୟତ ଲୋକ ଚଉଦ ପନ୍ଦରରୁ କମ୍ ନଥିଲେ । ଆୟୋଜନର ବିପୁଳ ଘଟା ।

ପରଦିନ ପ୍ରତ୍ୟୁଷରେ ପ୍ରାୟ କୋଡ଼ିଏ ଜଣଙ୍କୁ ନେବାଭଳି ତିନୋଟି ଗାଡ଼ି ମୋ ରହଣି-ସ୍ଥାନକୁ ଆସିଲା । ତା’ ସହିତ ମିଶିଲା ‘ପଞ୍ଚବନ୍ଧୁ’ବାଲା ନୀଳମଣିଙ୍କ କାର୍ । ସେଥିରେ ମୁଁ ସାମିଲ ହେଲି । କେତେକ ଶିକ୍ଷକ ଓ ସ୍କୁଲଛାତ୍ର, ପାଞ୍ଚ ଛଅଜଣ ସଙ୍ଗୀତଗାୟକ ଓ

ବାସ୍ତବିକ, ରାଜବାଟୀର ଦୁଇଜଣ, ଏହିପରି ଅନ୍ୟୁନ ଜୋଡ଼ିଏ ମୂର୍ତ୍ତି ହେଲେ ରାଜବାଟୀ-ପ୍ରେରିତ ତିନି ଯାନର ଯାତ୍ରୀ । ଗାଡ଼ିଗୁଡ଼ିକ ସାମାନ୍ୟ ସାମାନ୍ୟ ବ୍ୟବଧାନରେ ପଛକୁ ପଛ ରହି ଏକସମୟରେ ଯାତ୍ରାରମ୍ଭ କଲା 'ବୁଢ଼ାଭୁଇଁ' ଉଦ୍ୟାନକୁ । ଘଞ୍ଚ ବନଭୂମି ମଧ୍ୟରେ ଗତି କରି 'ବିଶ୍ରାମଭବନ'ରେ ପଦାର୍ପଣ କରିବା ପୂର୍ବରୁ ଭୋଜ୍ୟ ସାମଗ୍ରୀ ପ୍ରସ୍ତୁତ ହୋଇ ରହିଥିଲା । ଭୋଜନକାର୍ଯ୍ୟ ବଢ଼ାଇଦେଇ ସ୍ୱଳ୍ପ ବିଶ୍ରାମ ପରେ ସମସ୍ତେ 'ଖଣ୍ଡାଧାର' ଆଡ଼କୁ ମୁହାଁଇଲୁଁ ଯେଝା ଯେଝା ଗାଡ଼ିରେ ବସି । ପ୍ରପାତ ନିକଟତର ହୁଅନ୍ତେ ଗାଡ଼ିମାନ ଆଉ ଆଗକୁ ଯାଇ ନପାରି ଗୋଟିଏ ନିରାପଦ ଜାଗାରେ ରହିଲା । ପଞ୍ଝା ପଞ୍ଝା ହୋଇ ଆମେସବୁ ଯେ ଯୁଆଡ଼େ ବୁଲି ବାହାରିଲୁଁ ।

ମୁଁ ତ ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନେଇ ସେଠାକୁ ଯାଇଥାଏଁ, ତେଣୁ ମୋର ବୁଲିବା ହେଲା ସମ୍ପୂର୍ଣ୍ଣ ଭିନ୍ନ ଦୃଷ୍ଟିର । ସେଠାର ଅଧିବାସୀ ହେଉଛନ୍ତି ଭୂୟାଁ । ସେମାନଙ୍କ ମଧ୍ୟରୁ ଧନୁର୍ବାଣହସ୍ତ ଓ ବର୍ଚ୍ଛାଧାରୀ ଦୁଇଜଣଙ୍କୁ ମୋର ଚାଳକ ବା ପଥପ୍ରଦର୍ଶକ ରୂପେ ଗ୍ରହଣ କଲି । ସେମାନେ ମତେ ଏକାଧିକ ଥର ନେଇ ଏପରି ନିରାପଦ ପଥରମୁଣ୍ଡିଆ ଉପରେ ବସାଇଦେଲେ, ଯେଉଁଠୁ ବର୍ଣ୍ଣୋଲ୍ଲାସମୟ ସୁଦୁର୍ଲଭ ଦୃଶ୍ୟାବଳି ଓ ନାନାପ୍ରକାର ଜନ୍ତୁ-ଜାନୁଆର, ପଶୁପକ୍ଷୀ ଅନାୟାସରେ ମୋର ଦୃଷ୍ଟିପଥାରୂଢ଼ ହୋଇପାରିଲେ । ମୁଁ ଦୁଇ ଫର୍ଦ୍ଦ ଫୁଲ୍‌ସ୍କେପ୍ କାଗଜ ଓ ଗୋଟିଏ ପେନ୍‌ସିଲ୍ ପକେଟ୍‌ରେ ନେଇଥାଏଁ । ଚତୁର୍ଦ୍ଦିଗକୁ ଚକ୍ଷୁ ପ୍ରସାରଣ କଲେ କେତେ ନିସର୍ଗଶ୍ରୀ, କେତେ ଭାବଭାବନା ଉପର୍ଯ୍ୟୁପରି ଆସି ମୋ ମନ-ପରଦା ଉପରେ ଝଲସିଉଠେ । ସେଗୁଡ଼ିକୁ କାଗଜ ପେନ୍‌ସିଲ୍‌ରେ ଛନ୍ଦି ରଖିବାକୁ ଅସମ୍ଭାଳ ହୋଇଉଠେଁ ମୁଁ । ସଙ୍ଗେ ସଙ୍ଗେ କାଗଜରେ ଟିପିବାକୁ ଆରମ୍ଭ କରେ । ମାତ୍ର ଆଶ୍ଚର୍ଯ୍ୟର କଥା, ଯାହାକୁ ଚୁମ୍ବକରେ ଟିପିବାକୁ ଗଲି, ସେ ହୋଇଗଲା ଧାଡ଼ିଏ ଧାଡ଼ିଏ କବିତା । କି କାଉଁରି ଶକ୍ତି ଏ ତପସ୍ୱୀ ପ୍ରକୃତିର ! ଅକବିକୁ ମଧ୍ୟ କବିରେ ପରିଣତ କରିଦିଏ ।

ଏହିପରି ଚାରୋଟି ଦିନ ଭୂୟାଁ ଚତୁଷ୍ଟୟ ସାହାଯ୍ୟରେ ପ୍ରପାତ ଅଞ୍ଚଳର ପ୍ରାୟ ସବୁ ଅଂଶ ସମ୍ବନ୍ଧରେ ଠିକେ ଠିକେ ଟିପାଟିପି ଶେଷ କଲି । ବିଶ୍ରାମଭବନକୁ ବାହୁଡ଼ିଲା ପରେ ପ୍ରତ୍ୟହ ଉଦ୍ୟାନର ଓ ତତ୍‌ସଂଲଗ୍ନ କୃଷିଫାର୍ମର ସମସ୍ତ ବିବରଣ ମଧ୍ୟ ସଂକ୍ଷେପରେ ଟିପି ରଖୁଥାଏଁ । କାଗଜତକର ସର୍ବାଙ୍ଗରେ ଟିପାମାଳ ଖୁନ୍ଦି ହୋଇଗଲା । ଖଣ୍ଡାଧାରର ଅକ୍ଷୟ ସ୍ମୃତି-ସମ୍ପଦକୁ ସାର ସମ୍ବଳ କରି ପଞ୍ଚମ ଦିନ ତା'ଠାରୁ ମେଲାଣି ନେଇ ସହଯାତ୍ରୀମାନଙ୍କ ମେଳରେ ଗଡ଼କୁ ପ୍ରତ୍ୟାବୃତ୍ତ ହେଲି ।

ଆଉ ଦିନଟିଏ ବଣାଇଗଡ଼ରେ ରହି 'ସହକାର' ସମ୍ପର୍କୀୟ ମୂଳ ଲକ୍ଷ୍ୟ ପୂରଣ କଲି ଏବଂ ରାଜଦରବାର ପକ୍ଷରୁ ସମ୍ମାନିତ ଓ ପୁରସ୍କୃତ ହୋଇ ଅନ୍ୟତ୍ର ଗମନ କଲି ।

ପ୍ରକାଶ ଥାଉ କି, ବିଳମ୍ବରେ ହେଲେ ମଧ୍ୟ ମୁଁ ମୋର ଅଙ୍ଗୀକାର ରକ୍ଷା କରି 'ଖଣ୍ଡାଧାର' କାବ୍ୟଟି ପୂର୍ଣ୍ଣାଙ୍ଗ କଲି । ଖବର ପାଇଲି ଯେ, ସେତେବେଳେ ବଣାଇରାଜ

ଧରଣୀଧର ଇନ୍ଦ୍ରଦେଓ ଦେବ ସ୍ୱାସ୍ଥ୍ୟ ପରିବର୍ତ୍ତନରେ ଆସି ପୁରୀ ସମୁଦ୍ରତୀରରେ ଅବସ୍ଥାନ କରୁଛନ୍ତି । ବଣାଇରୁ ଅବସରପ୍ରାପ୍ତ ବନ୍ଧୁ ପ୍ରାଣନାଥ ମିଶ୍ରଙ୍କ ପରାମର୍ଶାନୁଯାୟୀ ରାଜା-ସାହେବଙ୍କ ନିକଟକୁ ଏକ ପତ୍ର ଲେଖି ତତ୍ସହିତ 'ଖଣ୍ଡାଧାର' କାବ୍ୟର ପାଣ୍ଡୁଲେଖଟିଏ ପଠାଇଦେଇଥିଲି । ଅସୁସ୍ଥ ଅବସ୍ଥାରେ ପୁଣି ସେ ଯେଉଁ ଉତ୍ତର ଦେଇଥିଲେ, ତାର ମର୍ମ ଏହିପରି—"ସ୍ନେହାସ୍ପଦ ଯୁବକବର ! ଆପଣଙ୍କୁ ଅଶେଷ ଧନ୍ୟବାଦ ଓ ବାର୍ଦ୍ଧକ୍ୟର ଆଶୀର୍ବାଦ । ମୋର ପ୍ରାଣପ୍ରିୟ 'ଖଣ୍ଡାଧାର'ର ରଜତୋଜ୍ଜ୍ୱଳ ସଲିଳକଣାର ଶୀତଳ ସ୍ପର୍ଶ ଆପଣଙ୍କ ପାଣ୍ଡୁଲିପିରୁ ପାଇ ଗତସନ୍ତାପ ହେଲି । କରାଳ କାଳର କ୍ରୂର ଫୁତ୍କାରରେ ଉଡ଼ି ନଯାଇ ଏ ବିଷମ ଘାଟିରୁ ଯେବେ ବର୍ତ୍ତିଯାଏଁ, ଅଦୂର ଭବିଷ୍ୟତରେ ନିଶ୍ଚୟ ପୁଣି ଥରେ ଆପଣଙ୍କୁ ଭେଟିବି ମୋ ନଅର ଉଆସରେ ।"

ମାତ୍ର ସର୍ବଗ୍ରାସୀ କାଳ ତାଙ୍କ ଆଶାସ୍ନିଗ୍ଧ ହୃଦୟର କରୁଣ ନିବେଦନ ପ୍ରତି କର୍ଣ୍ଣପାତ କଲା ନାହିଁ । ଅଳ୍ପ ଦିନ ପରେ ସାରା ବଣାଇ ଭୂଖଣ୍ଡରେ ମହାଶୋକର ତାମସୀ ଛାୟା ଘୋଟିଗଲା—ପ୍ରଜାରଞ୍ଜନ ରାଜା ଧରଣୀଧର ଇନ୍ଦ୍ରଦେଓ ଦେବ ଆଉ ଇହଲୋକରେ ନାହାନ୍ତି !

'କଳନାମୂଳେ କାଳ ଥାଇ, ପ୍ରାଣୀ ତା ଜାଣି ନ ପାରଇ ।' ଏହି ଦାରୁଣ ଦୁଃସମ୍ବାଦରେ ମୁଁ କିଛି କାଳ ଭାଙ୍ଗିପଡ଼ିଥିଲି । କେତେ ବର୍ଷ ପରେ ମୋ 'ଖଣ୍ଡାଧାର' ପାଣ୍ଡୁଲେଖ ମୁଦ୍ରିତ ରୂପ ପାଇଥିଲା ନବୋଦ୍ୟୋଗୀ ପ୍ରକାଶନ ସଂସ୍ଥା 'ଆଲୋକ ସାହିତ୍ୟ ପ୍ରତିଷ୍ଠାନ'ଦ୍ୱାରା ।

ବଣାଇ ପର୍ଯ୍ୟଟନ ପରେ ଗସ୍ତ କାର୍ଯ୍ୟକ୍ରମାନ୍ତର୍ଗତ ଆଉ କେତେକ ଅଞ୍ଚଳରେ ଗ୍ରାହକ ସଂଗ୍ରହ କାମ ଶେଷ କରି ମାର୍ଚ୍ଚ ଅଧାଅଧି ବେଳକୁ ଘର ଧଇଲି । ଟିକିନିଖି ଚୂଡ଼ାନ୍ତ ହିସାବ-ପତ୍ର ବାଲକୃଷ୍ଣବାବୁଙ୍କ ହାତରେ ଧରାଇଦେଲି । ଓଡ଼ିଆ ନବବର୍ଷାରମ୍ଭ ବୈଶାଖ ପଣା-ସଂକ୍ରାନ୍ତିଠାରୁ 'ସହକାର' ନବ ବେଶ ନବ ରୂପରେ ପ୍ରକାଶିତ ହେବାର କଥା । ତାହାର ଆୟୋଜନରେ ଲାଗିପଡ଼ିବାକୁ ହେଲା । ଗସ୍ତ-ଉପାର୍ଜିତ ଅର୍ଥରେ ବ୍ଲକ୍ ତିଆରିର ବହୁମୂଲ୍ୟ ଯନ୍ତ୍ରପାତି ସେଟ୍ କଲିକତାରୁ କିଣାଗଲା, ମେସିନ୍ ବଦଳ ରଦ୍ଦିମନ୍ତ ହେଲା, ନୂଆ ଫେସ୍‌ର ଓଡ଼ିଆ ଟାଇପ୍ ବରାଦ କରାଗଲା ଏବଂ 'ସହକାର' ଛାପାପାଇଁ ପୁରା ବର୍ଷକର ପ୍ରୟୋଜନୀୟ ସାଧାରଣ କାଗଜ ଓ ଆର୍ଟ କାଗଜ କିଣାହୋଇ ପ୍ରେସ୍ ଷ୍ଟୋର୍‌ରେ ମହଜୁଦ ରହିଲା । ବାକି ଯେତେ ଟଙ୍କା ବଳିଲା, ତାହା ପ୍ରୋପାଇଟର୍‌ଙ୍କର ଗଚ୍ଛିତ ହାତପାଣ୍ଠି ହେଲା ।

ନବବର୍ଦ୍ଧିତ 'ସହକାର'ର ଆବିର୍ଭାବ ପୂର୍ବକ 'ଉତ୍କଳ ସାହିତ୍ୟ' ଓ 'ମୁକୁର'ଙ୍କୁ କମଣଃ ହୀନପ୍ରମାଣ ସ୍ତରକୁ ଖସାଇଆଣିଲା । ତେଣିକି ସହକାର-ଶଗଡ଼ ନିର୍ଦ୍ୱନ୍ଦ୍ୱରେ ଗଡ଼ି ଚାଲିଲା—ଉପରେ ବସି ଅଡ଼ଉଥିବା ଶଗଡ଼ିଆ ଫୁଲୁଫୁଲିଆ ହାଉଆରେ ଡୋଳଉଥିବା ଅବସ୍ଥାରେ ବି ।

'ସେଦିନ ସହକାର'ର ଚହଲଚହଲ ରକତ 'ଏଦିନ ସହକାର'ରୁ ଶୁଖିଯାଇଛି। ଅସ୍ଥିଚର୍ମରେ କେବଳ ଏବେ ତାର ଅସ୍ତିତ୍ୱ। ବେଳେବେଳେ ନାଡ଼ି ଛାଡ଼ିଯାଏ, ନାସାଶ୍ୱାସର ଗତି ଅଟକିଯାଏ। ତଥାପି ସ୍ୱର୍ଗତ ସମ୍ପାଦକ ବାଲକୃଷ୍ଣଙ୍କ ଆତ୍ମାର ସଞ୍ଜୀବନୀ ଶକ୍ତି ତାକୁ ଏପର୍ଯ୍ୟନ୍ତ କୌଣସିମତେ ବଞ୍ଚାଇରଖିଛି।

'ସହକାର'ର 'ପ୍ରତିଷ୍ଠାତା' ସମ୍ବନ୍ଧରେ ଗୋଟାଏ ଭ୍ରାନ୍ତ ଧାରଣା ଆଧୁନିକ ଯୁବ-ଗୋଷ୍ଠୀର ମନରେ ଚେରଧରିଆସୁଥିବାର ଦେଖାଯାଏ। ଏଭଳି ଅଳୀକ ଧାରଣା ସୃଷ୍ଟି କରିଛି 'ଏବକା ସହକାର'ର ମୂଳ ପୃଷ୍ଠାରେ ମୁଦ୍ରିତ ଥିବା "ପ୍ରାଣ-ପ୍ରତିଷ୍ଠାତା—ବାଲକୃଷ୍ଣ କର" ଧାଡ଼ିଟି। 'ପ୍ରତିଷ୍ଠାତା'ର ଅର୍ଥଠାରୁ 'ପ୍ରାଣ-ପ୍ରତିଷ୍ଠାତା' ଶବ୍ଦର ଅର୍ଥ ସମ୍ପୂର୍ଣ୍ଣ ପୃଥକ୍, ଯାହା ଶିକ୍ଷିତ ସାଧାରଣ ହଠାତ୍ ଧରିପାରନ୍ତି ନାହିଁ। ଏଣୁ ସେମାନେ ତରଳ ବୁଦ୍ଧିର ଅଗଭୀର ବିଚାରରେ ଧରିନେଇଥାନ୍ତି ବାଲକୃଷ୍ଣ କର ସହକାରର ପ୍ରତିଷ୍ଠାତା ବୋଲି। କିନ୍ତୁ କର୍ମବୀର ଲକ୍ଷ୍ମୀନାରାୟଣ ସାହୁ ହିଁ ସହକାରର ପ୍ରକୃତ ପ୍ରତିଷ୍ଠାତା ଓ ମୂଳ ସମ୍ପାଦକ। ତାଙ୍କର ଦାନପୁତ ସହକାରର ରକ୍ଷକରୂପେ ବାଲକୃଷ୍ଣ କର କେବଳ ମାମୁଲି ସମ୍ପାଦକ। 'ପ୍ରାଣ-ପ୍ରତିଷ୍ଠାତା' ଶବ୍ଦର ଶାସ୍ତ୍ରୀୟ ତାତ୍ତ୍ୱିକ ଅର୍ଥ ବାଲକୃଷ୍ଣବାବୁଙ୍କଠାରେ ଆରୋପ କରିବାରେ ଯେ ଯାଥାର୍ଥ୍ୟ ଓ ସମୀଚୀନତା ନାହିଁ, ଏହା ଗମ୍ଭୀରତର ବିଚାର-ଦ୍ୱାରା ହିଁ ପ୍ରତିପାଦନୀୟ।

## (୧୧) ଦିଓଟି ଉଜ୍ଜ୍ୱଳ ପ୍ରସଙ୍ଗ—

ମୁଁ କୁଚିଣ୍ଡା ଉପସହରରେ ପହଞ୍ଚିଲାମାତ୍ରେ ଏସ୍. ଡି. ଓ.ଙ୍କ ଦ୍ୱାରା ରାଜକୀୟ ଅତିଥିରୂପେ ଅଭ୍ୟର୍ଥିତ ହୋଇଥିବା କଥା ପୂର୍ବରୁ କହିଛି। ସେଠାରେ ଅନୂଢ଼ ସେକେଣ୍ଡ୍ ଅଫିସର୍ ଅଦ୍ୱୈତଚରଣ ମହାନ୍ତିଙ୍କ କ୍ୱାର୍ଟର୍ ହୋଇଥିଲା ମୋର ରହଣି ଭବନ। ସେହି ପ୍ରଶସ୍ତ ଭବନଟି ଖୁବ୍ ମଜଭୁତିଆ ପଥରରେ ନିର୍ମିତ ହୋଇଥିଲା। ରାତିରେ ଅଦ୍ୱୈତବାବୁ ଓ ମୁଁ ଦୁଇଟି ଲଗାଲଗି ତୂଳତଳ୍ପାସ୍ତରିତ ପଲଙ୍କରେ ଅଙ୍ଗ ଢାଳି ଗଳ୍ପାମୋଦରେ ମଜ୍ଜି-ରହିଥିଲୁଁ ପ୍ରାୟ ନିଶାର୍ଦ୍ଧପରପର୍ଯ୍ୟନ୍ତ। ତାହାରି ମଧ୍ୟରେ ଅଦ୍ୱୈତବାବୁ ପୂର୍ବରାତିର ଏକ ଅଙ୍ଗେ-ନିଭା ରୋମାଞ୍ଚକର କାହାଣୀ ମତେ ଶୁଣାଇଲେ। ନୈଶଭୋଜନ ପରେ ସେ ଶୋଇଥିଲେ ଦକ୍ଷିଣ ବାତାୟନସଂଲଗ୍ନ ପଲଙ୍କଶଯ୍ୟାରେ। ସନ୍ଧ୍ୟାଠାରୁ ଅବିରାମ ବୃଷ୍ଟି ଓ ଘଡ଼ଘଡ଼ି ଲାଗିରହିଥାଏ। ରାତି ପ୍ରାୟ ଏଗାରଟା ହୋଇଯାଇଥିଲେ ହେଁ ଚକ୍ଷୁ ରହିଥାଏ ବିନିଦ୍ର। ଏହି ସମୟରେ ଶୂନ୍ୟରୁ ଗୋଟାଏ ପ୍ରଚଣ୍ଡ ବଜ୍ର (ଚଡ଼ଚଡ଼ି) ଛୁଟି-ଆସିଲା ସେହି ବାତାୟନପଥ ଦେଇ ଶୟନକକ୍ଷ ମଧ୍ୟକୁ। ତାହା ପର୍ଯ୍ୟଙ୍କଶାୟୀ ଅଦ୍ୱୈତ-ଚରଣଙ୍କର ଠିକ୍ ଛାତି ଉପର ଦେଇ ଗତି କରି ସମ୍ମୁଖବର୍ତ୍ତୀ କଠିନ ପଥର କାନ୍ଥରେ ବାଜି ପୁଣି ଦକ୍ଷିଣ କାନ୍ଥଦେହକୁ ତୀବ୍ରବେଗରେ ଛୁଟିକିଆସିଲା ଏବଂ ତହିଁରେ ପ୍ରତିହତ ହୋଇ ତେରଛଭାବରେ ପୂର୍ବମୁଖା ଛୁଟିଯାଇ ସୁଦୃଢ଼ କାଷ୍ଠକବାଟକୁ ଫୁଟାଇ ଅଗଣା

ଭୂଇଁଗର୍ଭରେ ପଶିଗଲା । ଆଶ୍ଚର୍ଯ୍ୟର କଥା, ଜ୍ୱଳନ୍ତ ବଜ୍ରଟା ପ୍ରକୋଷ୍ଠ ମଧ୍ୟରେ ଲେଉଟ-ପାଉଟ ହେଲାବେଳେ ଦୁଇଥରଯାକ ଉତ୍ତାନଶୟାନ ଅଦ୍ୱୈତବାବୁଙ୍କ ବୁକୁ ଉପରେ ଗତି କଲା, ଅଥଚ ତାଙ୍କ ଅଙ୍ଗର କେଶାଗ୍ର ସୁଦ୍ଧା ସ୍ପର୍ଶ କଲା ନାହିଁ—'ଯାହାକୁ ରଖିବେ ଅନନ୍ତ, କି କରିପାରେ ବଜ୍ରପାତ ?' କିୟତ୍କାଳ ପରେ ବର୍ଷା ବିରମିଲା, ଘଡ଼ଘଡ଼ି ଚଡ଼ଚଡ଼ି ନୀରବିଲା । ରାତିଟାଯାକ କି ହାକିମ କି ପୂଜାରୀ ଚାକର, କାହାରି ଆଖିକି ନିଦ ଆସିଲା ନାହିଁ । ପ୍ରଭାତ ହେଲା ମାତ୍ରେ ଅଦ୍ୱୈତବାବୁ ମଜୁରିଆଙ୍କଦ୍ୱାରା ଯେଉଁଠି ବଜ୍ରଟା ଅଗଣା ଫଟାଇ ମାଟି ଭିତରେ ଖୁବ୍ ଗଭୀରକୁ ଭେଦିଯାଇଥିଲା, ସେପର୍ଯ୍ୟନ୍ତ ଖୋଳାଇ ତା' ମଧ୍ୟରୁ ବଜ୍ରର ଶୀତଳ ପାଲଟିଯାଇଥିବା ପ୍ରକାଣ୍ଡ ଲୁହାଖଣ୍ଡକୁ ବାହାର କରାଇ ପାଖରେ ସାଇତି ରଖିଥିଲେ । ଏହି ରାତିଥିର ଅସ୍ୱାଭାବିକ କାହାଣୀଟି ଜୀବନ୍ତଭାବରେ ବର୍ଣ୍ଣନା କରିସାରିବା ପରେ ସେ ଉକ୍ତ ଲୌହଖଣ୍ଡଟି କାଢ଼ି ମତେ ଦେଖାଇଲେ ଏବଂ ଏହାକୁ କେନ୍ଦ୍ର କରି ନିଷ୍ପାଦିତ ନିଜର ଏକ ଗୁରୁତ୍ୱପୂର୍ଣ୍ଣ ସିଦ୍ଧାନ୍ତକୁ ମୋ ଆଗରେ ପ୍ରକାଶ କଲେ, "ମୁଁ ଆଜୀବନ ଅବିବାହିତ ରହିବି ବୋଲି ଆପାତତଃ ଯାହା ସ୍ଥିର କରିଥିଲି, ଏହି ବଜ୍ରପାତ ତାହାକୁ ପୂର୍ଣ୍ଣ ଶତାଂଶରେ ସମର୍ଥନ କଲା; କାରଣ ମୁଁ ଯଦି ପାରିବାରିକ ଚାପରେ ମୁଣ୍ଡ ନୁଆଁଇ ବୈବାହିକ ଜୀବନକୁ ବରଣ କରିନେଇଥାନ୍ତି, ତା'ହେଲେ ଗଲା କାଲି ରାତିରେ ନିଶ୍ଚୟ ଦୁହିଁକାହୁଁ ଏହି ବଜ୍ରାଗ୍ନିର ଶିକାର ହୋଇଥାନ୍ତୁ ।"

ବନ୍ଧୁଙ୍କର ଏହି ଯୁକ୍ତିକୁ ଖଣ୍ଡନ କରି ମୁଁ ପ୍ରତିଯୁକ୍ତି ବାଢ଼ିଲି, "ସୃଷ୍ଟିଶାସକଙ୍କର ଏକ ଚକ୍ଷୁରେ ପ୍ରଖର ସୌରାଗ୍ନିତାପ, ଅପର ଚକ୍ଷୁରେ ଶୀତସ୍ନିଗ୍ଧ ଜ୍ୟୋତ୍ସ୍ନାଲେପ—ବିଶ୍ୱ-ବାସୀଙ୍କ ପାଇଁ ଉଭୟ ହିଁ ଗ୍ରହଣୀୟ, କୌଣସିଟି ଗର୍ହଣୀୟ ନୁହେଁ । ଆପଣ କ୍ଲାଇବ୍‌ଙ୍କ ଜୀବନଦର୍ଶନକୁ ବରଣ କରନ୍ତୁ । ନିଜର ବିଡ଼ମ୍ବିତ ଜୀବନକୁ ନିତାନ୍ତ ମୂଲ୍ୟହୀନ ଓ ଅଦରକାରୀ ମଣି ସେ ଥର ଥର କରି ତିନିଥର ନିଜ ଗୁଳିଭରା ବନ୍ଧୁକକୁ ନିଜ ଛାତିକୁ ଦେଖାଇ ଟିପି ଆତ୍ମହତ୍ୟା କରିବାକୁ ଉଦ୍ୟମ କରିଥିଲେ; କିନ୍ତୁ କୌଣସି ଥରର ଗୁଳି ଲକ୍ଷ୍ୟସ୍ଥଳରେ ବାଜିଲା ନାହିଁ । ଏହି ବ୍ୟର୍ଥତା ଫଳରେ ଯୁବକ କ୍ଲାଇବ୍‌ଙ୍କ ହୃଦୟରେ ବିସ୍ଫୋରିତ ଜ୍ଞାନର ସ୍ଫୁରଣ ହେଲା; ସେ ସ୍ଥିର କଲେ, 'ଭଗବାନ୍ ମତେ ଏତେ ଶୀଘ୍ର ମାରିଦେବାକୁ ଇଚ୍ଛା କରନ୍ତିନାହିଁ; ବୋଧହୁଏ ମୋଦ୍ୱାରା କିଛି ବଡ଼ କାମ ସାଧନ କରାଇବା ତାଙ୍କର ଉଦ୍ଦେଶ୍ୟ ।' କ୍ଲାଇବ୍‌ଙ୍କ ପରି ଆପଣଙ୍କର ମଧ୍ୟ କାଲି ରାତିର ଘଟଣାରୁ ଯଥେଷ୍ଟ ଶିକ୍ଷା କରିବାର ଅଛି । ନିଶ୍ଚିତ ମୃତ୍ୟୁର ଖରଧାର ଅସି ଆପଣଙ୍କୁ ଛୁଇଁ ସୁଦ୍ଧା ପାରିଲା ନାହିଁ; ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ, ଆପଣଙ୍କ ଭବିଷ୍ୟତ୍ ଅତି ଉଜ୍ଜ୍ୱଳ, ଶତ୍ରୁବିରହିତ । ଏଣୁ ସୁଖର ସଂସାରୀ-ଜୀବନ ଗଢ଼ିବା ଆପଣଙ୍କ ପକ୍ଷରେ ଆଶୁ କାମ୍ୟ । ଆପଣଙ୍କୁ ଚିରକୁମାର ରଖିବା ଭଗବାନ୍‌ଙ୍କର ଅଭିପ୍ରେତ ନୁହେଁ । ସେଥିପାଇଁ କାଲିକାର ସାଂଘାତିକ ବିପଦ ଆପଣଙ୍କ ଜୀବନକୁ ବଜ୍ର ପରି ଦୃଢ଼ ଓ ନିରାପଦ କରିଦେଇଗଲା ।"

[ମୋ ପକ୍ଷରେ ପରମ ଆନନ୍ଦର କଥା, ପ୍ରାୟ ବର୍ଷକ ମଧ୍ୟରେ ମୋର ହସ୍ତଗତ ହୋଇଥିଲା ତାଙ୍କ ବିବାହୋତ୍ସବର ଶୁଭ ନିମନ୍ତ୍ରଣ ପତ୍ର—ମୁଁ ବାଢ଼ିଥିବା 'ପ୍ରତିଯୁକ୍ତି'ର ବିଜୟଗୌରବସୂଚକ ଅଭିନନ୍ଦନ ପତ୍ରିକା । ଗଡ଼ଜାତ ମିଶ୍ରଣର ସାମାନ୍ୟ ପରେ ଅଦ୍ୱୈତଚରଣ କଟକର ଜିଲାପାଳ ଆସନ ଅଳଂକୃତ କରିଥିଲେ ଏବଂ ଆଇ. ଏ. ଏସ୍. ପଦାଧିରୂଢ଼ ହୋଇ ଯଥାକାଳରେ ସସମ୍ମାନ ଅବସର ଗ୍ରହଣ କରିଥିଲେ ।]

ପରଦିନ ସକାଳେ ଷୋଳ-ସତର ବର୍ଷ ବୟସର ବେଶ୍ ଚମ୍ପା ପିଲାଟିଏ ଅଦ୍ୱୈତ ବାବୁଙ୍କ କ୍ୱାର୍ଟର୍‌କୁ ଆସି ଆମ ଦୁହିଙ୍କୁ ନମସ୍କାରପୂର୍ବକ ଦଣ୍ଡାୟମାନ ରହିଲା । ଅଦ୍ୱୈତ ବାବୁ ମତେ ତାର ପରିଚୟ ଦେଲେ ଏବଂ ମୋ ପରିଚୟ ତଥା ଆଗମନର ଉଦ୍ଦେଶ୍ୟ ତାକୁ ଜଣାଇଲେ । ମୋ କୌଳିକ ସଂଜ୍ଞା 'କର' ଶୁଣି ସେ ଚମକିଉଠିଲା ପରି ବ୍ୟଗ୍ର କଣ୍ଠରେ ପ୍ରଶ୍ନ କଲା, "ଆପଣ ମୂଳବସନ୍ତ ଶାସନର 'କର'ବଂଶୀ କି ?" ମୁଁ ଇତିବାଚକ ଭଙ୍ଗୀରେ ମସ୍ତକ ସଞ୍ଚାଳନ କରନ୍ତେ ଯୁବକଟି ଚଟ୍‌କିନା ଧରିନେଲା ଯେ, ମୋ ନିବାସ ମୂଳବସନ୍ତରେ । ସଙ୍ଗେ ସଙ୍ଗେ କହିଲା, "ଆପଣଙ୍କ ଗ୍ରାମର ବାଉରିବନ୍ଧୁ କର କୁଚିଣ୍ଡାକୁ ଆସି ଏ ଅଞ୍ଚଳରେ ପ୍ରାଥମିକ ଶିକ୍ଷାଶାଳା ସ୍ଥାପନ କରିଥିଲେ ଏବଂ ଏହି ଉପସହରର ନିକଟତମ ଉପକଣ୍ଠରେ ଘରଦ୍ୱାର ଜମିବାଡ଼ି କରି ସକୁଟୁମ୍ବ ବାସ କରୁ କରୁ ଏଠାର ସ୍ଥାୟୀ ବାସିନ୍ଦା ହୋଇଯାଇଛନ୍ତି । ସେ ଆମରି ଗ୍ରାମର ଅଧିବାସୀ । ବାମଣ୍ଡା ରାଜ୍ୟର ସବୁ ଅଞ୍ଚଳବାସୀ ତାଙ୍କୁ ଶିକ୍ଷାଗୁରୁରୂପେ ସମ୍ମାନିତ କରିଆସୁଛନ୍ତି । ବୟସରେ ବୃଦ୍ଧ ହେଲେହେଁ ଶକ୍ତି ସାମର୍ଥ୍ୟରେ ଓ ଚଳଚ୍ଚଳରେ ସେ ବେଶ୍ ସୁସ୍ଥ ଅଛନ୍ତି ।"

ମେଧାବୀ ଯୁବକଟିର ଏହି ବିବୃତିର ପରିପୂରକରୂପେ ମୁଁ ସଂଯୋଗ କଲି, "କେବଳ ବାମଣ୍ଡା ନୁହେଁ, ଗତ ଊନବିଂଶ ଶତାବ୍ଦୀର ଦ୍ୱିତୀୟ ପାଦରେ ଆମ କରବଂଶୀ ପୂର୍ବପୁରୁଷେ ସବୁ ଗଡ଼ଜାତରେ ଶିକ୍ଷାଲୋକ ଜାଳିବାର ଅଭିଯାନ ଆରମ୍ଭ କରିଥିଲେ ବୋଲି ମୂଳ-ବସନ୍ତର କରବଂଶ ଛବିଶ ଗଡ଼ଜାତର ଗୁରୁବଂଶରୂପେ ଏପର୍ଯ୍ୟନ୍ତ ପୂଜିତ ହେଉଛନ୍ତି । ଏବେ ମଧ୍ୟ ବଣାଇ (ବଣାଇଗଡ଼), କଳାହାଣ୍ଡି (ଭବାନୀପାଟଣା), କେନ୍ଦୁଝର, ମୟୂରଭଞ୍ଜ, ଏପରି କି ମଧ୍ୟପ୍ରଦେଶ (ରାୟଗଡ଼ ଜିଲାର ବଡନା ଅଞ୍ଚଳାନ୍ତର୍ଗତ ବଟାଙ୍ଗିପାଲି ଗ୍ରାମ) ପ୍ରଭୃତି ସୁଦୂର ଭୂଖଣ୍ଡରେ ଆମ କରବଂଶର ଶତାଧିକ ପରିବାର ତତ୍ରତ୍ୟ ସ୍ଥଳର ନାଗରିକ-ମାନଙ୍କ ପ୍ରତିବେଶୀରୂପେ ସୁଖସ୍ୱଚ୍ଛନ୍ଦରେ ସହାବସ୍ଥାନ କରୁଛନ୍ତି ।"

ଏହି ଶ୍ରୀମନ୍ତ ଯୁବକଟିର ନାମ ସୁରେନ୍ଦ୍ରନାଥ ଶର୍ମା । ସେ ସେହି ବର୍ଷ (୧୯୩୧) ସଦ୍ୟ ମାଟ୍ରିକୁଲେସନ୍ ପରୀକ୍ଷା ଦେଇଥାନ୍ତି । ଅଦ୍ୱୈତବାବୁ ଏହି ଉତ୍ସାହଶୀଳ ବାଳକଟିକୁ ସବୁମନ୍ତେ ସାହସର ଇନ୍ଧନ ଯୋଗାଇ ଆସୁଥାନ୍ତି । ସୁରେନ୍ଦ୍ରନାଥ ତାଙ୍କ ଗ୍ରାମକୁ ଫେରିଲା-ମାତ୍ରେ ବାଉରିବନ୍ଧୁଙ୍କୁ ମୋ ଆଗମନ ବାର୍ତ୍ତା ଜଣାଇଲେ । ମତେ ଦେଖିବାକୁ ବାଉରିବନ୍ଧୁଙ୍କ ପରିବାର ଏତେ ଉଚ୍ଛନ ହୋଇପଡ଼ିଲେ ଯେ, ଉପରବେଳା ବର୍ଷୀୟାନ୍ ବାଉରିବନ୍ଧୁ ଆସି

ଅଦ୍ୱୈତ ବାବୁଙ୍କ ବଙ୍ଗଳାରେ ହାଜର ହୋଇଗଲେ ଏବଂ ମତେ ଦେଖିଗଲେ ତାଙ୍କ ଘରକୁ । ମୁଁ ରାତିଟି ସେଠାରେ କଟାଇ ପରଦିନ ଖାଇପିଇ କୁଚିଣ୍ଡାକୁ ବାହୁଡ଼ି ଆସିଲି ।

ଗଡ଼ଜାତ ଗସ୍ତ ସାରି କଟକ ଫେରିବାର ଦୁଇମାସ ପରେ ଶ୍ରୀମାନ୍ ଶର୍ମାଙ୍କଠାରୁ ଶୁଭ-ଚିଟାଉଟିଏ ପାଇଲି—ପ୍ରଥମ ଡିଭିଜନ୍‌ରେ ପାସ୍ କରି ସେ ବୃତ୍ତି ପାଇବାର ଯୋଗ୍ୟତା ହାସଲ କରିଛନ୍ତି ଏବଂ ବାମଣ୍ଡା ଷ୍ଟେଟ୍ (ରାଜପ୍ରଶାସନ)ର ପୂର୍ଣ୍ଣ ପୃଷ୍ଠପୋଷକତାରେ ରେଭେନ୍ସା କଲେଜରେ ଉଚ୍ଚ ଶିକ୍ଷା ଲାଭ କରିବାପାଇଁ ଆସନ୍ତା ଜୁଲାଇ ପହିଲାବେଳକୁ କଟକ ଆସି ମୋ ସହିତ ପହିଲେ ବନ୍ଧୁସାକ୍ଷାତ୍ କରିବେ ।

ବସ୍ତୁତଃ ତାହାହିଁ ଘଟିଥିଲା । ରେଭେନ୍ସା କଲେଜର କଳା (Arts) ବିଭାଗୀୟ ଆଇ. ଏ. ଶ୍ରେଣୀରେ ନାମଲେଖାର ପ୍ରାଥମିକ ବ୍ୟବସ୍ଥା କରିସାରି ସୁରେନ୍ଦ୍ରନାଥ ମୋ ପାଖକୁ ଆସିଲେ । ତାଙ୍କ ମୋ ମଧ୍ୟରେ ବୟସର ବ୍ୟବଧାନ ଥିଲା ପ୍ରାୟ ୩୦ ବର୍ଷ । ଦୀର୍ଘ ଛଅ ବର୍ଷ ପର୍ଯ୍ୟନ୍ତ କ୍ରମାଗତଭାବରେ ସେ କଟକରେ ଅଧ୍ୟୟନ କରି ଉଚ୍ଚ କୃତିତ୍ୱ ସହ ଏମ୍. ଏ. ପଦବୀର ଅଧିକାରୀ ହେଲେ । ଏହା ଫଳରେ ଆମ ଦୁହିଙ୍କ ଭିତରେ ବନ୍ଧୁତ୍ୱର ମୃଣାଳବନ୍ଧନ ନିବିଡ଼ରୁ ନିବିଡ଼ତର ହୋଇଉଠିଥିଲା । ଦୁଇ ହୃଦୟର ଭାବବିନିମୟ-ପିପାସା ନିୟମିତଭାବରେ ଚରିତାର୍ଥ ହେଉଥିଲା ରବିବାସରୀୟ ଛୁଟିଦିବସମାନଙ୍କରେ ।

ରେଭେନ୍ସା କଲେଜର ଚୂଡ଼ାନ୍ତ ଶିକ୍ଷା ସାଙ୍ଗ ହେଲା ପରେ ଏହି ଉତ୍କଳ ପ୍ରତିଭାଧର ନିଜ ଷ୍ଟେଟ୍‌କୁ ପ୍ରତ୍ୟାବର୍ତ୍ତିନପୂର୍ବକ ମାଜିଷ୍ଟ୍ରେଟ୍‌ରୂପେ ରାଜଧାନୀ ଦେବଗଡ଼ରେ ଅବସ୍ଥାପିତ ହୋଇ ଖୁବ୍ ସୁନାମ ଅର୍ଜନ କରିଥିଲେ । ତନ୍ମଧ୍ୟରେ ସେ ବି. ଏଲ୍. ପରୀକ୍ଷାରେ ମଧ୍ୟ ଉତ୍ତୀର୍ଣ୍ଣତା ଲାଭ କରିଥିଲେ । ତାଙ୍କର ସୃଜନୀ ପ୍ରତିଭା କଟକ ତଥା ଦେବଗଡ଼ର ସାହିତ୍ୟିକ ବାତାବରଣ ମଧ୍ୟରେ ବିକାଶ ଲାଭ କରିବାର ପ୍ରକୃଷ୍ଟ ସୁଯୋଗ ପାଇଥିଲା । ତାହାର ଫଳସ୍ୱରୂପ ସୁରେନ୍ଦ୍ରନାଥଙ୍କ ମଧୁସ୍ରାବୀ ଲେଖନୀରୁ କଳକଳ ଗିରିଝର ପରି ଝରିଆସିଥିଲା କାବ୍ୟକବିତା, ନାଟକନାଟିକା, ପ୍ରବନ୍ଧନିବନ୍ଧର ଗୁଚ୍ଛିଏ ମୂଲ୍ୟବାନ୍ କଳାକୃତି । ସେଗୁଡ଼ିକ ସାହିତ୍ୟପ୍ରିୟ ବାମଣ୍ଡା ରାଜଦରବାର ଆନୁକୂଲ୍ୟରେ ସୁନ୍ଦର ପରିପାଟୀ ସେଜ ପ୍ରକାଶିତ ହୋଇଥିଲା ।

ଗଡ଼ଜାତ ମିଶ୍ରଣ ପରେ ତାଙ୍କ ଚାକିରି ଓଡ଼ିଶା ସରକାରର କର୍ତ୍ତୃତ୍ୱାଧୀନକୁ ଚାଲିଆସିଥିଲା । ସେ କିଛି କାଳ ବିଚାରବିଭାଗରେ କାର୍ଯ୍ୟ କଲା ପରେ ଆଇ.ଏ.ଏସ୍. ସ୍ତରକୁ ଉନ୍ନୀତ ହୋଇ ଓଡ଼ିଶା ସେକ୍ରେଟେରିଏଟ୍ (ସଚିବାଳୟ)ର ଏକାଧିକ ବିଭାଗର ଜଏଣ୍ଟ ସେକ୍ରେଟେରିରୂପେ ବିପୁଳ ଖ୍ୟାତିର ସହିତ କର୍ମ ସମ୍ପାଦନପୂର୍ବକ ଯଥା ସମୟରେ ରାଜନିୟୋଗରୁ ଅବସର ନେଇଛନ୍ତି । ଏବେ ମଧ୍ୟ ଜନସାଧାରଣ ତାଙ୍କୁ ଝୁରି ହେଉଛନ୍ତି । ସେ ଥିଲେ ବିପତ୍କାଳର ବନ୍ଧୁ । ତାଙ୍କଭଳି ଉଚ୍ଚ ଯୋଗ୍ୟତାସମ୍ପନ୍ନ ବହୁଗୁଣୋପେତ ନିରପେକ୍ଷ ସୁଦକ୍ଷ ପ୍ରଶାସକ ଓଡ଼ିଶାରେ ଅତି ବିରଳ । ଓଡ଼ିଶା ରାଜସେବାରେ ସେ ଯେତେ କାଳ ରହିଲେ, ତାଙ୍କ

ସହିତ ମୋର କଲମବନ୍ଧୁ (pen friend) ସମ୍ପର୍କ ଅବ୍ୟାହତ ରହିଥିଲା, ମଧ୍ୟେ ମଧ୍ୟେ ବରାବର ପାରସ୍ପରିକ ସାକ୍ଷାତ୍କାର ଘଟୁଥିଲା । ଅବସରପ୍ରାପ୍ତି ପରେ ସ୍ୱଗୃହକୁ ଚାଲିଯିବା ପୂର୍ବରୁ ସେ ମୋ କଟକ ବାସଭବନରେ ଓଳିଏ ସସ୍ତ୍ରୀକ ଅବସ୍ଥାନ କରି ଛଳଛଳ ନେତ୍ରରେ ଆମ ପରିବାରଠାରୁ ବିଦାୟ ଗ୍ରହଣ କରିଥିଲେ ।

ଗଡ଼ଜାତ-ବଳୟର ନିର୍ଦ୍ଧାରିତ ଏକତୃତୀୟାଂଶ ଅଞ୍ଚଳ ପରିକ୍ରମାର ମୁଖ୍ୟ ଲକ୍ଷ୍ୟ ସଫଳ ହେବା ସଙ୍ଗେ ସଙ୍ଗେ ଉପଜାତ (byproduct) ସୁଫଳସ୍ୱରୂପ ଯେଉଁ ଦିଓଟି ଉଜ୍ଜ୍ୱଳ ପ୍ରତିଭା ସହିତ ସମ୍ୟକ୍ ପରିଚିତ ହୋଇଥିଲି, ସେଥିମଧ୍ୟରୁ ପ୍ରଥମଟିର ଇତିବୃତ୍ତ ଉପରେ ବର୍ଣ୍ଣନ କଲି । ଏବେ ଦ୍ୱିତୀୟ ପ୍ରତିଭାଟିର ଦୀପ୍ତି ବୃତ୍ତାନ୍ତ ଉପସ୍ଥାପନ କରିବାକୁ ଯାଉଛି ।

ବାମଣ୍ଡା ଛାଡ଼ିବାପରେ 'ଖଣ୍ଡାଧାର' ପ୍ରପାତଶୋଭିନୀ ବଣାଇ ରାଜ୍ୟରେ ସୁଖପ୍ରଦ ସପ୍ତାହଟିଏ କଟାଇ ଗାଙ୍ଗପୁର ଷ୍ଟେଟ୍‌ର ରାଜଧାନୀ ସୁନ୍ଦରଗଡ଼ ସହର ଅଭିମୁଖରେ ଯାତ୍ରା କରିଥିଲି । ସେଠାରେ ରାଜକର୍ତ୍ତୃପକ୍ଷ-ପରିଚାଳିତ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ (ଯହିଁରେ ଚତୁର୍ଥରୁ ଏକାଦଶ ପର୍ଯ୍ୟନ୍ତ ଆଠ ଶ୍ରେଣୀ ଥାଏ) ମୋର ଜଣେ ଗ୍ରାମୀଣ ଜ୍ୟେଷ୍ଠ ଭ୍ରାତା ବ୍ରହ୍ମାନନ୍ଦ କର ଶିକ୍ଷକରୂପେ କାର୍ଯ୍ୟ କରୁଥିଲେ । ସେହି ହାଇସ୍କୁଲ-ପରିସରର ଦକ୍ଷିଣ-ପାର୍ଶ୍ୱ ପକ୍‌କା ରାସ୍ତାକୁ ଲାଗିଥିବା ଏକ ନାତିବୃହତ୍ ପକ୍‌କା-କଚ୍ଛା ଗୃହରେ ବ୍ରହ୍ମାନନ୍ଦ ପୁତ୍ରକନ୍ୟାକଳତ୍ର ସହ ଅବସ୍ଥାନ କରୁଥିଲେ । ସେମାନେ ମୋ ଉପସ୍ଥିତି ସମୟକୁ ଚାତକ-ପ୍ରାୟ ପ୍ରତୀକ୍ଷା କରି ରହିଥାନ୍ତି ଉତ୍କଣ୍ଠ ନେତ୍ରରେ । ମତେ ଆଣିଥିବା ଦ୍ରୁତଗାମୀ ଯାନଟି ତାଙ୍କ ଦାଣ୍ଡଦ୍ୱାର ସମ୍ମୁଖରେ ଅଟକିଯିବା ମାତ୍ରେ ସମଗ୍ର ପରିବାର ସରଗଚାନ୍ଦକୁ ହାତ-ମୁଠାରେ ଧରିଲା ପରି ଏତେ ଆତ୍ମହରା ହୋଇଉଠିଲେ ଯେ, ମୁଁ ସେମାନଙ୍କର ସେହି କଳନାତୀତ ହର୍ଷବିହ୍ୱଳତା ଦେଖି ତଟସ୍ଥ ହୋଇଯାଇଥିଲି । ସ୍ୱଗ୍ରାମରୁ ଦୀର୍ଘକାଳ ବିଚ୍ଛିନ୍ନ ହୋଇ ଏତେ ଦୂର ଗଡ଼ଜାତରେ ପଡ଼ିରହିଥିବା ଯେକୌଣସି ପରିବାର ସୌଭାଗ୍ୟବଶତଃ ନିଜ ଜ୍ଞାତି ପଡ଼ୋଶୀ ପ୍ରିୟ ପରିଜନଟିଏ ପାଇଲେ ଏପରି ଆନନ୍ଦୋତ୍‌ଫୁଲ୍ଲ ହେବା ଯେ ଅତି ସ୍ୱାଭାବିକ, ଏତେ ଦିନେ ନିବିଡ଼ଭାବରେ ଉପଲବ୍ଧି କଲି । ଏଣୁ ସେମାନଙ୍କ ସ୍ନେହ-ସୋହାଗଭରା ବାଧ୍ୟବାଧକ ଅନୁରୋଧକୁ ଏଡ଼ିଦେଇ ବେଗାବେଗି ସୁନ୍ଦରଗଡ଼ ଛାଡ଼ିବା ମୋ ପକ୍ଷରେ ଆଦୌ ସମ୍ଭବପର ହୋଇପାରିନଥିଲା, କର୍ତ୍ତବ୍ୟନିଷ୍ଠାର ଦଂଶନ ତୀବ୍ରତର ହେଲେ ସୁଦ୍ଧା । ଯାହା ଭାଗ୍ୟରେ ଏଭଳି ବିରଳ ସୁଯୋଗ କେବେହେଲେ ଜୁଟେନା, ସେ ନିର୍ଜନ ଦ୍ୱୀପର ହତଭାଗ୍ୟ ନିର୍ବାସିତ ପରି—

'ଆଆନ୍ତା ଯଦି ମୋର    ବିହଙ୍ଗ ପକ୍ଷ
ଲଙ୍ଘି ଭୀଷଣ ଗିରି    ସମୁଦ୍ର ବକ୍ଷ
ଦେଖନ୍ତି ପ୍ରିୟଜନ-    ମୁଖକମଳ,
ହୁଅନ୍ତା ଏ ସନ୍ତପ୍ତ    ପ୍ରାଣ ଶୀତଳ'

ଅବାସ୍ତବ ଭାବନା କରି ମନଃସନ୍ତାପ ମନରେ ମାରିବାଦ୍ୱାରାହିଁ ଆତ୍ମସାନ୍ତ୍ୱନା ଲଭ କରିବାକୁ ବାଧ୍ୟ ହୁଏ । ଏହାଛଡ଼ା ଉପାୟାନ୍ତର କ'ଣ ଥିଲା ସେକାଳରେ ବିଚରା ସୁଦୂର ପ୍ରବାସୀ ପକ୍ଷରେ ? ଏକଥା ଏବକା ଲୋକଙ୍କୁ ନିଶ୍ଚୟ ଅପସନ୍ଦ ଲାଗିବ, କାରଣ ଆଧୁନିକ ବିଜ୍ଞାନର ଅସମ୍ଭବକୁ ସମ୍ଭବ କରିଥିବା ଚମତ୍କାରୀ କରାମତିରେ ପୃଥିବୀଟା ଛୋଟ ହୋଇ-ଯାଇଛି ମନସ୍ତାତ୍ତ୍ୱିକ କଳନାର ଗତି ଫିତାରେ—ସୁଦୂର ହୋଇଛି ଅଦୂର, ଦୁର୍ଲଭ ହୋଇଛି ସୁଲଭ; କିନ୍ତୁ ଏହା ସଙ୍ଗେ ସଙ୍ଗେ ନିଶ୍ଚୟ ସ୍ୱୀକାର କରିବାକୁ ହେବ ଯେ, ଏବେ ଦୁନିଆରୁ ସ୍ନେହ, ମମତା, ଶାନ୍ତି, ପ୍ରୀତି, ମୈତ୍ରୀ, ସତ୍ୟ, ଅହିଂସା ପ୍ରଭୃତି ମାନବିକ କୋମଳ ଗୁଣମାନ ସମ୍ପୂର୍ଣ୍ଣ ଉଭେଇଯାଇଛି । ମାନବ ହୋଇଛି ଦାନବ, ବିଶ୍ୱ ହୋଇଛି ଖାଣ୍ଡବ ।

ଜଗନ୍ନାଥ ପ୍ରତିହାରୀ ନାମରେ ମୋର ଜଣେ ପତ୍ରବନ୍ଧୁ ଥିଲେ । ତାଙ୍କ ଜନ୍ମସ୍ଥଳୀ ଗୁନ୍ଦିବାଲ ନିକଟସ୍ଥ ଗୋଲଡ଼ିଆ ଗ୍ରାମ ହେଲେହେଁ ସୁନ୍ଦରଗଡ଼ ସେତେବେଳେ ହୋଇଥାଏ ତାଙ୍କର ପ୍ରିୟ ବାସସ୍ଥଳୀ । ପ୍ରତିହାରୀ ବାବୁ ବନ୍ଧୁପ୍ରେମୀ ହେବା ସଙ୍ଗେ ସଙ୍ଗେ ସାହିତ୍ୟ-ପ୍ରେମୀ, କାବ୍ୟକବିତାରସିକ ଓ ଶିଶୁସାହିତ୍ୟିକ । ସୁନ୍ଦରଗଡ଼ରେ ସେ ଦକ୍ଷ ଇଂରେଜି ଶିକ୍ଷକ-ରୂପେ ଖୁବ୍ ନାଆଁ କମେଇଥାନ୍ତି ଓ ତା' ସହିତ ଯଥେଷ୍ଟ ଅର୍ଥ ମଧ୍ୟ କମେଉଥାନ୍ତି । ମଧେ ମଧେ ସେଠା ହାଇସ୍କୁଲରେ କେହି ଶିକ୍ଷକ ଛୁଟିରେ ଗଲେ ପ୍ରତିହାରୀଙ୍କୁ ତାଙ୍କ ସ୍ଥାନରେ ସାମୟିକ ଶିକ୍ଷକଭାବରେ ନିଯୁକ୍ତ ଦିଆଯାଏ । ଏଣୁ ଆର୍ଥିକ ସ୍ୱଚ୍ଛଳତାର ପ୍ରାଚୁର୍ଯ୍ୟରେ ତାଙ୍କର ଏକକ ପ୍ରବାସିଜୀବନ ବେଶ୍ ସୁଖସ୍ୱାଚ୍ଛନ୍ଦ୍ୟ ଓ ଆନନ୍ଦଆମୋଦରେ ଅତିବାହିତ ହୋଇ-ଯାଉଥାଏ । ସୁନ୍ଦରଗଡ଼ ସହରର ନିସର୍ଗ ସୁନ୍ଦର ପରିବେଶ ମଧ୍ୟରେ 'ସହକାର'ର ସେ ଥିଲେ ଏକନିଷ୍ଠ ଗ୍ରାହକ ଓ ସ୍ୱେଚ୍ଛିକ ପ୍ରଚାରକ । ମୁଁ ସ୍ଥାନୀୟ ଭାଇ-ଭାଉଜଙ୍କ ଡେରାର ଦାଣ୍ଡ (ବୈଠକ) ଘରେ ଆସ୍ଥାନ ଜମେଇଥାଏଁ । ଜଗନ୍ନାଥ ବାବୁ ପ୍ରାୟ ପ୍ରତ୍ୟହ ସନ୍ଧ୍ୟା-ସକାଳେ ମୁଁ ରହୁଥିବା ବହିଃକକ୍ଷକୁ ଆସନ୍ତି ସୁଖ-ଦୁଃଖ ହେବାକୁ, ସାହିତ୍ୟଚର୍ଚ୍ଚା କରିବାକୁ, ବିଶେଷ କରି ତାଙ୍କ ନେତୃତ୍ୱରେ ସଙ୍ଗଠିତ ସହକାର ଗ୍ରାହକସଂଗ୍ରହ ଅଭିଯାନର ଦୈନନ୍ଦିନ ଫଳାଫଳ ଜଣାଇବାକୁ । ସେଠିକା ହାଇସ୍କୁଲରେ ଅଧ୍ୟୟନ କରୁଥିବା ବାର ବର୍ଷ ବୟସର ସୁଶୀଳ ଛାତ୍ର ବିନୋଦଚନ୍ଦ୍ର ନାୟକ ତାଙ୍କ ସଙ୍ଗରେ ବରାବର ସବୁଦିନେ ଆସେ—ପ୍ରତିହାରୀବାବୁ ତାର ଗୃହଶିକ୍ଷକ ଓ ସ୍ଥାନୀୟ ଅଭିଭାବକ । ସେ ମଧ୍ୟ 'ସହକାର'ର ଜଣେ ଗ୍ରାହକ ଓ ଏକାଗ୍ର ପାଠକ । ଆମେ ଦୁଇ ବନ୍ଧୁ ବିଭିନ୍ନ ପ୍ରସଙ୍ଗରେ ଆଲୋଚନା କରୁଥିଲାବେଳେ ଆଗ୍ରହୀ ଛାତ୍ରଟି ଉତ୍କର୍ଣ୍ଣ ହୋଇ ତାହା ଶୁଣୁଥାଏ । ଲକ୍ଷ୍ୟ କଲି, ମୋଠାରେ ତାର ଅଚଳା ଭକ୍ତି । ଦିନେ ବନ୍ଧୁ ପ୍ରତିହାରୀ ମତେ ଜଣାଇଲେ, "ବିନୋଦ ମୋର ପ୍ରିୟତମ ଶିଷ୍ୟ । ମା' ବୀଣାପାଣିଙ୍କର ତା' ପ୍ରତି କୃପା କଟାକ୍ଷ ଅଛି । ସହକାର ପତ୍ରିକାରେ ଯେତେ କବିତା ବାହାରେ, ସବୁ ସେ ପଢ଼େ; କିନ୍ତୁ ଆପଣଙ୍କ କବିତାଗୁଡ଼ିକର ସ୍ୱାଦ ତାକୁ ସବୁଠୁ ବେଶୀ ଭଲ ଲାଗେ, ତେଣୁ ତହିଁରେ ଶ୍ରେଷ୍ଠତ୍ୱ ଆରୋପ କରି ତନ୍ନିହିତ ଶୈଳୀର ରଚନାଭଙ୍ଗୀକୁ ସର୍ବାଧିକ ଆଦର କରେ ଏବଂ

ଆପଣଙ୍କୁ ମନମଧ୍ୟରେ ଗୁରୁର ଆସନ ଦେଇ ଏବେ କେତେ ଦିନ ହେଲା କବିତାଲେଖା ଆରମ୍ଭ କରିଛି । ଯାହା ଯେତେବେଳେ ଲେଖେ, ମତେ ଦେଖାଏ, କେତେକ ସ୍ଥଳରେ ପରିବର୍ତ୍ତନ କରିବାକୁ ମୁଁ ଦିତାଏଁ, ତଦନୁଯାୟୀ ସେ ସଜାଡ଼ିନିଏ । ଆଶୀର୍ବାଦ କରନ୍ତୁ, ବିନୋଦର ଭାବୀ ଜୀବନ ସାର୍ଥକ କବିଜୀବନ ହେଉ ।" [ଏହି ସ୍ନେହୀ ବନ୍ଧୁ ଜଗନ୍ନାଥ ପ୍ରତିହାରୀଙ୍କର ୮୦ ବର୍ଷ ବୟସରେ ଜୀବନାବସାନ ଘଟିଛି ୧୯-୧-୧୯୮୭, ସୋମବାର ଦିନ ତାଙ୍କ ସ୍ୱଗ୍ରାମ ଗୋଲଡ଼ିଆରେ—ସମାଜ, ୨୭-୧-୧୯୮୭] ।

ପ୍ରାଣଭରି ସନ୍ତୋଷରେ କୁଢ଼େଇ ହୋଇପଡ଼ିଲି । କାରଣ ମୁଁ ମଧ୍ୟ ଏହି ଛାତ୍ରଟି ପରି ବାରବର୍ଷ ବୟସରେ ଚତୁର୍ଥ ଶ୍ରେଣୀରେ ପଢ଼ୁଥିଲାବେଳେ ଛୋଟ ଛୋଟ ପଦ୍ୟରଚନା ଆରମ୍ଭ କରିଥିଲି ଏବଂ ମୋର ପଞ୍ଚମ ଶ୍ରେଣୀରେ ରଚିତ ଏକ ପଦ୍ୟ ହାତଲେଖା ମାସିକ ପତ୍ରିକା 'ଆଲୋକ'ରେ ପ୍ରକାଶିତ ହୋଇଥିଲା । ବିନୋଦଚନ୍ଦ୍ରଙ୍କୁ ଶୁଣାଇ ଗଦ୍‌ଗଦ କଣ୍ଠରେ ପ୍ରତିହାରୀଙ୍କୁ କହିଲି, "ଯେଉଁ ବାଗ୍‌ଦେବୀଙ୍କ ଆଶୀର୍ବାଦରେ ବାଲ୍ମୀକି-ବ୍ୟାସ-କାଳିଦାସ-ଜୟଦେବ ଓ ସାରଳା-ଉପେନ୍ଦ୍ର-ବଳଦେବ ବିଶ୍ୱବିଶ୍ରୁତ କବି, ଯେଉଁ ବାଙ୍ମୟୀଙ୍କ କରୁଣା-ପ୍ରସାଦରୁ ରାଧାନାଥ-ମଧୁସୂଦନ-ଗଙ୍ଗାଧର-ଚିନ୍ତାମଣି-ବଳଭଦ୍ର ଉତ୍କଳର ବରକବି, ସେହି ଜଗନ୍ମାତା ସରସ୍ୱତୀଙ୍କର ଆଶୀର୍ବାଦରେଣୁ ଯେତେବେଳେ ତୁମ ଶିଷ୍ୟର ମଥାପରେ ଝରୁଛି, ସ୍ଥିର ମଣିଷ ହୋଇ ମୁଁ କି କେବେହେଲେ ଆଶୀର୍ବାଦ ପ୍ରଦାନ କରିବାକୁ ଭାଜନ ହୋଇପାରେଁ ? ତେବେ, ମୁଁ ଯୋଡ଼ହସ୍ତରେ ସେଇ ବାଗୀଶ୍ୱରୀଙ୍କ ଚରଣାରବିନ୍ଦରେ ଜଣା କରୁଛି, ସେ ବାଳୁତ-କବି ବିନୋଦଚନ୍ଦ୍ରଙ୍କ ପ୍ରତି ଅଧିକରୁ ଅଧିକ ପ୍ରସନ୍ନା ହୁଅନ୍ତୁ । ଐକାନ୍ତିକ ଏକାଗ୍ରତା ଓ ବଳବତୀ ସାଧନା କେବେହେଁ ନିଷ୍ଫଳା ହୁଏ ନାହିଁ, ଦିନେ-ନା-ଦିନେ ତହିଁରେ ସିଦ୍ଧି-ସବିତାର ଉଦୟ ହୁଏ । ଏହି ତପସ୍ୟାରେ ଅଟଳ ରହି ନିଜର ଅସିଧାର ବ୍ରତକୁ ଅବ୍ୟାହତ ରଖିପାରିଲେ, ମୋର ଗାଢ଼ ବିଶ୍ୱାସ, ବିନୋଦଚନ୍ଦ୍ର ନିଶ୍ଚୟ ଭବିଷ୍ୟତ୍ ଜୀବନରେ ଖ୍ୟାତି-ଶିଖରର ତୁଙ୍ଗ ଚୂଳରେ ବିଜୟ-ବାନା ଉଡ଼ାଇପାରିବେ ।"

'ଶନୈଃ ପନ୍ଥାଃ ଶନୈଃ କନ୍ଥାଃ ଶନୈଃ ପର୍ବତଲଙ୍ଘନମ୍' ଧାରାରେ ମୋର ଅନ୍ତର୍ନିହିତ ବିଶ୍ୱାସ କ୍ରମେ ବାସ୍ତବ ସତ୍ୟରେ ପରିଣତ ହେବାକୁ ଉପକ୍ରମ କଲା । ବିନୋଦଚନ୍ଦ୍ର ଦଶମ ଶ୍ରେଣୀରେ ଅଧ୍ୟୟନ କରୁଥିବାବେଳେ ତାଙ୍କ ରଚିତ କବିତାଟିଏ ଏକ ମାସିକ ସାହିତ୍ୟ ପତ୍ରିକାରେ ପ୍ରକାଶ ଲାଭ କରିଥିଲା । ସେଦିନର ସେହି ଉଚ୍ଚାକାଂକ୍ଷୀ ଛାତ୍ର ବିନୋଦଚନ୍ଦ୍ର ଶିକ୍ଷା-ସୌଧରେ ଅନବଚ୍ଛିନ୍ନରୂପେ ପାହାଚ ପରେ ପାହାଚ ଉଠି ପରି-ଶେଷରେ ଦୁଇଟି ସ୍ନାତକୋତ୍ତର (ଓଡ଼ିଆ M.A. ଓ ଇଂରାଜୀ M.A.) ଡିଗ୍ରୀର ଅଧିକାରୀ ହେବା ପରେ ସରକାରୀ ଯୋଗାଣ (Supply) ବିଭାଗରେ ବୃତ୍ତିଜୀବନ ଆରମ୍ଭ କରି ସେଠାରେ ପ୍ରାୟ ବାର ବର୍ଷ ସୁନାମର ସହିତ କାର୍ଯ୍ୟ କଲେ । ତତ୍ପରେ ୧୯୫୭ ମସିହାରେ ସମ୍ବଲପୁର ଗଙ୍ଗାଧର ମେହେର ମହାବିଦ୍ୟାଳୟରେ ଅଭିଳଷିତ ଅଧ୍ୟାପକ ପଦ ପ୍ରାପ୍ତ ହୋଇ ଆଦର୍ଶ ଛାତ୍ରଗୋଷ୍ଠୀ ଗଢ଼ିବା ସଙ୍ଗେ ସଙ୍ଗେ ପୂର୍ଣ୍ଣପ୍ରାଣରେ ନିଜର ପୁଷ୍ପିତ ସାରସ୍ୱତ ସରଣୀ ପ୍ରସ୍ତୁତିରେ ଲାଗିପଡ଼ିଲେ ।

ବର୍ଷ ପରେ ବର୍ଷ ବ୍ୟତୀତ ହେଲା । ଶିକ୍ଷା ତଥା ସାହିତ୍ୟ କ୍ଷେତ୍ରକୁ ତାଙ୍କର ଅନବଦ୍ୟ ଅବଦାନ ସରକାରୀ ସ୍ତରରେ ସ୍ୱୀକୃତି ପାଇଲା—୧୯୬୮ ମସିହାରେ ତାଙ୍କୁ ପ୍ରତିଷ୍ଠିତ କରାଗଲା ଓଡ଼ିଶା ସାହିତ୍ୟ ଏକାଡେମୀର ସମ୍ମାନାଢ୍ୟ ସମ୍ପାଦକ ପଦରେ । ୧୯୭୩ ପର୍ଯ୍ୟନ୍ତ ଛଅବର୍ଷ କାଳ ବିନୋଦଚନ୍ଦ୍ର ଏହି ଈର୍ଷଣୀୟ ପଦରେ ମର୍ଯ୍ୟାଦା ରକ୍ଷା କରି 'ଏକାଡେମୀ'ର କାର୍ଯ୍ୟ ପରିସର ବର୍ଦ୍ଧନପୂର୍ବକ ପ୍ରଗତିଶୀଳ ସାହିତ୍ୟିକ କାର୍ଯ୍ୟକ୍ରମମାନ ନୂତନଭାବରେ ପ୍ରବର୍ତ୍ତନ କରିଥିଲେ । ତାଙ୍କ ଉଦ୍ୟମରେ ଏକାଡେମୀର ବିଭିନ୍ନ ଉପବିଭାଗରେ ବହୁ ସଂସ୍କାର ସାଧିତ ହୋଇଥିଲା ।

ଦୁନିଆର ଦିଗ୍‌ଦିଗନ୍ତବ୍ୟାପ୍ତ ବଡ଼ଦାଣ୍ଡଟା ସହସ୍ର ସହସ୍ର ଛକ-ଚଉଛକରେ ଜାଲପ୍ରାୟ ଛନ୍ଦାୟିତ । ପ୍ରତ୍ୟେକେ ନିଜ ନିଜ ଜୀବନ-ସଉଦାରେ ଦିନରାତି ଏଠୁ-ସେଠା ହୋଇ ହୋଇ କରୁ ଗତ । ଥରେ ଗୋଟାଏ ଛକକୁ ଛାଡ଼ିଲେ ପୁଣି ସେଠି ଭେଟାଭେଟି ହେବାକୁ ସହଜେ ବେଳ ମିଳୁଛି କାହାକୁ ? କେବଳ କୌଣସି କୌଣସି ପତ୍ରିକାରୁ ଯୁବକ ବିନୋଦଚନ୍ଦ୍ରଙ୍କ ରଚିତ କବିତା ପଢ଼ିବା ସମୟରେ ବେଳେବେଳେ ତାଙ୍କ ପଠଦଶାର ବାଳଗୋପାଳ ମୂର୍ତ୍ତିଟି ମୋ ମାନସ-ପର୍ଦ୍ଦାରେ ଉଦ୍ଭାସିତ ହୋଇଉଠେ । ସେହି ମନଶ୍ଚାକ୍ଷୁଷ ଦର୍ଶନ ଛଡ଼ା ତାଙ୍କର ଯୌବନସ୍ପର୍ଦ୍ଧିତ ପରବର୍ତ୍ତୀ ସ୍ୱରୂପ ପ୍ରତ୍ୟକ୍ଷ କରିବାର ସୁଯୋଗ ଘଟିବା ସମ୍ଭବ ହୋଇପାରି ନଥାଏ । ପଛକୁ ତାଙ୍କ କବିତାରଚନା ସ୍ରୋତ ଭିନ୍ନ ମୋଡ଼ ନେଇ ଅତ୍ୟାଧୁନିକ ଶୈଳୀର ଲମ୍ଫ ଦେଇଥିଲେହେଁ ପ୍ରକାଶଭଙ୍ଗୀର ଉପସ୍ଥାପନା ଅନ୍ୟାନ୍ୟ ନବ୍ୟ କବିଙ୍କ ଶୈଳୀ ପରି ଆଦୌ କ୍ଲିଷ୍ଟ, ଅସ୍ପଷ୍ଟ, ଅବୋଧ ବା ଜଟିଳ ନୁହେଁ । ତାଙ୍କ ଗଦ୍ୟଲେଖା କିନ୍ତୁ ସାମୟିକ ଓ ସ୍ୱଳ୍ପ ହେଲେ ହେଁ, ବେଶ୍ ଗାମ୍ଭୀର୍ଯ୍ୟପୂର୍ଣ୍ଣ ଓ ପୁଷ୍କଳ । ତାହାର ନମୁନାସ୍ୱରୂପ ଏଠାରେ କେତୋଟିମାତ୍ର ପଙ୍‌କ୍ତିର ଉଦ୍ଧୃତି ଦିଆଯାଉଛି :

> "ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଓଡ଼ିଆ ଭାଷା, ସାହିତ୍ୟ ତଥା ସଂସ୍କୃତି କ୍ଷେତ୍ରରେ ଏକ ସଙ୍କଟ ସମୟ ଦେଖାଦେଇଥିଲା । ଉତ୍କଳର ଜାତୀୟତାକୁ ନ୍ୟୂନ କରିବା ଏବଂ ଅତୀତର ଐତିହ୍ୟକୁ ଅପହରଣ କରି ସ୍ୱକୀୟ ସଙ୍କୀର୍ଣ୍ଣତାକୁ ଦୀପ୍ତିମନ୍ତ କରିବା ଦିଗରେ କେତେକ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀଙ୍କ ଚକ୍ରାନ୍ତ ଏହି ସଙ୍କଟ ସୃଷ୍ଟି କରିଥିଲା । ଉକ୍ତ ସନ୍ଧିକ୍ଷଣରେ ଜାତୀୟତା, ସଂସ୍କୃତି, ସାହିତ୍ୟ ଓ କଳା କ୍ଷେତ୍ରରେ ଯେତେକ ପ୍ରଥିତଯଶା ମହାପୁରୁଷ ଏ ଭୂମିରେ ଅବତୀର୍ଣ୍ଣ ହୋଇ ସ୍ୱାର୍ଥବଳି ଦେଇଛନ୍ତି, ସେମାନଙ୍କ ନାମ ତାଲିକା ପୁନରାବୃତ୍ତି କରିବାର ଆଉ ପ୍ରୟୋଜନ ନାହିଁ । ଆଜି ଜାତୀୟତାର ଯଜ୍ଞପୀଠରେ ଶିକ୍ଷା ଓ ସଂସ୍କୃତିର ଉଦ୍‌ଗାତାରୂପେ ସେମାନେ ନିତ୍ୟ ଉପାସିତ ।"

ଯେଉଁ ବାରବର୍ଷୀୟ ମନସ୍ୱୀ ବାଳଗୁରୁକୁ ୧୯୩୧ରେ ପ୍ରଥମେ ଭେଟିବା ସମୟରେ ତାର ରଚନାରେ ଝକମକର ସ୍ଫୁଲିଙ୍ଗ ଛଟାମାତ୍ର ଦେଖିବାକୁ ପାଇଥିଲି, ଦୀର୍ଘ ଏକଚାଳିଶ ବର୍ଷ ପରେ ଅର୍ଥାତ୍ ୧୯୭୨ ମସିହା ଅକ୍ଟୋବର ୨୫ ତାରିଖରେ ଦ୍ୱିତୀୟ ଭେଟର ବାରୁଣୀ

ଯୋଗ ଦେଉଥିଲାବେଳେ ସେ କେନ୍ଦ୍ର ସାହିତ୍ୟ ଏକାଡେମୀଦ୍ୱାରା ସମ୍ମାନିତ ଓ ପୁରସ୍କୃତ ଜଣେ ସୁପ୍ରତିଷ୍ଠ ପୋଖତ କବି, ପୂବର କ୍ଷୀଣ ଝିକିମିକି ରଶ୍ମିର ରୂପ ବଦଳିଯାଇ ଦିଗ୍-ବିଦିଗ୍‌ବ୍ୟାପୀ ସ୍ନିଗ୍ଧୋଜ୍ଜ୍ୱଳ ଜ୍ୟୋତ୍ସ୍ନାଲୋକରେ ପରିଣତ ହୋଇଯାଇଥାଏ । ଭେଟାଭେଟି ସ୍ଥଳ ଥିଲା ନୂଆ ରାଜଧାନୀ ଭୁବନେଶ୍ୱରର ରବୀନ୍ଦ୍ର ମଣ୍ଡପ । ସେଦିନ ଓଡ଼ିଶା ସାହିତ୍ୟ ଏକାଡେମୀର ଅଧ୍ୟକ୍ଷା ଶ୍ରୀମତୀ ନନ୍ଦିନୀ ଶତପଥୀ (ମୁଖ୍ୟମନ୍ତ୍ରୀ) ଏକ ମନୋଜ୍ଞ ସାରସ୍ୱତ ପରିବେଶ ମଧ୍ୟରେ ଓଡ଼ିଶାର ଚଉତିରିଶ ଜଣ ବୟୋଃଜ୍ୟେଷ୍ଠ ସାହିତ୍ୟିକଙ୍କୁ ସମ୍ମାନିତ କରିଥିଲେ । ଏଥିମଧ୍ୟରୁ ଏକୋଇଶ ଜଣ ଥିଲେ ୧୯୭୧ ମସିହାପାଇଁ ସମ୍ମାନିତ ଏବଂ ଅବଶିଷ୍ଟ ତେରଜଣ ୧୯୭୨ ପାଇଁ । ଏକାଡେମୀର ଯଶସ୍ୱୀ ସମ୍ପାଦକ ଶ୍ରୀ ବିନୋଦଚନ୍ଦ୍ର ନାୟକ ପ୍ରତ୍ୟେକ ସମ୍ମାନିତ ସାହିତ୍ୟିକଙ୍କୁ ପ୍ରଦାନ କରାଯାଉଥିବା ଗୁଣାବଳୀସମ୍ବଳିତ ମୁଦ୍ରିତ ମାନପତ୍ର ପାଠ କରୁଥାନ୍ତି । ୧୯୭୧ ପାଇଁ ସମ୍ମାନିତ ଏକୋଇଶ ଜଣ ସାହିତ୍ୟିକଙ୍କ ନାମ ତାଲିକା ମଧ୍ୟରେ ମୋର ନାମ ସ୍ଥାପିତ ହୋଇଥିଲା ଏକାଦଶରେ ।

ବିଦ୍ୟାଦାନଠାରୁ ବଳି ବଡ଼ ପୁଣ୍ୟ ଆଉ କାହିଁରେ ନାହିଁ ବୋଲି ବିନୋଦଚନ୍ଦ୍ର ବିଶ୍ୱାସ କରନ୍ତି । ତେଣୁ ସରକାରୀ ସେବାକ୍ଷେତ୍ରରୁ ଅବ୍ୟାହତି ପାଇଲା ପରେ ସେ ଅନଗ୍ରସର ଇଲାକାମାନଙ୍କରେ ଉଚ୍ଚତର ଶିକ୍ଷାକ୍ଷେତ୍ର ପ୍ରସ୍ତୁତ କରିବାର ମହତ୍ତର କର୍ମରେ ଆତ୍ମନିୟୋଗ କଲେ । ଗ୍ରାମଗ୍ରାମୀମହଲର ଚିରହିତୈଷୀ ଅଧ୍ୟାପକ ବିନୋଦଚନ୍ଦ୍ର କଲେଜ ଶିକ୍ଷାଲୋକରୁ ବଞ୍ଚିତ କେତେକ ଅଞ୍ଚଳରେ ଗୋଟିଏ ଗୋଟିଏ ମଞ୍ଜୁରିପ୍ରାପ୍ତ କଲେଜ ପ୍ରତିଷ୍ଠା କରିବାକୁ ସଙ୍କଳ୍ପବଦ୍ଧ ହେଲେ । ତାହାର ସଦ୍ୟଫଳସ୍ୱରୂପ ତାଙ୍କର ଅଧ୍ୟକ୍ଷତାରେ ପ୍ରଥମ କଲେଜ ଆରମ୍ଭ ହେଲା ଝାରସୁଗୁଡ଼ାରେ । ଯଥା ସମୟରେ ତାହା ପୂର୍ଣ୍ଣାଙ୍ଗ ହୋଇ 'ଲକ୍ଷ୍ମୀନାରାୟଣ କଲେଜ' ନାମରେ ମଞ୍ଜୁରି ପାଇଲା ଏବଂ ବିଶ୍ୱବିଦ୍ୟାଳୟ ବିଧିବିଧାନର ଶିଗଡ଼ିଗୁଳାରେ ପଡ଼ି ଶୃଙ୍ଖଳିତରୂପେ ପରିଚାଳିତ ହେଲା । ସେଠାରୁ ଅଧ୍ୟକ୍ଷ ପଦରୁ ବିଦାୟ ନେଇ ବିନୋଦଚନ୍ଦ୍ର ଏବେ ବ୍ରଜରାଜନଗରରେ ଏକ କଲେଜ ପ୍ରତିଷ୍ଠା କରିବାରେ ମନପ୍ରାଣ ଢାଳିଦେଇଛନ୍ତି । ସେ ଜଣେ ଅମୃତଦ୍ରଷ୍ଟା ବୋଲି ଅନୁମିତ ହୁଏ । ତେଣୁ ତାଙ୍କର ଏହି ଦ୍ୱିତୀୟ ପ୍ରଚେଷ୍ଟା ଅଚିରେ ସଫଳ ହେବ ନିଶ୍ଚୟ । କ୍ରିୟାଶୀଳ ଶେଷ ଜୀବନରେ ଏହି ମହତ୍ କାର୍ଯ୍ୟସାଧନରୁ ଯେଉଁ ଅଶେଷ ଆନନ୍ଦ ମିଳୁଛି, ତହିଁରୁ ହିଁ ସେ ମାନବଜନ୍ମର ସାର୍ଥକତା ଉପଭୋଗ କରୁଛନ୍ତି ବୋଲି କହନ୍ତି । ଯେଉଁ ଜୀବନ-ବୃକ୍ଷର ବର୍ଦ୍ଧିଷ୍ଣୁତା ସତ୍କର୍ମ-ସଲିଳଦ୍ୱାରା ପରିପୁଷ୍ଟ, ତାହାର ଡାଳ ସେ ସ୍ୱର୍ଗରେ ଲାଗେ, ଏହା ତାଙ୍କର ଅନୁଭବସିଦ୍ଧ ପ୍ରତୀତି । ଏହାର ତାତ୍ତ୍ୱିକ ତାତ୍ପର୍ଯ୍ୟ ହେଲା, ଏହି ମରଜଗତରେ ମଧ୍ୟ ଅମର ସୁଖପ୍ରାପ୍ତି ସମ୍ଭବପର ହୋଇଆସୁଛି ।

କବିତ୍ୱ ବିନୋଦଚନ୍ଦ୍ରଙ୍କର ସହଜାତ ପ୍ରବୃତ୍ତି, ଜନ୍ମଗତ ଗୁଣ, ଆଜନ୍ମ ସହଚର । ତାଙ୍କ ପ୍ରତି ଭଗବାନଙ୍କର ଏହା ଏକ ମହାର୍ଘ ଦାନ । ତାହା ନୋହିଥିଲେ ମାଇନର୍ ସ୍କୁଲକୁ ପାଦ ନ ବଢ଼ାଉଣୁ ଭାବୋଦୟ ଓ ପଦ୍ୟରଚନା ସହ ବାଳବିଦ୍ୟାର୍ଥୀ ଅବସ୍ଥାରେ ଅଙ୍କୁରିତ

ହୋଇପାର ନଥାନ୍ତା । ଏହି ସ୍ୱନାମଧନ୍ୟ ଯୁଗଦ୍ୱୟ କବିଙ୍କର ଦୁଇଟି ଅବଦାନ କୃତ ଓଡ଼ିଶା ସାହିତ୍ୟ ଏକାଡେମୀଦ୍ୱାରା ଓ ଅନ୍ୟ ଗୋଟିଏ କେନ୍ଦ୍ର ସାହିତ୍ୟ ଏକାଡେମୀଦ୍ୱାରା ପୁରସ୍କୃତ ହୋଇ ବହୁମାନ୍ୟତାର ଗୌରବ ଅର୍ଜନ କରିପାରିଛି ।

## (୯୬) ସଂସ୍କାରକ ବୈରାଗିଚରଣଙ୍କ ଶିବିରରେ ଯୋଗଦାନ—

ବିଶ୍ୱନାଥ କରଙ୍କୁ ଓଡ଼ିଶାର, ବିଶେଷତଃ ମୋଗଲବନ୍ଦି ଓଡ଼ିଶାର ପ୍ରଥମ ସମାଜ-ସଂସ୍କାରକ ଓ ନବ୍ୟ ରୁଚିର ପ୍ରଥମ ଆବାହକ ବୋଲି ସ୍ୱୀକାର କରାଯାଇଥାଏ । ଗ୍ରାମାଞ୍ଚଳ-ମାନଙ୍କରେ ଅସ୍ଥିମଜ୍ଜାଗତ ହୋଇ ରହିଥିବା ରକ୍ଷଣଶୀଳତା ଓ ଅନ୍ଧବିଶ୍ୱାସ ଏବଂ ଅସ୍ପୃଶ୍ୟ ଓ ଅବହେଳିତ ଜାତିମାନଙ୍କର ହୀନମ୍ମନ୍ୟତା ଆଦି ସାମାଜିକ ବ୍ୟାଧିର ମୂଳୋତ୍ପାଟନ ପାଇଁ ସେ ଯେଉଁ ସଂଗ୍ରାମ ଆରମ୍ଭ କରିଥିଲେ, ତାହାର ସିଅ ଧରି ଯୁବଯୋଦ୍ଧା ବୈରାଗି-ଚରଣ ମିଶ୍ର ବ୍ୟବସାୟଧର୍ମୀ ପୌରୋହିତ୍ୟବାଦ, ବାଲବୈଧବ୍ୟ, ବାଲ୍ୟବିବାହ ପ୍ରଭୃତି ସାମାଜିକ କଳଙ୍କର ବିଲୋପନପାଇଁ ଜୀବନ ଉତ୍ସର୍ଗ କରିଥିଲେ । ତତ୍ପ୍ରଣୀତ ଅନ୍ୟୂନ ଗ୍ରନ୍ଥଖଣ୍ଡ ସଂସ୍କାରମୂଳକ ଶ୍ରେଷ୍ଠ ବଡ଼ ପୁସ୍ତକ ମଧ୍ୟରୁ 'ନାରୀମଙ୍ଗଳ', 'ଭସ୍ମକରିନାହିଁ', 'ବିଧବା ବିବାହ', 'ଅନ୍ଧ ଅନୁସରଣ' ଓ 'ବୃଥାଡ଼ମ୍ବର', 'ସତ୍ୟାନୁସନ୍ଧାନ', 'ସୁଖାନ୍ୱେଷଣ', 'ବିବାହବିବାଦ' ଓ ଆତ୍ମଚରିତ 'ବିଲ୍ୱବ ନବ୍ୟତ', 'ଜୀବନଯୁଦ୍ଧ' ପାଠକଲେ ତାଙ୍କ ସମାଜ-ସଂସ୍କାର ଅଭିଯାନର ଯୁଗଧର୍ମୀ ଅଭିମୁଖ୍ୟ ସ୍ପଷ୍ଟ ଜାଣିହେବ । ଏହି ଶତକଡ଼ା-ଶହେ ସତ୍ୟମାର୍ଗୀ ସତ୍ୟବାକ୍ (ଶ୍ରୁତିପ୍ରତ୍ୟୟମୂଳକ 'ମା ବ୍ରୂୟାତ୍ ସତ୍ୟମପ୍ରିୟଂ' ଆପ୍ତବାକ୍ୟର ସାର୍ଥକ ଖଣ୍ଡନକାରୀ) କର୍ମୀକ ସଂସ୍କାରୀ ମୂଳବିପ୍ଲବପ୍ରାନ୍ତସ୍ଥ ଉତ୍ତରସାହିର ଅଧିବାସୀ ଥିଲେ ଏବଂ କଟକ କଲେଜରେ ସର୍ବମାନ୍ୟ କର୍ମୀରୂପେ ସର୍ବଜନ ପରିଚିତ ହେଉଥିଲେ ।

ସମସାମୟିକ ସାମାଜିକ ପର୍ଯ୍ୟବେକ୍ଷକମାନଙ୍କ ମତରେ, ସଂସ୍କାରକ ବିଶ୍ୱନାଥ କର ସଂସ୍କାର-ମହାମଣ୍ଡଳର ଯେଉଁ ଏକ ଦିଗନ୍ତର ଉନ୍ମୋଚନ ପାଇଁ ଅଣ୍ଟା ଭିଡ଼ିଥିଲେ, ତହିଁରେ କୃତକାର୍ଯ୍ୟତାର ସହିତ ଯଥେଷ୍ଟ ଅଗ୍ରଗତି କରିଥିଲେହେଁ ୧୯୦୧ ମସିହାଠାରୁ 'ଉତ୍କଳ ସାହିତ୍ୟ' ପତ୍ରିକା, 'ଉତ୍କଳ ସାହିତ୍ୟ ପ୍ରେସ୍' ଓ 'ବ୍ରାହ୍ମସମାଜ', ଏହି ତ୍ରୟୀର ଜଞ୍ଜାଳମସ୍ତ ଦାୟିତ୍ୱ ଏକାକୀ ବହନ କରିବା ଫଳରେ କଟକ ଗ୍ରାଡ଼ ଗ୍ରାମଗହଳକୁ ଯିବା ଓ ସମାଜ-ସଂସ୍କାର କର୍ମରେ ନିଷ୍କାର ସହି ଆତ୍ମନିୟୋଗ କରିବା ଆଉ ତାଙ୍କ ପକ୍ଷରେ ସମ୍ଭବପର ହେଲନାହିଁ । ମହତ୍ ଉଦ୍ଦେଶ୍ୟରେ ଆରମ୍ଭ କରାଯାଇଥିବା କାର୍ଯ୍ୟ ଅସମାପ୍ତ ଅବସ୍ଥାରେ କେବେହେଲେ ଅଧବାଟରେ ପଡ଼ିରହେନାହିଁ । ଶୀଘ୍ର ହେଉ ବା ବିଳମ୍ବରେ ହେଉ, କେହି-ନା-କେହି ଉତ୍ତରସାଧକ ବାହାରେ ଏବଂ ମୂଳସାଧକଙ୍କ ଫାଙ୍କସ୍ଥାନ ପୂରଣ କରେ । ଏ କ୍ଷେତ୍ରରେ ତାହାହିଁ ଘଟିଲା । ନବସଂସ୍କାରକ ବୈରାଗିଚରଣ ମିଶ୍ର ହେଲେ ଆଦି-ସଂସ୍କାରକ ବିଶ୍ୱନାଥ କରଙ୍କର ଉତ୍ତରସାଧକ ଏବଂ ବିଶ୍ୱନାଥଙ୍କଦ୍ୱାରା ଅର୍ଦ୍ଧଉନ୍ମୋଚିତ ଦିଗନ୍ତଟିର ବାକି ରହିଯାଇଥିବା କାର୍ଯ୍ୟତକ ପରିପୂର୍ତ୍ତି କରିବା ସଙ୍ଗେ ସଙ୍ଗେ ସଂସ୍କାର-ମହାମଣ୍ଡଳରେ ନବ ନବ ଦିଗନ୍ତର ସ୍ରଷ୍ଟା ହୋଇଥିଲେ ।

ବିଜ୍ଞ ବୈରାଗୀବାବୁ ଶାସ୍ତ୍ରୀୟ ମତ ଓ ତାର ବିଧିବିଧାନକୁ ତଥା 'ଗୀତା'ର ଆପ୍ତ ଉକ୍ତିକୁ ଗମ୍ଭୀରତରଭାବରେ ଆଲୋଡ଼ନ କରି ସେଗୁଡ଼ିକର ଉଦ୍ଧୃତି ସାହାଯ୍ୟରେ ସ୍ୱମତ ପ୍ରତିଷ୍ଠା କରିପାରିଥିଲେ । ସାମାଜିକ ସଂସ୍କାରର ଘୋର ବିଦ୍ୱେଷୀ ଓ ପ୍ରବଳ ବିରୋଧୀ ପ୍ରାଚୀନପନ୍ଥୀ ନ୍ୟସ୍ତସ୍ୱାର୍ଥ ପଣ୍ଡିତ ପରୀକ୍ଷିତ ଦାଶଶର୍ମା ଏବଂ ରକ୍ଷଣଶୀଳ ଅନ୍ୟ କର୍ମକାଣ୍ଡୀ ପଣ୍ଡିତମାନେ ତାଙ୍କର ସରଳ ଶାସ୍ତ୍ରବ୍ୟାଖ୍ୟା ଓ ଅକାଟ୍ୟ ଯୁକ୍ତିରେ ନିରୁତ୍ତର ରହି ପୃଷ୍ଠଭଙ୍ଗ ଦେବାକୁ ବାଧ୍ୟ ହେଉଥିଲେ । ସେ ନିଜେ ମଧ୍ୟ ଏ ଯୁଗୀୟ ଗାନ୍ଧି ଅରବିନ୍ଦଙ୍କ ପରି 'ଗୀତା'ର ଜଣେ ପ୍ରବିଜ୍ଞ ଭାଷ୍ୟକାର ଥିଲେ ।

ହିନ୍ଦୁବିବାହ ପଦ୍ଧତିରେ ସେ ଯେଉଁ କ୍ରାନ୍ତିକାରୀ ଯୁଗ ସୃଷ୍ଟି କରିଥିଲେ, ସେଥିପାଇଁ ସାରା ଓଡ଼ିଶା, ଏପରିକି ସମଗ୍ର ରାଷ୍ଟ୍ରବାସୀ ତାଙ୍କଠାରେ ଚିରଋଣୀ । ସମାଜନୀତିପ୍ରବକ୍ତା ବ୍ରାହ୍ମଣଗୋଷ୍ଠୀର ଆଖିରୁ ବୈରାଗୀବାବୁ ଅନ୍ଧପୁଟୁଳି କାଢ଼ିଦେଇଥିଲେ । ତାଙ୍କ ପ୍ରଦତ୍ତ ଶାଣିତ ପ୍ରମାଣ ହେଲା :

> "ବେଦଯୁଗରେ 'ଯୁବତୀବିବାହ' ହିଁ ପ୍ରଚଳିତ ଥିଲା । ରାଜନ୍ୟ ଯୁଗରେ ବ୍ରାହ୍ମଣଗୋଷ୍ଠୀ ରାଜାମାନଙ୍କର ପୃଷ୍ଠପୋଷକତା ବଳରେ ସମାଜପତିର କ୍ଷମତା ପାଇ ନିଜ ସ୍ୱାର୍ଥକୁ ସୁହାଇଲାଭଳି ଆଞ୍ଚଳିକ ବିଧିବିଧାନାଦି ପ୍ରଣୟନ କଲେ ଏବଂ ସେହି ବିବାହ ବ୍ୟବସ୍ଥା ରାଜାନୁମୋଦନରେ ନିରୀହ ଜନତା ଉପରେ ଲଦି-ଦିଆଗଲା । ତାଦ୍ୱାରା ବିଷମୟ ଫଳରେ ମାରାତ୍ମକ 'ବାଲ୍ୟବିବାହ' ପ୍ରଥାର ହେଲା ଅବାଧ ପ୍ରବର୍ତ୍ତନ ଏବଂ 'ଯୁବତୀବିବାହ' ପ୍ରଥାର ବାଧ୍ୟତାମୂଳକ ନିର୍ବାସନ ।"

ଏହି ପରିପ୍ରେକ୍ଷିତରେ ସଂସ୍କାରକ ବୈରାଗିଚରଣ ମିଶ୍ର ବାଲ୍ୟବିବାହ ପ୍ରଥାର ଆଶୁ ଉଚ୍ଛେଦନ ସଙ୍ଗେ ସଙ୍ଗେ ଯୁବତୀବିବାହର ପୁନଃପ୍ରବର୍ତ୍ତନପାଇଁ ଏବଂ ପ୍ରଚଳିତ ବହୁବ୍ୟୟସାପେକ୍ଷ ଆଡ଼ମ୍ବରବହୁଳ ବିବାହ ପଦ୍ଧତିକୁ ବିସର୍ଜନ ଦେଇ ସରଳ ନିରାଡ଼ମ୍ବର ଯୌତୁକବର୍ଜିତ ପବିତ୍ର ବୈଦିକ ଧାରାରେ ବିବାହ କର୍ମ ସମ୍ପାଦନ କରିବାପାଇଁ ଚାରିଆଡ଼େ ପ୍ରଚାର କରି ବୁଲିଲେ । ପତ୍ନୀଙ୍କର ଅକାଳ ବିୟୋଗ ଏ ଦିଗରେ ପୂରା ଦମ୍‌ରେ କାର୍ଯ୍ୟ କରିବାକୁ ତାଙ୍କୁ ଅଧିକ ଉତ୍ସାହ ଓ ଅବସରର ଇନ୍ଧନ ଯୋଗାଇଥିଲା । ଅନେକ ସ୍ଥଳରୁ ତାଙ୍କ ଆଗ୍ରେସ୍ତ ଆହ୍ୱାନର ସମର୍ଥନସୂଚକ ଉତ୍ତର ମିଳିଲା । କେତେକ ବୁଦ୍ଧିଜୀବୀ ଓ ପଦସ୍ଥ ବ୍ୟକ୍ତି ମଧ୍ୟ ନିଜ ନିଜର କନ୍ୟା ବୟଃପ୍ରାପ୍ତା ନହେବା ପର୍ଯ୍ୟନ୍ତ ସେମାନଙ୍କ ବିବାହ ପ୍ରସଙ୍ଗରେ ଆଦୌ ମୁଣ୍ଡ ଖେଳାଇଲେ ନାହିଁ । ସେକାଳରେ କେବଳ ଗୋରାସାହେବ କଟକର କଲେକ୍ଟର୍ ହେଉଥିଲେ । ସେମାନେ କଲେକ୍ଟରୀର କର୍ମଚାରୀ ବୈରାଗୀବାବୁଙ୍କୁ ତାଙ୍କ ପ୍ରଚାରିତ ଯୁଗାନ୍ତ-କାରୀ ସାମାଜିକ ବିପ୍ଳବପାଇଁ ଅବାଧ ସୁବିଧା ଦେଉଥିଲେ । ସୁଦକ୍ଷ ପ୍ରଶାସକ ଖୋର୍ଦ୍ଧା ଏସ୍. ଡି. ଓ. ଦୁର୍ଗାଚରଣ ଦାସଙ୍କ ଭଳି ମହତମାନ୍ ପୁରୁଷ ମଧ୍ୟ ବୈରାଗୀବାବୁଙ୍କ ପ୍ରବର୍ତ୍ତିତ ସମସ୍ତ ସମାଜହିତକର କାର୍ଯ୍ୟକୁ ଅକୁଣ୍ଠ ସମର୍ଥନ ଦେଇଥିଲେ ।

ଦୂରଦର୍ଶୀ ବୈରାଗିଚରଣଙ୍କ ନବପ୍ରବର୍ତ୍ତିତ ଯୁବତୀବିବାହ ଆନ୍ଦୋଳନ ଯଥାକାଳରେ ସୁଫଳ ପ୍ରସବ କଲା । 'ଏ କୂଳେ ଲଗେଇଲି ଲଉ, ସେ କୂଳେ ମାଡ଼ିଲା ଡଙ୍କ' ପ୍ରବଚନ ନ୍ୟାୟରେ ଓଡ଼ିଶାର ସଂସ୍କାରକ ବୈରାଗୀବାବୁଙ୍କଦ୍ୱାରା ଆରମ୍ଭ ହୋଇଥିବା ଆନ୍ଦୋଳନର ହାଓଆ ସୁଦୂର ଦିଲ୍ଲୀ ପର୍ଯ୍ୟନ୍ତ ବହିଗଲା । ଭାରତ ସରକାରଙ୍କଦ୍ୱାରା 'ସାରଦା ଆଇନ' ସାରା ଦେଶରେ ଜାରି ହେଲା ଏବଂ ଚିରଦିନପାଇଁ ବାଲ୍ୟବିବାହକୁ ସମାଧି ଦିଆଗଲା । ସେହି ଆଇନ ବଳରେ ଆଦିଯୁଗୀୟ ଯୁବତୀବିବାହ ପଦ୍ଧତିର ପୁନଃପ୍ରଚଳନ ଘଟିଲା ।

ବିବାହ ବିଷୟ ସମ୍ପର୍କରେ ସମାଜସଂସ୍କାରକ ବିଶ୍ୱନାଥ କରଙ୍କ ମତ ପ୍ରତି ମୁଁ ଅନେକ ଆଗରୁ ଆକୃଷ୍ଟ ହୋଇସାରିଥିଲି । ଏଣୁ ବୈରାଗୀବାବୁଙ୍କ ଆନ୍ଦୋଳନର କର୍ମୀ ବାହିନୀରେ ଜଣେ ସେବକରୂପେ ପୂରାପୂରି ସାମିଲ ହୋଇଯିବା ମୋ ପକ୍ଷରେ ଅତି ସ୍ୱାଭାବିକ ହୋଇ-ପଡ଼ିଲା । ମୁଁ ତାଙ୍କ ଶିବିରକୁ ବରାବର ଯିବାଆସିବା କଲି ଏବଂ ଅନୁଗତ ଚେଲାରୂପେ ତାଙ୍କ ଯୁଗରୁଚିସମ୍ମତ ମତକୁ ମୋର ବନ୍ଧୁ ଓ ପରିଚିତ ମହଲର କାନରେ ପକାଇ ସେମାନଙ୍କୁ ପ୍ରଭାବିତ କରିବାକୁ ଲାଗିଲି ।

ସେତେବେଳର ନିଃସହା ବାଳବିଧବାଙ୍କ ଦୁଃଖନିର୍ଯାତନାର ଅନ୍ତ ନଥିଲା । ପରମ୍ପରାଗତ ବାଲ୍ୟବିବାହ ପ୍ରଥାର ତାହା ଥିଲା ଶୋକାବହ ପରିଣତି । ହୀନମାନୀ ବିଧବାଗୁଡ଼ିକ ଶାଶୂଘରୁ ତଡ଼ା ଖାଇ ବାପଘରେ ଦାଣ୍ଡସଫେଇ, ଘରଦୁଆର-ଓଳିଆ, ଗୋବରପାଣି-ଛିଞ୍ଚା, ପିଲାପିଚିକା-କାଖିଆ, ବାସନକୁସନ-ମଜା, ଗୁହାଳପୋଛା, ଗାଈଗୋରୁଙ୍କୁ କୁଣ୍ଡାକୁଟୁଚି-ଦିଆ, ପରିବା-କଟା, ମସଲା-ବଟା ପ୍ରଭୃତି ଯାବତ ପୋଇଲୀ-ଧାଇଟି କରୁଥାନ୍ତି ସକାଳୁଁ ସଞ୍ଜଯାଏ; ତହିଁରେ ପୁଣି ବେତ ଉପରେ କୋରଡ଼ା ପାହାର ପରି ଭାଇ-ଭାଉଜଙ୍କର କଠୋର ନିଠୁର ଝିଙ୍ଗାସ ବଚନ ସହୁଥାନ୍ତି । ବାପଘର ଥିଲା-ଘର ନୋହିଥିଲେ ପରଘରେ ମୂଲ ବିକି ସାରା ଜୀବନ ସଢ଼ୁଥାନ୍ତି । ଖାମିଦାଣୀର ଦୟା ହେଲେ ମୁଠାଏ ଏଣ୍ଟୁତଣ୍ଟୁ ଯାହା ଖାଇବାକୁ ମିଳେ, ନୋହିଲେ ଖଙ୍କା ପେଟରେ ଓଦାକନା ଭିଡ଼ି ଖାଡ଼ାଖାଡ଼ା ଉପାସ । ମୁଣ୍ଡଝାଳ ତୁଣ୍ଡରେ ମାରି ଟୋକାରୁ ପତର-ଗୋଟିଆ, ଧାନ-ଉଷୁଆଁ, ଧାନ-କୁଟା, ପୋଖରି ବା ନଈରୁ ପାଣି-ବୁହା ଅଥବା ଆଖି-ଅପହଞ୍ଚା ଗହିରା କୂଅରୁ ବିଶାଳ ଗରାରେ କ୍ରମାଗତ ପାଣି-ଉଠା ଆଦି କାମରେ ଧଇଁସଇଁ ହୋଇ ଲାଗିରହିଥାନ୍ତି । ଟେରି ନାହିଁ ତରାନାହିଁ, ଦିହପା'ର ଅସୁଖବିସୁଖରେ ଓସୁଅପାନେ ନାହିଁ କି କାହାରି ମୁହଁରେ 'ଆହା' ପଦଟିଏ ବି ନାହିଁ, ଖାଲି କାମ ଉପରେ କାମ ବରାଦ—'ଏକସ୍ୟ ଦୁଃଖସ୍ୟ ନ ଯାବଦନ୍ତଂ ତାବଦ୍ଦ୍ୱିତୀୟଂ ସମୁପାଗତଂ (ମେ)' । ହାରିଗୁହାରି ଶୁଣିବାକୁ ସବୁରି କାନରେ ଜଉମୁଦ । ପାଟି ଫିଟିଲେ ପିଠି ଫାଟିବ । ହାୟ, କେଡ଼େ ହତଭାଗୀ ଏ ନାରୀମାଖୀଗୁଡ଼ିକ ସତେ ! ରକତ ପାଣି କରି ଯେତେ ଖଟିଲେ ବି, ଯେତେ ଜଗି-ଜଗି ଡରି-ଡରି ଚଳିଲେ ବି କେବଳ ଲାଞ୍ଛନା, ଗଞ୍ଜଣା, ବୋଲଣା, କଦର୍ଥନା ହୋଇଥାଏ ଏହି ନିରୀହ ନିର୍ଦ୍ଦୋଷୀ ନିଆଶ୍ରୀମାନଙ୍କ ପ୍ରତି ନିର୍ଦ୍ଦୟ ନୃଶଂସ ସ୍ୱାର୍ଥପରତନ୍ତ୍ର ସମାଜପଣ୍ଡାମାନଙ୍କର ପାରମ୍ପରିକ ପୁରସ୍କାର ?

ଏହି ଅକ୍ଷତଯୋନିକା ବାଳବିଧବାମାନଙ୍କର ଜୀବନବ୍ୟାପୀ ଅକଥନୀୟ ଦୁଃଖଦୁର୍ଦ୍ଦଶା-ସନ୍ଦର୍ଶନରେ ବୈରାଗିଚରଣଙ୍କ ସମ୍ବେଦନଶୀଳ ହୃଦୟ ଉଦ୍‌ବେଳିତ ହୋଇଉଠିଲା । 'ଏମାନଙ୍କୁ ସାମାଜିକ ନିଷ୍ପୀଡ଼ନର କବଳରୁ ଉଦ୍ଧାର କରିବାର କ'ଣ ଉପାୟ ନାହିଁ ?' ଏହି ପ୍ରଶ୍ନଟି ବାରମ୍ବାର ତାଙ୍କ ମନକୁ ଧକ୍‌କା ଦେଲା । ସେ ବିବାହସମ୍ପର୍କିତ ଶାସ୍ତ୍ରବାକ୍ୟ-ମାନ ପର୍ଯ୍ୟାଲୋଚନ କରୁ କରୁ ଉପାୟର ସନ୍ଧାନ ମିଳିଗଲା । ବିବାହବେଦୀରେ ପାଣିଗ୍ରହଣବେଳେ ଯେଉଁ ବାକ୍ୟ ଉଚ୍ଚାରଣ କରାଯାଏ, ତାହାର ଗୋଟିଏ ଅଂଶ ହେଉଛି "ଆବୟୋର୍ବରକନ୍ୟୟୋଃ" ('ଆମେ ବର-କନ୍ୟା ଦୁହେଁ') । 'ଧବ' ଓ 'ପତ୍ନୀ' ଶବ୍ଦଦ୍ୱୟର ଆଦୌ ପ୍ରୟୋଗ ନାହିଁ । ଏଥିରୁ ସ୍ପଷ୍ଟ ପ୍ରମାଣ ମିଳିଲା ଯେ, ବିବାହୋତ୍ସବ ପରେ ମଧ୍ୟ ସେ ଦୁହେଁ 'ବର' ଓ 'କନ୍ୟା' । 'ନିଷେକ' ବା ପୂର୍ଣ୍ଣିବିବାହ (ବନ୍ଧାପନା) କର୍ମ ସରିଲା ପରେ ସେହି ରାତ୍ରିର ମଧୁଶଯ୍ୟାରେ ଉଭୟଙ୍କର ମିଳନ (ଯୌନ ସମ୍ଭୋଗ) ସଂଘଟିତ ହେଲେ ଯାଇ ସେ ହୁଅନ୍ତି 'ଧବ' ଓ 'ପତ୍ନୀ' । ଏଣୁ ପାଣିଗ୍ରହଣ ଦିନଠାରୁ ନିଷେକ ରାତ୍ରି ପର୍ଯ୍ୟନ୍ତ ସମୟ-ସୀମା ମଧ୍ୟରେ ଯଦି ପାଣିଗ୍ରହୀତା ବରର ମୃତ୍ୟୁ ଘଟେ, ତାହାହେଲେ ପାଣିଗ୍ରହୀତୀ କନ୍ୟାଟିକୁ 'ବିଧବା' ସଂଜ୍ଞା ଦିଆଯିବାର ଯାଥାର୍ଥ୍ୟ ଆସିଲା କେଉଁଠୁ ? ଏବଂ ଏଭଳି ବିଭ୍ରାନ୍ତିକର ସଂଜ୍ଞାକୁ ଆଳ କରି ତାର ପୁନର୍ବାର ବିବାହକୁ ରୋକିଦେବାର କାରଣ ରହିଲା କେଉଁଠି ? ଯଦି ନିଷେକ ପରେ 'ଧବ'ର ମୃତ୍ୟୁ ଘଟିବ, ତେବେ ସିନା ବିବାହିତା ପତ୍ନୀ 'ବିଧବା' ହେବ !

ଏହି ଶାସ୍ତ୍ରୀୟ ଯୁକ୍ତିବଳରେ ସଂସ୍କାରକ ବୈରାଗିଚରଣ ମିଶ୍ର ତଥାକଥିତ 'ବାଳବିଧବା'-ମାନଙ୍କୁ 'ବିବରା' (ବି + ବର + ସ୍ତ୍ରୀ. ଆ ଅର୍ଥାତ୍ 'ବିଗତ' ବା 'ମୃତ' ହୋଇଅଛି 'ବର' ଯେଉଁ କନ୍ୟାର) ଆଖ୍ୟା ପ୍ରଦାନ କଲେ ଏବଂ ବିଭିନ୍ନ ଶାସ୍ତ୍ରବାକ୍ୟ ଉଦ୍ଧାର କରି ଏପରି କନ୍ୟାମାନଙ୍କୁ 'କୁମାରୀ' (ଅବିବାହିତା) କନ୍ୟାଭାବରେ ବିବାହ ଦିଆଯିବା ହିଁ ସମ୍ପୂର୍ଣ୍ଣ ବିଧିସମ୍ମତ ଓ ଶ୍ଲାଘ୍ୟ ବୋଲି ଉଦ୍‌ଘୋଷଣ କଲେ । ବୈରାଗୀବାବୁ ଯେଉଁସବୁ ଶାସ୍ତ୍ରୋକ୍ତି ଉଦ୍ଧାର କରିଥିଲେ, ତହିଁମଧ୍ୟରୁ ଗୋଟିଏ ପ୍ରଧାନ ବାକ୍ୟ ଥିଲା ଉତ୍କଳୀୟ ସ୍ମୃତିକାର ପଣ୍ଡିତ ହଳାୟୁଧଙ୍କ ପ୍ରଣୀତ 'ପଣ୍ଡିତସର୍ବସ୍ୱମ୍' ଗ୍ରନ୍ଥରୁ । ସେହି ବାକ୍ୟଟି ହେଉଛି :

"ଦତ୍ତାହୃତା ଚ ଯା କନ୍ୟା ନ ଚ ସଂପ୍ରାପ୍ତମୈଥୁନା,
ପୁନଃ ପ୍ରାପ୍ନୋତି ଭର୍ତ୍ତାରଂ ଯଥା କନ୍ୟା ତଥୈବ ସା ।"

ଏହି ବାକ୍ୟର ଅର୍ଥ—"ଯେଉଁ ପାଣିଗ୍ରହୀତୀ (ବିବାହିତା) କନ୍ୟା ପାଣିଗ୍ରହୀତା (ବିବାହିତ) ପୁରୁଷ (ବର) ସହିତ ସହବାସ (ସଙ୍ଗମ) କରିନଥାଏ, ତାର ପୁଣି ଥରେ ଅବିବାହିତା କନ୍ୟାସଦୃଶ ବିବାହ ହୋଇପାରିବ ।" ଏହି ସ୍ୱନାମଧନ୍ୟ ଉତ୍କଳୀୟ ସ୍ମାର୍ତ୍ତ ସୁଧୀ 'ହଳାୟୁଧ' ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀର ପ୍ରଥମ ପାଦରେ ଓଡ଼ିଶା ରାଜା ଅନଙ୍ଗଭୀମ ଦେବଙ୍କ ରାଜତ୍ୱକାଳରେ ସୁପ୍ରସିଦ୍ଧ ସ୍ମୃତିଶାସ୍ତ୍ର 'ପଣ୍ଡିତସର୍ବସ୍ୱମ୍' ପ୍ରଣୟନ କରିଥିଲେ ।

'ପରୋପଦେଶେ ପାଣ୍ଡିତ୍ୟଂ'ର ଅନୁଗାମୀ କୈତବଭକ୍ତିକ ଶଦ୍ଧା ନେତୃତ୍ୱଙ୍କୁ ବୈରାଗୀ-ବାବୁ ଘୃଣା କରୁଥିଲେ । ତାଙ୍କର କଥା ଓ କାର୍ଯ୍ୟ ସର୍ବଦା ଥିଲି ସମାନ । ଯାହା ସର୍ବ-ସାଧାରଣଙ୍କୁ ଉପଦେଶ ଦେଉଥିଲେ, ତାହା ନିଜଠାରେ ଓ ପରିବାରଠାରେ ତତ୍ପୂର୍ବରୁ ପ୍ରୟୋଗ କରି ତାର ଉପାଦେୟତା ପରୀକ୍ଷିନେଉଥିଲେ । ସେ ଦୁଇଟି ବିବର କନ୍ୟାଙ୍କ ସହିତ ନିଜର ଦୁଇ ପୁଅ ଶରତ୍ ଓ ବସନ୍ତଙ୍କର ବିବାହ କରାଇଥିଲେ । କେବଳ ଏତିକି ନୁହେଁ, ଦେଶରେ 'ସାରଦା ଆଇନ' ପ୍ରବର୍ତ୍ତିବାର ବହୁ ପୂର୍ବରୁ ଯୁବତୀ-ବିବାହର ଆଦର୍ଶ ଥାପିବାପାଇଁ ନିଜର ଦୁଇ ବୟଃପ୍ରାପ୍ତା ଶିକ୍ଷିତା କନ୍ୟା ଉଷା ଓ ନିଶାଙ୍କୁ ବଡ଼ଚଣା ଓ ବାରିପଦାର ସମ୍ଭ୍ରାନ୍ତବଂଶୀୟ ଦୁଇଟି ଶିକ୍ଷିତ ଯୁବକଙ୍କ ସହିତ ବିବାହ ଦେଇପାରିଥିଲେ । ଏହିସବୁ ସାମାଜିକ ସଂସ୍କାର ନିମନ୍ତେ, ବିଶେଷକରି 'ବିବର' ଶବ୍ଦଟିର ଉଦ୍ଭାବନ ଦ୍ୱାରା ଓଡ଼ିଆ ଶବ୍ଦଭଣ୍ଡାରକୁ ସମୃଦ୍ଧ କରିଥିବାହେତୁ ବୈରାଗୀବାବୁଙ୍କୁ ଓଡ଼ିଆ ଜାତି ପକ୍ଷରୁ ଅଶେଷ ବଧାଇଦେବାର କଥା ।

'ଯୁବତୀ ବିବାହ' ଆନ୍ଦୋଳନ ପରେ ବରେଣ୍ୟ ବୈରାଗିଚରଣ ମିଶ୍ରଙ୍କର 'ବିବରବିବାହ' ଆନ୍ଦୋଳନ ଓଡ଼ିଶାର ସାମାଜିକ ଇତିହାସରେ ଏକ ଚମକପ୍ରଦ ମହାନ୍ ବୈପ୍ଳବିକ ଘଟନା । ମୁଁ ଏହି ବିପ୍ଳବରେ ଓତପ୍ରୋତଭାବରେ ଜଡ଼ିତ ହୋଇଗଲି । ବୈରାଗୀବାବୁ ରେଭେନ୍ସା ବାଳିକା ବିଦ୍ୟାଳୟ ସଂଲଗ୍ନ ପଶ୍ଚିମ ପାର୍ଶ୍ୱବର୍ତ୍ତୀ ଏକ କୋଠାଘରେ ଥିଲି-ବେଳେ ତାଙ୍କର ପତ୍ନୀବିୟୋଗ ଘଟିଥିଲା । ତତ୍ପରେ ସେ ଉକ୍ତ ଗୃହ ଛାଡ଼ି ମହମ୍ମଦିଆ ବଜାରସ୍ଥ ମୋ ବାସଗୃହର ଅତି ନିକଟବର୍ତ୍ତୀ ଛକର ଗୋଟିଏ କୋଠାଘରକୁ ଉଠିଆସିଥାନ୍ତି । ସେହିଠାରେ ପ୍ରଥମ ବିବରବିବାହ ଅନୁଷ୍ଠିତ ହୋଇଥିଲା । ସେହି ଶୁଭାନୁଷ୍ଠାନରେ ମୁଁ ସପରିବାର ଯୋଗ ଦେଇ ଅପୂର୍ବ ଆନନ୍ଦ ଅନୁଭବ କରିଥିଲି । ଅଧିକନ୍ତୁ ମୋର ବିଶ୍ୱାସ ହେଲା, ସାଧାରଣ ବିବାହଟିଏ କରାଇଦେଲେ ଯେଉଁ ପୁଣ୍ୟାର୍ଜନ ହୁଏ, ବିବରବିବାହଟିଏ କରାଇଦେଇପାରିଲେ ତଦପେକ୍ଷା ଯଥେଷ୍ଟ ମହତ୍ତର ପୁଣ୍ୟ ଅର୍ଜନ କରିହେବ ।

ଏହି ବିଶ୍ୱାସର ବଶବର୍ତ୍ତୀ ହୋଇ ବିବର-ଉଦ୍ଧାର ବ୍ରତର ପବିତ୍ର ଦୀକ୍ଷା ନେଲି ଏବଂ ଗୃଣ୍ଠୁଚ ମୂଷିକର ମନୋବୃତ୍ତି ଧରି ସେ-ଦିଗରେ କିଛି ସାହସିକ ଉଦ୍ୟମର ପଦକ୍ଷେପ ନେବାପାଇଁ ଅଚିରେ ନିଜକୁ ପ୍ରସ୍ତୁତ କରିବସିଲି । ମାତ୍ର ଏ କାମଟି ଝାମୁ ଯାତର ନିଆଁ-ଡିଆଁ ଖେଳ ପରି ବିଷମ ବିପତ୍ତିସଙ୍କୁଳ । ଏଣୁ ବୋଉକୁ ନ ପଚାରି, ତାର ଅନୁମତି ନ ନେଇ ରଙ୍ଗଭୂମି ଉପରକୁ ହଠାତ୍ ଡେଇଁପଡ଼ିବା ଟାକୁ ଉଚିତ ମନେକଲିନାହିଁ ।

ଗାଆଁକୁ ଗଲି । ରାତିକିଆ ସରିଲା ପରେ ନିରୋଳାରେ ବୋଉ ଆଗରେ 'ବିବର' ତଥ୍ୟଟାକୁ ବିଶ୍ଳେଷଣ କରି ଯଥାସାଧ୍ୟ ସରଳ ଭାଷାରେ ଠିକେ ଠିକେ ବୁଝାଇଦେଲି । ବୋଉ ଠିକ୍ ଠିକ୍ ସବୁ ବୁଝିଗଲା; ଖାଲି ବୁଝିଲା ନାହିଁ, ସଙ୍କଳ୍ପ ଆଡ଼କୁ ତାର ସମ୍ବେଦଶୀଳ ହୃଦୟ ପୂରା ଆଉଜିଗଲା । ପୁଣି, ଆବେଗଭରା କଣ୍ଠରେ ଆମ ଗ୍ରାମରେ ଥିବା ଦୁଇଟି ଦୁଃଖିନୀ ବାଳ୍ୟବିଧବା 'ଲବଣ୍ୟ' ଓ 'ଲୀଳା'ଙ୍କ କରୁଣ କାହାଣୀ ବର୍ଣ୍ଣନ କରି ତାଙ୍କୁ

ସେମିତିହେଲେ ଯୋଡ଼ିଏ ପାତ୍ରଙ୍କ ସହିତ ଛନ୍ଦିଦେଇ ଆଇନ୍ଦା ତିଥିରେ ଗାଆଁର ନର୍କ-କୁଣ୍ଡରୁ ଉଦ୍ଧାର କରିଦେବାକୁ ଜିଗର ଲଗାଇଲି ।

ଆମ ଖଳାବାଡ଼ିର ପଶ୍ଚିମପଟକୁ ଲାଗି ଜଣେ ବୟସ୍କା ବିଧବାଙ୍କ ବସ୍ତି । ତାଙ୍କ ଘରଡ଼ିହ ଓ ଆମ ଘରଡ଼ିହ ମଧ୍ୟରେ ପ୍ରଶସ୍ତ ଗାଆଁ ଦାଣ୍ଡଟି ମାତ୍ର ବ୍ୟବଧାନ । ସାଇ ଝିଅ ହିସାବରେ ସେହି ବିଧବାଟି ହେବେ ମୋର ଜଣେ ଜେଠେଇ । ବାସିଦିନ ତାଙ୍କ ସଙ୍ଗରେ ଦୁଃଖସୁଖ ହେଉଁ ହେଉଁ ଆଉଗୋଟିଏ ବାଳବିଧବାର ବିଷାଦମୟ କାହାଣୀ ତାଙ୍କରି ମୁଖରୁ ଶୁଣିବାକୁ ପାଇଲି । ସେଇଟି ହେଉଛି ମୋର ଏହି ପଡ଼ୋଶିଣୀ ଜେଠେଇଙ୍କର ନିଜ ଭାଇର ଝିଅ—ନାଆଁ ତାର 'ମାଣିକ୍ୟ' । ଘର ଆମ ଗ୍ରାମର ନିକଟବର୍ତ୍ତୀ ଅଣଲେ ଗାରେ ।

ଏହିରୂପେ ତିନୋଟି ବିଧବାଙ୍କ ବିବରଣ ଯେବେ ଆନନ୍ଦରେ କଟକ ବାହୁଡ଼ିଲି । ବୋଉର ଓ ଉକ୍ତ ଜେଠେଇଙ୍କର ସମ୍ମିଳିତ ଅନୁପ୍ରାଣନା ଇନ୍ଧନରୂପେ ମୋର କର୍ମୋତ୍ସାହକୁ ଦ୍ୱିଗୁଣେ ଉଦ୍ଦୀପିତ କରିଦେଲା । ସୁବିଧାକ୍ରମେ ଗୋଟିଏ ଗୋଟିଏ ଉପଯୁକ୍ତ ପାତ୍ର ଯୋଗାଡ଼ କରି ଉଲ୍ଲିଖିତ ତିନୋଟିଯାକ ରୂପବତୀ ବିଧବାଙ୍କୁ କୁମାରୀ ବିବାହ ବିଧାନାନୁଯାୟୀ ବିଭିନ୍ନ ସମୟରେ ପଞ୍ଜିକାସମ୍ମତ ବିବାହ ତିଥିମାନଙ୍କରେ ପରିଣୀତା କରାଇଦେଲି ।

ଯେଉଁ ତିନି ଯୋଗ୍ୟପାତ୍ର ଏହି ତିନି ବିଧବାଙ୍କୁ ଧର୍ମପତ୍ନୀରୂପେ ଗ୍ରହଣ କରିଥିଲେ, ଯଥାକ୍ରମେ ସେମାନେ ହେଲେ—ମିସନ୍ ହାଇସ୍କୁଲର ହେଡ୍ ପଣ୍ଡିତ ବିପତ୍ନୀକ ମାୟାଧର ଦାଶ, ୟୁନିୟନ ପ୍ରେସିଡେଣ୍ଟ ବିପତ୍ନୀକ ରଘୁନାଥ ପଣ୍ଡା ଓ କେନାଲ୍ ପି.ଡବ୍ଲ୍ୟୁ ଅଫିସ୍ର କିରାନି ଅବିବାହିତ କୃଷ୍ଣଚନ୍ଦ୍ର ମହାପାତ୍ର ।

କାଚସିନ୍ଦୂରବିହୀନା ବାଳବିଧବାଙ୍କୁ ଅଳଙ୍କାରବିଭୂଷିତା ଓ ସିନ୍ଦୂରସୀମନ୍ତା ଅବଗୁଣ୍ଠନବତୀ କୁଳଲକ୍ଷ୍ମୀରେ ପରିଣତ କରାଇବା କାର୍ଯ୍ୟରେ ମୋର ଏହି ଭୂମିକା ପ୍ରତି ଆମ ଗ୍ରାମର ଅଧିକାଂଶ ନରନାରୀଙ୍କର ହାର୍ଦ୍ଦିକ ସମର୍ଥନ ଓ ସହାନୁଭୂତି ଥିଲେହେଁ ମୁରବିତ୍ୱ ଜାହିର କରୁଥିବା ରକ୍ଷଣଶୀଳ ପ୍ରାଚୀନପନ୍ଥୀ କେତେକ ବୟୋବୃଦ୍ଧଙ୍କ ରକ୍ତଚକ୍ଷୁକୁ ଡରି କେହି ନିଜର ବିବେକାନୁମୋଦିତ ସ୍ୱାଧୀନ ମନୋଭାବକୁ ପ୍ରକାଶ୍ୟଭାବରେ ବ୍ୟକ୍ତ କରିବାକୁ ସାହସୀ ହୋଇପାରିଲେ ନାହିଁ । ସେହି ମୁରବିକ୍ଷମତାସୀନ ମୁଷ୍ଟିମେୟ ଉଗ୍ର-ପ୍ରତାପୀ ବ୍ୟକ୍ତିଙ୍କ ତର୍ଜନୀ-ସଙ୍କେତରେ ଗ୍ରାମୀଣ ସଭା ବସି ବିଚାର ଚଳିଲା ମୋ ଅନୁପସ୍ଥିତିରେ । ମୁଁ ଶାସ୍ତ୍ରଦ୍ରୋହୀ ଓ ସମାଜବିରୋଧୀ ବୋଲି ସେହି ସଭାରେ ସାବ୍ୟସ୍ତ ହେଲି ଏବଂ ସେହିଦିନଠାରୁ ଆମ ଘରର ସମସ୍ତ ଲୋକ ସମାଜଚ୍ୟୁତ ହେଲୁଁ । ଏହି ଏକତରଫା ସିଦ୍ଧାନ୍ତ ବୋଉକୁ ଜଣାଇଦିଆଗଲା । ସେ ପ୍ରାୟ ସବୁଦିନେ ଗାଆଁରେ ଥାଏ ଏକଲା ।

ବୋଉ ଏ ବେଣ୍ଟା ହୁକୁମରେ ତିଳେହେଁ ବିଚଳିତ ହେଲା ନାହିଁ, କାରଣ ଗ୍ରାମର ମାଇପିମଣ୍ଡଳୀ ଗୋଟାପଣେ ତା' ସପକ୍ଷରେ । ବାହାରକୁ କେବଳ ଏକଘରିଆ, ଭିତରେ

'ଯଥାପୂର୍ବଂ ତଥା ପରଂ—ବୋଉ ଓ ସବୁ ପଡ଼ୋଶିଣୀଙ୍କ ମଧ୍ୟରେ ପରସ୍ପର ଚଳାଚଳି, ଭଲମନ୍ଦ, ଦିଆନିଆ, ପୁଣ୍ୟପର୍ବରେ ପିଠାପଣା ବିନିମୟ ପ୍ରଭୃତି ଅବିକଳ ଆଗଭଳି ଅବ୍ୟାହତ ରହିଥାଏ ।

ଗାଆଁର ବୁଢ଼ା ମୁରବିମାନେ ମତେ ଅନ୍ତରରୁ ଖୁବ୍ ଭଲ ପାଇଆସୁଥିଲେ । ମୁଁ ଯେବେ କଟକରୁ ଯାଏଁ, ସେମାନଙ୍କୁ ଯଥାବିହିତ ଭକ୍ତିର ସହ ମୁଣ୍ଡିଆ ମାରେଁ । ସେମାନେ ମୋ ସହିତ ବେଶ୍ ଖୁସିବାସିରେ କଥାବାର୍ତ୍ତା କରନ୍ତି, କଟକ ହାଲ ପଚାରନ୍ତି । ଏକଘରିଆ ହୋଇଥିଲେ ବି ମୁଁ ସେଇ ଆଗ ରୀତିକୁ ବଜାୟ ରଖିଲି । ନୀତିଭଙ୍ଗ ନକରି ପୂର୍ବପ୍ରାୟ ମଝିରେ ମଝିରେ ଗାଆଁକୁ ଗଲି । ଘରେ ପାଦ ଦେଲା ପରେ ପରେ ବୁଢ଼ାମାନଙ୍କୁ ଭେଟିବାକୁ ପ୍ରଥମ କର୍ତ୍ତବ୍ୟ କଲି । ସେମାନେ ମୋ'ଠାରେ ଉତ୍କ୍ରହ୍ୟାସର କୌଣସି ଲକ୍ଷଣ ଲକ୍ଷ୍ୟ କରିପାରିଲେ ନାହିଁ । ଭୁଲ୍‌ରେ ହେଲେ କେହି କେବେ ମୋ ଆଗରେ ବିବାହ ପ୍ରସଙ୍ଗର ନାଁ ଧରିଲେ ନାହିଁ କି ମୋ' ପ୍ରତି ବିରୂପଭାବ କିମ୍ବା ବିମୁଖତା ପ୍ରକାଶ କଲେ ନାହିଁ ।

ଏହିପରି ଦିନାକେତେ ପାଣି ପରି ଗଡ଼ିଗଲା । ୧୯୬୫ ମସିହା ଫଗୁଣ ମାସର କଥା । ତାର ପ୍ରାୟ ପାଞ୍ଚମାସ ପୂର୍ବରୁ ମୁଁ ସାରସ୍ୱତ ପ୍ରେସ୍ ଛାଡ଼ିସାରିଥାଏଁ । ସ୍ୱନ୍ଦନଗ୍ରୈକବାସୀ ଜଗନ୍ନାଥ ରାଓ (ସିଭିଲ୍‌କୋର୍ଟ କମିଶନର୍) ମୋ ପରିବାରର ଥିଲେ ପରମ ହିତୈଷୀ ଓ ଚରମ ଶୁଭେଚ୍ଛୁ । ତାଙ୍କରି ମାଧ୍ୟମରେ ସାଲେପୁର-ସନ୍ନିକଟବର୍ତ୍ତୀ ପାଟପୁର ଶାସନର ଶ୍ରୀନିବାସ ଦାଶଙ୍କ ସହିତ ମୋର ଏକମାତ୍ର ଭଗିନୀ ସୌଦାମିନୀର ବିବାହ ସମ୍ପାଦିତ ହେବାକୁ ଯାଉଥାଏ । ମୋ ପରିବାରକୁ ତ ଗ୍ରାମବାସୀଏ ବାସନ୍ଦ କରି ରଖିଥାନ୍ତି, ତେଣୁ ଆମ ଘରକୁ କେହି ଆସିବେ ନାହିଁ କି ଏ ଶୁଭ ନିମିତ୍ତଟିରେ ସାହାଯ୍ୟ ସହଯୋଗ କରିବେ ନାହିଁ ବୋଲି ଆଶଙ୍କା କରିବା ମୋ ପକ୍ଷରେ ଅତି ସ୍ୱାଭାବିକ । ଏପରି ଅବସ୍ଥାରେ ବିବାହକାର୍ଯ୍ୟଟି କେଉଁଠି କରିବାକୁ ହେବ, ଏହି ସମସ୍ୟା ହିଁ ଅହୋରାତ୍ର ମୋର ହେଲା ଚିନ୍ତାର ବିଷୟ । ଏଣେ ବିବାହତିଥିର ଲହକା ତାଳ ଝୁଙ୍କି ଝୁଙ୍କି ଆସି ମୋ ମୁଣ୍ଡ ଉପରେ କୁଢ଼େଇ ହୋଇ ପଡ଼ିଲା ପରି ଲାଗୁଥାଏ । ମସ୍ତିଷ୍କ ବାଉଳା ଧରିଗଲା । କିଛି ସ୍ଥିର କରିନପାରି ଦୋଳାୟିତ ଚିତ୍ତବୃତ୍ତିରେ ଶେଷକୁ ପ୍ରବୀଣ ଜଗନ୍ନାଥ ବାବୁଙ୍କର ପରାମର୍ଶ ଲୋଡ଼ିଲି । "ଗାଆଁରେ ହିଁ ବିବାହୋତ୍ସବ ଅନୁଷ୍ଠିତ ହେବ" ବୋଲି କହି ସେ ତା'ର ଯାବତୀୟ ଆୟୋଜନର ଦାୟିତ୍ୱ ନିଜ ମୁଣ୍ଡକୁ ନେଇଗଲେ । ମଙ୍ଗଳାପାକର ଦୁଇଦିନ ଆଗରୁ ମୁଁ ଓ ମୋ କୁଟୁମ୍ବ ସହିତ ଆମ ଗାଆଁକୁ ରମାନା ହେଲେ । ଆବଶ୍ୟକ ସକଳ ଜିନିଷ କଟକରୁ କିଣି ସଙ୍ଗରେ ନେଲେ । ତାଙ୍କ ନିର୍ବାଚିତ ଗୁଡ଼ିଆ, ସୁଆର, ବାରିକ, ପୁରୋହିତ ଓ ତିନିଜଣ ମୂଲିଆ ମଧ୍ୟ ଆମମାନଙ୍କର ସହଯାତ୍ରୀ । ଏହିରୂପେ ଚିନ୍ତାହରଣ ଜଗନ୍ନାଥେ ହେଲେ ମୋର ଏକମାତ୍ର ଭରସା ।

କଳି, ମେଳ ଭାଙ୍ଗିବାରେ ଜଗନ୍ନାଥ ରାଓ ଅତି ବିଚକ୍ଷଣ ଓ ଧୁରୀଣ । ଏସବୁ ସମସ୍ୟାର ସମାଧାନରେ ତାଙ୍କ ପ୍ରତ୍ୟୁତ୍ପନ୍ନ ବୁଦ୍ଧିବୃତ୍ତି ମ୍ୟାଜିକ୍ ପରି କାମ କରେ । ତାଙ୍କ ସ୍ୱଭାବସୁଲଭ

ମିଠା ବଚନରେ ଅପରିଚିତ ହୁଏ ଅତିପରିଚିତ, ପର ହୋଇଯାଏ ଆପଣାର, ଶତ୍ରୁ ପାଲଟିଯାଏ ମିତ୍ର ।

ଜଗନ୍ନାଥ ବାବୁ ଆମ ଘରେ ଗୋଡ଼ ଦେଇଛନ୍ତି ଯାହା ସେତିକି, ପରକ୍ଷଣରେ ହଠାତ୍ କୁଆଡ଼େ ଉଭାନ୍ ! ଖୋଜଖବର ନେବାରେ ଜଣାଗଲା, ଜଗନ୍ନାଥେ ଅନାହୂତ ଭାବରେ ଘର ପରେ ଘର ସଙ୍ଖୋଳିବାରେ ଲାଗିଛନ୍ତି । ବିଶେଷକରି ବର୍ଷୀୟାନ୍‌ମାନଙ୍କ ମେଳରେ ବସି କି ଆତ୍ମୀୟତା ସୃଷ୍ଟି କରିଦେଇଛନ୍ତି କେଜାଣି, ଗାଆଁ ଟାଯାକର ସେ ହୋଇଉଠିଛନ୍ତି 'କଣ୍ଟେଇ କୁଣିଆଁ' ।

ବସ୍ତୁତ ବିଳମ୍ବରେ ରାତି ଘଡ଼ିଏ ପରିକି ଆମ ଘରକୁ ଫେରିଲେ ସେ ଗ୍ରାମ ଫେରିସାରି ଓ ଆପ୍ୟାୟନର ଉପାୟନ ବହନକରି । ମୁଖମଣ୍ଡଳ ପ୍ରସନ୍ନ ଓ ପ୍ରଶାନ୍ତ । ଦୃଷ୍ଟିରେ ସାଫଲ୍ୟର ଦ୍ୟୁତି । କପାଳକୁଞ୍ଚନରେ କୂଟରଚନାର ବ୍ୟଞ୍ଜନା ।

ପରଦିନ ପ୍ରଭାତରେ ତାଙ୍କ ଅନୁଜ୍ଞାକ୍ରମେ ମୁଁ ପ୍ରତ୍ୟେକ ବୟୋଃଧିକ ଗୁରୁଜନଙ୍କ ପାଦ ପାଖକୁ ଯାଇ ବିନମ୍ର ପ୍ରଣିପାତପୂର୍ବକ ଚରଣରେଣୁ ଆଣିଲି ଏବଂ ଭଉଣୀର ବିଭା କାମ ଯେପରି ଭଲେ ଭଲେ ବଢ଼ିଯିବ, ସେଥିପାଇଁ ସେମାନଙ୍କ ଆଶୀର୍ବାଦ ଭିକ୍ଷା କଲି । ଘରକୁ ଫେରି ଦେଖେଁ ତ, ଜଗନ୍ନାଥବାବୁ ଦାଣ୍ଡପିଣ୍ଡାରେ ବସି ମାଛ ଯୋଗାଇବା ପାଇଁ ଧୀଅରକୁ ଓ ଦୁଧ ଯୋଗାଇବାପାଇଁ ଗଉଡ଼କୁ ବଇନା ସହ ବରାଦ ଦେଉଛନ୍ତି—ସେହିଦିନଠାରୁ ବାହାବାସି ପର୍ଯ୍ୟନ୍ତ । ଆଉ ସେ-ଦିନର ବରାଦୀ ମାଛତକ ଓ ଦୁଧତକ ଧରନ୍ତି ଆଣି ପହଞ୍ଚାଇଦେବାକୁ ତାକିଦ କରୁଛନ୍ତି, କାରଣ କେତେକ ବନ୍ଧୁବାନ୍ଧବଙ୍କର ବାରଟା ସୁଦ୍ଧା ଆସିଯିବାର କଥା—ଘର ଲୋକବାକ ଓ ସେମାନଙ୍କ ପାଇଁ ମାଛ ତରକାରି ଓ ଦୁଧଖିରି ପ୍ରସ୍ତୁତ ହୋଇ ରହିବ ।

ଝଙ୍କା ଭିତରକୁ ପଶନ୍ତେ ଦେଖିଲି, ଅଗଣାରେ ନିର୍ମିତ ହୋଇଥିବା ଲମ୍ବା ରନ୍ଧାଶାଳର ଏକାଂଶରେ ଗୁଡ଼ଆବୁଡ଼ା ମୁଢ଼ିମୁଆଁ କରିସାରି ଉଖୁଡ଼ା ପାଗ ଚାଲିଛି । ଏହାପରେ ଆରିସା, କାକରା, ଖଜା, ଗଜା, ଲଡ଼ୁ, ଜଲେବି, ମାଲପୁଆ, ରସଗୋଲା ପ୍ରଭୃତି ଅନେକ ସାମଗ୍ରୀ ପ୍ରସ୍ତୁତ କରିବ, ରାତି ଭୋର୍ ହେଉପଛେ ଏତିକି କାମ ନିଶ୍ଚୟ ସାରିବାକୁ ପଡ଼ିବ । ଏହିସବୁ ସାମଗ୍ରୀରୁ କିଛି ଘରେ ବନ୍ଧୁବାନ୍ଧବ ଓ ଝିଅଝିଆରୀଙ୍କ ପିଷ୍ଟ ଖର୍ଚ୍ଚ ହେବ ଏବଂ ଅବଶିଷ୍ଟରୁ ଆଳପଣା ସଭାକୁ ନିମନ୍ତ୍ରିତ ବର ସମେତ ପୂର୍ଣ୍ଣ ବରଯାତ୍ରୀ ଦଳକୁ ଓ ଆମନ୍ତ୍ରିତ ଗ୍ରାମବାସୀମାନଙ୍କୁ ପର୍ଯ୍ୟାପ୍ତଭାବରେ ପରିବେଷଣ କରାହିବ । ରନ୍ଧାଶାଳର ଅପରାଂଶରେ ପାଚକ ନନା ରୋଷେଇକାମ ଆରମ୍ଭ କରିଦେଇଛି । କାରିଗରଦ୍ୱୟଙ୍କ ନିର୍ଦ୍ଦେଶମତେ ଉଚିତ ମୂଲଆଯାକ ଯୋଗାଇବା ଓ ଯୋଗାଡ଼ିବା କାର୍ଯ୍ୟରେ ତତ୍ପରତାର ସହିତ ନିଯୁକ୍ତ ଅଛନ୍ତି ।

ଅଳ୍ପ ସମୟ ପରେ ଦିନକର ପ୍ରୟୋଜନ ମାଫିକ କ୍ଷୀରଭାର ଧରି ବେହେରା ବୁଢ଼ା ଆସିଗଲା । ତା ପଛକୁ ମାଛଟୋକେଇ ମୁଣ୍ଡେଇ ପହଞ୍ଚିଗଲା ଧୀଅରପୁଅ । ଚଉଆଖିଆ

ଜଗନ୍ନାଥବାବୁ କୁରୁଚିଟିଏରେ ବସି ଯେତେ ଯାହା କାମ ହେବ ତାର କ୍ରମ ବିଭାଗ କଲେ ଏବଂ ଯେଉଁସବୁ କାମ ଚାଲିଥାଏ ତାକୁ ତଦ୍‌ବିର କରିବାକୁ ଲାଗିଲେ ।

ଅରୁଆ ବାସୁମତୀ ଚାଉଳର ପଲାଉ ହାଣ୍ଡି ଚୁଲିରେ ବସିଲା, ଆଉ ଏକ ହାଣ୍ଡିରେ ଦୁଧ ପାୟସ ଟଗ୍‌ମଗ୍‌-ଟଗ୍‌ମଗ୍‌ ହୋଇ ଫୁଟିଲା । ଶେଷକୁ ଚୁଲିରେ ବସିଥିବା ବଡ଼ ପିତ୍ତଳ କଡ଼େଇରେ ସୋରିଷତେଲ ଢାଳି ବିତାଏ ମୁଣ୍ଡା ମୁଣ୍ଡା ମାଛ କଡ଼୍‌ କଡ଼୍‌ ଅବସ୍ଥାରେ ଛଣା ହେଲା । ତହିଁରୁ କିଛି ମାଛଭଜା ଅଲଗା କରି ରଖିଦେଇ ଅବଶିଷ୍ଟତିକ ତରକାରି କରାଗଲା ।

ପହିଲେ ପଲାଉ ଓ ଖୁଆପକା କ୍ଷୀରର ମହକ ସାଇକି ସାଇ ଚହଟିଗଲା । ଆଗରୁ କେହି ନ୍ୟାସ୍ନାନମିତ୍ତରେ ପଲାଉ କରି ନଥିଲେ କି ଗାଁ ଲୋକେ କେବେ ପଲାଉ ସୁଆଦ ଚାଖି ନଥିଲେ । ଜଗନ୍ନାଥ ବାବୁଙ୍କ ଉର୍ବର ମଗଜର ଓସ୍ତାଦି ବୁଦ୍ଧିରୁ ମୂଳବସନ୍ତ ଶାସନରେ କଟକୀ ପଲାଉର ଏଇ ହେଲା ପ୍ରଥମ ଆବିର୍ଭାବ । ତା' ମହକର ସାମାନ୍ୟ ପରେ ଯେତେ-ବେଳେ ତଟକା ନଈମାଛର ଛଣା ବାସନା ଓ ତା' ପଛକୁ ରନ୍ଧା ବାସନା ବନ୍ଦିଟାସାରା ଖେଳିଗଲା, ତାର ସମ୍ମୋହନ ମାଦକତାରେ ଲୋକଙ୍କ ନାକ ଫାଟିପଡ଼ିଲା । ସ୍ତ୍ରୀଲୋକମାନେ, ବିଶେଷତଃ ବୁଢ଼ୀହାଡ଼ୀଏ କାନକୁ କାନ ଯୋଡ଼ି ଭୁଟ୍‌ଭାଟ୍‌-ଟୁପୁର୍‌ଟାପର୍‌ ହେଲେ— ଆହୁରି ତ ଏତେ ଏତେ ବଢ଼ିଆ ସାମଗ୍ରୀର ଆୟୋଜନ, ବିଭାଦନ କେତେ କ'ଣ କଟକୀ ଖାନା ନ ହେବଟି ! ଆମେ ଯାଆନ୍ତେନି ଟିକେ, ଗଳିପଶି ତାଙ୍କ ଘରେ ମୁହଁ ମାରିଦେଇ ଆସନ୍ତେନି ! ଏଥିରେ କ'ଣ ଅପ୍ରାଧ ଲାଗିଯାଉଛି !"

ତା'ପରେ ଦେଖ ମଜା—'କଣାବୁଢ଼ୀପି, ବେଳ କାଳ ଜାଣି ଗଢ଼ିଲେ ଗୋପୀ' । ଆଉ ସମଲା ନପଡ଼ୁ ଯିଏ ଯା କବରରେ ନାନା ବାହାନାରେ ଜଣକ ପରେ ଜଣେ ବାଡ଼ିପଟ ବାଟେ ବେଶି ଗସ୍ତ କଲେ ଆମ ଘରକୁ । ବୋଉ ତ ସହଜେ ପଡ଼ୋଶ-ସ୍ନେହୀ, ଯିଏ ଯେତେବେଳେ ଆସିଲା ତାକୁ ଅଖିଆ ଛାଡ଼ିଦେଲା ନାହିଁ । ଶେଷକୁ ଏପରି ହେଲା ଯେ, ଯେଉଁ ନେତାରଂମନ୍ୟ କେତେ ଜଣ ନାଟର ଗୋବର୍ଦ୍ଧନ ସାଜି ମତେ ସାମାଜିକ ଶାସ୍ତି ଦେବାର ନିଷ୍ଫଳ କୁସ୍ତିରେ ମାତିଥିଲେ, ସେହିମାନଙ୍କ ପରିବାରର ଅଚ୍ଛା ଆଚ୍ଛା ପୋଝିତା ମାଇପେ ମଧ୍ୟ ଲୁଚିଛପି ଆମ ଘରକୁ ଆସି ଆସନ୍ନପରିଣୟା ମୋ ଭଉଣୀକୁ ଆଶୀର୍ବାଦ ପ୍ରଦାନାନନ୍ତର ପଲାନ୍ନପାୟସାଦି ପେଟେ ପେଟେ ଠୁଙ୍କି ଚରମ ପରିତୋଷରେ ପୁରପ୍ରସ୍ଥିତା ହେଲେ ।

ମୋ ପରିବାର ଉପରେ ପ୍ରୟୋଗ କରାଯାଇଥିବା ଦଣ୍ଡାତ୍ମକ କଟକଣା ବଳବତ୍ତର ରହିଥିବା ଅବସ୍ଥାର ଅନ୍ତରାଳରେ ଏ ଯେଉଁ ନାଟକୀୟ ଘଟଣା ଘଟିଗଲା, ତାହା ବେଶୀ ବେଳ ଘୋଡ଼େଇହୋଇ ରହିପାରିଲା ନାହିଁ । କ୍ରମେ ଏ-କାନରୁ ସେ-କାନ ହୋଇ ତଥାକଥିତ ନେତାମାନଙ୍କ କର୍ଣ୍ଣଗତ ହୁଅନ୍ତେ ସେମାନଙ୍କ କଣ୍ଢିହୁର ମେରୁଦଣ୍ଡ ବଡ଼ ଜୋର୍‌ ଜଖମ ହୋଇଗଲା । ମୁଣ୍ଡରେ ଚନ୍ଦୁଲିଆ ବଜ୍ର ପଡ଼ିଲା—କିପରି ନିଜ ବଡ଼ପଣର ମର୍ଯ୍ୟାଦା ତିଷ୍ଠି ରହିବ ?

ସେମାନଙ୍କର ଏହି ବିପର୍ଯ୍ୟସ୍ତ ମାନସିକ ଅବସ୍ଥାର ସୁଯୋଗ ନେଇ ବ୍ୟବସ୍ଥାକୌଶଳୀ ଜଗନ୍ନାଥବାବୁ ମତେ କହିଲେ, "ଏବେ ସମସ୍ତଙ୍କ ଘରେ ନିମନ୍ତ୍ରଣ-ଗୁଆ ଚଲାଇଦିଅ । ପ୍ରଥମେ ବିପକ୍ଷ ଶାସନମୁରବିମାନଙ୍କୁ ନିମନ୍ତ୍ରଣ କରିବ, ତା'ପରେ ଅନ୍ୟମାନଙ୍କୁ ।"

ମୁଁ ଅବିଳମ୍ବେ ହରିଦ୍ରାରଞ୍ଜିତ ଟିକି ଠାକୁର କାଚଥାରେ ନିମନ୍ତ୍ରଣ-ଗୁଆମାନ ବାନ୍ଧି ପହିଲେ ମୁଣ୍ଡିଆଳ ମୁରବିସାଆନ୍ତମାନଙ୍କ ଦ୍ୱାରସ୍ଥ ହେଲି । ଲକସ୍ତକ ଭଙ୍ଗୀରେ ମସ୍ତକ ନୁଆଁଇ ପ୍ରତ୍ୟେକଙ୍କ ହସ୍ତକୁ ଗୋଟିଏ ଗୋଟିଏ ନିମନ୍ତ୍ରଣ-ଗୁଆ ବଢ଼ାଇଦେବାକୁ ଉଦ୍ୟତ ହୁଅନ୍ତେ ସେମାନେ ବିନା ଉଚ୍ଚବାଚରେ କର ପ୍ରସାରି ଗ୍ରହଣ କଲେ । ତଦୁତ୍ତରେ ଅନ୍ୟାନ୍ୟ ଘରର ମୁରବିବୃନ୍ଦଙ୍କୁ ପୂର୍ବ ରୀତିରେ ନିମନ୍ତ୍ରଣ କରି ନିର୍ଦ୍ୱନ୍ଦ୍ୱରେ ଘରକୁ ଫେରିଲି ଶରୀରସ୍ଥ ଅନ୍ତଃସ୍ଥର ବିପୁଳ ଉଲ୍ଲାସ ଘେନି । ଜଗନ୍ନାଥ ବାବୁଙ୍କ ଉଦ୍ଭାବିତ ପଲ୍ଲବ-ପାୟସ-ମତ୍ସ୍ୟଗନ୍ଧର ଏ ଯେଉଁ ପ୍ରଲୋଭନୀୟ ଚୌମ୍ବକ ଆକର୍ଷଣ, ତାର ତାତ୍‌କ୍ଷଣିକ ଚମତ୍କାର ଶକ୍ତି ଦେଖି ମୁଁ ତାଟକା ହୋଇଗଲି ।

ପରଦିନ ମଙ୍ଗଳପାକ । ଲମ୍ବା ଦାଣ୍ଡପିଣ୍ଡାରେ ସପ ଓ ସତରଞ୍ଜି ବିଛା ହୋଇଥାଏ । କେତେ ଜଣ ବନ୍ଧୁ ତହିଁରେ ଉପବେଶନ କରିଥାନ୍ତି । ସକାଳ ପ୍ରାୟ ସାତଟା ସମୟରେ ବିରୋଧୀ ଦଳର ଅସଲ ମଙ୍ଗୁଆଳ କାନ୍ଧରେ ପାକଲି ଗାମୁଛା ପକେଇ ଗଲାଖଙ୍କାର ମାରିମାରିକା ଆମ ଦାଣ୍ଡଘରର ଭିତରକୁ ଢୁକିଲେ । ସେତେବେଳେ ମୁଁ ଓ ଜଗନ୍ନାଥବାବୁ ଅଗଣାରେ ବସି ସେଇ ମଙ୍ଗଳପାକ ଦିବସଟିର କାର୍ଯ୍ୟକ୍ରମ ବିଷୟରେ କଥାବାର୍ତ୍ତା ହେଉଥିଲୁଁ । ଆମେ ଦୁହେଁ ଉଠିଆସି ତାଙ୍କୁ ସାଦର ଅଭ୍ୟର୍ଥନା ସହ ଖଞ୍ଜା ଭିତରକୁ ଘେନିଯାଇ ଗୋଟିଏ ଚଉକିରେ ବସାଇଲୁଁ । ନିର୍ମଳ ପୁରୁଷ ପରି ସେ ବିବାହ ଆୟୋଜନର ସବୁ ଖବର ଟିକିନିଖି ବୁଝି ଖୁବ୍ ଆନନ୍ଦ ପ୍ରକାଶ କଲେ । ଏହି ସମୟରେ ତାଙ୍କର କେତେକ ଦଳୀୟ ସାଥୀ ମଧ୍ୟ ଆସି ପହଞ୍ଚିଗଲେ ଏବଂ ଆସନ୍ତାକାଲି ବରାଗମନଠାରୁ ବିବାହ ଶେଷ ପର୍ଯ୍ୟନ୍ତ ସବୁ କାର୍ଯ୍ୟ ତତ୍ତ୍ୱାବଧାନ କରି ନିମିଷଟି ଖିବ୍ ସୁରୁଖୁରୁରେ ଉଠେଇଦେବେ ବୋଲି ମୁରବିସୁଲଭ କଣ୍ଠରେ ମତେ ନିର୍ଭର ପ୍ରତିଶ୍ରୁତି ଦେଇଗଲେ ।

ଇଷ୍ଟଦେବ ଗଣେଶଙ୍କ କୃପାରୁ ଏହିରୂପେ ପୂର୍ବ ବିରୋଧିତାର ଅବସାନ ଘଟିଲା । ସମସ୍ତ ଗ୍ରାମବାସୀଙ୍କ ସକ୍ରିୟ ସହଯୋଗରେ ମୋ ଭଉଣୀ ସୌଦାମିନୀର ପରିଣୟୋତ୍ସବ ନିର୍ବିଘ୍ନରେ ସମ୍ପାଦିତ ହୋଇଥିଲା ।

ବିବରି-ଉଦ୍ଧାରକ ସୁଖ୍ୟାତ ଟୀକାକାର ବୈରାଗିଚରଣ ମିଶ୍ର (୧୮୮୩-୧୯୬୬) ଓ ପଣ୍ଡିତ ଗୋଦାବରୀଶ ମିଶ୍ର (୧୮୮୬-୧୯୫୬) ବୟସରେ ପରସ୍ପରଠାରୁ ଯଥାକ୍ରମେ ତିନି ବର୍ଷ ବଡ଼ ସାନ ହେଲେହେଁ ଉଭୟେ ପ୍ରବେଶିକା (Entrance) ଶ୍ରେଣୀରେ ସହାଧ୍ୟାୟୀ ଥିଲେ ଏବଂ କଲିକତା ବିଶ୍ୱବିଦ୍ୟାଳୟରେ ପ୍ରବେଶିକା ପରୀକ୍ଷା ଦେଇ ୧୯୦୬ ମସିହାରେ ଉତ୍ତୀର୍ଣ୍ଣତା ଲାଭ କରିଥିଲେ । ଗୋଦାବରୀଶ ଦ୍ୱିତୀୟ ଶ୍ରେଣୀରେ ଓ ବୈରାଗିଚରଣ ତୃତୀୟ ଶ୍ରେଣୀରେ ପାସ୍ କରି ଦଶ ଟଙ୍କା ଲେଖାଏଁ ମାସିକ ବୃତ୍ତି ପାଇଥିଲେ । ଏ ସମ୍ପର୍କରେ

ରକ୍ଷଣଶୀଳତାର ଅନ୍ୟକ ଓ ସାମାଜକ କୁସଂସ୍କାରର ହନ୍ତକ ପଣ୍ଡିତ ଗୋଦାବରୀଶ ତାଙ୍କ ଆତ୍ମଚରିତରେ ଲେଖିବାକୁ ଯାଇ ବୈରାଗୀବାବୁଙ୍କ ସମ୍ବନ୍ଧରେ ନଜର ନର୍ମଳ ମତ ପ୍ରକାଶ କରିଛନ୍ତି, "ମୁଁ (ପ୍ରବେଶିକା ପରୀକ୍ଷାରେ) ଦ୍ୱିତୀୟ ଶ୍ରେଣୀରେ ପାସ୍ କରି ଦଶଟଙ୍କିଆ ବୃତ୍ତି ପାଇଲି । × × × ତୃତୀୟ ଶ୍ରେଣୀରେ ପାସ୍ କରି (ଦଶଟଙ୍କିଆ) ବୃତ୍ତି ପାଇଥିବା ଛାତ୍ରଙ୍କ ମଧ୍ୟରୁ ଜଣେ ହେଉଛନ୍ତି ବୈରାଗୀ । 'ବିଧବାବିବାହ'ର ସ୍ରଷ୍ଟାରୂପେ ଅଭିଆଡ଼ୀ ରହି-ଯାଉଥିବା ବାଲବିଧବାମାନଙ୍କର ମୁକ୍ତିଦାତା ଭାବରେ ନାମ କରିଛନ୍ତି ଯେଉଁ ବୈରାଗିଚରଣ ମିଶ୍ର, ସେ ସେହି ବୈରାଗୀ ।"

## (୨୩) ଉତ୍କଳ ସାହିତ୍ୟ ସମାଜର ଜୀର୍ଣ୍ଣ ସଂସ୍କାର—

'ସହକାର'ର ଅଭାବନୀୟ ଶ୍ରୀବୃଦ୍ଧି ଯୋଗୁଁ ସାରସ୍ୱତ ପ୍ରେସ୍ ୧୯୩୬ ମସିହା ବେଳକୁ ଶ୍ରେଷ୍ଠ ଶ୍ରେଷ୍ଠ ସାହିତ୍ୟିକଙ୍କର ମିଳନପୀଠ ହୋଇସାରିଥାଏ । ପ୍ରଫେସର୍ ବିପିନବିହାରୀ ରାୟ, ପ୍ରଫେସର୍ ରତ୍ନାକର ପତି, ପଣ୍ଡିତ ଗୋଦାବରୀଶ ମିଶ୍ର, ଲକ୍ଷ୍ମୀନାରାୟଣ ସାହୁ, କାଳନ୍ଦୀଚରଣ ପାଣିଗ୍ରାହୀ, ସରଳା ଦେବୀ, ଡକ୍ଟର ବ୍ରଜବିହାରୀ ମହାନ୍ତି, ଗୋଦାବରୀଶ ମହାପାତ୍ର, କାହ୍ନୁଚରଣ ମହାନ୍ତି, ରାମପ୍ରସାଦ ସିଂହ ପ୍ରଭୃତି କଟକବାସୀ ପ୍ରମୁଖ ସାହିତ୍ୟ-କାରଙ୍କ ସୌହାର୍ଦ୍ଦ୍ୟସିକ୍ତ ସମାବେଶରେ ସେହି ମିଳନପୀଠର ମର୍ଯ୍ୟାଦା ଦିନକୁଦିନ ବଢ଼ି-ଉଠୁଥାଏ । ଅଧିକାଂଶ ସମୟରେ ସେଠାରେ 'ଉତ୍କଳ ସାହିତ୍ୟ ସମାଜର ଦୁରବସ୍ଥା ଓ ତା'ର ପ୍ରତିକାର' ଆଲୋଚନାର ପ୍ରଧାନ ବିଷୟବସ୍ତୁ ହୋଇଥାଏ । ପ୍ରେସ୍ ପକ୍ଷରୁ ବାଳକୃଷ୍ଣ ବାବୁ, ଭଗବାନ ପତି ଓ ମୁଁ ସର୍ବଦା ଆଲୋଚନାରେ ଯୋଗଦେଉଁ । ସେତେବେଳେ 'ଉତ୍କଳ ସାହିତ୍ୟ ସମାଜ'ର ସାନ୍ନିପାତିକ ଦଶା । କାର୍ଯ୍ୟନିର୍ବାହିକା ସମିତିର ବୈଠକ ପାଇଁ ଯଥାରୀତି ନୋଟିସ୍ ବୁଲୁଥିଲେହେଁ କୋରମ୍ ଅଭାବରୁ ବୈଠକ ସ୍ଥଗିତ ରହେ । ବର୍ଷ ମଧ୍ୟରେ କଷ୍ଟେମଷ୍ଟେ ଦୁଇଟି ବା ତିନୋଟି ପ୍ରବନ୍ଧପାଠରୁ ଅଧିକ ଯୋଗାଡ଼ ହୋଇପାରେ ନାହିଁ । ସହରବାସୀ ଶିକ୍ଷିତସାଧାରଣଙ୍କର ସେହି ଅନାକର୍ଷଣୀୟ ନୀରସ ସଭାକୁ ଯିବାପାଇଁ ବିଶେଷ ସ୍ପୃହା ନଥାଏ । ସଭାସ୍ଥଳକୁ ଯଥାସମୟରେ ଆସନ୍ତି କେବଳ ଶଶିଭୂଷଣ ରାୟ (ସମ୍ପାଦକ), ଅଶ୍ୱିନୀ ଦାଶ (ସହକାରୀ ସମ୍ପାଦକ), ଉପେନ୍ଦ୍ରଚନ୍ଦ୍ର ମିଶ୍ର (କୋଷାଧ୍ୟକ୍ଷ) । ଧରାବନ୍ଧା ସଭ୍ୟ ବିଶ୍ୱନାଥ କର, ବିଚିତ୍ରାନନ୍ଦ ଦାସ, ଭିକାରିଚରଣ ପଟ୍ଟନାୟକ, ପ୍ରାଣକୃଷ୍ଣ ପରିଜା, ଲକ୍ଷ୍ମୀଧର ମହାନ୍ତି, ଗୋପାଳଚନ୍ଦ୍ର ପ୍ରହରାଜ, ଚିନ୍ତାମଣି ଆଚାର୍ଯ୍ୟ, ପଣ୍ଡିତ ମୃତ୍ୟୁଞ୍ଜୟ ରଥ, ପଣ୍ଡିତ କୁଳମଣି ଦାଶ, ପଣ୍ଡିତ ଅର୍ତ୍ତତ୍ରାଣ ଶତପଥୀ, ପଣ୍ଡିତ ଆକୁଳ ମିଶ୍ର, ସୁଧାକର ପଟ୍ଟନାୟକ, କୃଷ୍ଣଚନ୍ଦ୍ର ମିଶ୍ର, ଜଗନ୍ନାଥ ତ୍ରିପାଠୀ, କୃଷ୍ଣଚନ୍ଦ୍ର ସେନଗୁପ୍ତ, ବିରଜମୋହନ ସେନାପତି, ସୂର୍ଯ୍ୟକାନ୍ତ ରାଉ ପ୍ରଭୃତିଙ୍କ ମଧ୍ୟରୁ ଅଙ୍ଗୁଳିମେୟ କେତେଜଣ ମାତ୍ର ପାଳି କଲାପରି ବିଧିରକ୍ଷାପାଇଁ କିଂଚିତ୍ ବିଳମ୍ବରେ ଆସନ୍ତି କେବଳ ହାଜିରା ବହିରେ ନିଜର ନାମକୁ ବଞ୍ଚାଇରଖିବା ଉଦ୍ଦେଶ୍ୟରେ । ଯାହାଙ୍କର ସୁବିଧା ନଥାଏ, ସେମାନେ ଆସିବା କଥାକୁ ପୁରା ପାସୋରିଦେଇଥାନ୍ତି । ହାଟରେ ପରିବାବିକା

ଓ ଫେରନ୍ତି ବାଟରେ ବୋହୂଘରଦେଖା ଦୁଇ କାମ ଗୋଟାଏ ଗସ୍ତରେ ଖତମ୍ କଲିପରି କେତେକ ଚତୁର ସଭ୍ୟ ଅଳ୍ପ ସମୟପାଇଁ ସଭାରେ ମୁହଁ ମାରିଦେଇ ଚୁପ୍‌ସେ ଖସିଆସନ୍ତି ସନ୍ନିହିତ ଗ୍ରୈଧୂଆବଜାର ମାର୍କେଟ୍‌କୁ ଓ ଘରଣୀଙ୍କ ବରାଦ ମୁତାବକ ସୌଦାପତ୍ର ଧରି ସିଧା ମୁହାଁନ୍ତି ଘରକୁ ।

ଶ୍ରୋତୃସଂଖ୍ୟାର ଏହି ଦୟନୀୟ ଦାରିଦ୍ର୍ୟ ଦୂର କରିବାଲାଗି ସମ୍ପାଦକ ଶଶୀବାବୁ ଆଗରୁ ନର୍ମାଲ୍ ସ୍କୁଲର ଅଧ୍ୟକ୍ଷଙ୍କୁ ନେହୁରାନେମତ ହୋଇ ନିବେଦନ କରିଥାନ୍ତି ବୋର୍ଡ଼ିଂ-ବାସୀ ଗୁରୁଛାତ୍ରମାନଙ୍କୁ ସଭାସ୍ଥଳକୁ ପଠାଇବା ପାଇଁ । ତେଣୁ ସେମାନଙ୍କ ସଦଳ ଉପସ୍ଥିତିକୁ ସମ୍ପାଦକ ମହାଶୟ ସତୃଷ୍ଣ ନୟନରେ ଅନାଇ ବସିଥାନ୍ତି । ସେହି ଗୁରୁଛାତ୍ରମାନେ ହିଁ 'ସାହିତ୍ୟ ସମାଜ'ର ମହତ ରଖନ୍ତି । ସେମାନେ ଶ୍ରୀରାମଚନ୍ଦ୍ର ଭବନରେ ପଦାର୍ପଣ ନ କରିବା ପର୍ଯ୍ୟନ୍ତ ସାହିତ୍ୟ ସମାଜର ସାଧାରଣ ସଭା ଆରମ୍ଭ ହୋଇପାରେ ନାହିଁ । ଥରେ ଥରେ ସ୍ଥାୟୀ ସଭାପତି ମଧ୍ୟ ଅନୁପସ୍ଥିତ ରହିଯାନ୍ତି । ବାଧ୍ୟ ହୋଇ ଉପସ୍ଥିତ ସଭ୍ୟମାନଙ୍କ ମଧ୍ୟରୁ ଜଣେ ବରିଷ୍ଠଙ୍କୁ ସଭାପତିରୂପେ ବରଣ କରି ସଭାକାର୍ଯ୍ୟ ଚଳାଇବାକୁ ପଡ଼େ । ମୋଟ ଉପରେ, ପ୍ରାକୃତିକ ଉତ୍କଳର ଶୀର୍ଷତମ ବାଣୀପୀଠଟି ନାମକୁମାତ୍ର ଅସ୍ତିତ୍ୱରେ ହିଁ ଜିଇଁରହିଥାଏ ।

ଏହି ଦୁରନ୍ତ ଦୁର୍ଗତିରୁ ଉଦ୍ଧାର କରି 'ସାହିତ୍ୟ ସମାଜ'କୁ ତୁରନ୍ତ କିପରି ଉଜ୍ଜୀବିତ କରିବାକୁ ହେବ, ଏହାହିଁ ହେଲା ସାରସ୍ୱତ ଗୋଷ୍ଠୀର ପ୍ରଧାନ ଧ୍ୟେୟ । ଆଶୁ ପନ୍ଥା ନିର୍ଦ୍ଧାରଣ କରିବା ଅଭିପ୍ରାୟରେ ବାଳକୃଷ୍ଣବାବୁ ଗୋଟିଏ ଘରୋଇ ବୈଠକର ଆୟୋଜନ କରାଇଲେ । ସାଉଁଳିଆପଟିରେ ଥିବା ପୁରୁଣା 'ମୁକୁର ପ୍ରେସ୍' ଗୃହରେ ସେହି ଗୁପ୍ତ ବୈଠକ ବସିଲା । ସହକାର ତଥା ସାରସ୍ୱତ ପ୍ରେସ୍ ସହିତ ସମ୍ପୃକ୍ତ ବଛା ବଛା ଯୁବ-ସାହିତ୍ୟିକ ଓ ଚିନ୍ତାମଣି ମିଶ୍ର, ଶରତ୍‌ଚନ୍ଦ୍ର ମୁଖାର୍ଜି ପ୍ରଭୃତି କର୍ମୋତ୍ସାହୀ ସଙ୍ଗଠକ ତହିଁରେ ଯୋଗଦାନ କଲେ । ଦୀର୍ଘ ତିନି ଘଣ୍ଟା ବ୍ୟାପୀ ବିସ୍ତୃତ ଆଲୋଚନା ପରେ ସର୍ବସମ୍ମତିକ୍ରମେ ଚୂଡ଼ାନ୍ତ ଧାର୍ଯ୍ୟ ହେଲା—ଉତ୍କଳ ସାହିତ୍ୟ ସମାଜକୁ ମୌରସି ସମ୍ପତ୍ତିରୂପେ ଜାବୁଡ଼ି ଧରି ରଖିଥିବା ଅଥର୍ବ ଜରଦ୍‌ଗବ ପଣ୍ଡାଙ୍କୁ ପ୍ରତ୍ୟକ୍ଷ ସଂଗ୍ରାମରେ ହଟାଇଦେଇ ସେମାନଙ୍କ ହାତରୁ ନିୟନ୍ତ୍ରଣର ବଲ୍‌ଗା ଝିଙ୍କି ଆଣିବାକୁ ହେବ; ଏଥିପାଇଁ ଆବଶ୍ୟକ ଯୁବରକ୍ତର ଦୁର୍ଦ୍ଧର୍ଷ ଅଭିଯାନ, ଆଉ ସେହି ଅଭିଯାନରେ ଯୁଯୁତ୍ସୁ ବେଶରେ ଅସ୍ତ୍ରଧାରଣ କରିବେ ଶତାଧିକ ସଂଖ୍ୟକ ନୂତନ ସଭ୍ୟ, ଯାହାଙ୍କୁ ସଂଗ୍ରହ କରିବାର ସକ୍ରିୟ ଉଦ୍ୟମ ଆଜି ଏହିଠାରୁ ହିଁ ଆରମ୍ଭ ହେବ ।

ଉଦ୍ଦୀପନାର ଅଗ୍ନିକଣା ଭେଦିଗଲା ଶିରାଏ ଶିରାଏ । ଯେଉଁମାନେ ସେଠାରେ ଉପସ୍ଥିତ ଥିଲେ, ପ୍ରତ୍ୟେକେ ଅନ୍ତତଃ ତିନୋଟି ଲେଖାଏଁ ନୂଆ ସଭ୍ୟ ସଂଗ୍ରହ କରିବାକୁ ଆଗ୍ନେୟ ଶପଥ ନେଲେ । ଯୁଦ୍ଧକାଳୀନ ପ୍ରାଧାନ୍ୟ ଭିତ୍ତିରେ ଯେକୌଣସିମତେ ଏହି ଲକ୍ଷ୍ୟଟିକୁ ମାସକ ମଧ୍ୟରେ ହାସଲ କରିବାକୁ ହେବ ବୋଲି ସ୍ଥିର କରାଗଲା ।

'କୃଷ୍ଣସ୍ତୁ ଭଗବାନ୍ ସ୍ୱୟଂ'—ମୁଁ ଓ ଭଗବାନ ବାବୁ ସେତେବେଳେ ଥିଲୁ ଅଭେଦାତ୍ମା । ଆମେ ରେଭେନ୍‌ସା କଲେଜର ପୂର୍ବ-ଛାତ୍ରାବାସ ଓ ପଶ୍ଚିମ-ଛାତ୍ରାବାସକୁ ଆମ ଲକ୍ଷ୍ୟ ପୂରଣରେ ଉପଯୁକ୍ତ ପେଣ୍ଠସ୍ଥଳ ବୋଲି ଧରିନେଲୁଁ । ଯୋଡ଼ିଯାଆଁଳ ହୋଇ ଲଗ ଲଗ ଓଳିଏ ଲେଖାଏଁ ସେଠାକୁ ହପ୍ତାଏ ଝଣ୍ଡେ ଯିବାକୁ ପଡ଼ିଲା । ପ୍ରାୟ ସତୁରି ସରିକି ଛାତ୍ର ବୀର-ବିକ୍ରମରେ ବାହାରିପଡ଼ି ଲଢ଼ୁଆ ସୈନିକ ତାଲିକାରେ ନାମ ଦରଜ କରିଦେଲେ । କେବଳ ସେତିକି ନୁହେଁ, ତା' ସହିତ ବାର୍ଷିକ ସଭ୍ୟ ଚାନ୍ଦା ଦୁଇଟଙ୍କା ଲେଖାଏଁ ମଧ୍ୟ ଆମକୁ ପଇଠ କରିଦେଲେ । ବୋଝ ଆମର ଢେର୍ ହାଲୁକା ହୋଇଗଲା ।

ଆମ ସମସ୍ତଙ୍କ ସମନ୍ୱିତ ଚେଷ୍ଟାରେ ସଂଗୃହୀତ ନୂତନ ସଭ୍ୟଙ୍କ ସଂଖ୍ୟା ଅକ୍ଳେଶରେ ଶହେକୁ ଟପିଗଲା । 'ସାହିତ୍ୟ ସମାଜ'ର ଧ୍ୱଜାଧାରୀ ପଣ୍ଡାମାନେ କୌଣସି ସୂତ୍ରରୁ ଆମ ଗୋଷ୍ଠୀର ଐକ୍ୟବଦ୍ଧ ସକ୍ରିୟତାର ଟେର୍ ପାଇ ଆତଙ୍କିତ ହୋଇପଡ଼ିଲେ । ସେହି କ୍ଷମତାସୀନ ଦଳର ଶିବିରରେ ଭଲେଣି ପଡ଼ିଲା, କାଳେ ଆସନ୍ନ ବାର୍ଷିକ ଅଧିବେଶନରେ କର୍ମକର୍ତ୍ତା ନିର୍ବାଚନ ଲଢ଼େଇରେ ତାଙ୍କର ଚିତାପଟ ହେବ । ସେଥିପାଇଁ ଉକ୍ତ ଦଳର କେତେକ ପଦସ୍ଥ ବ୍ୟକ୍ତି ନିଜେ ଜିଲ୍ଲା ସ୍କୁଲ ସମୂହର ଅଧିକର୍ତ୍ତା ତଥା ଉତ୍କଳ ସାହିତ୍ୟ ସମାଜର ସଭ୍ୟ ସୁକାନ୍ତ ରାଓଙ୍କର ସାହାଯ୍ୟଭିକ୍ଷୁ ହେଲେ । ସୁକାନ୍ତବାବୁ ନିଜ ପଦାଧିକାର ବଳରେ ଜବର ମଦନ୍ତ ଦେଲେ ଏବଂ ପ୍ରକୃତରେ ମଫସଲ ଅଞ୍ଚଳର ଗୁଡ଼ିଏ ଶିକ୍ଷକଙ୍କୁ ସାହିତ୍ୟ ସମାଜର ସଭ୍ୟ କରାଇଦେଲେ । ଏହାଦ୍ୱାରା କ୍ଷମତାସୀନ ଦଳର ସାମରିକ ଶକ୍ତି ଯଥେଷ୍ଟ ମଜଭୁତ ହୋଇଗଲା, ଜିତିବାର ଆଶା ମଧ୍ୟ ଉଜ୍ଜ୍ୱଳ ହୋଇଉଠିଲା । ଏହି ସମୟରେ ଦୈବକ୍ରମେ ପ୍ରହରାଜଙ୍କ 'ଭାଷାକୋଷ' କାର୍ଯ୍ୟାଳୟର ଜଣେ କର୍ମୀ କଥା-ପ୍ରସଙ୍ଗରେ ମତେ ଏହି ଗୁପ୍ତ ସମ୍ବାଦଟି ଦେଲେ । ମୁଁ ଏ ଗୋପନ ସନ୍ଦେଶଟି ଆମ ଛାଉଣିରେ ପ୍ରକାଶ କଲି । ପ୍ରତିପକ୍ଷୀୟ ଯୋଜନା ବିରୁଦ୍ଧରେ ପ୍ରତିକ୍ରିୟାସ୍ୱରୂପ ଆମେ କେତେଜଣ ଏକାଠି ହୋଇ ନିର୍ଦ୍ଦଳୀୟ ସଭ୍ୟମାନଙ୍କୁ ଭେଟିଲୁଁ ଏବଂ ଖୁବ୍ ନିକଟରେ ଆମ ସାରସ୍ୱତ ଗୋଷ୍ଠୀ ପକ୍ଷରୁ ହେବାକୁ ଯାଉଥିବା ନୂତନ ବ୍ୟବସ୍ଥାର ବାର୍ତ୍ତା ଜଣାଇଲୁଁ । ସେମାନେ ତ ଆଗରୁ ଉତ୍କ୍ଷିପ୍ତ ହୋଇ ରହିଥିଲେ, ତେଣୁ ଏହି ସାହସିକ ଉଦ୍ୟମକୁ ସ୍ୱାଗତ କରି ଆମ ଗୋଷ୍ଠୀକୁ ସର୍ବମନ୍ତ୍ରେ ସାହାଯ୍ୟ-ସହଯୋଗ କରିବେ ବୋଲି ପ୍ରତିଶ୍ରୁତି ଦେଲେ । ଏହା ଫଳରେ ଆସନ୍ନ ମାଡ଼ିବସିଥିବା ବୃଦ୍ଧଦଳର ବ୍ୟୂହରଚନା କୌଶଳକୁ ଆମେ ଭଣ୍ଡୁରାଇଦେଲୁଁ ଏବଂ ନିଜ ଦଳର ନବନିର୍ମିତ ଦୁର୍ଗକୁ ବଜ୍ରଟାଣ କରିଦେଲୁଁ ।

କର୍ମକର୍ତ୍ତାମାନଙ୍କ ନିର୍ବାଚନର ନିର୍ଦ୍ଧାରିତ ଦିବସ କ୍ରମଶଃ ପାଖେଇଆସିଲା । ତତ୍ପୂର୍ବରୁ ଯେଉଁ ବୈଠକଟି ବସିଲା, ତହିଁର ନିର୍ଘଣ୍ଟ ମଧ୍ୟରେ ନୂତନ ସଭ୍ୟ ଗ୍ରହଣ ମଧ୍ୟ ଅନ୍ତର୍ଭୁକ୍ତ ଥିଲା । କ୍ଷମତାରେ ଥିବା ପକ୍ଷ ତାଙ୍କ ନୂଆ ସଭ୍ୟମାନଙ୍କ ଦରଖାସ୍ତସବୁକୁ ସଭାପତିଙ୍କ ଟେବୁଲରେ ଉପସ୍ଥାପନ କରିସାରିଲା ପରେ ଆମ ପକ୍ଷର ନୂଆ ସଭ୍ୟଗଣଙ୍କ ଦରଖାସ୍ତମାନ ଉପସ୍ଥାପିତ ହେଲା । ସଭାପତି ଉଭୟ ପକ୍ଷର ଆବେଦନକାରୀମାନଙ୍କ ନାମ ଅଲଗା ଅଲଗା

ପଢ଼ି ଉପସ୍ଥିତ ସଭ୍ୟବୃନ୍ଦଙ୍କୁ ଶୁଣାଇଦେଲେ । ସେ-ପକ୍ଷର କାରପଟଦାର ଆଡ୍‌ଭୋକେଟ ଚନ୍ଦ୍ରାମଣି ଅଗ୍ରୱାଲ ଆମ ପକ୍ଷୀୟ ଅଧିକାଂଶ ଦରଖାସ୍ତକାରୀଙ୍କର ସଭ୍ୟ ହେବାର ଯୋଗ୍ୟତା ନାହିଁ ବୋଲି ଆପତ୍ତି ଉତ୍ଥାପନ କଲେ । ଆମ ପକ୍ଷର କାରପଟଦାର ଭାରତ-ସେବକ ଲକ୍ଷ୍ମୀନାରାୟଣ ସାହୁ ସେ ପକ୍ଷୀୟ ଦରଖାସ୍ତକାରୀମାନଙ୍କ ମଧ୍ୟରୁ ଜଣେହେଲେ କେହି ସଭ୍ୟ ହେବାକୁ ଯୋଗ୍ୟ ନୁହନ୍ତି ବୋଲି ଦୃଢ଼ ଦାବି କଲେ । ଦୁଇ କାରପଟଦାରଯାକ ବଡ଼-ପାଟିଆ । ଉଭୟଙ୍କ ମଧ୍ୟରେ ଘମାଘୋଟ ବାଗ୍‌ଯୁଦ୍ଧ ଓ ଢୋଗଲାର ବଚସା ଦୀର୍ଘ ସମୟ ପର୍ଯ୍ୟନ୍ତ ଲାଗି ରହିଲା । ସଭାପତି ପ୍ରାଣକୃଷ୍ଣ ପରିଜା ନିଜେ ହସ୍ତକ୍ଷେପ କରି ଏହି ଅଶୋଭନୀୟ ପରିସ୍ଥିତିର ଅବସାନ ଘଟାଇଲେ ଏବଂ ଉଭୟ ପକ୍ଷର ଆପତ୍ତିକୁ ଅଗ୍ରାହ୍ୟ କରିଦେଇ "ସମସ୍ତ ଆବେଦନକାରୀ ନୂତନ ସଭ୍ୟରୂପେ ଗୃହୀତ ହେଲେ" ବୋଲି ଘୋଷଣା କଲେ । ଦର୍ଶକମଣ୍ଡଳୀ ଓ ନବାଗନ୍ତୁକମାନଙ୍କ ବିପୁଳ ହର୍ଷରୋଳ ଓ କରତାଳି ଧ୍ୱନିରେ ଶ୍ରୀରାମଚନ୍ଦ୍ର ଭବନ ପରିସର ପ୍ରକମ୍ପିତ ହୋଇଉଠିଲା । ଗୈରିକବସନ ବଟଣ୍ଡ ସମ୍ପାଦକ ଶଶିଭୂଷଣ ରାୟ ଚିରାଭ୍ୟସ୍ତ ଅର୍ଦ୍ଧନିମୀଳିତମୁଖରେ ନବଗୃହୀତ ସଭ୍ୟମାନଙ୍କ ପ୍ରଦତ୍ତ ବାର୍ଷିକ ଚାନ୍ଦା ଗ୍ରହଣ କରିବାକୁ ଅଗତ୍ୟା କର ପ୍ରସାରଣ କଲେ ।

ଅଳ୍ପକାଳ ପରେ ଉତ୍କଳ ସାହିତ୍ୟ ସମାଜର ବାର୍ଷିକ ସମାବେଶ ଅନୁଷ୍ଠିତ ହେଲା । ପୂର୍ବାହ୍ନରେ କର୍ମକର୍ତ୍ତାମାନଙ୍କ ନିର୍ବାଚନପାଇଁ ମୁହାଁମୁହିଁ ଦ୍ୱିମୁଖୀ ପ୍ରତିଦ୍ୱନ୍ଦ୍ୱିତା । ଦୁଇ ପକ୍ଷର ଲୋକେ ଯେଝା ତନ୍ତ୍ରରେ ସମାଗତ ସଭ୍ୟମାନଙ୍କ ନିକଟରେ ଭୋଟ-ଭିକାରି ହେଲେ । ଗୁପ୍ତପ୍ରଚାରର ଜୋର୍‌ସୋର୍ ଚାଲିଲା ଭୋଟଲଢ଼େଇ ଆରମ୍ଭ ହେବାର ପୂର୍ବ ମୁହୂର୍ତ୍ତ ପର୍ଯ୍ୟନ୍ତ । ହସ୍ତୋତ୍ତୋଳନ ପଦ୍ଧତିରେ ଭୋଟ ଗ୍ରହଣ ହେବ ବୋଲି ସଭାପତି ମହୋଦୟ ମାଇକ୍‌ରେ ଜଣାଇଦେଲେ । ଠିକ୍ ପରେ ପରେ ନିର୍ବାଚନ ପର୍ବାରମ୍ଭ । ସଭାପତି, ସମ୍ପାଦକ, ସହକାରୀ ସମ୍ପାଦକଦ୍ୱୟ, କୋଷାଧ୍ୟକ୍ଷ, କାର୍ଯ୍ୟନିର୍ବାହିକା ସମିତିର ସଭ୍ୟମଣ୍ଡଳ, ସବୁ ପଦପାଇଁ ଗୋଟିକ ପଛକୁ ଗୋଟିଏ ନିର୍ବାଚନ ଭୋଟଦାନ ହୋଇ ଫଳ ଘୋଷିତ ହେଉଥାଏ । କ୍ଷମତାସୀନ ଦଳର କୌଣସି ପ୍ରାର୍ଥୀ ଜୟଯୁକ୍ତ ହୋଇପାରିଲେ ନାହିଁ, ଯାହାଫଳରେ ଉକ୍ତ ଦଳର ନିରଙ୍କୁଶ ସାର୍ବଭୌମତ୍ୱ ଏକାବେଳେ ମୂଳପୋଛ ହୋଇଗଲା । ଆଗାମୀ ବର୍ଷପାଇଁ ସଭାପତି ହେଲେ ବାଳକୃଷ୍ଣ କର, ସମ୍ପାଦକ ଲକ୍ଷ୍ମୀନାରାୟଣ ସାହୁ, ଦୁଇ ସହକାରୀ ସମ୍ପାଦକ ଭଗବାନ ପତି ଓ କୃଷ୍ଣଚନ୍ଦ୍ର କର । ଯେଉଁମାନେ କାର୍ଯ୍ୟନିର୍ବାହିକା ସମିତିର ସଭ୍ୟ ହେଲେ ଏବଂ ଯେ କୋଷାଧ୍ୟକ୍ଷ ହେଲେ, ସେ ସମସ୍ତେ ମଧ୍ୟ ଏହି ବିଜେତୃପକ୍ଷର ଅଙ୍ଗୀଭୂତ ।

ଉତ୍କଳ ସାହିତ୍ୟ ସମାଜର ଅବୟବରେ ଏତେକାଳ ଧରି ଜମାଟ ବାନ୍ଧି ରହିଥିବା ସାମନ୍ତଯୁଗୀୟ ବଦ୍ଧ ରକ୍ତକୁ ନିଷ୍କାସିତ କରି ତା ଜାଗାରେ ପ୍ରବାହିତ ହେଲା ନବଯୁଗୀୟ ତାଜା ରକ୍ତ ଲାଲେ ଲାଲ୍ । ଆବାଳବୃଦ୍ଧବନିତା ସବୁରି ପ୍ରିୟ ନବନିର୍ବାଚିତ ସମ୍ପାଦକ ଲକ୍ଷ୍ମୀନାରାୟଣ ସାହୁଙ୍କ ସ୍ୱଭାବନିସୃତ ଅଦମ୍ୟ ଉଦ୍ୟମରେ ଶ୍ରୀରାମଚନ୍ଦ୍ର ଭବନ ଉତ୍ସବମୟ ହୋଇଉଠିଲା । କେତେ ପ୍ରକାରର ସଭାସମିତି ସମ୍ମେଳନ ଯେ ଆୟୋଜିତ ହେଲା, ତା'ର

ଉପଯୁକ୍ତ ନାହିଁ । ଏହି ସାହିତ୍ୟ-ଭବନରେ ଦର୍ଶକମହଲ ନୂଆକରି ଦେଖିବାକୁ ପାଇଲେ ଗୋଟିଏ ଚମତ୍କାର ବିଚିତ୍ର ଦୃଶ୍ୟ । ତାହା ହେଉଛି ଅବଗୁଣ୍ଠନ, ବେଣୀ, ଶାଢ଼ି, ଛେଦାର ଅଭୂତପୂର୍ବ ସମନ୍ୱୟ—ଅର୍ଥାତ୍ କୁଳବଧୂ, କୁଳକନ୍ୟା, ସଧବା, ସୀମନ୍ତିନୀ, ମହିଳା, ବିଧବା, ଜରତି, ଜରତୀ ପ୍ରଭୃତି ଶ୍ରୋତାଶ୍ରୋତ୍ରୀଙ୍କର ଦଳ ଦଳ ସମାବେଶ । ଏକେ ଲକ୍ଷ୍ମୀନାରାୟଣ ବାବୁଙ୍କ ବ୍ୟକ୍ତିଗତ ଅସାଧାରଣ ଲୋକପ୍ରିୟତା ହେତୁ, ଦୁଜେ ନାରୀଜାଗରଣୋପଯୋଗୀ ଆଲୋଚନୀୟ ବିଷୟବସ୍ତୁର ଆକର୍ଷଣ ହେତୁ ବୟସ ନିର୍ବିଶେଷରେ ଏମାନେ ଗୃହପିଞ୍ଜରୀ ଛାଡ଼ି ଧାଡ଼ି ଲଗାନ୍ତି ଶ୍ରୀରାମଚନ୍ଦ୍ର ଭବନ ଅଭିମୁଖେ, ଠିକ୍ ଯେପରି ସଜବାଜ ହୋଇ ଅଣନିଶ୍ୱାସିଆ ଧାଆନ୍ତି ବାଲିଯାତ୍ରା ପଡ଼ିଆ ବା ପ୍ୟାରୀମୋହନ ଏକାଡେମୀ ପଛପଡ଼ିଆ ବା ମ୍ୟୁନିସିପାଲିଟି ମଛ ପଡ଼ିଆରେ ସର୍କସ ପଡ଼ିଲାବେଳେ । ଦିନେ ଦିନେ ଏତେ ଭିଡ଼ ହୋଇ-ଯାଏ ଯେ, ଏମାନଙ୍କପାଇଁ ଦ୍ୱିତଳର ସମସ୍ତ ଆସନ ମଧ୍ୟ ନିଅଣ୍ଟ ଧରେ । ଏଣେ ତଳ ମହଲର ହଲ୍ ପୁରୁଷ ଦର୍ଶକରେ ଭରିଯାଉଥାଏ । ହଲ୍ ଠନପଟ ବାରଣ୍ଡା ଓ ଗେଟ୍ ପର୍ଯ୍ୟନ୍ତ ଯେତେ ଜାଗା, ସବୁଠି ଜନପାରାବାର । ସାହିତ୍ୟ ସମାଜର ଅନେକ ସ୍ଥାୟୀ ସଭ୍ୟ ଓ କର୍ମକର୍ତ୍ତା ମଞ୍ଚାସନପାର୍ଶ୍ୱସ୍ଥ ଗ୍ରିନ୍‌ରୁମ୍‌ରେ କୌଣସିମତେ ମୁଣ୍ଡ ଗୁଞ୍ଜିବାକୁ ବାଧ୍ୟ ହୁଅନ୍ତି ।

କ୍ରମାଗତ ତିନି ବର୍ଷ ମୁଁ ସହକାରୀ ସମ୍ପାଦକରୂପେ ସାହିତ୍ୟ ସମାଜ ସହିତ ନିବିଡ଼ଭାବରେ ଜଡ଼ିତ ଥିଲି । ଆମ ଦଳ ଏହି ସାରସ୍ୱତ ପୀଠକୁ ଅଧିକାର କରିବାର ଦ୍ୱିତୀୟ ବର୍ଷ ବେଳକୁ କାର୍ଯ୍ୟବୋଝ ବଢ଼ିଯାଇଥିବା ଦୃଷ୍ଟିରୁ ସହକାରୀ ସମ୍ପାଦକଙ୍କ ସଂଖ୍ୟା ଦୁଇରୁ ତିନିକୁ ବୃଦ୍ଧି ପାଇଥିଲା । ଡକ୍ଟର ବ୍ରଜବିହାରୀ ମହାନ୍ତି ଓ ବଳଭଦ୍ରଚରଣ ପଟ୍ଟନାୟକ ଅଧିକା ଦୁଇଟି ସ୍ଥାନପାଇଁ ନିର୍ବାଚିତ ହୋଇଥିଲେ ।

## (୧୪) ଶିଶୁପତ୍ରିକା 'ଜହ୍ନମାମୁଁ'—

ମୁଁ କଟକ ଟ୍ରେଡ଼ିଂ କମ୍ପାନୀ ଛାଡ଼ିବା ପରେ ପରେ ମାସିକ ଶିଶୁପତ୍ରିକା 'ପଞ୍ଚାମୃତ' ସ୍ୱାସ୍ଥ୍ୟ ଅଭାବରୁ କ୍ରମଶଃ ଶୁଖି ଶୁଖି କଣ୍ଠାଗତ ହେବାକୁ ଲାଗିଲା । ସମ୍ପାଦକଦ୍ୱୟ ନିଜ ନିଜ ଧନ୍ଦାରେ ବ୍ୟସ୍ତ ରହିଲେ । ପ୍ରକାଶକ ତାଙ୍କ ବ୍ୟବସାୟରେ ବୁଡ଼ିରହିଲେ । ପତ୍ରିକାଟି 'ଢୋକେ ପିଇ ଦଣ୍ଡେ ଜୀଇଁ' ଅବସ୍ଥାରେ ବର୍ଷେ ଦେଢ଼ବର୍ଷ ଖଣ୍ଡେ ବଞ୍ଚିରହି ଶେଷକୁ ପଞ୍ଚତ୍ୱପ୍ରାପ୍ତ ହେଲା । ଛୋଟ ଛୋଟ ବାଳକବାଳିକାଙ୍କ ଆହାର ଉପରେ ପାହାର ପଡ଼ିଲା । ଦୀର୍ଘକାଳ ଉପାସ ରହିଲା ଶିଶୁସଂସାରର ଭୋକିଲା ମନ ।

ଟିକି ପିଲାଙ୍କ ପାଇଁ 'ପଞ୍ଚାମୃତ' ଥିଲା ଓଡ଼ିଶାର ଏକମାତ୍ର ପତ୍ରିକା, ଦୁଧ-ଦହି-ଘିଅ-ଗୁଡ଼-ମହୁ ମିଶ୍ରିତ ପଞ୍ଚାମୃତ ସଦୃଶ ଶ୍ରେଷ୍ଠ ସ୍ୱାଦ୍ୟ ଖାଦ୍ୟ । ଏଭଳି ଆଦରଣୀୟ ପତ୍ରିକାଟିଏର ଅଭାବ କି ଛାତ୍ର-ଛାତ୍ରୀ କି ଶିକ୍ଷକ-ଶିକ୍ଷୟିତ୍ରୀ କି ଅଭିଭାବକ-ଅଭିଭାବିକା ସମସ୍ତେ ଅନୁଭବ କଲେ ଖୁବ୍ ତୀବ୍ରଭାବରେ । ଦିନେ ମୁଁ ଏହିକଥା ବାଳକୃଷ୍ଣ ବାବୁଙ୍କୁ କହିଲି ଏବଂ ଏଭଳି

ଦୁର୍ଲଭ ମଉକାକୁ ହାତଛଡ଼ା କରିଦେବା ଏକ ମସ୍ତବଡ଼ ବୋକାମି ହେବ ବୋଲି କହି ମନ୍ତବ୍ୟ ଦେଲି ।

ମାଛମୁଣ୍ଡାକୁ ଝାମ୍ପ ମାରିବା ଆଶାରେ ଛକି ବସିଥିବା ଛଉକା ବଗଡ଼ ପରି ଛଟପଟ ହୋଇଉଠିଲେ ବାଳକୃଷ୍ଣ ବାବୁ । ହେଲେ, ହାତେ ମାପି ଗୃଖଣ୍ଡେ ଖୁଲିବା ଲୋକ ସେ; ତେଣୁ ଆଗପଛ ବିଚାରି ମତେ ପଚାରିଲେ, "ଦୁଇ ଦୁଇଟା ମାସିକ ପତ୍ରିକାର ଜଞ୍ଜାଳ ସମ୍ଭାଳି ହେବ ତ ?" "ଖୁସିରେ ସମ୍ଭାଳି ହେବ", ମୁଁ କହିଲି, "ବଙ୍ଗଳା, ହିନ୍ଦୀ, ଇଂରାଜୀ ଶିଶୁପତ୍ରିକାରୁ ବାଛି ବାଛି ସାତ ଆଠ ଖଣ୍ଡ ମଗାଇଦେଲେ ସେଥିରୁ ଢେର୍ ମସଲା ମିଳିବ । ଏଠା ଲେଖକ-ଲେଖିକାଙ୍କଠୁ କିଛି କିଛି ଲେଖା ନିଶ୍ଚୟ ଆସିବ । ତାଛଡ଼ା ଆମେ ଦୁହେଁ (ଭଗବାନବାବୁ ଓ ମୁଁ) ଅଛୁଁ । ଦିନାକେତେ ପରେ ନୂଆ ନୂଆ ଶିଶୁ ସାହିତ୍ୟ ଲେଖକ ବି ବାହାରିପଡ଼ିବେ । ଲେଖାର ମୋଟେ ଅଭାବ ଘଟିବ ନାହିଁ । 'ସହକାର'ରେ ଦୁଇ ତିନି ଥର ବିଜ୍ଞାପନ ବାହାରିଗଲେ ବହୁତ ଗ୍ରାହକ ହେବେ ଏବଂ ମୃତ 'ପଞ୍ଚାମୃତ'ର ସମସ୍ତ ଗ୍ରାହକ ଆନନ୍ଦରେ 'ଜହ୍ନମାମୁଁ' ଆଡ଼କୁ ମୁହାଁଇବେ । ଡି. ପି. ଆଇ. ମହୋଦୟ ଏ ନୂଆ ଶିଶୁପତ୍ରିକାଟି ସ୍କୁଲ ଛାତ୍ରଛାତ୍ରୀଙ୍କର ଏକାନ୍ତ ପଠନୀୟ ବୋଲି ସରକାରୀ ମଞ୍ଜୁରିପତ୍ର ସମସ୍ତ ପ୍ରାଇମେରୀ, ମଧ୍ୟଇଂରାଜୀ, ମଧ୍ୟଭର୍ଣ୍ଣାକୁଲାର୍ ଓ ହାଇସ୍କୁଲକୁ ପଠାଇଦେବାର ବିହିତ ବ୍ୟବସ୍ଥା କରିଦେଇପାରିଲେ ଗ୍ରାହକସଂଖ୍ୟା ହୁ-ହୁ ବଢ଼ିଯିବ ।"

ବାଳକୃଷ୍ଣ ବାବୁ ମୋ ବ୍ୟବସାୟାତ୍ମକ ଦୂରଦର୍ଶନବାଣୀ ଶୁଣି ମନେ ମନେ ଖୁବ୍ ଆଶାୟୀ ହେଲେ ହେଁ ଦିନେ ଦି'ଦିନ ଏ ଉଦ୍ୟମର ଅଗ୍ର-ପଶ୍ଚାତ୍ ସମ୍ବନ୍ଧରେ ଭଲରୂପେ ଅଟକଳ କରିସାରି ତାପରେ ଯାଇ ଘରପିଣ୍ଡାରୁ ମଝିଦାଣ୍ଡକୁ ପାଦ ବଢ଼େଇବେ ବୋଲି ନିଷ୍ପତ୍ତି କଲେ । ଅଟକଳରୁ ସେ ବେଶ୍ ବୁଝିପାରିଲେ ଯେ, ବିନା ପୁଞ୍ଜିଲଗାଣର ଏ ନୂଆ ବେପାରରେ ତାଙ୍କ ଗୋଡ଼ରେ ମୋଟେ କଣ୍ଟା ବାଜିବ ନାହିଁ, ଅଥଚ 'ମାରେ ସିପାହି ନାମ୍ ସର୍ଦ୍ଦାର୍, ଅପପ୍ରବାଦଟାର ମର୍ଯ୍ୟାଦା ବଢ଼ାଇ ଲୋକଚକ୍ଷୁରେ ଆପେ ହେବେ ମର୍ଯ୍ୟାଦା-ଗାଦିନସିନ୍ । ଅଧିକନ୍ତୁ' ନାଆଁ ବଡ଼ତି ଶିଢ଼ିର ଆଉ ପାହାଚେ ଉଚ୍ଚକୁ ଚଢ଼ିବାରେ ସେଇ ଶିଶୁପତ୍ରିକାଟି ତାଙ୍କପାଇଁ ହେବ ନିଃଶୁଳ୍କ ପାସ୍‌ପୋର୍ଟ ।

ପରବର୍ତ୍ତୀ ପର୍ଯ୍ୟାୟରେ ଯେ, ମୁଁ ଓ ଭଗବାନବାବୁ ଏକାଠି ବସି ସର୍ବସମ୍ମତିକ୍ରମରେ ପତ୍ରିକାଟିର ନାମକରଣ କଲୁଁ 'ଜହ୍ନମାମୁଁ' । ଏଥିପାଇଁ ଜିଲାମାଜିଷ୍ଟ୍ରେଟ୍‌ଙ୍କ ଇଜଲାସରୁ ଆଇନଗତ ସମ୍ମତିନାମା ହାସଲ କରାଗଲା । ମୁଁ ତ 'ସହକାର'ର ଆନୁଷଙ୍ଗିକ ସବୁତକ ଦାୟିତ୍ୱ ମୁଣ୍ଡାଇଥିଲି; ଏବେ ଭଗବାନବାବୁ 'ଜହ୍ନମାମୁଁ' ପାଇଁ ଲେଖା ସଂଗ୍ରହ, ବିଶେଷକରି ଅଣଓଡ଼ିଆ ଶିଶୁପାଠ୍ୟପତ୍ରିକାମାନଙ୍କରୁ ନାନାଭଙ୍ଗୀର ମନୋରଞ୍ଜନ ତଥା କୌତୁକାବହ ବିଷୟମାନ ଆହରଣ କରିବାର ଭାର ନେଲେ । 'ଜହ୍ନମାମୁଁ'ର ଗ୍ରାହକ ରେଜିଷ୍ଟର୍ ଓ ଜମା ହିସାବ, ତତ୍‌ସମ୍ପୃକ୍ତ ଚିଠିପତ୍ର ଆଦାନପ୍ରଦାନ ଆଦି କାର୍ଯ୍ୟର ଲଦନ କାନ୍ଧ ମୁଁ ବୋହିଲି । ତା ବାହାରେ ମୌଳିକ ଗୁରୁଦାୟିତ୍ୱ ପ୍ରୁଫ୍ ସଂଶୋଧନ କାର୍ଯ୍ୟକୁ ସର୍ବଦା

ଅଗ୍ରାଧିକାର ଦେବାକୁ ହେଉଥାଏ ଏବଂ ବାଳକୃଷ୍ଣବାବୁଙ୍କ ବରାଦୀ ବହିର କିଛୁ-ନା-କିଛୁ ମଧ୍ୟ ନିତ ଲେଖିବାକୁ ପଡ଼ୁଥାଏ ମତେ । ଲିଦନ ଯେତେ ବଢ଼ିଲେ ବି ଥୋଉଆ ବଳଦ ତାକୁ ବୋହିବାକୁ ପିଠି ପତେଇଦିଏ—କେବେହେଲେ ଥକେ ନାହିଁ କି କୁନ୍ଥାଏ ନାହିଁ ।

ବିଜ୍ଞାପନ ଅନୁଯାୟୀ ୧୯୩୨ ମସିହା ବୈଶାଖ ପହିଲା ଦିନ 'ଜହ୍ନମାମୁଁ'ର ପ୍ରଥମ ସଂଖ୍ୟା ପ୍ରକାଶିତ ହୋଇ ଶିଶୁରାଇଜରେ ଚହଲ ପକେଇ ଆନନ୍ଦର କଲ୍ଲୋଳ ଖେଳାଇଦେଲା । ଦିନେ ଯେଉଁ କୁନି କୁନି କୁନୁମୁନମାନେ ମାଆ-ଜେଜେମାଆଙ୍କ ତୁଣ୍ଡରୁ 'ଆ-ଜହ୍ନମାମୁଁ ଶରଦ ଶଶୀ, ମୋ କାହ୍ନୁ ହାତରେ ପଡ଼ୁ ଖସି' ଗୀତ ଶୁଣି କୁଲୁକୁଲୁ ହୋଇଉଠୁଥିଲେ, ଏବେ ବଢ଼ିଯାଇଥିବା ସେହିମାନେ 'ଜହ୍ନମାମୁଁ'କୁ ହାତରେ ଧାଇ ତହିଁରୁ କେତେ ଗୀତ ଶିଖି ତୋଉ ଟହ ଟହ ଜହ୍ନଆଲୁଅରେ ହସିଖେଳି ନାଚକୁଦି ଗାଇବାକୁ ଲାଗିଲେ ।

ଏଣିକି ବାଳକୃଷ୍ଣ ହେଲେ ଦୁଇ-ଦୁଇଟା ପତ୍ରିକାର ସମ୍ମାନାର୍ହ ସମ୍ପାଦକ । ମୁଁ ଓ ବସନ୍ତକୋକିଳ ଭଗବାନବାବୁ ଯେତେ ବର୍ଷ ପର୍ଯ୍ୟନ୍ତ ଲକ୍ଷ୍ମୀଙ୍କର ମନ୍ଦିରରେ ଲାଗିପଡ଼ିଥିଲୁ, ସେତେ କାଳ ପର୍ଯ୍ୟନ୍ତ 'ସହକାର' କୁଞ୍ଜରେ ଚିରବସନ୍ତ ବିହାର କରିଥିଲା, ତାର କୋମଳ କିଶଳୟଶଯ୍ୟା ଥିଲା ଚିର ସବୁଜ, ସକଳ ଶାଖା-ପ୍ରଶାଖା-ଉପଶାଖା ଥିଲା ଅମୃତରସଭରା ଝୁମ୍ପିଲ ରସାଳମାଳାରେ ଚିରଫଳନ୍ତ । ଆଉ, 'ଜହ୍ନମାମୁଁ'ର ରାଜ୍ୟ ଥିଲା ଅମାବାସ୍ୟାହୀନ ଓ ନୀଳିମାବର୍ଜିତ; ଦିଗ୍‌ବିଦିଗ ହସୁଥିଲା ଓ ଚରାଚର ଭାସୁଥିଲା ଚିରପୂର୍ଣ୍ଣିମାର ରଜତଶୁଭ୍ର ଜ୍ୟୋତ୍ସ୍ନାଲୋକପ୍ଲାବନରେ ।

## (୧୫) 'ବୈତରଣୀ' ସହିତ ସମ୍ପର୍କ—

ଲକ୍ଷ୍ମୀନାରାୟଣ ସାହୁ Vaitarani (ବୈତରଣୀ) ନାମରେ ଖଣ୍ଡିଏ ଇଂରାଜୀ ସମୀକ୍ଷା ପତ୍ରିକା (Review magazine) କେତେକ ବର୍ଷ ଆଗରୁ ପ୍ରକାଶ କରିଆସୁଥିଲେ । 'ସହକାର' ହସ୍ତାନ୍ତର ପରଠାରୁ ମୁଁ ହୋଇଥିଲି ସେହି ଆନ୍ତର୍ଜାତିକ ଆଖ୍ୟାତସମ୍ପନ୍ନ ସମୀକ୍ଷା ମାସିକାର ମୁଦ୍ରାକର ଓ ପ୍ରକାଶକ (Printer & Publisher) ଏବଂ ୧୯୩୬ ଡିସେମ୍ବର ପର୍ଯ୍ୟନ୍ତ ତାହା ମୋ ଦାୟିତ୍ୱରେ ମୁଦ୍ରିତ ହୋଇଥିଲା ସାରସ୍ୱତ ମୁଦ୍ରଣାଳୟରେ । ଭାରତର ବିଭିନ୍ନ ପ୍ରାନ୍ତର ତଥା ଜାପାନ, ଆମେରିକା, ରୁଷିଆ, ଗ୍ରେଟ୍‌ବ୍ରିଟେନ୍ ଓ ଅନ୍ୟାନ୍ୟ ୟୁରୋପୀୟ ଦେଶର ପ୍ରସିଦ୍ଧ ଲେଖକଗଣଙ୍କ ମୂଲ୍ୟବାନ୍ ଗ୍ରନ୍ଥ-ସମୂହର ସମୀକ୍ଷାରେ ଉକ୍ତ ଇଂରାଜୀ ପତ୍ରିକାର ପୃଷ୍ଠାମାନ ପୂର୍ଣ୍ଣ ହୋଇଯାଉଥିଲା । ନିଜେ ଲକ୍ଷ୍ମୀନାରାୟଣବାବୁ ସମୀକ୍ଷା ପାଇଁ ଆସୁଥିବା ପ୍ରତ୍ୟେକ ଗ୍ରନ୍ଥକୁ ଆମୂଳାନ୍ତ ପଢ଼ି ତାର ସମୀକ୍ଷା ଲେଖୁଥିଲେ । ସେ ନିବଡ଼ ଅଭିନିବେଶର ସହିତ ପ୍ରାପ୍ତ ଗ୍ରନ୍ଥରାଜିରେ ଥିବା କଠିନ କଠିନ ବିଷୟକୁ ତନ୍ନ ତନ୍ନ ଅନୁଧ୍ୟାନପୂର୍ବକ ଯେଉଁ ଉନ୍ନତ ରୁଚି ଓ ଉଚ୍ଚକୋଟିର ବୁଦ୍ଧିମନ୍ତ ସମୀକ୍ଷାମାନ ପ୍ରକାଶ କରୁଥିଲେ, ତାହା ପାଶ୍ଚାତ୍ୟଖଣ୍ଡରେ ବିଶେଷ ସମାଦୃତ ହେଉଥିଲା । ଏହି କାରଣରୁ ପତ୍ରିକାଟି ଆନ୍ତର୍ଜାତିକ-ସମ୍ମାନପ୍ରାପ୍ତ ସମୀକ୍ଷାପତ୍ର କ୍ଷେତ୍ରରେ ଏକ ବିଶିଷ୍ଟ

ଆସନର ଅଧିକାଂଶ ହୋଇପାରିଥିଲା । ଅନ୍ତର୍ବେଦୀ ଲକ୍ଷ୍ମୀନାରାୟଣ ବାବୁଙ୍କ ସର୍ବେକ୍ଷଣ ଉପରି ପାତାଳଭେଦୀ ଓ ଗ୍ରନ୍ଥନିହିତ ତଥ୍ୟାବଳୀର ସାର ଉଦ୍‌ଘାଟକ, ତାହା ଗୋଟିଏ ଘଟଣାରୁ ପାଠକେ ବେଶ୍ ଅନୁମାନ କରିପାରିବେ । ଥରେ (ସମ୍ଭବତଃ ୧୯୩୩ରେ) ଆମେରିକାରୁ ଏକ ସେଟ୍ ପୃଥିବୀ ଇତିହାସ (World History) ବିକ୍ରୀପାଇଁ ଆସିଲା । ସେଟ୍‌ଟି ବିରାଟ ବିରାଟ ତିନି ଖଣ୍ଡ (Volume)ର ସମଷ୍ଟିରେ ପରିପୁଷ୍ଟାଙ୍ଗ । ସର୍ବେକ୍ଷକ ସାହୁ ମହୋଦୟ ତାହାର ସର୍ବେକ୍ଷଣରୁ ଅଧିଗତ ଜ୍ଞାନତଳକୁ ସମ୍ବଳ କରି ଇତିହାସରେ ଏମ୍. ଏ. ପରୀକ୍ଷା ଦେବାପାଇଁ ବାହାରିପଡ଼ିଥିଲେ । କଲିକତା ବିଶ୍ୱ-ବିଦ୍ୟାଳୟର ଏମ୍. ଏ. (ସ୍ନାତକୋତ୍ତର) ପରୀକ୍ଷା ସେହି ମାସରେ ଆରମ୍ଭ ହେବାର ଥାଏ । ଲକ୍ଷ୍ମୀନାରାୟଣବାବୁ କୁଳପତିଙ୍କ ବିଶେଷ ଅନୁମତି ବଳରେ ପରୀକ୍ଷା ଦେଇଥିଲେ ଏବଂ ଇତିହାସର ସେହି ସ୍ନାତକୋତ୍ତର ପରୀକ୍ଷାରେ ପୂର୍ଣ୍ଣ ସଫଳକାମ ହୋଇଥିଲେ (୧୯୩୪) ।

## (୧୭) ବାଳକୃଷ୍ଣବାବୁଙ୍କ ସମ୍ପାଦନାରେ ଡିଗ୍ରୀର ଅଗ୍ରାଧିକାରୀ ମାହାତ୍ମ୍ୟ

ଏଠାରେ ଗୋଟିଏ କୌତୁକାବହ କଥା ଉଲ୍ଲେଖ ନକରି ରହିପାରୁ ନାହିଁ । ବାଳକୃଷ୍ଣ ବାବୁ ନିଜେ ବି. ଏ. ଡିଗ୍ରୀଧାରୀ ହୋଇଥିବାରୁ ଡିଗ୍ରୀର ମାନକୁ ସାହିତ୍ୟ ବଜାରରେ ମଧ୍ୟ ଅତି ବେଶି ମୂଲ୍ୟ ଦେଉଥିଲେ । ବର୍ତ୍ତମାନ 'ସହକାର' ପାଇଁ ଚିହ୍ନା ଅଚିହ୍ନା ନୂଆ ନୂଆ ଯୁବଲେଖକଙ୍କଠାରୁ ଯେତେ ଲେଖା ହସ୍ତଗତ ହେଉଥିଲା, ସବୁଗୁଡ଼ିକୁ ମୁଁ ପୁଙ୍ଖାନୁପୁଙ୍ଖ ପଢ଼ି ତହିଁ ମଧ୍ୟରୁ ଯେଉଁ କେତୋଟିରେ ଗୁଣାତ୍ମକ ମୂଲ୍ୟ ଥିବାର ଦେଖେଁ, ଡିଗ୍ରୀର ମାପକାଠି ପ୍ରତି ଆଦୌ ଦୃଷ୍ଟିପାତ ନକରି ସେତକ ଗୋଟିଏ ନୂଆ ଫାଇଲ୍‌ରେ ସଜାଡ଼ି ରଖେ ଏବଂ ଅବଶିଷ୍ଟ ଅନାବନାଗୁଡ଼ିକୁ ଏକ ମାଦଳା ନଥିରେ ସାମିଲ କରିଦିଏଁ । ପରବର୍ତ୍ତୀ ବିଷୟ-ନିର୍ବାଚନ ବେଳ ଆସିଗଲେ ପ୍ରତିଷ୍ଠିତ ଲେଖକମାନଙ୍କ ଲେଖା ସଙ୍ଗେ ଉକ୍ତ ନୂତନ ଲେଖକଙ୍କ ମୂଲ୍ୟବାନ୍ ଲେଖାମାନ ମିଶେଇ ସଜେଇ ସମ୍ପାଦକ ବାଳକୃଷ୍ଣ ବାବୁଙ୍କ ଆଗରେ ମାମୁଲି ମଞ୍ଜୁରିପାଇଁ ପେସ୍ କରେଁ । ଚୂଡ଼ାନ୍ତ ନିର୍ବାଚନ କରିବାକୁ ତାଙ୍କୁ ପନ୍ଦର ମିନିଟ ବି ଲାଗେନାହିଁ । କିଛି ସେ ପଢ଼ନ୍ତି ନାହିଁ, ଖାଲି ଲେଖକର ନାମ ଓ ଡିଗ୍ରୀଟାକୁ ଚାହିଁଦିଅନ୍ତି । ଜଣାଶୁଣା ପୁରୁଣା ବା ପୁରୁଖା ଲେଖକଙ୍କ ଲେଖାସବୁକୁ ଆଖିବୁଜି ପାସ୍ କରିଦିଅନ୍ତି, କେବଳ ନୂଆଭୂଆ କୌଣସି ଲେଖକର ନାମ ପଛରେ ଯଦି ଡିଗ୍ରୀଲାଙ୍ଗୁଡ଼ ନଥାଏ, ସେଇଠି ଅଟକିଯାଆନ୍ତି—ତା' ସପକ୍ଷରେ ଯେତେ ଓକିଲାତି କଲେ ସୁଦ୍ଧା ସବୁ ବ୍ୟର୍ଥ ହୁଏ, ପର୍ଯ୍ୟାପ୍ତ ପ୍ରକାଶଯୋଗ୍ୟତା ସତ୍ତ୍ୱେ ଉକ୍ତ ଲେଖା ଅପାଂକ୍ତେୟ ହୋଇ ମାଦଳା ନଥିକି ଆହୁରି ମାଦଳ କରିଦିଏ ।

ସମ୍ପାଦକଙ୍କର ଏ ପ୍ରକାର ଖାମଖିଆଲି ନୀତି 'ସହକାର'ର ସୂଚୀପୃଷ୍ଠା କମ୍ପୋଜରେ ବେଳେ ବେଳେ ଅସ୍ୱାଭାବିକ ବିଭ୍ରାଟ ସୃଷ୍ଟି କରିଥାଏ । ବି. ଏ., ବି. ଏସ୍‌ସି., ଏମ୍. ଏ., ଏମ୍. ଏସ୍‌ସି., ଏମ୍. ଇଡ୍., ଏମ୍. ବି. ଡିଗ୍ରୀମାଳା ଏତେ ବେଶୀ ହୋଇଯାଏ ଯେ,

ସେତେବେଳେ ଟାଇପ୍ କେସ୍‌ରେ ଥିବା ‘ଏ’ ହରଫଯାକ କେବଳ ଡିଗ୍ରୀ କମ୍ପୋଜରେ ଲଗାଇଲେ ବି ପ୍ରୟୋଜନକୁ ଅକୁଳାଣ ହୋଇପଡ଼େ । ଏହା ଫଳରେ କମ୍ପୋଜିଟର ବିଚରା ପ୍ରାୟେ ହାଲପଟା ହୁଏ, କମ୍ପୋଜ ଫର୍ମାମାନ ହୁଗୁଳାଇ ତା’ ଭିତରୁ ଦରିଣ୍ଡି ଦରିଣ୍ଡି ଦରକାର ମୁତାବକ ‘ଏ’ ହରଫ କାଢ଼ିଆଣି ‘ସହକାର’ କାମ ଚଳାଇଦିଏ । ଏଥିରେ ଅଯଥା ବହୁତ ସମୟ ବରବାଦ ହୁଏ, ଛାପାରେ ମଧ୍ୟ ବିଳମ୍ବ ଘଟେ । ମାତ୍ର ମିହନତକଶ କମ୍ପୋଜିଟର୍ ଉକ୍ତ ଅଧିକା ମିହନତପାଇଁ ଉଆଜିବ ମିହନତନା ପାଏ କି ସେ ମିହନତତକ ଧରମଦେବଠିରେ ଯାଏ, ତାହା ମା’ ଗଙ୍ଗେ ଜାଣିଥିବେ ।

ଡିଗ୍ରୀହୀନ ନବୋଦ୍ୟମୀ ଲେଖକମାନଙ୍କ ରଚନାକୁ ଅସ୍ପୃଶ୍ୟ ଶ୍ରେଣୀକ ଠେଲିଦେବାରେ ସମ୍ପାଦକ ବାଳକୃଷ୍ଣଙ୍କର ଯେଉଁ ଶୁଚିବାଇ ରୋଗ ଥିଲା, ତାହାର ଆଶୁ ଅପସାରଣ ପାଇଁ ମୁଁ ଏକ ଅବ୍ୟର୍ଥ ବାଣ ଖଞ୍ଜିବାର ଅନ୍ୱେଷାରେ ରହିଲି । ଦୈବକ୍ରମେ ସୁଯୋଗଟିଏ ସ୍ୱୟଂ ଆସି ମୋ ହାତରେ ଧରା ଦେଲା । ମୋର ଆବାଲ୍ୟପରିଚିତ ଝଣ୍ଡସାହିର ଜମିଦାରବଂଶୀ ଗାନ୍ଧିମାର୍ଗୀ ବଂଶୀଧର ମିଶ୍ରଙ୍କ ଅନୁଜ ଶ୍ରୀନିବାସ ମିଶ୍ର ରେଭେନ୍‌ସା କଲେଜରୁ ତଟକା ଏମ୍. ଏ. ପାସ୍ କରିଥାନ୍ତି (ପରବର୍ତ୍ତୀ ଜୀବନରେ ସେ ହେଲେ ସୋସାଲିଷ୍ଟ ଦଳୀୟ ପାର୍ଲିମେଣ୍ଟ ସଦସ୍ୟ ଓ କଟକର ବିଶିଷ୍ଟ ଆଇନଜୀବୀ) । ସେ ଗୋଟିଏ ଚମତ୍କାର ଗଳ୍ପ ଲେଖି ‘ସହକାର’କୁ ପଠାଇଲେ । ତହିଁରେ କିନ୍ତୁ ତାଙ୍କ ନାମ ଶେଷରେ ଡିଗ୍ରୀର ଉଲ୍ଲେଖ ନଥିଲା । ମୁଁ ମେ ମାସପାଇଁ ବାଛି ରଖିଥିବା ଲେଖାମାନ ନେଇ ସମ୍ପାଦକଙ୍କ ପାଖକୁ ଗଲି । କେବଳ ଶ୍ରୀନିବାସଙ୍କ ଗଳ୍ପଟି ଛଡ଼ା ଅନ୍ୟ ସମସ୍ତ ଲେଖାର ଲେଖକମାନଙ୍କ ନାମରେ ଡିଗ୍ରୀ ସଂଯୋଜିତ ଥିଲା । ପୂର୍ବାଭ୍ୟାସ ସୂତ୍ରରେ ସମ୍ପାଦକ ସବୁ ଡିଗ୍ରୀଧାରୀଙ୍କ ଲେଖାରେ ମଞ୍ଜୁରିସୂଚକ ଚିହ୍ନ କରିଦେଲେ ଏବଂ ଶ୍ରୀନିବାସଙ୍କ ଗଳ୍ପର ଶୀର୍ଷରେ ନାସ୍ତିବାଚକ ମନ୍ତବ୍ୟ ଲେଖିଦେଲେ । ମୁଁ ବିନା ବାଗ୍‌ବ୍ୟୟରେ ସେଗୁଡ଼ିକୁ ନେଇ ସ୍ୱସ୍ଥାନକୁ ଫେରିଆସିଲି ।

ମେ ମାସର ସହକାର ଯଥା ସମୟରେ ପ୍ରକାଶ ପାଇଲା ଶ୍ରୀନିବାସଙ୍କ ଆଖିକି ହତାଶାର ରଗଡ଼ା ବାଲି ଗୁଣ୍ଡି । ଘୋର ମନବିରସ ଯୋଗୁଁ ଦୁଇ ମାସ ପରେ ସେ ଆସିଲେ ମୋ ନିକଟକୁ । ଖୁବ୍ ଉତ୍ସାହ ଦେଇ ମୁଁ ତାଙ୍କୁ ପରାମର୍ଶ ଦେଲି ସେଇ ଗଳ୍ପଟିକୁ ଆଉ ଥରେ ଅଲଗା କାଗଜରେ ଅବିକଳ ଉତାରି ଆଣିବାକୁ ଓ ଗଳ୍ପର ଶିରୋନାମା ତଳେ ନିଜ ନାମ ଲେଖି ତତ୍ସହିତ ଏମ୍. ଏ. ଡିଗ୍ରୀଟି ସଂଯୋଗ କରିବାକୁ । ମୋ ପରାମର୍ଶ ଅନୁଯାୟୀ ଶ୍ରୀନିବାସ ଗଳ୍ପଟି ପୁଣି ଥରେ ସାଫି କରି ତା’ ଆରଦିନ ମତେ ଦେଇଗଲେ । ପରବର୍ତ୍ତୀ ନିର୍ବାଚନ ପାଇଁ ମୁଁ ଯେଉଁ ଲେଖାମାନ ବାଛି ରଖିଥିଲି, ତା’ ସହିତ ଶ୍ରୀନିବାସଙ୍କ ଲେଖାଟି ମିଶାଇ ସବୁତକ ସମ୍ପାଦକଙ୍କ ମଞ୍ଜୁରିପାଇଁ ଉପସ୍ଥାପନ କଲି । ଏଥର ତାଙ୍କଦ୍ୱାରା ଚୂଡ଼ାନ୍ତ ନିର୍ବାଚିତ ହୋଇଥିବା ଲେଖାମାନଙ୍କ ମଧ୍ୟରେ ଶ୍ରୀନିବାସଙ୍କ ଗଳ୍ପଟି ମଧ୍ୟ ଅନାୟାସରେ ସ୍ଥାନ ପାଇଗଲା । ସେହି ଗଳ୍ପର ପୂର୍ବ ସାଫି ଲିପିକୁ ମୁଁ ସଙ୍ଗରେ ଆଣିଥିଲି, ତାହାକୁ ବାଳକୃଷ୍ଣବାବୁଙ୍କ ସାମନାରେ ଥୋଇଦେଲି, ଯାହାକୁ ସେ ମୂଲ୍ୟହୀନ ବିଚାରି

ଆଡ଼େଇଦେଇଥିଲେ, କାରଣ ଲେଖକଙ୍କ ନାମରେ ଡିଗ୍ରୀ ଯୋଡ଼ା ନଥିଲା । ଏବେ ଅଫିସ୍ କଥାରେ ମୁଁ ସମ୍ପାଦକଙ୍କୁ ତାଙ୍କ ଖାମଖିଆଲି ସମ୍ପାଦନାପାଇଁ ଛଳେଇକରି କହିଲି, "ଯେଉଁ ଗଳ୍ପଟି ଆଗ ଥର ଗନ୍ଧାଇଥିଲା, ଆଜି ସେଇ ଗଳ୍ପରୁ ବାସନା ବାହାରିଲା କିପରି ?" ବାଳକୃଷ୍ଣବାବୁ ମନେ ମନେ ବଡ଼ ଅପ୍ରସ୍ତୁତ ହୋଇ ନିର୍ବାକ୍ ରହିଲେ । ସୁଖର କଥା, ଏହି ମହାର୍ଘ ବିଡ଼ମ୍ବନାର କର୍କଶ କୁଶାଙ୍କୁଶରେ ତାଙ୍କର ଲେଖା ନିର୍ବାଚନ ନୀତି ସେହି-ଦିନଠାରୁ ସଂଶୋଧିତ ହୋଇ ଠିକ୍ ରାସ୍ତା ଧରିଲା ।

## (୧୭) ମାନସିଂହଙ୍କ ମାନସର ଉଦ୍ଭଟ ମୁଦ୍ରଣ-ଧାରଣା—

ଯୁଗାନ୍ତକାରୀ ପ୍ରଣୟୀ କବି ମାୟାଧର ମାନସିଂହଙ୍କର ପ୍ରଥମ ଯୌବନ ବୟସର ଗୋଟିଏ ବେଶ୍ କୌତୂହଳମୟ କାହାଣୀ ଏଠାରେ ବର୍ଣ୍ଣୁଛି । ସେତେବେଳକୁ ସେ ସ୍ୱଗ୍ରାମରେ ଥିଲେ କି ଆଉ କେଉଁଠାରେ ଥିଲେ, ଖୋର୍ଦ୍ଧା ସହରରେ ଗୃହଶିକ୍ଷକତା କରୁଥିଲେ କି ଅନ୍ୟ କୌଣସି ବୃତ୍ତିର ଆଶ୍ରା ନେଇଥିଲେ ଅଥବା ସ୍ୱକର ମୋଟେ ପାଇ ନଥିଲେ, କିଛି ଏବେ ସୁମରଣକୁ ଆସୁନାହିଁ । ତେବେ ଝାପ୍ସା-ଝାପ୍ସା ଏତିକି ଠଉରକୁ ଆସୁଛି ଯେ, ସେଇଟା ବୋଧହୁଏ ୧୯୩୨ ସାଲର କାହାଣୀ । ତା'ର ବର୍ଷେ ଦେଢ଼ବର୍ଷ ପୂର୍ବରୁ ଖୋର୍ଦ୍ଧାରେ ତାଙ୍କ ସହିତ ପ୍ରଥମ ପରିଚୟର ପାଟତୋରରେ ବନ୍ଧା ହୋଇଥିଲି ମୁଁ ସ୍ନେହୀ କବି ଉମ୍ବରୁଧର ପରିଡ଼ା (ଖୋର୍ଦ୍ଧା ହାଇସ୍କୁଲର ଶିକ୍ଷକ)ଙ୍କ ମଧୁର ମଧ୍ୟ-ବର୍ତ୍ତିତାରେ । ସେହିଦିନୁଁ ଜାଣିଥିଲି ଯେ, ମାନସିଂହ ଜନନୀଜଠରରୁ ହିଁ କାଳିଦାସୀୟ କବିପ୍ରତିଭାର ଅମୃତରସରେ ସ୍ନାନ କରି କାଳିଦାସଙ୍କ ମାତୃଭୂମି ଓଡ଼ିଶା ମାଟିରେ ଅବତୀର୍ଣ୍ଣ ହୋଇଥିଲେ ୧୯୦୫ ସାଲରେ । ବୟସରେ ମୁଁ ତାଙ୍କଠାରୁ ପ୍ରାୟ ବର୍ଷେ କନିଷ୍ଠ ।

ସେତେବେଳକୁ (୧୯୩୨) ସାରସ୍ୱତ ପ୍ରେସ୍ କଲଟଗ୍ଟ ଫାଟକ ସାମନା କୋଠାରୁ ନିମଚୌଡ଼ିସ୍ଥ ଜମିଦାର ମୋତିଲାଲ ପଣ୍ଡିତଙ୍କ ବିଶାଳ ସୌଧ-ପରିସରକୁ ସ୍ଥାନାନ୍ତରିତ ହୋଇସାରିଥାଏ ଏବଂ ତନ୍ମଧ୍ୟରେ ସଦ୍ୟକ୍ରୀତ ପ୍ରକାଣ୍ଡ ଛପା ମେସିନ୍ ବସିସାରିଥାଏ । ସେଇଠାରେ ଦିନେ ରେଜେଷ୍ଟ୍ରି ଡାକରେ ଗ୍ରେଟିଆ ପାର୍ସଲଟିଏ ପାଇଲି ପୋଷ୍ଟମ୍ୟାନ୍ ହାତରୁ—ପଠାଇଥାନ୍ତି ବନ୍ଧୁ ମାୟାଧର ମାନସିଂହ, ସମ୍ଭବତଃ ଖୋର୍ଦ୍ଧାରୁ । ତରବର ହୋଇ ପାର୍ସଲଟି ଫିଟାଇପକାଇଲି ସାତିଶୟ ଆଗ୍ରହରେ । ତନ୍ମଧ୍ୟରେ ଥିଲା ଏକ ଚାରଣିଆ ଡାକଟିକଟ (ଷ୍ଟାମ୍ପ୍) ସହ ମୋ ପାଖକୁ ଖଣ୍ଡେ ଚିଠଉ, ଡବଲ ଫୁଲ୍ସ୍କେପ୍ ସୋଲ ପେଜ୍ ଆକାରର ୪୮ ପୃଷ୍ଠାବିଶିଷ୍ଟ ଖଣ୍ଡିଏ ଛପା କିତାପ ଓ ସେହି ଆକାରର କାଗଜରେ ଲେଖା ହୋଇଥିବା ମାନସିଂହଙ୍କ ରଚିତ କବିତା ପୁସ୍ତକର ୪୮ ପୃଷ୍ଠା ସମ୍ବଳିତ ଏକ ପାଣ୍ଡୁଲିପି । ସେହି ପାଣ୍ଡୁଲିପିର ପ୍ରଥମ ଦୁଇପୃଷ୍ଠା ଇନର୍ ଟାଇଟ୍ଲ୍କୁ ଛାଡ଼ିଦେଲେ ଅବଶିଷ୍ଟ ଛୟାଳିଶ ପୃଷ୍ଠାରେ ଲେଖାଥାଏ ଛୟାଳିଶଟି ଚତୁର୍ଦ୍ଦଶପଦୀ କବିତା (sonnet) —ଅର୍ଥାତ୍ ପ୍ରତ୍ୟେକ ପୃଷ୍ଠାରେ ଗୋଟିଏ ଲେଖାଏଁ ସନେଟ୍ ।

ମାନସିଂହଙ୍କ ଚିଠିରେ ଏହି ମର୍ମରେ ମୋ ପାଖକୁ ଲେଖାଥିଲା :

"ପ୍ରିୟ ବନ୍ଧୁ,

ହାର୍ଦ୍ଦିକ ସ୍ନେହ ନେବ । ଦୟାକରି ମୋର ଗୋଟିଏ ବିଶେଷ କାମ କରିଦେବାକୁ ଅନୁରୋଧ କରି ଏ ଚିଠିଟି ଲେଖୁଛି । ଆଶା କରେ, କାମଟି ଯଥାଶୀଘ୍ର ସାରିଦେଇ ମତେ ବାଧିତ କରିବ । ଏ ସମ୍ପର୍କରେ ପ୍ରୟୋଜନ ପଡ଼ିଲେ ମୋ ସହିତ ପତ୍ରାଳାପ କରିବାକୁ ବିଳମ୍ବ କରିବ ନାହିଁ । ପାର୍ଶ୍ୱଲରେ ଅଠଚାଳିଶ ପୃଷ୍ଠାର ଖଣ୍ଡିଏ ମୁଦ୍ରିତ କବିତା ବହି ନମୁନାସ୍ୱରୂପ ପଠାଉଛି । ତା' ସହିତ ମୋ ରଚିତ ଛୟାଳିଶଟି ସନେଟ୍‌ର ମୁଦ୍ରଣୀୟ ପାଣ୍ଡୁଲିପି ମଧ୍ୟ ପଠାଇଛି । ନମୁନା ବହିଟିର ଯେଉଁ ଆକାର, ଯେଉଁ କାଗଜ, ଯେତିକ ପୃଷ୍ଠା, ମୋ ପାଣ୍ଡୁଲିପିଟିକୁ ଅବିକଳ ସେହିପରି ସଜାଇ ମୁଦ୍ରିତ କରାଇଦେବ । ପ୍ରତି ପୃଷ୍ଠାରେ ଗୋଟିଏ କରି ସନେଟ୍ ରହିବ, ଆଉ ମୂଳ ଦୁଇ ପୃଷ୍ଠାରେ ବହି ନାମ, ଲେଖକ ନାମ, ପ୍ରକାଶକ ନାମ, ମୁଦ୍ରାକର ନାମ, ପ୍ରେସ୍ ନାମ, ମୂଲ୍ୟ ପ୍ରଭୃତି ଛପା ରହିବ । ଅଠଚାଳିଶ ପୃଷ୍ଠିଆ ନମୁନା କବିତାପଟିର ମୂଲ୍ୟ ଚାରି ଅଣା ବୋଲି ଛପାଯାଇଛି । ତେଣୁ ମୁଁ ଛପାଖର୍ଚ୍ଚରୂପେ ଏଥିସହ ଚାରଣା ମୂଲ୍ୟର ପୋଷ୍ଟାଲ୍ ଷ୍ଟାମ୍ପ୍ ଟିଏ ଦେଇପଠାଇଲି । ତୁମେ ଏହି ପଇସାରେ ମୋ ପାଇଁ ଖଣ୍ଡିଏ ବହି ଛପାଇଦେଇ ମତେ ଜଣାଇବ । ଖବର ପାଇବାମାତ୍ରେ ମୁଁ କଟକ ଯାଇ ତୁମକୁ ଭେଟି କରିବି ଏବଂ ତୁମଠାରୁ ମୁଦ୍ରିତରୂପପ୍ରାପ୍ତ ମୋର ସେହି ସନେଟ୍ ବହିଟି ଆଣି ଆଦରରେ ନିଜ ପାଖରେ ରଖିବି । । ଇତି ।

ତୁମର ସ୍ନେହାବଦ୍ଧ
ମାୟାଧର"

ପୁସ୍ତକ ମୁଦ୍ରଣ ସମ୍ବନ୍ଧରେ ମାନସିଂହ ଏପ୍ରକାର ଭ୍ରମାତ୍ମକ ଧାରଣା ପୋଷଣ କରୁଥିବାର ଜାଣି ମୁଁ ଦୁଃଖିତ ହେଲି ସତ; କିନ୍ତୁ ବିଶେଷ ଆଶ୍ଚର୍ଯ୍ୟ ହେଲିନାହିଁ । କାରଣ ମୁଦ୍ରଣ ଶିଳ୍ପ ସଂସ୍ପର୍ଶରେ ଆସି ନଥିବା ସାଧାରଣଲୋକଙ୍କ ପକ୍ଷରେ ତତ୍ସଂକ୍ରାନ୍ତ ବୈଷୟିକ ଜ୍ଞାନାବବୋଧ ସମ୍ଭବପର ହେବ କିପରି ? କୌଣସି ଲେଖକ ନିଜ ଖର୍ଚ୍ଚରେ ପୁସ୍ତକ ଖଣ୍ଡିଏ ଯେତେବେଳେ ପହିଲେ ଛାପିବାକୁ ଯାଏ, ସେତେବେଳେ ଯାଇ ମୁଦ୍ରଣ ବ୍ୟାପାରର ବିଭିନ୍ନ ପ୍ରକ୍ରିୟା ସମ୍ବନ୍ଧରେ ପ୍ରାଥମିକ ଜ୍ଞାନ ଆହରଣ କରିବାର ସୁଯୋଗ ପାଏ । ଯୁବକବି ମାନସିଂହଙ୍କ କଞ୍ଚା ବୟସର ଏହା ହେଲା ପ୍ରଥମ ବହିଛପେଇ ଅଭିପ୍ସା । ଏଥିପୂର୍ବରୁ ସେ ମୁଦ୍ରଣପଦ୍ଧତିର ସବିଶେଷ ଜ୍ଞାନ ଜାଣିପାରିଥାନ୍ତେ ବା କାହୁଁ ? ତେଣୁ ମୁଁ ତାଙ୍କ ନିକଟକୁ ପତ୍ରଟିଏ ଲେଖି କଟକ ଆସିବାକୁ ଅନୁରୋଧ କଲି ଏବଂ ଏଠାରେ ତାଙ୍କ ସହିତ ଆଲୋଚନା ନହେବା ପର୍ଯ୍ୟନ୍ତ ସନେଟ୍ ବହିଟିର ମୁଦ୍ରଣ କାର୍ଯ୍ୟ ହାତକୁ ନିଆଯାଇପାରିବ ନାହିଁ ବୋଲି ଜଣାଇଦେଲି ।

ମୋ ପତ୍ର ପାଇ ବନ୍ଧୁ ମାନସିଂହ କଟକ ଆସି ମତେ ଭେଟିଲେ । ମୁଁ ତାଙ୍କୁ କମ୍ପୋଜ-ଖାନା, ମେସିନ୍‌ଖାନା, ଦପ୍ତରଖାନା, ପ୍ରୁଫ୍ ସଂଶୋଧନ କକ୍ଷ ପ୍ରଭୃତି ବୁଲାଇ ମୁଦ୍ରଣାଳୟର ବିଭିନ୍ନ ବିଭାଗରେ ହେଉଥିବା ବିଭିନ୍ନ ପ୍ରକାରର ପ୍ରକ୍ରିୟା ସହିତ ପ୍ରତ୍ୟକ୍ଷଭାବରେ ପରିଚିତ କରାଇଦେଲି । କେବଳ ସେତିକି ନୁହେଁ, ପ୍ରତ୍ୟେକ ବହିସଂମୀର କାର୍ଯ୍ୟ ଆରମ୍ଭଠାରୁ ଶେଷ-ପର୍ଯ୍ୟନ୍ତ କେତେ ସ୍ତର ଦେଇ ଗତି କଲେ ପୂର୍ଣ୍ଣାଙ୍ଗତାପ୍ରାପ୍ତ ହୁଏ, ତାହାର କ୍ରମପର୍ଯ୍ୟାୟ ସମ୍ବନ୍ଧରେ ବାସ୍ତବ ଧାରଣା ମଧ୍ୟ ତାଙ୍କ ହୃଦୟରେ ଗେଇଦେଲି । ଗୋପାଳଚନ୍ଦ୍ର ପ୍ରହରାଜଙ୍କ ପ୍ରଣୀତ ସାହିତ୍ୟ ପାଠ୍ୟପୁସ୍ତକ 'ସୁକୁମାର ଶିକ୍ଷା'ର କୌତୂହଳୋଦ୍ରେକକର ଗପ 'ଶହେକଣିଆ ପିଠା' ପ୍ରାୟ ପ୍ରତି ଗଳ୍ପର ମୁଦ୍ରିତ ରୂପ ଯେ ପ୍ରେସ୍‌ର ଭିନ୍ନ ଭିନ୍ନ ବିଭାଗର ଶତାଧିକ ବ୍ୟକ୍ତିଙ୍କ ଶ୍ରମସମବାୟର ସାର୍ଥକ ସନ୍ତକ, ଏହା କବି ମାନସିଂହଙ୍କ ପ୍ରତ୍ୟକ୍ଷ ଅନୁଭୂତିର ବିଷୟୀଭୂତ ହେଲା ।

ଏହାପରେ ତାଙ୍କ ସନେଟ୍ ପୁସ୍ତକର ଛପା ପ୍ରସଙ୍ଗରେ ବୁଝାଇ କହିଲି, "ଯେକୌଣସି ପୁସ୍ତକର ମୁଦ୍ରଣ ସଂଖ୍ୟା ସର୍ବନିମ୍ନ ଏକହଜାରରୁ କମ୍ ହୁଏନାହିଁ । ସେଥିରେ ବ୍ୟବହୃତ କାଗଜର ଦାମ୍ ଓ ପ୍ରେସ୍‌ର ଛପେଇ ଖର୍ଚ୍ଚ ମିଶି ମୋଟ ଯେତେ ଟଙ୍କା ହୁଏ, ତା'ର ହାରାହାରି ତିନିଗୁଣ ଟଙ୍କାକୁ ଭିତ୍ତି କରି ମୁଦ୍ରିତ ପ୍ରତ୍ୟେକ ପୁସ୍ତକର ମୂଲ୍ୟ ଧାର୍ଯ୍ୟ କରାଯାଇଥାଏ । ତୁମେ ଯେଉଁ ନମୁନା ବହିଟି ପଠାଇଛ, ତାକୁ ହଜାରେ ଖଣ୍ଡ ମୁଦ୍ରିତ କରିବାରେ କାଗଜ ଖର୍ଚ୍ଚ ଓ ଛପେଇ ଖର୍ଚ୍ଚ ମିଶି ପ୍ରାୟ ପଞ୍ଚାଶୀ ଟଙ୍କା ବ୍ୟୟିତ ହୋଇଥିବ । ତାର ତିନିଗୁଣ ହେଲା ପ୍ରାୟ ଅଢ଼େଇ ଶହ ଟଙ୍କା । ତେଣୁ ପ୍ରତି ବହିଖଣ୍ଡର ମୂଲ୍ୟ ହୋଇଛି ଚାରି ଅଣା । ଏବେ ତୁମ ପ୍ରେରିତ ସନେଟ୍ ପାଣ୍ଡୁଲିପିଟିକୁ ମୁଦ୍ରିତ ଚେହେରା ଦେବାକୁ ହେଲେ ଅନ୍ତତଃ ହଜାରେ ଖଣ୍ଡ ବହି ଛପାଇବାକୁ ହେବ ଏବଂ ସେଥିପାଇଁ ପ୍ରାୟ ପଞ୍ଚାଶୀ ଟଙ୍କା ଲାଗିଯିବ । ମନେରଖିଥାଅ ଯେ, ପୁସ୍ତକର ଛପାସଂଖ୍ୟା ହଜାରେ ଖଣ୍ଡରୁ ଯେତେ ଅଧିକ ହେବ, ଆନୁପାତିକ ହିସାବରେ ପ୍ରତି ଖଣ୍ଡର ମୂଲ୍ୟ ସେତେ କମିବ ।"

ବନ୍ଧୁ ମାନସିଂହ ସେତେବେଳେ ଏତେ ଅର୍ଥ ବହିଛପାରେ ଖଟାଇପାରିଲା ଭଳି ସ୍ୱଚ୍ଛଳ ଅବସ୍ଥାରେ ନଥିଲେ । ଆବଶ୍ୟକ ପରିମାଣର ଅର୍ଥ ସଂଗ୍ରହ କରିସାରିବା ପରେ ମୋ ପାଖକୁ ଆସି ମୁଦ୍ରଣର ବରାଦ ଦେବେ ବୋଲି କହି ପଠାଇଥିବା ପାର୍ସଲଟି ଅଗତ୍ୟା ଫେରାଇ-ନେଲେ । ମୋ ନିକଟକୁ ଆସିବା ଫଳରେ ମୁଦ୍ରଣ ସମ୍ପର୍କରେ ତାଙ୍କର ଆଶାନୁରୂପ ପକ୍କା ଧାରଣା ହୋଇପାରିଥିବାରୁ ମତେ ଅଜସ୍ର ବାଚକ ବଧାଇ ଦେବାକୁ ଭୁଲି ନଥିଲେ ।

ସରାଗ ସୋହାଗଭରା ତାଙ୍କର ଏହି ପ୍ରଥମ ପୁସ୍ତକପ୍ରକାଶ ପ୍ରୟାସଟି ଅସଫଳ ହୋଇଗଲେ ହେଁ ତାହାହିଁ ଆମ ଦୁହିଁଙ୍କ ବନ୍ଧୁତ୍ୱର ମୂଳଦୁଆକୁ ମହାନଦୀର ପଥରବନ୍ଧ ପରି ଟାଣ ଓ ଚିରସ୍ଥାୟୀ କରିଦେଲା । ଭବିଷ୍ୟତର ବିକଶିତ ଜୀବନରେ ତାଙ୍କ ଅନତିକ୍ରମ୍ୟ ଅମୃତ ଲେଖନୀନିଃସୃତ କାବ୍ୟ-କବିତା, ନାଟକ-ନାଟିକା, ଆଲୋଚନା-ସମାଲୋଚନା,

ପ୍ରବନ୍ଧ-ନିବନ୍ଧ, ଉପନ୍ୟାସ, ଜୀବନୀ, ଧର୍ମଗ୍ରନ୍ଥ ପ୍ରଭୃତି ନାନା ବିଷୟରେ ଓ ନାନା ବିଭାଗରେ ପଚିଶରୁ ଅଧିକ ଅମୂଲ୍ୟ ଗ୍ରନ୍ଥ ତାଙ୍କୁ ଆଧୁନିକ ଯୁଗର ସର୍ବମାନ୍ୟ ସାରସ୍ୱତ ସାଧକର ଶ୍ରେଷ୍ଠ ଗୌରବ ପ୍ରଦାନ କରିଛି ।

ବହୁତୋମୁଖୀ-ପ୍ରତିଭାଧର ମାୟାଧରଙ୍କର ଲେଖନୀ ଥିଲା ରଙ୍ଗ ରସ ପ୍ରଦ୍ୱେଷଙ୍କ ଲେଖନୀ ପରି ପର୍ଯ୍ୟସ୍ୱିନୀ ଓ ଖରସ୍ରୋତା । ତାଙ୍କର କେତେକ ପୁସ୍ତକ ସ୍କୁଲ-କଲେଜମାନଙ୍କରେ ପାଠ୍ୟପୁସ୍ତକରୂପେ ପଠିତ ହେଉଥିଲା । ଯେତେ ଥର ସେଗୁଡ଼ିକର ପୁନର୍ମୁଦ୍ରଣ ବା ପରିବର୍ତ୍ତିତ ସଂସ୍କରଣ ହୁଏ, ଭାଷାଶୁଦ୍ଧିରକ୍ଷା ଭାର ସେ ବରାବର ମୋ ହାତରେ ଛାଡ଼ି-ଦେଉଥିଲେ । ଛାପିବାପାଇଁ ପ୍ରେସ୍‌କୁ କପି ପଠାହେବା ପୂର୍ବରୁ ମୁଁ ପ୍ରତ୍ୟେକ ପୃଷ୍ଠା ଉପରେ ପ୍ରଚ୍ଛେ ଆଖି ବୁଲାଇନିଏଁ ଏବଂ ମୁଦ୍ରଣ ସ୍ତରରେ ପ୍ରତ୍ୟେକ ଫର୍ମାର ପ୍ରୁଫ୍ ମୁଁ ଦେଖିଲେ ଯାଇ ତାଙ୍କ ମନବୋଧ ହୁଏ । ମୋର ଶୁଦ୍ଧ ଭାଷାଜ୍ଞାନ ଉପରେ ତାଙ୍କର ଏତେ ଉଚ୍ଚ ଧାରଣା ଓ ଅଗାଧ ବିଶ୍ୱାସ ରହିବାର ମୂଳରେ ଥିଲା ଗୋଟିଏ ଛୋଟିଆ ଘଟଣା । ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ଯେଉଁ 'ଜ୍ଞାନକୋଷ' ସଙ୍କଳିତ ହେଉଥିଲା, ତାର ମୁଖ୍ୟ ସଙ୍କଳକ ଥିଲେ ଡକ୍ଟର୍ ମାୟାଧର ମାନସିଂହ । ଦିନେ ତାଙ୍କ 'ଜ୍ଞାନକୋଷ' କର୍ମଶାଳା ପରିଦର୍ଶନ କରିବାକୁ ମତେ ମୋ କର୍ମସ୍ଥଳୀ ସରକାରୀ ମୁଦ୍ରଣାଳୟରୁ ସେ ଡାକନେଇଥିଲେ ଆନୁଷ୍ଠାନିକ ଭାବରେ । 'ଜ୍ଞାନକୋଷ' ପାଇଁ ଉଦ୍ଦିଷ୍ଟ ଗୋଟିଏ ଲେଖାର ଅଂଶବିଶେଷରେ 'ଦୀର୍ଘ ଓ ପ୍ରସ୍ଥ' ଶବ୍ଦର ଉଲ୍ଲେଖ ଥିଲା । ମୁଖ୍ୟ ସଙ୍କଳକ ମାନସିଂହ ତାକୁ ନାଲି କାଳିରେ କାଟି 'ଦୈର୍ଘ୍ୟ ଓ ପ୍ରସ୍ତ' କରିଦେଇଥାନ୍ତି । ତହିଁଉପରେ ମୋର ଦୃଷ୍ଟି ପଡ଼ିବାମାତ୍ରେ ମୁଁ ତାଙ୍କୁ କହିଲି, "ଏଠାରେ 'ପ୍ରସ୍ଥ' ଶବ୍ଦଟିକୁ ଉଠାଇଦେଇ ତା' ସ୍ଥାନରେ 'ପ୍ରସ୍ତ' କରିଦେଲି କାହିଁକି ? 'ପ୍ରସ୍ତ' ବା 'ପରସ୍ତ' ଶବ୍ଦ ସଂସ୍କୃତ 'ସ୍ତର' ଶବ୍ଦରୁ ଉଦ୍ଭୂତ । କିନ୍ତୁ 'ପ୍ରସ୍ଥ' ଶବ୍ଦଟି ମୂଳ ସଂସ୍କୃତ ।" ମାନସିଂହ ନିଜର ତ୍ରୁଟି ବୁଝିପାରି ସଙ୍ଗେ ସଙ୍ଗେ 'ପ୍ରସ୍ତ'କୁ କାଟି 'ପ୍ରସ୍ଥ' କରିଦେଲେ । ସେତେବେଳେ 'ଜ୍ଞାନକୋଷ' ଗ୍ରନ୍ଥ ପ୍ରଥମ ଭାଗର ଛପା ଆରମ୍ଭ ହେବାର ମଧୁଧା ଚାଲିଥାଏ । ସେଥିପାଇଁ ସେ ମତେ 'ଭାଷା ବିଶାରଦ' (Language Expert) ପଦରେ ତାଙ୍କ ଅଫିସକୁ ଡେପୁଟେସନ୍‌ରେ ଆଣିବାକୁ ଉତ୍କଳ ବିଶ୍ୱବିଦ୍ୟାଳୟକୁ ପ୍ରସ୍ତାବ ଦେଇଥିଲେ । ମାତ୍ର ୟୁନିଭର୍ସିଟିର ଆର୍ଥିକ ପରିସ୍ଥିତି ଦୁର୍ବଳ ଥିବାରୁ କୁଳପତି ଡକ୍ଟର ପ୍ରାଣକୃଷ୍ଣ ପରିଜା ପ୍ରସ୍ତାବଟିକୁ ଅନୁମୋଦନ କରି ନପାରି ଗଭୀର ଦୁଃଖପ୍ରକାଶ କରିଥିଲେ ।

ଡକ୍ଟର ମାନସିଂହ ଜୀବନର ଶେଷଭାଗ ଆଡ଼କୁ ବୌଦ୍ଧଧର୍ମ ପ୍ରତି ଅତି ବିଶ୍ୱସ୍ତତାର ସହିତ ଢଳିଯାଇଥିଲେ । ତାଙ୍କର ସର୍ବଶେଷ ଓ ସର୍ବବୃହତ୍ତ ଧର୍ମଗ୍ରନ୍ଥ ହେଉଛି 'ସାର୍ବଜନୀନ ଗୀତା'—ମୁକ୍ତଦାୟିନୀ ଶ୍ରୀମଦ୍‌ଭଗବଦ୍‌ଗୀତାର ସର୍ବଜନବୋଧ ଭାଷ୍ୟ । ୧୯୭୦ର ଏକ ହୈମନ୍ତିକୀ ସନ୍ଧ୍ୟାରେ ମାନସିଂହ ମୋ ଘରେ ପଦାର୍ପଣ କଲେ ପତ୍ନୀ ହେମଲତାଙ୍କ ସହିତ । ସଙ୍ଗରେ ଆଣିଥିଲେ ଫୁଟେ ଉଚ୍ଚର ଏକ ପାଣ୍ଡୁଲିପିସ୍ତୂପ । ଯେଉଁ ଶବ୍ଦସାରେ

ବସି ଯୁଗଳମୂର୍ତ୍ତି ଆସିଥିଲେ, ତାହାର ତେଲଙ୍ଗା ଗ୍ଟଲକ ସେହି ପୃଷ୍ଟଟିକୁ ବୋହିଆଣି ମୋ ଟେବୁଲ ଉପରେ ଥୋଇଦେଇଗଲ । ତାହାହିଁ ହେଉଛି 'ସାର୍ବଜନୀନ ଗୀତା' ଗ୍ରନ୍ଥର ସମ୍ପୂର୍ଣ୍ଣ ପାଣ୍ଡୁଲିପି । ଭାଷ୍ୟକାରଙ୍କ ମୁହଁରୁ ଶୁଣିଲି, ଗ୍ରନ୍ଥଟିର ପ୍ରକାଶଭାର ନେଇଛନ୍ତି 'ଛାତ୍ରସାଥୀ' ପ୍ରେସ୍‌ର ସ୍ୱତ୍ୱାଧିକାରୀ ନବକିଶୋର ମହାପାତ୍ର । ନିବିଡ଼ ବନ୍ଧୁସ୍ନେହର ଅଧିକାରରେ ମାନସିଂହ ଅନୁରୋଧ କଲେ ମତେ, "ଏ କଠିନ କାମଟିର ବୋଝ ସମ୍ଭାଳିବାକୁ ତୁମ ଛଡ଼ା ଆଉ କେହି ଶକ୍ୟ ନୁହନ୍ତି । ନିରଙ୍କୁଶ କ୍ଷମତା ଦେଉଛି, ତୁମେ ଇଚ୍ଛାମତେ ପାଣ୍ଡୁଲିପିର ଭାଷାକୁ ସଜାଡ଼ିବ ଏବଂ ଛପାବେଳେ ପ୍ରୁଫ୍ ସ୍ତରରେ ମଧ୍ୟ ପରିବର୍ତ୍ତିନାଦି କରିବ । ତୁମେ ଜାଣ, ସଂସ୍କୃତ ଜ୍ଞାନରେ ମୋର ନାବାଳକ ଫିଟିନାହିଁ । ତେଣୁ ମୂଳ ଶ୍ଳୋକ ଓ ତାର ଅନ୍ୱୟମୁଖୀ ଟୀକାକୁ ଭଲରୂପେ ଚେକ୍ କରିବ । ତୁମର ଏ ଋଣ ଏ ଜନ୍ମରେ ପରିଶୋଧ କରିବା ମୋ ପକ୍ଷରେ ଅସମ୍ଭବ ।"

ବିନା ଦ୍ୱିଧାରେ ବିନା କୁଣ୍ଠାରେ ତାଙ୍କ ଦିଆ ଗୁରୁ ଦାୟିତ୍ୱଟି ଗ୍ରହଣ କଲି । ତା' ସହିତ ବ୍ୟବସାୟାତ୍ମିକା ବୃଦ୍ଧି ପ୍ରୟୋଗ କରି ପ୍ରସ୍ତାବଟିଏ ଦେଲି, "ଶ୍ରୀମଦ୍‌ଭଗବଦ୍‌ଗୀତାର ଅଠର ଅଧ୍ୟାୟକୁ ତିନି ଭାଗରେ ବିଭକ୍ତ କରାଯାଉ ଏବଂ ପ୍ରତ୍ୟେକ ଭାଗରେ ଛଅ ଅଧ୍ୟାୟ ଲେଖାଏଁର ଭାଷ୍ୟ ବାର୍ଣ୍ଣି ହୋଇ ରହୁ । ଏହାଦ୍ୱାରା ଦୁଇଟି ଉଦ୍ଦେଶ୍ୟ ସାଧିତ ହେବ । ମହାନ୍ ଧର୍ମଗ୍ରନ୍ଥ 'ଗୀତା' ଜ୍ଞାନପିପାସୁ ତଥା ମୁକ୍ତିପିପାସୁମାନଙ୍କର ନିତ୍ୟପାଠ୍ୟ ଓ ନିତ୍ୟଧ୍ୟେୟ । ମୁଦ୍ରିତ ଗ୍ରନ୍ଥଟି ତିନି ଭାଗରେ ବିଭାଜିତ ହୋଇଗଲେ ପ୍ରତି ଭାଗର ଆକାର ଅପେକ୍ଷାକୃତ କ୍ଷୁଦ୍ର ହୋଇ ବାରମ୍ବାର ବ୍ୟବହାର ପାଇଁ ସୁକର ଓ ସୁଖକର ହେବ । ଦ୍ୱିତୀୟତଃ, ପ୍ରଥମ ଭାଗଟି ଅତି ଶୀଘ୍ର ପ୍ରକାଶ ଲାଭ କଲାମାତ୍ରେ ତା'ର ବିକ୍ରୟ ଆରମ୍ଭ ହୋଇଯିବ ଏବଂ ପ୍ରକାଶନରେ ଖର୍ଚ୍ଚ ହୋଇଥିବା ବିପୁଳ ଅର୍ଥର କିୟଦଂଶ ପ୍ରକାଶକଙ୍କ ହାତକୁ ଫେରିଆସିପାରିବ ।"

ଭାଷ୍ୟକାର ଓ ପ୍ରକାଶକ ଉଭୟେ ଅତି ଆନନ୍ଦରେ ଏ ପ୍ରସ୍ତାବକୁ ସ୍ୱାଗତ କରିନେଲେ । ମୁଁ ପ୍ରଥମ ଛଅ ଅଧ୍ୟାୟର ପାଣ୍ଡୁଲିପିକୁ ତନ୍ନ ତନ୍ନ ପଢ଼ି ଭାଷାଗତ ତ୍ରୁଟିକୁ ସୁଧାରିଦେଲି ପରେ ନବଜୀବନ ପ୍ରେସ୍‌ରେ ପ୍ରଥମ ଭାଗର ଛପାକାର୍ଯ୍ୟ ଆରମ୍ଭ ହୋଇ ୧୯୭୩ରେ ସମାପ୍ତ ହେଲା । ସେତେବେଳକୁ ମାନସିଂହ ପୀଡ଼ିତାବସ୍ଥାରେ କଟକର ବଡ଼ ଡାକ୍ତରଖାନାରେ ଚିକିତ୍ସିତ ହେଉଥିଲେ । ଦୁର୍ଭାଗ୍ୟବଶତଃ ଚିକିତ୍ସକମାନଙ୍କର ଆପ୍ରାଣ ଚେଷ୍ଟା ସତ୍ତ୍ୱେ ସେ ସେହିଠାରେ ଶେଷ ନିଶ୍ୱାସ ତ୍ୟାଗ କଲେ । ଗ୍ରନ୍ଥକାର ମାନସିଂହ ଗ୍ରନ୍ଥଟିର ସ୍ୱରୂପ ଦେଖିପାରିଲେ ନାହିଁ ।

## (୧୮) ଉତ୍କଳ ସମ୍ମିଳନୀର ସ୍ୱତନ୍ତ୍ର ଅଧିବେଶନ—

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଦାବିକୁ ଅଧିକତର ବଳିଷ୍ଠ ଓ ତତ୍‌ସମ୍ପୃକ୍ତ ଆନ୍ଦୋଳନକୁ ଅଧିକତର ବ୍ୟାପକ ଓ ବେଗବନ୍ତ କରିବା ଦିଗରେ ନୂତନ ପନ୍ଥା ନିର୍ଦ୍ଧାରଣ ପାଇଁ ମାନ୍ଦ୍ରାଜ ପ୍ରଦେଶାନ୍ତର୍ଗତ ଗଞ୍ଜାମ ଜିଲ୍ଲାର ମୁଖ୍ୟ ସହର ବ୍ରହ୍ମପୁରର ବିରାଟ ଜୁବିଲି ହଲ୍‌ରେ 'ଉତ୍କଳ

ସମ୍ମିଳନୀ'ର ଏକ ଗୁରୁତ୍ୱପୂର୍ଣ୍ଣ ବିଶେଷ ଅଧିବେଶନ ଆୟୋଜିତ ହୋଇଥିଲା ୧୯୩୨ ମସିହାରେ । ସେଥିରେ ବହୁ ଅଣ୍ଡୁ ବିସ୍ତୃତ ବିଷୟ ଓ ପ୍ରସ୍ତାବ ଆଲୋଚିତ ହେବ ବୋଲି କାର୍ଯ୍ୟକ୍ରମ ଧାର୍ଯ୍ୟ ହୋଇଥିଲା । ସେହି ଅଧିବେଶନର ସଭାପତି ଆସନ ଅଳଂକୃତ କରିଥିଲେ ଦେବାନ ବାହାଦୂର ଲକ୍ଷ୍ମୀଧର ମହାନ୍ତି—ତତ୍କାଳୀନ ବିହାର-ଓଡ଼ିଶା ବିଧାନସଭା (Council)ର ଉପାଧ୍ୟକ୍ଷ (Deputy President) । ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ ବିଲାତରେ ଅନୁଷ୍ଠିତ ଗୋଲଟେବୁଲ ବୈଠକରେ ଯୋଗ ଦେଇ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଦାବିକୁ ଦୃଢ଼ତାର ସହିତ ଉପସ୍ଥାପିତ କରିଥିବାରୁ ତାଙ୍କୁ ସମ୍ମିଳନୀ ପକ୍ଷରୁ ସମ୍ବର୍ଦ୍ଧନା ମଧ୍ୟ ଦିଆଯାଇଥିଲା । ଉକ୍ତ ଅଧିବେଶନରେ ସାମ୍ବାଦିକରୂପେ ଯୋଗଦାନ କରିବା ଉଦ୍ଦେଶ୍ୟରେ ତିନିକ ପୂର୍ବରୁ ପଣ୍ଡିତ ଗୋଦାବରୀଶ ମିଶ୍ର, ଗୋଦାବରୀଶ ମହାପାତ୍ର ଓ ମୁଁ ସଙ୍ଗ ହୋଇ ରେଲଯୋଗେ କଟକରୁ ଯାତ୍ରା କରିଥିଲୁଁ । ସଙ୍କୁଚିତ ଓଡ଼ିଶାର ମୋଗଲବନ୍ଦି ଓ ବିସ୍ତୃତ ଗଡ଼ଜାତ ମାହାଲରୁ ଏବଂ ମାନ୍ଦ୍ରାଜ, ବଙ୍ଗ, ବିହାର, ମଧ୍ୟପ୍ରଦେଶ ପ୍ରଭୃତିରେ ଥିବା ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳମାନଙ୍କରୁ ମୋଟ ଯେତେ ପ୍ରତିନିଧି, ସାମ୍ବାଦିକ, ଦର୍ଶକ, ଶ୍ରୋତା ଓ ଆମନ୍ତ୍ରିତ ବ୍ୟକ୍ତି ସେଠାରେ ସମବେତ ହୋଇଥିଲେ, ସେମାନଙ୍କ ସଂଖ୍ୟା ନିଃସନ୍ଦେହ ସହସ୍ରାଧିକ ହେବ । ଗଞ୍ଜାମ ଜିଲ୍ଲାର, ବିଶେଷତଃ ବ୍ରହ୍ମପୁର ସହରର ଜନ୍ମଭୂମିବତ୍ସଳ ପରମୋତ୍ସାହୀ ଓଡ଼ିଆମାନେ ସେହି ଦୂରାଗତ ଅତିଥି-ସମୂହଙ୍କ ରହଣି ଓ ଖାଦ୍ୟପେୟର ବିପୁଳ ବ୍ୟବସ୍ଥା କରିଥିଲେ । ଅଧିବେଶନର ଖର୍ଚ୍ଚ ପାଇଁ ବ୍ରହ୍ମପୁରର ପ୍ରମୁଖ ଓଡ଼ିଆ ଅଧିବାସୀମାନେ କେତେଟା ମାତ୍ର ଦିନ ମଧ୍ୟରେ ତିରିଶ ହଜାରରୁ ଅଧିକ ଟଙ୍କା ସଂଗ୍ରହ କରିପାରିଥିଲେ ବୋଲି ଅଭ୍ୟର୍ଥନା ସମିତିର କେତେକ ସଦସ୍ୟଙ୍କ ମୁଖରୁ ଶୁଣିବାକୁ ମିଳିଥିଲା । ପ୍ରକାଶ ଥାଉ କି, ଏକା ଆମ କଟକରୁ ଯାଇଥିବା ସାମ୍ବାଦିକ, ପ୍ରତିନିଧି, ଦର୍ଶକ ଆଦିଙ୍କ ସଂଖ୍ୟା ଦୁଇ ଶହରୁ ନ୍ୟୂନ ହେବନାହିଁ ।

ବ୍ରହ୍ମପୁର ଷ୍ଟେସନରେ ରେଲରୁ ଓହ୍ଲାଇ ତିନିହେଁଯାକ ଦ୍ରୁତଗତି ବଳଦବାହିତ ଶଗଡ଼କାରେ ବସି ପଣ୍ଡିତ ଗୋଦାବରୀଶଙ୍କ ଅନ୍ତରଙ୍ଗ ସୁହୃଦ୍ ସୁଖ୍ୟାତ ଆଇନଜୀବୀ ଲିଙ୍ଗରାଜ ପାଣିଗ୍ରାହୀଙ୍କ ନବନିର୍ମିତ ରୁଚିରମ୍ୟ ବାସଭବନରେ ଉପସ୍ଥିତ ହେଲୁଁ । ସେତେବେଳକୁ ଦିନ ପ୍ରାୟ ସାଢ଼େ ତିନିଟା, ଆଡ଼୍‌ଭୋକେଟ୍ ପାଣିଗ୍ରାହୀ କଚେରିରୁ ଫେରିନଥାନ୍ତି । ସେପର୍ଯ୍ୟନ୍ତ (୧୯୩୨) ତେଲେଙ୍ଗାବହୁଳ (ଓଡ଼ିଆମାନେ ସେତେବେଳେ ଥିଲେ ସଂଖ୍ୟାଲଘୁ) ସମଗ୍ର ବ୍ରହ୍ମପୁର ସହରରେ କାହାରି ଘରେ ପାଇଖାନାର ବ୍ୟବସ୍ଥା ନଥିଲା । ସ୍ତ୍ରୀପୁରୁଷ-ବାଳକବାଳିକା ନିର୍ବିଶେଷରେ ପ୍ରାୟ ସମସ୍ତେ ସହର ସୀମାନ୍ତସ୍ଥ ଝରଯୁକ୍ତ ସୁବିସ୍ତୃତ ଟାଙ୍ଗର କ୍ଷେତକୁ ଚାଲିଯାନ୍ତି 'ବହିର୍ଦ୍ଦେଶ' କର୍ମ ସମାପନ ଉଦ୍ଦେଶ୍ୟରେ । ତେବେ, ପ୍ରାୟ ପ୍ରତି ବସ୍ତିର କେନ୍ଦ୍ରସ୍ଥଳରେ ମ୍ୟୁନିସିପାଲିଟିର ଗୋଟିଏ ଲେଖାଏଁ ବଡ଼ ଆତ (ଲେଉଆ) ବଣ ରହିଥାଏ । ତାହାର ଭିତରେ ମ୍ୟୁନିସିପାଲିଟି-ପାଳିତ ଦଳେ ଘୁଷୁରି ବାସ କରିଥାନ୍ତି । ବସ୍ତିଲୋକେ ସେହି ଗହଳ ଲେଉଆବଣକୁ ମୁକ୍ତ ମଳତ୍ୟାଗ

କ୍ଷେତ୍ରରୂପେ ବ୍ୟବହାର କରଥାନ୍ତି । ଘୃଷ୍ଟରପଲ ଅପେକ୍ଷା କର ରହୁଥାନ୍ତି, ମଳତ୍ୟାଗୀମାନେ ଉଠିଆସିବାମାତ୍ରେ ଘୃଷ୍ଟର ଉକ୍ତ ଦୂଷିତ ସ୍ଥାନଗୁଡ଼ିକୁ ଗୁଡ଼ିଚୁଟି ବିଶୋଧିତ ଓ ପରିଷ୍କୃତ କରଦଅନ୍ତି । ସର୍ବପ୍ରଥମ କର ସେହି ୧୯୩୬ରେ ଲିଙ୍ଗରାଜବାବୁ ତାଙ୍କ ନୂତନ ବାସଗୃହ-ପରସରରେ ନବ୍ୟ ରୁଚିର ସେପ୍‌ଟିକ୍ ପାଇଖାନା ଖଞ୍ଜିଥିଲେ ।

ପଣ୍ଡିତ ଗୋଦାବରୀଶ ଟିକଏ ବିଶ୍ରାମ ନେବାପାଇଁ ଓକିଲଖାନାର ପ୍ରଶସ୍ତ ବାରଣ୍ଡାରେ ପଡ଼ିଥିବା ଖଟ ଖଣ୍ଡିକରେ ଗଡ଼ୁଁ ଗଡ଼ୁଁ ନିଦରେ ଶୋଇଗଲେ । କର୍ମଚଞ୍ଚଳ ବନ୍ଧୁ ଗୋଦାବରୀଶ ସେଠା ଗ୍ରୁଡ଼ 'ଆଶା' ପ୍ରେସ୍ ଆଡ଼େ ମୁହାଁଇଲେ । ମୁଁ ହୋଇଗଲି ସାଥୀହରା । ନିଃସଙ୍ଗତା ଯୋଗୁଁ ବଡ଼ ବିଚକଟା ଲାଗିଲା । ଖାଲିଟା ବସିରହିବ କେତେ କାଳ ? ଏଇଟା ମୋର ପ୍ରଥମ ବ୍ରହ୍ମପୁର ଦର୍ଶନ । ତେଣୁ ପହଣ୍ଡେ ପହଣ୍ଡେ ହୋଇ ସଦର ରାସ୍ତା ଉପରକୁ ଗଲି । ଦଳ ଦଳ ହୋଇ ଲୋକେ ଏପଟୁଁ ଯାଉଥାନ୍ତି, ସେପଟୁଁ ବି ଆସୁଥାନ୍ତି । ସମସ୍ତେ ତେଲୁଗୁ ଭାଷାରେ କଥାବାର୍ତ୍ତା ହେଉଥାନ୍ତି, ଜଣେ ହେଲେ କାହାରି ତୁଣ୍ଡରୁ ଓଡ଼ିଆ ପଦେ ଶୁଣିବାକୁ ପାଇଲି ନାହିଁ । ସେମାନଙ୍କ ମଧ୍ୟରେ ଓଡ଼ିଆ ଲୋକ ଯେ ନଥିଲେ ତା' ନୁହେଁ, ଯେଉଁମାନେ ଥିଲେ ସେମାନେ ସଂଖ୍ୟାଗରିଷ୍ଠ ତେଲେଙ୍ଗା ଗୋଷ୍ଠୀଙ୍କ ପ୍ରାଧାନ୍ୟ ପାଖରେ ମଥା ନୁଆଁଇ ତେଲୁଗୁରେ କଥାଭାଷା ହେବାରେ ମର୍ମାନ୍ତିକ ଅଭ୍ୟସ୍ତ ହୋଇ-ଯାଇଥାନ୍ତି । ଏଭଳି ସଙ୍କଟ ପରିସ୍ଥିତିରେ ମୁଁ କାହାଠାରେ ଓଡ଼ିଆ ବୋଲି ଚିହ୍ନଟ ପାଇବି ଯେ ତା' ସହିତ ମନଖୋଲି କଥା କହିବି ? ଅଗତ୍ୟା ମୁହଁରେ ତୁଣ୍ଡି ବାନ୍ଧିଲା ପରି ମଉନ ହୋଇ ଏଣେତେଣେ ଚାହିଁ ଚାହିଁ କଚ୍ଛପ ଗତିରେ ଆଗକୁ ଚାଲିଥାଏଁ । ଗିରବଟ ଏଣେ ଭଳି ମୋର ଏଇ ଏକାକିଆ ବାଆଁରା ଲକ୍ଷଣରୁ ଯେକୌଣସି ସହୃଦୟ ବୁଝିଆ ଚଟ୍‌କର ଧରିନେବ ଯେ, ମୁଁ ନିଶ୍ଚେ ବ୍ରହ୍ମପୁରକୁ ଜଣେ ଅଚିହ୍ନା ନୂଆ କୁଣିଆଁ ।

ମୋର ଏହି ନୀରବ ନିର୍ବାକ୍ ମୁଖ ଓ ମୃଦୁ ମନ୍ଥର ଗତିକୁ ଠଉରାଇନେଇ ରାସ୍ତାର ବିପରୀତ ଧାରରେ ଯାଉଥିବା ଜଣେ ଷ୍ଟୁଡ଼ିମନ୍ତ ଚଞ୍ଚଳଚରଣ ଚମ୍ପା ଯୁବା ମୋ ଆଡ଼କୁ ଚହଟି ଆସିଲେ ଏବଂ ସରସ କଣ୍ଠରେ ମତେ ପ୍ରଣାମ ଜଣାଇଲେ ପାଶ୍ଚାତ୍ୟ ଢାଞ୍ଚାରେ— 'Good afternoon, sir' ଉଚ୍ଚାରି । ମୁଁ ସେହି ଢାଞ୍ଚାରେ ପ୍ରତିପ୍ରଣାମ ଜଣାଇଲି 'Good afternoon' । ସଙ୍ଗେ ସଙ୍ଗେ ଜିଜ୍ଞାସୁ ଭଙ୍ଗୀରେ ପ୍ରଶ୍ନ କଲେ ସେ, "May I know where from you have come, sir ?" ସଂକ୍ଷେପରେ ଉତ୍ତର ଦେଲି ମୁଁ, "from Cuttack" । ଏବେ ସଂଶୟର ବନ୍ଧ ଭାଙ୍ଗିଗଲା । ଉଭୟେ ମାତୃଭାଷା ଓଡ଼ିଆରେ ସମ୍ଭାଷଣ ଆରମ୍ଭ କରିଦେଲୁ । ସେ ଅଗନ୍ତୁକ ନିଜର ନାମ ଶ୍ରୀଧର ମହାପାତ୍ର ବୋଲି ପ୍ରକାଶ କରିଦେଇ ମୋର ନାମ ଜାଣିବାକୁ ଆଗ୍ରହ ପ୍ରକାଶ କଲେ । ମୁଁ ମୋ ନାଆଁଟି ଶୁଣାଇଦେବାମାତ୍ରେ ତାଙ୍କ ମୁଖମଣ୍ଡଳରେ ଭାବାନ୍ତରର ଛାୟା ଘନେଇଉଠିଲା ପରି ମତେ ଜଣାଗଲା । ସେ ସ୍ତମ୍ଭୀଭୂତ ହୋଇ ମୋର ଆପାଦମସ୍ତକ ସର୍ବାବୟବରେ ବାରମ୍ବାର ଦୃଷ୍ଟି ଚହଲାଇ ଜିଜ୍ଞାସା କଲେ, "ଆପଣ କ'ଣ 'ବଲ୍ଲିମଙ୍ଗଲ'ର

ଯଶସ୍ୱୀ ଲେଖକ ସେଇ କୃଷ୍ଣଚନ୍ଦ୍ର କି ?" ମୋର ଉତ୍ତର ହେଲା, "ହଁ, ମୁଁ ସେଇ ନଗଣ୍ୟ ଲେଖକ ।" ସେ ଆଉ ସମ୍ଭାଳି ନପାରି ପାଦରୁ ଉପାନହ ଖସାଇଦେଇ ସେଇ ରାଜଦଣ୍ଡରେ ମତେ ସାଷ୍ଟାଙ୍ଗ ପ୍ରଣିପାତ ହେଲେ । ମୁଁ ଅଭିଭୂତ ହୃଦୟରେ ତାଙ୍କୁ ଭୂତଳରୁ ଟେକି-ଧରିଲି । ସେ ମୋର ସନ୍ଦେହ-ଗଣ୍ଠି ଫିଟାଇଦେବାକୁ ଯାଇ କହିଲେ, "ମୁଁ ପ୍ରତିଦିନ ଷ୍ଟୁଡେଣ୍ଟସ୍ ଷ୍ଟୋର୍‌କୁ ଠିକ୍ ଏହି ସମୟରେ ଯାଏଁ କେବଳ ଆପଣଙ୍କ 'ବିଲ୍ୱମଙ୍ଗଳ' ପଢ଼ିବାପାଇଁ । ତହିଁରେ ଉଚ୍ଚକୋଟିର ଭାବ ଓ ଉନ୍ନତ ମାର୍ଜିତ ଭାଷାର ଅପୂର୍ବ ସମନ୍ୱୟ ଘଟିଥିବାର ଦେଖି ମୁଁ ଭାବିଥିଲି, ତା'ର ଲେଖକ ନିଶ୍ଚୟ ଜଣେ ପୋଖତ ବର୍ଷୀୟାନ୍ ସାହିତ୍ୟିକ ହୋଇଥିବେ । ତେଣୁ ସେହି ଦୃଷ୍ଟିରେ ଆପଣଙ୍କୁ ମୁଁ ଭକ୍ତିଭରା ସମ୍ମାନ ପ୍ରଦର୍ଶନ କରି ନିଜକୁ କୃତାର୍ଥ ମଣୁଛି ।"

ସେହିଠାରୁ ତାଙ୍କର ଷ୍ଟୁଡେଣ୍ଟସ୍ ଷ୍ଟୋର୍ ଯାତ୍ରା ସ୍ଥଗିତ ହେଲା । ମୋର ଜନ୍ମପତ୍ର ଲିଙ୍ଗରାଜ ପାଣିଗ୍ରାହୀଙ୍କ ବାରଣ୍ଡାରେ ରହିଛି ବୋଲି ଜାଣିବାରୁ ଚଟ୍‌କରି ସେ ଟାଙ୍ଗାଟିଏ ଡାକିଲେ । ଦୁହେଁଯାକ ତହିଁରେ ବସି ଲିଙ୍ଗରାଜ ବାବୁଙ୍କ ଗୃହକୁ ଗଲୁଁ । ମୋ ସାମାନପତ୍ର ଟାଙ୍ଗାକୁ ଉଠାଇନିଆଗଲା । ଶ୍ରୀଧରଙ୍କ ନିର୍ଦ୍ଦେଶରେ ଟାଙ୍ଗା ଛୁଟିଲା ବୃନ୍ଦାବନ ମଠର ପକ୍‌କା ଫାଟକଦ୍ୱାରକୁ । ସେହି ଫାଟକ ଶୀର୍ଷସ୍ଥ ଅପ୍ରସର ଚନ୍ଦ୍ରଶାଳାଟି ଗୋଟିଏ ଅତି କ୍ଷୁଦ୍ର ଟୁଙ୍ଗୀ; ତାହାର ମଧ୍ୟରେ ସେ ଏକାକୀ ଅବସ୍ଥାନ କରୁଥିଲେ । ସେହି ଟୁଙ୍ଗୀରେ ତାଙ୍କ ସହିତ ମହା-ଆନନ୍ଦରେ ପରମ ଆରାମରେ ତିନି ରାତି ତିନି ଦିନ ମତେ କଟାଇବାକୁ ହେଲା । 'ରାଜାନୁଗତୋ ଧର୍ମଃ' । ରାଜଦଣ୍ଡକୁ ଶାସ୍ତ୍ରୀୟ ବ୍ୟାଖ୍ୟାରେ ଧର୍ମଦଣ୍ଡ ବୋଲି ଆଖ୍ୟା ଦିଆଯାଇଛି । ଧର୍ମଦଣ୍ଡରେ ଯେଉଁ ଦୈବୀ ପରିଚୟର ସୂତ୍ରପାତ ହୁଏ, ତାହା ନିବିଡ଼ ବନ୍ଧୁତାରେ ପରିଣତ ହୋଇ ଆମରଣ ସ୍ଥାୟୀ ରହେ—ଏହା ଧର୍ମପ୍ରାଣ ହିନ୍ଦୁ ସମ୍ପ୍ରଦାୟର ଚିରନ୍ତନ ବିଶ୍ୱାସ । ଏହି ଚିରାଚରିତ ବିଶ୍ୱାସର ସତ୍ୟତା ଆମ ଦୁହିଙ୍କ ଜୀବନରେ ଅକ୍ଷରେ ଅକ୍ଷରେ ପ୍ରତିଫଳିତ ହୋଇଛି—୧୯୩୨ରେ ପ୍ରତିଷ୍ଠିତ ଆମ ବନ୍ଧୁତା ଶତ ଝଡ଼ଝଞ୍ଜା ଦୁଃଖଦୁର୍ବିପାକର ଧକ୍‌କାକୁ ପ୍ରତିହତ କରି ଦୀର୍ଘ ପଞ୍ଚାବନ ବର୍ଷ ପରେ ଏବେ (୧୯୮୭) ବି ଜୀବନ୍ତ ଅମ୍ଳାନ ରହିଛି ।

'ବିଲ୍ୱମଙ୍ଗଳ' ହିଁ ଥିଲା ଆମ ଦୁହିଙ୍କ ହୃଦୟରେ ବନ୍ଧୁପ୍ରୀତି-ଉଦ୍ରେକର ଉଦ୍‌ଗାତା । ସେହି ପୁସ୍ତକଟିରୁ ସେ ଯେ ଉଚ୍ଚାଙ୍ଗ ସାହିତ୍ୟର ରସାସ୍ୱାଦ ଆହରଣ କରିପାରିଲେ, ଏହା ତାଙ୍କ ଅନ୍ତର୍ନିହିତ ସାରସ୍ୱତ ଶକ୍ତିର ସ୍ପଷ୍ଟ ସୂଚକ ବୋଲି ମୁଁ ମନେ ମନେ କଳିନେଲି । କ୍ଷୁଦ୍ର ବଟଫଳଟିର ଗର୍ଭରେ ସହସ୍ର ମହାମହୀରୁହର ଭ୍ରୂଣ ସୂକ୍ଷ୍ମ ସତ୍ତ୍ୱରେ ଅବସ୍ଥାନ କରିଥାଏ, ବେଳ ଆସିଲେ ସେଗୁଡ଼ିକ ଆକାରବନ୍ତ ହୁଏ । ବନ୍ଧୁ ଶ୍ରୀଧରଙ୍କ ଅନ୍ତରରେ ଯେଉଁ ବାଙ୍ମୟ ଶକ୍ତି କୁଡ୍‌ମଳ ଅବସ୍ଥାରେ ମୁଦ୍ରିତ ଥିଲା, ତାହା ଯେ ଯଥାସମୟରେ ବିକଶିତ ହୋଇ ସୌରଭ ବିତରଣ କରିବ, ଏହି ଧ୍ରୁବ ଧାରଣାରେ ଉଦ୍‌ବୁଦ୍ଧ ହୋଇଥିଲି ମୁଁ ସେତେବେଳେ । ସତକୁ ସତ ଅଳ୍ପକାଳ ପରେ ବନ୍ଧୁ ଶ୍ରୀଧର ମହାପାତ୍ର ଲେଖକମଣ୍ଡଳରେ

ଅବତୀର୍ଣ୍ଣ ହୋଇଥିଲେ ସାରସ୍ୱତ ସ୍ରଷ୍ଟାଙ୍କର ଜିଜ୍ଞାସୀରୂପେ । ଗୋଟିକ ପରେ ଗୋଟିଏ କୃତି ରୂପ ପରିଗ୍ରହ କରି ପ୍ରମାଣିତ କରିଦେଲା ତାଙ୍କ ଦୃଢ଼ ନିର୍ଭିକ ହୃଦର ପରିକାଷ୍ଠା । ଏପର୍ଯ୍ୟନ୍ତ (୧୯୮୭) ପ୍ରକାଶିତ ତାଙ୍କ କୃତିସମୂହର ନାମାବଳୀ ହେଲା 'ଟିକ୍ରା ଗୋଲପର ରକ୍ତସ୍ରୋତ' (ଐତିହାସିକ ଉପନ୍ୟାସ), 'ଦଣ୍ଡିଙ୍କ ଦଶକୁମାର ଚରିତ' (ଅନୁଲେଖ), 'ଶ୍ଳୋକମାଳା' (୧ମ, ୨ୟ ଓ ୩ୟ ଭାଗ), 'ସୂତ୍ରମାଳା' (୧ମ ଭାଗ), 'ନୀଳାଦ୍ରିମହୋଦୟ' (ମୂଳ ନାଗରୀ ଲିପି—ଓଡ଼ିଆରେ ସଂକ୍ଷିପ୍ତ ମର୍ମାର୍ଥ ସହ), ଓଡ଼ିଆ ପ୍ରକାଶନ ଓ ପ୍ରସାରଣର ଇତିହାସ' (୧ମ ଭାଗ) ।

ଆତ୍ମୋନ୍ନତିପରିପୂର୍ଣ୍ଣ ଉଚ୍ଚାଭିଳାଷୀ ଏହି ଦୂରଦର୍ଶୀ କର୍ମବୀରଙ୍କର ଜନ୍ମ ୧୯୦୯ ଅଗଷ୍ଟରେ ଏବଂ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟରୁ S.S.L.C. (ସେକେଣ୍ଡାରି ସ୍କୁଲ୍ ଲିଭିଙ୍ଗ୍ ସାର୍ଟିଫିକେଟ୍) ପରୀକ୍ଷାରେ ପ୍ରଥମଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ ୧୯୩୦ରେ । ଶିକ୍ଷାଜୀବନର ସମାପ୍ତି ପରଠାରୁ ୧୯୩୧ ଶେଷ ପର୍ଯ୍ୟନ୍ତ ଅସ୍ଥାୟୀଭାବରେ 'ଆଶା' ପ୍ରେସ୍‌ରେ ତିନି ମାସ ଓ ଜନଗଣନା (Census) ବିଭାଗରେ ଚୌଦ ମାସ ସ୍ୱଳ୍ପ ବେତନରେ କାର୍ଯ୍ୟ କଲା ପରେ ସେ ମାସିକ କୋଡ଼ିଏ ଟଙ୍କା ଦରମାରେ କବିରାଜ ବୈଦ୍ୟରାଜ ଶ୍ୟାମସୁନ୍ଦର ରଥ ଓ ପଟ୍ଟନାୟକଙ୍କ 'ଗଞ୍ଜାମ ଆୟୁର୍ବେଦିକ ଫାର୍ମାସି' ପ୍ରତିଷ୍ଠାନରେ ଚାକିରି କଲେ ୧୯୩୨ରେ । ମୂଳରୁ ତାଙ୍କର ମାନସିକ ପ୍ରବଣତା ଓ ସ୍ୱାଭାବିକ ଅନୁରକ୍ତି ଓଡ଼ିଆ ସାହିତ୍ୟ ଦିଗକୁ ରହିଆସିଥିବାରୁ ସେ 'ଫାର୍ମାସି' ଛାଡ଼ିଦେଇ ମାସିକ ବାଇଶି ଟଙ୍କା ଆଠ ଅଣା ବେତନରେ 'ଷ୍ଟୁଡେଣ୍ଟସ୍ ଷ୍ଟୋର୍' ପ୍ରକାଶନ ସଂସ୍ଥାରେ ଯୋଗଦେଲେ ୧୯୩୩ ଡିସେମ୍ବର ୧୯ତାରିଖରେ । ନିଜର ନିଷ୍ଠାପର ଉଦ୍ୟୋଗିତା ଓ କର୍ମଦକ୍ଷତା ବଳରେ ୧୯୩୫ରେ ଆସିଷ୍ଟାଣ୍ଟ୍ ମେନେଜର ପାହ୍ୟାକୁ ଉନ୍ନୀତ ହେଲେ; ତାଙ୍କର ମାସିକ ବେତନ ହେଲା ଏକଶତ ଟଙ୍କା, ତା'ଛଡ଼ା ବାର୍ଷିକ ନେଟ୍ ଲାଭର ଶତକଡ଼ା ୧୨ ଅଂଶ ଭତ୍ତା । ୧୯୫୦ରେ ଷ୍ଟୁଡେଣ୍ଟସ୍ ଷ୍ଟୋର୍ ଭାଙ୍ଗିଯାଇ 'ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର୍' ନାମ ଧାରଣ କଲା ଏବଂ ତା'ର ମୁଖ୍ୟ ଶାଖା (ପ୍ରଧାନ ବ୍ୟବସାୟ କେନ୍ଦ୍ର) କଟକରେ ପ୍ରତିଷ୍ଠିତ ହେଲା, ଯାହାର ମାନେଜିଂ ଡାଇରେକ୍ଟର୍ ହେଲେ ଶ୍ରୀଧର ମହାପାତ୍ର । ତାଙ୍କର ବିଚକ୍ଷଣ ପରିଚାଳନାରେ ଏହି ନୂତନ ଯୌଥ ସଂସ୍ଥାଟି ଯଥେଷ୍ଟ ଅର୍ଥ ଓ ସୁନାମ ଅର୍ଜନ କଲେହେଁ ଅଂଶୀଦାରବିଶେଷଙ୍କ ବିଭେଦ ସୃଷ୍ଟି ଯୋଗୁଁ ୧୯୫୫ରେ ବିଲୟପ୍ରାପ୍ତ ହେଲା । ତେଣୁ ଶ୍ରୀଧରବାବୁ ସେହି ୧୯୫୫ରେ 'ଗ୍ରନ୍ଥମନ୍ଦିର' ନାମରେ ନିଜର ସ୍ୱତନ୍ତ୍ର ପୁସ୍ତକ ବ୍ୟବସାୟ ପୀଠ ସଂସ୍ଥାପିତ କଲେ ବିନୋଦବିହାରୀ ମାର୍ଗରେ ଏବଂ ତା'ର ଅଳ୍ପ-କାଳ ପରେ 'ଗ୍ରନ୍ଥପ୍ରକାଶିନୀ' ନାମରେ ଏକ ପୂର୍ଣ୍ଣାଙ୍ଗ ମୁଦ୍ରଣାଳୟ ପ୍ରତିଷ୍ଠିତ କଲେ ସୂତାହାଟରେ । ସ୍ୱକୀୟ ସାହସିକ ଉଦ୍ୟମ ଓ ବ୍ୟାବସାୟିକ ପାରଙ୍ଗମତା ସହଯୋଗେ ଚତୁରକ୍ଷ ଶ୍ରୀଧର ମହାପାତ୍ର ବର୍ତ୍ତମାନ ଓଡ଼ିଶାର ପ୍ରକାଶନ ଓ ମୁଦ୍ରଣ କ୍ଷେତ୍ରରେ ଶ୍ରେଷ୍ଠ ଶିଳ୍ପପତିରୂପେ ସୁପରିଚିତ ଓ ସମ୍ମାନିତ ।

ବୃନ୍ଦାବନ ମଠରୁ ଯେଉଁ ମଠବେଗ ବାହାରେ, ତନ୍ମଧ୍ୟର ଏକ ନିର୍ଦ୍ଦିଷ୍ଟ ଅଂଶ ବାହାର

ଲୋକଙ୍କପାଇଁ ଉଦ୍ଦିଷ୍ଟ ଥାଏ । ଗୋଟିଏ ମିଲ୍ ଆକାରରେ ସେକାଳର ପାଞ୍ଚ ପଇସା ମୂଲ୍ୟରେ ଯେଉଁ ମଠଭୋଗ ମିଳେ, ତହିଁରେ ଥାଏ ଦ୍ରବ୍ୟ ସବୁ ଅନ୍ନ, ବଡ଼ିଲଆ ଡାଲି, ତରକାରି, ଖଟା—ସବୁ ପର୍ଯ୍ୟାପ୍ତ ପରିମାଣରେ । ଉଦରମ୍ଭରି ହେଲେ ତାହା ଜଣକର ପୂର୍ଣ୍ଣଗ୍ରାସ ଆହାର; କିନ୍ତୁ ସାଧାରଣ ଆହାରୀ ହେଲେ ଦୁଇଜଣଙ୍କପାଇଁ ଯଥେଷ୍ଟ । ତେଣୁ ଗୋଟିଏ ମିଲ୍‌ର ମଠଭୋଗ ଆମ ଦୁଇଜଣଙ୍କର ପେଟପୂରି ପ୍ରାତିଭୋଜନର କାମ ଦେଇ-ଥିଲା । ସ୍ୱାଧୀନ ଭାରତରେ ଏବେ ତ କାଳ ହୋଇଛି ଅକାଳ—ଦରଦାମ୍ ହୋଇଯାଇଛି ଆକାଶଛୁଆଁ ! ସେ-ଦିନର ପାଞ୍ଚ ପଇସାର ଯେତିକ ମଠଭୋଗ, ଏ-ଦିନେ ତାର ଦାମ୍ ହୋଟେଲ୍ ଦରରେ ସାତ ଆଠ ଟଙ୍କାରୁ କେବେ କମ୍ ହେବ ନାହିଁ ।

ପରଦିନ ଉତ୍କଳ ସମ୍ମିଳନୀ ବିଶେଷ ଅଧିବେଶନ ଆରମ୍ଭ ହେବାର ଅବ୍ୟବହିତ ପୂର୍ବରୁ ମୁଁ ଓ ଶ୍ରୀଧରବାବୁ ସାଥୀ ହୋଇ 'ଜୁବିଲି ହଲ୍'ରେ ଉପସ୍ଥିତ ହେଲୁଁ । ସେତେବେଳସୁଁ ବିରାଟ ହଲ୍ (କକ୍ଷ) ଓ ତତ୍ସଂଲଗ୍ନ ତିନି ପ୍ରଶସ୍ତ ବାରଣ୍ଡା ଲୋକାରଣ୍ୟ ହୋଇସାରିଥାଏ । ପୁଣି ଲୁହାକୁ ଲୁହା ଜନସ୍ରୋତ ପ୍ରବଳ ବେଗରେ ବାହାରୁ ମାଡ଼ିଆସୁଥାଏ । ଉଚ୍ଚ ମଞ୍ଚରେ ସଜ୍ଜିତ ଥିବା ଅଧିବେଶନର ଅଧ୍ୟକ୍ଷ ଓ 'ସମ୍ମିଳନୀ'ର ଅଧିକର୍ତ୍ତା ପ୍ରମୁଖଙ୍କ ଭଦ୍ରାସନର ତିନି ପାର୍ଶ୍ୱସ୍ଥ ମଞ୍ଚପୃଷ୍ଠ କେବଳ ସାମ୍ବାଦିକମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ହୋଇଥିଲା । ବରେଣ୍ୟ ଅଧ୍ୟକ୍ଷଙ୍କ ଡାହାଣ ପଟ ମଞ୍ଚପୃଷ୍ଠରେ ଉପବିଷ୍ଟ ପଣ୍ଡିତ ଗୋଦାବରୀଶ ଓ ମହାପାତ୍ର ଗୋଦାବରୀଶଙ୍କ ନିକଟରେ ମୁଁ ସ୍ଥାନଟିଏ ଯୋଗାଡ଼ କରିନେଲି । ସର୍ବାଞ୍ଚଳାଗତ ସାମ୍ବାଦିକଙ୍କ ସମାବେଶରେ ମଞ୍ଚପୃଷ୍ଠର ନିର୍ଦ୍ଦିଷ୍ଟ ଅଂଶ ପୂର୍ଣ୍ଣ ହୋଇଯାଇଥାଏ । ଅଧିବେଶନର କାର୍ଯ୍ୟ ଯେତେ ଜମୁଥାଏ, ଲୋକସଂଖ୍ୟା କ୍ରମାଗତ ସେତେ ବଢ଼ୁଥାଏ । ସମୁଦ୍ରକୂଅର ବେଳା ଲଙ୍ଘି କୂଳ ଉଛୁଳାଇଦେଲାପରି ଜନଜୁଆର ଜୁବିଲି ହଲ୍‌ପରିସର ଟପି ସଦର ରାସ୍ତାରେ ସାନ୍ଦ୍ରୀଭୂତ ହୋଇଗଲା । ହଲ୍ ବାହାରେ ଓ ରାସ୍ତାର ବିଭିନ୍ନ ସ୍ଥାନରେ ଜମିଥିବା ଲୋକେ ସଭାରେ କ'ଣ ସବୁ ଆଲୋଚନା ହେଉଛି କିଛି ଶୁଣିପାରିଲେ ନାହିଁ କି ଜାଣି-ପାରିଲେ ନାହିଁ । ସେମାନଙ୍କ ଅସହ୍ୟ ଅଧୀର ମାନସରେ କେବଳ ଉଦ୍‌ବେଳନ ଓ ଉଦ୍‌ବେଜନ । କାର୍ଯ୍ୟକ୍ରମର ଗୁରୁତ୍ୱ ଓ ଅଜସ୍ର ଦର୍ଶକ ସମାଗମର ମହତ୍ତ୍ୱ ଦୃଷ୍ଟିରୁ ଏହି ବିଶେଷ ଅଧିବେଶନଟିକୁ ମହାଧିବେଶନ ଆଖ୍ୟା ଦିଆଯାଇପାରେ ।

ଏହି ମହାର୍ଦ୍ଧ ଅଧିବେଶନ କିଛି ସମୟ ସମାଯୋଚିତ ଚାଲିଲା ପରେ ଦେଖାଗଲା, କ୍ରମ-ବର୍ଦ୍ଧମାନ ଜନସଂହତି ହଠାତ୍ କ୍ରମହ୍ରସମାନ ହୋଇଆସୁଛି । ପୁଣି କିଛି ସମୟ ପରେ ଦେଖାଗଲା, ହଲ୍‌ର ବାରଣ୍ଡାମାନଙ୍କରେ ଓ ପାର୍ଶ୍ୱବର୍ତ୍ତୀ ରାସ୍ତାରେ ଠାଏକୁ ଠାଏ ଯେଉଁ ଅଗଣିତ ବ୍ୟକ୍ତି ପୁଞ୍ଜୀଭୂତ ହୋଇଥିଲେ, ସେମାନଙ୍କର କାହାରି ଦେଖା ନାହିଁ । ଅକସ୍ମାତ୍ ଏଭଳି ବିପର୍ଯ୍ୟୟକର ଅସ୍ୱାଭାବିକ ଅବସ୍ଥା କାହିଁକି ଘଟିଲା, ଉଦ୍ୟୋକ୍ତାମାନେ କିଛି ଠଉରାଇପାରିଲେ ନାହିଁ ।

ସଭାରେ ଗୃହୀଏ ପ୍ରସ୍ତାବ ଅଗତ ଓ ଅଲୋଚିତ ହେବାପାଇଁ ତାଲିକା ପ୍ରସ୍ତୁତ କରା-ହୋଇଥିଲା । ସଭାଧ୍ୟକ୍ଷ ଦେବାନବାହାଦୁର ଲକ୍ଷ୍ମୀଧର ମହାନ୍ତି ଉକ୍ତ ତାଲିକାନୁଯାୟୀ ଜଣ ପରେ ଜଣେ ପ୍ରତି ପ୍ରସ୍ତାବକଙ୍କୁ ଆହ୍ୱାନ କରୁଥିଲେ ମଞ୍ଚ ଉପରକୁ ଆସି ଆନୁଷ୍ଠାନିକଭାବରେ ତାଙ୍କ ପ୍ରସ୍ତାବ ଆଗତ କରିବାପାଇଁ । ଆଲୋଚନାରେ ଯେଉଁ ପ୍ରସ୍ତାବ ବହୁମତର ପୋଷକତା ପାଏ, ତାହା ଗୃହୀତ ହେଲା ବୋଲି ସଭାରେ ଘୋଷିତ ହୁଏ । ଯେତେବେଳେ ପ୍ରସ୍ତାବକ ଲକ୍ଷ୍ମୀନାରାୟଣ ସାହୁଙ୍କ ପାଳି ପଡ଼ିଲା, ଅଧ୍ୟକ୍ଷ ତାଙ୍କ ନାମ ଧରି ଆହ୍ୱାନ କଲେ; ମାତ୍ର ସଭାକକ୍ଷରେ ସାହୁ ମହାଶୟଙ୍କର ସ୍ୱରୂପ ସେତେବେଳେ ଦେଖିବାକୁ ମିଳିଲା ନାହିଁ । ତାଙ୍କୁ ଖୋଜିବାକୁ ଲୋକ ବରଗାଗଲା । ଲକ୍ଷ୍ମୀନାରାୟଣବାବୁ ସଭାସ୍ଥଳକୁ ଫେରିଆସିବାପର୍ଯ୍ୟନ୍ତ ତାଙ୍କ ପ୍ରସ୍ତାବକୁ ପଛେଇଦେଇ ଅଧ୍ୟକ୍ଷ ମହୋଦୟ ତାଲିକାସ୍ଥ ପରବର୍ତ୍ତୀ ପ୍ରସ୍ତାବକଙ୍କୁ ଅହ୍ୱାନ କଲେ । ଖୋଜିବାକୁ ଯାଇଥିବା ଲୋକ ବାହାରେ ସାହୁ ମହାଶୟଙ୍କୁ ଠାବ କଲେ ଏବଂ ଶୀଘ୍ର ସଭାକୁ ଫେରି ନିଜ ପ୍ରସ୍ତାବ ଆଗତ କରିବାକୁ ଅଧ୍ୟକ୍ଷଙ୍କ ନିର୍ଦ୍ଦେଶ ତାଙ୍କୁ ଜଣାକରାଇଦେଲେ । ସନ୍ଧାନୀ ବ୍ୟକ୍ତି ଜଣକ ବାହୁଡ଼ିଆସି ସାହୁଙ୍କ ଅନୁପସ୍ଥିତି ସନ୍ଦର୍ଭରେ ଅଧ୍ୟକ୍ଷଙ୍କୁ ପ୍ରତ୍ୟକ୍ଷ ବିବରଣୀ ପ୍ରଦାନ କଲେ । ସେଥିରୁ ଉଦ୍‌ଘାଟିତ ହେଲା ଯେ, ଅସୁମାରି ଦର୍ଶକ ହଲ୍‌ ବାହାରେ ଠେଲାପେଲା ଅବସ୍ଥାରେ ଠିଆହବା ଫଳରେ କିଛି ଶୁଣି ନପାରି କେବଳ ହଲ୍ଲା କରୁଥିବାରୁ ଲକ୍ଷ୍ମୀନାରାୟଣବାବୁ ହଲ୍‌ ଛାଡ଼ି ନିକଟବର୍ତ୍ତୀ ପଡ଼ିଆକୁ ଚାଲିଗଲେ ଏବଂ ଅଳ୍ପ କେତୋଟି ଲୋକଙ୍କୁ ଠୁଳେଇ ଏକ ସଭାର ଆୟୋଜନ କଲେ । ସେହି କେତେକ ଲୋକ ବସ୍ତିରୁ ଗୋଟିଏ ଲମ୍ବାଚଉଡ଼ା ବଡ଼ ଟେବୁଲ ଅଳ୍ପ ସମୟ ପାଇଁ ମାଗିଆଣି ପଡ଼ିଆ ମଝିରେ ଥୋଇଦେଲେ । ଦୀର୍ଘକାୟ ଲକ୍ଷ୍ମୀନାରାୟଣ ସାହୁ ତା' ଉପରେ ବାରଠାଣିରେ ଦଣ୍ଡାୟମାନ ହୋଇ ହନ୍ତସନ୍ତ ହୃତାଶ ଦର୍ଶକମାନଙ୍କ ଉଦ୍ଦେଶ୍ୟରେ ଆହ୍ୱାନ ଦେଲେ ଦୂରପ୍ରସାରୀ ଉଚ୍ଚଗଳାରେ, "ଭାଇମାନେ ! ସଭାସ୍ଥଳରୁ ଗହଳି ଭାଙ୍ଗି ନିଶ୍ଚିନ୍ତରେ ଏ ପଡ଼ିଆକୁ ଚାଲିଆସ । ସଭାରେ ଏପର୍ଯ୍ୟନ୍ତ ଯାହା ଯାହା ଆଲୋଚନା ହୋଇଯାଇଛି, ସେସବୁକୁ ମୁଁ ଗୋଟି ଗୋଟି କରି ତୁମମାନଙ୍କ ଆଗରେ ବଖାଣ କରିବି, ଆଉ ଯାହାସବୁ ସ୍ୱାପରେ ଆଲୋଚିତ ହେବ ତା' ସମ୍ବନ୍ଧରେ ମଧ୍ୟ ସରଳଭାବରେ ବୁଝାଇଦେବି । ତୁମେ-ମାନେ ଧୀରସ୍ଥିର ଭାବରେ ଏଠି ବସି ସବୁ ବିଷୟ ଶ୍ରବଣ କର ।"

ଏ ଆହ୍ୱାନ ଶୁଣିବାଇଦେ ପରି ଏ-କାନୁଁ ସେ-କାନ ହୋଇ ଶେଷରେ ପହଞ୍ଚିଲା ହଲ୍‌ ବାହାରେ ଥିବା ଦଳ ଦଳ ବ୍ୟତିବ୍ୟସ୍ତ ଦର୍ଶକଙ୍କ କର୍ଣ୍ଣକୁହରରେ । ସେମାନେ ସମସ୍ତେ ସେଠା ଛାଡ଼ି ପଡ଼ିଆରେ ଆସି ଏକାଠିହୋଇପଡ଼ିଲେ ଏବଂ ଲକ୍ଷ୍ମୀନାରାୟଣ ବାବୁଙ୍କ ନିର୍ଦ୍ଦେଶାନୁଯାୟୀ ସମ୍ପୂର୍ଣ୍ଣ ନୀରବତା ରକ୍ଷା କରି ଟେବୁଲ ସାମନା ଭୂଇଁରେ ଅର୍ଦ୍ଧମଣ୍ଡଳା-କାରରେ ବସିଗଲେ । ଏବେ ସେମାନେ ବକ୍ତା ସାହୁ ମହୋଦୟଙ୍କ ମୁଖରୁ ସଭାର ସକଳ ବିବରଣୀ ଶୁଣି ପରମ ଆନନ୍ଦ ଉପଭୋଗ କରୁଛନ୍ତି । ବେଳୁବେଳ ସେ-ସଭାରେ ଶ୍ରୋତୃସଂଖ୍ୟା ମଧ୍ୟ ବୃଦ୍ଧି ପାଇବାରେ ଲାଗିଛି ।

ପଣ୍ଡିତ ଗୋଦାବରୀଶ ମିଶ୍ର ସ୍ୱଭାବତଃ ଉଲ୍ଲାସୀ, ସ୍ଫୁଟବାକ୍, ମଧୁରଅଧର, ଜନପ୍ରିୟ । ବନ୍ଧୁମେଳରେ ତାଙ୍କ ନିପୁଣହାସ୍ୟରସାଶ୍ରିତ ନିର୍ଦ୍ଵେଷ ନିର୍ଦ୍ଦୋଷ ଟିଣ୍ଡିବଚନ ଥିଲା ପରମ ଉପଭୋଗ୍ୟ । ଯେଥିରେ ନଥିଲା ଆକ୍ଷେପ ବା ଅସହିଷ୍ଣୁତାର ଲେଶମାତ୍ର ସ୍ପର୍ଶ । ଲକ୍ଷ୍ମୀନାରାୟଣ ବାବୁଙ୍କ ଉପରୋକ୍ତ ବିଚକ୍ଷଣ ଭୂମିକାର ବିବରଣୀ ତାଙ୍କ କାନରେ ପଡ଼ିଯାନ୍ତେ ସେ ସ୍ୱୀୟସ୍ୱଭାବସୁଲଭ ଆମୋଦ-ପ୍ରସାଦକ ମଞ୍ଜୁଳ ଭଙ୍ଗୀରେ ସାଥୀ ସାମ୍ବାଦିକ-ମାନଙ୍କ ବୈଠକରେ ଅନୁଚ୍ଚସ୍ୱରରେ କହିଉଠିଲେ, "ଥାର୍ଡ଼ କ୍ଲାସ୍ ଓଡ଼ିଆ ଏମ୍. ଏ. କି ହୋଇଥିଲେ କି ଏଡ଼େ ଉଚ୍ଚର ବୁଦ୍ଧି ମଗଜରୁ ବାହାରିଥାନ୍ତା !" ଏଥିରେ ଆମେମାନେ ଆମୋଦିତ ହେଲୁ ଯେତିକି, ତାଙ୍କ ମୃଦୁମଧୁରମ ପ୍ରକାଶନ ଭଙ୍ଗୀମାରେ ମୁଗ୍ଧ ହେଲୁ ସେତିକି । ତେଣେ ପଢ଼ିଆର ମୁକ୍ତାକାଶତଳ ସମାବେଶରେ ସଂକ୍ଷିପ୍ତ କାର୍ଯ୍ୟକ୍ରମ ଉଦ୍‌ଯାପନ କରି ଲକ୍ଷ୍ମୀନାରାୟଣ ବାବୁ ସମ୍ମିଳନୀ ହଲ୍‌କୁ ଫେରିଲେ । ସଭାଧ୍ୟକ୍ଷଙ୍କ ଆହ୍ୱାନକ୍ରମେ ନିଜର ପ୍ରସ୍ତାବ ପେସ୍‌କରି ତା'ର ଉପଯୋଗିତା ଓ ଆବଶ୍ୟକତା ସମ୍ବନ୍ଧରେ କ୍ଷୁଦ୍ର ବିଶ୍ଳେଷଣଟିଏ ଦେଲେ । ଇତି ମଧ୍ୟରେ ପଣ୍ଡିତ ଗୋଦାବରୀଶଙ୍କ ମୁଖୋକ୍ତିଟି କୌଣସି ସୂତ୍ରରୁ ତାଙ୍କ କର୍ଣ୍ଣ ପଥକୁ ଆସିଯାଇଥିଲା । ଖୋଲାଚିତ୍ତ ସ୍ପଷ୍ଟବାଦୀ ଲକ୍ଷ୍ମୀନାରାୟଣବାବୁ ମାନସିକ ଆଘାତ-ପ୍ରାପ୍ତି ଯୋଗୁଁ ଭିତରେ ଭିତରେ ଉଷ୍ମା ପ୍ରଣୋଦିତ ହୋଇ ଗୋଦାବରୀଶବାବୁଙ୍କ ପାଖକୁ ଆସି କହିଲେ, "ମୁଁ ଏଠି ନଥିଲା ବେଳେ ଆପଣ ମୋ ଥାର୍ଡ଼କ୍ଲାସ ଓଡ଼ିଆ ଏମ୍. ଏ. ଡିଗ୍ରୀକୁ ଉପହାସ କରି ମୋ ପ୍ରତି ଛଳୋକ୍ତି-ବାଣ ପେସିଛନ୍ତି ବୋଲି ଜାଣିବାକୁ ପାଇଲି । ଏ ସମ୍ପର୍କରେ ମୋର ଏତିକି କହିବାର କଥା ଯେ, ଆପଣ ଉପାଧ୍ୟୁତ୍ତର ଶ୍ରେଣୀର ନିୟମିତ ଛାତ୍ରରୂପେ ଦୁଇବର୍ଷ ଅଣ୍ଟା ପିଟି ଲଗେଇ ରୀତିମତ ଅଧ୍ୟୟନ କରି ସୁଦ୍ଧା 'ଅର୍ଥନୀତି'ରେ ସେକେଣ୍ଡ୍ କ୍ଲାସ୍ ପାଇପାରିଲେ ନାହିଁ । ଆପଣଙ୍କ ଥାର୍ଡ଼କ୍ଲାସ୍ ଏମ୍. ଏ. ଡିଗ୍ରୀଟା ବହୁ ଆୟାସଲବ୍ଧ; ମୁଁ କିନ୍ତୁ ଇଚ୍ଛା କଲେ ବିନା ଆୟାସରେ, ବିନା ଅଧ୍ୟୟନରେ ସବୁଠାରୁ କଡ଼ା ବିଷୟ ଇଂଲିସ୍‌ରେ ଥାର୍ଡ଼କ୍ଲାସ୍ ହାସଲ କରିପାରିବି । ଆପଣଙ୍କର ଆଜିର ଛଳୋକ୍ତି ମତେ ବିସ୍ତର ବଳ ଦେଇଛି । ଦିନ କେଇଟା ଭିତରେ ମୁଁ ଦେଖେଇଦେବି ଯେ, ଥାର୍ଡ଼କ୍ଲାସ୍‌ରେ ଇଂଲିଶ୍ ଏମ୍. ଏ. ପାସ୍ କରିବା ମଧ୍ୟ ଆଦୌ ବଡ଼କଥା ନୁହେଁ ।"

ଉତ୍କଳ ସମ୍ମିଳନୀର ବିଶେଷ ଅଧିବେଶନ ସଫଳତାର ସହିତ ପରିସମାପ୍ତ ହେଲା । ଆଗନ୍ତୁକମାନେ ଯେ ଯାହା ଗୃହାଭିମୁଖରେ ପ୍ରସ୍ଥାନ କଲେ । ସ୍ୱାଭିମାନୀ ଲକ୍ଷ୍ମୀନାରାୟଣ ବାବୁ କିନ୍ତୁ ଆମ ମେଳରେ କଟକ ଆସିଲେ ନାହିଁ—ସିଧା ଟିକଟ କାଟିଲେ ହାବଡ଼ା ଷ୍ଟେସନ୍‌କୁ । କଲିକତା ବିଶ୍ୱବିଦ୍ୟାଳୟର କୁଳପତି ସୁଧୀ ସତ୍ତମ ଭଦ୍ରୋତ୍ତମ ସୁନୀତିକୁମାର ଚାଟାର୍ଜିଙ୍କୁ ଭେଟି ଇଂଲିଶ୍ ଏମ୍. ଏ. ପରୀକ୍ଷା ଦେବାପାଇଁ ନିଜର ବଳବତୀ ଇଚ୍ଛାପ୍ରକାଶ କଲେ । ସେତେବେଳକୁ ପରୀକ୍ଷାରମ୍ଭ ପନ୍ଦର ଦିନ ବି ନଥାଏ । ପ୍ରାର୍ଥିପତ୍ର ଦାଖଲର ନିର୍ଦ୍ଦିଷ୍ଟସମୟ ବହୁ ପୂର୍ବରୁ ଖତମ ହୋଇସାରିଥାଏ । 'ସର୍ଭାଣ୍ଟ୍‌ସ୍ ଅଫ୍ ଇଣ୍ଡିଆ ସୋସାଇଟି'ର ମେମ୍ବର୍ ହିସାବରେ ଲକ୍ଷ୍ମୀନାରାୟଣବାବୁଙ୍କୁ ସୁନୀତିକୁମାର ବାବୁ ଖୁବ୍ ଖାତିର କରୁଥିଲେ,

ଉଚ୍ଚ ସମ୍ମାନ ଦେଉଥିଲେ । ତେଣୁ କୁଳପତି-ହସ୍ତରେ ଥିବା ସ୍ୱତନ୍ତ୍ର କ୍ଷମତା ବଳରେ ସେ ଲକ୍ଷ୍ମୀନାରାୟଣ ସାହୁଙ୍କୁ ପରୀକ୍ଷାର୍ଥୀ ଭାବରେ ଗ୍ରହଣ କରିନେଲେ । ପରୀକ୍ଷା ପୂର୍ବର ରହଣିକାଳ ମଧ୍ୟରେ କଲିକତା ନଗରରେ ଥିବା ଓଡ଼ିଆ ଶ୍ରମିକ ସଙ୍ଗଠନ ପକ୍ଷରୁ ଏକ ବିରାଟ ସମାବେଶରେ ତାଙ୍କୁ ଅଭିନନ୍ଦନ କରାଯାଇଥିଲା । ଇଂରାଜୀ ଏମ୍. ଏ. ପରୀକ୍ଷାର ଚିନ୍ତାରେ ଆଦୌ ଭାର ନ ହୋଇ ଲକ୍ଷ୍ମୀନାରାୟଣବାବୁ ସେହି ଶ୍ରମିକ ସଙ୍ଗଠନର ଅନୁରୋଧରେ ସେଠାକାର ଓଡ଼ିଆଣୀ ବେଶ୍ୟାମାନଙ୍କ ଦୁର୍ଦ୍ଦଶା ସ୍ୱଚକ୍ଷୁରେ ଦେଖିଥିଲେ ଏବଂ ସେମାନଙ୍କ ଦୁରବସ୍ଥାର ପ୍ରତିକାର ସମ୍ବନ୍ଧରେ ଖଣ୍ଡିଏ କ୍ଷୁଦ୍ର ପୁସ୍ତିକ ଲେଖି ସେତେ-ବେଳେ ପ୍ରକାଶ କରାଇଥିଲେ । ଦେଖୁଁ ଦେଖୁଁ ପରୀକ୍ଷାରମ୍ଭର ଦିନ ଉପସ୍ଥିତ ହୋଇଗଲା । ଓଡ଼ିଶାରୁ ଯାଇଥିବା ପରୀକ୍ଷାର୍ଥୀମାନଙ୍କ ସହିତ ଲକ୍ଷ୍ମୀନାରାୟଣବାବୁ ପରୀକ୍ଷା ଦେଲେ । ସବୁ ପତ୍ର (Paper)ର ଉତ୍ତର ତାଙ୍କର ପାସ୍ ମାର୍କ ରହିବା ଭଳି ସନ୍ତୋଷଜନକ ହୋଇଥିଲା ବୋଲି ସେ ଅନୁମାନ କରିଥିଲେ । ଯାହାହେଉ, ଲକ୍ଷ୍ମୀନାରାୟଣବାବୁ କୃତକାର୍ଯ୍ୟତାର ଆତ୍ମଆଶ୍ୱାସନା ସହ କଟକ ଫେରିଲେ । ପ୍ରାୟ ଦୁଇମାସ ପରେ ଫଳ ବାହାରିବାର କଥା । ଦିନେ ଟେଲିଗ୍ରାଫ୍ ପିଅନ୍ ' ଆଜ୍ଞା ଖୁସି ଖବର'' ହସ ହସ ମୁହଁରେ କହି ଟେଲିଗ୍ରାମ୍ କାଗଜଖଣ୍ଡି ତାଙ୍କ ହାତକୁ ବଢ଼ାଇଦେଲା । ସେଇ ତାରବାର୍ତ୍ତାଟି ଆସିଥାଏ ଖୋଦ୍ କୁଳପତି ସୁନୀତିକୁମାର ଚାଟାର୍ଜିଙ୍କଠାରୁ—'Congratulation for your success' ('ପରୀକ୍ଷାରେ ଆପଣଙ୍କର କୃତକାର୍ଯ୍ୟତାପାଇଁ ଅଭିନନ୍ଦନ ଜଣାଉଛୁ') । ଏମ୍. ଏ. ପରୀକ୍ଷାର ଫଳ ସର୍ବପ୍ରଥମେ ପ୍ରକାଶ ପାଇଥିଲା କଲିକତା ୟୁନିଭର୍ସିଟିର ନୋଟିସ ବୋର୍ଡ଼ରେ । ଠିକ୍ ସେହିଦିନ ବନ୍ଧୁଜନୋଚିତ ଆନନ୍ଦରେ ସୁନୀତି ବାବୁ ଏହି ବ୍ୟକ୍ତିଗତ ଟେଲିଗ୍ରାମ୍‌ଟି ପଠାଇଥିଲେ । ଲକ୍ଷ୍ମୀନାରାୟଣବାବୁ ଅଭିଳଷିତ ଥାର୍ଡ଼କ୍ଲାସ୍ ପାଇ ଇଂରାଜୀରେ ଏମ୍. ଏ. ଡିଗ୍ରୀର ଅଧିକାରୀ ହେଲେ । ଏହି ଅନନ୍ୟ-ସାଧାରଣ କୃତିତ୍ୱର ମୂଳ କାରଣଟି ଯେ ପଣ୍ଡିତ ଗୋଦାବରୀଶଙ୍କର ସେଦିନର ଉଦ୍ଦେଶ୍ୟ-ବିହୀନ ଅନାବିଳ ଲଘୁପରିହାସୋକ୍ତି, ଏଥିପାଇଁ ଲକ୍ଷ୍ମୀନାରାୟଣ ବାବୁ ତାଙ୍କୁ ମନେ ମନେ ଶତଶଃ ପ୍ରଶଂସିବାକୁ ଲାଗିଲେ ।

ପଣ୍ଡିତ ଗୋଦାବରୀଶ ମିଶ୍ର ସତ୍ୟବାଦୀର 'ପଞ୍ଚସଖା'ଙ୍କ ମଧ୍ୟରେ ସମ୍ଭବତଃ ସର୍ବକନିଷ୍ଠ (କାରଣ ତାଙ୍କର ଓ ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କର ଜନ୍ମ ଏକାବର୍ଷ ୧୮୮୬ ସାଲରେ । ପଣ୍ଡିତ କୃପାସିନ୍ଧୁ ଅକାଳରେ ଇହଲୀଳା ସାଙ୍ଗ କରିଥିଲେ ୧୯୨୬ରେ; ପଣ୍ଡିତ ଗୋଦାବରୀଶଙ୍କ ଦେହାନ୍ତ ୧୯୫୬ରେ ।) ଏହି ପଞ୍ଚପ୍ରତିଭାଙ୍କଦ୍ୱାରା ନୂତନ ଆଭିମୁଖ୍ୟ ଯେନ ଶିକ୍ଷା ଓ ସାହିତ୍ୟର ଯେଉଁ ଆଭ୍ୟୁଦୟିକ ବିକାଶ ଘଟିଥିଲା, ତାହା ଅଭୂତପୂର୍ବ ଓ ପଟାନ୍ତରହୀନ । ଏମାନଙ୍କ ମଧ୍ୟରେ ଶିକ୍ଷାବିତ୍ ଓ ସାହିତ୍ୟିକରୂପେ ସର୍ବାଧିକ ପ୍ରତିଷ୍ଠା ପଣ୍ଡିତ ଗୋଦାବରୀଶଙ୍କର । ତାଙ୍କ କାଟର ଗଣସାହିତ୍ୟକ ଓ ତାଙ୍କ କୋଟିର ଜନମାନସର କବି ଅଧୁନିକ ସାହିତ୍ୟ ମଞ୍ଚରେ ଦ୍ୱିତୀୟ କେହି ନାହାନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ ।

‘କୋଟି’ ଜନତାର ମାନସ-ଛବି ପ୍ରତିଫଳିତ ହୋଇଥିଲା ଦରଦୀ କବି ଗୋଦାବରୀଶଙ୍କ ‘କୋଟି’ ମାନସର ମୁକୁରରେ । ତାଙ୍କ ରଚିତ କବିତା ସମୂହର ସଙ୍କଳନ ତିନୋଟି— କଳିକା, କିଶଳୟ, ଆଲେଖିକା । ଏଥିମଧ୍ୟରୁ ‘ଆଲେଖିକା’ର ଖ୍ୟାତି ସର୍ବୋଚ୍ଚ । ଓଡ଼ିଶାର ଜନଜୀବନର ଆଲେଖ୍ୟ ବହନ କରିଥିବା ଗୁଡ଼ିଏ ଗାଥାକବିତା ‘ଆଲେଖିକା’ର ତନୁଶ୍ରୀ ମଣ୍ଡନ କରି ସଂକଳନଟିର ଆତ୍ମିକ ସୌନ୍ଦର୍ଯ୍ୟ ପ୍ରବର୍ଦ୍ଧିତ କରିଦେଇଛି । ଏଥିରେ ଅନ୍ତର୍ଗତ ‘କାଳିଜାଈ’ ଗାଥା କବିତାଟି କେବଳ ଲେଖିଥିଲେ ମଧ୍ୟ ପଣ୍ଡିତ ଗୋଦାବରୀଶ କାଳଜୟୀ ହୋଇଥାନ୍ତେ ଏବଂ ତାଙ୍କ କବିକୀର୍ତ୍ତି ଚିର ଅମ୍ଳାନ ରହିଥାନ୍ତା । ଏଥିର ଲୋକପ୍ରିୟତା, ଶାବ୍ଦିକ ଶାଦ୍ୱଲତା, ସମାଜଚିତ୍ର, ବର୍ଣ୍ଣନା ମାଧୁରୀ ଓ କାବ୍ୟଛଟାସମାବେଶ ଅପୂର୍ବ, ଅତୁଳନୀୟ, ଅନତିକ୍ରମ୍ୟ । ଗୁଣାତ୍ମକ ବିଚାରରେ ‘କାଳିଜାଈ’ ପଛକୁ ‘ପଦ୍ମାବତୀ’ର ସ୍ଥାନ । ‘ଆଲେଖିକା’ରେ ଯେତେ ଗାଥାକବିତା ସନ୍ନିବେଶିତ ହୋଇଛି, ସେ ସମସ୍ତର ରଚନାକାଳ ୧୯୧୮ଠାରୁ ୧୯୨୧ ମଧ୍ୟରେ, ଅର୍ଥାତ୍ କବିଙ୍କର ବତିଶ ବର୍ଷ ବୟସରୁ ପଞ୍ଚତିରିଶ ବର୍ଷ ବୟସ ମଧ୍ୟରେ ଏବଂ ‘କାଳିଜାଈ’ ଓ ‘ପଦ୍ମାବତୀ’ ଯଥାକ୍ରମେ ‘ଉତ୍କଳ-ସାହିତ୍ୟ’ ଓ ‘ମୁକୁର’ରେ ପ୍ରକାଶିତ ହୋଇ ଓଡ଼ିଶାର କାବ୍ୟକଳା କ୍ଷେତ୍ରରେ ଚହଳ ସୃଷ୍ଟି କରିଦେଇଥିଲା । ଗୋଦାବରୀଶଙ୍କ ଗଦ୍ୟ ରଚନା ବହୁମୁଖୀ ଓ ବହୁଶାଖୀ । ସେ ନାଟକ, ଉପନ୍ୟାସ, ପ୍ରବନ୍ଧ, ଜୀବନୀ, ପାଠ୍ୟପୁସ୍ତକ ପ୍ରଭୃତି ନାନା ଦିଗରେ ଲେଖନୀ ଚାଳନା କରିଥିଲେ । ତାଙ୍କ ଲିଖିତ ଅସମ୍ପୂର୍ଣ୍ଣ ଆତ୍ମଚରିତ ‘ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ’ ଗ୍ରନ୍ଥଟି ଉତ୍କଳ ସାରସ୍ୱତ ଧାମର ଏକ ମହାମୂଲ୍ୟ ସମୁଜ୍ଜ୍ୱଳ ସାଇତା ସମ୍ପଦ । ଏହି ବାଣୀ ବରପୁତ୍ରଙ୍କ ଅନ୍ୟାନ୍ୟ ସାରସ୍ୱତ କୀର୍ତ୍ତି ମଧ୍ୟରେ ନାଟକଦ୍ୱୟ ‘ପୁରୁଷୋତ୍ତମଦେବ’ ଓ ‘ମୁକୁନ୍ଦଦେବ’, ଚାରୋଟି ଉପନ୍ୟାସ ‘ଅନ୍ନଛତ୍ର’, ‘ଅଭାଗିନୀ’, ‘ଅଠରଶ ସତର’ ଓ ‘ନବାପିତ’ ଏବଂ ଦୁଇଟି ଜୀବନୀ ‘ନେପୋଲିୟନ’ ଓ ‘ଦାସତ୍ୱ ମୋଚନ’ ପ୍ରଧାନ । ଏହିରୂପେ ତାଙ୍କ ବାଙ୍ମୟୀ ପ୍ରତିଭା ଥିଲା ବହୁବ୍ୟାପିକା ଓ ଦିଗ୍-ଦିଗନ୍ତଧାବିକା । ପଣ୍ଡିତ ଗୋଦାବରୀଶ ମିଶ୍ର ସ୍ୱଳ୍ପାୟୁ ମିଳିତ ମନ୍ତ୍ରିମଣ୍ଡଳରେ ଶିକ୍ଷାମନ୍ତ୍ରୀ ଥିଲାବେଳେ ୧୯୪୩ ମସିହାରେ ‘ଉତ୍କଳ ବିଶ୍ୱବିଦ୍ୟାଳୟ’ ପ୍ରତିଷ୍ଠିତ ହୋଇଥିଲା । ତାଙ୍କର ନିରଳସ ଉଦ୍ୟମ ଓ ଅଦମ୍ୟ ଉତ୍ସାହ ଯୋଗୁଁ ହିଁ ଏହା ସମ୍ଭବପର ହୋଇଥିଲା ବୋଲି ସେ ଉତ୍କଳ ୟୁନିଭର୍ସିଟିର ଜନକ ଓ ପ୍ରତିଷ୍ଠାତା ରୂପେ ଓଡ଼ିଶା ଇତିହାସରେ ଚିରସ୍ମରଣୀୟ । ବହୁ ଦୁର୍ଲଭ ଗୁଣର ଆଧାର ଓ ବହୁତୋମୁଖୀ ଶକ୍ତିର ଆକର ଥିଲେ ହେଁ ସେ କେବେହେଲେ ଅହଂଭାବ ପ୍ରକାଶ ନକରି ବରଂ ସର୍ବଦା ନିଜର ଦୀନତା ପ୍ରକାଶ କରୁଥିଲେ । ମୋ ନିଜ ଅନୁଭବରୁ ଏଥିର ଗୋଟିଏ ନଜିର ଏଠାରେ ଦେଉଛି ।

ଯେତେଦୂର ମନେହୁଏ, ଘଟଣାଟି ୧୯୫୩ ମସିହାର । ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋରର ମାନେଜିଂ ଡିରେକ୍ଟର ଭାବରେ ଶ୍ରୀଧରବାବୁ ବିଭିନ୍ନ ଶ୍ରେଣୀପାଇଁ ଅନେକଗୁଡ଼ିଏ ପୁସ୍ତକ ପାଠ୍ୟପୁସ୍ତକ ରୂପେ ମଞ୍ଜୁର ହେବା ଆଶାରେ ଡି. ପି. ଆଇ.ଙ୍କ ଅଫିସକୁ ପଠାଇବାଲାଗି

ପ୍ରବଳ ଉଦ୍‌ଯୋଗ କରୁଥାନ୍ତି । ତାହା ମଧ୍ୟରେ ଦ୍ୱିତୀୟ ଶ୍ରେଣୀ ଓ ତୃତୀୟ ଶ୍ରେଣୀ ଉପଯୋଗୀ ଦୁଇଖଣ୍ଡି ସାହିତ୍ୟ ପୁସ୍ତକ ମଧ୍ୟ ପଠାଯିବାର ଯୋଜନା ଥାଏ । ତାହା ଲେଖିଦେବାପାଇଁ ସେ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କୁ ଅନୁରୋଧ କରିଥିଲେ । ସେତେବେଳେ ବିଧାନସଭାର ଅଧିବେଶନ ଚାଲିଥାଏ ବୋଲି ସଦସ୍ୟ ଗୋଦାବରୀଶବାବୁ ଭୁବନେଶ୍ୱର ଆସେମ୍ବ୍ଲି କ୍ୱାର୍ଟର୍‌ରେ ରହୁଥାନ୍ତି । ଅଧିକାଂଶ ବେଳ ଆସେମ୍ବ୍ଲି କାମରେ ବ୍ୟସ୍ତ ହୋଇଯାଉଥିଲେ ହେଁ ସେ ନିର୍ଦ୍ଧାରିତ ଦିବସ ମଧ୍ୟରେ ବହି ଯୋଡ଼ିକ ନିଶ୍ଚୟ ଲେଖିଦେବେ ବୋଲି ଶ୍ରୀଧରବାବୁଙ୍କୁ ନିର୍ଭର ବଚନ ଦେଇଥିଲେ । ପ୍ରାର୍ଥୀ ଶ୍ରୀଧରବାବୁ ମତେ ସଙ୍ଗରେ ନେଇ ନିର୍ଦ୍ଦିଷ୍ଟ ଦିବସରେ ରାଜଧାନୀ ଭୁବନେଶ୍ୱର ଗଲେ । ଗୋଦାବରୀଶ ବାବୁ ପାଣ୍ଡୁଲିପି ଦୁଇଟିକୁ ସୁସ୍ଥଂସମ୍ପୂର୍ଣ୍ଣ କରି ରଖିଥିଲେ, ଏବେ ପ୍ରକାଶକ ଶ୍ରୀଧରଙ୍କ ହସ୍ତରେ ଅର୍ପଣ କରି କହିଲେ, "ଅଲଗା ଅଲଗା ହୋଇ ଦୁହେଁଯାକ ସବୁ ବିଷୟ ଗୋଟି ଗୋଟି କରି ପଢ଼ିବ । ନିଜକୁ ଦ୍ୱିତୀୟ-ତୃତୀୟ ଶ୍ରେଣୀର ଛାତ୍ରମାନଙ୍କୁ ଦେଖିସାଇ ପଢ଼ିଲେ ଠିକ୍ ବିଚାର କରିପାରିବ । ଯେଉଁ ଯେଉଁ ସ୍ଥଳର ଲେଖା ମନକୁ ଛୁଇଁବ ନାହିଁ, ଯେଉଁଯେଉଁଠି ପରିବର୍ତ୍ତନ ବା ସଂଯୋଜନର ଆବଶ୍ୟକତା ଅନୁଭବ କରିବ, ସେସବୁଠାରେ ଚିହ୍ନ ଦେଇ ରଖୁଥିବ । ଏ ପ୍ରକାର ପ୍ରତ୍ୟେକ ସ୍ଥାନରେ ନିଜର ସ୍ୱତଃସ୍ଫୂର୍ତ୍ତ ମତାମତ ନିଃସଙ୍କୋଚରେ ଦର୍ଶାଉଥିବ । ଏହି ରୀତିରେ ପଢ଼ିସାରିବାପରେ ଏଠାକୁ ଆସିବ, ଉଭୟ ପାଣ୍ଡୁଲିପିର ଶେଷ ସଂସ୍କାର ଓ ମାର୍ଜନା କରିଦେବା ।"

ତାଙ୍କର ଏ ଉଦାର ନିରହଙ୍କାର ଅଭିବ୍ୟକ୍ତି ଆମକୁ ଅବାକ୍ ଓ ନିର୍ବାକ୍ କରିଦେଇଥିଲା । ତାଙ୍କ ଲେଖାରେ କି ଖୁଣ ଥିବ ଯେ ଆମେ ତାକୁ ବାଛିବୁଁ, ଆମର ପୁଣି କି ତାକତ ଅଛି ଯେ ସମୀକ୍ଷକ ପରି ମନ୍ତବ୍ୟ ଟିପି ରଖିବୁଁ ! ତଥାପି ବରେଣ୍ୟ ପୁରୁଷଙ୍କର ନିର୍ଦ୍ଦେଶକୁ ଶିରୋଧାର୍ଯ୍ୟ କରି କଟକ ବାହୁଡ଼ିଲୁଁ । ହପ୍ତାକ ଭିତରେ ଦୁଇଟିଯାକ ପାଣ୍ଡୁଲିପି ପଢ଼ି ଅଳ୍ପ କେତୋଟି ଜାଗାରେ ଦାଗ ଦେଇ ରଖିଲୁଁ । ତାପରେ ଦିନେ ସାଙ୍ଗ ହୋଇ ଗୋଦାବରୀଶ ବାବୁଙ୍କ ଆସେମ୍ବ୍ଲି କ୍ୱାର୍ଟର୍‌ରେ ଉପସ୍ଥିତ ହେଲୁଁ । ଯେଉଁ କେଇଟି ଜାଗାରେ ଚିହ୍ନ ଦେଇଥିଲୁଁ, ସେଗୁଡ଼ିକୁ ସେ ସଙ୍ଗେ ସଙ୍ଗେ ବଦଳାଇଦେଲେ । ଏବେ ପ୍ରକାଶକ (ଶ୍ରୀଧର ବାବୁ)ଙ୍କ ଆଡ଼ୁ ପ୍ରଶ୍ନ ହେଲା—ବହିର ନାମ କ'ଣ ରଖାଯିବ ? ଗୋଦାବରୀଶ ବାବୁ ଅଭିଭାବକୀୟ ଗଳାରେ କହିଲେ, "ଯେ ଜନ୍ମ ଦିଏ ସେ ନାଁ ଦିଏ ନାହିଁ । ସମ୍ପର୍କୀୟ ଅନ୍ୟମାନେ ନବଜାତକର ନାମ ପ୍ରସ୍ତାବ କରନ୍ତି । ଜନ୍ମଦାତା ତାହା ଗ୍ରହଣ କରେ । ଖୁବ୍ ବେଶୀହେଲେ ସେଥିରେ ସାମାନ୍ୟ ଇତରବିଶେଷ କରିବାକୁ କେବଳ ସେ କହିଥାଏ । ଏହାହିଁ ପ୍ରଚଳିତ ପ୍ରଥା । ତେଣୁ ନାଁ ଦିଆ କାମ ତୁମ ଦୁହିଁଙ୍କର ।"

ଶ୍ରୀଧରବାବୁ ଜିଜ୍ଞାସୁ ନେତ୍ରରେ ମୋ ଆଡ଼କୁ ଅନାଇରହିଲେ । ମୁଁ ରାଜଚନ୍ଦ୍ର ଗୋଦାବରୀଶ ବାବୁଙ୍କୁ ଗୋଟିଏ ନାମଟିଏ ପ୍ରସ୍ତାବ କଲି, "ବହିର ନାଁ 'ସୁକୁମାର ସାହିତ୍ୟ' ଦିଆଗଲେ କିମିତି ହେବ ?" ଗୋଦାବରୀଶ ବାବୁ 'ସୁକୁମାର' ଶବ୍ଦଟିକୁ ଖୁବ୍ ପସନ୍ଦ କଲେ, କିନ୍ତୁ

‘ସାହିତ୍ୟ’ ଶବ୍ଦକୁ ମୁହଁ ମୋଡ଼ିଲେ—ନାପସନ୍ଦ କରିବାର କାରଣ ସ୍ୱରୂପ କହିଲେ, “ଯେଉଁ ଅଳ୍ପ କେତେଖଣ୍ଡି ପୁସ୍ତକ ମୁଁ ଲେଖିଛି, ତାହା ମୋତେ ସାହିତ୍ୟିକର ମର୍ଯ୍ୟାଦା ଦେବାକୁ ଏକାନ୍ତ ଅନୁପଯୁକ୍ତ । ଏଥିଯୋଗୁଁ ସ୍ୱପ୍ନରେ ସୁଦ୍ଧା କେବେହେଲେ ମୁଁ ନିଜକୁ ‘ସାହିତ୍ୟିକ’ ବୋଲି ଭାବେ ନାହିଁ । ଲେଖକସାଧାରଣ ମଧ୍ୟରେ ମୁଁ ଜଣେ ‘ଲେଖକ’ ମାତ୍ର । ଏଣୁ ମୋ ଲିଖିତ ଏ ପାଠ୍ୟପୁସ୍ତକ ‘ସାହିତ୍ୟ’ ନୁହେଁ—କେତୋଟି ‘ପାଠ’ର ଏହା ସମଷ୍ଟି ମାତ୍ର । ସୁତରାଂ ଏହାର ନାମ ‘ସୁକୁମାର ସାହିତ୍ୟ’ ନହୋଇ ‘ସୁକୁମାର ପାଠ’ ହେବାହିଁ ସଙ୍ଗତ ଓ ଯଥାର୍ଥ ।” ବସ୍ତୁତଃ ତାଙ୍କର କଥା ରହିଲା । ଦ୍ୱିତୀୟ ଶ୍ରେଣୀ ଉପଯୋଗୀ ବହିଟିର ନାମ ରଖାଗଲା ‘ସୁକୁମାର ପାଠ—ପ୍ରଥମଭାଗ’ ଓ ତୃତୀୟ ଶ୍ରେଣୀ ଉପଯୋଗୀ ବହିର ନାମ ‘ସୁକୁମାର ପାଠ, ଦ୍ୱିତୀୟଭାଗ’ ।

କିନ୍ତୁ ସେ ଯେଉଁ ବିଶ୍ଳେଷଣାତ୍ମକ ଯୁକ୍ତିଟା ବାଢ଼ିଲେ, ତାହା କ’ଣ ବାସ୍ତବରେ ଯଥାର୍ଥ ? ସଂସ୍କୃତ ସଦୁକ୍ତିରେ ଅଛି—

“ନମ୍ରନ୍ତି ଫଳିନୋ ବୃକ୍ଷାଃ
ନମ୍ରନ୍ତି ଗୁଣିନୋ ଜନାଃ ।”

ପୁଣି ଆଶୁକବି ଯଦୁମଣି ମହାପାତ୍ରଙ୍କ ତଳ ସଦୁକ୍ତିଟି ମଧ୍ୟ ଅବିକଳ ଏହି ଭାବର ଦ୍ୟୋତକ—

“ନିକଟ ତଉଲ ସାନ ବଡ଼କୁ
ଭାଙ୍ଗି ହୁଏ ଯେହ୍ନୁ ରହେ ତଳକୁ ।”

ପଣ୍ଡିତ ଗୋଦାବରୀଶ ପ୍ରକୃତରେ ଗୁଣମାଳାରେ ଗରୀୟାନ୍ ହୋଇଥିବାରୁ ନିଜର ଉଚ୍ଚତର ଯୋଗ୍ୟତାକୁ ଏପରି ନ୍ୟୂନ ବୋଲି ପ୍ରତିପାଦନ କଲେ । ଏହାହିଁ ବାସ୍ତବ ବଡ଼ଲୋକଙ୍କ ମହାନୁଭବତାର ଲକ୍ଷଣ । ଖାଣ୍ଟି ଓଡ଼ିଆ ଶବ୍ଦମାନଙ୍କୁ ନେଇ ମୌଳିକ ଓଡ଼ିଆ ଶୈଳୀରେ ସମୁଚ୍ଚଭାବନାରାଶି ପ୍ରକାଶ କରିବାରେ ତାଙ୍କ ସିଦ୍ଧ ଲେଖନୀ ଯେ ଶ୍ରେଷ୍ଠ ସାହିତ୍ୟିକ ପରାକାଷ୍ଠାର ଅଧିକାରୀ ଏବଂ ସେ ଯେ ନିଜେ ଜଣେ ଅତ୍ୟୁଚ୍ଚକୋଟିର ସାହିତ୍ୟିକ, ତଳ ଉଦ୍ଧୃତି ତାହାର ପ୍ରକୃଷ୍ଟ ପରିମାପକ :

( ୧ )

ନାଆ ଆସି ହେଲା ଦଣ୍ଡକେ ପ୍ରବେଶ
‘ଚଢ଼େଇହଗା’ ପାହାଡ଼େ,
‘ଘଣ୍ଟଶିଳା’ ଆଉ ନ ଦିଶେ, ଲୁଚି ଲେ
ରହିଲା ‘ସାଳିଆ’ ଦୂରେ ।
ଭୃହୁଁ ଭୃହୁଁ ଆସି ଛୁଇଁଲା ତ ନାଆ
ଗଣ୍ଡ ତଡ଼ କଲା ପାଣି,
ତୀରେ ଝିଅ ଦୁଇ ଆଖିରୁ ଲୁହ ଲେ
ଚନ୍ଦ୍ର ପିନ୍ଧା ଛୁଟ କାନ !

"ପାଶକୁଦ ବୋଲ    ଘଇଜ ପୁଣି ସେ
ଚଲକା ମଝିରେ କାହିଁ,
କେମନ୍ତେ ମୁଛିଲ    ଝିଅକୁ ବାପା ହେ !
ଏତେ ଦୂରେ ଦେବା ପାଇଁ ?
ବର ବୋଲ ଯାର    ଧରଇଲ ହାତ
କ ତା'ର ଦେଖିଲ ଶିଖ ?
ରୂପ ବଦ୍ୟା ଆଉ    ବଭବ ବାପା ହେ !
ଚହ୍ନିଏଁ ଚହ୍ନିକ ବଳ !
ମହୀମଣ୍ଡଳେ ତ    ନ ଥିବ କେ କାହିଁ
ମୋ ଭଳ ନରେଖ ଜନ,
ଏ ମହାସମୁଦ୍ର    ମଝିରେ ବାପା ହେ !
କେମନ୍ତେ ବଞ୍ଚିବ ଦନ ?
ଏଡ଼େ ସ୍ଥାନମାନ    କଣବାକୁ ଯେବେ
ମନରେ ଥିଲ ବସ୍ମର,
ଏକୁଡ଼ଶାଳେଟି    କପାଇଁ ବାପା ହେ !
ଚଣ୍ଡି ଚପି ନ ମାରଲ ?
ଝିଅକୁ ନଷ୍ଟିନ୍ତେ    ଦେଇଛୁ ପଠାଇ
ବନସ୍ତକୁ ଜାଣୁ ଜାଣୁ,
କପାଳ ଆଦର    ଯାଉଛୁ ବୋଉଲେ !
ପାସୋର ନ ଦେବୁ ମନୁ ।"

('କାଳଜାଇ' ଗାଥା କବତା, 'ଆଲେଖିକା'ର ପୃ ୫୬-୫୭)

( ୨ )

ଅଛୁ ସେହ ଭୂଇଁ,    କେ ଜାଣେ କପାଇଁ
ହୃଦୟେ ନାହିଁ ସେ ଟାଣ,
ଜନନୀ-ଦହନେ    କପର ସନ୍ତାନେ
ରହଛନ୍ତ ଧର ପ୍ରାଣ !
କ ସୁଖ ଜୀବନେ    ଚର ଅପମାନ
ହେବ ଯେବେ ଭଗ୍ୟେ ଲେଖା ?
'ମାଆ' ବୋଲ୍ ଥରେ    ଉଠ ହେ ସୋଦରେ !
ମାଆର ଲଭ୍ଭବ ଦେଖା ।

('ଜନ୍ମଭୂମି' କବତା)

( ୩ )

ଆଜି ୧୯୫୧ ମସିହାରେ ଏସବୁ ଲେଖିଲାବେଳେ ତେଷଠି ବର୍ଷ ବୟସରେ ବୁଢ଼ା ଦିନେ ଦିନେ ମୋତେ ନିତାନ୍ତ ଅର୍ଥାଭାବରେ ପଡ଼ିବାକୁ ହେଉଛି । ସାମାନ୍ୟ ପେଟ ପୋଷିବାକୁ ଯେଉଁ ଡାଳ ଧରୁଛି, ସେ ଡାଳ ଛିଡ଼ିଯିବାର ଦେଖୁଛି । କୃଷିରୁ ବ୍ୟବସାୟ ଓ ବ୍ୟବହାୟ ଛାଡ଼ି ପୁସ୍ତକ ଲେଖାକୁ ଆଶ୍ରୟ କରିଛି । ପୁସ୍ତକ ଲେଖାରେ ପୁଣି ଅଳ୍ପ ଶିଶୁ-ପାଠ୍ୟ ଧରିଲେ କାଲି ଉପନ୍ୟାସରେ ଲେଖଣୀ ଚଳାଉଛି । ତଥାପି ବେଳେ ବେଳେ ମନମୁତାବକ ଅନ୍ନ ମୁଠାଏ ଜୁଟୁନାହିଁ । ଜୀବନସାରା ଖଟି ବହୁସମ୍ପତ୍ତି ତ କିଛି ଯେପରି କରିନାହିଁ ଯେ ତା ଆଡ଼କୁ ଚାହିଁବି । ଅର୍ଥାଗମର ଏସବୁ ସୁବିଧା ଛାଡ଼ିଦେଇଥିବା ଯୋଗେ ସେପରି ଦୁର୍ବଳ ମୁହୂର୍ତ୍ତମାନଙ୍କରେ ବେଳେ ବେଳେ ମନକୁ ଅନୁତାପ ଆସେ । ମୋ ନିଷ୍ପତ୍ତି ପୁରାପୁରି ମୋ ନିଜର ନୁହେଁ, ତା ପାଇଁ ଗୋପବନ୍ଧୁ ବାବୁ ବହୁପରିମାଣରେ ଦାୟୀ । ଜୀବନ, କୁମ୍ଭାରଶାଳ ମାଟିପିଣ୍ଡୁଳା ବୟସରେ ଶର୍ମାଙ୍କ (ସନ୍ତ୍ରାସବାଦୀ ଦଳର ମୁଖ୍ୟ କର୍ମୀ ଶଶିଭୂଷଣ ରାୟଚୌଧୁରୀ) ହାତରେ ଗଢ଼ା ହେବା ପରେ, ତାଙ୍କର (ଗୋପବନ୍ଧୁଙ୍କ) ପ୍ରରୋଚନାରେ ମୁଁ ଏସବୁ ସୁଯୋଗ ଛାଡ଼ିଛି । ଏ ଭବ-ପାରାବାରରେ ମୋ କ୍ଷୁଦ୍ର ଜୀବନ-ତରୀର କର୍ଣ୍ଣଧାର ସେ । ମୋ ପ୍ରାଣର ଉପାସ୍ୟ ଦେବତା ସେ । ଦୁର୍ବଳ ମୁହୂର୍ତ୍ତମାନଙ୍କରେ ଆଜି ବୁଢ଼ା ମୁଁ ତାଙ୍କର ମୂର୍ତ୍ତି ଆଖି ଆଗରେ କଳ୍ପନାରେ ଦେଖି ସାନ୍ତ୍ୱନା ପାଏଁ । ଗୋପବନ୍ଧୁଙ୍କ ପରି ସୁହୃଦ୍, ପଥପ୍ରଦର୍ଶକ ଓ ଦର୍ଶନଗୁରୁ ନିତାନ୍ତ ବିରଳ ।

ମନୁଷ୍ୟ ଜୀବନରେ ସର୍ବସ୍ୱ ହରାଇ ଦାରିଦ୍ର୍ୟ ଭିକାରି ହେବ ତ, ହେବ ଗୋପବନ୍ଧୁଙ୍କ ପରି ପୁରୁଷଙ୍କ ସାଙ୍ଗରେ ପଡ଼ି । ଗୋପବନ୍ଧୁ ବାବୁଙ୍କ ଆଶୀର୍ବାଦ ପାଇ ନଥିଲେ ଏହି ଦୁଇ ଘଟନା ପରେ ବୁଢ଼ା ମୁଁ ହୁଏତ ଓକିଲ ହୋଇଥାନ୍ତି କିମ୍ବା ଅନ୍ୟ ଏକ କାର୍ଯ୍ୟ କରିଥାନ୍ତି । ୧୯୧୧ ମସିହା ଡିସେମ୍ବର ମାସରେ ବିହାର ଓ ଓଡ଼ିଶା ମିଶି ଏକ ସ୍ୱତନ୍ତ୍ର ପ୍ରଦେଶ ଗଠିତ ହେବ ବୋଲି ଘୋଷଣା ପ୍ରକାଶ ପାଇଲା । ସେତେବେଳକୁ ବିହାରର ବାରିଷ୍ଟର ହାସାନ୍ ଇମାମ୍ କଲିକତା ହାଇକୋର୍ଟର ଜଣେ ବିଚାରପତି ଏବଂ ଅନେକ ବିହାରୀ ଓ ଓଡ଼ିଆ ପିଲା କଲିକତାରେ ପଢ଼ୁଥିଲେ । ମିଳନ ଉପଲକ୍ଷରେ ହାସାନ୍ ଇମାମ୍‌ଙ୍କ ସଭାପତିତ୍ୱରେ ଓଡ଼ିଆ ଓ ବିହାରୀ ଛାତ୍ରମାନଙ୍କର ଗୋଟିଏ ସଭା ହେଲା । ସଭା ଭାଙ୍ଗିବା ପରେ ହାସାନ୍ ଇମାମ୍ ମୋ ପାଖକୁ ଚାଲିଆସି ମୋତେ କୁଣ୍ଢାଇପକାଇ କହିଲେ, "ବେଶ୍ କହୁଛ ! ତୁମେ ଓକିଲତି ବ୍ୟବସାୟ କ୍ଷେତ୍ରରେ ଖୁବ୍ ନାଁ କରିବ । ପାସ୍ କରିସାରି ମୋ ପାଖେ ଆସି ରହ । ମୁଁ ଯଥାଶକ୍ତି ସାହାଯ୍ୟ କରିବି ।" ପଣ୍ଡିତ ଗୋପବନ୍ଧୁ ଶୁଣି ହସି ହସି କହିଲେ, "ଏ ବ୍ୟବସାୟ ତୁମ ଆମ ଭଳି ଲୋକଙ୍କ କ'ଣ ପାଏ ? ମୁଁ ପରା ଜଣେ ଓକିଲ ଦେଖୁଛି !"

ସେ ସଭାକୁ କେତେକ ବିଶିଷ୍ଟ ବଙ୍ଗାଳୀ ଭଦ୍ରଲୋକ ମଧ୍ୟ ଆସିଥିଲେ । ସେମାନଙ୍କ ଭିତରୁ କେତେକଙ୍କ ଆଡ଼ୁ କଥା ପଡ଼ି ପ୍ରସ୍ତାବ ହେଲା ଯେ, ମୁଁ କଲିକତା ମୂକ ବଧିର ବିଦ୍ୟାଳୟର ସହକାରୀ ପ୍ରଧାନ ଅଧ୍ୟାପକ ହେବା ନିମନ୍ତେ ବିଦ୍ୟାଳୟର ବ୍ୟୟରେ ଆମେରିକା ପଢ଼ିବାକୁ ଯିବି ଓ ଯଥାସମୟରେ ପ୍ରଧାନ ଅଧ୍ୟାପକ ମଧ୍ୟ ହେବି । ସେଥିପାଇଁ

ମୋ'ଠାରୁ ଦରଖାସ୍ତ ନିଆଗଲା । ମୁଁ ଗୋପବନ୍ଧୁବାବୁଙ୍କ ସମ୍ମତି ମାଗି ପତ୍ର ଲେଖିଲି । ତାଙ୍କଠାରୁ ଉତ୍ତର ପାଇଲି—

"ଗୋଦାବରୀଶ ! ତୁମେ ଦୁଇ ତିନି ଶହ ମୂକ ବଧିର ପିଲାଙ୍କ ଶିକ୍ଷକ ହେବାକୁ ଇଚ୍ଛା କରୁଛ; ମାତ୍ର ଓଡ଼ିଶାର ଲକ୍ଷ ଲକ୍ଷ ମୂକ ବଧିରଙ୍କ କଥା କ'ଣ ଭୁଲିଗଲ ?"

ପ୍ରାୟ ତ୍ରିଶ ବର୍ଷ ସେଦିନୁଁ ବିତିଗଲାଣି । ତା'ପରେ ଗୋପବନ୍ଧୁ ବାବୁଙ୍କ ମୃତ୍ୟୁ ଘଟିବା ତେଇଶ ବର୍ଷ ହୋଇଗଲାଣି । ତଥାପି ତାଙ୍କର ସେହି କେତେ ପଦ କଥା ଦୈବବାଣୀ ପରି ବର୍ତ୍ତମାନ ମୋ କାନରେ ବାଜିଯାଉଛି । ତାହାହିଁ ଜୀବନର ସବୁ ଚେଷ୍ଟା, ସକଳପ୍ରକାର ଚେଷ୍ଟା ମଧ୍ୟରେ ନିୟାମକରୂପେ ମୋତେ ଚଳାଇଆଣିଛି । ପିତାଙ୍କର ଇଚ୍ଛା ଥିଲା, ମୁଁ ଓକିଲ ହେବି; କିନ୍ତୁ ପରେ ସେ ସେହି ଇଚ୍ଛାରେ ଜଳାଞ୍ଜଳି ଦେଇଥିଲେ । ସୁତରାଂ ଅନେକ ଦିନ ଲକ୍ଷ୍ୟହୀନ ଭାବରେ ଚାଲିଲି ପରେ ଲକ୍ଷ୍ୟର ବୀଜ ବୁଣିଲେ ଶଶୀଦା ଓ ତାକୁ ବଢ଼ାଇ ଗଛରେ ପରିଣତ କଲେ ଗୋପବନ୍ଧୁବାବୁ ।

(ଆତ୍ମଚରିତ 'ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ', ପୃ : ୪୯-୫୧)

( ୪ )

ମନୁଷ୍ୟ ଜନ୍ମ ହେଉଛି, ମରୁଛି । ଜନ୍ମ-ମୃତ୍ୟୁ ସଂସାରରେ ଲାଗିରହିଛି । ଏ ଜଗତକୁ ତାଳୁରେ ତାମ୍ରପଟା ବାନ୍ଧି କେହି ଆସିନାହିଁ । ଗୁଡ଼ାଏ ବେଶୀଦିନ ବଞ୍ଚିଲେ ଯେ ଜୀବନର ମୂଲ୍ୟ ବଢ଼େ, ତା ନୁହେଁ । ଶଙ୍କରାଚାର୍ଯ୍ୟ ବତିଶ ବର୍ଷ ବୟସରେ ଦେହତ୍ୟାଗ କରିଥିଲେ । ତାହା ବାରଶହ ବର୍ଷ ତଳର କଥା । ଏବେ ମଧ୍ୟ ଏହି ପୁରୁଷରେ ପଚାଶ ବର୍ଷ ପୂରୁ ନ ପୂରୁଣୁ ପଣ୍ଡିତ ଗୋପବନ୍ଧୁ ଆଖି ବୁଜିଦେଇ ଚାଲିଗଲେ । ତଥାପି ଆଜି ଓଡ଼ିଶା ଦେଶରେ ପ୍ରାଣେ ପ୍ରାଣେ ସେ ଜୀଇ ରହିଛନ୍ତି । କର୍ମର ଗୁରୁତ୍ୱ ଜୀବନର ମୂଲ୍ୟ ବଢ଼ାଏ ।

(ଆତ୍ମଚରିତ 'ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ', ପୃ : ୧୦୭)

ଉପରଉଦ୍ଧୃତ କି କବିତା କି ଗଦ୍ୟ ଉଭୟରେ ବ୍ୟବହୃତ ତାଙ୍କ ମୋଲାଏମ ମସ୍ତ ଓଡ଼ିଆଭାଷା ଯେ କେଡ଼େ ଉଚ୍ଚତର ଭାବ ବିଭାବକୁ ଭଙ୍ଗୀଳ ବାଗ୍‌ବିଳାସରେ, ରଙ୍ଗ-ରସ୍ୟାତ୍ମକ ମଞ୍ଜୁଳ ଶୈଳୀରେ ରୂପଦାନ କରିପାରିଛି, ଏହା ବାସ୍ତବରେ ଅନନ୍ୟ ଓ ଅନବଦ୍ୟ, ଅନୁପମ ଓ ଅମୃତୋପମ । ଯେକୌଣସି ତୁଙ୍ଗପ୍ରତିଷ୍ଠ କବି ଓ ସାହିତ୍ୟିକ ଏହି ମନୋରମ ପ୍ରକାଶଶୈଳୀ ଓ ଭାଷାଭଙ୍ଗୀ ପ୍ରତି ନିଶ୍ଚୟ ଈର୍ଷା ପୋଷଣ କରିବ । ଏଥିର ଜ୍ୱଳନ୍ତ ସତ୍ୟତାର ପ୍ରମାଣ ଦେବ 'ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ' ପୁସ୍ତକଟିର ପଦେ ପଦେ ଛନ୍ଦେ ଛନ୍ଦେ ବିଚ୍ଛୁରିତ ଅଦ୍ୱିତୀୟ ଅନନୁକରଣୀୟ ଅଭିବ୍ୟକ୍ତି । ମୋ ବିଚାରରେ ବିପ୍ର ଜଗନ୍ନାଥଙ୍କ ଓଡ଼ିଆ ଭାଗବତର ମିଷ୍ଟତର ସରଳଭାଷା ମଧ୍ୟ ପଣ୍ଡିତ ଗୋଦାବରୀଶଙ୍କ ପ୍ରାଞ୍ଜଳ ଭାଷାଠାରୁ ସରସତାରେ ଊଣା ପଡ଼ିବ ।

ପ୍ରଖ୍ୟାତ ପ୍ରଭାବଶାଳୀ ଦେବାନ ବାହାଦୁର ଲକ୍ଷ୍ମୀଧର ମହାନ୍ତିଙ୍କ ପୌରୋହିତ୍ୟରେ ଉତ୍କଳ ସମ୍ମିଳନୀର ଏହି ବ୍ରହ୍ମପୁର ଅଧିବେଶନ ଅନୁଷ୍ଠିତ ହୋଇଥିବା କଥା ପ୍ରଥମରୁ

ଲୁହାହୋଇସାରିଛି । ସେ ଯେଉଁ ମୁଦ୍ରିତ ଅଭିଭାଷଣ ପାଠକରିଥିଲେ, ତାହା ସମାଗତ ସମଗ୍ର ଜନସମାବେଶକୁ ସ୍ତମ୍ଭିତ ଓ ଚମତ୍କୃତ କରିଦେଇଥିଲା । ଐତିହ୍ୟମୟୀ ଉତ୍କଳଭୂମିର ତଥା ଜାତୀୟତା-ଜାଗରଣୀ ଉତ୍କଳ ସମ୍ମିଳନୀର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ସମ୍ବନ୍ଧୀୟ ନାନା ତଥ୍ୟ ଓ ପର୍ଯ୍ୟାଲୋଚନା ସମ୍ଭାରରେ ସମୃଦ୍ଧ ଏଡ଼େ ବକ୍ତୃତାପୂର୍ଣ୍ଣ ଦୀର୍ଘ ସାରଗର୍ଭ ଅଭିଭାଷଣ ତତ୍ପୂର୍ବରୁ କେହି ପରିବେଷଣ କରିପାରିନଥିଲେ । ଏଥିପାଇଁ ସବୁ ଶ୍ରେଣୀ, ସବୁ ଦଳ ଓ ସର୍ବସାଧାରଣ ଜନତା ଏହି ମହାର୍ଘ ଅଭିଭାଷଣକୁ ଉଚ୍ଛ୍ୱସିତ ଉତ୍ସାହରେ ସ୍ୱାଗତ କରି ସଭାପତି ଦେବାନ ବାହାଦୁରଙ୍କର ଭୂୟସୀ ପ୍ରଶଂସା କରିଥିଲେ । କିନ୍ତୁ ଏ ପ୍ରଶଂସା-ପ୍ରଶସ୍ତିର ପ୍ରକୃତ ସ୍ୱଜନ ଦେବାନ ବାହାଦୁର ନୁହନ୍ତି, କାରଣ ଅଭିଭାଷଣଟି ତାଙ୍କଦ୍ୱାରା ପ୍ରସ୍ତୁତ ହୋଇ ନଥିଲା । ସକଳ ପ୍ରଶଂସା-ପ୍ରଶସ୍ତି ବାସ୍ତବରେ ପ୍ରାପ୍ୟ ଥିଲା ଜଣେ ସଦ୍ୟ ବିଲାତଫେରନ୍ତା ପ୍ରତିଭାସମ୍ପନ୍ନ ଦେଶମାତୃଭକ୍ତ ଓଡ଼ିଆ ଯୁବକଙ୍କର, କାରଣ ଉକ୍ତ ସୁଚିନ୍ତିତ ସାରଗର୍ଭ ଅଭିଭାଷଣଟି ପ୍ରସ୍ତୁତ ହୋଇଥିଲା ତାଙ୍କଦ୍ୱାରା । ସେହି ଯୁବକ ଜଣକ ହେଉଛନ୍ତି ଜମିଦାର ସନ୍ତାନ ନୃସିଂହଚରଣ ମହାନ୍ତି—ଅଧିବେଶନ-ଅଧ୍ୟକ୍ଷ ଦେବାନ ବାହାଦୁର ଲକ୍ଷ୍ମୀଧର ମହାନ୍ତିଙ୍କର ନିଜ ଜାମାତା ।

ବିତ୍ତଶାଳୀ ଶ୍ୱଶୁରଙ୍କ ପ୍ରଶଂସା ଉଦ୍ୟମରେ ବି.ଏ. ଉତ୍ତୀର୍ଣ୍ଣ ନୃସିଂହଚରଣ ଜାହାଜ ଯୋଗେ (ସେ ସମୟରେ ଉଡ଼ାଜାହାଜରେ ଇଂଲଣ୍ଡ ଯିବାର ସୁବିଧା ନଥିଲା) ବିଲାତରେ ପହଞ୍ଚି ଆଇ. ସି. ଏସ୍. (I. C. S.) ପାଠ୍ୟ ଅଧ୍ୟୟନ କରିବାକୁ ସମର୍ଥ ହୋଇଥିଲେ । ତିନୋଟି ମାସ ମାତ୍ର ଅତିକ୍ରାନ୍ତ ହୋଇଛି କି ନାହିଁ, ଉକ୍ତ ଦିଗ ପ୍ରତି ତାଙ୍କର ଘୋର ବିତୃଷ୍ଣା ଜନ୍ମିଲା, ସ୍ୱାଧୀନ ହୃଦୟ ମୁହୁର୍ମୁହୁଃ ବିଦ୍ରୋହ କରିଉଠିଲା । ଆଇ. ସି. ଏସ୍. ପାଠ୍ୟକ୍ରମର ସଫଳ ସମାପ୍ତି ପରେ ସ୍ୱଦେଶକୁ ଫେରି ଶୋଷକ ବ୍ରିଟିଶ ଶାସକର ଗୋଲାମ ହେବାକୁ ବିବେକ ଆଦୌ ଅନୁମୋଦନ ଦେଲାନାହିଁ । କିଛି କାଳ ଟେର ସାହେବର ସୁଖାସନରେ ବସି ପୋଷା ଶ୍ୱାନ ପରି ଅଯଥା ଭୋଗିବା, ପୁଣି ବେଳ ପଡ଼ିଲେ ରକ୍ତମୁଖା ବାଘପରି କ୍ରୋଧୋନ୍ମତ୍ତ ହୋଇ ନିରୀହ ଦେଶବାସୀଙ୍କୁ ନିର୍ମମ ହୃଦୟରେ କଶାଘାତ କରିବା ଯେ ବର୍ବର ଦେଶଦ୍ରୋହୀ କାର୍ଯ୍ୟ, ଏହା ସେ ମର୍ମେ ମର୍ମେ ଉପଲବ୍ଧି କରିବାକୁ ଲାଗିଲେ । ତେଣୁ ଆଇ. ସି. ଏସ୍. ଶିକ୍ଷାକୁ ବର୍ଜନ କରି ସାମ୍ବାଦିକତା (Journalism) ପାଠ୍ୟକ୍ରମରେ ଯୋଗଦେଲେ । ସେହି ଦିଗ ହିଁ ତାଙ୍କ ବିଚାରରେ ସ୍ୱାଧୀନ ଜୀବନଯାପନର ଶ୍ରେୟଃ ପନ୍ଥା ବୋଲି ବିବେଚିତ ହେଲା । ଉଚ୍ଚ ଆଶାବାଦୀ ଶ୍ୱଶୁର ଲକ୍ଷ୍ମୀଧର ମହାନ୍ତି ଏ ସମ୍ବାଦରେ ଆପାତତଃ ବ୍ୟଥିତ ହେଲେ ସତ; କିନ୍ତୁ ସୁଶୀଳ ଜାମାତା ବିବେକ ହରାଇ ଭୁଲ୍ ବାଟକୁ ମାଡ଼ିଗଲେ ବୋଲି ଘୁଣାକ୍ଷରରେ ସୁଦ୍ଧା ଭାବିଲେ ନାହିଁ । ବିଧିର ବିଧାନ ଯାହା, ତାକୁ ଅନ୍ୟଥା କରିବାକୁ ଏ ମହୀମଣ୍ଡଳରେ କେହି କି ଶକ୍ୟ ହୋଇପାରେ ?

ସେତେବେଳେ ବିଲାତର ପ୍ରଧାନମନ୍ତ୍ରୀ ଥାନ୍ତି ଚର୍ଚ୍ଚିଲ୍ ସାହେବ (Sir Winston Churchill) । ତାଙ୍କ ଭଳି ଅଦ୍ୱିତୀୟ କୂଟନୀତିବିଶାରଦ ଦୂରଦର୍ଶୀ ପ୍ରଧାନମନ୍ତ୍ରୀ

ଏ ପର୍ଯ୍ୟନ୍ତ ପୃଥିବୀର ଅନ୍ୟ କୌଣସି ରାଷ୍ଟ୍ରରେ ଦେଖାଯାଇ ନାହାନ୍ତି କହିଲେ ସତ୍ୟର ଅପଳାପ ହେବ ନାହିଁ । ସେ ଥିଲେ ସାମ୍ରାଜ୍ୟବାଦୀ ଜାଠ ଦଳର ମୁଖ୍ୟ ଅଗ୍ରନାୟକ । ସ୍ୱର୍ଣ୍ଣପ୍ରସୂ ଭାରତକୁ ଚିରକାଳ ବ୍ରିଟେନ୍‌ର କବଳରେ ରଖି କିପରି ତାର ବିପୁଳ ଧନ-ସମ୍ପଦକୁ ନାନା ଆଳରେ ନାନା କୁଟିଳ ଉପାୟରେ ଲୁଟ୍ କରିଆଣି ବ୍ରିଟିଶ୍ ରାଜକୋଷ ପରିପୂର୍ଣ୍ଣ କରାଯିବ, ତାହାହିଁ ଥିଲା ମିଷ୍ଟର୍ ଚର୍ଚ୍ଚିଲ୍‌ଙ୍କର ସବୁଠାରୁ ବଡ଼ ଲକ୍ଷ୍ୟ । ଅଥଚ ବିଲାତର ଜନସାଧାରଣଙ୍କୁ ସଂତୃପ୍ତ ରଖିବା ପାଇଁ ସେ ବିବିଧ ସୂତ୍ରରେ ପ୍ରଚାର କରାଉଥାନ୍ତି ଯେ, ବ୍ରିଟିଶ୍ ସରକାରଙ୍କ ଶାସନରେ ଭାରତର ସବୁ ଶ୍ରେଣୀସ୍ଥ ଲୋକେ ପରମ ସୁଖ ଶାନ୍ତି ସନ୍ତୋଷରେ ଜୀବନଯାପନ କରୁଛନ୍ତି ।

ଦିନେ ଲଣ୍ଡନର ପ୍ରସିଦ୍ଧ ବକ୍ତୃତା ମଞ୍ଚରେ ପ୍ରଧାନମନ୍ତ୍ରୀ ମିଷ୍ଟର ଚର୍ଚ୍ଚିଲ୍ ହଲ୍‌ଭର୍ତ୍ତି ଶ୍ରୋତୃସମାବେଶକୁ 'ଭାରତରେ ଇଂରେଜ ସରକାରଙ୍କ ଜନମଙ୍ଗଳ ଶାସନ' ସମ୍ବନ୍ଧରେ ଏକ ବକ୍ତୃତା ଶୁଣାଇବାକୁ ଯାଇ ତାହା ମିଥ୍ୟାସମ୍ବଳିତ ବହୁ ତଥ୍ୟ ପରିବେଷଣପୂର୍ବକ ଖୁବ୍ ବାହାଦୁରି ପ୍ରକାଶ କଲେ । ସାମ୍ବାଦିକତା-ଅଧ୍ୟାୟୀ ନୃସିଂହଚରଣ ଭାରତୀୟ ଶ୍ରୋତା ରୂପେ ସେହି ସଭା କକ୍ଷରେ ଉପସ୍ଥିତ ଥିଲେ । ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ୍‌ଙ୍କର ଲୋକପ୍ରତାରଣା-ମୂଳକ ଦାମ୍ଭିକ ଭାଷଣ ଶୁଣି ଯୁବକ ନୃସିଂହଚରଣ ଅସହ୍ୟତାର ଉତ୍କଟ ଉଷ୍ମାରେ ଉତ୍କ୍ଷିପ୍ତ ହୋଇଉଠିଲେ । ସଭାଧ୍ୟକ୍ଷଙ୍କ ଅନୁମତିରେ ସେ ବକ୍ତା ମହୋଦୟଙ୍କ ପରିବେଷିତ ଭ୍ରାନ୍ତ ତଥ୍ୟଗୁଡ଼ିକୁ ଶାଣିତ ପ୍ରାମାଣିକ ତଥ୍ୟାବଳିଦ୍ୱାରା ଖଣ୍ଡନପୂର୍ବକ ଇଂରେଜ ରାଜୁତିରେ ଭାରତର କିପରି ଅକଥନୀୟ ଦୁର୍ଗତି ଘଟିଛି, ତାହାର ନଗ୍ନ ସ୍ୱରୂପ ସର୍ବସମକ୍ଷରେ ଉଦ୍‌ଘାଟିତ କରିଦେଲେ । ତଦ୍ୱାରା ସମଗ୍ର ସଭା ପରିସରରେ ବିସ୍ମୟର ଏକ ଉଷ୍ଣ ବାତାବରଣ ସହସା ସୃଷ୍ଟି ହୋଇଗଲା । ଚର୍ଚ୍ଚିଲ୍ ମନ୍ତ୍ରିମଣ୍ଡଳ ଯେ ଏପର୍ଯ୍ୟନ୍ତ ବାସ୍ତବ ସତ୍ୟକୁ ଘୋଡ଼ାଇରଖି ଦେଶବାସୀଙ୍କୁ ସମ୍ପୂର୍ଣ୍ଣ ଅନ୍ଧକାରରେ ରଖିଥିଲେ, ଏହା ସ୍ପଷ୍ଟ ପ୍ରତିପାଦିତ ହୋଇଗଲା । ଏଥିପାଇଁ ସମବେତ ଶ୍ରୋତୃମଣ୍ଡଳୀ ପ୍ରକୃତ ସତ୍ୟ-ଉଦ୍‌ଘାଟକ ଭାରତୀୟ ଯୁବକ ବନ୍ଧୁଙ୍କୁ ଗଭୀର ଶ୍ରଦ୍ଧାର ସହିତ ଅଭିନନ୍ଦନ ପୂର୍ବକ ଅଶେଷ ଧନ୍ୟବାଦ ଅର୍ପଣ କରିଥିଲେ ।

ଏହି ଚାଞ୍ଚଲ୍ୟକର ବିବରଣ ବ୍ରିଟେନ୍‌ର ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ହୋଇଯାନ୍ତେ ନୃସିଂହଚରଣଙ୍କ ନାମ ଚାରିଆଡ଼େ ପ୍ରଚାରିତ ହୋଇଗଲା । ସେତେବେଳେ ଇଂଲଣ୍ଡ ଦେଶରେ ତିନୋଟିମାତ୍ର ରାଜନୀତିକ ଦଳ ଥିଲେ; ସେମାନଙ୍କ ନାମ ହେଲା—ଜାଠ (ରକ୍ଷଣଶୀଳ) ଦଳ (Conservative Party), ଉଦାରପନ୍ଥୀ ଦଳ (Liberal Party) ଓ ଶ୍ରମିକ ଦଳ (Labour Party) । ସେ ଦେଶର କି ନଗର କି ସହର ଉପସହର, କି ପଲ୍ଲୀ କି ପଡ଼ାଗାଁ, ଛୋଟବଡ଼ ସକଳ ଲୋକବସତିରେ ଏହି ତିନୋଟିଯାକ ଦଳର ସ୍ଥାୟୀ କାର୍ଯ୍ୟାଳୟ ଅବସ୍ଥାପିତ ଥିଲା, କାରଣ ପ୍ରତି ବସତିରେ ଏହି ତିନିପ୍ରକାର ରାଜନୀତିକ ଦଳଭୁକ୍ତ ଭିନ୍ନ ଭିନ୍ନ ମତର ଲୋକ ବସବାସ କରିଥାନ୍ତି । ସେହି ସ୍ୱାଧୀନ ଦେଶର ନାଗରିକ ନାଗରିକାବୃନ୍ଦ ଇଂରେଜଶାସିତ ଭାରତବର୍ଷର ହାଲଚାଲ ଜାଣିବାକୁ

ସଙ୍ଗଠା ଉଦ୍‌ବିଗ୍ନ ଥା'ନ୍ତି । ଏଣୁ ସେହି ସେହି ରାଜନୈତିକ ଦଳର କାର୍ଯ୍ୟାଳୟମାନଙ୍କ ପକ୍ଷରୁ ନୃସିଂହଚରଣଙ୍କ ପାଖକୁ ନିମନ୍ତ୍ରଣର ସୁଅ ଛୁଟିଲା, ସେସବୁ ସ୍ଥାନକୁ ଯାଇ ବ୍ରିଟିଶ୍ ରାଜତ୍ୱରେ ଭାରତବାସୀଙ୍କ ଅବସ୍ଥା ସମ୍ବନ୍ଧରେ ବକ୍ତୃତା ଦେବାପାଇଁ । ସେହି ସୁଯୋଗରେ ନୃସିଂହବାବୁ ଇଂଲଣ୍ଡର ପ୍ରାୟ ପ୍ରତ୍ୟେକ ପ୍ରାନ୍ତ ପରିକ୍ରମା କରି ବିଭିନ୍ନ ବିଭିନ୍ନ ଆମନ୍ତ୍ରକ ଦଳର ସଦସ୍ୟଗୋଷ୍ଠୀଙ୍କୁ ପରାଧୀନ ଭାରତର ଦୁଃଖଦୁର୍ଦ୍ଦଶା-ବାର୍ତ୍ତା ଶୁଣାଇବାକୁ ଲାଗିଲେ । ପ୍ରଚଳିତ ବ୍ୟବସ୍ଥାନୁସାରେ ଆମନ୍ତ୍ରଣକାରୀ ରାଜନୈତିକ ଦଳ ବରେଣ୍ୟ ବକ୍ତାଙ୍କୁ ନିର୍ଦ୍ଦିଷ୍ଟ ସଂଖ୍ୟକ ଆଖିଦୃଶିଆ ମୁଦ୍ରା ପ୍ରଦାନ କରିବାର କଥା ଏବଂ ବକ୍ତା ମଧ୍ୟ ତାହା ଗ୍ରହଣ କରିବାକୁ ବାଧ୍ୟ । ଜମିଦାର ବଂଶୋଦ୍ଭବ ନୃସିଂହଚରଣ ବକ୍ତୃତାର ଏପରି ବାଧ୍ୟତାମୂଳକ ମୂଲ୍ୟାୟନର ପକ୍ଷପାତୀ ନଥିଲେ । କିନ୍ତୁ ସେଠାର ଏହି ବିଧିଗତ ଧାରାକୁ ଅବମାନନା କରିବା ନୈତିକତା ଦୃଷ୍ଟିରୁ ଗର୍ହିତ ହେବ ବୋଲି ବିଚାରି ବଦାନ୍ୟ ବକ୍ତା ନୃସିଂହଚରଣ ଉପାର୍ଜନରୂପେ ପ୍ରଦତ୍ତ ମୁଦ୍ରାକୁ ଅଗତ୍ୟା ଗ୍ରହଣ କରୁଥିଲେ ଏବଂ ସେହି ମୁଦ୍ରାକୁ ସଙ୍ଗେ ସଙ୍ଗେ ଆମନ୍ତ୍ରକ ଦଳର ସାହାଯ୍ୟପାଣ୍ଠିକୁ ଦାନକରିଦେଉଥିଲେ । ଏଣିକି ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ୍‌ଙ୍କର ଓ ଅନ୍ୟାନ୍ୟ ସରକାରୀ ମୁଖପାତ୍ରଙ୍କର ଭାରତ ସଂକ୍ରାନ୍ତ ଯେକୌଣସି ବିବୃତିକୁ ଇଂଲଣ୍ଡର ଜନସାଧାରଣ ନିର୍ଭରଯୋଗ୍ୟ ବୋଲି ମୋଟେ ବିଶ୍ୱାସ କଲେ ନାହିଁ । ସରକାରୀ ଭିତରି ଆଭିମୁଖ୍ୟର ଛଦ୍ମମୁଖା ମଧ୍ୟ ଆପେ ଆପେ ବିଚ୍ ବଜାରରେ ଫିଟିପଡ଼ିଲା ।

ମିଷ୍ଟର ଚର୍ଚ୍ଚିଲ୍ ସ୍ୱାଧୀନଚେତା ଦେଶାତ୍ମବୋଧକ ଇଂରେଜବୈରୀ ନୃସିଂହଚରଣଙ୍କ ଯୁବସୁଲଭ ଉତ୍ତେଜନାରେ କ୍ଷୁଦ୍ର ସର୍ପର ଉତ୍କଟତର ବିଷର ସଙ୍କେତ ପାଇ ମୂଳରୁ ହିଁ ତାର ବିଷଦାନ୍ତ ଝାଡ଼ିଦେବାକୁ କୃତନିଶ୍ଚୟ ହେଲେ । ତାହା ହେଲେ ନିର୍ବିଷ ସର୍ପର ଦଂଶନ ଜ୍ୱାଳାଗତ ଉଗ୍ରତା ବଳେ ଲୋପ ପାଇଯିବ । ସାମ୍ପ୍ରତିକତାରେ ବିଶ୍ୱବିଦ୍ୟାଳୟ ଡିଗ୍ରୀ ଅର୍ଜନ କରିବା ପରେ ନୃସିଂହଚରଣଙ୍କର ସ୍ୱଦେଶ-ପ୍ରତ୍ୟାବର୍ତ୍ତନ ଏକାନ୍ତ ଆସନ୍ନ ହୋଇଯିବ । ଏହା ଜାଣି ଇଂଲଣ୍ଡର ପ୍ରଧାନମନ୍ତ୍ରୀ ସାର୍ ଉଇନ୍‌ଷ୍ଟନ୍ ଚର୍ଚ୍ଚିଲ୍ ଭାରତର ବଡ଼ଲାଟଙ୍କ ଖୋଦ୍ ଦପ୍ତରକୁ ଏକ ଜରୁରୀ ଗୁପ୍ତାଦେଶ ପଠାଇଲେ—ଏଠାରୁ ଓଡ଼ିଶାଗତ ଛାତ୍ର ନୃସିଂହଚରଣ ମହାନ୍ତି ଓଡ଼ିଶାକୁ ବାହୁଡ଼ିବା ବେଳେ ଜାହାଜରୁ ଅବତରଣ ପୂର୍ବକ ବମ୍ବେ-ମାଟିରେ ଗୋଡ଼ ପକାଇବା ମାତ୍ରେ ତାଙ୍କୁ ସେଇଠାରୁ ଗିରଫ କରିନେଇ ଉତ୍ତର-ଭାରତର କୌଣସି ନିକାଞ୍ଚନ ପାର୍ବତ୍ୟସ୍ଥ କାରାଗାରରେ ରାଜଦ୍ରୋହୀ ବନ୍ଦୀରୂପେ କଡ଼ା ନଜରବନ୍ଦରେ ରଖିବାକୁ ହେବ । ମହାମାନ୍ୟ ବଡ଼ଲାଟ ସେହି ଆଦେଶନାମାର ଅବିକଳ ନକଲଟିଏ ବିହାର-ଓଡ଼ିଶାର ମାନ୍ୟବର ଗଭର୍ଣ୍ଣରଙ୍କ ନିକଟକୁ ପଠାଇ ତାହାକୁ କଡ଼ାକଡ଼ି ଭାବରେ କାର୍ଯ୍ୟକାରୀ କରିବାପାଇଁ ନିର୍ଦ୍ଦେଶ ଦେଇଥିଲେ ।

ସେତେବେଳେ ପ୍ରବଳପ୍ରତାପୀ ଇଂରେଜ ଶକ୍ତି ବିରୁଦ୍ଧରେ ଭାରତର ଅହିଂସ ମୁକ୍ତି-ସଂଗ୍ରାମ ପୁରା ଦମ୍‌ରେ ଚାଲିଥାଏ । ଲାଟସାହେବଙ୍କ ଅନୁରକ୍ତଭାଜନ ଦେୱାନ ବାହାଦୁର ଲକ୍ଷ୍ମୀଧର ମହାନ୍ତି ଥିଲେ ବ୍ରିଟିଶ୍ ଶାସନର ସଚ୍ଚା ସମର୍ଥକ ଓ ସ୍ତାବକ । ତେଣୁ ବିଲାତ ସରକାରରୁ ଆସିଥିବା ନୃସିଂହଚରଣଙ୍କୁ ଗ୍ରେପ୍ତାର କରିବାର ହୁକୁମନାମା ବିଷୟ ଘରେଇ

ଖବରେ ଅବଗତ ହେବା ତାଙ୍କ ପକ୍ଷରେ ଅନାୟାସରେ ସମ୍ଭବପର ହୋଇପାରିଲା । ତତ୍ପରେ ଦେୱାନ ବାହାଦୁର ମହାନ୍ତି ଅନୁକମ୍ପାପରାୟଣ ମାନ୍ୟବର ବିହାର-ଓଡ଼ିଶା ଲାଟଙ୍କ ଜରିଆରେ ମହାମାନ୍ୟ ବଡ଼ଲାଟଙ୍କୁ ଅପିଲ୍ କରି ଜାମାତା ନୃସିଂହଚରଣଙ୍କ ଗ୍ରେପ୍ତାର ପରୁଆନା ଦୟାର୍ଦ୍ର ହୃଦୟରେ ରଦ୍ଦ କରିବାପାଇଁ ତହିଁରେ ବିନମ୍ର ନିବେଦନ କଲେ । ଦେୱାନ ବାହାଦୁର ମହୋଦୟ ଜାମାତାଙ୍କୁ ନିଜ ପାଖରେ ରଖି ତାଙ୍କର ଯାବତୀୟ ଅଭିଭାବକୀୟ ଦାୟିତ୍ୱ ବହନ କରିବେ ବୋଲି ନିର୍ଭର ପ୍ରତିଶ୍ରୁତି ଦେଲେ ଏବଂ ନୃସିଂହ-ଚରଣ କେବେହେଲେ ସରକାର-ବିରୋଧୀ କୌଣସି ଦଳ ସହିତ ସଂସ୍ରବ ରଖିବେନାହିଁ କି କଂଗ୍ରେସ ପକ୍ଷପାତୀ କୌଣସି ବୈଠକ ବା ସଭାସମିତିରେ ଯୋଗ ଦେବେ ନାହିଁ, ଏପରିକି ଆପତ୍ତିଜନକ ହେଲାଭଳି କୌଣସି ଲେଖା ପତ୍ରପତ୍ରିକାମାନଙ୍କରେ ପ୍ରକାଶ କରିବାକୁ ଦେବେନାହିଁ ବୋଲି ଜାମିନଦାରରୂପେ ସ୍ୱହସ୍ତରେ ମୁଚ୍ଲିକା ଲେଖିଦେଲେ ।

ଦେୱାନ ବାହାଦୁରଙ୍କ ଅପିଲ୍‌କୁ ବିହାର-ଓଡ଼ିଶା ଲାଟ ଯଥେଷ୍ଟ କୋହଳ ମନୋଭାବରେ ସୁପାରିଶ କରି ଦୟାବତାର ବଡ଼ଲାଟଙ୍କ ସୁବିଚାରପାଇଁ ଦିଲ୍ଲୀ ପଠାଇଦେଲେ । ବିବେକବନ୍ତ ବଡ଼ଲାଟ ମହୋଦୟ ଦେୱାନ ବାହାଦୁର ଲକ୍ଷ୍ମୀଧର ମହାନ୍ତିଙ୍କ ଆନୁଗତ୍ୟ ସମ୍ବଳିତ ନମନୀୟ ନିବେଦନପତ୍ରଟି ପାଠକରି ଅତ୍ୟନ୍ତ ପରିତୁଷ୍ଟ ହେଲେ ଏବଂ ବିଲାତ ସରକାରଙ୍କ-ଠାରୁ ଅନୁକୂଳ ଅନୁମତି ଆଣି ନୃସିଂହଚରଣଙ୍କ ଉପରେ ପ୍ରୟୋଗ କରିବାକୁ ସ୍ଥିର ହୋଇଥିବା ଦଣ୍ଡାଦେଶକୁ ପ୍ରତ୍ୟାହାର କରିନେଲେ । ଲାଟଭବନରୁ ଏହି ସୁସମ୍ବାଦ ପାଇ ଲକ୍ଷ୍ମୀଧରବାବୁ ଓ ତାଙ୍କ ପରିବାର ଆଶାତୀତ ଆଶ୍ୱସ୍ତିରେ ଆତ୍ମହରା ହୋଇଗଲେ । ଏସବୁ ବିଷୟରେ କିନ୍ତୁ ନୃସିଂହଚରଣ ସମ୍ପୂର୍ଣ୍ଣ ଅନବହିତ ଥିଲେ । ଲଣ୍ଡନ ଛାଡ଼ି ଯେଉଁଦିନ ଜାହାଜ ଚଢ଼ିବେ ଏବଂ ସେହି ଯାତ୍ରିବାହୀ ଜାହାଜ ଯେଉଁଦିନ ଯେତେଟା ସମୟରେ ବମ୍ବେ ବନ୍ଦରରେ ଲାଗିବ, ତାହାର ନିର୍ଦ୍ଦିଷ୍ଟ ବିବରଣୀ ଶ୍ୱଶୁରଙ୍କୁ ପତ୍ରଦ୍ୱାରା ଜଣାଇଦେଇଥିଲେ । ଉଚ୍ଛ୍ୱସିତ ଆନନ୍ଦରେ କନ୍ୟାକଳତ୍ର-ସମଭିବ୍ୟାହୃତ ଦେୱାନ ବାହାଦୁର କଟକରୁ ମଟରଯାନରେ ବାହାରି ଯାତ୍ରିବାହୀ ଜାହାଜଟି ନିର୍ଦ୍ଧାରିତ ସମୟରେ ବନ୍ଦର ଉପକୂଳ ଧରିବା ପୂର୍ବରୁ ସେଠାରେ ଯାଇ ଉପସ୍ଥିତ ରହିଲେ । ନୃସିଂହଚରଣ ଜାହାଜରୁ ଅବତରଣ କଲାମାତ୍ରେ ଏ ତିନିହେଁ ଧାଇଁଯାଇ ତାଙ୍କୁ ପାଛୋଟି ଆଣିଲେ । ସମସ୍ତଙ୍କୁ ସେହି ମଟରଯାନଟି ଯଥାକାଳରେ ଆଣି କଟକରେ ପହଞ୍ଚାଇଦେଲା । ଘୁହୁଁ ଘୁହୁଁ ନନ୍ଦଘରେ ଆନନ୍ଦ ଉତ୍ସବର କଳକୋଳାହଳ ଆରମ୍ଭ ହୋଇଗଲା ।

ମୁଁ ସେତେବେଳେ ସାରସ୍ୱତ ପ୍ରେସ୍‌ରେ ଅହରହ ଶ୍ରମଦାନ କରି ସରସ୍ୱତୀଙ୍କର ସେବା କରୁଥାଏଁ । ନୃସିଂହବାବୁ ବିଲାତ ଯିବାର ଅବ୍ୟବହିତ ପୂର୍ବରୁ ତାଙ୍କ ସହିତ ମୋର ସ୍ନେହ-ବନ୍ଧନର ସୂତ୍ରପାତ ମାତ୍ର ହୋଇଥିଲା । ବିଲାତରୁ ବାହୁଡ଼ିବା ପରେ ତାହା ଅତି ନିବିଡ଼ ହୋଇଉଠିଲା । ପ୍ରାୟ ପ୍ରତ୍ୟହ ସେ ସାରସ୍ୱତ ପ୍ରେସ୍‌କୁ ଆସନ୍ତି, ସହକାର-ସମ୍ପାଦକ ବାଳକୃଷ୍ଣ ବାବୁଙ୍କ ସହିତ ଭାବବିନିମୟ କରନ୍ତି, ପ୍ରେସ୍ ଛାଡ଼ିବା ଆଗରୁ ମୋ ପାଖରେ ବସି କିଛି ବେଳ ସୁଖଦୁଃଖ ହୁଅନ୍ତି । କେତେ ଆଶା କେତେ ଯୋଜନାର ବୁଢ଼ିଆଣୀ-ଜାଲ

ମନେ ମନେ ବୁଝିପାରିଥିଲେ ସେ । 'କଳ୍ପନାମୂଳେ କାଳ ଥାଇ, ପ୍ରାଣୀ ତା ଜାଣି ନ ପାରଇ ।' ଫିରିଙ୍ଗି ସରକାରର ରକ୍ତଚକ୍ଷୁରୁ ତାଙ୍କୁ ରକ୍ଷା କରିବାପାଇଁ ସ୍ନେହାନ୍ଧ ଶ୍ୱଶୁର ଯେଉଁ ସର୍ତ୍ତାବଳୀ ହାତ କାଟି ଲେଖିଦେଲେ, ତାହା ନୃସିଂହଚରଣଙ୍କ ସାମ୍ବାଦିକ ଓ ରାଜନୀତିକ ଜୀବନକୁ ସବୁଦିନପାଇଁ ପଙ୍ଗୁ ଓ ନିଷ୍କ୍ରିୟ କରିଦେଲା । ଏଣୁ ତାଙ୍କ କଲମରୁ କିଛି ମୂଲ୍ୟବାନ୍ ସାହିତ୍ୟ ବାହାର କରାଇବାପାଇଁ ମୁଁ ଲାଗିପଡ଼ିଲି । ଏହା ଯେତେ ଦୂର ସ୍ମରଣ ହୁଏ ୧୯୩୩।୩୪ ମସିହା ବେଳର କଥା । ଦୀର୍ଘକାଳ ବନ୍ଦୀତରେ ରହି ସେ ଯାହାସବୁ ଦେଖିଲେ, ଶିଖିଲେ, ଜାଣିଲେ ଓ ଅଙ୍ଗେ ନିଭେଇଲେ, ତାହାକୁ ଉପଜୀବ୍ୟ କରି ଖଣ୍ଡିଏ ଉପାଦେୟ ସରସ ପୁସ୍ତକ ପ୍ରଣୟନ କରିବାକୁ ମୁଁ ତାଙ୍କୁ ବାରମ୍ବାର ଜିଗର କଲି । ସେ ମୋ ଜିଗରର ଗୁରୁତ୍ୱ ଅନୁଭବ କରି ନିଷ୍ଠାର ସହିତ ଲେଖା ଆରମ୍ଭ କରିଦେଲେ । ପ୍ରାୟ ଦେଢ଼ ଶହ ପୃଷ୍ଠା ଲେଖା ସରିଯା'ନ୍ତେ ମୁଁ ତାକୁ ଆଣି 'ବନ୍ଦୀତ କଥା' (ପ୍ରଥମ ଭାଗ) ନାମରେ ଛପେଇଦେଲି । ପ୍ରକାଶକ ହେଲା ବାଳକୃଷ୍ଣ ବାବୁଙ୍କ ପ୍ରତିଷ୍ଠିତ 'ସାରସ୍ୱତ ଭଣ୍ଡାର' ପ୍ରକାଶନ ସଂସ୍ଥା । ବହି ଖଣ୍ଡି ବେଶ୍ କାଟତି ହେଲା, ବହୁ ମୁଖରୁ ପ୍ରଶଂସିତ ହେଲା ମଧ୍ୟ । ଉତ୍ସାହିତ ଲେଖକଙ୍କର ଦ୍ୱିତୀୟ ଭାଗର ବିଷୟବସ୍ତୁଗୁଡ଼ିକର କ୍ରମ ଟିପିରଖି କେତେକ ପୃଷ୍ଠା ଲେଖିବାରେ ଲାଗିଥିଲେ, ଏହି ସମୟରେ ଏକ ଦୁରାରୋଗ୍ୟ ଭୟାବହ ବ୍ୟାଧି (Bone T. B.) ତାଙ୍କୁ ଆକ୍ରମଣ କଲା । ପରିବାରରେ ଦାରୁଣ ଶୋକର କରାଳ ଛାୟା ବ୍ୟାପିଗଲା । ନୃସିଂହ ହେଲେ ଶଯ୍ୟାଶାୟୀ । ଦ୍ୱିତୀୟ ଭାଗର ଲେଖା ସେତିକିରେ ଇତି ହେଲା । ସେହି ରୋଗଶଯ୍ୟା ହେଲା ତାଙ୍କର ଶେଷ ଶଯ୍ୟା । କେତୋଟିମାତ୍ର ଦିନ ପାଇଁ ଉତ୍କଳ-ଗଗନରେ ଉଇଁ ଏହି ଉଜ୍ଜ୍ୱଳ ଜ୍ୟୋତିଷ୍କଟି ସର୍ବଗ୍ରାସୀ କାଳ-ବାତ୍ୟାର ନିର୍ମମ ନିର୍ଘାତରେ ନିର୍ବାଣପ୍ରାପ୍ତ ହୋଇ ମହାଶୂନ୍ୟର ଅନନ୍ତ ନୀଳିମାରେ ମିଳାଇଗଲା । 'ନିୟତିଃ କେନ ବାର୍ଯ୍ୟତେ ।'

## (୧୯) ରଚନା ପୁସ୍ତକ ପ୍ରଣୟନ—

ପ୍ରାୟ ବର୍ଷକ ପୂର୍ବେ (୧୯୩୩) ବାଳକୃଷ୍ଣ ବାବୁ ନବ୍ୟ ରଙ୍ଗଢଙ୍ଗର ଛୁଟାଦିଆ ଦୁଇଖଣ୍ଡି ରଚନା ପୁସ୍ତକ ଲେଖିବାପାଇଁ ଆମକୁ ଫରମାସ କରିଥିଲେ—'ଆମକୁ' ବୋଇଲେ ସମ୍ମିଳିତ ଭାବରେ ମତେ ଓ ଭଗବାନବାବୁଙ୍କୁ । ସେହି ଦୁଇଖଣ୍ଡି ମଧ୍ୟରୁ ଖଣ୍ଡିଏ ଚତୁର୍ଥ-ପଞ୍ଚମ ଶ୍ରେଣୀପାଇଁ ଓ ଅନ୍ୟଟି ଷଷ୍ଠ-ସପ୍ତମ ଶ୍ରେଣୀପାଇଁ । ସେ ଏଥିପାଇଁ କ୍ରମାନୁସାରୀ ଗୁଡ଼ିଏ ପରିଚ୍ଛେଦର ନାମ ଖସଡ଼ା ତିଆରିକରି ରଖିଥିଲେ । ସେଥିରେ ଇଂରାଜୀ କମ୍ପୋଜିସନ୍‌ର କେତେକ ଢାଞ୍ଚାକୁ ଓଡ଼ିଆ ରଚନାରେ ପ୍ରବର୍ତ୍ତନ କରିବାର ବ୍ୟବସ୍ଥା କରାଯାଇଥିଲା । ଏ ସମ୍ପର୍କରେ ବାଳକୃଷ୍ଣ ବାବୁ ତାଙ୍କ ଅଭିମୁଖ୍ୟକୁ ଆମ ଆଗରେ ବ୍ୟାଖ୍ୟାନ କରିଥିଲେ । ତାଙ୍କ ମତଲବକୁ ପୁରାପୁରି ଆଖିଆଗରେ ରଖି ଲେଖା ଆଗେଇବାର କଥା । ବସ୍ତୁତଃ ତାହାହିଁ ହେଲା । ଗୋଟିଏ ଗୋଟିଏ ପ୍ରକରଣର ଲେଖା ସରିଗଲେ ତାକୁ ନେଇ ସେ ପଢ଼ନ୍ତି ଏବଂ କିଛି ଇତରବିଶେଷ କରିବାର ଥିଲେ କରନ୍ତି, ଅବଶ୍ୟ ଆମ ସହିତ

ଆଲୋଚନା କରିବା ପରେ । ଏହିରୂପେ ସେ ଉକ୍ତ ବହି ଦୁଇଟିର ପୂର୍ବ ପାଣ୍ଡୁଲିପି ହସ୍ତଗତ କରି ନିଜ ପାଖରେ ରଖିଲେ ।

### (୬୦) ତେଲଙ୍ଗାପେଣ୍ଠରେ ବାପୁଜିଙ୍କର ରାତ୍ରି ରହଣି—

ଖରାଦିନ, ୧୯୩୪ ମସିହା, ମେ ମାସ ଆରମ୍ଭ । କଟକ ସହରର କନ୍ଦିକନ୍ଦି ଘରେ ଘରେ ଚହଲର ତରଙ୍ଗ, ସବୁଠି ସେଇ ଗୋଟାଏ ଚର୍ଚ୍ଚା—"ଗାନ୍ଧି ମହାତ୍ମା ପୁରୀରୁ ପଦଯାତ୍ରା ଆରମ୍ଭ କରି ବାଟରେ ରହି ରହି ଆଜି ସନ୍ଧ୍ୟା ସୁଦ୍ଧା ତେଲଙ୍ଗାପେଣ୍ଠରେ ପହଞ୍ଚିବେ । ସେଠାର ପ୍ରକାଣ୍ଡ ଆମ୍ବବନ ହେବ ତାଙ୍କ ରାତିରହଣିର ନିକାଞ୍ଚନ ଭୂଇଁ । ବାପୁଜିଙ୍କ ପାଦସ୍ପର୍ଶରେ ସେହି ଆମ୍ରକୁଞ୍ଜ ହେବ ପବିତ୍ରିତ, ଚିରସ୍ମରଣୀୟ ପୁଣ୍ୟ ପୀଠ । ମହାତ୍ମାଜିଙ୍କ ପଛେ ପଛେ ସହଯାତ୍ରୀ ହୋଇ ଧାଡ଼ିବାନ୍ଧି ଧାଇଁଛନ୍ତି ଅସୁମାର ଜନପଟଳି, ଆଚଣ୍ଡାଳ ବ୍ରାହ୍ମଣ, ଆବାଳବୃଦ୍ଧବନିତା ।"

କଟକ ସହର ହୋଇଥାଏ ଚଳଚଞ୍ଚଳ, ଆନ୍ଦୋଳନମସ୍ତ । ତାର ପ୍ରାତେଲ୍ଲୀରେ ଜାଗି-ଉଠିଛି ଅପୂର୍ବ ଶିହରଣ, ନାହିଁ-ନ-ଥିବା ଉଲ୍ଲାସର ହିଲ୍ଲୋଳରେ ଦୋଳାୟିତ ପ୍ରାସାଦରୁ କୁଟୀରଯାଏ ପ୍ରତି ଭବନ, ସରଣୀର ଧୂଳିକଣା । ସହସ୍ର ସହସ୍ର ଉତ୍କଣ୍ଠ ସହରବାସିନ୍ଦା ସଜବାଜ ହେଉଛନ୍ତି ଘରଦ୍ୱାର ଛାଡ଼ି ତେଲଙ୍ଗାପେଣ୍ଠ ମେଳାକୁ ଯିବାପାଇଁ, ଜାତିପିତା ଅବତାରୀ ଦେବତା ଗାନ୍ଧି ମହାପ୍ରଭୁଙ୍କୁ ଦର୍ଶନ କରି ଚର୍ମଚକ୍ଷୁ ଚରିତାର୍ଥ କରିବାପାଇଁ । ମୁଁ ମଧ୍ୟ ସେହି ହିଲ୍ଲୋଳରେ ଉଦ୍ବୁଦ୍ଧ ହୋଇ ଧାବମାନ ଜନସ୍ରୋତ ସହିତ ନିଜକୁ ସାମିଲ କରିଦେବାକୁ ନଇବନ୍ଧମୁହାଁ ଧାଇଁଲି । ସେତେବେଳକୁ ଅପରାହ୍ନ ଚାରିଟା ବାଜିବାକୁ କିଛି ବାକି ଥାଏ । ଖଣ୍ଡେ ଦୂରରୁ ଦେଖିଲି, ପରିଶୁଷ୍କ କାଠଯୋଡ଼ି-ଶଯ୍ୟାର ସଦ୍ୟନିର୍ମିତ ଖରାଦିନିଆ ରାସ୍ତା ଏମୁଣ୍ଡ ସେମୁଣ୍ଡ ସାନ୍ଦ୍ରୀଭୂତ ଚଳନ୍ତ ମୁଣ୍ଡମାଳରେ ମଣ୍ଡିତ ହୋଇ ଶ୍ରୀରାମଚନ୍ଦ୍ରଙ୍କ ବାନରସେନା ନିର୍ମିତ ସେତୁବନ୍ଧ ସଦୃଶ ପ୍ରତୀୟମାନ ହେଉଛି । ଯେତେ ଦିଗକୁ ଦୃଷ୍ଟିପାତ କଲି, ସବୁଆଡ଼ୁ ଛୁଟିଛି ପାଗଳ ଜନତାର ଧାର, ଏକମୁହାଁ ଏଇ କାଠଯୋଡ଼ି ବନ୍ଧ ଅଭିମୁଖେ—ସତେ ଯେପରି ଜନଗହଳ କଟକ ସହରଟା ଆଜି ନିଜକୁ ଗୋଟାଗୁଆଁ ଖାଲି କରିଦେଇ ତେଲଙ୍ଗାପେଣ୍ଠରେ ଯାଇ ଅଜାଡ଼ି ହୋଇପଡ଼ିବ ।

'ଲଙ୍ଗଳା ଫକିର' ବିଶ୍ୱବରେଣ୍ୟ ଗାନ୍ଧିଜି ସଦଳବଳ ସନ୍ଧ୍ୟାପୂର୍ବରୁ ତେଲଙ୍ଗାପେଣ୍ଠର ଆମ୍ରବଣୀରେ ପଦାର୍ପଣ କଲେ । ଆମେ ସବୁ ତା' ଆଗରୁ ସେଠି ପହଞ୍ଚିଯାଇଥିଲୁ । ବାତ୍ୟାକ୍ଷିପ୍ତ ବାଲୁକାରାଶିରେ ଆସ୍ତରିତ ସେହି ବିସ୍ତୀର୍ଣ୍ଣ ଭୂଇଁତଳ ସେତେବେଳକୁ ଲୋକ-ପାରାବାରରେ ଲହଡ଼ା ଖେଳୁଥାଏ । ତଥାପି ଚାରିପଟର ଦୂରନ୍ତ ପଲ୍ଲୀମାନଙ୍କରୁ ଜନସଂହତିର ଅଣନିଶ୍ୱାସିଆ ଛୁଟଣି ସେପର୍ଯ୍ୟନ୍ତ ଚାଲୁ ରହିଥାଏ । ବାପୁଜି ଓ ତାଙ୍କ ଦଳୀୟ ଲୋକଙ୍କ ରହଣିପାଇଁ କେତେକ ଅସ୍ଥାୟୀ ଶିବିର ତିଆରି ହୋଇ ରହିଥିଲା । ସେମାନେ ନିଜ ନିଜ ପାଇଁ ନିର୍ଦ୍ଦିଷ୍ଟ ଶିବିରରେ କିଛି ସମୟ ବିଶ୍ରାମ କରି କ୍ଲାନ୍ତି ହରଣ କଲାପରେ ଆୟୋଜିତ ସଭାସ୍ଥଳକୁ ଆଗମନ କଲେ । ମହାତ୍ମାଗାନ୍ଧି ମଞ୍ଚ ଉପରେ ଦଣ୍ଡାୟମାନ ହୋଇ ପୁଞ୍ଜୀଭୂତ

ଲକ୍ଷାଧିକ ଶ୍ରୋତାଙ୍କୁ ଲକ୍ଷ୍ୟ କରି ତାଙ୍କର ଗାମ୍ଭୀର୍ଯ୍ୟମୟ ଭାଷଣ ଆରମ୍ଭ କଲେ । ନୀରବ ନିଶ୍ଚଳ ଉତ୍କଣ୍ଠ ଜନତା ମନ୍ତ୍ରମୁଗ୍ଧ ପ୍ରାୟ ସେହି ଦୁର୍ଲଭ କଥାମୃତକୁ ପାନ କରିବାରେ ନିବିଷ୍ଟ ରହିଲେ । ଉତ୍କଳ ସମଗ୍ର ଭାରତବର୍ଷରେ ଦରିଦ୍ରତମ ପ୍ରଦେଶ ହୋଇଥିବାରୁ ତାହା ଗାନ୍ଧିଜୀଙ୍କ ଗଭୀରତମ ଅନ୍ତସ୍ଥଳକୁ ସର୍ବଦା ଅଧିକାର କରି ରହିଥିଲା । ଦାରିଦ୍ର୍ୟ ସୀମା-ରେଖାର ବହୁ ତଳେ ଥିବା ଓଡ଼ିଶାର ନିରୀହ ନରନାରୀ ଓ ଅର୍ଦ୍ଧାଶନ ଶ୍ରମଜୀବୀ, ବିଶେଷତଃ ନିଷ୍ପେଷିତ ନିଃଶୋଷିତ ବୁଭୁକ୍ଷୁ ଅଛୁତ ଶ୍ରେଣୀ ପ୍ରତି ବାପୁଜୀଙ୍କ ହୃଦୟର ସମ୍ବେଦନଶୀଳତା, ସ୍ନେହଶ୍ରଦ୍ଧା, ଅନୁକମ୍ପା ଥିଲା ସର୍ବାଧିକ । ଏଣୁ ସେ ଅସ୍ପୃଶ୍ୟତା ନିବାରଣ ଉପରେ ସମଧିକ ଗୁରୁତ୍ୱ ଦେଇଥିଲେ ଏବଂ ଅଛୁଆଁ (ତାଙ୍କ ଭାଷାରେ 'ହରିଜନ') ଜାତିର ନରନାରୀଙ୍କୁ ସହୋଦର-ସହୋଦରାର ସମ୍ମାନ ଅର୍ପଣ କରି ଆପଣାର ଜ୍ଞାତିକୁଟୁମ୍ବ ରୂପେ ସମାଦର ସହ ଆଲିଙ୍ଗନ କରିବାକୁ ସମାଜର ପ୍ରତ୍ୟେକଙ୍କୁ ବାଧ୍ୟତାମୂଳକ ଉପଦେଶ ଦେଉଥିଲେ । ଯେ ପର୍ଯ୍ୟନ୍ତ ଏହି ଉପେକ୍ଷିତ ଅବଜ୍ଞାତ ଅସ୍ପୃଶ୍ୟଙ୍କୁ ଆମ ସବର୍ଣ୍ଣ ସମାଜଗୁଡ଼ିକର ଅନ୍ତର୍ଭୁକ୍ତ କରି ନ ଯାଇଛି, ସେପର୍ଯ୍ୟନ୍ତ ସ୍ୱରାଜ୍ୟ ବା ରାମରାଜ୍ୟର କୌଣସି ମୂଲ୍ୟ ନାହିଁ ଏବଂ ବିରାଟ ଭାରତର ଭାଗ୍ୟ ଯେଉଁ ତିମିରରୁ ସେହି ତିମିରରେ ବୁଡ଼ି ରହିଥିବ ବୋଲି ଭବିଷ୍ୟଦ୍ ଦ୍ରଷ୍ଟା ମହାତ୍ମାଗାନ୍ଧି ସ୍ପଷ୍ଟ ବୁଝାଇ ଚେତାବନୀ ଦେଇଥିଲେ ।

ଅସ୍ତାଚଳ ଚୂଡ଼ାଚୁମ୍ବୀ ଦେବ ଦିବାକରଙ୍କ ଲୋହିତ ଅମ୍ବର ଶୀର୍ଷତମ ଶେଷ ଚିହ୍ନାବଶେଷ ଭୂପୃଷ୍ଠରୁ ସମ୍ପୂର୍ଣ୍ଣ ତିରୋହିତ ହେବା ସଙ୍ଗେ ସଙ୍ଗେ ସେହି ଅମ୍ବରମଣ୍ଡଳ ନୀଳ-ଆସ୍ତରଣର ସୁବିସ୍ତୃତ ପରିସର ଝଲି ଉଠିଲା ମାଳ ମାଳ ନକ୍ଷତ୍ରମାଳାର ଉଜ୍ଜ୍ୱଳ ଆଲୋକ-ବିଚ୍ଛୁରଣରେ । ଅନ୍ଧକାରର କାଳିମା ସେ ଘଡ଼ିଟା ଲଜ୍ଜାରେ ସେଠାରୁ ଅପସରିଯାଇ ତସ୍କର ପରି ଦୂରରେ ଲୁଚିରହିଲା । ଗାନ୍ଧିଜୀଙ୍କ ଭାଷଣ ଶେଷ ହେଲା ପରେ ସଭାଜନମାନଙ୍କ ମଧ୍ୟରୁ କେହି କେହି ସନ୍ଦେହମୋଚନପାଇଁ ତାଙ୍କୁ କେତେକ ପ୍ରଶ୍ନ କରିଥିଲେ । ବାପୁଜୀ ସେଗୁଡ଼ିକର ଯଥାଯଥ ଉତ୍ତର ପ୍ରଦାନ କରି ପ୍ରଶ୍ନକାରମାନଙ୍କୁ ସନ୍ତୋଷିତ କରିଥିଲେ । ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ସଭାପତି ପଣ୍ଡିତ ନୀଳକଣ୍ଠ ଦାସଙ୍କ ତତ୍କାଳୀନ ପ୍ରାଇଭେଟ୍ ସେକ୍ରେଟରି ଯୁବନେତା ଚିନ୍ତାମଣି ମିଶ୍ର ଯେଉଁ ପ୍ରଶ୍ନଟି ହିନ୍ଦୀରେ ପଚାରିଥିଲେ, ସେଇଟି କେବଳ ମୋର ମନେରହିଛି । ଓଡ଼ିଆରେ ତାହା ହେଉଛି, "ବାପୁଜି, ଆପଣ ତ ସାତ୍ତ୍ୱିକ ନିରାମିଷ ଆହାରର ପ୍ରବକ୍ତା; ଦୟାକରି ନିର୍ଦ୍ଦେଶ ଦିଅନ୍ତୁ, ଓଡ଼ିଶାବାସୀ ହିନ୍ଦୁ-ମାନେ ମତ୍ସ୍ୟାହାରୀ ହେବା ଉଚିତ ନା ଅନୁଚିତ ।" ସାକ୍ଷାତ୍ ହୃଦୟବତ୍ତାର ଅବତାର ମହାତ୍ମାଜୀଙ୍କର ଉତ୍ତର—"ଏହି ଉତ୍କଳ ପ୍ରାନ୍ତର ମୋଟ ଲୋକସଂଖ୍ୟାର ଅର୍ଦ୍ଧେକରୁ ଅଧିକ ଲୋକଙ୍କୁ ଦୁଇଓଳି ପେଟପୂରା ଦାନା ଜୁଟେ ନାହିଁ । ପୁଣି ସେମାନଙ୍କ ମଧ୍ୟରୁ ଗୋଟାଏ ବଡ଼ଭାଗ ଖାଲିପେଟରେ ହାଅନ୍ନ-ହାଅନ୍ନ ହୋଇ ମୁଠାକ ଅନ୍ନ ଆଶାରେ ଏ ଗାଁ ସେ ଗାଁ ବୁଲୁଛନ୍ତି । ଓଡ଼ିଶା ମୂଲକ ପ୍ରତି ପ୍ରକୃତିମାତାର ଅପାର ଦାନ ଚାରିଆଡ଼େ ବିଛେଇ-ହୋଇ ରହିଛି । ମୂଲକସାରା ନଈ ଉପନଈ ଶାଖା ନଈ ହ୍ରଦ ଦହ ଯୋର ଝର ବିଲ ପୋଖରୀ ଗଡ଼ିଆ ପ୍ରଭୃତିରେ ପରିପୂର୍ଣ୍ଣ । ଏହିସବୁ ଜଳାଶୟର ଜଳଭଣ୍ଡାର ଊଣାଅଧିକେ

ବର୍ଷସାରା ଶହ ଶହ ପ୍ରକାର ମାଛଙ୍କର ମୁକ୍ତ ଖେଳାଶାଳା । ଏହାଛଡ଼ା ନିଃସୀମ ନୀଳିମ ମହୋଦଧି-ଗର୍ଭ ଅକଳନ୍ତ ମତ୍ସ୍ୟସମ୍ପଦର ଅସରନ୍ତି ଗନ୍ତାଘର । ଦୁଃଖୀଦରିଦ୍ର ଅନ୍ନକଷ୍ଟ ଓଡ଼ିଶାବାସୀଏ ଏହି ପ୍ରକୃତିଦତ୍ତ ଜଳାଧାରମାନଙ୍କରୁ ମନଇଚ୍ଛା ମାଛ ମାରି ନିଜ ନିଜ ପରିବାରର ଉଦରଜ୍ୱାଳା ନିବାରଣ କରିପାରିବେ । ଏଥିପାଇଁ କିଛି ଖର୍ଚ୍ଚ ଲାଗିବ ନାହିଁ, ଲାଗିବ କେବଳ ଟିକି ମିହନ୍ତ ।"

ପ୍ରଶ୍ନୋତ୍ତର ସମାପ୍ତି ପରେ ସଭାଭଙ୍ଗ ହେଲା ସିନା, ତା' ପଛେ ପଛେ କିନ୍ତୁ ଛୁଆଁ ଅଛୁଆଁ ନିର୍ବିଶେଷରେ ଏକ ସାର୍ବଜନୀନ ବିରାଟ ପଙ୍‌କ୍ତିଭୋଜନ ସଭା ଆରମ୍ଭ ହୋଇଗଲା । ଶହ ଶହ ଅସବର୍ଣ୍ଣ (ହରିଜନ) ଭାଇଭଉଣୀଙ୍କ ମଝିରେ ଶହ ଶହ ସବର୍ଣ୍ଣ (ଉଚ୍ଚ ଜାତି) ଭାଇଭଉଣୀଙ୍କର ସ୍ୱେଚ୍ଛାକୃତ ଅକୁଣ୍ଠ ମିଳନ ଓ ଏକପଙ୍‌କ୍ତିରେ ଏକତ୍ର ଭୋଜନ—କେଡ଼େ ହୃଦୟାହ୍ଲାଦକ ଅଦୃଷ୍ଟପୂର୍ବ ଅବିସ୍ମରଣୀୟ ଦୃଶ୍ୟ ! ହରିବୋଲ ହୁଳହୁଳି ଶଙ୍ଖଧ୍ୱନି ସହିତ 'ମହାତ୍ମା ଗାନ୍ଧିଙ୍କ ଜୟ' 'ଭାରତମାତାଙ୍କ ଜୟ'ର ଘନ ଘନ ଘୋଷରେ ଆକାଶ ବତାସ ସମ୍ମୋଚ୍ଛଳ ହୋଇଉଠିଲା । ଜାତିର ଉଦ୍‌ଗାତା ଗାନ୍ଧିଜୀଙ୍କ ଅକୁମାରୀ କାଶ୍ମୀରଘୋଷିତ ଉଦାତ୍ତ ଆହ୍ୱାନର ସଦ୍ୟପ୍ରଭାବ ଫଳରେ ଆଜି ଏହି ପବିତ୍ର ପୀଠରେ ଆଚଣ୍ଡାଳଦ୍ୱିଜ 'ସର୍ବେ ହୋଇଲେ ଏକାକାର, ନରଖି ଭେଦର ବିଚାର' । ସ୍ୱୟଂ ମହାତ୍ମାଙ୍କ ଏହି ଐତିହାସିକ ପ୍ରାଧାନ୍ୟସଂପନ୍ନ ସାଂପ୍ରଦାୟିକତାବର୍ଜ୍ଜିତ ଏକପଙ୍‌କ୍ତିସ୍ଥ ଭୋଜିସଭାର କେନ୍ଦ୍ର-ସ୍ଥଳରେ ହରିଜନ ପଙ୍ଗତଙ୍କ ଗହଣରେ ବସି ଆହାର କରିବା ଘଟଣା ଭାରତର ଜାତୀୟ ଇତିହାସରେ ନବଜାଗୃତିର ଏକ ରୋମାଞ୍ଚକର ଅଧ୍ୟାୟ ସୃଷ୍ଟି କଲା ।

ସାର୍ବଜନୀନ ପଙ୍‌କ୍ତିଭୋଜନ ପର୍ବ ସଫଳ ସମାରୋହ ସହ ସାଙ୍ଗ ହେଲା ପରେ ବାପୁଜୀ ଓ ତାଙ୍କ ସାଥୀ ଦଳ ସେଥୀ ଶିବିରକୁ ବାହୁଡ଼ିଗଲେ । ଗାନ୍ଧିଦର୍ଶନମୁଗ୍ଧ ଅନେକାନେକ ଆଗନ୍ତୁକ ସ୍ୱ ସ୍ୱ ଗୃହମୁଖୀ ହେବା ଫଳରେ ସେହି ପ୍ରକାଣ୍ଡ ଜନଗହଳ ସ୍ଥଳଟି କ୍ରମଶଃ ଜନବିରଳ ହେବାକୁ ଲାଗିଲା । ନିଶାର୍ଦ୍ଧ ସୁଦ୍ଧା ପ୍ରଶସ୍ତ ଆମ୍ରବୀଥି ତଳଟା ଫାଙ୍କାପଡ଼ିଗଲା । ଯେଉଁ ଅଳ୍ପ କେତେକ ଆଗନ୍ତୁକ ରହିଲେ, ସେମାନେ ରାତ୍ରିର ଅବଶିଷ୍ଟ ସମୟତକ ସୁବିଧାରେ ବିଶ୍ରାମିବାକୁ ଗୋଟିଏ ଗୋଟିଏ ବୃକ୍ଷମୂଳ ଆଦରିଗଲେ । ମୁଁ ସୁରୁଖ ଆଶ୍ରୟସ୍ଥାନଟିଏ ତଲାସିବାପାଇଁ ଏଠି ସେଠି ପ୍ରୟାସ କଲେ ମଧ୍ୟ ସଫଳକାମ ହୋଇପାରିଲି ନାହିଁ । ଶେଷରେ ଗୋଟାଏ ଏକକଡ଼ିକିଆ ଖୋଲା ଜାଗାରେ ଲମ୍ବା ନଡ଼ିଆଛପାଟିଏ ବେଦାବେଦାର ଅବସ୍ଥାରେ ପଡ଼ିରହିଥିବାର ଦେଖି ସେଠାକୁ ଧାଇଁଲି ଏବଂ ତାହାରି ଉପରେ ସୁଲୁସୁଲିଆ ପବନରେ ଶୋଇ ଶାନ୍ତିରେ ସମୟ ବିତାଇଦେବି ବୋଲି ସ୍ଥିର କଲି । ଛପା ଉପରେ ବସିପଡ଼ିଲି ମାତ୍ରେ ସାମନା ବାଲି ସ୍ତର ଭିତରୁ ଉଙ୍କିମାରୁଥିବା ଚକ୍‌ଚକ୍ ଗୋଟାଏ କି ଜିନିଷର ସରୁଆ ଧାରପଟଟି ମୋ ଆଖିକି ବଡ଼ ଜୋର୍ ଆକର୍ଷଣ କଲା । କୌତୂହଳପରବଶ ହୋଇ ବାଲିକି ଉଖାରି ଫେଲେଇଦେଲାବେଳକୁ ବାହାରିପଡ଼ିଲା ଗୋଟାଏ ମହାରାଣୀମାର୍କା ନିଦା ରୁପାଟଙ୍କା । ସେହି ମୁଦ୍ରାସମ୍ପଦଟି ଦେଖି ଆନନ୍ଦରେ ବିଭୋର ହେଲି ସେତିକି, ଗୁରୁତର ବିପଦଟାଏ ଆଦରି ବିବ୍ରତ ହେଲି ତତୋଽଧିକ ।

ଏ ଟଙ୍କାଟି କାହାର ? କିଏ ଏହାକୁ ହଜାଇଲା ? କିପରି ସେ ଲୋକର ଠାଁ ଜାଣିବି ? ଟଙ୍କାଟି କିପରି ତା' ହାତକୁ ଯିବ ? କେତେ ମନବେଦନରେ ସେ ଘାଣ୍ଟି ହେଉ ନ ଥିବନ୍ତି ! ଇତ୍ୟାଦି କେତେ ଦୁଶ୍ଚିନ୍ତା ମୋ ମୁଣ୍ଡକୁ ଘାରି ଅଥୟ କଲା । ଅଥଚ ଶୋଚିବି କ'ଣ, ଛପାଟିରେ ମନମାରି ବସିରହି ଶ୍ରାନ୍ତକ୍ଳାନ୍ତ ମସ୍ତିଷ୍କରେ କେବଳ ସେହି ଟଙ୍କାର ଦୁର୍ଭାବନା ହିଁ କରୁଛି, ଏହି ସମୟରେ ଉଦୀୟମାନ କଂଗ୍ରେସୀ ଯୁବବକ୍ତା ରାଜକୃଷ୍ଣ ବୋଷ ଦୂରରୁ ମତେ ଦେଖିପାରି ମୋ ନିକଟକୁ ଆସିଲେ । ସେତେବେଳକୁ ପାହାନ୍ତି ପହର ପାଖେଇ ଆସୁଥାଏ । ଏଥର ଯାମଘୋଷୀ ତଟସ୍ଥ ଗ୍ରାମ୍ୟକୁକୁଡ଼ା ତାର କଣ୍ଠ-ନାଗରା ବଜାଇ ପାହାନ୍ତା-ପ୍ରବେଶରେ 'ଉତ୍ତିଷ୍ଠତ, ଜାଗ୍ରତ' ମନ୍ତ୍ରକୁ ଦୋହରେଇ ପୋହରେଇ ଘୋଷଣା କରିବାକୁ ସଜ ହୋଇଯିବ ।

ଭାରତୀୟ କଂଗ୍ରେସ ମହାନୁଷ୍ଠାନରେ ସମାନ୍ତରାଳ ଶକ୍ତିଧାରୀ ଜବାହରଲାଲ ନେହେରୁ ଓ ସୁଭାଷଚନ୍ଦ୍ର ବୋଷଙ୍କ ସମକାଳୀନ ଅଭ୍ୟୁଦୟ ପରି ସେତେବେଳେ ଉତ୍କଳୀୟ କଂଗ୍ରେସ ଅନୁଷ୍ଠାନରେ ସତ୍ୟବାଦୀ ନେତୃବୃନ୍ଦଙ୍କ ପଛକୁ ଉଠିଆସୁଥା'ନ୍ତି ସମବୟସୀ ଦୁଇ ତେଜସ୍ୱାନ୍ ଯୁବଜ୍ୟୋତି ଯଦୁମଣି ମଙ୍ଗରାଜ ଓ ରାଜକୃଷ୍ଣ ବୋଷ । ଉଭୟଙ୍କର ପାଇକଚ୍ଛଭିଡ଼ା ଘୋଡ଼ାଧାଉଡ଼ା ଯୋଡ଼ି ବୁଲି କଟକ ରାଜଦାଣ୍ଡରେ ଏକ ଉପଭୋଗ୍ୟ ବର୍ଣ୍ଣାଢ୍ୟ ଦୃଶ୍ୟରୂପେ ସହସ୍ର ଚକ୍ଷୁ ଆକର୍ଷଣ କରୁଥିଲା । ମୁଁ ଯେଉଁ ଟ୍ରେଡ଼ିଂ କମ୍ପାନୀରେ ମୋ' କର୍ମଜୀବନର ଅସ୍ମାରମ୍ଭ କରିଥିଲି, ରାଜକୃଷ୍ଣ ବାବୁ ସେହି ଯୌଥ ବ୍ୟବସାୟ ସଂସ୍ଥାର ଜଣେ ସାଧାରଣ ଅଂଶୀଦାର (share-purchaser) ଥିଲେ । ତେଣୁ ସେହି ସୂତ୍ରରୁ ହିଁ ମୋ' ସହିତ ତାଙ୍କର ପରିଚୟର ଆରମ୍ଭ ଓ କ୍ରମଶଃ ଆତ୍ମୀୟତାର ଉତ୍ତରୋତ୍ତର ବୃଦ୍ଧି ।

ମୋ ମୁଖ-ଦର୍ପଣରୁ ଆଭ୍ୟନ୍ତରିକ ଦୁର୍ମନାୟମାନତାର ଅଭାସ ପାଇ ରାଜକୃଷ୍ଣ ବାବୁ ମତେ ପଚାରିଲେ, "ଏତେ ରାତି ପର୍ଯ୍ୟନ୍ତ ଅନିଦ୍ରାରେ ବସିରହିଛ କାହିଁକି ? କ'ଣ ଡର ମାଡ଼ୁଛି କି ?"

ମୁଁ—"ହଁ"

ସେ—"ଏଇଟା ତୋଟାର କେପଟିଆ ନିର୍ଜନ ଜାଗା ବୋଲି ଖାଁ-ଖାଁ ଲାଗୁଛି କି ?"

ମୁଁ—"ନା"

ସେ—"ତେବେ କାହାକୁ ଆଉ ଡର ?"

ମୁଁ—"ଗୋଟାଏ ବିପଦକୁ ।"

ସେ—"ସେ ପୁଣି କି ବିପଦ ?"

ମୁଁ ମୋର ସ୍ୱେଚ୍ଛାବଶତ ବିପଦଟିର ପୂର୍ଣ୍ଣ ବିବରଣୀ ତାଙ୍କ ଆଗରେ ବର୍ଣ୍ଣନ କଲି । ରାଜକୃଷ୍ଣବାବୁ ତାହା ଶୁଣି ମୋ' ନିଜ ସୃଷ୍ଟ ସେହି ବିପଦଟିର ଅଯଥା ଗୁରୁତାକୁ ନିତାନ୍ତ ନଗଣ୍ୟ ଓ ମୂଲ୍ୟହୀନ ବିଦ୍ରୂପର ଫୁଙ୍କାରରେ ଉଡ଼ାଇଦେଲେ । ମୋର ଗୁରୁତର ଚିନ୍ତାକୁଳତାକୁ ପାଦଙ୍କରେ ପୁଛା ନ ପକାଇ ସେ ଅତି ଲଘୁ ମୂଲ୍ୟାୟନ କରୁଥିବାରୁ ମୁଁ ବିସ୍ମୟଚକିତ

ହୋଇ ତାଙ୍କ ମୁହଁକୁ କେବଳ ବଲବଲ ଚାହିଁରହିଥାଏ । ସେ ରହସ୍ୟାବୃତ ଘଟଣାଟିର ଜନୈକର ଉପରୁ ଯୋଡ଼ଣିଟି କାଢ଼ିଦିଅନ୍ତେ ଜଳନ୍ତା ନିଆଁରେ ପାଣି ପଡ଼ିଗଲା ପରି ମୋ ଅନ୍ତଃସ୍ଥଳରେ ଜଳୁଥିବା ଦୁଶ୍ଚିନ୍ତାର ଦାବାଗ୍ନିଟା ଅପ୍‌କନା ଲିଭିଗଲା । ରାଜକୃଷ୍ଣବାବୁ ମତେ ସାନ୍ତ୍ୱନିତ କରିବା ସହ ବିପନ୍ମୁକ୍ତ କରିବାକୁ ଯାଇ ବୃତ୍ତାନ୍ତଟି ଏହିପରି ବଖାଣି କଲେ, "ମୁଁ ଗାନ୍ଧିଜୀଙ୍କ ପ୍ରାଇଭେଟ୍ ସେକ୍ରେଟେରି ମହାଦେବ ଦେଶାଇଙ୍କ ପାଖରେ ବହୁ ସମୟ ଧରି ବର୍ତ୍ତମାନ ଆସୁଛି । ତାଙ୍କ ଶିବିରରୁ ବାହାରିବା ମାତ୍ରେ ଦୈବାତ୍ ତୁମ ଉପରେ ଦୃଷ୍ଟି ପଡ଼ିବାରୁ ଏଠାକୁ ଆସିଲି । ଦେଖିଲି, ମହାଦେବବାବୁ ତାଙ୍କ ଶିବିରରେ ମହା ଚିନ୍ତାରେ ଦାଉ ହେଉଛନ୍ତି । ତୁମେ ଯାହା ପାଇ ବିପଦ ଜମ୍ବାଳରେ ଘାଣ୍ଟି ହେଉଥିଲ, ସେ ତାହାକୁ ହିଁ ହଜାଇ ମହାବିପଦର ବନସ୍ତରେ ଭୁଆଁ ବୁଲୁଛନ୍ତି । ମହାଦେବ ବାବୁ ଆଜିକାର ଟଙ୍କା ପଇସା ହିସାବକୁ ଏପର୍ଯ୍ୟନ୍ତ ଠିକ୍ କରିପାରି ନାହାନ୍ତି । ଆୟରୁ ବ୍ୟୟ ବାଦ୍‌ଯାଇ ଅବଶିଷ୍ଟ ଯେତେ ଟଙ୍କା କ୍ୟାସ୍ ରହିବାର କଥା, ତହିଁରୁ ଭୁଲ୍ ଗୋଟିଏ ଟଙ୍କା ଊଣା ହେଉଛି । ଯେତେ ମୁଣ୍ଡ ଖେଳାଇଲେ ମଧ୍ୟ ସେ ଟଙ୍କାଟିର ହିସାବ ତାଙ୍କର ଆଦୌ ମନେପଡ଼ୁ ନାହିଁ । ଗାନ୍ଧିଜୀ ସଭାସ୍ଥଳରେ ଥିଲାବେଳେ ମହାଦେବ ବାବୁ କ୍ୟାସ୍ ବାକ୍ସ ଓ ଟିପାଖାତା ସହିତ ଏହି ଛପାରେ ବସି ଟଙ୍କାପଇସା ଦିଆନିଆ କରୁଥିଲେ । ତୁମେ ଯେଉଁ ଟଙ୍କାଟି ବାଲିଭିତରୁ ପାଇଲ, ସେଇ ଟଙ୍କାଟି ମହାଦେବ ବାବୁ କାର୍ଯ୍ୟବ୍ୟସ୍ତ ଥିବା ଅବସ୍ଥାରେ ତାଙ୍କ ହାତରୁ ଅଜ୍ଞାତସାରରେ ଗଳିପଡ଼ି ବାଲିଭିତରକୁ ପଶିଯାଇଥିବ । ଏବେ ମୋ ସହିତ ହିସାବରକ୍ଷକ ଦେଶାଇଙ୍କ ଶିବିରକୁ ଚାଲ । ତାଙ୍କ ହଜିଲା ଟଙ୍କାଟି ତାଙ୍କ ହାତରେ ଅର୍ପଣ କରିଦେବ—ତାଙ୍କ ମୁଣ୍ଡବ୍ୟଥା ଦୂର ହୋଇଯିବା ସଙ୍ଗେ ତୁମ ମୁଣ୍ଡଘୂରା ମଧ୍ୟ ବଳେ ଥମିଯିବ ।"

ମାନସିକ ଗଦ୍‌ଗଦତାରେ ଉଦ୍‌ଦୀପ୍ତର ହୋଇ ପ୍ରାଣ ମୋର ପୁଲକରେ ଫୁଲିଉଠିଲା । ଛପା ଛାଡ଼ି ରାଜକୃଷ୍ଣ ବାବୁଙ୍କ କ୍ଷିପ୍ର ଗତିର ପଦକ୍ଷେପ ସହିତ ପ୍ରତିଯୋଗିତା କରିବାକୁ ବାଧ୍ୟ ହେଲି । ଲକ୍ଷ୍ୟ ସ୍ଥଳରେ ଉପନୀତ ହେଲାବେଳେ ଦେଖିଲି, ଅନନ୍ୟମନା ମହାଦେବ ଗାଲରେ ମୁଷ୍ଟିଭରା ଦେଇ ଧ୍ୟାନମଗ୍ନ ତପସ୍ୱୀ ସଦୃଶ ନିବିଷ୍ଟ ନିଶ୍ଚଳ । ରାଜକୃଷ୍ଣ ବାବୁଙ୍କ ପଶ୍ଚାତରୁ ଉହୁଙ୍କି ମୁଁ ସମ୍ମୁଖ ଭାଗକୁ ଝୁଙ୍କି ପଡ଼ି ତାଙ୍କୁ ପ୍ରଣାମ କଲି । ନିବିଷ୍ଟତା ଭଙ୍ଗ କରି ମହାଦେବ ମୋ ପ୍ରତି ଆଖି ଟେକି ପ୍ରତିପ୍ରଣାମ ଜଣାଇଲେ । ସେହି ଅବସରରେ ମୁଁ ତାଙ୍କ ହଜିଲା ଧନଟିକୁ ତାଙ୍କ କରପୁଟରେ ଅର୍ପିଦେଲି । ନିଜ ହାତତଳରେ ଚକ୍‌ଚକିଆ ଚେକିଆ ମୁଦ୍ରାଟିକୁ ଦେଖିଲାମାତ୍ରେ ଚମକିଉଠି ସେ ବିସ୍ଫାରିତ ଡୋଳାରେ ରାଜକୃଷ୍ଣଙ୍କ ପ୍ରତି ଦୃଷ୍ଟିପାତ କଲେ । ରାଜକୃଷ୍ଣ ବାବୁ ମୋର ସଂକ୍ଷିପ୍ତ ପରିଚୟ ପ୍ରଦାନ କରି ଅନ୍ତର୍ହିତ ମୁଦ୍ରାଟିର ଉଦ୍ଧାର କାହାଣୀରେ ସଂଶ୍ଳିଷ୍ଟ ମୋ ପୃଷ୍ଠଭୂମିକା ତାଙ୍କୁ ସବିସ୍ତାର ଶୁଣାଇଲେ । ମହାଦେବ ବାବୁ ଅତିଶୟ ପ୍ରୀତ ହୋଇ କୃତଜ୍ଞତା ଜ୍ଞାପନପୂର୍ବକ ମତେ ଅଜସ୍ର ସାଧୁବାଦ ଦେଲେ । କେବଳ ସେତିକି ନୁହେଁ, ଗାନ୍ଧିଜୀ ବ୍ରାହ୍ମମୁହୂର୍ତ୍ତରେ ଶଯ୍ୟୋତ୍ଥାନ କରି ସ୍ନାନାଦି ନିତ୍ୟନୈମିତ୍ତିକ କର୍ମ ଓ ପ୍ରାର୍ଥନା ସାରିବା ପରେ ମତେ ତାଙ୍କ ସହିତ ଭେଟ କରାଇବେ

ଏବଂ ମୋ ଉପସ୍ଥିତିରେ ଏହି ଝଙ୍କାଟିର ରହସ୍ୟଜନକ ଅନ୍ତର୍ଦ୍ଧାନ ଓ ଦୈବକ୍ରମେ ପୁନଃ ପ୍ରକଟନର ବିସ୍ମୟକର କାହାଣୀ ତାଙ୍କୁ ଜଣାଇବେ ଓ ତାଙ୍କ ନିଜସ୍ୱ ପତ୍ରିକାରେ ତେଲଙ୍ଗାପେଣ୍ଠରେ ସଂଘଟିତ ଏହି ପ୍ରଶଂସାର୍ହ ଲୋକଚରିତ୍ରଗଠନ-ସହାୟକ ଆଦର୍ଶର ପୂର୍ଣ୍ଣାଙ୍ଗ ବିବରଣ ଉଲ୍ଲେଖ କରିବାକୁ ବାପୁଜୀଙ୍କୁ ଅନୁରୋଧ କରିବେ ବୋଲି ଦମ୍ଭର ସହିତ ଆମ ଆଗରେ ପ୍ରକାଶ କଲେ ।

ମୁଁ ଓ ରାଜକୃଷ୍ଣବାବୁ ଦେଶାଇ ମହାଶୟଙ୍କ ଶିବିରରୁ ନିଷ୍କ୍ରାନ୍ତ ହୋଇ ଦୁଇ ଭିନ୍ନ ଦିଗକୁ ଗତି କଲୁଁ—ମୁଁ ମୋ ପୂର୍ବ ଆସ୍ଥାନ ନଡ଼ଆଛପାକୁ ବାହୁଡ଼ି ତହିଁରେ ବିଶ୍ରାମ କଲି, ରାଜକୃଷ୍ଣ ବାବୁ ମୁହାଁଇଲେ ତାଙ୍କ ପଙ୍ଗତଙ୍କ ବିଶ୍ରାମସ୍ଥେଳୀକୁ ।

ନିଦ୍ରା ଯିବାର ଅବକାଶ ମୋ'ପାଇଁ ସେତେବେଳେ ଆଦୌ ନଥାଏ । ମୁଁ ଉନ୍ମୀଳ ଚକ୍ଷୁରେ ଗଡ଼ପଡ଼ ହୋଇ ମହାଦେବ ବାବୁଙ୍କ ନିର୍ଦ୍ଦେଶାନୁଯାୟୀ ତାଙ୍କ ନିକଟକୁ ଯିବା ସମୟକୁ ଉଦ୍‌ବିଗ୍ନ ଚିତ୍ତରେ ଅପେକ୍ଷା କରିଥାଏଁ । ହଠାତ୍ ଏହି ସମୟରେ ନିଶୀଥିନୀର ନିସ୍ତବ୍‌ଧତା ଭଙ୍ଗି ଧ୍ୱନିତ ହୋଇଉଠିଲା ବ୍ରାହ୍ମମୁହୂର୍ତ୍ତବିଘୋଷକ ଆଶ୍ରମିକ ଘଣ୍ଟି । ଶିବିରେ ଶିବିରେ ଖେଳିଗଲା ଜାଗରିତ କଣ୍ଠର ମୃଦୁ ଗୁଞ୍ଜନ—ଗାନ୍ଧିଜୀଙ୍କ ସମେତ ସମସ୍ତ ଶିବିରବାସୀ ତତ୍‌କ୍ଷଣାତ୍ ଶଯ୍ୟା ତେଜି ସ୍ୱ ସ୍ୱ ପ୍ରାତଃପୂର୍ବ ନିତ୍ୟକୃତ୍ୟ ସମ୍ପାଦନରେ ଲାଗିଗଲେ, କାରଣ ସୂର୍ଯ୍ୟୋଦୟର ଠିକ୍ ପ୍ରାକ୍‌କାଳରେ ମହାତ୍ମାଜୀ ତେଲଙ୍ଗାପେଣ୍ଠ ଛାଡ଼ି ପରଦିବସର ପଦଯାତ୍ରା କାର୍ଯ୍ୟକ୍ରମ ଅନୁକୂଳ କରିବେ ।

ସେହି ସତର୍କକାରୀ ଘଣ୍ଟିର ଆବାଜ ଶୁଣିଦେବା ମାତ୍ରେ ଚମକିଲି ପରି ଧଡ଼ପଡ଼ ହୋଇ ଉଠିପଡ଼ି ଦ୍ରୁତ ଦମ୍ଭ କରିବାକୁ ଛପାରେ ଟିକିଏ ବସିଲି; ମାତ୍ର ସେ ଉଚ୍ଚାଟିଆ ବେଳର ପରିସ୍ଥିତି ବେଶୀ କ୍ଷଣ ବସାଇଦେଲା ନାହିଁ—ଗ୍ରଷ୍ଟ ପିଠି ମତେ ଶିରବ୍ୟସ୍ତ କରି ମହାଦେବ ଦେଶାଇଙ୍କ ଶିବିରରେ ନେଇ ଢୁକାଇଦେଲା । ସେତେବେଳକୁ ଗାନ୍ଧିଜୀଙ୍କ ପ୍ରତ୍ୟୂଷ ପ୍ରାର୍ଥନା ଶେଷ ହେବା ଉପରେ । ମହାଦେବ ବାବୁ ଇତିପୂର୍ବରୁ ଚର୍ଚ୍ଚିତ ଝଙ୍କାଟିର ହଜିବା ଓ ମିଳିବା ଇତିହାସ ମହାତ୍ମା ଗାନ୍ଧିଙ୍କୁ ଅବଗତ କରାଇସାରିଥିଲେ । ଏବେ ମତେ ନେଇ ତାଙ୍କ ସାମନାରେ ଉଭା କରାଇଦେଲେ । ମାନସ-ପ୍ରସ୍ତରରେ ଭକ୍ତି ଓ ଭକ୍ତିର ମଣିକାଞ୍ଚନ ସଂଯୋଗ ଘଟିଲେ ମଣିଷ ନିଜକୁ ତୃଣାଦପି ସୁନୀଚ ମଣି ଧୂଳିତଳରେ ଲୋଟି ତାହାକୁ ତୂଳତଳରୁ ଅଧିକତର କୋମଳ ଅନୁଭବ କରେ । ମୁଁ ଜଗଦ୍‌ଗୁରୁ ଗାନ୍ଧି ମହାରାଜଙ୍କ ପବିତ୍ର ସାନ୍ନିଧ୍ୟ ଲାଭ କରି ତାଙ୍କ ପାଦତଳେ ଲୋଟିଗଲାବେଳେ ପଙ୍କଜାତ ପଦ୍ମପରି ନିଜକୁ ପରମ ଭାଗ୍ୟବନ୍ତ ମନେକଲି । ମହାତ୍ମାଜୀ ଆଶୀର୍ବାଦପୂରିତ ମଧୁର ଭାଷାରେ ଓ ଉପଦେଶ ପୂରିତ ସମ୍ପର୍କରେ ମତେ ଏହି ମର୍ମରେ କହିଲେ—

"ତୁମର ଚିତ୍ତବୃତ୍ତିର ସାଧୁତା ଓ ବିବେକବାଣୀର ଶୁଦ୍ଧତାର ପ୍ରକୃଷ୍ଟ ପରିଚୟ ମହାଦେବଜୀଙ୍କ ମୁଖରୁ ପାଇ ମୁଁ ଏକାନ୍ତ ମୁଗ୍‌ଧ ହୋଇଛି । ତୁମଠାରେ ପରିଦୃଷ୍ଟ ନିର୍ମଳ ଗୁଣରେ ଅଧିକାରୀଙ୍କ ସଂଖ୍ୟା ଯଦି ଚକ୍ରବୃଦ୍ଧି ହାରରେ ଅଭିବୃଦ୍ଧ ହୋଇପାରନ୍ତା ଓ

ସେହି ଗୁଣଧରମାନଙ୍କଦ୍ୱାରା ସଂଗଠିତ ଗୋଟିଏ ଲେଖାଏଁ ଯୁବଜାଗରଣ ସଂଘ ପ୍ରତ୍ୟେକ ପ୍ରାନ୍ତରେ ପ୍ରତିଷ୍ଠିତ ହୋଇ ଜାତୀୟ ଚରିତ୍ରରେ ସଂସ୍କାର ଆଣିପାରନ୍ତା, ତାହାହେଲେ ମୋର ସ୍ୱପ୍ନର ଭାରତ ଅନତିକାଳ ମଧ୍ୟରେ 'ରାମରାଜ୍ୟ'ରେ ପରିଣତ ହୋଇଯାନ୍ତା । 'ରାମରାଜ୍ୟ' ଦିବ୍ୟଜୀବନର ଭୋଗଭୂମି ହେଲେହେଁ ତାହା ସ୍ୱର୍ଗରାଜ୍ୟରୁ ଓହ୍ଲାଏ ନାହିଁ—ଏଇ ଭାରତମାଟିରୁ ହିଁ ତାର ସୃଷ୍ଟି ଓ ପ୍ରକାଶ, ଏଇ ଭାରତମାଟିରେ ହିଁ ତାର ପୁଷ୍ଟି ଓ ବିକାଶ । ନିକଟ ଭବିଷ୍ୟର 'ସ୍ୱରାଜ' ବ୍ୟବସ୍ଥାରେ ଯେତେବେଳେ ରାଜାଙ୍କଠାରୁ ପ୍ରଜାଙ୍କ ପର୍ଯ୍ୟନ୍ତ, ଶାସକଙ୍କଠାରୁ ଶାସିତ ପର୍ଯ୍ୟନ୍ତ ପ୍ରତ୍ୟେକ ବ୍ୟକ୍ତିର ମନ, ବଚନ ଓ କର୍ମରେ ସତ୍ୟ, ଧର୍ମ ଓ ନ୍ୟାୟର ପୂର୍ଣ୍ଣ ପରିପ୍ରକାଶ ଘଟିବ, ସେତେବେଳେ ହିଁ ତାକୁ 'ରାମରାଜ୍ୟ' କୁହାଯିବ ।''

ଦେବାଂଶୀ ବାପୁଜୀଙ୍କ ମୁଖନିଃସୃତ ଏହି ବାକ୍ୟାମୃତକୁ ଲୋଭୀଭକ୍ତ ଚାତକରେ ଆକଣ୍ଠ ପାନ କରି ମେଲଣି ମାଗୁଣିର ପ୍ରତୀକସ୍ୱରୂପ ତାଙ୍କର ପାଦାରବିନ୍ଦ ଚୁମ୍ବନପୂର୍ବକ ସେଠାରୁ ପ୍ରତ୍ୟାବୃତ୍ତ ହେଲି । ବାହାରକୁ ଆସି ଦେଖିଲି, ପାତଳ କାଳି ଅନ୍ଧାରର ଜାଲଜାଲୁଆ ଝାପ୍‌ସା ଜାଲଟା ବେଗି ବେଗି କଟି କଟି ଯାଉଛି, ଉଷାର ଟହଟହିଆ ପାଟଳ ଛଟା ପୂର୍ବ ପଟୁଁ ଫିଟି ଫିଟି ଆସୁଛି । ଆଉ, ଗାନ୍ଧିଜୀଙ୍କ ପଦଯାତ୍ରାର ପରିଚରଣରେ ସହଯାତ୍ରୀ ହେବା ଆଶାରେ ସହସ୍ରାଧିକ ନବ ଆଗନ୍ତୁକ ଅମ୍ବତରୁ ଏଥିକାର ପରିଚ୍ଛଦତଳେ ଜମାଟ ବାନ୍ଧି ଗଲେଣି । ପୁଣି କେତେ ଆଡ଼ୁ ଦଳ ଦଳ ଲୋକ ଧାଡ଼ି ବାନ୍ଧି ପିମ୍ପୁଡ଼ିଧାର ପରି ଧାଇଁଛନ୍ତି ପଥ ଅପଥ ନ ମାନି ଏଇ ନୂତନ ଗାନ୍ଧିପୀଠ ଆଡ଼କୁ ।

## (୨୧) ବନ୍ଧୁ-ବିତାଡ଼ନର ପ୍ରତିବାଦରେ 'ସାରସ୍ୱତ' ତ୍ୟାଗ—

ମସିହା ୧୯୩୪, ମାସ ସେପ୍‌ଟେମ୍ବର, ତାରିଖ ପହିଲା । କି ଦୁର୍ଦ୍ଦିନ ଥିଲା ସେଇଟା କେଜାଣି, ସାରସ୍ୱତ ପ୍ରେସର ନିସ୍ତରଙ୍ଗ ଶାନ୍ତ ପୋତାଶ୍ରୟକୁ ହଠାତ୍ ଦୋହଲାଇଦେଲା ଗୋଟାଏ ପ୍ରଳୟଙ୍କର ପ୍ରଚଣ୍ଡ ପ୍ରଭଞ୍ଜନ । ଅତି ଅପ୍ରତ୍ୟାଶିତ ଭାବରେ ବନ୍ଧୁ ଭଗବାନ ପତିଙ୍କ ଉପରେ ଜାରି କରାଗଲା ପ୍ରୋପ୍ରାଇଟର୍ ଦାଳାକୃଷ୍ଣ କରଙ୍କ ସ୍ୱାକ୍ଷରଯୁକ୍ତ ଏକ ମାସିକିଆ ନୋଟିସ, ଯହିଁରେ ଲେଖା ଥିଲା—ଆର୍ଥିକ ଅସ୍ୱଚ୍ଛଳତା ଦୂର କରିବାର ପ୍ରଥମ ପଦକ୍ଷେପ ସ୍ୱରୂପ ତାଙ୍କ ଚାକିରି ପଦଟି ଉଠାଇଦିଆଯାଉଥିବାରୁ ଦୁଃଖର ସହିତ ତାଙ୍କୁ ଆସନ୍ତା ଅକ୍ଟୋବର ପହିଲାଠାରୁ ବିଦାୟ ଦେବାକୁ ଏହି ଅନୁଷ୍ଠାନ ବାଧ୍ୟ ହେଲା ।

ନିରୁପାୟ ବନ୍ଧୁ ମୋର ନୋଟିସ-ନିର୍ଦ୍ଧାରିତ ତାରିଖଠାରୁ କର୍ମସ୍ଥଳୀ ତ୍ୟାଗ କରିବାକୁ ପ୍ରସ୍ତୁତ ହୋଇଯିବା ସଙ୍ଗେ ସଙ୍ଗେ ଅନ୍ୟତ୍ର କର୍ମସଂସ୍ଥାନର ଯୋଗାଡ଼ରେ ରହିଲେ । ଏ ତୁଙ୍ଗାପିଟା ହୁକୁମ ମୋ ମୁଣ୍ଡରେ ନିଆଁହୁଲା ଜଳାଇଦେଲା । ମୋ'ର ସତ୍‌ପରାମର୍ଶ ଗ୍ରହଣ କରି ଯେ ଦିନେ ସାହିତ୍ୟିକ ଭଗବାନ ପତିଙ୍କୁ ସାଦର ସ୍ୱାଗତ କରିଥିଲେ, ଅନ୍ତତଃ ଶିଷ୍ଟାଚାରରକ୍ଷା ଦୃଷ୍ଟିରୁ ମୋ ସହିତ ପଦୁଟିଏ ପୁଚ୍ଛା ପରାମର୍ଶ ନ କରି ଆଜି ସେଇ ପୁଣି

ତାଙ୍କୁ ଛଡ଼ାଇନେଲା ପ୍ରାୟ ଅନୁଷ୍ଠାନରୁ ଫିଙ୍ଗିଦେଲେ—ମୋ ବିଚାରରେ ଏଇଟା ତାଙ୍କର ଅକୃତଜ୍ଞତାର ଚରମ, ସ୍ୱାର୍ଥପ୍ରଣୋଦିତ ଅମନୁଷ୍ୟତାର ଦୃଷ୍ଟାନ୍ତ ।

ଏହି ଦରବାରୀ ହୁକୁମନାମାର ଘୋର ଅନ୍ୟାୟକୁ ବରଦାସ୍ତ କରିନପାରି, ଯେଉଁ ଦିନ ସହକର୍ମୀ ଆସନରୁ ଭଗବାନ ବାବୁଙ୍କୁ ହଟାଇଲା ଠିକ୍ ସେଇଦିନ (ଅକ୍ଟୋବର ପହିଲା), ପ୍ରୋପ୍ରାଇଟର୍ ବାଳକୃଷ୍ଣ ବାବୁଙ୍କୁ ମୁଁ ଏକମାସିଆ ପାଲଟା-ନୋଟିସ ଦେଲି ତାହା ଥିଲା ଅପ୍ରତ୍ୟାଶିତ ଭାବରେ ତାଙ୍କ ଛାତିରେ ଛନକା ପୁରାଇ । ଭାବିଲି, ଏ କ୍ଷେତ୍ରରେ ଏହାହିଁ ସମପ୍ରାଣ ପ୍ରକୃତ ବନ୍ଧୁର ସ୍ୱତଃବିସ୍ଫୋରିତ ବେଦନାର ପ୍ରତିକ୍ରିୟା ।

ବାଳକୃଷ୍ଣ ବାବୁ ନିଜେ ହିଁ ଯେ ମୋର ଅନ୍ତର୍ଦାହର କାରଣ, ଏହା ମର୍ମେ ମର୍ମେ ଅନୁଭବ କଲେ । ସେ ଭାବିଥିଲେ, ମୋର ନୋଟିସ ପ୍ରେରଣ ବନ୍ଧୁବିଚ୍ଛେଦଜନିତ କ୍ଷଣିକ ମାନସିକ ଉତ୍ତେଜନାର ତରଳ ପରିଣତି । ତେଣୁ ମୋ ମନକୁ କୌଣସି ପ୍ରକାରେ ଭୁଲାଇ ମୋର ସିଦ୍ଧାନ୍ତିତ ମତକୁ ପରିବର୍ତ୍ତିତ କରାଇବା ଆଶାରେ ଘନ ଘନ ମୋ ବସାକୁ ଚାଲିକି ଆସିଲେ କିଛି-ନା-କିଛି ଦ୍ରବ୍ୟ ଘେନି, ଯାହା ଦିନେ କାଳେ ଦେଖାନଥିଲି କେବେ । ନୋଟିସ୍ ସମ୍ପର୍କରେ କିନ୍ତୁ ବିନ୍ଦୁବିସର୍ଗ ଉଚ୍ଚାରଣ କରନ୍ତି ନାହିଁ ସେ । ଯେତେ ଥର ସେ ଆସିଛନ୍ତି, ମୁଁ କେବେହେଲେ ପୂଜ୍ୟପୂଜାରେ ବ୍ୟତିକ୍ରମ କରିନାହିଁ କି ତାଙ୍କୁ ଅସମ୍ମାନ୍ୟ କରିନାହିଁ—ନମସ୍ୟ ବନ୍ଧୁ ହିସାବରେ ତାଙ୍କୁ ସସମ୍ଭ୍ରମ ଅଭ୍ୟର୍ଥନା କରିବାରେ ଓ ଯଥୋଚିତ ଘରୋଇ ଚର୍ଚ୍ଚା କରିବାରେ ତିଳେହେଁ ତ୍ରୁଟି ଘଟାଇ ନାହିଁ ।

ଏ ଗଲା ନିଷ୍ଫଳ ଚେଷ୍ଟାର ପ୍ରଥମ ପର୍ଯ୍ୟାୟ । ପରବର୍ତ୍ତୀ ପର୍ଯ୍ୟାୟରେ ମୁହଁ ଦେଖାଇଲେ ତାଙ୍କ ପିତୃବ୍ୟ ଦୈତ୍ୟାରି କର, ଅବସରପ୍ରାପ୍ତ ସ୍କୁଲ ସବ୍‌ଇନ୍‌ସ୍ପେକ୍ଟର୍ ତଥା ମଧୁ-ରାଧାନାଥ ଶୈଳୀର ସାହିତ୍ୟିକ ଓ କବି । ଏହାଙ୍କ ଦୌତ୍ୟରେ ପ୍ରତିଫଳିତ ହୋଇଥିଲା ଜରତି-ଜନୋଚିତ ଖୋଲାଖୋଲି ଭାଷାରେ ରସାଣିତ ଆବେଗଭରା ଆବେଦନ । ସସ୍ନେହରେ ହାତ ଓଠ ଧରି, ବାପ ରେ ଧନ ରେ କରି, ରକ୍ତଗତ ବନ୍ଧନର ଧର୍ମଦୋହାଇ ଦେଇ ସେ ବହୁତ ବୁଝାଇଲେ ମତେ ମତ ବଦଳାଇବା ନିମନ୍ତେ । ମାତ୍ର ମୋ ନୀତିରେ ଅଟଳ ରହିଲି ମୁଁ । ଏହି ଅଶୋଭନୀୟ ପରିସ୍ଥିତିର ପୃଷ୍ଠଭୂମିରେ ଥିବା ବାଳକୃଷ୍ଣ ବାବୁଙ୍କ କୁଟିଳ ଭୂମିକା ବିସ୍ତାରିତ ଭାବରେ ଫିଟାଇ କହିବାରୁ ବ୍ୟର୍ଥଚେଷ୍ଟ ବୃଦ୍ଧ ସମସ୍ତ ବିଷୟ ହୃଦୟଙ୍ଗମ କଲେ ଏବଂ ମୋର ଅପରିବର୍ତ୍ତନୀୟ ସିଦ୍ଧାନ୍ତର ଯଥାର୍ଥ୍ୟ ଓ ଯୌକ୍ତିକତାରେ ସହମତ ହୋଇ ସାରସ୍ୱତ ପ୍ରେସକୁ ଫେରିଗଲେ । ଏହି ଦୈତ୍ୟାରି କର ଥିଲେ ବାଳକୃଷ୍ଣ ବାବୁଙ୍କ ଘରର ଅଭିଭାବକକଳ୍ପ । ୧୯୨୯ ମସିହାରେ ବାଳକୃଷ୍ଣବାବୁଙ୍କର ପତ୍ନୀ-ବିୟୋଗ ଘଟିଲା ପରେ ଏହି ପିତୃବ୍ୟ-ଅଭିଭାବକ ତାଙ୍କର ପୁନର୍ବିବାହ ପାଇଁ ଗୋଟିଏ ଅପ୍ରାପ୍ତବୟସ୍କା କନ୍ୟା ଠିକ୍ କରିଦେଇଥିଲେ । ତେଣୁ ବାଳକୃଷ୍ଣ ବାବୁ ନିଜର ସ୍ୱାର୍ଥସିଦ୍ଧିପାଇଁ ଦୈତ୍ୟାରିଙ୍କୁ ଅସ୍ତ୍ରରୂପେ ବ୍ୟବହାର କରି ମୋ ବସାକୁ ପଠାଇବାର କୌଶଳ ଖଞ୍ଜିଥିଲେ ।

ପ୍ରିୟ ସାରସ୍ୱତ ପ୍ରେସ୍ ଓ ପ୍ରିୟତର ସହକାର-ଜନ୍ମମାମୁର ମାୟା-ଡୋରକୁ ନିଠୁରଦୃଷ୍ଟିରୁ ଅଗତ୍ୟା ଛିନ୍ନ କଲି ନଭେମ୍ବର ପହିଲି ଦିନ । ଶ୍ରୀରାମଚନ୍ଦ୍ର ତ ପୁଣି ନିଠୁରଦୃଷ୍ଟିରୁ ସନ୍ତାକୁଳ-କଳମଭୂତା ଅଗ୍ନିପରୀକ୍ଷିତା ନିରପରାଧା ପ୍ରାଣପ୍ରିୟା ସୀତା ଠାକୁରାଣୀଙ୍କୁ ଅଗତ୍ୟା ବିସର୍ଜନ କରିଥିଲେ !

## (୨୨)'ଉତ୍କଳସାହିତ୍ୟ' ସମ୍ପାଦନା—

ଓଡ଼ିଆ ଗଦ୍ୟଭାଷା ଓ ଗଦ୍ୟସାହିତ୍ୟର ସଂସ୍କାରକ ବାଗ୍ମିବର ବିଶ୍ୱନାଥ କର ୧୯୩୪ ମସିହା ଅଗଷ୍ଟ ମାସରେ ହଠାତ୍ ଗୋଟାଏ ଅଜଣା ରୋଗରେ ଆକ୍ରାନ୍ତ ହୋଇ ଶଯ୍ୟାଶାୟୀ ହୋଇଗଲେ । ପ୍ରବୀଣ ଡାକ୍ତରମାନଙ୍କ ସର୍ବବିଧ ଚିକିତ୍ସା ସତ୍ତ୍ୱେ ଅବସ୍ଥା ଦିନକୁ ଦିନ ମନ୍ଦ ଆଡ଼କୁ ଗତି କରି ଅକ୍ଟୋବରରେ ସାଂଘାତିକ ହୋଇପଡ଼ିଲା; କିନ୍ତୁ ଆଶ୍ଚର୍ଯ୍ୟ କଥା, ତାଙ୍କର ମାନସିକ ସତେଜତା ଓ ଶ୍ମଶ୍ରୁଳ ମୁଖମଣ୍ଡଳର ଦିବ୍ୟ ଦୀପ୍ତିରେ ମାଳିନ୍ୟର କ୍ଷୀଣତମ ଛାୟାପାତ ସୁଦ୍ଧା ହୋଇନଥିଲା ।

ଦୁର୍ଗାପୂଜାର ବିପୁଳ ଉତ୍ସବରେ କଟକନଗରୀ ଆନନ୍ଦ-କଲ୍ଲୋଳ ଓ ବାଦ୍ୟରୋଳରେ ଅହର୍ନିଶ ମୁଖରିତ ହୋଇଉଠିଥାଏ । ଅକ୍ଟୋବର ୧୭ ତାରିଖ ଦିନ କାଳିଗଳିମଧ୍ୟସ୍ଥ ବିରାଟ 'ଆପ୍‌ସା ଲଜ୍' ସୌଧର ଏକ ନିଭୃତ୍ୟ କକ୍ଷରୁ ଜରୋଗୀ ବାର୍ତ୍ତା ଘେନି ବିଶ୍ୱନାଥଙ୍କ ବିଶ୍ୱସ୍ତ ଆଜୀବନ ସେବକ ଲଛମନ ସିଂହ ଧଇଁସଇଁ ହୋଇ ସନ୍ଧ୍ୟା ପ୍ରାୟ ସାତଟାରେ ମୋ ମହମ୍ମଦିଆବଜାର ବାସକୁଟୀରରେ ଉପସ୍ଥିତ ହେଲା—"ବୁଢ଼ାବାବୁ ଭାରି ଆତୁରରେ ତୁମକୁ ଖୋଜୁଛନ୍ତି, ଜଲଦି ଆସ ବାବା !"

ହାଉଳି ଖାଇଲା ଭଳି ବସିଲା ଥାନରୁ ଉଠିଆସିଲି ଦାଣ୍ଡକୁ । ମିଶଗଗୋଡ଼ିଆ ଲଛମନ ଡାକଣି ଲଗିଲା ପରି ଲମ୍ବା ଲମ୍ବା ଖେପା ପକେଇ ରାସ୍ତା ଟପି ଯାଉଥାଏ ଆଗେ ଆଗେ । ତା' ଗୋଡ଼ଗୋଇଠିର ପିଚ୍ଛା ଧରି ପାରୁପର୍ଯ୍ୟନ୍ତେ ଧପଡ଼ୁଥାଏଁ ମୁଁ ।

ଧଅଁସଅଁ ହୋଇ ଆପ୍‌ସା ଲଜ୍ ଭିତରକୁ ପଶିଲି । ସେଦିନଟି ଦଶହରା ପର୍ବର ପବିତ୍ର ନବମୀ—ଅକ୍ଟୋବର ୧୭ ତାରିଖ । ପ୍ରଶସ୍ତ କକ୍ଷର ତୂଳତଳ୍ପିତ କୋମଳ ଶଯ୍ୟାରେ ଶାୟିତ ପୁରୁଷସିଂହ ବିଶ୍ୱନାଥ—ସତେ ଯେପରି ରଣକ୍ଳାନ୍ତ ବିଜୟୀ ବୀରବର୍ଯ୍ୟର ଶିବିର-ବିଶ୍ରାମ । ବିସ୍ଫାରିତ ନେତ୍ରପତ୍ର, ଉଜ୍ଜ୍ୱଳ ଡୋଳତାରକା । ବକ୍ଷୋପରି ସ୍ଥାପିତ 'ଉତ୍କଳ-ସାହିତ୍ୟ'ର ସଦ୍ୟପ୍ରକାଶିତ ସଂଖ୍ୟାଟି । ଶଯ୍ୟା-ଧାରକୁ ଯାଇ ପିତୃପ୍ରତିମଙ୍କ ଚରଣତଳେ ମଥା ଲଗାଇ ପ୍ରଣତି ଜଣାଇଲି । ଅନନ୍ୟନିବଦ୍ଧ ଦୃଷ୍ଟିରେ ଚାହିଁ ରହିଲେ ସେ ମୋ'ରି ଆଡ଼େ । ଅନୁଭବ କଲି, ସେହି ପ୍ରଶାନ୍ତ ଦୃଷ୍ଟିକୁ ସତେ ଯେପରି ଘେରି ରହିଛି ଗୋଟାଏ କିଛି ପ୍ରଶ୍ନବାଚୀର କ୍ରମବର୍ଦ୍ଧମାନ ଅଶାନ୍ତ ବଳୟ ।

କ୍ଷଣକ ପରେ ଦୃଷ୍ଟି ଫେରାଇଲେ ସେ ଅନୁଗତ ପୁତ୍ର ମହାନନ୍ଦଙ୍କ ପ୍ରତି । ତିନି କନ୍ୟା (ନର୍ମଦା, ପ୍ରତିଭା, ସୁପ୍ରଭା) ଚିତ୍ର ପୁତ୍ତଳିକାବତ୍ ଦଣ୍ଡାୟମାନ ରହିଥାନ୍ତି ତାଙ୍କ ପାର୍ଶ୍ୱରେ ।

ସଜଳଲୋଚନ ମହାନନ୍ଦ ବାଷ୍ପାକୁଳ କଣ୍ଠରେ କହିଲେ, "ବାବା ! 'ସାହିତ୍ୟ' କଥା ସରୁଚି ? ଆଗ ଭଲ ହୋଇଯା, ତା'ପରେ ସବୁଲେ ହେବ ନାହିଁ ?" ବ୍ରହ୍ମପୁଷ୍ପ-ପ୍ରସ୍ଥାଣୋଦ୍‌ବିଗ୍ନ ପିତା ସ୍ତୁତିନ୍ୟସ୍ତ 'ଉତ୍କଳସାହିତ୍ୟ' ଉପରେ ଅଙ୍ଗୁଳି ଥାପି ପୁତ୍ରକୁ ଏହି ମର୍ମରେ କହିଲେ, "ତୁଇଁ ! ଏଇ ମୋର ଜୀବନର ସର୍ବସ୍ୱକୁ ରଖିଦେଇ ଯାଉଛି ତୋ ଜିମାରେ । ତୁଇ ହେବୁ ଏହାର ସମ୍ପାଦକ । ଏ ଜୀବିତ ଥିଲେ ମୁଁ ଜୀବିତ ଅଛି ବୋଲି ଜାଣିବୁ ।"

ମତିଛନ୍ନ ମହାନନ୍ଦ ନିଜର ଦୁର୍ବଳତା ପ୍ରକାଶ କରି କହିଲେ, "ବାବା ! ମୁଁ ତ ସାହିତ୍ୟ-ଜ୍ଞାନବିବର୍ଜିତ, ସମ୍ପାଦକ ହେବି କିପରି ?" ସ୍ମିତପ୍ରଦୀପ୍ତ ବିଶ୍ୱନାଥ ଅନୁଚ୍ଚ ସ୍ୱରରେ ବୁଝାଇଦେଲେ, "ତୋର ବିଚଳିତ ହେବାର କିଛି କାରଣ ନାହିଁ । କୃଷ୍ଣକୁ ଓ 'ଚନ୍ଦ୍ର'ଙ୍କୁ ମୁଁ ଡକାଇଛି ଖାସ୍ ଏହି ଉଦ୍ଦେଶ୍ୟରେ । ସେ ଉଭୟଙ୍କ ଉପସ୍ଥିତିରେ ବ୍ୟବସ୍ଥା କରିଦେଇ ଯାଉଛି । ଯେତେ ଲେଖା ଆସୁଥିବ, ସବୁ କୃଷ୍ଣ ପାଖକୁ ପଠାଇଦେଉଥିବୁ । ମାର୍ଜିତ ଶୁଦ୍ଧ-ସଂସ୍କାରଣରେ ତା'ର ଦକ୍ଷତା ଖୁବ୍ ବେଶୀ ଏବଂ ମୋ ସମ୍ପାଦନା ନୀତିରେ ସେ ସମ୍ପୂର୍ଣ୍ଣ ଅବଗାହ୍ୟ । ମାସ ମଧ୍ୟରେ ପ୍ରାପ୍ତ ଲେଖାମାନଙ୍କ ମଧ୍ୟରୁ ଯେଉଁଗୁଡ଼ିକ ପ୍ରକାଶଯୋଗ୍ୟ, ସେ ବାଛିନେଇ ସମ୍ପାଦନା କାର୍ଯ୍ୟ ସାରିଦେବା ସଙ୍ଗେ ସଙ୍ଗେ କ୍ରମ ନିର୍ଦ୍ଧାରଣ କରିଦେବ । ତଦନୁଯାୟୀ ତୁ ମୁଦ୍ରଣ ବନ୍ଦୋବସ୍ତ କରିବୁ । ଆମୂଳଚୂଳ ସମସ୍ତ ପ୍ରୁଫ୍ କୃଷ୍ଣ ହିଁ ସଂଶୋଧନ କରିଦେବ । ପ୍ରତି ମାସର 'ସମ୍ପାଦକୀୟ' ବିଷୟଟିକ 'ଚନ୍ଦ୍ର' (ସୁଲେଖକ ଚନ୍ଦ୍ରଶେଖର ମିଶ୍ର, ବି. ଏ., ବି. ଏଲ୍.) ଲେଖିବ ।"

ଉତ୍କଳର ବରପୁତ୍ର ଏହି ସମ୍ପାଦକସମ୍ରାଟଙ୍କ ଆଦେଶକୁ ଶିରୋଧାର୍ଯ୍ୟ କରି ତାଙ୍କର ଆଶୀର୍ବାଦ ଭିକ୍ଷା କଲି । ଏହାର ପରଦିନ ବିଜୟାଦଶମୀର ପାହାନ୍ତା ପ୍ରହରରେ ମେଢ଼ ବିସର୍ଜନର କୋଳାହଳ ଲୀଳା ଚାଲିଥିଲାବେଳେ ବ୍ରହ୍ମଦର୍ଶୀ ବିଶ୍ୱନାଥଙ୍କର ଅକଳଙ୍କ ଆତ୍ମା ସୂର୍ଯ୍ୟୋଦୟପୂର୍ବ ସାଢ଼େ ପାଞ୍ଚଟା ସମୟରେ ପିଣ୍ଡ-ପଞ୍ଜର ବିସର୍ଜନ କଲା ।

ସେହି ଦିବ୍ୟଧାମଗତ ଅମରାତ୍ମାର କୃତି ସମ୍ପାଦନ ପାଇଁ ଏହି ଅକିଞ୍ଚନ ଲେଖକ ମହାନନ୍ଦବାବୁ ଜୀବିତ ଥିବା ପର୍ଯ୍ୟନ୍ତ 'ଉତ୍କଳ ସାହିତ୍ୟ'ର ସମ୍ପାଦନା ଓ ପ୍ରୁଫ୍ ସଂଶୋଧନରେ ନିଜର ଶକ୍ତି ଓ ସମୟ ବ୍ୟୟ କରିଥିଲି ଅନ୍ତରାଳରେ ଥାଇ । ମାଇନର୍ ଶ୍ରେଣୀରେ ଅଧ୍ୟାୟୀ ଥିଲାବେଳେ ମତେ ଦୂରଦର୍ଶୀ ବିଶ୍ୱନାଥ ହାତଲେଖା 'ଅଲୋକ' ମାସିକୀର ସମ୍ପାଦକ ବନାଇ ସମ୍ପାଦକତ୍ୱର ଅସ୍ପୃଷ୍ଟପୂର୍ବ ବିଦ୍ୟାରେ ତାଲିମ ଦେବାର ମୂଳରେ ଯେ ଭାବୀ ମଙ୍ଗଳକର ଏଡ଼େ ମହତ୍ ଉଦ୍ଦେଶ୍ୟ ନିହିତ ଥିଲା, ତାହା ଏତେ କାଳେ ଉପଲବ୍ଧି କଲି ମୁଁ । ବିନ୍ଦୁ ଆକାରରୁ ହୀନ ଅତି ମାତ୍ରାରେ କ୍ଷୁଦ୍ର ବଟବୀଜର ଗର୍ଭରେ ଯେ ମହାମହୀରୁହର ବିଶାଳତମ କଳେବର ଲୁକ୍କାୟିତ ରହିଥାଏ, ମୋ ପରି କ୍ଷୁଦ୍ରବୁଦ୍ଧି ନର ଆଗରୁ କଳିପାରିଥାନ୍ତା କିପରି ?

## (୨୩) ତେରଖଣ୍ଡି ଶିଶୁସାହିତ୍ୟ ପ୍ରଣୟନ—

ସାରସ୍ୱତ ପ୍ରେସ୍‌ର ସାରସ୍ୱତ ପରିବେଶରେ ପାଞ୍ଚ ବର୍ଷ କାର୍ଯ୍ୟ କରିବା ମଧ୍ୟରେ ମୁଁ ଶିଶୁ-ବୟସର ପୁଅଝିଅଙ୍କ ପାଇଁ ତେର ଖଣ୍ଡି ଛୋଟ ଛୋଟ ପୁସ୍ତକ ରଚନା କରିଥିଲି । ମୋର ବିଷୟବସ୍ତୁ-ନିର୍ବାଚନ ନୀତି ଅନ୍ୟ ଲେଖକମାନଙ୍କଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଥିଲା । ଆମ ଭାଷାରେ ଯେଉଁ ଧରଣର କଥାବସ୍ତୁସମ୍ବଳିତ ଶିଶୁଲେଖନ ପୁସ୍ତକ ଆଦୌ ଲେଖା ହୋଇନାହିଁ ଅଥଚ ସେଗୁଡ଼ିକର ଉପାଦେୟତା ସର୍ବସ୍ୱୀକାର୍ଯ୍ୟ, ମୁଁ କେବଳ ସେହି ଧରଣର ବିଷୟ ଉପରେ ଆଧାରିତ ପୁସ୍ତକର ପ୍ରଣୟନରେ ହାତ ଦିଏ ଏବଂ ତଦ୍ୱାରା ଯେଉଁ ନୂଆ ବାଟ ଫିଟେ, ତାହା ଅନେକ ସମବୟସିଆ ତରୁଣ ଲେଖକଙ୍କର ଆଖି ଫିଟାଏ । 'ସୁନାରାଇଜ' ଏହି ସ୍ୱତନ୍ତ୍ର ଶ୍ରେଣୀର ଏକ ଆଦରଣୀୟ ଶିଶୁରଞ୍ଜନ ଗଳ୍ପପୁସ୍ତକ ଏବଂ ଏହା ସାରସ୍ୱତ ପ୍ରେସ୍‌ରେ ଯୋଗଦାନ ପରେ ମୋ ଲିଖିତ ପ୍ରଥମ ବହି (୧୯୩୯) । ଇଂରାଜୀ 'Golden Tales'ର ଅନୁସରଣରେ ଏଥିରେ କେତୋଟି ଶିଶୁପ୍ରିୟ ଚମତ୍କାର ଗପ ପରିବେଷିତ ହୋଇଛି । ଏହି ବିଷୟବସ୍ତୁ ନିର୍ବାଚନ ନୀତି ପରବର୍ତ୍ତୀ କାଳରେ ମଧ୍ୟ ମୋର ପ୍ରାୟ ସମସ୍ତ ଶିଶୁସାହିତ୍ୟ ତଥା କିଶୋର-କିଶୋରୀଙ୍କର ସାହିତ୍ୟକୁ ନିୟନ୍ତ୍ରିତ କରିଛି ।

ମୁଁ 'ସୁନାରାଇଜ' ଶିଶୁଗପ ବହି ଲେଖୁଛି ବୋଲି କୌଣସି ସୂତ୍ରରୁ ଖବର ସଂଗ୍ରହ କରି ବାରିପଦା ହାଇସ୍କୁଲର ଶିକ୍ଷକ ବୈଦ୍ୟନାଥ ତ୍ରିପାଠୀ ଦିନେ କଟକ ଆସି ମୋ'ଠାରୁ ସେହି ପାଣ୍ଡୁଲେଖଟି ମାଗି ନେଇଗଲେ ଏବଂ ସ୍ୱଳ୍ପ ସମୟ ମଧ୍ୟରେ ତାହାକୁ ନିଜ ପ୍ରକାଶନ ସଂସ୍ଥା 'ବୁକ୍ ଡିପୋ'ଦ୍ୱାରା ପ୍ରକାଶ କଲେ । ସେ ସମୟର ଶ୍ରେଷ୍ଠତମ ଚିତ୍ରଶିଳ୍ପୀ ପୁରୀବାସୀ ପୂର୍ଣ୍ଣଚନ୍ଦ୍ର ସିଂହଙ୍କ ଅଙ୍କିତ ତ୍ରିବର୍ଣ୍ଣ ପ୍ରଚ୍ଛଦ ଛବିଟି ପୁସ୍ତକର ମନୋହାରିତା ଓ ଶିଶୁପ୍ରିୟତା ବହୁଗୁଣ ବଢ଼ାଇଦେଇଥିଲା । ଓଡ଼ିଆ ଶିଳ୍ପୀ ହସ୍ତାଙ୍କିତ ତ୍ରିରଙ୍ଗ ମନୋଜ୍ଞ ଚିତ୍ର ଓଡ଼ିଆ ବହିର ଅଙ୍ଗ ମଣ୍ଡନ କରିବା ଓଡ଼ିଶାରେ ଏହାହିଁ ସର୍ବପ୍ରଥମ ।

ଦ୍ୱିତୀୟ ପୁସ୍ତକ ହେଲା 'ଏସପ୍ କଥା' । ପାଶ୍ଚାତ୍ୟ ଜଗତର ଗଳ୍ପସାଗର କଥକ-ଚୂଡ଼ାମଣି ମହାମନା ଏସପ୍ (Aesop) ଦେଶେ ଦେଶେ ବୁଲି ଶିଶୁସମ୍ପ୍ରଦାୟଙ୍କୁ ନିଜ ମନଗଢ଼ା ଯେଉଁ କୌତୂହଳାବହ ଅଥଚ ନୀତିଶିକ୍ଷାପ୍ରଦ ଟିକି ଟିକି ମନଭୁଲାଣିଆ ମଜାଦାର ଗପ ନିତି ଶୁଣାଉଥିଲେ, ସେହି ସରସ ସୁନ୍ଦର ଅସୁମାର ନୀତିକଥା ମଧ୍ୟରୁ ବଛା ବଛା ଶହେଟିର ସମାହାରରେ ଏହି ପୁସ୍ତକର ଚିତ୍ରଳ କଳେବର ସମୃଦ୍ଧ । ଏହାର ପ୍ରକାଶକ ହୋଇଥିଲା ସାରସ୍ୱତ ପ୍ରେସ୍ ।

'ପକ୍ଷିରାଜ' ଏଠାରେ ଲିଖିତ ତୃତୀୟ ପୁସ୍ତକ । ଏଥିରେ ଯେଉଁ ବିଷୟଟି ବର୍ଣ୍ଣିତ, ତାହା ବୁଢ଼ୀମା-ତୁଣ୍ଡରୁ ଶୁଣା ଲୋକକଥା-ଅନ୍ତର୍ଗତ ପକ୍ଷିରାଜ ଘୋଡ଼ାର କାହାଣୀ ନୁହେଁ —ବିଷ୍ଣୁଙ୍କ ବାହନ ପକ୍ଷିରାଜ 'ଗରୁଡ଼'ର ପୌରାଣିକ କାହାଣୀ । ଏହାର ପ୍ରଚ୍ଛଦ ଚିତ୍ର ମଧ୍ୟ ତ୍ରିବର୍ଣ୍ଣ-ରଞ୍ଜିତ ଓ ଶିଳ୍ପିଗୁରୁ ପୂର୍ଣ୍ଣଚନ୍ଦ୍ର ସିଂହଙ୍କ ସିଦ୍ଧହସ୍ତରେ ଅଙ୍କିତ । ଏହି

ପୁସ୍ତକର ପ୍ରକାଶକ ହୋଇଥିଲା ପଣ୍ଡିତ ନୃସିଂହ କରଙ୍କ ପ୍ରତିଷ୍ଠିତ ଶ୍ରୀକ୍ଷେତ୍ର ପୁରୀଧାମର 'ନୀଳାଚଳ ଭଣ୍ଡାର' । ଏହାଛଡ଼ା 'ଉତ୍କଳ ପତନ' ପୁସ୍ତକଟି ମଧ୍ୟ ଏହି ସମୟ ମଧ୍ୟରେ ଲେଖିଥିଲି, ଯାହା ଏପର୍ଯ୍ୟନ୍ତ ଅପ୍ରକାଶିତ ।

ଯୁଗେ ଯୁଗେ ବୀରପ୍ରସବିନୀର ଗୌରବମୁକୁଟ ବହନ କରିଆସିଥିବା ଆମ ଜନ୍ମଭୂମି ଉତ୍କଳର ଅମର ସୁର-ଶୂରମାନଙ୍କ ଜୀବନାଦର୍ଶ ଓ ଅଦ୍ଭୁତ କରଣୀ ସହିତ ଏ ଯୁଗର ବାଳକବାଳିକାବର୍ଗଙ୍କୁ ପରିଚିତ କରାଇଦେବା ହେଲା ମୋର ଚତୁର୍ଥ ଉଦ୍ୟମର ଲକ୍ଷ୍ୟ ।

ତଥ୍ୟ-ଆହରଣ ଓ ଲେଖନୀଚାଳନ ସାଙ୍ଗୋପାଙ୍ଗ ହୋଇ ଚାଲିଲା । ଯେଉଁ କେତେକ ବରେଣ୍ୟ ପୁରୁଷଙ୍କ ଜୀବନଯୁଦ୍ଧର ସରଣୀ ଓ କରଣୀ ପୁସ୍ତକାକାରରେ ଲିପିବଦ୍ଧ କରି ଗୋଟିଏ ଅଭିନବ ବଣ୍ଟନ ଯୋଜନାର କ୍ଷୀଣ ରୂପରେଖ ମାତ୍ର ଦେଖାଇଦେଲି, ସେମାନେ ହେଲେ :

୧ । ଶୂଦ୍ରମୁନି ସାରଳା
୨ । ଗଜପତି ପୁରୁଷୋତ୍ତମ ଦେବ
୩ । ଗଜପତି ମୁକୁନ୍ଦ ଦେବ
୪ । ମହାରାଜା ସୁଢଳ ଦେବ
୫ । ସାମନ୍ତ ଚନ୍ଦ୍ରଶେଖର
୬ । କର୍ମଯୋଗୀ ଗୌରୀଶଙ୍କର
୭ । କବିବର ରାଧାନାଥ
୮ । ଭକ୍ତକବି ମଧୁସୂଦନ
୯ । କୁଳବୃଦ୍ଧ ମଧୁସୂଦନ
୧୦ । ଉତ୍କଳମଣି ଗୋପବନ୍ଧୁ

[ଏ ସମସ୍ତ ଶିଶୁସାହିତ୍ୟ ଛଡ଼ା 'ଉତ୍କଳପତନ' ନାମରେ ଏକ ଉଚ୍ଚାଙ୍ଗ ସାହିତ୍ୟ ମଧ୍ୟ ମୋର ଏହି ସମୟର କୃତି ]

### ୩ । ନବଭାରତ ପ୍ରେସ୍—

ସାରସ୍ୱତ ପ୍ରେସ୍ ତ୍ୟାଗର ଚୂଡ଼ାନ୍ତ ସଂକଳ୍ପ ନେଇ ପହିଲା ଅକ୍ଟୋବର (୧୯୩୪) ଦିନ ବାଳକୃଷ୍ଣ କରଙ୍କୁ ମୁଁ ଯେଉଁ ଚରମପତ୍ର (ନୋଟିସ୍) ଦେଇଥିଲି, ତା'ର ଚମକପ୍ରଦ ସମ୍ବାଦ କଟକର ପୁସ୍ତକାଳୟ-ଅଧିକାରୀ, ପ୍ରେସ୍-ଅଧିକାରୀ ଓ ପତ୍ରିକାସମ୍ପାଦକ ପ୍ରଭୃତି ବ୍ୟବସାୟୀ ଗୋଷ୍ଠୀ ମଧ୍ୟରେ ବିଦ୍ୟୁଦ୍‌ବେଗରେ ବ୍ୟାପି ଯାଇଥିଲା । ମତେ ପାଇବାପାଇଁ ସେମାନେ ଏହିପରି ଗୋଟାଏ 'ସୁହୃଦ୍‌ଭେଦ' ସୁଯୋଗକୁ ଚାହିଁ ରହିଥିଲେ । ଏବେ ପ୍ରତ୍ୟେକ ଆଶାୟୀ ଛକାପଞ୍ଝାରେ ରହି ନିଜ ନିଜ କୂଟତାନ୍ତ୍ରିକ କରାମତି-କୌଶଳର ସ୍ପିଚ୍ ଟିପିବାକୁ ତତ୍ପର ହୋଇଗଲେ ।

## (୧) ଆପ୍‌ସା ଲିକ୍‌ରୁ ଆମନ୍ତ୍ରଣ ଚିଠି—

ବିଶ୍ୱନାଥ କରଙ୍କ ଦେହାନ୍ତ ପରେ ତାଙ୍କ ଦାୟିତ୍ୱସମ୍ପନ୍ନ ପୁତ୍ର ପରିବାର-ସମ୍ପାଳକ ମହାନନ୍ଦ କର ନାମତଃ ସମ୍ପାଦକତ୍ୱରେ ପ୍ରକାଶିତ 'ଉତ୍କଳ ସାହିତ୍ୟ' ପତ୍ରିକାର ସମ୍ପାଦନା କାର୍ଯ୍ୟ ବସ୍ତୁତଃ ମୁହିଁ ତ କରୁଥାଏଁ, ତେଣୁ ଅଗ୍ରାଧିକାର ଦାବିରେ ତାଙ୍କର ପରିବାରର ଡାକରା ହେଲା ପ୍ରଥମ । 'ଚୁଇଁଦା' (ମହାନନ୍ଦବାବୁ)ଙ୍କ ହାତଲେଖା ଚିଠିଓ ଖଣ୍ଡିଏ 'ଲାଛମନ' ହରକରା-ହାତରୁ ପାଇଲି । ଅସଲ କଥାକୁ ଛପେଇରଖି ଉପରଓଳିର ପାରିବାରିକ ଜଳଯୋଗରେ ଯୋଗଦେବା ବାହାନାରେ ମତେ ସେ ତାଙ୍କ ଘରକୁ ଡକାଇଛନ୍ତି ବୋଲି ଲଛମନର ଅସଂଲଗ୍ନ କଥାରୁ ଠଉରାଇଲି ମୁଁ ।

ସେ ଯାହାହେଉ ଗ୍ରାମ୍ୟ କୌଟୁମ୍ବିକ ବନ୍ଧନର ନିଘନତା ଦୃଷ୍ଟିରୁ ମନା କରିଦେବାକୁ ହିମ୍ମତ ନଥିଲା ମୋର—ସେଥିକି ଉପେକ୍ଷିବା ମଧ୍ୟ ମୋ ପକ୍ଷରେ ଥିଲା ଅସାଧ୍ୟ । ସାଢ଼େ ପାଞ୍ଚଟା ବେଳକୁ ତାଙ୍କ ଆପ୍‌ସା ଲିକ୍ ବାସଭବନରେ ସନ୍ଧ୍ୟା ଆମନ୍ତ୍ରଣ ରକ୍ଷା କଲି । ଡାଇନାଟେବୁଲ୍ ମଖମଲି ଆସ୍ତରଣରେ ସଜ୍ଜିତ । ତାର ଦୁଇ ପାର୍ଶ୍ୱରେ ସମ୍ମୁଖାସମ୍ମୁଖି ହୋଇ ପଡ଼ିଥାଏ ପାଞ୍ଚୋଟି ଚେୟାର୍···ପାଖକେ ତିନୋଟି, ଅନ୍ୟ ପାଖେ ଦୁଇଟି । ନମିଦି, ପଟିଦି, ଚିନିଦି (ନର୍ମଦା, ପ୍ରତିଭା, ସୁପ୍ରଭା ତିନି ଭଉଣୀ) ପାଖକେ ବସିଲେ ଏବଂ ତାଙ୍କ ସମ୍ମୁଖ କରି ଚୁଇଁଦା ଓ ମୁଁ ଏପାଖେ ବସିଲୁଁ । ଜଳଯୋଗର ନାଆଁରେ ପୂର୍ଣ୍ଣଗ୍ରାସ ନୈଶାହାର ପରିବେଷଣ କରାଗଲା ଥାକକୁ ଥାକ । ଖାଦ୍ୟସମ୍ଭାରର ଏ ବିପୁଳ ବ୍ୟବସ୍ଥା ଦେଖି ମୁଁ ହୃତସଂଶୟରେ ଅନୁମାନ କରିନେଲି ଯେ, ମତେ ଖାପଚରେ ପକାଇବାପାଇଁ ଗୋଟାଏ କିଛି ଗୂଢ଼ ଅଭିସନ୍ଧିର ଯନ୍ତ୍ରା ନିଶ୍ଚୟ ଏଥିରେ ଖଞ୍ଜାଯାଇଛି । ପହିଲେ ବଡ଼ ଅଡ଼ୁଆରେ ପଡ଼ିଥିଲି ସିନା, ଏବେ କିନ୍ତୁ ଅଡ଼ୁଆରୁ ଆସି ବଡ଼ ମୁସ୍କିଲରେ ପଡ଼ିଗଲି । ଯନ୍ତ୍ରାମୁହଁକୁ କିପରି ଠେଲି ହୋଇ ନ ଯିବ, ତାହାର ବାଟ ମନେ ମନେ ଖୋଜିବାକୁ ଲାଗିଲି । 'ଉପାୟଂ ଚିନ୍ତୟେତ୍ ପ୍ରାଜ୍ଞଃ, ଅପାୟମପି ଚିନ୍ତୟେତ୍' ।

ଖାନାକାମ ଛୁଡ଼ିଲା ତ ଧନ୍ଦାକାମ ପଡ଼ିଲା—ଉଙ୍କାରିଲା ସର୍ବଜ୍ୟେଷ୍ଠା ନମିଦି । ମତେ ଚାହିଁ ସେ କହିଲା, "ବାବାଙ୍କ ଶେଷ ଇଚ୍ଛାକୁ ମନେରଖିଥିବୁ । 'ଉତ୍କଳସାହିତ୍ୟ' ତତେ ଲାଗିଲା···" ଆଉ କହିପାରିଲା ନାହିଁ, ଆଖି ତା'ର ଜକେଇଆସିଲା ସ୍ୱର୍ଗତ ସ୍ନେହମୟ ପିତାଙ୍କ ମଧୁମଖା କଥା ମନେପଡ଼ି । ତା'ର ଅକୁହା କଥାତକ ଭରିଣା କଲେ ଚୁଇଁଦା, "ଆଉ କେଇଟା ଦିନ ପରେ ତୁ 'ସାରସ୍ୱତ' ଛାଡ଼ିବୁ ଶୁଣି ଆମର ଏଠି ଆନନ୍ଦର ସୀମା ନାହିଁ । ଆମ ସଭିଙ୍କ ସମ୍ମିଳିତ ଅନୁରୋଧ ରକ୍ଷା କରି ସିଧା 'ସାହିତ୍ୟ'କୁ ଚାଲିଆ—ଏ ତ ତୋର ଘରପ୍ରେସ ପରି ।"

ଯେଉଁ ବିପଦକୁ ଡରୁଥିଲି, ସେଇଥିରେ ଏବେ ପଡ଼ିଲି । ହାତଯୋଡ଼ି ସାହସର ସହିତ ବେକ୍‌ଠୋକ୍ ଉତ୍ତର ଦେଲି, "କ୍ଷମା କର ସମସ୍ତେ, 'ଘରପ୍ରେସ୍'ରେ କେବେହେଲେ ମୁଁ

ରହିପାରିବ ନାହିଁ । ଧନୁର୍ବାଣହସ୍ତ ରାମଚନ୍ଦ୍ର ସୁନାମିଶର (ମାୟାମୃଗ ରୂପଧାରୀ ମାରୀଚ ରାକ୍ଷସ) ମାରିବାକୁ ଚାଲିଯିବା ପରେ 'ହାହ ଲକ୍ଷ୍ମଣ' ଡାକ ଶୁଣି ଧନୁର୍ଦ୍ଧର ଲକ୍ଷ୍ମଣ ସୀତାଦେବୀଙ୍କ ଅଲଙ୍ଘ୍ୟ ଆଜ୍ଞାରେ ଅଗ୍ରଜଙ୍କୁ ବିପନ୍ମୁକ୍ତ କରିବାକୁ ବାହାରିଗଲାବେଳେ ପର୍ଣ୍ଣକୁଟୀରର ଦ୍ୱାରମୂଳରେ ଗୋଟିଏ ଗାର କାଟିଦେଇଥିଲେ ଏବଂ ଯେତେ ଯାହା ହୋଇଯାଉ ପଛକେ, ସେ ଗାରକୁ କେବେହେଲେ ନ ଟପିବାକୁ ବାରମ୍ବାର ସୀତାଙ୍କୁ ତାଗିଦ କରି କହିଯାଇଥିଲେ । ମାତ୍ର କାଳର କୁଟିଳ ଗତିରେ, ଘଟନାଚକ୍ରର ତାଡ଼ନାରେ ସୀତାଦେବୀ ଦେବରଙ୍କ ପରମବାଣୀକୁ ପାସୋରିପକାଇ ତାଙ୍କ ନିର୍ଦ୍ଦେଶର ଗୁରୁତ୍ୱକୁ ପ୍ରଣିଧାନକୁ ନଆଣି ସେହି ଗାରଟିକୁ ଟପିଯିବା ଫଳରେ ଯେଉଁ ଅକଥନୀୟ ଦୁର୍ଦ୍ଦଶାର ଅନ୍ଧକୂପ-ଗର୍ଭରେ ନିପତିତ ହୋଇଥିଲେ, ତାହା ସମଗ୍ର ପୃଥିବୀ ଜାଣେ । ମୋର ବାଲ୍ୟ-କାଳରେ ପିତା ମତେ ଗୋଟିଏ ହିତୋପଦେଶ ଦେଇଥିଲେ—'ଜ୍ଞାତିକୁଟୁମ୍ବ ଓ ବନ୍ଧୁ-ବାନ୍ଧବଙ୍କ ପାଖରେ ଦୀର୍ଘକାଳ ରହିବୁ ନାହିଁ କିମ୍ବା ସେମାନଙ୍କ ଅଧୀନରେ କେବେହେଲେ ନୌକରି କରିବୁ ନାହିଁ; କାରଣ ଏତଦ୍ଦ୍ୱାରା ପାରସ୍ପରିକ ସମ୍ପର୍କ ତିକ୍ତ ହୁଏ, ପୂର୍ବ ସୌହାର୍ଦ୍ଦ୍ୟ କ୍ଷୁଣ୍ଣ ହୁଏ, ଯାହା ସୁଧାରିବା ଅକ୍ତିଆରର ସୀମା ବାହାରକୁ ଚାଲିଯାଏ ।' ପିତୃଦେବଙ୍କ ଏହି ହିତବାକ୍ୟକୁ ଭୁଲି ମୁଁ ରକ୍ତ ସମ୍ପର୍କୀୟ ବନ୍ଧୁ ବାଳକୃଷ୍ଣ ବାବୁଙ୍କ ଅଧୀନରେ ତାଙ୍କ ପ୍ରେସ୍‌ରେ ଚାକିରି କରିବାଦ୍ୱାରା ଯେଉଁ ଚଡ଼ୁଦଗା ଖାଇଲି, ତା'ର ପୁନରାବୃତ୍ତି ଘଟାଇବାର ମୂର୍ଖତା ଆଉ ଏ ଜୀବନରେ ଦେଖାଦେବ ନାହିଁ । ତେଣୁ ସାହିତ୍ୟ ପ୍ରେସ୍ ଭିତରକୁ ମତେ ଅଯଥା ଟଣାଓଟରା କରନାହିଁ । ଯେତେବେଳେ ଯେଉଁ ସାହାଯ୍ୟ ସହଯୋଗ ମୋ'ଠାରୁ ଲୋଡ଼ିବ, ବାହାରେ ରହି ମଧ୍ୟ ଅକୁଣ୍ଠଚିତ୍ତରେ ମୁଁ ତାହା ଦେବି ।"

ନିଶ୍ଚିତ ଆଶାର କୂଅାରରେ ହଠାତ୍ ଭଟ୍ଟା ପଡ଼ିଯିବାରୁ ସେମାନେ ବହୁତ ମନଦୁଃଖ କଲେହେଁ ମୋର ବକ୍ତବ୍ୟଧାରକୁ ମୋଟାମୋଟି ଗ୍ରହଣ କରି ନିଜର ଅଭୀପ୍ସା ପୂରଣପାଇଁ ମୋ ଉପରେ ଅଧିକ ଚାପ ପକାଇବାରୁ ନିରସ୍ତ ହେଲେ । ଏହିରୂପେ ସେମାନଙ୍କ ଖାବଲରୁ ନିଷ୍କୃତି ପାଇ ମୁଁ ଆଶ୍ୱସ୍ତିର ନିଶ୍ୱାସ ମାରିଲି । ହେଲେ, ସେମାନଙ୍କୁ ମଧ୍ୟ ଯଥେଷ୍ଟ ଆଶ୍ୱସିତ କଲି ବିପୁଳ ଭବିଷ୍ୟ ଆଶାର ପ୍ରତିଶ୍ରୁତିବଦ୍ଧ ନିର୍ଭର ଦେଇ ।

## (୨) ପଣ୍ଡିତ ଆତ୍ତଳଙ୍କ କୌଟିଲ୍ୟ ଦର୍ଶନର ବିଷୟ—

ସେତେବେଳକୁ ରାଜନୀତିକ ପୁରୋଧା ତଥା ଉତ୍କଳ ପ୍ରାଦେଶିକ କଂଗ୍ରେସର ସଭାପତି ପଣ୍ଡିତ ନୀଳକଣ୍ଠ ଦାଶ କଟକକୁ ନିଜର କର୍ମକେନ୍ଦ୍ର କରି ବାଙ୍କାବଜାରରେ 'ନବଭାରତ ପ୍ରେସ୍' ନାମରେ ଏକ ମୁଦ୍ରଣାଳୟ ବସାଇସାରିଥାନ୍ତି । ରାଜନୀତି କ୍ଷେତ୍ରରେ ତାଙ୍କର ପ୍ରାଇଭେଟ୍ ସେକ୍ରେଟାରି ତଥା ଚେତକ (whip) ସ୍ୱରୂପେ ସୁପରିଚିତ ଗୁଳନାଗଡ଼ର ଚିନ୍ତାମଣି ମିଶ୍ର ସେହି ପ୍ରେସ୍‌ର ମେନେଜର ଥାଆନ୍ତି । ସାହିତ୍ୟ-ସଂସାରରେ ମନୀଷୀ ନୀଳକଣ୍ଠଙ୍କ ଗୁରୁପଣର ଗରୁତା ନିକଟରେ ସମ୍ଭ୍ରମ ମଥା ନୋଇଁଯାଉଥାଏ । ତାଙ୍କ ଗରିମ୍ବ ସମ୍ପାଦକତ୍ୱରେ ସେହି ଅନୁଷ୍ଠାନରୁ ନୂଆ ହୋଇ ପ୍ରକାଶିତ ହେଉଥାଏ ମାସିକ ସାହିତ୍ୟପତ୍ର

‘ନବଭାରତ’, ଯାହା ସମଧର୍ମୀ ପତ୍ରିକାମଣ୍ଡଳରେ ଅର୍ଜନ କରିଥାଏ ପ୍ରତିଷ୍ଠାର ବରିଷ୍ଠ ଆସନ । ଶବ୍ଦେ ପୁରସ୍କାର ଏହି ନବତମ ପତ୍ରିକାଟିର ପାଠକପ୍ରିୟତା ଯଥେଷ୍ଟ ବୃଦ୍ଧିଲାଭ କରିଥିଲେହେଁ ତତ୍ତୁଳନାରେ ଚାନ୍ଦାଦିଆ ଗ୍ରାହକଙ୍କ ସଂଖ୍ୟା ଥିଲା ଯଥେଷ୍ଟ ନ୍ୟୂନ; ତେଣୁ ସେପର୍ଯ୍ୟନ୍ତ ତାହା ସ୍ୱୟଂଭର ହେବାର ନିମ୍ନତମ ସୀମାରେଖା ସୁଦ୍ଧା ମାଡ଼ିନଥାଏ । ପ୍ରେସ୍‌ର ଛପାକାର୍ଯ୍ୟରୁ ଯାହା ଆଦାୟ ହୁଏ, ସେଥିର ଗୋଟାଏ ମୋଟା ଅଂଶ ‘ନବଭାରତ’ ପାଇଁ ପ୍ରତି ମାସରେ ଶ୍ରାଦ୍ଧ କରିବାକୁ ପଡ଼େ । ପ୍ରେସ୍‌ର ଆୟ ବଢ଼ାଇବାକୁ ହେଲେ ସବୁଦିନିଆ ମାଲଦାର ପକ୍ଷ (party ବା ଗରାଖେଶ୍ୱର) ଅନ୍ତତଃ ଗୋଟିଏ ହାତରେ ରହିବା ନିତାନ୍ତ ଆବଶ୍ୟକ, ଯାହା ପାଖରେ ପହଞ୍ଚିଲେ ଛପାକାମ ଅଭାବବେଳେ ଛପାକାମ ମିଳିବ ଓ ଟଙ୍କା ଅଭାବବେଳେ ଟଙ୍କା ବି ମିଳିବ । ଏଭଳି ବଳ୍‌ଦାରିଆ ପୋଷଣାହାରି ବଡ଼ ବହି ବ୍ୟବସାୟୀ ପକ୍ଷ ସେ ସମୟରେ ଥିଲା ଏକମାତ୍ର କଟକ ଟ୍ରେଡ଼ିଂ କମ୍ପାନି ଅର୍ଥାତ୍ ତା’ର ସୁଦକ୍ଷ ପରିଚାଳକ ଖଦଡ଼ଧାରୀ ପଣ୍ଡିତ ଆକୂଳ ମିଶ୍ର କାବ୍ୟତୀର୍ଥ, ଯେ କି ପଣ୍ଡିତ ନୀଳକଣ୍ଠଙ୍କ ଏକାନ୍ତ ହାତପାଆନ୍ତା । ଏଣୁ ଆକୂଳ ପଣ୍ଡିତଙ୍କ ସହୃଦୟତାରୁ ପ୍ରେସ୍‌ର ଲେଦର ପେଟ କେବେ ଝାଙ୍କା ପଡ଼େ ନାହିଁ—କି ଖରା କି ବର୍ଷା ଶୀତ ସଦାକାଳେ ଖାଦ୍ୟ ମହଜୁଦ ଥାଏ । ଟ୍ରେଡ଼ିଂ କମ୍ପାନିର ବହୁ ଉପାଦେୟ ପ୍ରାଇଜ୍ ଲାଇବ୍ରେରି ପୁସ୍ତକ ଛଡ଼ା କେତେ ମଞ୍ଜୁରିପ୍ରାପ୍ତ ପାଠ୍ୟ-ପୁସ୍ତକ ମଧ୍ୟ ଥାଏ । ଏହି ପାଠ୍ୟପୁସ୍ତକ ସବୁର କାଟତି ସଂଖ୍ୟା ପ୍ରତ୍ୟେକର ଫି ବର୍ଷ ଷୋଳଶ ପଚିଶ ହଜାରରୁ କମ୍ ନୁହେଁ । ସେଥିରୁ ଖଣ୍ଡିଏ ଖଣ୍ଡିଏ ବହି ମିଳିଗଲେ ନବଭାରତ ପ୍ରେସ୍‌କୁ ତାହା ଛାପି ଯୋଗାଇବାକୁ ମାସ ମାସ ଲାଗିଯାଏ । ଛାପାଖାନାର ଗରଜମତେ ଟଙ୍କା କିନ୍ତୁ ‘କମ୍ପାନି’ ଦପ୍ତରରୁ ଆଗତୁରା ମିଳିଯାଉଥାଏ ମୁସ୍ତକୁ ମୁସ୍ତ । ‘କମ୍ପାନି’ର ଅର୍ଡ଼ର ମୁତାବକ ସବୁ ବହି ଯୋଗାଇ ସାରିଲା ପରେ ପ୍ରେସ୍ ପୁରା ଛପାର ବିଲ୍ ଦିଏ ଏବଂ ଦୁଇ ପଟର ଦେଣନେଣ ମିଳାଇ ନିକାଶୀ ହିସାବ ଚୁକ୍ତି କରାଯାଏ ।

ଏହି ନିୟମିତ କାମପ୍ରାପ୍ତି ଓ ଅର୍ଥପ୍ରାପ୍ତିର ଅବାରିତ ସୁଅ ଆଗରେ ହଠାତ୍ ଦିନେ ଦେଖାଦେଲା ଏକ ବ୍ୟବସାୟିକ ପ୍ରତିବନ୍ଧର ଟିମା ଟିପ । ନବଭାରତ ପ୍ରେସ୍‌ରେ ଛପା ହୋଇଥିବା ଏକ ମଞ୍ଜୁରିପ୍ରାପ୍ତ ପାଠ୍ୟପୁସ୍ତକରେ କେତେକ ସାଂଘାତିକ ମୁଦ୍ରଣପ୍ରମାଦ ଥିବାର ଲିଖିତ ଅଭିଯୋଗ ପହଞ୍ଚିଲା ପ୍ରକାଶକ ଟ୍ରେଡ଼ିଂ କମ୍ପାନିର ମେନେଜର ଆକୂଳ ମିଶ୍ରଙ୍କ ନିକଟରେ । ଏଭଳି ପୁସ୍ତକ ଡ଼ି. ପି. ଆଇ.ଙ୍କ ଦୃଷ୍ଟିକୁ ନିଆଗଲେ ନିୟମାନୁଯାୟୀ ତାହା ପାଠ୍ୟପୁସ୍ତକରୂପେ ଚଳିବାର ଯୋଗ୍ୟତା ହରାଏ ଅର୍ଥାତ୍ ମଞ୍ଜୁରି ତାଲିକାରୁ ତୁରନ୍ତ ଉକ୍ତ ପୁସ୍ତକର ନାମ କଟିଯିବାର କଥା । ଆକୂଳ ମିଶ୍ରେ ଏ ଘଟନାରେ ବଡ଼ ବିବ୍ରତ ଓ ବିଚଳିତ ହୋଇ ନବଭାରତ ପ୍ରେସ୍‌ର ମେନେଜର ଚିନ୍ତାମଣି ମିଶ୍ରଙ୍କୁ ଜଣାଇ-ଦେଲେ ଯେ, ଜଣେ ଫ୍ରେସ୍ତମାର୍କା ପ୍ରୁଫ୍ ସଂଶୋଧକ ଯଦି ସେ ନିଯୁକ୍ତ ନ କରନ୍ତି, ତା’ହେଲେ ଫର୍ମେସୁଦ୍ଧା କୌଣସି ବହି ତାଙ୍କୁ ଆଉ ଛାପିବାକୁ ଦିଆଯାଇପାରିବ ନାହିଁ । ପ୍ରେସ୍ ଆରମ୍ଭରୁ ସେପର୍ଯ୍ୟନ୍ତ ଚିନ୍ତାମଣିବାବୁ ହିଁ ବିନା କପି-ହୋଲ୍ଡ଼ର୍‌ରେ ପତ୍ରିକାଠାରୁ

ମୁଦ୍ରକ ଯାଏ ଯାବତୀୟ ଛପାକାମର ପ୍ରୁଫ୍ ଦେଖିଆସୁଥିଲେ ଏବଂ ଟ୍ରେଡ୍ଲିଂ କମ୍ପାନୀକୁ ପହିଲେ ଛପା ବରାଦ (order) ଆଣିଲାବେଳେ ଧାର୍ମିକତାର ସହିତ ନିଷ୍କଳଙ୍କ ନିର୍ଭୁଲ ମୁଦ୍ରଣର ମୌଖିକ 'ସତ୍ୟପାଠ' ଆକୁଳ ପଣ୍ଡିତଙ୍କୁ ଶୁଣାଉଥିଲେ ।

ଏବେ ସଙ୍କଟର ସଙ୍ଗିନ୍ ବେଳ ଆସିଗଲା । ଅର୍ଥର ପ୍ରଧାନ ଉତ୍ସ ଥିଲା ଟ୍ରେଡ୍ଲିଂ କମ୍ପାନୀ । ତା'ର ପ୍ରସାଦରୁ ପ୍ରେସ୍‌ରେ ବର୍ଷସାରା ଧୁମଧାମ । ସେ ଯଦି ହାତରୁ ଖସିଯାଏ, ମୁଠି ଚଳିବ କେମିତି, ଗୁଣ୍ଡା ଉଠିବ କେମିତି ? ମହାଭାଳେଣି ପଡ଼ିଲା ଚନ୍ଦ୍ରାନାୟକ ନୀଳକଣ୍ଠଙ୍କ ଶିରରେ । ଆକୁଳ ପଣ୍ଡିତେ ଯେମିତିକା ଦୁର୍ଗତୋଳା ପ୍ରୁଫ୍‌ରିଡ଼ର କଥା କହୁଛନ୍ତି, ସେଭଳିଆ ମହାଯୋଗୀ ପାଗଳର ଲୋକ ଏ କଟକ ମର୍ତ୍ତ୍ୟରେ କାହାନ୍ତି ? ହପ୍ତାଏ ଖଣ୍ଡେ ନାନା ଚେଷ୍ଟା ନାନା ଚିନ୍ତା କରି କରି ଶେଷରେ ନାଗର ନୀଳକଣ୍ଠ ଓ ଚନ୍ଦ୍ରାମଣି ତେଲିଙ୍ଗାବଜାରରେ ଧୂଳିବନରେ ରହୁଥିବା ପୁଷ୍ଟପୋଷକ ପଣ୍ଡିତ ଆକୁଳଙ୍କର ଦ୍ୱାରସ୍ଥ ହେଲେ ।

ପଣ୍ଡିତ ମହାଶୟ ବିପତ୍ତିସଙ୍କୁଳ ଉପସ୍ଥିତ ପରିସ୍ଥିତିର ଭୟାବହ ପରିଣତି ପ୍ରାଞ୍ଜଳ-ଭାବରେ ବୁଝାଇଦେଲେ । ତାହା ଶୁଣି ନୀଳକଣ୍ଠବାବୁ ପଣ୍ଡିତ ମହାଶୟଙ୍କୁ କହିଲେ, "ତୁମେ ଜଣେ ଓସ୍ତାଦ୍ ପ୍ରୁଫ୍‌ରିଡ଼ର୍ ଆମକୁ ଯୋଗାଇଦେବାର ଦାୟିତ୍ୱ ନିଅ । ଦରମା ଯେତେ ପଡ଼ୁ, ସେଥିକି ଚିନ୍ତା କରିବ ନାହିଁ—ମାସକୁ ଶହେ ଟଙ୍କା ପର୍ଯ୍ୟନ୍ତ ଦେବାକୁ ଆମେ ପ୍ରସ୍ତୁତ । ମାତ୍ର ତୁମେ ସନ୍ତୁଷ୍ଟ ହେବାଭଳି ଉଚ୍ଚ ଯୋଗ୍ୟତାସମ୍ପନ୍ନ ଏପରି କାହାକୁ ଆଖପାଖରେ ଦେଖୁଛ କି ?"

ଆକୁଳ ପଣ୍ଡିତେ ଉତ୍ତର ଦେଲେ, "ଏତେ ଟଙ୍କା ଦେବାର ପ୍ରଶ୍ନ ନାହିଁ । ସବୁ ଦିଗରୁ ଧୁରନ୍ଧର ଅପ୍ରତିଦ୍ୱନ୍ଦ୍ୱୀ ଯଥାର୍ଥ ପ୍ରୁଫ୍‌ରିଡ଼ର୍ ଓଡ଼ିଶାରେ ଜଣେମାତ୍ର ଅଛି, ଯେ କି ପ୍ରୁଫ୍ ସଂଶୋଧକ ସମ୍ପ୍ରଦାୟର ଗୁରୁପଦବାଚ୍ୟ । ସେ ହେଉଛି 'କୃଷ୍ଣ' । ଗମ୍ଭୀର ଜ୍ଞାନ, ତୀକ୍ଷ୍ଣ ଚକ୍ଷୁ, ଏ ଦୁଇଟିଯାକ ତା' ପ୍ରତି ଭଗବାନଙ୍କର ଅମୂଲ୍ୟ ଦାନ । ତା' ଆଖିରୁ ଭୁଲ୍ ଖସିଯିବାର କେବେ ଦେଖା ନାହିଁ କି ଶୁଣାନାହିଁ । ସେ ଏଇ ନଭେମ୍ବର ପହିଲରୁ ସାରସ୍ୱତ ପ୍ରେସ୍ ଛାଡ଼ିବ । ତାକୁ ଯଦି ମନେଇ ଆଣିପାରିବେ, ଆପଣଙ୍କ ସବୁ ସୁବିଧା ହୋଇଯିବ । କିନ୍ତୁ ସେ ଏକ ବିଷମ ପିଲା—'ଗଙ୍ଗା କହିଲେ ଥିବ, ଗାଙ୍ଗୀ କହିଲେ ଯିବ ।' ଥରେ ତା' ମନ ଉପରକୁ ସାମାନ୍ୟମାତ୍ର ଆଞ୍ଚ ଆସିଲେ ଆଉ ତାକୁ ରଖିବା ଅସମ୍ଭବ । ଆପଣ ତା' ପାଖକୁ ଯାଆନ୍ତୁ, ଚେଷ୍ଟା କରନ୍ତୁ—ମୁଁ ପଛରେ ଅଛି ।"

ଏବର ଦୁନିଆ ଯୋର ବଦଳିଯାଇ ବିକୃତ ଓଲଟା ମାର୍ଗରେ ଧାଇଁଛି ପ୍ରମତ୍ତ ଉଦ୍ଦଣ୍ଡ ଗତିରେ । କେବଳ ସୂର୍ଯ୍ୟ ଚନ୍ଦ୍ର ଧର୍ମ ପାଳି ଆଗପରି ଠିକ୍ ମାର୍ଗରେ ଯାତାୟାତ ହେଉଛନ୍ତି, ନଇଲେ ଆଉ ସମସ୍ତେ ବେମାର୍ଗୀ, ଉନ୍ମାର୍ଗୀ । ଅତ୍ୟାଧୁନିକ ପରମାଣୁ ବିଜ୍ଞାନର ବିପର୍ଯ୍ୟସ୍ଥା-ଫଳରେ ଖୋଦ୍ ବିଶ୍ୱପ୍ରକୃତି ମଧ୍ୟ ପ୍ରକୃତିଛଡ଼ା ଢଙ୍ଗ ଧରିଲାଣି । ବାର୍ଷିକ ଋତୁଚକ୍ର ପାଟଳା ଘଣ୍ଟା ପରି ବେହେଡ଼ା ଗତି ଧରୁଛି, ନୀତିନିୟମ କିଛି ମାନୁ ନାହିଁ । କିନ୍ତୁ ମୁଁ ଯେଉଁ

ସମୟର କଥା କହୁଛି, ସେତେବେଳେ ତା'ର ପ୍ରକୃତି ଥିଲା ନିୟମିତ, ସଂଯତ, ମୌଳିକ । ତେଣୁ ଠିକ୍ କାଳରେ ସୂର୍ଯ୍ୟଦେବ ଝାଞ୍ଜୁଟା ଖରା ଛାଡୁଥିଲେ, ଠିକ୍ କାଳରେ ଇନ୍ଦ୍ରଦେବ ଲଗାଣ ବର୍ଷା ଗାଳୁଥିଲେ, ଠିକ୍ କାଳରେ ହିମଦେବ ଅଙ୍ଗେ ଅଙ୍ଗେ କାଲୁଆ ଶୀତ ବୋଳୁଥିଲେ । ଋତୁଚକ୍ରର ଆବର୍ତ୍ତନରେ ତିନୋଟିମାତ୍ର ପରିବର୍ତ୍ତନର ପ୍ରାଧାନ୍ୟ ପ୍ରତ୍ୟକ୍ଷ ଅନୁଭୂତ ହେଉଥିଲା । ସାଧାରଣଙ୍କ ବିଶ୍ୱାସରେ, ଲୋକମୁଖରେ ସେହି ତିନୋଟିର ନାମ ଖରା, ବର୍ଷା, ଶୀତ—ଫଗୁଣ-ଚଇତ-ବୈଶାଖ-ଜ୍ୟେଷ୍ଠ ଚାରି ମାସ ଖରାଋତୁ, ଅଷାଢ଼-ଶ୍ରାବଣ-ଭାଦ୍ରବ-ଆଶିଣ ଚାରି ମାସ ବର୍ଷାଋତୁ ଏବଂ କାର୍ତ୍ତିକ-ମଗୁଶିର-ପୁଷ-ମାଘ ଚାରିମାସ ଶୀତଋତୁ । ପୋଥିବର୍ଣ୍ଣିତ ଅନ୍ୟ ତିନି ଋତୁ ସେବେଲର ଲୋକସିଦ୍ଧାନ୍ତରେ ଥିଲା ଅବହେଳାମୟ ବା ଗୌଣସ୍ଥାନୀୟ ।

ଏହି ଶେଷୋକ୍ତ ଋତୁର ପ୍ରଥମ ମାସ କାର୍ତ୍ତିକରୁ ହିଁ ଶୈତ୍ୟର ପ୍ରକୋପ ଆରମ୍ଭ ହୋଇ-ଯାଉଥିଲା । କାର୍ତ୍ତିକସ୍ନାନପାଇଁ କଟକର ଧର୍ମପ୍ରାଣ ନରନାରୀଦଳ ବନାତ ଶାଲ ଆଲୁଆନ କମ୍ବଳ ଆଦି ଶୀତବସ୍ତ୍ର ଘୋଡ଼ିହୋଇ ପାହାନ୍ତାରୁ ପୁଣ୍ୟତୋୟା ମହାନଦୀକୁ (ପୌରାଣିକ ନାମ 'ଚିତ୍ରୋତ୍ପଳା') ଚାଲି ଚାଲି ଯାଉଥିଲାବେଳେ ସେମାନଙ୍କ ଦୁଇ ପାଟିର ଦନ୍ତଶ୍ରେଣୀ ଠକ୍ ଠକ୍ ବାଜୁଥିଲା, ଜାଡ଼ରେ ହାତଗୋଡ଼ କୋଲମାରିଯାଉଥିଲା ।

ସେଇ କାର୍ତ୍ତିକର ଏକ ଶୀତୁଆ ସନ୍ଧ୍ୟାରେ ମୋ ଦ୍ୱାରରେ ଉପସ୍ଥିତ ହେଲେ ଭାଲୁଆ ପଶମୀ ପୋଷାକରେ ଆପାଦମସ୍ତକ ଆବୃତ କରିଥିବା ଦୁଇଜଣ ଭଦ୍ର ମହାଜନ—ଅତି ବିଶିଷ୍ଟ ପଣ୍ଡିତ ନୀଳକଣ୍ଠ ଓ ତାଙ୍କର ସୁମନ୍ତ ସାରଥି ଚନ୍ଦ୍ରାମଣି । ଏକାଠ ଦୁଇମୂର୍ତ୍ତିଙ୍କର ହଠାତ୍ ଅଭିସାର ବଳେ—ମୂର୍ତ୍ତିଏ ବିଷ୍ଣୁ ଶର୍ମା, ଆର ମୂର୍ତ୍ତିକ ଚାଣକ୍ୟ । ତଟସ୍ଥ ହେଲି ସେତିକ, ପ୍ରମାଦ ଗଣିଲି ସେତିକ ।

କେବଳ ଶୁଣାଶୁଣି ଓ ଦୂରଦେଖା ଆଭିଜ୍ଞାନିକ ପରିଚୟ ଆଗରୁ ଥିଲା । ଉଭୟେ ଆସିଥିବା ଯାନରୁ ଓହ୍ଲାଇ ମୋ ପାଖକୁ ଆସିଥିଲେ । ଠିଆ ଠିଆ ସାମାନ୍ୟ ସମ୍ଭାଷଣ ପରେ କିଣ୍ଟୁ ଆପଣେଙ୍କ ଅନୁରୋଧକ୍ରମେ ମୁଁ ତାଙ୍କ ସହିତ ଗାଡ଼ିକି ଉଠିଲି । ନବଭାରତ ପ୍ରେସ୍‌ର ଉପରତାଲାସ୍ଥ ପଣ୍ଡିତଙ୍କ ଏକଚଖରିଆ ଖାସ୍‌କାମରାରେ ତିନିହେଁ ଆସନ ଧରିବାମାତ୍ରେ ସୂତ୍ରଧର ଚନ୍ଦ୍ରାମଣି ଉପୋଦ୍‌ଘାତର ସୂତ୍ରପାତ କଲେ, "ପଣ୍ଡିତ ଅତୁଳ ମିତ୍ର ଆମର ପ୍ରଧାନ ପୃଷ୍ଠପୋଷକ ଓ ପରିପୋଷକ । ତାଙ୍କର ନିୟମିତ ପଢ଼ାରେ ଏ ପ୍ରେସ୍‌ର ପେଟ ଭରପୂର ସ୍ୱଚ୍ଛଳ ରହିଆସିଥିଲା ଏପର୍ଯ୍ୟନ୍ତ । ଏବେ ସେ ପଢ଼ାକାଟର କଡ଼ା ଧମକ ଦେଇଛନ୍ତି, କାରଣ ଆମେ ଆଜିଯାଏ ଯୋଗ୍ୟତର ପ୍ରୁଫ୍‌ରିଡ଼ର୍ ନିଯୁକ୍ତିର ବନ୍ଦୋବସ୍ତ ବ୍ୟବସ୍ଥା କରିପାରି ନାହୁଁ । 'ଏକଶ୍ଚନ୍ଦ୍ରସ୍ତମୋହନ୍ତି ନ ଚ ତାରାଗଣୈରପି' କୃଷ୍ଣଚନ୍ଦ୍ର ହିଁ ଏ କ୍ଷେତ୍ରର ଏକମାତ୍ର ତମୋନାଶକ ବୋଲି ଜାଣି ପଣ୍ଡିତଜୀ ଏଇ ଶୁଭସନ୍ଧ୍ୟାରେ ଆପଣଙ୍କର ସହଯୋଗଭିକ୍ଷୁ । ଆପଣଙ୍କୁ ପାଇଲେ ନୀଳକଣ୍ଠ ବାବୁ ନିଶ୍ଚିନ୍ତ ହେବେ ଏବଂ ତାଙ୍କ ମୁଣ୍ଡବଥା ସମ୍ପୂର୍ଣ୍ଣ ଅପସରିଯିବ । ଆପଣଙ୍କ ଅନୁଭବୀ କବିହୃଦୟ ଆମର ଏହି ନବ୍ୟତନ ସାହିତ୍ୟିକ ସଂସ୍ଥାଟିର

ଆକସ୍ମିକ ସଙ୍କଟ କଥା ସେଦିନର ସହିତ ନିଶ୍ଚୟ ଉପଲବ୍ଧି କରିବ ବୋଲି ଆଶା ।''

ଧୈର୍ଯ୍ୟ ଓ ସହାନୁଭୂତି ସହ ସବୁ କଥା ଶୁଣିଲି । ମନ କେତେକାଂଶରେ ଭଲିଲା, ତାଙ୍କ ପଟକୁ ଢଳିଲା; ମାତ୍ର ତା' ସାଙ୍ଗେ ସାଙ୍ଗେ ଭାବିଲି—ଏ ତ ମାର୍କାମରା ଟେରଢ଼ିଆ, ବୁରି-ଦଉଡ଼କଟା, ଗୋଟାଏ ଗୋଡ଼ ଏଠି ତ ଆର ଗୋଡ଼ଟା ନାଲି ଫାଟକରେ, ଦୈବଦୁର୍ବିପାକରୁ କେବେ ଯଦି 'ମାମୁଘରୁ' ଡାକରା ଆସିଯିବ ଆଉ ଛାପାଖାନାଟା ବାଜ୍ୟାପ୍ତ ହୋଇଯିବ, ମୋର ଗତି ସେତେବେଳେ କ'ଣ ହେବ ? ଏହିପରି ଦୋଦୁଲ୍ୟମାନ ଅବସ୍ଥାରେ ରହି 'ହଁ' ଭରିବି କି 'ନାହିଁ' କରିବି, ତାତ୍କ୍ଷଣିକ କିଛି ନିର୍ଦ୍ଧାର୍ଯ୍ୟ କରି କହିପାରିଲି ନାହିଁ । "ମତେ ଟିକିଏ ଭାବିବାକୁ ସମୟ ଦିଅନ୍ତୁ''—ଏତିକି ବତାଇ କହି ତାଙ୍କଠାରୁ ବିଦାୟ ଆଣିଲି ।

ତା'ଆର ଦିନ ସକାଳେ ଆକୁଳ ପଣ୍ଡିତେ ଜଣକ ହାତରେ ମତେ ଖବର ଦେଲେ, ପ୍ରେସ୍‌କାମ ସାରି ସଞ୍ଜବେଳେ ତାଙ୍କ ନିଜ ଘରଠାକୁ ଯିବାକୁ । ଏଥିରୁ ମୁଁ ତର୍କଣା କରିନେଲି, ନୀଳକଣ୍ଠ ବାବୁ ପୂର୍ବଦିନ ସାନ୍ଧ୍ୟ କଥାବାର୍ତ୍ତାର ସାର ବିବରଣି ଝିର-ମୁହଁରେ ତାର କରିଦେଇଥିବେ ନିଶ୍ଚୟ ଆକୁଳଙ୍କ ଖୋଦ୍ ଇଜଲାସକୁ । ଏଣୁ ଏ ଡାକରାଟା ତାହାରି ପରବର୍ତ୍ତୀ ପଦକ୍ଷେପ ।

ଯାହାହେଉ, ମୁଁ ମୋର ରୁଟିନ୍‌ଗତ ଦୈନନ୍ଦିନ ଜଞ୍ଜାଳ ଖତମ କରି ସାରସ୍ୱତ ପ୍ରେସ୍‌ରୁ ବାହାରିଲି ଶୀତକାଳିଆ ଡାଆଣିଆ ଖରାର ନିବନ୍ତୁଆ ଧାସ ପଶ୍ଚିମ ଦିଗନ୍ତରେ ମୁହଁ ଲୁଚାଇବାପାଇଁ ଖସି ଖସି ଯାଉଥିବାବେଳେ । ଆକୁଳ ମିଶ୍ରେ ବାହାର କକ୍ଷରେ ବସିଥିଲେ ମତେ ଅପେକ୍ଷା କରି । ତାଙ୍କୁ ଭେଟିଲି ଗୋଧୂଳି-ଧୂସର ମ୍ଳାନ-ମଧୁର ଫ୍ଲଯନ୍ତ୍ରର ଦରମଳି ଆଲୁଅରେ । ବସ୍ତୁତଃ, ଓଡ଼ିଶାର ପ୍ରାୟ ପ୍ରତ୍ୟେକ କ୍ଷେତ୍ରରେ ତାଙ୍କର ପ୍ରତିଷ୍ଠା ଥିଲା ଅର୍ହ ଓ ଆସନ ଥିଲା ଆଢ଼୍ୟ ।

ମୁରବ୍ବୀୟ ମାତବ୍ବରିରେ ଆକୁଳ ମିଶ୍ରେ ମୋ ସହିତ କଥା ଆରମ୍ଭ କଲେ । ବାଳକୃଷ୍ଣବାବୁ ଓ ତାଙ୍କ ମଧ୍ୟରେ ଥିବା ସଖ୍ୟ-ଡୋରି ପାଞ୍ଚବର୍ଷତଳୁଁ ଛିଡ଼ିଯାଇଥିବାରୁ ମୋର ସାରସ୍ୱତ ପ୍ରେସ୍ ଛାଡ଼ିବା ନିଷ୍ପତ୍ତିରେ ସେ ସାତିଶୟ ଖୁସି ଥିବାର ପ୍ରକାଶ କଲେ । ଆହୁରି ମଧ୍ୟ ସ୍ପଷ୍ଟ କହିଲେ ଯେ, ମୋର ଭବିଷ୍ୟତ ଭଲ ହିଁ ତାଙ୍କର ଆନ୍ତରିକ କାମନା; କିନ୍ତୁ ଏ ମନକଥାଟି ଏପର୍ଯ୍ୟନ୍ତ ସେ ଆଉ କାହାରି ଆଗରେ ଖୋଲି ନଥିଲେ ବୋଲି ହଲପ କଲା ପରି କହିଲେ । ସେଇ ହିଁ ଯେ ପଣ୍ଡିତ ନୀଳକଣ୍ଠ ଓ ବାବୁ ଚନ୍ଦ୍ରମଣିଙ୍କୁ ମୋ ପାଖକୁ ପଠାଇଥିଲେ, ଏହା ନିଜ ଆଡ଼ୁ ମୋ ଆଗରେ ସ୍ୱୀକାର କଲେ; ଅଧିକନ୍ତୁ, ମତେ ପରିତୁଷ୍ଟ ଓ ଆକୃଷ୍ଟ କରିବା ପାଇଁ ଜଣାଇଲେ ଯେ, ମୋ ଦକ୍ଷତାର ପରାକାଷ୍ଠା ବର୍ଣ୍ଣନ କରିବାକୁ ଯାଇ ସେ ନୀଳକଣ୍ଠଙ୍କ ଆଗରେ "କୃଷ୍ଣକୁ ପାଇବା ଆପଣଙ୍କ ପକ୍ଷରେ ଏକ ଭାଗ୍ୟର କଥା ହେବ''—ଏହିପରି ଅତିରଞ୍ଜିତ ଭାଷାରେ ପୌରୁଷ କରିଥିଲେ ।

ପଣ୍ଡିତ ଆକୁଳଙ୍କର ଏହି ସଦିଚ୍ଛା ଉପରେ ମୋର କିଛି ହିଁ କହିବାର ନଥିଲା, କାରଣ ଉପସଂହାରରେ ସେ ମତେ କହିଥିଲେ, "ପଣ୍ଡିତ ନୀଳକଣ୍ଠ ଦାସଙ୍କ ସାନ୍ନିଧ୍ୟଲାଭର ଏଭଳି ସମ୍ମାନାର୍ହ ସୁଯୋଗ କ୍ୱଚିତ୍ ଲୋକଙ୍କ ଭାଗ୍ୟରେ ଜୁଟେ ।''

ଏହିପରି ସମୟରେ ପଣ୍ଡିତ ନୀଳକଣ୍ଠଙ୍କ ପଞ୍ଚପ୍ରତିନିଧି ଚନ୍ଦ୍ରମଣି ଅଜଗବ ଆବିର୍ଭୂତ ହୋଇଗଲେ । ଭଗବତ ପାଦସ୍ପର୍ଶ କରି କରି 'ଏ ମନ ପାଞ୍ଚୁଥାଇ ଯାହା, କାଳେ ପ୍ରାପତ ହୁଏ ତାହା ।' ନମସ୍କାର-ପ୍ରତିନମସ୍କାରର ଶିଷ୍ଟାଚାର ପାଳନ ପରେ ଚନ୍ଦ୍ରମଣିବାବୁ ସ୍ୱଭାବ-ସୁଲଭ ରହସ୍ୟଚ୍ଛଟାରେ ମତେ ପଚାରିଲେ, "ଆମ ଦରଖାସ୍ତ ଶୁଣାଣି କେବେ ହେଉଛି ?" ମୁଁ ଆତୁର ପଣ୍ଡିତଙ୍କ ଆଡ଼କୁ ଅନାଇଲି । ସେ ମୋ'ପାଇଁ ଉତ୍ତର ଦେଲେ, "ଶୁଣାଣି ସରି ରାୟ ବାହାରିସାରିଛି ତୁମ ସପକ୍ଷରେ ।'' ପରିପୂର୍ଣ୍ଣ ଆନନ୍ଦରେ ଚନ୍ଦ୍ରମଣିବାବୁ ପଣ୍ଡିତ ମହୋଦୟଙ୍କୁ କୃତଜ୍ଞତାବ୍ୟଞ୍ଜକ ପ୍ରଣାମ ଜଣାଇଲେ । ତା'ପରେ ସେ ଓ ମୁଁ ସେଠାରୁ ବିଦାୟ ନେଇ ଏକା ଗାଡ଼ିରେ ଫେରିଲୁଁ ବାଙ୍କାବଜାରକୁ । ଚନ୍ଦ୍ରମଣିବାବୁଙ୍କର ଠିକ୍ ମାହେନ୍ଦ୍ର ମୁହୂର୍ତ୍ତରେ ଏପରି ଆବିର୍ଭାବ ଯେ ପଣ୍ଡିତ ଆତୁରଙ୍କ ଖଡ଼ିଗଣନାଦ୍ୱାରା ସମ୍ଭବ ହୋଇଥିଲା, ଏ ବିଷୟରେ ମୁଁ ନିଃସଂଶୟ ହୋଇଗଲି ।

ନବଭାରତ ପ୍ରେସ୍‌ରେ ପହଞ୍ଚିଲା ପରେ ଚନ୍ଦ୍ରମଣିବାବୁ ମତେ ଟାଣି ନେଇଗଲେ ପଣ୍ଡିତଙ୍କ ଝଟପାଖକୁ ଦୋତାଲାରେ । ଜୁହାର ହେଲି । ହାତ ଚଳୁଥିବା ପାଟି ଚାଲୁଥିବା ଅବସ୍ଥାରେ ସେ ଶୁଭେଚ୍ଛାଗର୍ଭକ ଆଶୀର୍ବାଦ ପଦ ଭଣିଲେ । ସେହି ଅବସରରେ ଚନ୍ଦ୍ରମଣି ମୋ ସମ୍ବନ୍ଧୀୟ ଶୁଭ ବାର୍ତ୍ତାଟି ତାଙ୍କୁ ଶୁଣାନ୍ତେ ସେ ପରମ ସୁଖୀ ହେଲେ ବୋଲି କହିଲେ । ସେତେବେଳକୁ ସନ୍ଧ୍ୟା ଗଡ଼ି ରାତ ବାଜିବାକୁ ଯାଉଥାଏ । ନୀଳକଣ୍ଠଙ୍କର ଏ ହେଉଛି ପ୍ରଥମ ନୈଶାହାର ଜଳଖିଆର ସମୟ । 'ଯା ନିଶା ସର୍ବଭୂତାନାଂ ତସ୍ୟାଂ ଜାଗର୍ତ୍ତି ସଂଯମୀ', ତାଙ୍କର ରାତି ତମାମ୍ କାମ ଚାଲେ—ଗଣ୍ୟଗଣ୍ୟଙ୍କ ଭେଟ, ବନ୍ଧୁ-ବାନ୍ଧବରେ ଆଳାପ, ରାଜନୀତିକ ନିଭୃତ ବିଚାରଣା, ଗୋପନ ମନ୍ତ୍ରଣା, ଏହିପରି କେତେ କ'ଣ । ରାତି ଗୋଟାକ ପୂର୍ବରୁ କେବେ ଖାଇବାକୁ ଅବସର ମିଳେନାହିଁ । ପାହାନ୍ତାବେଳକୁ ଶୋଇବାକୁ ଯାଆନ୍ତି, ଉଠନ୍ତି ତା' ଆରଦିନ ନଅଟାରୁ ଦଶଟା ମଧ୍ୟରେ । ପରେ ପରେ ଜଳଯୋଗ ବା ଫଳାହାର କରନ୍ତି । ମାଧ୍ୟାହ୍ନିକ ପୂର୍ଣ୍ଣଭୋଜନ ହୁଏ ଦିନ ତିନିଟାରେ । ଏଠାରେ ଯେଉଁ ଜଳଖିଆ, ଜଳଯୋଗ କଥା ଲେଖାଗଲା, ସେସବୁରେ ଗ୍ଲେଟ ବା ବଡ଼ ମାଛର ମେଞ୍ଚାଏ ଭଜା ଥାଏ ଅପରିହାର୍ଯ୍ୟ ଏବଂ ତାହାରି ହିଁ ସର୍ବଦା ଅଗ୍ରାଧିକାର । ବସ୍ତୁତଃ, ଓଡ଼ିଶାର ପ୍ରାୟ ପ୍ରତ୍ୟେକ କ୍ଷେତ୍ରରେ ପଣ୍ଡିତ ନୀଳକଣ୍ଠଙ୍କର ପ୍ରତିଷ୍ଠା ଥିଲା ଅର୍ଦ୍ଧ ଓ ଆସନ ଥିଲା ଆଢ୍ୟ ।

### (୩) 'ନବଭାରତ' ନବୋଦ୍ୟୋଗରେ ଯୋଗଦାନ—

ଚତୁରକ୍ଷ ଆତୁର ପଣ୍ଡିତଙ୍କ ମଧ୍ୟବର୍ତ୍ତିତାରେ ନିର୍ଦ୍ଧାରିତ ନିଷ୍ପତ୍ତିକୁ ବିନାଦ୍ୱିଧାରେ ଆକ୍ଷରିକ ମାନିନେଇଥିଲି । ତେଣୁ ସ୍ୱେଚ୍ଛାପ୍ରଣୋଦିତ ମୋ ଅଙ୍ଗୀକୃତ ବଚନକୁ ଅକ୍ଷରେ ଅକ୍ଷରେ ରକ୍ଷା କରି ନଭେମ୍ବର (୧୯୩୪) ପନ୍ଦର ତାରିଖ ଦିନ ସକାଳ ସାଢ଼େ ଆଠଟା ସମୟରେ ନବଭାରତ ମୁଦ୍ରଣାଳୟରେ ଯୋଗଦେଲି ।

ବିନୋଦବିହାରୀ ରୋଡ଼ରୁ ଶାଖାରୂପେ ଆରମ୍ଭି ଥିବା ବାଙ୍କାବଜାର ଗଳିର ମୁଖ୍ୟ ରାସ୍ତା ଉପରେ ଅବସ୍ଥିତ ଓକିଲ ସୁଶୀଳଚନ୍ଦ୍ର ପାଲିତଙ୍କ ଅର୍ଦ୍ଧପକ୍କା-ଅର୍ଦ୍ଧକଚ୍ଚା ଏକ ବସ୍ତ୍ରା-ନିବାସକୁ ଭଡ଼ା ନେଇ ନୀଳକଣ୍ଠବାବୁ ତାହାରି ମଧ୍ୟରେ 'ନବଭାରତ ପ୍ରେସ୍' ସ୍ଥାପନ କରିଥାନ୍ତି । ସାମନା ଅଧିକରେ ଥାଏ ପକ୍କା ଅଂଶ ଓ ପଶ୍ଚାତ୍ ଅଧିକରେ ଥାଏ କଚ୍ଚା ଅଂଶ ଏବଂ ଏ ଉଭୟ ମଧ୍ୟରେ ରହିଥାଏ ତୁଳସୀଚଉରା-ଓ-କୂପଯୁକ୍ତ ପକ୍କା ଚତ୍ୱର । ବାଡ଼ପଟେ ଥାଏ କଣ୍ଟାବାଡ଼ ବେଷ୍ଟିତ ଆୟତାକାର ଫସଲହୀନ ଫାଙ୍କା ଜାଗା, ଯାହାର ଏକ କୋଣରେ ପୁରୁଣାକାଳିଆ ପକ୍କା ପାଇଖାନା (ସେତେବେଳେ ପର୍ଯ୍ୟନ୍ତ ସେପ୍ଟିକ୍ ପାଇଖାନା ରାଜଧାନୀ କଟକରେ ତିଆରି ହୋଇନଥାଏ) ଏବଂ ସର୍ବାଂଶରେ ଘାସାଚ୍ଛାଦିତ ବାଲିଆରି ମାଟିରେ ଉଠିଥାଏ ସ୍ୱଭାବଜନ୍ମା ନାନା ଜାତିର ଗୁଳ୍ମଲତା, ଅନାବନା ଅନାମା ଗଛ, ଆଉ ସେମାନଙ୍କ ମଧ୍ୟରେ ସାହାଡ଼ା ଅଁଳା ପରେ ଷୀରକୋଳି ଇମିତିକା ଅଳ୍ପ କେତୋଟି ଅଲୋଡ଼ା ବୃକ୍ଷ ।

ସାମନା ଅଂଶରେ ତିନୋଟି ମାତ୍ର ପକ୍କା ବଖରା—ତଳମହାଲରେ ଦିଓଟି ଓ ତନ୍ମଧ୍ୟରୁ ଗୋଟିକ ଉପରେ ଠିଆ ଉପର ମହଲଟି । ତଳମହଲର ପ୍ରଥମ (ଦାଣ୍ଡ) ଘରଟି ଅଫିସ୍ ପ୍ରକୋଷ୍ଠ ଓ ତତ୍ସଂଲଗ୍ନ ଅପର ଘରଟି ମେସିନ୍ ପ୍ରକୋଷ୍ଠ । ଅଫିସ୍ କକ୍ଷରେ ବସନ୍ତି ସର୍ବମୋଟ ଦୁଇ ମୂର୍ତ୍ତି—ମେନେଜର ଚିନ୍ତାମଣି ମିଶ୍ର (ବାଜପୁର ବାସିନ୍ଦା) ଓ କିରାଣି ମୁକୁନ୍ଦ ମିଶ୍ର (ପଟିଆ ବାସିନ୍ଦା) । 'ନବଭାରତ' ମାସିକ ପତ୍ରିକା ସହର ଗ୍ରାହକଙ୍କୁ ବଣ୍ଟା ଓ ବାହାର-ଗ୍ରାହକଙ୍କ ପାଖକୁ ଡାକରେ ପଠା, ଚିଠିପତ୍ରାଦି ଡାକବାକ୍ସରେ ପକା, ପ୍ରକାଶକଙ୍କୁ ପ୍ରୁଫ୍ ଦିଆ ଓ ଯଥାସମୟରେ ତାଙ୍କଠାରୁ ଫେରନ୍ତ ଅଣା, ବଜାରରୁ ପ୍ରେସ୍ଜିନିଷ କିଣା, ଡୋଲହାକ ଶୁଣା ପ୍ରଭୃତି କାର୍ଯ୍ୟପାଇଁ 'ଇନ୍ଦ୍ରମଣି' ନାମକ ଅଜ୍ଞାବହ ସୁଧୀର ଯୁବକଟିଏ ପିଅନରୂପେ ରହିଥାଏ । ମେସିନ୍ ପ୍ରକୋଷ୍ଠରେ ଥାଏ 'ବୁଢ଼ୀ ମେସିନ୍' ନାମରେ ଗୋଟିଏ ଫ୍ଲାଟ୍ବେଡ୍ ମେସିନ୍ । ଢେଙ୍କାନାଳ ଜେଲ୍ ପ୍ରେସ୍କୁ ଅର୍ଣ୍ଣନୂଆ ଫ୍ଲାଟ୍ବେଡ୍ ମେସିନ୍ ଆସିବାରୁ ଏହି ପୁରୁଣା 'ବୁଢ଼ୀ ମେସିନ୍'ଟି ନିଲାମ ଦରରେ ବିକ୍ରି କରାଯାଉଥିଲା । ନୀଳକଣ୍ଠ ବାବୁ ଯୋଗାଡ଼ଯନ୍ତ୍ର କରି ଢେଙ୍କାନାଳ ରାଜାବାହାଦୁରଙ୍କୁ ମନାଇ ଅତି ଶସ୍ତାରେ ତାହା ପାଇବାକୁ ସମର୍ଥ ହୋଇଥିଲେ । ସେଥିରେ ସ୍ଲେଟକାଠର ଅଳ୍ପ କେତେକ ପରିବର୍ତ୍ତନ ଓ ମରାମତି କରିଦେଲା ପରେ ତାହା ଭଲ ମେସିନ୍ ପରି ବେଶ୍ କାମ ଦେଉଥିଲା । ଏହାଛଡ଼ା ମେସିନ୍ ଘରର ବାରଣ୍ଡାରେ ନୂଆ ଟ୍ରେଡ୍ଲ ମେସିନଟିଏ ମଧ୍ୟ ବସାଯାଇଥିଲା, ଯହିଁରେ ଛୋଟ ଛୋଟ ସୌଖୀନ କାମ, ବହି କଭର୍, ଛବି, ହାଣ୍ଡ୍ବିଲ୍ ପ୍ରଭୃତି (job work) ଛପା ହେଉଥିଲା । ସେବେଯାଏ ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳ ପରି କଟକ ସହରକୁ ବିଦ୍ୟୁତ୍ଶକ୍ତି ଯୋଗାଣ ସମ୍ଭବପର ହୋଇ ନଥାଏ । ତେଣୁ କଟକର ରାସ୍ତାଘାଟରେ ବିଜୁଳି-ଆଲୁଅ ନଥିଲା କିମ୍ବା ଘରଦ୍ୱାର, ସ୍କୁଲ-କଲେଜ, କୋର୍ଟକଚେରି, ବଜାରହାଟ, ଅଫିସ୍, କାରଖାନା ଆଦିରେ ବିଜୁଳିପଙ୍ଖା ଓ ବିଜୁଳିବତି ଜଳିବାର ବ୍ୟବସ୍ଥା ହୋଇପାରି ନଥିଲା ।

କଟକ ମ୍ୟୁନିସିପାଲିଟି ତରଫରୁ ବିଭିନ୍ନ ସଦର ରାସ୍ତାରେ ଓ ଗଳିଛକମାନଙ୍କରେ ଉଚ୍ଚା ଫାଲୁଅଁଣ୍ଟି ମାନ ସ୍ଥାପନ କରାଯାଇଥିଲା ଏବଂ ସନ୍ଧ୍ୟା ପୂର୍ବରୁ ସେହିସବୁ ଖୁଣ୍ଟିର ଶୀର୍ଷରେ ସ୍ଥାପିତ କାଚ୍ଚଧାରମଧ୍ୟସ୍ଥ 'ଲାଗ୍ଣ' (ଚତୁଷ୍କୋଣାକୃତ ଦୀପାଧାର ବା ଦେଶୀ ଲଣ୍ଠନ-ବିଶେଷ) ଗୁଡ଼ିକରେ ରାତକମାନଙ୍କୁ କିରାସିନ ତେଲ ପୂରାଇ ଚକ୍ର ସାହାଯ୍ୟରେ ଗଡାଗଡ ରାସ୍ତା ଯଥାସମ୍ଭବ ଆଲୋକିତ କରାଯାଉଥିଲା । ଖରାଦିନେ ସ୍କୁଲ-କଲେଜର ବିଭିନ୍ନ ଶ୍ରେଣୀ, ଉପରପାହ୍ୟା ହାକିମହୁକୁମାଙ୍କ ଇଜଲାସ ଓ ଏହିପରି ପ୍ରଧାନ ପ୍ରଧାନ କାର୍ଯ୍ୟାଳୟର କକ୍ଷମାନଙ୍କରେ ଗ୍ରୀଷ୍ମୋପଶମକର ସାମୟିକ ପ୍ରତିକାରରୂପେ ବୃହଦାକାର ଲମ୍ବା-ଚଉଡ଼ା କନାପଙ୍ଖା ଟାଙ୍ଗି ତା'ର ଦୁଇପାର୍ଶ୍ୱରେ ସଲଗ୍ନ ରଜ୍ଜୁକୁ ଅସ୍ଥାୟୀ ଦିନମଜୁରିଆଙ୍କଦ୍ୱାରା ଟଣାଇ ସାରା ପ୍ରକୋଷ୍ଠରେ ବାୟୁ ସଞ୍ଚାଳନର କୃତ୍ରିମ ବ୍ୟବସ୍ଥା କରାଯାଉଥିଲା । ଫ୍ଲାଟ୍ ବେଡ୍ ମେସିନ୍ ଚାଲୁ କରାଇବାକୁ ହେଲେ ତା'ର ଦୁଇ ପାର୍ଶ୍ୱସ୍ଥ ଖୁବ୍ ବଡ଼ ବଡ଼ ଲୁହାଚକକୁ ହସ୍ତଶକ୍ତି ପ୍ରୟୋଗଦ୍ୱାରା ହିଁ ଘୂରାଇବାକୁ ପଡ଼ୁଥିଲା । ଏଥିପାଇଁ ଜୋର୍‌ଦାରଆ ଶ୍ରମଜୀବୀମାନେ ନିଯୁକ୍ତ ହେଉଥିଲେ । ଟ୍ରେଡ୍‌ଲମ୍ୟାନ୍ ତା'ର ପାଦଶକ୍ତି ପ୍ରୟୋଗଦ୍ୱାରା ଟ୍ରେଡଲ୍ ମେସିନ୍‌ର ଚକଦ୍ୱୟକୁ ଘୂରାଇ ଏଣେ ହସ୍ତ ସାହାଯ୍ୟରେ ଛପାକାର୍ଯ୍ୟ ସମ୍ପାଦନ କରୁଥିଲା ।

ପଶ୍ଚାତରେ ଥିବା କଚ୍ଚା ଅଂଶରେ ଯେଉଁ ଘର ବଖରା ଦିଓ ଥାଏ, ସେଗୁଡ଼ିକର ମେଜିଆ ଓ କାନ୍ଥ ପକ୍‌କା ହେଲେହେଁ ଉପର ଛପର ନଡ଼ାଛୁଆଣି—ଗୁଳଘର ପଣ ହେସବୁ ପ୍ରତି-ବର୍ଷ ଛୁଆଣି କରାଯାଏ । ଦୁଇ ବଖରା ମଧ୍ୟରୁ ଯୋଡ଼ିଏ ଅପେକ୍ଷାକୃତ କ୍ଷୁଦ୍ରାକାର—ଗୋଟିକରେ ରୋଷେଇ ହୁଏ, ଆରଟିରେ ରୋଲର୍ ଢଳାଯାଏ । ଅବଶିଷ୍ଟ ବଖରାଦ୍ୱୟ ବେଶ୍ ବଡ଼ ବଡ଼—ଗୋଟିଏ କମ୍ପୋଜଖାନାରୂପେ ଓ ଅନ୍ୟଟି ଦପ୍ତର (ବାଇଣ୍ଡିଂ)ଖାନା ରୂପେ ବ୍ୟବହୃତ ହୁଏ । ଖଞ୍ଜାର ସେହି କଚ୍ଚା ଅଂଶର ଏକ ନାତିସଙ୍କୀର୍ଣ୍ଣ ଗଳିବାଟ ଦେଇ ବାଡ଼ି ଆଡ଼କୁ ଯିବାକୁ ହୁଏ ।

ପ୍ରେସ୍ ଆରମ୍ଭ ହେଲା ଦିନୁଁ ମେନେଜର ଚିନ୍ତାମଣି ମିଶ୍ରେ ଛପା ବେବସାର ଅସରନ୍ତି ଜଞ୍ଜାଳର ରୁଦ୍ଧ ପିଞ୍ଜରାରେ ସକାଳୁ ସଞ୍ଜ ପିଞ୍ଜିହୋଇ ରହୁଥିଲେହେଁ ତାଆର ଭିତରେ ଅଷ୍ଟାବଧାନୀ ସାଜି 'ତେଲଘଡ଼ିରେ ହାତ ପୁଅମୁଣ୍ଡରେ ହାତ' ନ୍ୟାୟରେ ନିଜେ ସମସ୍ତ ପ୍ରୁଫ୍ ଏକା ଏକା ଦେଖିପକାଉଥିଲେ । ସେ ବିଜ୍ଞ ହେଲେହେଁ ତାଙ୍କ ଜୈବୀ ଧାତୁରେ କିଛିଟା ବିଜ୍ଞମ୍ମନ୍ୟତାର ଉଗ୍ର ଛିଟା ମିଶି ରହିଥିଲା । ଫଳତଃ, ଫୁଲ୍ଫାଙ୍କିଆ ବେପରବାୟ ଗତିରେ ସଂଶୋଧିତ ଏସବୁ ପ୍ରୁଫ୍‌ରେ ତ୍ରୁଟିବିଚ୍ୟୁତିସବୁ ପ୍ରାୟତଃ ରହିଯାଉଥିଲା ତାଙ୍କ ଚଷମାପିନ୍ଧା ଆଖିରେ ଧୂଳି ପକେଇ । ବେଳେ ବେଳେ ପାଣ୍ଡୁଲିପିସ୍ଥ ମୂଳଲେଖାଠାରୁ ସଂଶୋଧିତ ପ୍ରୁଫ୍‌ର ପାଠ ସମ୍ପୂର୍ଣ୍ଣ ଅଲଗା ହୋଇଯାଇ ବିଷମ ପ୍ରମାଦ ସୃଷ୍ଟି କରୁଥିଲା । ଏଥିଯୋଗୁଁ ସଂପୃକ୍ତ ଲେଖକଗଣ ମନେ ମନେ ଘୋର ଅସନ୍ତୁଷ୍ଟ ଓ ଉତ୍‌କ୍ଷିପ୍ତ ହେଉଥିଲେ ହେଁ ଦୁର୍ବାସାପ୍ରତିମ ପଣ୍ଡିତ ନୀଳକଣ୍ଠ ପ୍ରେସ୍‌ର ମାଲିକ ହୋଇଥିବାରୁ କେହି ଭୁଣ୍ଡି

ଫିଟାଇବାକୁ ସାହସ କରୁ ନଥିଲେ । ମାତ୍ର ଏବେ ଟେକ୍ସଂ କମ୍ପାନୀ ପ୍ରକାଶିତ ପାଠ୍ୟ-ପୁସ୍ତକର ପୁନର୍ମୁଦ୍ରଣ ବ୍ୟାପାରରେ ଭୟଙ୍କର ଭାବରେ ଠିକ ଠିକଣା ଶିକ୍ଷା ପାଇଥିବାରୁ ମେନେଜର ଚନ୍ଦ୍ରାମଣିଙ୍କର ଚୈତନ୍ୟୋଦୟ ହୋଇଛି । କୋଳାହଳମୟ 'ହାଟ ମଝିରେ ବ୍ରହ୍ମଜ୍ଞାନ' ବ୍ୟାଖ୍ୟାନ ଓଲଟା ଫଳ ଉପୁଜାଇଲା ପରି ଢକ୍‌ଦାରଆ ପ୍ରେସ୍ ମେନେଜର କାମ ଓ ମନମୁନପୋଖା ପ୍ରୁଫ୍ ସଂଶୋଧନ କାମ ଏକସଙ୍ଗେ ଚଳେଇବାକୁ ଅପଚେଷ୍ଟା କଲେ ତହିଁରୁ ବିଷମୟ ଫଳ ଉପୁଜିବା ହିଁ ଯେ ଅବଶ୍ୟମ୍ଭାବୀ, ଚନ୍ଦ୍ରାମଣିବାବୁ ତାହାର ପ୍ରତ୍ୟକ୍ଷ ଅଭିଜ୍ଞତା ଏତେ କାଳେ ଅର୍ଜନ କଲେ । ଏଣୁ 'ଦିଲ୍ଲୀକା ଲଡ୍ଡୁ' ଖାଇ ପସ୍ତେଇଲା ପରେ ଗମ୍ଭୀର ମନନସାପେକ୍ଷ ପ୍ରୁଫ୍‌ସଂଶୋଧନ ବିଦ୍ୟାର ବିପଜ୍ଜନକ ଝିକ୍‌ମାରି ଲେଣ୍ଡାରୁ ନିଷ୍କୃତି ଲଭିବା ସଙ୍କଳ୍ପରେ ଉତ୍କଣ୍ଠାକୁଳ ପଡ଼ିପଡ଼ି ମୁହୂର୍ତ୍ତରେ ତୁରନ୍ତ ମତେ ଆଣିବାକୁ ତାଙ୍କର ଏତେ ସାଧସାଧନା ଓ ଆପ୍ରାଣ ଉଦ୍ୟମ ।

୧୯୩୪ ନଭେମ୍ବର ୧ ତାରିଖରେ ମୁଁ ନବଭାରତ ପ୍ରେସ୍‌ରେ ଯୋଗ ଦେଇଥିବା କଥା ଏଥିପୂର୍ବରୁ କହିସାରିଛି । ଦାଣ୍ଡଘର (ଅଫିସ୍‌ରୁମ୍) ଭିତରକୁ ପଶିଯିବାମାତ୍ରେ ଦେଖିଲି, ଚନ୍ଦ୍ରାମଣିବାବୁ ମତେ ସ୍ୱାଗତ କରିବାପାଇଁ ଆଗରୁ ସେଠିକି ଆସିଯାଇଛନ୍ତି । ଦୁହେଁ ପରସ୍ପର ଦେନାଦେନ ହେଲା ପରେ ମୁଁ ପଣ୍ଡିତଜୀଙ୍କୁ ପୂଜ୍ୟପୂଜା ଅର୍ପିବା ଉଦ୍ଦେଶ୍ୟରେ ଉପରତାଲା ସିଡ଼ିଆଡ଼କୁ ମୁହାଁଇବାକୁ ଉଦ୍ୟତ ହୁଅନ୍ତେ ଚନ୍ଦ୍ରାମଣିବାବୁ ବାଟ ଛେକି ମତେ ଜଣାଇଲେ, "ଇତି ମଧ୍ୟରେ ଆମ ଦୁହିଙ୍କର ଆସ୍ଥାନ ଏଠୁ ଉଠିଯାଇଛି । ବାଖରାବାଦ ନିତ୍ୟାନନ୍ଦ କାନୁନଗୋଙ୍କ ବାସଭବନଠାରୁ ଅଳ୍ପ ଛଡ଼ାରେ ଭଣ୍ଡାରସାହି ଗଳିରେ ପ୍ରେସ୍ ପକ୍ଷରୁ ଗୋଟିଏ କୋଠାଘର ଭଡ଼ା ନିଆଯାଇଛି । ନୀଳକଣ୍ଠବାବୁ ଓ ମୁଁ ତାହାକୁ ଆମର ରହଣି ଡେରାରୂପେ ଆଦରିନେଇଛୁଁ । ପଣ୍ଡିତଜୀଙ୍କ ନିର୍ଦ୍ଦେଶରେ ମୋ ପରିବାର ଓ ସାନଭାଇ କୁଳମଣି ଗାଁରୁ ଏଠାକୁ ଚାଲିଆସିଛନ୍ତି । ଆଜିଠାରୁ ତୁମେ ହେଲ ପଣ୍ଡିତଜୀଙ୍କ ଉପରତାଲା ଆସ୍ଥାନକକ୍ଷର ଅଧିବାସୀ । 'କୁଳ' ତୁମ ପାଖରେ ସଦାବେଳେ ରହି କପି-ହୋଲ୍ଡର୍-ଟେନଂ ପାଇବ, ଆଉ ତା' ସାଙ୍ଗେ ସାଙ୍ଗେ ପ୍ରୁଫ୍-ସଂଶୋଧନ ବିଭାଗର ସମସ୍ତ ଫାଇଲ୍‌ପତ୍ର ରକ୍ଷଣାବେକ୍ଷଣ ଦାୟିତ୍ୱ ତୁଲାଇବ ।"

ଅଫିସ୍‌କକ୍ଷରେ ବସି ଚନ୍ଦ୍ରାମଣିବାବୁ ଓ ମୁଁ ପ୍ରେସ୍‌ର ଦୈନନ୍ଦିନ କାର୍ଯ୍ୟଧାରା ତଥା 'ନବଭାରତ' ମାସିକାର ତାତ୍କାଳିକ ଦୁର୍ବଳ ଆର୍ଥିକ ସ୍ଥିତି ଓ ତାହାର ଦୂରୀକରଣାର୍ଥ ସମ୍ଭାବ୍ୟ ସ୍ୱାବଲମ୍ବନର ପନ୍ଥା ଉଦ୍ଭାବନ ସମ୍ପର୍କରେ କିଛି ସମୟ ବନ୍ଧୁତ୍ୱପୂର୍ଣ୍ଣ ଆଳାପ-ଆଲୋଚନା କଲୁଁ । ସେହି ଅବସରରେ କୁଳମଣି ବାହାରୁ ପଶିଆସି ସବୁ ଜୁହାରଟିଏ ପକାଇ ମତେ ଭାଇନା ଚନ୍ଦ୍ରାମଣିଙ୍କ ଇଙ୍ଗିତରେ ଉପରତାଲକୁ ବାଟ କଢ଼େଇନେଲେ । କୋଠରିଟି ଭିତରେ ଆଲମାରି, ଚଳନ୍ତି ଫାଇଲ୍‌ରଖା ର୍ୟାକ୍, ମସୃଣ ଆସ୍ତରଣାବୃତ ଟେବୁଲ, ଚେୟାର୍, ଲେଖନଉପକରଣାଦି ବେଶ୍ ଶୃଙ୍ଖଳିତ ରୁଚିସମ୍ମତ ଢଙ୍ଗରେ ସଜା ହୋଇ ରଖାଯାଇଥିଲା । ଏଗୁଡ଼ିକଠାରୁ କିଛି ବ୍ୟବଧାନରେ କାନ୍ଥକୁ ଲାଗି ପଡ଼ିଥାଏ ସୁପାତି ଶଯ୍ୟାଯୁକ୍ତ ଦୁଇ-

ଜଣକଆ ଚଉକିଟିଏ କ୍ୱଚିତ୍-ଆଗତ ଅଭ୍ୟାଗତ ବା ବନ୍ଧୁବାନ୍ଧବଙ୍କ ପାଇଁ, କେତେବେଳେ କମିତ ଇଚ୍ଛା ହେଲେ ମୁଁ ମଧ୍ୟ ତହିଁରେ ଟିକିଏ ଗଡ଼ପଡ଼ ହେବାପାଇଁ । ମୋ ଟେବୁଲ ଉପରେ ଆଗରୁ ଯାହା କିଛି ପ୍ରୁଫ୍ ଥିଲା, ପଛକୁ ପଛ ଛେକକୁ ଛେକ ଆସି ଯାହା ପୁଣି ଜମା ହେଲା, ସେ ସମସ୍ତ ମତେ 'ସମୁଦ୍ରକୁ ଶଙ୍ଖେ ପଣା' ପରି ସାମାନ୍ୟ । ପ୍ରୁଫ୍‌ଗୁଡ଼ିକ ମଧ୍ୟରୁ ଅର୍ଦ୍ଧାଧିକ ଭାଗ ଥିଲା ଗ୍ୟାଲି ପ୍ରୁଫ୍, ଦୁଇଟି ଫାଇନାଲ୍ ପ୍ରୁଫ୍, ଗୋଟିଏ ମେସିନ୍ ପ୍ରୁଫ୍ । ସବୁତକ କାମ ପିଲାଖେଳ ଭଳି ଅବଲୀଳାକ୍ରମେ ଗୋଟାକ ପରେ ଗୋଟା ବାରଟା ପୂର୍ବରୁ ଶେଷ କରିଦେଇ ପରବର୍ତ୍ତୀ କାର୍ଯ୍ୟାନୁଷ୍ଠାନ ପାଇଁ ସମ୍ପୃକ୍ତ କରେକ୍ଟର୍‌ଙ୍କ ପାଖକୁ ପଠାଇଦେଇଥିଲି । ଟେବୁଲ୍ ଶୂନ୍ । ହାତ ଖାଲି ହୋଇଗଲା, ତା' ସାଙ୍ଗକୁ ପେଟ ବି ଖାଲି ଖାଲି ଲାଗିଲା । କୁଳମଣି ତଳୁ ଖବର ଆଣିଲେ—ଦ୍ୱିଶଟାଯାଏ ଆଉ ପ୍ରୁଫ୍ ଆସିବ ନାହିଁ । ମୁଁ ନିଶ୍ଚିନ୍ତ ମନରେ ମଧ୍ୟାହ୍ନଭୋଜନପାଇଁ ଦ୍ରୁତ ପଦକ୍ଷେପରେ ଚାଲିଲି ମହମ୍ମଦିଆବଜାରସ୍ଥ ମୋ ବାସକୁଟୀରକୁ ।

ଖରାବେଳଟି ବସାରେ ଗଡ଼ାଇ ଗ୍ରୀଷ୍ମଲେଉଟ ହେଲା ଉତ୍ତାରେ ପୁଣି ପ୍ରେସ୍‌କୁ ଗଡ଼ିଲି । ଖରାବେଳଆ କମ୍ପୋଜର ପାଠ ସବୁରୁ କିଛି ପ୍ରୁଫ୍ ଉଠି ମୋ ଟେବୁଲକୁ ଆସିସାରିଥାଏ, ବାକିତକ କ୍ରମାନ୍ୱୟରେ ଆସିବାରେ ଲାଗିଥାଏ । 'ବଳମ୍ୱେନାଳଂ'—ପକେଇରଖି ଲଭି ନ'ଣ, ଯେତେ ଜଳଦି ଖତମ୍ କରିଦେବା ଶ୍ରେୟସ୍କର । କୁଳମଣିଙ୍କ ସହଯୋଗରେ ଚିଙ୍କି-କୁଟା ଆରମ୍ଭ କରିଦେଲି । ମୋ ସମା-ପାହାରରେ ସ୍ୱଉଳ ତୁଳନାରେ ଚମ୍ପୁରାର ବେଶୀ ବାହାରେ ବୋଲି କଟକର କମ୍ପୋଜିଟର୍-କରେକ୍ଟର୍ ମହଲରେ ଖୁସି ଅପରିସୀମ । କାରଣ ଗ୍ୟାଲି ପ୍ରୁଫ୍‌ରେ ଥିବା ଯାବତ ପ୍ରକାରର ଭୁଲ୍‌ଗୁଡ଼ାକୁ ମୋ ଟିକିନିଖି କାଟ ଅନୁସାରେ କରେକ୍ଟର୍‌ମାନେ ପକ୍କା ଠିକ୍‌ଭାବରେ ଶୁଧାରି ଦେଇପାରିଲେ ପରବର୍ତ୍ତୀ ପେଜ୍‌ପ୍ରୁଫ୍ ଶୁଦ୍ଧ ନିର୍ମଳ ହୋଇ ବାହାରିବ, ତହିଁରେ ଗୋଟାଏ ସୁଦ୍ଧା ଭୁଲ୍ ରହି ନଥିବ, ଯେହେତୁ ସବୁଯାକ ଭୁଲଭଟକା ଏକାବେଳେ ମୂଳବାଡ଼ିଆ ହୋଇଯାଇଥିବ । ଏହା ଫଳରେ ପେଜ୍-କରେକ୍ଟରଙ୍କୁ ମୋଟେ ଗଣ୍ଠି ହଲାଇବାକୁ ପଡ଼ିବ ନାହିଁ, ଅଥଚ ପ୍ରେସ୍ ବିଧାନାନୁଯାୟୀ ତାଙ୍କୁ ପେଜ୍-କରେକ୍‌ସନର ନିର୍ଦ୍ଧାରିତ ମଜୁରି ବିନା ମିହନ୍ତରେ ପୂରା ମିଳିଯିବ । ଏଥିଯୋଗୁଁ ପ୍ରୁଫ୍-ରିଡ଼ର୍ ହିସାବରେ ମୋ ବରିଷ୍ଠ ବିଶାରଦପଣରେ ବିପୁଳ ଖ୍ୟାତିପ୍ରଶସ୍ତି କଟକର ସୀମାପରିସର ଟପି ମାନ୍ଦ୍ରାଜପ୍ରଦେଶାନ୍ତର୍ଗତ ବ୍ରହ୍ମପୁର ପର୍ଯ୍ୟନ୍ତ ଖେଦିଯାଇଥିଲା । ସ୍ୱର୍ଭିନ୍ୟୁତ ଭୁତପ୍ରୀତିରେ ମୁଁ ଏହା ପ୍ରଚ୍ଛର ଉଦ୍ଦେଶ୍ୟରେ ଲେଖୁନାହିଁ, ସତ୍ୟର ନଗ୍ନଡ଼ମ୍ବର ପ୍ରକାଶ ହିଁ ଏହାର ଅଭିପ୍ରାୟ । ସନାତନ ହିନ୍ଦୁ ଦର୍ଶନର ସୋଽହଂ ବାଦରେ ମୁଁ ପ୍ରଚଣ୍ଡ ବିଶ୍ୱାସୀ । ଏଣୁ ମୋଠାରେ ସ୍ୱାଭିମାନ ପୂର୍ଣ୍ଣମାତ୍ରାରେ ଅଛି; କିନ୍ତୁ ଗର୍ବ ବା ଅହଂକାରର ମୁଣ୍ଡୁହୁଁ ସତ୍ତ୍ୱା ନାହିଁ ।

ପ୍ରୁଫ୍‌ଶୋଧନ ପାଇଁଟି ହାତରୁ ଛିଣ୍ଡିବାପାଇଁ ଅଳ୍ପମାତ୍ର ବେଳ ବାକି ଥାଏ, ଏହି ସମୟରେ ମେନେଜରଙ୍କ ମହକୁମାରୁ କଡ଼ା ୱାରେଣ୍ଟ ଆସିଲା । ସେତେବେଳକୁ ସୂର୍ଯ୍ୟବୁଡ଼

ହୋଇସାରିଥାଏ, ସମସ୍ତ ଛଅଟା ପାଖ ଧରି ଆସୁଥାଏ । କାମ ଫାଇଲ୍‌ରେ ଭୋର ଭିଡ଼ ଧଡ଼ପଡ଼ ହୋଇ ଅଫିସ୍‌ରୁମ୍‌କୁ ଧପଡ଼ିଲି । ଆରାମ-ଚୌକିରେ ସମାସୀନ ମହର୍ଷି ବାଲ୍ମୀକି ବତ୍ ଦୀର୍ଘ ଶ୍ମଶ୍ରୁଧର 'ପିଲଙ୍କ ରାମାୟଣ' ରଚୟିତା ମହାମନୀଷୀ ନୀଳକଣ୍ଠ । ବାମହସ୍ତାଙ୍ଗୁଳିମାଳା ଘନଶ୍ମଶ୍ରୁଗୁଚ୍ଛକୁ ଘନ ଘନ ସାଉଁଳି ସରଳ ସୁସଜ୍ଜ କରିବାରେ ବ୍ୟସ୍ତ । ମଥା ମୋର ଅବନତ ହୋଇଗଲା ଆପେ ଆପେ । ପଣ୍ଡିତଙ୍କ ଉଦାତ୍ତ ସ୍ୱରର ଶ୍ଳୋକଟିଏ ପଢ଼ି ଆଶୀର୍ବାଦ କଲେ ମତେ ।

ଭଣ୍ଡାରିସାହି ବସାରୁ ଆସିଥାନ୍ତି ସେ ହାତଟଣା ରିକ୍‌ସାଟିରେ ବସି । ଉଲ୍ଲେଖଯୋଗ୍ୟ ଯେ, କଟକରେ ସେତେବେଳେ ଯାତ୍ରୀବାହୀ ହାତଟଣା ରିକ୍‌ସା ନୂଆ ହୋଇ ପ୍ରଚଳିତ ହୋଇସାରିଥିଲା । ସେଥିରେ ଯାତ୍ରୀ-ବସିବା ଆସନଟି ଥିଲା ଖୁବ୍ ଫରଚ୍ଛ, ଆସନର ଗଦି ଖୁବ ମୋଲାଏମ । ସେକାଳିଆ ଅନ୍ନଲପେଟା ଗଣ୍ଡିଦାର ମାରୁଆଡ଼ିଙ୍କ ଭଳି ପୃଥୁଳକାୟ ଦୁଇଜଣ ବ୍ୟକ୍ତି ତହିଁରେ ପରମ ଆରାମରେ ଗୋଡ଼ ଉପରେ ଗୋଡ଼ ଥାପି ବସିପାରୁଥିଲେ । ଏହାର କେତେ ବର୍ଷ ପରେ ଯାତ୍ରୀବହନ ସାଇକେଲରିକ୍‌ସା କଟକରେ ଚାଲୁ ହୋଇ ଖୁବ୍ ଆଦୃତ ହେଲା ଏବଂ ତା' ଫଳରେ ହାତଟଣା ରିକ୍‌ସା ଅଚଳ ଧରି କ୍ରମଶଃ ହ୍ରାସ ପାଇ ପାଇ ଶେଷକୁ ଲୁପ୍ତପ୍ରାୟ ହୋଇଗଲା । ଯେଉଁ ଅଳ୍ପ କେତୋଟି ରହିଲା, ତାହା କେବଳ ମାଲବାହୀ ରିକ୍‌ସାରୂପେ କିଛି କାଳ ଚଳପ୍ରଚଳ ହେଲା । ଏହି ନବପ୍ରବର୍ତ୍ତିତ ସାଇକେଲରିକ୍‌ସା ମଧ୍ୟ ଠିକ୍ ହାତଟଣା ରିକ୍‌ସା ଭଳି ପ୍ରଶସ୍ତ ଓ ଦୁଇଜଣ ସ୍ୱଚ୍ଛନ୍ଦରେ ବସିବାପାଇଁ ବେଶ୍ ସୁଖକର ହୋଇଥିଲା । ମାତ୍ର ଯୁଗମହିମାରେ ଅର୍ଥଲିପ୍ସା ବଢ଼ିବା ସଙ୍ଗେ ସଙ୍ଗେ ପରବର୍ତ୍ତୀ ସମୟରେ ନିର୍ମିତ ସାଇକେଲରିକ୍‌ସାମାନଙ୍କ ଓସାର ଓ ଆସନ ଅପ୍ରସର ହୋଇଗଲା । ଇଦାନୀଂ ଯେତେ ସାଇକେଲରିକ୍‌ସା ଗଢ଼ାହେଉଛି, ସେସବୁ ଦିନକୁ ଦିନ ଆହୁରି ନଳିଆ ଓ ଅପ୍ରଶସ୍ତ ହୋଇ ହୋଇ ଚାଲିଛି । ସେଥିରେ ଦେହ ସାଙ୍କୁଡ଼ାଇ ଜାକିଜୁକି ହୋଇ ନ ବସିଲେ ସାଧାରଣ ସ୍ୱାସ୍ଥ୍ୟର ଦୁଇଜଣ ବ୍ୟକ୍ତି କେବେହେଲେ ସହଜ ସୁବିଧାରେ ବେଶୀ ବାଟ ଯାଇପାରିବେ ନାହିଁ । ଏତେ ଅସୁବିଧା ସତ୍ତ୍ୱେ ଲୋକେ କାନନାକ ମୋଡ଼ିହୋଇ ରିକ୍‌ସାଚାଳକର ସାଲିସହୀନ ହାଙ୍କ ଅନୁସାରେ ଅମୂଲମୂଲ ଭଡ଼ା ଦେଇ ଏଭଳି ଅନୁପଯୋଗୀ ଯାନରେ ଯାତ୍ରା କରିବାକୁ ବାଧ୍ୟ ହେଉଛନ୍ତି । ଏବେ ଖୁସି ବିନା ଘୋଷଣାରେ ରିକ୍‌ସା ନିୟନ୍ତ୍ରଣ ଉପରୁ ଆଇନ କଟକଣା ଉଠିଯାଇ ବେଆଇନ ଅଘଟଣ ଜାରି ହୋଇଛି । କଟକ ସହରରେ ସହସ୍ରାଧିକ ସାଇକେଲ୍‌ରିକ୍‌ସା ଚାଲୁଛି; କିନ୍ତୁ ଗୋଟାଏ ସୁଦ୍ଧା କାହିଁରେ ବେଲ୍ ନାହିଁ କି ଲାଇଟ୍ ନାହିଁ । ଏହି ଦଣ୍ଡନୀୟ ଅପରାଧର ଧରପକଡ଼କୁ କର୍ତ୍ତୃମହଲ ପକ୍ଷରୁ ଶ୍ଳଥପଣ ଦିଆଯାଇଛି, ଯାହାଫଳରେ ପ୍ରତ୍ୟହ ଗଣ୍ଡା ଗଣ୍ଡା ଅପ୍ରୀତିକର ଘଟଣା ଘଟୁଛି ଓ ଘଟଣାସ୍ଥଳରେ ବହୁ ସମୟ ଧରି ଉତ୍ତେଜନା ଲାଗିରହୁଛି । ଲୋକପ୍ରିୟ ବୋଲି ମନକୁ ମନ ବୋଲାଇହେଉଥିବା ସରକାର ଓ ସରକାରୀ ପ୍ରତିନିଧିଦ୍ୱାରା ପରିଚାଳିତ ପୌରସଭା କର୍ତ୍ତୃପକ୍ଷ ଏଭଳି ରିକ୍‌ସାସବୁକୁ ଲାଇସେନ୍‌ସ ଦେବାରେ କି ତାତ୍ପର୍ଯ୍ୟ ରହିଛି, ଜାଣିବାକୁ କେହି

ପାଟି ଖୋଲୁ ନାହିଁ କି ଏ ପ୍ରସଙ୍ଗ ଉପରେ କାହାରିଆଡ଼ୁ ଗୁରୁତ୍ୱ ଦିଆଯାଉ ନାହିଁ, ଗୁପ ପଡ଼ୁ ନାହିଁ, ପତ୍ରପତ୍ରିକା ମଧ୍ୟ ନୀରବ, ମୂକ । ଏଣୁ ଲୋକକଥାଣୀ ବର୍ଣ୍ଣିତ 'କୋଦଣ୍ଡା' ନ୍ୟାୟରେ— 'କି ଖରି ବର୍ମା ଏହି ମନ୍ତ୍ରେ, କାଲ କଟଇ ହାନ୍ତସନ୍ତେ ।'

ସୂତ୍ରଧର ଚନ୍ଦ୍ରାମଣି 'ନବଭାରତ' ପତ୍ରିକା ପ୍ରସଙ୍ଗ ଉତ୍ଥାପନ୍ତେ ତାହାର ଶିଅ ଧରି ପ୍ରବର ମନୀଷୀ ନୀଳକଣ୍ଠ ଓଡ଼ିଆ ବର୍ଣ୍ଣମାଳାରେ କେତେକ ସଂସ୍କାର ପ୍ରବର୍ତ୍ତନର ଆବଶ୍ୟକତା ସମ୍ପର୍କରେ ଆଲୋକପାତ କଲେ । ତାଙ୍କ ସହଜାତ ଧୀମତ୍ତା ଅକଳନୀୟ, ଅକଳ୍ପନୀୟ । ମେଦିନୀପୁରର ଓଡ଼ିଆ ଈଶ୍ୱର ପଣ୍ଡା ପଦପଦବୀଲୋଭ ଲାଳସାରେ ବଙ୍ଗାଳୀ ପାଲଟି ସାଙ୍ଗିଆ ଘୋଡ଼େଇ ପଣ୍ଡିତ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ବୋଲାଇଥିଲେ ହେଁ, ତାଙ୍କ ପାଣ୍ଡିତ୍ୟ ଦୀପ୍ତିମାନ୍ ସୂର୍ଯ୍ୟରୂପୀ ନୀଳକଣ୍ଠଙ୍କ ଆଗରେ ଜ୍ୟୋତିରିଙ୍ଗଣର କ୍ଷୀଣ ଜ୍ୟୋତିସଦୃଶ ମ୍ଳାନ ଓ ସ୍ତିମିତ । ସଂସ୍କୃତ 'ସାଗର' ଶବ୍ଦର ଦ୍ୱିବିଧ ଅର୍ଥ—ଗୋଟିଏ ହେଉଛି 'ସମୁଦ୍ର' (ଯେପରି 'ଆରବ ସାଗର') ଏବଂ ଅନ୍ୟଟି 'ପୁଷ୍କରିଣୀ' ବା 'ସରୋବର' (ଯେପରି ଭୁବନେଶ୍ୱରର 'ବିନ୍ଦୁସାଗର' ପୁଷ୍କରିଣୀ ଓ କୋରାପୁଟର 'ରାମ ସାଗର' ସରୋବର) । ପଣ୍ଡିତ ନୀଳକଣ୍ଠ ପ୍ରକୃତରେ ପଣ୍ଡା+ଇତ—ବହୁମୁଖୀ ପାଣ୍ଡିତ୍ୟର ଅଗାଧ ଆକର, ରତ୍ନଦନ୍ତୀ, ବିଦ୍ୟାବାରିଧି । ତାଙ୍କ ଅସୀମ ଅନନ୍ତ ଜ୍ଞାନସମୁଦ୍ର ତୁଳନାରେ ଈଶ୍ୱରଚନ୍ଦ୍ରଙ୍କ 'ବିଦ୍ୟାସାଗର' ଉପାଧିଟି କ୍ଷୁଦ୍ରାୟତନ ପୁଷ୍କରିଣୀ ସଦୃଶ ଅତି ସୀମିତ ବିଦ୍ୟାର ହିଁ ସୂଚକ । ଏମନ୍ତ ବିଶିଷ୍ଟ ପୁରୁଷ ପଣ୍ଡିତ ନୀଳକଣ୍ଠଙ୍କ ସନ୍ନିଧିରେ ବସି ଆଲୋଚନା କରିବାକୁ ସମକକ୍ଷ ପଟ ହେବାର ଯୋଗ୍ୟତା ମୋର ଏ ଜନ୍ମଟା ସାରିଗଲେ ମଧ୍ୟ ସମ୍ଭବ ନହେବ। ଯେଉଁପରି ଧ୍ରୁବ ସତ୍ୟ, କଟ ଖଞ୍ଜିବାର କାଏଦା ହାସଲରେ ମୋ ଓସ୍ତାଦ ହାତର ବହୁଜ୍ଞତା ଓ ପ୍ରାବୀଣ୍ୟ ସେହିପରି ନିରିଟ ସତ୍ୟ । ମୋର ଏହି ବିଶେଷ ପାରଦର୍ଶିତାଟି 'ଥିସିସ୍' ଲେଖାର ମୋଟେ ଧାର ନଧାରି ସୌଜନ୍ୟସୂଚକ ପିଏଚ୍. ଡି (Ph. D) ବା ଡି. ଲିଟ୍. (D. Litt.) ଉପାଧି ଲାଭ କରିବା ପରି ଭାଗ୍ୟର ଦାନ ବୋଲି ମନେହୁଏ । ସେହି ଦୁର୍ଲଭ ସମ୍ବଳ ହିଁ ମୋର ପରମ ବଳ ।

ବର୍ଣ୍ଣମାଳା ସଂସ୍କାର ସମ୍ବନ୍ଧରେ ବିଦ୍ୱଦ୍‌ବର ନୀଳକଣ୍ଠଙ୍କ ମନରେ ଆପାତ ବିଚାରପାଇଁ ଯେଉଁ କେତୋଟି ପ୍ରସ୍ତାବ ଉଙ୍କି ମାରିଥିଲା, ତାହାର ସାର ସଂକ୍ଷେପ ଏହିପରି—

(୧) ଓଡ଼ିଆ ଭାଷାର ଶବ୍ଦରାଶି ସଂଖ୍ୟାରେ ବିପୁଳ ହେଲେହେଁ ତହିଁରେ କୁତ୍ରାପି ସଂସ୍କୃତ ହ୍ରସ୍ୱ ଌ ଓ ଦୀର୍ଘ ୡ ବ୍ୟବହାରର ଅସ୍ତିତ୍ୱ ନାହିଁ । ଏହି ସ୍ୱରବର୍ଣ୍ଣଦ୍ୱୟ ଆମ ଭାଷାରେ ସମ୍ପୂର୍ଣ୍ଣ ଅକାମୀ ଓ ଅଦରକାରୀ ହୋଇଯାଇଥିବାରୁ ଓଡ଼ିଆ ବ୍ୟାକରଣର ସ୍ୱରବର୍ଣ୍ଣମାଳା ମଧ୍ୟରୁ ଏ ଦୁଇଟିକୁ ସବୁଦିନପାଇଁ ବାଦ୍ ଦିଆଯାଇସାରିଛି । ଏବେ ଇ-ଈ, ଉ-ଊ, ଋ-ୠ ମଧ୍ୟରୁ ଦୀର୍ଘ ଈ, ଦୀର୍ଘ ଊ ଓ ଦୀର୍ଘ ୠକୁ ମଧ୍ୟ ବାଦ୍ ଦେଇ ହେବ କି ?

(୨) ସଂସ୍କୃତ ବର୍ଣ୍ଣମାଳା ମଧ୍ୟରେ ଥିବା ଦୁଇଟା 'ବ' ମଧ୍ୟରୁ କେବଳ 'ବର୍ଗ୍ୟ ବ'କୁ ଓଡ଼ିଆ ବ୍ୟାକରଣର ବର୍ଣ୍ଣମାଳାରେ ରଖି 'ଅବର୍ଗ୍ୟ ବ'କୁ ପୂରାପୂରି ଉଡ଼ାଇଦେଲେ କ୍ଷତି କ'ଣ ?

(୩) ସଂସ୍କୃତ ପରି ଓଡ଼ିଆରେ 'ଶ ଷ ସ' ଏପରି ତିନୋଟା ପ୍ରାୟ ସମୋଚ୍ଚାରିତ ବର୍ଣ୍ଣ ରହିଆସିଛି । ଏ ତିନୋଟିରୁ ଯେକୌଣସି ଗୋଟିଏ ମାତ୍ର ରହିଲେ କ'ଣ କାମ ଚଳିବ ନାହିଁ ?

(୪) ତତ୍ସମ (ସଂସ୍କୃତ), ତଦ୍ଭବ (ସଂସ୍କୃତରୁ ଉଦ୍ଭୂତ ବା ଅପଭ୍ରଷ୍ଟ), ଯାବନିକ (ଉର୍ଦ୍ଦୁ, ଆରବୀ ଓ ପାର୍ସୀଶବ୍ଦରୁ ଆନୀତ) ଓ ବୈଦେଶିକ (ଲାଟିନ୍, ଇଂରାଜୀ, ପର୍ତ୍ତୁଗିଜ୍, ଚୀନା, ଜାପାନୀ ପ୍ରଭୃତି ଶବ୍ଦରୁ ଆନୀତ) ଯେତେ ଶବ୍ଦ ଆମ ଓଡ଼ିଆ ଭାଷାରେ ଚଳୁଛି, ସେଥିରେ ଥିବା ଯୁକ୍ତାକ୍ଷର ଗୁଡ଼ିକର ସଂଖ୍ୟାକୁ ଯଥେଷ୍ଟ ସଙ୍କୁଚିତ କରି ଯେତିକ ନ ରହିଲେ ନଚଳେ କେବଳ ସେତିକ ରଖି ଅନ୍ୟ ସମସ୍ତଙ୍କୁ ହଳନ୍ତ (୍) ଓ ଅନୁସ୍ୱାର (ଂ) ସାହାଯ୍ୟରେ ସହଜତର ପଦ୍ଧତିରେ ଲେଖିବାର ଧାରା ଆଶୁ ପ୍ରବର୍ତ୍ତନ କରିବାକୁ ହେବ ।

ଏହି ଶେଷୋକ୍ତ (ହଳନ୍ତ ଓ ଅନୁସ୍ୱାରର ବହୁଳ ବ୍ୟବହାର) ବର୍ଣ୍ଣସଂସ୍କାରଟି ଉପରେ ନୀଳକଣ୍ଠବାବୁ ସର୍ବାଧିକ ଗୁରୁତ୍ୱ ପ୍ରଯୋଗ କରିଥିଲେ ଏବଂ 'ନବଭାରତ' ମାସିକପତ୍ରିକାରେ ଗଦ୍ୟ ପଦ୍ୟ ଯେତେ ଲେଖା ପ୍ରକାଶ ପାଇବ, ସେ ସମସ୍ତ ଏହି ନବ୍ୟରୀତିରେ କମ୍ପୋଜ ହୋଇ ମୁଦ୍ରିତ ହେଲେ ଏ ସଂସ୍କାର-ପ୍ରଚେଷ୍ଟାର ବ୍ୟାପକ ପ୍ରଚାର ହୋଇପାରିବ ବୋଲି କହିଲେ । 'ନବଭାରତ'ର ପ୍ରୁଫ୍‌ସଂଶୋଧକ ତଥା ଭାଷା ସମ୍ମାର୍ଜକ ଭାବରେ ଏହି ଗୁରୁ ଦାୟିତ୍ୱର ଯଥାର୍ଥ ରୂପାୟନ ପାଇଁ ମୋ ବଳିଷ୍ଠ ଭୂମିକାକୁ ସେ ଆଶାୟୀ ଚକ୍ଷୁରେ ସେ ଚାହିଁବସିଛନ୍ତି, ଏହା ମଧ୍ୟ ପ୍ରକାଶ କଲେ ।

ସେହି ଗିରିରାଜ ହିମାଦ୍ରିମହୋଦୟଙ୍କ ପ୍ରତି କ୍ଷୁଦ୍ର 'ନଗର' ମୁଣ୍ଡିଆ ପ୍ରାୟ ନଗଣ୍ୟ ମୁଁ ଚରମ ବିନମ୍ରତା ପ୍ରଦର୍ଶନପୂର୍ବକ ତାଙ୍କ ପ୍ରସ୍ତାବଗୁଡ଼ିକ ସମ୍ପର୍କରେ ପ୍ରତିକ୍ରିୟାମୂଳକ ମୋର ସ୍ୱାଧୀନ ମତାମତ ମୁକ୍ତକଣ୍ଠରେ ଜଣାଇଲି—

(୧) ଓଡ଼ିଆ ଅଭିଧାନମାନ ଧାରଣା ଦିଏ ଯେ, ଆମ ଭାଷାରେ ଯେତେ ଶବ୍ଦ ବ୍ୟବହୃତ ହୋଇଆସୁଛି, ତା'ର ଶତକଡ଼ା ସତୁରି ଭାଗ ହେଉଛି ସଂସ୍କୃତ, ଯାହାକୁ ଓଡ଼ିଆ ବ୍ୟାକରଣରେ 'ତତ୍ସମ' (ଅର୍ଥାତ୍ 'ସଂସ୍କୃତସମ') ଶବ୍ଦ ବୋଲି ନାମିତ କରାଯାଇଛି ଏବଂ ଅବଶିଷ୍ଟ ତିରିଶ ଭାଗ ମଧ୍ୟରେ ଦେଶଜ, ତଦ୍‌ଭବ, ଯାବନିକ ଓ ବୈଦେଶିକ ଶବ୍ଦ ଅନ୍ତର୍ଭୁକ୍ତ । 'ତତ୍ସମ' ଶବ୍ଦଗୁଡ଼ିକ ଅବିକଳ ସଂସ୍କୃତ ବ୍ୟାକରଣର ବିଧିବିଧାନଦ୍ୱାରା ନିୟନ୍ତ୍ରିତ—ଓଡ଼ିଆ ବ୍ୟାକରଣର ନିୟମପର୍ଯ୍ୟାୟରେ ନୁହେଁ । ଏଣୁ 'ଇ ଉ ଋ' ଏହି ତିନି ସ୍ୱରବର୍ଣ୍ଣ (ସାଂକେତିକ ରୂପ ଦୀର୍ଘ ଇକାର

'ୀ', ଦୀର୍ଘ ଊକାର 'ୂ' ଓ ଦୀର୍ଘ ଋକାର 'ଌ' ସହିତ) ଓଡ଼ିଆ ସ୍ୱରବର୍ଣ୍ଣମାଳାରେ ରହିବା ଅନିବାର୍ଯ୍ୟ । ଏଥିରେ ସାମାନ୍ୟତମ ବ୍ୟତିକ୍ରମ ବା ଇତରବିଶେଷ ଘଟିଲେ ଅଚ୍ଛେଦ୍ୟ ଜନନୀ-କନ୍ୟା ସମ୍ପର୍କରେ ପ୍ରଚଣ୍ଡ ଅାଞ୍ଚ ଆସିବ, ଯାହାଫଳରେ ଶବ୍ଦ-ତାତ୍ତ୍ୱିକ ଗବେଷଣା କ୍ଷେତ୍ରରେ ଅଲଙ୍ଘ୍ୟ ପ୍ରାଚୀରର ଉଦ୍ଭବ ହେବ ଏବଂ ତା' ସହିତ ଘୋର ବିଭ୍ରାଟ, ବିଶୃଙ୍ଖଳା ଓ ଅବ୍ୟବସ୍ଥିତିର ଘନଘଟା ଘୋଟି ଆସିବ ।

(୨) (ରଙ୍ଗରାଜ ପ୍ରହରାଜଙ୍କ ଭାଷାରେ) ଏବେ ତ ବୈରାଗୀ ମିଶ୍ରଙ୍କ ମେହେରବାନିରୁ ରାଣ୍ଡେ ଅହିଅ ସାଜି କଜଳସିନ୍ଦୂର ନାଇଲେଣି, 'ଦାରୁଭୂତୋ ମୁରାରି' ବନ୍ଧୁଙ୍କ ହଠାତ୍ ଚମ୍ପା ଚେଙ୍ଗା ଚେଷ୍ଟାରୁ ଲକ୍ଷ୍ମୀ-ସରସ୍ୱତୀଙ୍କ ସଉତୁଣୀବିବାଦ ତୁଟିଯିବା ଫଳରେ ସରସ୍ୱତୀସେବକମାନେ ମଧ୍ୟ ତାଳବର ପାଳଟିଲେଣି, ଷୋଳଶାସନୀ ସାଆନ୍ତଗୋଷ୍ଠୀ ପ୍ରୌଢ଼-ଶିଢ଼ିର ସବା ଉପର ପାହାଚରୁ ତଳକୁ ଖସି ଅଣଶାସନୀ ବ୍ରାହ୍ମଣଗୋଷ୍ଠୀଙ୍କ ସହିତ ହାତ ମିଳାଇ 'ସମ୍ବନ୍ଧୀ' ବାନ୍ଧୁଣିରେ ଛନ୍ଦିହେବାକୁ ଶ୍ଳାଘ୍ୟ ମଣିଲେଣି, ସବର୍ଣ୍ଣ ଯୁବକେ ଅସବର୍ଣ୍ଣା ଯୁବତୀକନ୍ୟାଙ୍କୁ ସିନ୍ଦୂର-ସୀମନ୍ତିନୀ କରି ଆଦରରେ ବରଣମାଳା ପିନ୍ଧେଇଲେଣି, ଶବ୍ଦ ରାଜ୍ୟରେ 'ବର୍ଗ୍ୟ ବ' 'ଅବର୍ଗ୍ୟ ବ' ମଧ୍ୟରେ ଥିବା ବିଭେଦଟା ଅଭେଦରେ ପରିଣତ ହୋଇ ଦୁହେଁ ଏକୀଭୂତ ହେବାଟା କିବା କଥା ! ପ୍ରସିଦ୍ଧ ଅଭିଧାନିକ ପଣ୍ଡିତ ଗୋପୀନାଥ ନନ୍ଦଙ୍କ 'ଶବ୍ଦତତ୍ତ୍ୱବୋଧ ଅଭିଧାନ', ଜଗନ୍ନାଥ ରାଓଙ୍କ 'ଉତ୍କଳ ଅଭିଧାନ' ଓ ମଧୁସୂଦନ ରାଓଙ୍କ 'ସୁଖବୋଧ ଅଭିଧାନ'ରେ 'ବର୍ଗ୍ୟ ବ'ର ଶବ୍ଦମାଳା ଓ 'ଅବର୍ଗ୍ୟ ବ'ର ଶବ୍ଦମାଳା ଅଲଗା ଅଲଗା ସ୍ଥାନରେ ସନ୍ନିବେଶିତ ହୋଇଥିଲା । କିନ୍ତୁ ସଂସ୍କାରକ ବିଶ୍ୱନାଥ କର ନିଜ ସଂସ୍କାରିତ ନିର୍ଦ୍ଦେଶକ୍ରମେ ପଣ୍ଡିତ କୁଳମଣି ଦାଶ କାବ୍ୟତୀର୍ଥଙ୍କଦ୍ୱାରା ଯେଉଁ 'ସରଳ ଉତ୍କଳ ଅଭିଧାନ' ସଙ୍କଳିତ କରାଇ ଉତ୍କଳ ସାହିତ୍ୟ ପ୍ରେସ୍‌ଦ୍ୱାରା ପ୍ରକାଶ କରାଇଲେ, ତହିଁରେ 'ବର୍ଗ୍ୟ ବ'ର ଶବ୍ଦାବଳି ମଧ୍ୟରେ 'ଅବର୍ଗ୍ୟ ବ'ର ସମସ୍ତ ଶବ୍ଦ ବର୍ଣ୍ଣାନୁକ୍ରମ ପଦ୍ଧତିରେ ସାମିଲ ହୋଇ ଏକତ୍ର ମୁଦ୍ରିତ ହେଲା । ଗୋପାଳଚନ୍ଦ୍ର ପ୍ରହରାଜଙ୍କ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷା-କୋଷ'ରେ ମଧ୍ୟ ବିଶ୍ୱନାଥ କରଙ୍କ ପ୍ରବର୍ତ୍ତିତ ଉଲ୍ଲିଖିତ ସମନ୍ୱିତ ପଦ୍ଧତି ଅନୁସୃତ ହୋଇଛି । ଏଣୁ ଓଡ଼ିଆ ବର୍ଣ୍ଣମାଳାରେ 'ଅବର୍ଗ୍ୟ ବ'ର ସ୍ୱତନ୍ତ୍ର ସ୍ଥିତିର ଅନାବଶ୍ୟକତା ସପକ୍ଷରେ ବିତର୍କର ପରିସମାପ୍ତି ହୋଇସାରିଛି । କିନ୍ତୁ 'ଅବର୍ଗ୍ୟ ବ' ସମ୍ପର୍କରେ ଥିବା ଗୋଟିଏ ଆନୁଷଙ୍ଗିକ ସମସ୍ୟା ଅବଶ୍ୟ-ବିଚାର୍ଯ୍ୟ । ଏହାର ଉଚ୍ଚାରଣ ପ୍ରାୟ 'ଉଅ' ପରି, ଅର୍ଥାତ୍ 'ଉଅ'କୁ ଗୋଟିଏ ଅକ୍ଷର ଭଳି ବିସ୍ୱର ତଗତଗ ଉଚ୍ଚାରଣ କଲେ ଯେପରି ହେବ ଠିକ୍ ସେହିପରି । ଆମ ଚଳନ୍ତି ଭାଷାରେ ଏହାର ପ୍ରୟୋଜନୀୟତା ପଡ଼ୁଛି କେବଳ ବୈଦେଶିକ ଓ ଯାବନିକ କେତେକ ଶବ୍ଦକୁ ସ୍ୱାଭାବିକ ଶୁଦ୍ଧ ଉଚ୍ଚାରଣ ଅନୁଯାୟୀ ଲେଖିବାକୁ ଓ ଅଭିଧାନରେ ସ୍ୱତନ୍ତ୍ର ସ୍ଥାନ ଦେବାକୁ । ପୂର୍ବେ ମ୍ୟାକ୍‌ମିଲନ୍ କମ୍ପାନି ପ୍ରକାଶିତ ଓଡ଼ିଆ ପାଠ୍ୟ-

ମୁଦ୍ରକମାନଙ୍କରେ 'ଅବର୍ଗ୍ୟ ବ'ର ଠିକ୍ ଉଚ୍ଚାରଣ ପାଇଁ 'ବ'ର ପେଟ ମଝିରେ ସୂକ୍ଷ୍ମାକାରର ବିନ୍ଦୁଟିଏ ଥାଇ ସ୍ୱତନ୍ତ୍ର ଅକ୍ଷରଟିଏ ବ୍ୟବହୃତ ହେଉଥିଲା, ଯଥା— (ବୈଦେଶିକ) ଓ୍ୱାରେନ୍ ହେଷ୍ଟିଂସ୍, ଓ୍ୱାରଣ୍ଟ, (ଯାବନିକ) ଓ୍ୱାପସ, ଓ୍ୱାରିସ ପ୍ରଭୃତିର ମୂଳରେ ଥିବା 'ଅବର୍ଗ୍ୟ ବ' ସ୍ଥାନରେ 'ବିନ୍ଦୁଗର୍ଭ ବ' ମୁଦ୍ରିତ ହେଉଥିଲା । ପ୍ରହରାଜେ ମଧ୍ୟ ତାଙ୍କ 'ଭାଷାକୋଷ'ରେ ଏବଂବିଧ 'ଅବର୍ଗ୍ୟ ବ'ର ସଂସ୍କୃତେତର ଶବ୍ଦାବଳୀ ସଙ୍କଳନ କରିଦେଲେ ଅନୁରୂପ ଗୋଟାଏ କିଛି ସ୍ୱତନ୍ତ୍ର ଅକ୍ଷର ଉଦ୍ଭାବନ କରି ବ୍ୟବହାର କରିବେ ବୋଲି ମତେ କହୁଥିଲେ । ଅଭିଧାନ ସଙ୍କଳନରେ 'ଅବର୍ଗ୍ୟ ବ' ସ୍ୱତନ୍ତ୍ରବର୍ଣ୍ଣରୂପେ ସ୍ଥାନ ପାଇବ କି ନାହିଁ, ଅଦୂର ଭବିଷ୍ୟତ୍ ହିଁ ତାର ଚୂଡ଼ାନ୍ତ ଫର୍ମାନ୍ ଘୋଷଣା କରିବ ।

(୩) 'ଶ ଷ ସ' ମଧ୍ୟରୁ ଗୋଟିଏ ମାତ୍ର ରଖି ଅନ୍ୟ ଦୁଇଟି ଉଠାଇଦେଲେ ପଦେ ପଦେ ସାଂଘାତିକ ଅର୍ଥ ବିଭ୍ରାଟର ଶରବ୍ୟ ହୋଇ ଭୁଆଁ ବୁଲିବାକୁ ହେବ, ତଥାପି ଠିକ୍ ଅର୍ଥ ଠାବ କରିବା ସମ୍ଭବ ହେବ ନାହିଁ । ଦୃଷ୍ଟାନ୍ତସ୍ୱରୂପ, ସାଧ୍ୱୀ ବା ପତିବ୍ରତା ନାରୀକୁ 'ସତୀ' କୁହାଯାଏ । ଯଦି ତାଲବ୍ୟ 'ଶ' କେବଳ ରହେ, ତାହାହେଲେ 'ସତୀ' ଶବ୍ଦର ବ୍ୟୁତ୍ପତ୍ତିଗତ ପ୍ରକୃତ ଅର୍ଥ 'ଶତୀ' ଶବ୍ଦରୁ ନ ବାହାରି ତାହାର ବିପରୀତ ଅର୍ଥ 'ଶତ ଶଯ୍ୟାର ନାୟିକା' ସ୍ୱାଧୀନଚାରିଣୀ କୁଳକଳଙ୍କିତ ଭ୍ରଷ୍ଟା ହିଁ ପ୍ରକାଶ ପାଇବ । ପୁଣି, ଯଦି ଦନ୍ତ୍ୟସ 'ସ' କେବଳ ରହେ, ତେବେ 'ସପ୍ତଶତୀ ଚଣ୍ଡୀ'ର ବିବର୍ତ୍ତିତ ରୂପ ହେବ 'ସପ୍ତସତୀ ଚଣ୍ଡୀ'—ଏଥିରୁ 'ସାତ ଶହ ଶ୍ଳୋକସମନ୍ୱିତ ଚଣ୍ଡୀ ଗ୍ରନ୍ଥ' ଅର୍ଥ କେବେହେଲେ ବାହାରିପାରିବ କି ? ଏହିସବୁ ଅତି ଯୁକ୍ତିଯୁକ୍ତ କାରଣରୁ ପୂର୍ବାଚାର୍ଯ୍ୟମାନଙ୍କ ଦ୍ୱାରା ପ୍ରବର୍ତ୍ତିତ ଓ ସର୍ବସାଧାରଣଙ୍କ ଦ୍ୱାରା ସମାଦୃତ 'ଶ ଷ ସ'ର ସାମୂହିକ ମର୍ଯ୍ୟାଦା ଅନାହତ ଓ ଅକ୍ଷୁଣ୍ଣ ଅବ୍ୟାହତ ରହିବା ସର୍ବଥା ଶ୍ରେୟସ୍କର ।

(୪) ଶବ୍ଦର ମଝିରେ ଥିଲେ ଅନେକ ଯୁକ୍ତାକ୍ଷରକୁ ହଳନ୍ତ ଦ୍ୱାରା ବିଭକ୍ତିକୃତ କରି ସରଳ ରୂପରେ ପ୍ରକାଶ କରାଯାଇପାରେ; କିନ୍ତୁ ସ୍କ, ସ୍ଖ, ସ୍ତ, ସ୍ଥ, ସ୍ପ, ସ୍ଫ ପ୍ରଭୃତି ଯୁକ୍ତାକ୍ଷର ଶବ୍ଦର ଆଦ୍ୟରେ ରହିଲେ ତାହା କେବେହେଲେ କି ଉଚ୍ଚାରିତ ହୋଇପାରିବ ? ହଳନ୍ତଯୁକ୍ତ କରି ଲେଖିଲେ ଏ ଶ୍ରେଣୀସ୍ଥ ଶବ୍ଦଗୁଡ଼ିକ ଏହିପରି କିଂଭୂତକିମାକାର ଅନୁଚ୍ଚାର୍ଯ୍ୟ ରୂପ ପରିଗ୍ରହ କରିବ, ଯଥା—ସ୍‌କନ୍ଧ, ସ୍‌ଖଳନ, ସ୍‌ତୁତି, ସ୍‌ଥିତି, ସ୍‌ପନ୍ଦନ, ସ୍‌ଫାରିତ । ଏଣୁ ଉପର୍ଯ୍ୟୁକ୍ତ ଯୁକ୍ତାକ୍ଷରମାନ ରହିବ ହିଁ ରହିବ । ଏହାଛଡ଼ା ଙ୍କ, ଙ୍ଖ, ଙ୍ଗ, ଙ୍ଘ, ଞ୍ଚ, ଞ୍ଛ, ଞ୍ଜ, ଞ୍ଝ, ଣ୍ଟ, ଣ୍ଠ, ଣ୍ଡ, ଣ୍ଢ, ନ୍ତ, ନ୍ଥ, ନ୍ଦ, ନ୍ଧ, ମ୍ପ, ମ୍ଫ, ମ୍ବ, ମ୍ଭ, ଷ୍ଟ, ଷ୍ଠ, ଶ୍ଚ, ଚ୍ଛ, କ୍ଷ ଯୁକ୍ତାକ୍ଷର ମଧ୍ୟ ରହିବ । କେବଳ ଉଦ୍‌ବୃତ୍ତ, ଶାଦ୍‌ବଳ, ଉଦ୍‌ବେଗ, ଉଦ୍‌ଭ୍ରାନ୍ତ, ଉଦ୍‌ଭିଦ ଉଦ୍‌ଘାଟନ, ପଶ୍ଚାଦ୍‌ବର୍ତ୍ତୀ, ସଦ୍‌ଭାବ, ସଦ୍‌ଗୁଣ, ଉଦ୍‌ଭିନ୍ନ, ଉଦ୍‌ଭବ, ଉଦ୍‌ଗ୍ରୀବ,

ଉତ୍କଣ୍ଠା, ଉତ୍କୋଚ, ଉତ୍ଖାତ, ଉତ୍କ୍ଷେପଣ, ଉତ୍କ୍ରାନ୍ତ, ଉତ୍ଥାନ, ଉତ୍-ପାଟନ, ଯତ୍ପରୋନାସ୍ତି, ଯତ୍କିଂଚିତ୍, କିୟତ୍‌କ୍ଷଣ, ସତ୍କାର, ସତ୍ପୁରୁଷ, ଉତ୍ଫଣ, ବଳାତ୍କାର ପ୍ରଭୃତି ସ୍ଥଳରେ ଯୁକ୍ତାକ୍ଷର ପରିବର୍ତ୍ତେ ଏହିପରି ହଳନ୍ତର ବ୍ୟବହାର ସମର୍ଥନୀୟ । ପାଣିନି ଆଦି ବୈୟାକରଣିକ 'ସ୍ୱୀ + ଆଗୁର'କୁ ସନ୍ଧି ନିଷ୍ପନ୍ନ କରି 'ସ୍ୱ୍ୟାଗୁର' ରୂପେ ବ୍ୟବହାର କରିବାକୁ ନିଷେଧ କରିଛନ୍ତି; କାରଣ ଏହା ଶୁଣିବାକୁ କର୍ଣ୍ଣରସାୟନ ନୁହେଁ । ସେହି ପରିପ୍ରେକ୍ଷୀରେ ଯେଉଁଠିପାରେ ସେଠି ମନଇଚ୍ଛା ହଳନ୍ତ ବ୍ୟବହାର କରି 'ନିଶ୍ଚୟ'କୁ ନିଶ୍‌ଚୟ, 'ବିକିରଣ'କୁ ବିକ୍‌ରଣ, 'କୁତ୍ସିତ'କୁ 'କୁତ୍‌ସିତ, 'ସପ୍ତର୍ଷି'କୁ ସପ୍‌ତର୍ଷି, 'ବକ୍ତବ୍ୟ'କୁ 'ବକ୍‌ତବ୍ୟ' 'ବୃତ୍ତାନ୍ତ'କୁ ବୃତ୍‌ତାନ୍ତ, 'ମଧ୍ୟାହ୍ନ'କୁ ମଧ୍ୟାହ୍‌ନ, 'ଶୁକ୍ଳେଶ୍ୱର'କୁ ଶୁକ୍‌ଲେଶ୍ୱର, 'ବାସ୍ତବ'କୁ ବାସ୍‌ତବ, 'ନିଷ୍କ୍ରିୟ'କୁ ନିଷ୍‌କ୍ରିୟ ରୂପେ ପ୍ରଚଳନ କରିବା ଅଭବ୍ୟ, ଅବାଞ୍ଛନୀୟ ତଥା ଅଶୋଭନୀୟ ।

ଏହାପରେ 'ଅନୁସ୍ୱାର'ର ବହୁଳ ବ୍ୟବହାର ପ୍ରସଙ୍ଗ । ଏହାର ସମୀଚୀନତା ନିର୍ଦ୍ଧାରିତ ସୀମା ପର୍ଯ୍ୟନ୍ତ ଅନୁମୋଦନୀୟ । ସେହି ସୀମାବାଡ଼କୁ ଡେଇଁବା ସବୁମତେ ବିଧିବାରିତ । ତାହା ଲଙ୍ଘନ କରିବା ଏକ ଅକ୍ଷମଣୀୟ ଧର୍ତ୍ତବ୍ୟ ଅପରାଧ । ଆବହମାନ କାଳରୁ ଓଡ଼ିଆଭାଷାରେ ଅସ୍ଥିମଜ୍ଜାଗତ ହୋଇ ଅବିକଳ ସ୍ୱରୂପରେ ଚଳୁଥିବା ସଂସ୍କୃତ (ତତ୍ସମ) ଶବ୍ଦମାନ ସଂସ୍କୃତବନାନ-ସିଦ୍ଧାନ୍ତ ନିୟମର ହିଁ ସମ୍ପୂର୍ଣ୍ଣ ଅନୁବର୍ତ୍ତୀ । ସଂସ୍କୃତ ବ୍ୟାକରଣରେ କଡ଼ାକଡ଼ି ଅନୁଶାସନ ଅନୁସାରେ କେବଳ ଶବ୍ଦସ୍ଥ 'ଙ୍' ଓ 'ମ୍' ସ୍ଥାନରେ ବିକଳ୍ପେ ଅନୁସ୍ୱାର (ଂ) ହୋଇଥାଏ । ନମୁନାସ୍ୱରୂପ କେତେକ ବିକଳ୍ପର ଦୃଷ୍ଟାନ୍ତ ଦିଆ-ଯାଇପାରେ, ଯଥା—(ଙ ସ୍ଥଳେ 'ଂ') ଆକାଙ୍‌କ୍ଷା = ଆକାଂକ୍ଷା, ବାଙ୍ମୟୀ = ବାଂମୟୀ, ଅବାଙ୍ମନସଗୋଚର = ଅବାଂମନସଗୋଚର; (ମ୍ ସ୍ଥଳେ 'ଂ') ଅରିନ୍ଦମ = ଅରିଂଦମ, ଅବଶ୍ୟମ୍ଭାବୀ = ଅବଶ୍ୟଂଭାବୀ, ଅସୂର୍ଯ୍ୟମ୍ପଶ୍ୟା = ଅସୂର୍ଯ୍ୟଂ-ପଶ୍ୟା, କିଙ୍କର = କିଂକର, କିଞ୍ଚିତ୍ = କିଂଚିତ୍, କିମ୍ପୁରୁଷ = କିଂପୁରୁଷ, କିଙ୍କର୍ତ୍ତବ୍ୟବିମୂଢ଼ = କିଂକର୍ତ୍ତବ୍ୟବିମୂଢ଼, କିମ୍ଭୂତକିମାକାର = କିଂଭୂତକିମାକାର, ପଣ୍ଡିତମ୍ମନ୍ୟ = ପଣ୍ଡିତଂମନ୍ୟ, ପରମ୍ପରା = ପରଂପରା, ପୁରଞ୍ଜୟ = ପୁରଂଜୟ, ପ୍ରିୟମ୍ବଦା = ପ୍ରିୟଂବଦା, ସଙ୍ଗୀତ = ସଂଗୀତ, ସଙ୍ଘାତ = ସଂଘାତ, ସଞ୍ଚୟ = ସଂଚୟ, ସଞ୍ଜୀବନୀ = ସଂଜୀବନୀ, ସନ୍ତୋଷ = ସଂତୋଷ, ସମ୍ଭୂତ = ସଂଭୂତ, ସମ୍ମତ = ସଂମତ, ସମ୍ମାନ = ସଂମାନ, ସ୍ୱୟମ୍ବର = ସ୍ୱୟଂବର ପ୍ରଭୃତି । ଏତଦ୍‌ଭିନ୍ନ ଅନ୍ୟାନ୍ୟ 'ତତ୍ସମ' ଶବ୍ଦସ୍ଥ ଯୁକ୍ତାକ୍ଷରରୁ ଅନୁସ୍ୱାର ସାହାଯ୍ୟରେ ବିକଳ୍ପ ବନାନ ସୃଷ୍ଟି କରିବାର ପ୍ରୟାସକୁ ବର୍ଣ୍ଣାମିଶି ସର୍ଜନା ଭଳି ଏକ ବଡ଼ମୂଣ ଉଦ୍ଭଟ କଳ୍ପନା ଛଡ଼ା ଆଉ କିଛି କୁହାଯାଇ ନପାରେ । ଏଣୁ 'ଚନ୍ଦନ'କୁ ଚଂଦନ, 'ବନ୍ଧନ'କୁ ବଂଧନ, 'ଗାଣ୍ଡୀବ'କୁ ଗାଂଡ଼ୀବ, 'କୁଣ୍ଠିତ'କୁ କୁଂଠିତ, 'ଷଣ୍ଢ'କୁ ଷଂଢ,

'ପ୍ରାନ୍ତର'କୁ ପ୍ରାଂତର; 'ପନ୍ଥା'କୁ ପଂଥା, 'ଗଙ୍ଗା'କୁ 'ଗଂଗା', 'ମାନସାଙ୍କ'କୁ ମାନସାଂକ, 'ପୁଙ୍ଖାନୁପୁଙ୍ଖ'କୁ ପୁଂଖାନୁପୁଂଖ, 'ବଞ୍ଚନା'କୁ ବଂଚନା, 'ଲାଞ୍ଛନ'କୁ ଲାଂଛନ, 'କୁଞ୍ଜର'କୁ କୁଂଜର ଆକାରରେ ଲେଖିବା ଯେପରି ଗର୍ହିତ ସେପରି ଦୂଷଣୀୟ ଓ ସଂସ୍କୃତବିରୁଦ୍ଧ ।

ମୋର ଏହି ଉଦ୍ଦାଣ୍ଡିଆ ମତାମତ ନୀଳକଣ୍ଠବାବୁଙ୍କ ଅଭିଳାଷପୂର୍ତ୍ତିର ପ୍ରତ୍ୟକ୍ଷ ପରିପନ୍ଥୀ ହେଲେହେଁ ସେ ଅଶେଷ ଧୈର୍ଯ୍ୟର ସହିତ ଏକଲୟରେ ଆମୂଳାନ୍ତ ଶୁଣିଥିଲେ । ମୋର ଯୁକ୍ତିଯୁକ୍ତ ବିଶ୍ଳେଷଣକୁ ବେଶ୍ ପସନ୍ଦ ମଧ୍ୟ କରିଥିଲେ । ମନେ ମନେ ମୋ ଜ୍ଞାନର ଉଖି-ପୋତା କରୁଥିଲେ ଓ ମୋ ମଗଜର ସ୍ଥିତିସ୍ଥାପକତା କଷୁଥିଲେ, ଏହା କି ନ ହେବ ବା କାହିଁକି ? ସେ ଯାହାହେଉ, ମୁଁ ଉପସଂହାରରେ ତାଙ୍କୁ କହିଲି, "ସାର୍, ନୀତିଗତ ଦୃଷ୍ଟିକୋଣରୁ ନ ହେଲେହେଁ, ଆପଣଙ୍କ ସନ୍ତୋଷବିଧାନ ଉଦ୍ଦେଶ୍ୟରେ ମୁଁ ଏକ ଆପୋଷ-ମୂଳକ ପ୍ରସ୍ତାବ ଉପସ୍ଥାପନ କରୁଛି—ଆପଣ ନିଶ୍ଚୟ ତାହା ଗ୍ରହଣ କରିବେ ବୋଲି ବିଶ୍ୱାସ । ଏଣି ନଭେମ୍ବର ମାସର 'ନବଭାରତ' ସଂଖ୍ୟା ପ୍ରକାଶ ପାଇବାର ଦିନ ଖୁବ୍ ନିକଟ ହୋଇଆସିଲା । ଆପଣଙ୍କ ନିଜସ୍ୱ 'ସମ୍ପାଦକୀୟ' ଲେଖା ଶୀଘ୍ର ସାରିଦିଅନ୍ତୁ । ହଲନ୍ତ ଓ ଅନୁସ୍ୱାରକୁ ନେଇ ଆପଣ ଯେଉଁ ସ୍ୱକୀୟ ସଂସ୍କାର ପ୍ରବର୍ତ୍ତନ କରିବାକୁ ଉଦ୍ୟମ କରୁଛନ୍ତି, ତାହାର ପୂର୍ଣ୍ଣ ପ୍ରତିଫଳନ ଦେଇ 'ସମ୍ପାଦକୀୟ' ଲେଖାରେ ରହୁ । କି ତତ୍ସମ କି ଓଡ଼ିଆ କି ଯାବନିକ ବୈଦେଶିକ; କୌଣସି ବାଛବିଚାର ନ ରଖି, ସମସ୍ତ ଉଦ୍ଦିଷ୍ଟ ଶବ୍ଦରେ ହଲନ୍ତ ଓ ଅନୁସ୍ୱାର ସଂଯୋଗକୁ ଅଗ୍ରସ୍ଥାନ ଦିଅନ୍ତୁ । ତାହା ଆପଣଙ୍କର ବ୍ୟକ୍ତିଗତ ନବାସ୍ତିତ ସଂସ୍କାର ବୋଲି ପାଠକପାଠିକା ମହଲଦ୍ୱାରା ବିବେଚିତ ହେବ । 'ସମ୍ପାଦକୀୟ' ପାଠଟିକ କମ୍ପୋଜ ହେବାବେଳେ ଅସଂଖ୍ୟ ହଲନ୍ତ ଓ ଅନୁସ୍ୱାର ଦରକାର ପଡ଼ିବ । ଏଣୁ ପ୍ରଭୂତ ପରିମାଣରେ ଉକ୍ତ ଦୁଇପ୍ରକାରର ଟାଇପ୍ ସର୍ବଦା ପାଖରେ ମହଜୁଦ ରଖିବାକୁ ହେବ ।"

ସମ୍ପାଦକ ପଣ୍ଡିତଜୀ ମୋର ଏହି ପ୍ରସ୍ତାବଟିକୁ ଗଦ୍‌ଗଦ ହୃଦୟରେ ସ୍ୱାଗତ କଲେ । ତାଙ୍କର ମନୋଗତ ଲକ୍ଷ୍ୟ ଏତଦ୍ଦ୍ୱାରା ନିଶ୍ଚୟ ଆଂଶିକ ପୂରଣ ହୋଇପାରିବ ବୋଲି ସେ ଆଶା ବାନ୍ଧିଲେ । ତାଙ୍କ ସ୍ୱହସ୍ତଲିଖିତ 'ସମ୍ପାଦକୀୟ' ପ୍ରେସ୍‌କୁ ଆସିଥା'ନ୍ତେ ପ୍ରସ୍ତାବିତ ଯୋଜନାଟି ତୁରନ୍ତ କାର୍ଯ୍ୟରେ ପରିଣତ ହେବାର ଆୟୋଜନ ହେଲା । ବାର ଫର୍ମା-ବିଶିଷ୍ଟ ମାସିକ 'ନବଭାରତ'ର ଶେଷ ଫର୍ମା ଆଠ ପୃଷ୍ଠାସାକ ସମ୍ପାଦକଙ୍କ ପାଇଁ ସ୍ୱତନ୍ତ୍ରମୁଦ୍ର ମାହାଲସ୍ୱରୂପ ସଂରକ୍ଷିତ ଥାଏ । ସେହି ଆଠ ପୃଷ୍ଠାରେ ନୂତନ ଧରଣର ବନାନରେ ଲିଖିତ 'ସମ୍ପାଦକୀୟ' ଏବେ ସ୍ଥାନ ପାଇଲା, ଯାହାର ଶେଷରେ 'ନୀଳକଂଠ ଦାସ' ଏହି ସ୍ୱାକ୍ଷର ବ୍ଲକ୍‌ଟି ମୁଦ୍ରିତ ହେଲା । ଏହି ନବପ୍ରବର୍ତ୍ତିତ ଧାରା ସେହି ନଭେମ୍ବର ସଂଖ୍ୟାଠାରୁ ଆରମ୍ଭ ହେଲା ଏବଂ ନିୟମିତରୂପେ ପ୍ରତି ମାସରେ ତାହା ବଜାୟ ରଖାଯିବ ବୋଲି ସଙ୍କଳ୍ପ ନିଆଗଲା । ମୋ ଦ୍ୱାରା ପ୍ରସ୍ତୁତ ହଲନ୍ତ-ଅନୁସ୍ୱାରର ଏହି ପରୀକ୍ଷାମୂଳକ ମାର୍ଗଟିର ଅଦ୍ଭୁତ

ଭବିଷ୍ୟତରେ କିପରି ସୁଫଳ ପ୍ରସବ କଲା, ତାହା ଏବର ଲେଖକଲେଖିକାଙ୍କ କଲମକୁ ଓ ପାଠକପାଠିକାଙ୍କ ଆଖିକୁ ସବୁଠାରୁ ବେଶୀ ଜଣା ।

### (କ) 'ମୁନୀନାଞ୍ଚ ମତିଭ୍ରମଃ'—

ସେହି ମାସରେ ଦିଲ୍ଲୀ ବଡ଼ଲାଟ ସଭା (କାଉନସିଲ)ର ସାନ ନିର୍ବାଚନ ହେଲା । ସେଥିପାଇଁ ପ୍ରଦେଶଗୁଡ଼ିକର ସମଗ୍ର ଭାରତରେ ରାଜନୀତିକ ତତ୍ପରତାର ତରଙ୍ଗ ଖେଳିଗଲା । ବଡ଼ଲାଟ ସଭାରେ ଓଡ଼ିଶାର ନିର୍ବାଚିତ ପ୍ରତିନିଧିଙ୍କ ସଂଖ୍ୟା ଥିଲା ମୋଟେ ଦୁଇଟି । ସେହି ଦୁଇଟି ସ୍ଥାନପାଇଁ ପ୍ରତିଦ୍ୱନ୍ଦ୍ୱୀ ହୋଇଥା'ନ୍ତି ପ୍ରଧାନତଃ ତିନିଜଣ—ସାମନ୍ତବାଦୀ ଗୋଷ୍ଠୀ ପକ୍ଷରୁ ଜମିଦାର ବଂଶଜ ସୀତାକାନ୍ତ ମହାପାତ୍ର ଏବଂ କଂଗ୍ରେସ ଦଳ ପକ୍ଷରୁ ପଣ୍ଡିତ ନୀଳକଣ୍ଠ ଦାସ ଓ ଇଞ୍ଜିନିୟର୍ ଭୁବନାନନ୍ଦ ଦାସ । ସୀତାକାନ୍ତଙ୍କର ବିଜୟ ଆଶା ଥିଲା ନିଶ୍ଚିତ; ମାତ୍ର କଂଗ୍ରେସପ୍ରାର୍ଥୀ ଦୁହିଙ୍କ ମଧ୍ୟରୁ କେଉଁ ଜଣଙ୍କ ପଟକୁ ବିଜୟଲକ୍ଷ୍ମୀ ଟଳିବେ, ତାହା ଥିଲା ସଂଶୟାଚ୍ଛନ୍ନ । ମଧୁପୁର, ବଳରାମପୁର, ଚଉଷଠିପଡ଼ା, ମୁଖ୍ୟତଃ ଏହି ତିନି ଜମିଦାରି ଅଞ୍ଚଳକୁ ନେଇ ଧର୍ମଶାଳା ନିର୍ବାଚନମଣ୍ଡଳୀ ଗଠିତ ହୋଇଥିଲା । ପୋଲିଂ ବୁଥ୍ ହୋଇଥାଏ ଧର୍ମଶାଳା ପୋଲିସ୍ ଥାନାର ଏକାଂଶ । ସେହି ନିର୍ବାଚନମଣ୍ଡଳୀର ଭୋଟଦାତାଙ୍କ ସଂଖ୍ୟା ଥିଲା ବହୁତ ବେଶୀ; ତେଣୁ ସେମାନଙ୍କ ପ୍ରାର୍ଥୀ-ପସନ୍ଦ ଥିଲା ଅତି ଗୁରୁତ୍ୱପୂର୍ଣ୍ଣ । ସେମାନେ ନୀଳକଣ୍ଠ ଓ ଭୁବନାନନ୍ଦଙ୍କ ମଧ୍ୟରୁ ଯାହା ମୁଣ୍ଡରେ ସୁନାକଳସ ଢାଳିବେ, ସେଇ ହେବେ ବିଜୟମଣ୍ଡିତ । ଅନ୍ୟ ପ୍ରଭାବଶାଳୀ ପ୍ରାର୍ଥୀ ସୀତାକାନ୍ତ ମହାପାତ୍ର ତଥା ତାଙ୍କ ପକ୍ଷୀୟ ପ୍ରଚାରକ ଦଳ ଭୁବନାନନ୍ଦଙ୍କୁ ଦ୍ୱିତୀୟ ଭୋଟଟି ଦେବାପାଇଁ ଭୋଟଦାତାମାନଙ୍କୁ ପ୍ରବର୍ତ୍ତାଇବାରେ ଲାଗିପଡ଼ିଥା'ନ୍ତି । ନୀଳକଣ୍ଠବାବୁ ଶେଷ ମୁହୂର୍ତ୍ତରେ କୌଣସି ସୂତ୍ରରୁ ଏହି ସାଂଘାତିକ ସମ୍ବାଦ ଶୁଣିବାକୁ ପାଇଲେ । ସେ ଅତ୍ୟନ୍ତ ବିଚଳିତ ଓ ବିବ୍ରତ ହୋଇ ରାତି ପ୍ରାୟ ଆଠଟାରେ ମୋ ବସାକୁ ଧାଇଁଲେ । ମଧୁପୁରର ଗୁଣଗ୍ରାହୀ ରାଜା ସାରବର ନାରାୟଣଚନ୍ଦ୍ର ଧୀର ନରେନ୍ଦ୍ର ଓ ଜନପ୍ରିୟ ମେନେଜର ପୀତାମ୍ବର ବଳଙ୍କ ସହିତ ମୋର ବ୍ୟକ୍ତିଗତ ସମ୍ପର୍କ ସେତେବେଳେ ଥିଲା ଅତିଶୟ ମଧୁର ଓ ସ୍ନେହାକ୍ତ । ତେଣୁ ଏହି ବିଷମ ସଙ୍କଟ କାଳରେ ମୋ'ଦ୍ୱାରା କିଛି ପ୍ରତିକାର ହୋଇପାରେ ବୋଲି ନୀଳକଣ୍ଠବାବୁଙ୍କର ଗଭୀର ବିଶ୍ୱାସ ହେଲା । ମୁଁ ତାଙ୍କର ଅସ୍ୱାଭାବିକ ଚଞ୍ଚଳତା ଓ ଅବ୍ୟବସ୍ଥିତ ଚିତ୍ତବୃତ୍ତିର ଲକ୍ଷଣ ଦେଖି ମନେ ମନେ ବଡ଼ ବ୍ୟଥିତ ହେଲି ଏବଂ ଏ ପ୍ରତିକୂଳ ପରିସ୍ଥିତିରେ ତାଙ୍କୁ ଯଥାସାଧ୍ୟ ମଦତ୍ ଦେବା ମୋର ନୈତିକ କର୍ତ୍ତବ୍ୟ ବୋଲି ଅବଧାରଣ କଲି । ପରଦିନ ଟ୍ରେନଗାଡ଼ିରେ ବସି ଗଡ଼ମଧୁପୁର ଷ୍ଟେସନରେ ପହଞ୍ଚିଲି ପ୍ରାୟ ଦୁଇଟାରେ । ସେଠାରୁ ବାଲିମଟି ସଡ଼କରେ ଚାଲି ଚାଲି ଗଡ଼ ପର୍ଯ୍ୟନ୍ତ ଯାଇ ବନ୍ଧୁ ପୀତାମ୍ବରଙ୍କ ଘରେ ଉପସ୍ଥିତ ହେଲି ।

ରାତିଟି ଗଡ଼ରେ ଅତିବାହିତ ହେଲି । ବାସି ଦିନ ସକାଳ ସାଢ଼େ ସାତଟାରୁ ଭୋଟ-ଗ୍ରହଣ ଆରମ୍ଭ ହେବାର କଥା । ତା'ର ଯଥେଷ୍ଟ ପୂର୍ବରୁ ରାଜାଙ୍କ ପାଟହାତୀ ପୀତାମ୍ବରଙ୍କ ଦାଣ୍ଡଦ୍ୱାର ସମ୍ମୁଖରେ ଆସି ବୃଂହଣ ଛାଡ଼ିଲା—ମାହୁନ୍ତ ତାକୁ ଚାଳନ କରି ସେଠାରୁ

ଆସିଥାଏ । ସୁସଜ୍ଜିତ ପାଟହାତୀ-ପୃଷ୍ଠରେ ବସି ପୀତାମ୍ବର ଓ ମୁଁ ଅନତିଦୂର ଧର୍ମଶାଳା ଥାନାମଧ୍ୟସ୍ଥ ଭୋଟଗ୍ରହଣ-କେନ୍ଦ୍ର ପରିସରରେ ଉପଗତ ହୋଇଗଲୁଁ । ମଧୁପୁର ରାଜା-ସାହେବଙ୍କ ହୁକୁମାନା ଅନୁସାରେ ଯେତେବେଳକୁ ହଜାର ହଜାର ପ୍ରଜା ଭୋଟ ଦେବା ପାଇଁ ସେଠାରେ ପହଞ୍ଚି ମେନେଜରଙ୍କ ଶୁଭାଗମନକୁ ସତୃଷ୍ଣ ଚକ୍ଷୁରେ ଅପେକ୍ଷା କରି ମୁକ୍ତାକାଶ ତଳେ ବସିରହିଥା'ନ୍ତି । ଆମେ ପାଟହାତୀରୁ ଅବତରଣ କଲାମାତ୍ରେ ସେମାନଙ୍କ ମଙ୍ଗୁଆଳ ମୁଖପାତ୍ରମାନେ ଚଳବସ୍ତ ହୋଇ ମେନେଜର୍ ସାହେବଙ୍କୁ ପ୍ରଣିପାତ ହେଲେ । ଥାନା କର୍ତ୍ତୃପକ୍ଷ ମହଲରେ ପୀତାମ୍ବରଙ୍କର ଖୁବ୍ ଆଦର, ପ୍ରତିପତ୍ତି, ପ୍ରଭାବ ଓ ଖାତିର ଥାଏ । ସେ ଭୋଟଦାନ କକ୍ଷକୁ ଯାଇ ଦେଖିଲେ, ଏକପାଖିଆ ହୋଇ ତା' ମଧ୍ୟରେ କେତୋଟି ବଡ଼ ବଡ଼ ଭୋଟବାକ୍ସ ରେଖାକାରରେ କ୍ରମାନ୍ୱୟେ ରଖାଯାଇଛି—ସେଗୁଡ଼ିକ ମଧ୍ୟରୁ ପ୍ରଥମଟିରେ ଲେଖାଯାଇଛି ପୀତାକାନ୍ତ ମହାପାତ୍ରଙ୍କ ନାମ, ଦ୍ୱିତୀୟଟିରେ ନୀଳକଣ୍ଠ ଦାସଙ୍କ ନାମ ଓ ତୃତୀୟଟିରେ ଭୁବନାନନ୍ଦ ଦାସଙ୍କ ନାମ, ତା' ପରବର୍ତ୍ତୀ ବାକ୍ସ-ଗୁଡ଼ିକରେ ଅନ୍ୟ ପ୍ରତିଦ୍ୱନ୍ଦ୍ୱୀମାନଙ୍କ ନାମ । ପୀତାମ୍ବରଙ୍କ ପିଛା ଧରି ମୁଁ ମଧ୍ୟ ସେହି କକ୍ଷ ମଧ୍ୟକୁ ପଶିଯାଇଥିଲି । ଦ୍ୱାରଦେଶରେ ମୁତୟନ ହୋଇଥିବା ପୋଲିସ୍ ଜଗୁଆଳି ବାଧା ଦେଇନଥିଲେ କି ଆପତ୍ତି ବି କରିନଥିଲେ ।

ଆଜିକାଲିର ସ୍ୱାଧୀନ ଭାରତରେ ସିନା ଜନଜାଗରଣର ସ୍ଫୁରଣ କ୍ରମଶଃ ପ୍ରସାର ଲାଭ କରୁଛି, ସେକାଳୀନ ପରାଧୀନ ଭାରତର ଦାରିଦ୍ର୍ୟପୀଡ଼ିତ ଅନୁନ୍ନତ ପ୍ରଦେଶମାନଙ୍କରେ କିନ୍ତୁ ଏହା ଥିଲା ସ୍ୱପ୍ନାତୀତ । ଓଡ଼ିଶା ସେପର୍ଯ୍ୟନ୍ତ ପ୍ରଦେଶ ପାହ୍ୟାର ମର୍ଯ୍ୟାଦା ପାଇନଥାଏ । ନିଜତ୍ୱହୀନ ଗୋଟିଏ ଦୁର୍ବଳ ଡିଭିଜନରୂପେ ତନ୍ତ୍ରୀକଣ୍ଠା ସଦୃଶ ଏପଟୁ ସେପଟ ହାଉଳି ଖାଉଥାଏ, କେତେବେଳେ ମଧ୍ୟପ୍ରଦେଶ ତ କେତେବେଳେ ବଙ୍ଗ ଅଥବା କେତେବେଳେ ବିହାର ସହିତ ଯୋଡ଼ା ହୋଇ ଖଣ୍ଡି ଲାଙ୍ଗୁଡ଼ ଭଳି । 'ଯିଏ ଗୁଡ଼ ଭଙ୍କୁ କରେ ଧରି, ମୁଗୀ ନଇଁଏ ନରହରି' ଭଗବତୋକ୍ତିଟି ବ୍ରିଟିଶ୍‌ଶାସିତ ଓଡ଼ିଶା ପ୍ରତି ସେତେବେଳେ ପୂର୍ଣ୍ଣରୂପେ ପ୍ରଯୋଜ୍ୟ ହୋଇଥିଲା । ଓଡ଼ିଶା ଡିଭିଜନ୍‌ର ଭୋଟଦାତାମାନେ ବିଶେଷତଃ ଜମିଦାରି-ଅନ୍ତର୍ଭୁକ୍ତ ପ୍ରଜାସାଧାରଣ ଥିଲେ ଏକପ୍ରକାର ଅନ୍ଧ । ସେମାନଙ୍କ ମଧ୍ୟରେ ନାଗରିକ ଅଧିକାରର ସାମାନ୍ୟତମ ଚେତନା ମଧ୍ୟ ଉନ୍ମେଷିତ ହୋଇନଥିଲା । ସାର୍ବିକ ଜନ-ମାନସରେ 'ରାଜାନୁଗତୋ ଧର୍ମଃ' ନୀତିହିଁ ସତତ କାର୍ଯ୍ୟ କରୁଥାଏ । ଏଣୁ ଧର୍ମଶାଳା ନିର୍ବାଚନମଣ୍ଡଳୀର ଭୋଟଦାତାମାନଙ୍କର ନିଜର ଇଚ୍ଛା ବୋଲି କିଛିଏ ହେଲେ ସ୍ୱାତନ୍ତ୍ର୍ୟ ନଥିଲା । ସେମାନେ ନିର୍ବାଚନମଣ୍ଡଳୀର ମୁଖ୍ୟ ଜମିଦାର ମଧୁପୁର ରାଜାସାହେବଙ୍କ ଇଚ୍ଛାଦ୍ୱାରା ହିଁ ପ୍ରାୟଶଃ ପରିଚାଳିତ ହେଉଥିଲେ । ମୁଁ ମେନେଜର୍ ପୀତାମ୍ବରଙ୍କୁ ମୋ ଯିବାର ଗୂଢ଼ ଅଭିପ୍ରାୟ ସମ୍ପର୍କରେ ଆଗରୁ ଭଲରୂପେ ଅବହିତ କରାଇସାରିଥିଲି । ଏଥରର ଭୋଟ କେଉଁଠି ଓ କିପରି ଦେବାକୁ ହେବ, ଏ ବିଷୟ ବୁଝିବାକୁ ଭୋଟଦାତାମାନେ ଯେତେବେଳେ ମେନେଜରଙ୍କ ରୁମ୍‌କୁ ଆସିଲେ, ତାଙ୍କ ସଙ୍ଗରେ ଯୋଡ଼ି ହୋଇ ବସିଥିବା

ଅବସ୍ଥାରେ ମୁଁ ଆଗ ବଢ଼ି ସେମାନଙ୍କୁ ବୁଝାଇଦେଲି, "ଭୋଟକେନ୍ଦ୍ରର ପହିଲି କୋଠରିକି ଗଲେ ସେଠି ତୁମକୁ ଦୁଇଖଣ୍ଡି ଭୋଟକାଗଜ ମିଳିବ । ତାକୁ ଧରି ତୁମେ ଭୋଟବାକ୍ସ ଥିବା ପାଖ କୋଠରିକୁ ଯିବ । ସେଠି ଅନ୍ୟ କେହି ଲୋକ ନଥିବେ । ତା' ଭିତରେ ପଶିଲେ ଏକ ପାର୍ଶ୍ୱରେ କେତେଗୁଡ଼ିଏ ଟିଣ୍‌ର ବଡ଼ ବାକ୍ସ ରଖାଯାଇଥିବାର ଦେଖିବ । ପ୍ରତ୍ୟେକ ବାକ୍ସର ମୁହଁ ଅଂଶରେ ଗୋଟିଏ ଲେଖାଏଁ ଗ୍ରେଟ କଣା ଅଛି । ଆଖିବାଙ୍କରେ ପଶିଲା ପରି ବାଟବଣା ନ ହୋଇ ତୁମେ ସେ କୋଠରିକୁ ପଶିବା ପରେ ପ୍ରଥମେ ଯେଉଁ ବାକ୍ସଟିକୁ ଭେଟିବ, ତା' କଣାରେ ଖଣ୍ଡେ ଭୋଟକାଗଜ ଗଳେଇଦେବ । ତା' ପାଖକୁ ଲାଗି ଯେଉଁ ବାକ୍ସଟି ଥିବ, ତାର କଣାରେ ଆଉ ଭୋଟକାଗଜଟି ଗଳେଇଦେଇ ସେଇଠୁ ଫେରିଆସିବ । ଖବରଦାର, ଦୁଇଟାଯାକ ଭୋଟକାଗଜକୁ କଦାପି ଗୋଟାଏ ବାକ୍ସର କଣାରେ ଗଳାଇଦେବନାହିଁ ।"

ଭୂଣ୍ଡୀଭୂତ ପ୍ରଜାଦଳ ମତେ ମେନେଜରଙ୍କ କ୍ଷମତାପ୍ରାପ୍ତ ପ୍ରତିନିଧି ବୋଲି ଧରିନେଲେ ଏବଂ ମୋ ବୁଝାଇ କହିବାକୁ ଖୁବ୍ ସହଜରେ ସମଝିଗଲେ । ସେମାନେ ଧାଡ଼ିବାନ୍ଧି ଭୋଟଗୃହ ଆଗରେ ଯାଇ ଠିଆହେଲେ । ପହରାଦାରଙ୍କ ନିର୍ଦ୍ଦେଶକ୍ରମେ ଜଣକ ପଛକୁ ଜଣେ ପ୍ରବେଶ-ଦ୍ୱାର ଦେଇ ଭିତରକୁ ପଶି ଭୋଟକାଗଜ ହସ୍ତରେ ଭୋଟଦାନ କକ୍ଷକୁ ଗଲେ ଏବଂ ମୋ କହିବାମତେ ପ୍ରଥମ ଓ ଦ୍ୱିତୀୟ ବାକ୍ସରେ ଖଣ୍ଡିଏ ଲେଖାଁ ଭୋଟକାଗଜ ଗଳାଇଦେଇ ନିର୍ଗମଦ୍ୱାର ବାଟେ ବାହୁଡ଼ି ଅଇଲେ । ପରେ ପରେ ପଙ୍କ୍ତିକୁ ପଙ୍କ୍ତି ଯେତେ ପ୍ରଜା ଭୋଟ ଦେବାକୁ ଆସିଲେ, ସମସ୍ତେ ପୂର୍ବଭଳି ନିର୍ଦ୍ଦେଶିତ ହେଲେ ଏବଂ ପହିଲି ଥରପରେ ଭୋଟ ଦେଇସାରିଥିବା ଲୋକଙ୍କ ପଦାଙ୍କାନୁସରଣପୂର୍ବକ ନିଜନିଜର ଭୋଟଦାନ କାମ ସାରିଦେଇ ଗ୍ରାମାଭିମୁଖୀ ହେଲେ । ପୀତାମ୍ବର ଓ ମୁଁ ଭୋଟକେନ୍ଦ୍ର ବନ୍ଦ ହେବା ପର୍ଯ୍ୟନ୍ତ ଥାନାପରିସର ମଧ୍ୟରେ ରହି ଭୋଟଦାତାମାନଙ୍କ କାର୍ଯ୍ୟବିଧି ଲକ୍ଷ୍ୟ କରୁଥାଉଁ । ଯାହା ଅଟକଳ କଲୁଁ, ଶତକଡ଼ା ପ୍ରାୟ ନବେ ଭୋଟଦାତା ପ୍ରଥମ ଓ ଦ୍ୱିତୀୟ ବାକ୍ସରେ ଭୋଟକାଗଜ ପକାଇବା-ଦ୍ୱାରା ସୀତାକାନ୍ତ ମହାପାତ୍ର ଓ ନୀଳକଣ୍ଠ ଦାସଙ୍କୁ ହିଁ ନିର୍ବାଚନ କରିଛନ୍ତି । ଭୋଟଦାନ ପର୍ବ ବିଧିମତେ ଶେଷ ହୋଇଯା'ନ୍ତେ ଓଡ଼ିଶାର ସକଳ ଭୋଟକେନ୍ଦ୍ରରୁ ଜଜ୍‌ମୁଦଦିଆ ଭୋଟ ବାକ୍ସମାନ ବନ୍ଧୁକଧାରୀ କଡ଼ା ପୋଲିସ ପହରା ମଧ୍ୟରେ କଟକ କଲେକ୍ଟରିକୁ ଉଠାଯାଇ ପଠା ହେଲା ଏବଂ ପୂର୍ବବିଜ୍ଞାପିତ ଦିବସରେ ଭୋଟଗଣତି କାମ ଆରମ୍ଭ ହୋଇଗଲା । ଯଥା-ସମୟରେ ଘୋଷିତ ଫଳାଫଳରୁ ଜଣାଗଲା ଯେ, ସୀତାକାନ୍ତ ମହାପାତ୍ର ଓ ନୀଳକଣ୍ଠ ଦାସ ଭୋଟଲଢ଼େଇରେ ଜୟଯୁକ୍ତ ହୋଇଛନ୍ତି ଏବଂ ଭୁବନାନନ୍ଦ ଦାସ ଅଳ୍ପକେ ହାରି-ଯାଇଛନ୍ତି । ଧର୍ମଶାଳା ଭୋଟକେନ୍ଦ୍ରରେ ତୃତୀୟ ଭୋଟବାକ୍ସଟି ଅତି ଶୋଚନୀୟ ଭାବରେ ଖାଲି ପଡ଼ିବା ହିଁ ଭୁବନାନନ୍ଦବାବୁଙ୍କ ପରାଜୟର ଏକମାତ୍ର କାରଣ ହେଲା ।

ନିର୍ବାଚିତ, ମନୋନୀତ ଆଦି ବିଭିନ୍ନ ଶ୍ରେଣୀୟ ସଭ୍ୟଙ୍କ ପୂର୍ଣ୍ଣାଙ୍ଗ ନାମତାଲିକା 'ଇଣ୍ଡିଆ ଗେଜେଟ୍'ରେ ପ୍ରକାଶିତ ହେଲା ପରେ ନବଗଠିତ ବଡ଼ଲାଟ ସଭାର ପ୍ରଥମ ଅଧିବେଶନର

କାର୍ଯ୍ୟନିର୍ଘଣ୍ଟ ବିଜ୍ଞପ୍ତି ମଧ୍ୟ ଘୋଷିତ ହେଲା । ଉକ୍ତ ସଭାର ସେକ୍ରେଟେରୀଙ୍କଠାରୁ ନିମନ୍ତ୍ରଣ ପତ୍ର ପାଇ ନୀଳକଣ୍ଠବାବୁ ସେହି ଅଧିବେଶନରେ ଯୋଗ ଦେବାପାଇଁ ଦିଲ୍ଲୀ ଯାତ୍ରା କଲେ ।

ଦିଲ୍ଲୀ ରହଣିକାଳରେ ନୀଳକଣ୍ଠବାବୁ ପ୍ରତି ମାସର 'ସମ୍ପାଦକୀୟ' ଲେଖାଟିକୁ ଯଥା-ସମୟରେ ଲେଖି 'ନବଭାରତ' ପରିଚାଳକ ଚନ୍ଦ୍ରମଣି ମିଶ୍ରଙ୍କ ପାଖକୁ ରେଜେଷ୍ଟ୍ରି ଡାକରେ ପଠାଇଦେବାକୁ ଆଦୌ ହେଳା କଲେନାହିଁ । ତାଙ୍କ ପ୍ରେରିତ କୌଣସି ଏକ ମାସର 'ସମ୍ପାଦକୀୟ' ଲେଖା ମଧ୍ୟରେ ଗୋଟିଏ ସଂସ୍କୃତ ଶବ୍ଦର ବନାନରେ ତ୍ରୁଟି ରହିଯାଇଥିଲା —'ମୁନୀନାଂ ଚ ମତିଭ୍ରମଃ' । ଆଜି ବୟାଶି ବର୍ଷ ବୟସରେ (୧୯୮୭) ଅଣତିରିଶ ବର୍ଷ ବୟସର (୧୯୩୫) ଘଟଣାକୁ ଲେଖୁଥିବାବେଳେ ସେହି ଗୋଟିଏ ଶବ୍ଦ ମଧ୍ୟରୁ ଯୋଉଁ ଶବ୍ଦ ଆଦୌ ପଇଟକୁ ଆସୁନାହିଁ—ବିସ୍ମରଣର ଅନାବନା ଅନ୍ଧାର ଅରମାରେ କେଉଁଠି ପୋତିହୋଇଯାଇଛି । ସେଉଁ ଗୋଟିକ ଶବ୍ଦ ସ୍ମୃତିର ମାନସସରୋବରରେ ସ୍ୱର୍ଣ୍ଣ ରାଜହଂସ ସଦୃଶ ଏପର୍ଯ୍ୟନ୍ତ ଖେଳୁଛି, ତାହା ହେଉଛି 'ସୂଚନା' ବା 'ଅସ୍ପଷ୍ଟ ପ୍ରକାଶ' ଅର୍ଥବୋଧକ 'ଆଭାସ' ଶବ୍ଦ, ଯାହା ଭ୍ରମବଶତଃ ମୂଳ କପିରେ 'ଆଭାଷ'ରୂପେ ଲିଖିତ ଥିଲା ('ଆଭାଷ'ର ଅର୍ଥ ହୁଅନ୍ତା 'ପୂର୍ବଭାଷ' ବା Foreword) । ମୁଁ ସେହି ବନାନଘଟିତ ତ୍ରୁଟି ଗୋଟିକୁ ପ୍ରୁଫ୍ ଦେଖି ସ୍ତରରେ ସୁଧାରି ଠିକ୍‌ଠାକ୍ କରିଦେଲି । ଉକ୍ତ ମାସର 'ନବଭାରତ' ସଂଖ୍ୟା ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ଖଣ୍ଡିଏ କପି ନୀଳକଣ୍ଠବାବୁଙ୍କ ନିକଟକୁ ଡାକରେ ପଠାଇ-ଦିଆଗଲା ।

'ନବଭାରତ'ର ଯେକୌଣସି ନୂଆ ସଂଖ୍ୟା ହସ୍ତଗତ ହେଲାମାତ୍ରେ ଅତି ବ୍ୟଗ୍ରତାର ସହିତ ନୀଳକଣ୍ଠବାବୁ ଖୋଲନ୍ତି ତାକୁ ପଟ୍ଟପଟ ମଲାଟ ଆଡ଼ୁ ଏବଂ ସର୍ବପ୍ରଥମେ ହିଁ 'ସମ୍ପାଦକୀୟ'କୁ ଟିକିନିଖି ପଢ଼ିବସନ୍ତି ଗଭୀର ଅଭିନିବେଶରେ । ତା'ର କାରଣ ହେଲା ଦୁଇଟି । ପ୍ରଥମ କାରଣ—ସେ ଯାହା ସ୍ୱହସ୍ତରେ ଲେଖିଥା'ନ୍ତି, ଛାପାରେ କାଳେ ସେଥିରେ କିଛି ମୁଦ୍ରଣଗତ ଓଲଟବଲଟ ବା ଭାଷାଗତ ଆଡ଼ବାଙ୍କ ହୋଇଯାଇଥିବ । ଦ୍ୱିତୀୟ କାରଣ—ଆଦ୍ୟୋପାନ୍ତ ତାଙ୍କ ଲେଖାର ଯଥାଯଥ ସ୍ଥଳମାନଙ୍କରେ ହଳନ୍ତ ଓ ଅନୁସ୍ୱାରର ବ୍ୟାପକ ବ୍ୟବହାର ହୋଇନପାରି କାଳେ କେଉଁଠି ଛୁଡ଼ରହିଯାଇଥିବ ।

ଆଲୋଚ୍ୟ ସଂଖ୍ୟାଟି ପାଇଲାକ୍ଷଣି ସମ୍ପାଦକ ମହୋଦୟ ଅତ୍ୟନ୍ତ ଆଗ୍ରହରେ 'ସମ୍ପାଦକୀୟ' ଆଠ ପୃଷ୍ଠାଯାକ ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ ଏକ ନିଶ୍ୱାସରେ ପଢ଼ିଗଲେ—ସବୁ ଠିକ୍ ଅଛି; କେବଳ ଗୋଟିଏ ଶବ୍ଦର ବନାନରେ ତାଙ୍କ ଲେଖାଠାରୁ ମାରାତ୍ମକ ବ୍ୟତିକ୍ରମ ଘଟିଛି । ଏପରି କାହିଁକି ହେଲା ? ବଡ଼ ଦୋଧାଇରେ ପଡ଼ିଲେ ସେ । ମୁଁ ପ୍ରୁଫ୍ ଦେଖିବାବେଳେ ମୂଳ ଲେଖାର ବନାନକୁ ବଦଳାଇ ଭୁଲ୍ ସୃଷ୍ଟି କରିଛି, ନା ମୂଳରୁ ତାଙ୍କ ବନାନ ଭୁଲ୍ ଥିଲା, ଏଥିରୁ କେଉଁଟା ଠିକ୍ ? ଏ ମାମଲା ଫଇସଲା କରିବ କିଏ ? ଓଳିଆ ମନ ଅସ୍ୱସ୍ତ ହୋଇ ପଡ଼ା ଛୁଟିଗଲା । ସଙ୍ଗେ ସଙ୍ଗେ ଜାମାଯୋଡ଼ ହୋଇ ସେ ଉତ୍କ୍ରୋଧିଆ

ଲାଇବ୍ରେରୀକୁ ଧାଇଁଲେ । ମନିୟର୍ ଉଇଲିୟମ୍‌ଙ୍କ ସଙ୍କଳିତ ସଂସ୍କୃତ-ଇଂରାଜୀ ଅଭିଧାନ ଓ ଆପ୍ଟେଙ୍କ ସଙ୍କଳିତ ସଂସ୍କୃତ-ଇଂରାଜୀ ଅଭିଧାନ ଦୁଇଟିଯାକ ବିଶ୍ୱବିଖ୍ୟାତ ଅଭିଧାନ ଦେଖି ତାଟଙ୍କା ହୋଇଗଲେ—କୃଷ୍ଣ ଯାହା ସଂଶୋଧନ କରିଛି ତାହା ହିଁ ଠିକ୍ ! ସେ ଏତିକି କରିଦେଇଛି ବୋଲି ମୋ ଇଜ୍ଜତ ରହିଗଲା, ନହେଲେ ପୋଖତ ବିଦୁଷମାନଙ୍କ ଚକ୍ଷୁରେ ମୋ ମର୍ଯ୍ୟାଦାର ମାନ ଭୂଲୁଣ୍ଠିତ ହୋଇଥା'ନ୍ତା ସିନା ! କ୍ୱାର୍ଟର୍‌କୁ ଫେରି ଦମ୍ପୋଦରଙ୍କ ଶୀତଳ ମସ୍ତିଷ୍କରେ ମେନେକର ଚନ୍ଦ୍ରାମଣିବାବୁଙ୍କୁ ଖଣ୍ଡିଏ ଚିଠି ଲେଖିଲେ । ନାନା ପ୍ରସଙ୍ଗ ମଧ୍ୟରେ ସେଥିରେ ମୋ ସମ୍ପର୍କରେ ଲେଖାଥିଲା—'ଆଜିଯାଏ ଏ ଉଦନୋଟି ହୁଲ୍ ବନାନର ଭୂତ ମୋ' ମୁଣ୍ଡ ଭିତରେ ଆସ୍ଥାନ ଆବୋରି ରହିଥିଲା । ଏବେ କୃଷ୍ଣର ଉତ୍ପାଟନ ସେ ବାବନାଭୂତକୁ ନିକାଲିଲା । ସାହିତ୍ୟ ମଇଦାନରେ ସାରା ଓଡ଼ିଶା ଯାହାକୁ ଗୁରୁ ବୋଲି ମାନିଆସିଛି, ସେ ଆଜିଠାରୁ କୃଷ୍ଣକୁ ତା'ର ଜ୍ଞାନଦାତା ଗୁରୁ ବୋଲି ମାନୁଛି ।' ଚନ୍ଦ୍ରାମଣିବାବୁ ଚିଠିର ଏହି ଅଂଶଟି ପଢ଼ି ମତେ ଶୁଣାଇଦେଇଥିଲେ ।

ବଡ଼ଲାଟ ସଭାର ଅଧିବେଶନ ଉଦ୍‌ଯାପିତ ହେଲା ପରେ ନୀଳକଣ୍ଠବାବୁ କଟକ ପ୍ରତ୍ୟାଗତ ହେଲେ । ଚନ୍ଦ୍ରାମଣିବାବୁ, ମୁଁ ଓ ମୁକୁନ୍ଦ ଟ୍ୟାକ୍‌ସିଟିଏ ନେଇ କଟକ ଷ୍ଟେସନକୁ ଯାଇଥିଲୁ ତାଙ୍କୁ ଅଭିନନ୍ଦନପୂର୍ବକ ପାଛୋଟି ଆଣିବାକୁ । ଦଳପତି ରୂପେ ଚନ୍ଦ୍ରାମଣିବାବୁ ହାତରେ ଧରିଥିଲେ ସୁବାସପୁଷ୍ପଗୁଚ୍ଛିତ ପ୍ରଲମ୍ବ ଗଜରା ହାରଟିଏ । ଗାଡ଼ି ପହଞ୍ଚିବା ସୂଚକ ଶେଷ ଘଣ୍ଟି ବାଜିଉଠିଲାମାତ୍ରେ ଆମେ ତିନିମୂର୍ତ୍ତି ପ୍ଲାଟଫର୍ମ ଭିତରକୁ ପଶି ପଣ୍ଡିତଜୀଙ୍କୁ ଅପେକ୍ଷା କରି ରହିଲୁ । ସେ ପ୍ରଥମ ଶ୍ରେଣୀ ଡବାରୁ ଓହ୍ଲାଇବାମାତ୍ରେ ଚନ୍ଦ୍ରାମଣି-ବାବୁ ପୁଷ୍ପମାଲ୍ୟ ହସ୍ତରେ ତାଙ୍କ ନିକଟକୁ ଧାଇଁଯାଉଥିଲେ; କିନ୍ତୁ ପଣ୍ଡିତଜୀ କ୍ଷିପ୍ରପଦରେ ଚନ୍ଦ୍ରାମଣିଙ୍କୁ ଏଡ଼ି ପିଧାପଲକେ ମତେ ଆସି ଆଦରରେ କୁଣ୍ଢାଇପକାଇଲେ । ମୁଁ ଅପ୍ରସ୍ତୁତ ହୋଇ ଶଶବ୍ୟସ୍ତ ଭାବରେ ପୂଜ୍ୟୋତ୍ତମଙ୍କ ଚରଣରେଣୁକୁ ନିର୍ମାଲ୍ୟପ୍ରାୟ ମଥାରେ ମାଖିଲି । ସେତିକବେଳେ ଚନ୍ଦ୍ରାମଣିବାବୁ ହସ୍ତଧୃତ ଆଜାନୁଲମ୍ବୀ ଗଜରା ହାରଟିକୁ ପଣ୍ଡିତଜୀଙ୍କ ଗଳାରେ ପିନ୍ଧାଇଦେଲେ । ତା'ପରେ ସମସ୍ତେ ଟ୍ୟାକ୍‌ସିରେ ବସି ପ୍ରେସ୍‌କୁ ଆସିଲୁଁ ।

### (ଖ) 'ବିଦ୍ୱାନ୍ ସର୍ବତ୍ର ପୂଜ୍ୟତେ'—

ଗୁଣଗ୍ରାହୀ ପଣ୍ଡିତ ନୀଳକଣ୍ଠ ସେତିକରେ ମୋ ପ୍ରଶସ୍ତିର ପରିସମାପ୍ତି ଘଟାଇଲେ ନାହିଁ । ତାଙ୍କ ସହୃତ ନୀତିମାନ୍ ଚନ୍ଦ୍ରଶେଖର ମିଶ୍ର ହିନ୍ଦୋଳ ଷ୍ଟେଟ୍‌ର ଦେବାନ ପଦକୁ ତୁଚ୍ଛ କରି କଟକର ବାଖରାବାଦରେ ଥିବା ତାଙ୍କ ନିଜ ନିର୍ମିତ ବାସଭବନର ପରିସର ମଧ୍ୟରେ 'ଅମ୍ବିକା ପ୍ରେସ୍' ନାମକ ଛୋଟ ଛାପାଖାନାଟିଏ ସ୍ଥାପନ କରିଥିଲେ । ସେ ନିଜ ସମ୍ପାଦକତ୍ୱରେ 'ବକୁଳ' ନାମରେ ଖଣ୍ଡିଏ ସାପ୍ତାହିକ ସମ୍ବାଦପତ୍ରିକା ମଧ୍ୟ ସେହି ପ୍ରେସ୍‌ରୁ ବାହାର କରୁଥିଲେ । ହକର୍‌ମାନେ '(ଆରେ) ବକୁଳ, ଶାସନ ଗଲାଣି ହୁଗୁଳି' ଧ୍ୱନିରେ ରାସ୍ତାଘାଟ ପ୍ରକମ୍ପିତ କରିବା ଫଳରେ ପତ୍ରିକାଟିର ପ୍ରଚାର ଓ ପ୍ରସାର ଅଳ୍ପକାଳ ମଧ୍ୟରେ

ବେଶ୍ ପୁଷ୍ଟିଲାଭ କରିଥିଲା । ବୃଦ୍ଧତା ବଢ଼ିବା ସଙ୍ଗେ କାଠିନ୍ୟ ବି ବଢ଼ିଥିଲା । ଦିନେ 'ବିଜୁଳି' କର୍ମଶାଳାର ପରିସର ଭିତରେ ଏକ ବନ୍ଧୁମିଳନର ଆୟୋଜନ କଲେ ସମ୍ପାଦକ ଚନ୍ଦ୍ର-ଶେଖର । ବଡ଼ଲାଟ ସଭାର ସଦସ୍ୟ ବରେଣ୍ୟ ପଣ୍ଡିତ ନୀଳକଣ୍ଠଙ୍କ ସଦୟ ପଦାର୍ପଣ ସେହି ମିଳନୀର ମର୍ଯ୍ୟାଦାକୁ ବହୁଗୁଣ ବଢ଼ାଇଦେଇଥିଲା । ଓଡ଼ିଆ କାବ୍ୟ ସାହିତ୍ୟର ଗତି ଓ ପ୍ରଗତି ଉପରେ ପଣ୍ଡିତଜୀ ଏକ ଚମତ୍କାର ଭାଷଣ ଦେଇଥିଲେ, ଯହିଁରେ ଆଦିଯୁଗର ପ୍ରାରମ୍ଭରୁ ଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ, ବଳଦେବ, ଗୋପାଳକୃଷ୍ଣ, ବନମାଳୀ, ବଛି ଖୁଣ୍ଟିଆ, ସାରଳା, ବଳରାମ, ବିପ୍ର ଜଗନ୍ନାଥ, ରାଧାନାଥ, ମଧୁସୂଦନ, ବ୍ୟାସକବି ଫକୀର-ମୋହନ, ଗଙ୍ଗାଧର, ଚିନ୍ତାମଣି, ବଡ଼କୁମାର ବଳଭଦ୍ରଙ୍କ ପର୍ଯ୍ୟନ୍ତ କବିସୂରିମାନଙ୍କ କାବ୍ୟର ପ୍ରତିଭାର ଧାରାବାହିକ ବିକାଶ ଅତି ଦକ୍ଷତାର ସହ ସୁନ୍ଦରଭାବରେ ଉକୁଟି ଉଠିଥିଲା । ସେହି ଆଲୋଚନାଚକ୍ରରେ ଯୋଗଦେବାପାଇଁ ଅନେକ ସାହିତ୍ୟିକ, ଲେଖକ, କାବ୍ୟ-କବିତାପ୍ରେମୀ ଓ ବିଦ୍ୱାନ୍‌ଙ୍କୁ ଆମନ୍ତ୍ରଣ କରାଯାଇଥିଲା । ସବୁରି ନାମ ମନେରହିବା ସମ୍ଭବ ନୋହିଲେ ମଧ୍ୟ ଯେଉଁ କେତେକଙ୍କର ନାମ ମନେପଡ଼ୁଛି, ସେମାନେ ହେଲେ—ଜଗଦ୍‌ବନ୍ଧୁ ମହାପାତ୍ର, ପଣ୍ଡିତ ଶ୍ରୀଧର ନନ୍ଦ, ପଣ୍ଡିତ ଶ୍ରୀକଣ୍ଠ ଶାସ୍ତ୍ରୀ, ପଣ୍ଡିତ ମାୟାଧର ଦାଶ, ପଣ୍ଡିତ ବିଶ୍ୱନାଥ ରଥ, ପଣ୍ଡିତ ଆକୁଳ ମିଶ୍ର, ପଣ୍ଡିତ ବାସୁଦେବ ରଥ, ପଣ୍ଡିତ ଗୋପୀନାଥ କର, ପଣ୍ଡିତ ଚନ୍ଦ୍ରଶେଖର ମିଶ୍ର, ପଣ୍ଡିତ ଆର୍ତ୍ତତ୍ରାଣ ଶତପଥୀ, ପଣ୍ଡିତ ପ୍ରାଣକୃଷ୍ଣ ପଡ଼ିଆରୀ, ପଣ୍ଡିତ ନରସିଂହ ମହାପାତ୍ର, ପଣ୍ଡିତ ନରସିଂହ ମିଶ୍ର, ସାମନ୍ତ ଗଙ୍ଗାଧର ମହାପାତ୍ର, ଶ୍ରୀରାମଚନ୍ଦ୍ର ମହାପାତ୍ର, ଜଗନ୍ନାଥ ତ୍ରିପାଠୀ, ସୁଦର୍ଶନ ନନ୍ଦ, ନିମାଇଁଚରଣ ଦାସ, ଲକ୍ଷ୍ମୀ-ନାରାୟଣ ସାହୁ ('ସହକାର'ର ପ୍ରାଣପ୍ରତିଷ୍ଠାତା ଓ ଆଦି ସମ୍ପାଦକ), ବାଳକୃଷ୍ଣ ମହାପାତ୍ର ('ସାହିତ୍ୟ ସୋପାନ' ସମ୍ପାଦକ) । ଏମାନଙ୍କ ଛଡ଼ା ଚିନ୍ତାମଣି ମିଶ୍ରଙ୍କୁ ଓ ମତେ ମଧ୍ୟ ଆମନ୍ତ୍ରଣ ହୋଇଥିଲା । ମିଳନୀ ବୈଠକ ସରିଲା ପରେ ପରେ ଚର୍ବ୍ୟ-ଚୂଷ୍ୟ-ଲେହ୍ୟ-ପେୟ ଆମିଷ-ନିରାମିଷାଦି ଭୁରିଭୋଜ୍ୟାହାରର ବ୍ୟବସ୍ଥା ରହିଥିଲା । ସେହି ଭୋଜସଭାର ପ୍ରଥମ ପଙ୍ଗତରେ ନୀଳକଣ୍ଠବାବୁ ଯେଉଁ ପଙ୍‌କ୍ତିର ଆଦ୍ୟ ଆସନ ମଣ୍ଡନ କରିଥା'ନ୍ତି, ତାଙ୍କ ପାର୍ଶ୍ୱକୁ ଲାଗିଥିବା ପରବର୍ତ୍ତୀ ଆସନକୁ ଯିବାପାଇଁ କେହି ସାହସ କରିଲେ ନାହିଁ । ଫଳରେ ସେ ଧାଡ଼ିରେ ପରା ହୋଇଥିବା ସମସ୍ତ ଆସନ ଓ ପତ୍ର ଖାଲି ରହିଗଲା । ମୁଁ ଦ୍ୱିତୀୟ ପଙ୍ଗତକୁ ରହିବ ବୋଲି ମନସ୍ଥ କରିଥିଲି । କିନ୍ତୁ ଦୈବକ୍ରମେ ଦୂରଦର୍ଶୀ ପଣ୍ଡିତଜୀଙ୍କ ଦୃଷ୍ଟି ମୋ' ଉପରେ ପଡ଼ିଯା'ନ୍ତେ ସେ ଡାକି ଉଠିଲେ, "କୃଷ୍ଣ, ଇଠିକି ଆସ, ମୋ'ପାଖେ ବସି ଧାଡ଼ିର ଦୈନ୍ୟ ଘୁଞ୍ଚାଅ ।" ଅଗତ୍ୟା ମୁଁ ତାଙ୍କ କଡ଼ ଆସନକୁ ଗଲି । ତେଣିକି ରାସ୍ତା ଫିଟିଗଲା । ବୃଦ୍ଧଁ ବୃଦ୍ଧଁ ଖାଲି ପଡ଼ିଥିବା ସମସ୍ତ ଆସନକୁ ସଦଳବଳ ମାଡ଼ିଆଇଲେ । ଏହି ଘଟଣାରେ ଉପସ୍ଥିତି ସବୁରି ଉତ୍ସୁକ ଚକ୍ଷୁ ମୋରି ଉପରେ କିଛିକ୍ଷଣ ଲାଗି ନିବଦ୍ଧ ରହିଲା । ସବୁରି ଚକିତ ଦୃଷ୍ଟିରେ ଜିଜ୍ଞାସାର ତୀକ୍ଷ୍ଣ ଇଙ୍ଗିତ—'କିଏ ଏ ଯୁବକ ?'

ମନସ୍ତତ୍ତ୍ୱପଟୁ ନୀଳକଣ୍ଠ ଆପଣେ ଆଗନ୍ତୁକବର୍ଗଙ୍କ ତାତ୍କାଳିକ ମାନସିକ ଦ୍ୱନ୍ଦ୍ୱର ବିଭଞ୍ଜନ ପାଇଁ ଏକ ସରଳ ସ୍ପଷ୍ଟୀକରଣ ଦେଲେ, "ତୁମେମାନେ ଯଦି ଏହାଙ୍କୁ ଚିହ୍ନି ନଥିବ, ଆଜି ଚିହ୍ନ । ମୁଁ ଏହାଙ୍କ ବିଶେଷ ଗୁଣର କିଞ୍ଚିତ୍ ପରିଚୟ ଦେଉଛି । ବୟସରେ ଅର୍ବାଚୀନ ହେଲେ ହେଁ ଇଏ ହେଉଛନ୍ତି ମୋର ଗୁରୁସ୍ଥାନୀୟ । ତିନୋଟି ସଂସ୍କୃତ ଶବ୍ଦର ବର୍ଣ୍ଣବିନ୍ୟାସ (ବନାନ) ଜ୍ଞାନରେ ମୁଁ ଥିଲି ଅଜ୍ଞ, ଏଇ କୃଷ୍ଣ ଯୋଗୁଁ ମୋର ସେହି ଅଜ୍ଞତା ଦୂର ହୋଇଛି ।" ଏହା ସ୍ୱୀକାର କରି ଉକ୍ତ ଶବ୍ଦତ୍ରୟକୁ ସର୍ବସମକ୍ଷରେ ପ୍ରକାଶ କରିଦେଲେ । ପୁଣି ସେ କହିଚାଲିଲେ, "ଆହୁରି କେତେ ଗହନ ଜ୍ଞାନ ମଧ୍ୟ କୃଷ୍ଣଠାରୁ ଆଲୋଚନା ମାଧ୍ୟମରେ ମୁଁ ଆହରଣ କରିଛି । 'ମନ୍ତ' ଶବ୍ଦର ବିକଳ୍ପ ରୂପ ଯେ 'ମନ୍ଥ', ଏହା ମୁଁ ଜାଣିନଥିଲି; 'ପରଶୁରାମ'ର ବିକଳ୍ପ 'ପର୍ଶୁରାମ' ଓ 'ଜନ୍ମେଜୟ'ର ବିକଳ୍ପ 'ଜନମେଜୟ', ଏ ଧାରଣା ବି ମୋର ନଥିଲା । 'ମନ୍ଥ୍ ଧାତୁ + ଅନ ପ୍ରତ୍ୟୟ'ରୁ 'ମନ୍ଥନ' ଓ ତା'ର ବିଶେଷଣରେ 'ମଥିତ' ହୁଏ, ଏତିକିମାତ୍ର ମତେ ଜଣାଥିଲା; ବିଶେଷଣରେ ଯେ 'ମନ୍ଥିତ' ବି ହୁଏ, ଏହା ଥିଲା ମୋ ଜ୍ଞାନ-ପରିଧିର ବାହାରେ । ଏହିପରି 'ଗ୍ରନ୍ଥ୍ + ଅନ'ରୁ ନିଷ୍ପନ୍ନ ହୁଏ 'ଗ୍ରଥନ' ଓ ତା'ର ବିଶେଷଣ ହୁଏ 'ଗ୍ରଥିତ', ଏତିକି ହିଁ ମତେ ଗୋଚର ଥିଲା; ଏବେ କିନ୍ତୁ ଜାଣିଲି ଯେ, 'ଗ୍ରଥନ'ର ବିକଳ୍ପ ରୂପ 'ଗ୍ରନ୍ଥନ' ଏବଂ 'ଗ୍ରଥିତ'ର ବିକଳ୍ପ ରୂପ 'ଗ୍ରନ୍ଥିତ' । ଏତଦ୍‌ବ୍ୟତୀତ ଏକ କୌତୂହଳପ୍ରଦ ଚମତ୍କାର ତଥ୍ୟ ମଧ୍ୟ ଜାଣିବାକୁ ପାଇଛି । ସଂସ୍କୃତରେ 'ମୁନି, ଋଷି, କବି' ଶବ୍ଦମାନ ପୁଂଲିଙ୍ଗବାଚକ; ଏଥିରେ ସ୍ତ୍ରୀଲିଙ୍ଗବୋଧକ 'ଈ' ପ୍ରତ୍ୟୟ ଯୋଗକଲେ ଶବ୍ଦଗୁଡ଼ିକ 'ମୁନୀ, ଋଷୀ, କବୀ' ହୋଇ 'ନାରୀମୁନି, ନାରୀଋଷି, ନାରୀକବି' ଅର୍ଥ ପ୍ରକାଶ କରେ । ଏହି ସଂସ୍କୃତ ପଦ୍ଧତିର ଅନୁସରଣରେ ଓଡ଼ିଆ ପୁଂଲିଙ୍ଗବାଚକ 'ବଗୁଡ଼ି, ବଲେଇ, ଛେଳି, କୋଇଲି, ମଇଁଷି, ଘୁଷୁରି, ମାଛି, ବାଛୁରି, ବଜାଳି, ଚଟାଳି, ଚଢ଼ାଳି, ବୁଡ଼ାଳି, ପରଷାଳି, ପରଷୁଣି, ପହଁରାଳି' ଶବ୍ଦମାନ ସ୍ତ୍ରୀଲିଙ୍ଗରେ ଯଥାକ୍ରମେ 'ବଗୁଡ଼ୀ, ବଲେଈ, ଛେଳୀ, କୋଇଲୀ, ମଇଁଷୀ, ଘୁଷୁରୀ, ମାଛୀ, ବାଛୁରୀ, ବଜାଳୀ, ଚଟାଳୀ, ଚଢ଼ାଳୀ, ବୁଡ଼ାଳୀ, ପରଷାଳୀ, ପରଷୁଣୀ, ପହଁରାଳୀ' ହେବା ସମ୍ପୂର୍ଣ୍ଣ ସମୀଚୀନ ଓ ବିଧିସମର୍ଥିତ । ପ୍ରକୃତ ଓଡ଼ିଆ ବ୍ୟାକରଣ ଯେତେବେଳେ ପ୍ରଣୀତ ହେବ, ସେତେବେଳେ ଲିଙ୍ଗ ପ୍ରକରଣରେ ଏହି ମୂଲ୍ୟବାନ୍ ପଦ୍ଧତିଟି ନିଶ୍ଚୟ ଅନ୍ତର୍ଭୁକ୍ତ ହେବ ବୋଲି ମୋର ବିଶ୍ୱାସ । ଉପରେ ଯେତେ ଉପାଦେୟ କଥା ବଖାଣିଲେ, ସବୁଗୁଡ଼ିକର ଜ୍ଞାନଦାତା ହେଉଛନ୍ତି ମୋର ଗୁରୁରୂପୀ ଏଇ ଯୁବକ । ଏବେ ଏହାଙ୍କୁ ଭଲକରି ଚିହ୍ନିପାରିଲ ତ ? ନୀତିଶାସ୍ତ୍ର ପ୍ରଣୟନ କ୍ଷେତ୍ରରେ ବିଶ୍ୱର ଆଦି ଉଦ୍‌ଗାତା, ଉପଦେଷ୍ଟା ଓ ସର୍ବମାନ୍ୟ ଗୁରୁ ଶ୍ରୀମତ୍ ଚାଣକ୍ୟ ମହାରାଜଙ୍କ ମହାର୍ଘ ସୂକ୍ତି 'ସ୍ୱଦେଶେ ପୂଜ୍ୟତେ ରାଜା, ବିଦ୍ୱାନ୍ ସର୍ବତ୍ର ପୂଜ୍ୟତେ' ପ୍ରତ୍ୟେକ ଗୁଣଚିହ୍ନାରି ବ୍ୟକ୍ତିର ଧ୍ୟେୟ ଓ ପ୍ରେୟ ହେବା ବିଧେୟ । ଏହି ସୂକ୍ତିର ଧ୍ରୁବବାଣୀ ଅନୁସାରେ କୃଷ୍ଣଚନ୍ଦ୍ରଙ୍କ ସଦୃଶ ଗୁଣାଢ୍ୟ ଯୁବବିଦ୍ୱାନ୍‌ମାନେ ଯେ ସର୍ବତ୍ର ପୂଜାର ଆସ୍ପଦ ହେବେ, ଏହା ଅବିସମ୍ବାଦିତ ।"

କାନରେ ତୂଳାଚୁଣା ଦେଇ ପ୍ରାପ୍ୟ ମୁଁ ଅପ୍ରତଭ ରହ ଓ ଲଜାରେ ମି୍ରୟମାଣ ହୋଇଯାଇ ମୁକ୍ତକଣ୍ଠ ପଣ୍ଡିତ ନୀଳକଣ୍ଠଙ୍କର ଏହ ଅତଚ୍ଛେତୋକ୍ତକୁ ବଧୁର କର୍ଣ୍ଣରେ ଗ୍ରହଣ କରବାକୁ ବାଧହେଉଥାଏ । ତତ୍ପରେ ବସ୍ମୟବମୂଢ଼ ଚର୍ଭରେ ଭାବୁଥାଏଁ, ଉତ୍କଳ-ଭାରତୀଙ୍କ ପ୍ରିୟ କଣ୍ଠହାର ମହାମନୀଷୀ ନୀଳକଣ୍ଠ ସ୍ୱାଭମାନୀ ହେଲେହେଁ କେତେ ସରଳପ୍ରାଣ, ହୃଦୟବାନ୍, କେଡ଼େ ଉଦାର, ମହାନ୍, ମହାନୁଭବ !

## (ଗ) ପଣ୍ଡିତଜିଙ୍କ ବୈଜ୍ଞାନିକ ଗଣନା—

ସେ ସମୟରେ କଟକ ପୌର ସଂସ୍ଥା (ମ୍ୟୁନସିପାଲଟି)ର କର୍ମଦକ୍ଷ ଉତ୍ସାହୀ ଏକ୍‌ଜକ୍ୟୁଟିଭ୍ ଅଫିସର୍ ଥାଆନ୍ତି ସବ୍‌ଡେପୁଟି ସୋମନାଥ ମହାପାତ୍ର । ସେ କେତେ ବର୍ଷ ସର୍ତ୍ତିରେ ମ୍ୟୁନସିପାଲଟିକୁ ଡେପୁଟେସନ୍‌ରେ ଆସିଥିଲେ । ସେହ ନର୍ଦ୍ଦିଷ୍ଟ କାର୍ଯ୍ୟକାଳ ମଧ୍ୟରେ କଟକ ସହରର ଯେଉଁସବୁ ଉନ୍ନୟନମୂଳକ ଜନମଙ୍ଗଳ ଯୋଜନା ସଫଳଭାବରେ କାର୍ଯ୍ୟକାରୀ ହୋଇଥିଲା, ତନ୍ମଧ୍ୟରେ ଶ୍ରେଷ୍ଠ ମହନୀୟ କୀର୍ତ୍ତି ହେଉଛ ନବନର୍ମିତ ଜୁବିଲି ମାର୍କେଟ୍ ଓ ଗୌରୀଶଙ୍କର ପାର୍କ । ଏହ ଦୁଇ ସ୍ମରଣୀୟ ଓ ପ୍ରଶଂସନୀୟ କୃତର ପୁରସ୍କାରସ୍ୱରୂପ ତତ୍କାଳ-ଓଡ଼ଶା ସରକାର ସୋମନାଥ ମହାପାତ୍ରଙ୍କୁ ଡେପୁଟି ମାଜିଷ୍ଟ୍ରେଟ୍ ପାହ୍ୟାକୁ ଉନ୍ନୀତ କରଥିଲେ ଏବଂ ତା'ର ଅବ୍ୟବହତ ପରେ ବ୍ରିଟିଶ୍ ସରକାରଙ୍କ ପ୍ରତନଧି ମହାମାନ୍ୟ ଭାଇସରାୟ ମହୋଦୟ ତାଙ୍କୁ ସମ୍ମାନଜନକ 'ରାୟସାହେବ' ଉପାଧିରେ ଭୂଷିତ କରଥିଲେ । କଟକ ମ୍ୟୁନସିପାଲଟିର ବସ୍ତୃତ ହତା ମଧ୍ୟରେ ଯେଉଁ ପ୍ରକାଣ୍ଡ ଜଳାଶୟଟି ଫାଟକର ପୂର୍ବ ପାର୍ଶ୍ୱରେ ବହୁ କାଳରୁ ଥିଲା, ତାହାକୁ ପୋତପକାଇ ସେହଠାରେ ସୁରମ୍ୟ ଜୁବିଲି ମାର୍କେଟ ନର୍ମାଣ କରାଯାଇଥିଲା । ଉତ୍ସବମୁଖର ଏକ ବରାଟ ଜନସମାବେଶ ମଧ୍ୟରେ ତତ୍କାଳୀନ ସାହେବ କମିସନର୍ (Mr. E. S. Hoernte, I. C. S.) ଏହାକୁ ସର୍ବସାଧାରଣଙ୍କ ବ୍ୟବହାରପାଇଁ ୭-୫-୧୯୩୫ ତାରଖ ଦନ ଆନୁଷ୍ଠାନକ ଭାବରେ ଉଦ୍‌ଘାଟନ କରଥିଲେ । ସେକାଳେ କଟକବାସୀଙ୍କ ପାଇଁ ଯୋଡ଼ିଏ ବଡ଼ ମାର୍କେଟ ଥିଲା । ସେଥିରୁ ଗୋଟିଏ ହେଲା ବକ୍‌ସିବଜାର ମାର୍କେଟ ଓ ଅପରଟି ଚୌଧୁରୀ ବଜାର ମାର୍କେଟ । ଏ ଉଭୟରେ ଯାବତୀୟ ନତ୍ୟବ୍ୟବହାର୍ଯ୍ୟ ଦ୍ରବ୍ୟ, ବଶେଷ କର ସର୍ବବଧ ଶାକସବଜ, ପନପରବା, ଦେଶୀ ବଦେଶୀ ଫଳ ଏବଂ ଟଟକା ମଧୁର ମାଛ, ଉତ୍କୃଷ୍ଟ ଖାସିମାଂସ ପ୍ରଚୁର ପରମାଣରେ କାହିଁ-କ-ଥିବା ଶସ୍ତା ଦରରେ ପ୍ରତ୍ୟହ ଦୁଇଓଳା କଣିବାକୁ ମିଳୁଥିଲା । ସେତେବେଳେ ଲୋକସଂଖ୍ୟା ଥିଲା କମ୍, ତାକୁ ବୃଦ୍ଧି ଉତ୍ପନ୍ନ ଥିଲା ବେଶୀ । କଟକରେ 'ଗ୍ରୀମା ଆଇସ୍ ଫାକ୍ଟର' ରହଥିଲେହେଁ ବଳକା ମାଛମାଂସକୁ ବରଫ ଭିତରେ ରଖି ବାସି ବକ୍ରି କରବାର ଦୁଷ୍ଟବୃତ୍ତି ବ୍ୟବସାୟୀ କୈବର୍ତ୍ତ ଓ କଂସେଇ ମହଲରେ ପ୍ରବେଶ କରନଥିଲା, ଯେହେତୁ ସେ ପର୍ଯ୍ୟନ୍ତ ସଚ୍ଚା ଦୁନଆର ଜମାନା ଥିଲା— ବେପାରୀକୁଳ ଭେଜାଲ ଦୁନଆର ସଂସ୍ପର୍ଶ ଡଅର କରନଥିଲେ ।

ସମ୍ଭବତଃ ଏକ ଶନିବାରର ସନ୍ଧ୍ୟା, କାରଣ ପରଦିନଟି ନବଭାରତ ପ୍ରେସ୍‌ର ଥିଲା ଛୁଟିଦିବସ । ଅପ୍ରତ୍ୟାଶିତଭାବରେ ନୀଳକଣ୍ଠବାବୁ ଏକଲା ବସାରୁ ଆସି ପ୍ରେସ୍ କାର୍ଯ୍ୟାଳୟରେ ଢୁକିଲେ । ମନଟି ଭାରି ଉଲ୍ଲାସିଆ ଥିଲା ବୋଲି ମୁଖମଣ୍ଡଳର ସରସ ଆଭା ସ୍ପଷ୍ଟ କହି-ଦେଉଥାଏ । ଆରାମ-ଚଉକିରେ ବସିପଡ଼ି ବିନା ଭୂମିକାରେ ସ୍ୱତଃସ୍ଫୂର୍ତ୍ତି ଉଚ୍ଛଳନାଦ-ଶଯ୍ୟରେ କହିବାକୁ ଲାଗିଲେ, "କାହିଁକି ଜାଣିନି ମୋର ଇଚ୍ଛା ହେଉଛି, ଆସନ୍ତାକାଲି ଏଇଠି ମୁଁ ନିଜ ହାତରେ ଭେଜିଭାତ ରାନ୍ଧିବି, ବାଢ଼ିବି, ତୁମ ତିନିଙ୍କ ମେଳରେ ବସି ତୁମକୁ ଖୁଆଇବି, ଆପେ ଖାଇବି । 'ଭେଜିଭାତ'ର ସଂଜ୍ଞାରୁ ଗୋଟାଏ ଅଡ଼ମ୍ବରିଆ ବଡ଼ ଧରଣର ମହାଗଛ କାରଖାନା ବୋଲି ଏହାକୁ ଅନୁମାନ କର ନାହିଁ । ଖୁବ୍ ସାଦା-ସିଧାରେ ଚାରିଜଣଙ୍କ ମାନିଆ ଯୋଡ଼ିଏମାତ୍ର ପ୍ରକାର—ବାସନା ବାସୁମତୀ ଚାଉଳର ପଲାନ୍ନ, ଆଉ ସହକାରିଆ ଜାତିଆ ମାଛର ମୁଣ୍ଡା ମୁଣ୍ଡା ଭଜା ଓ ବହଳଝୋଳିଆ ବ୍ୟଞ୍ଜନ । ମୁକୁନ୍ଦ, କୃଷ୍ଣ, କାଲି ତୁମେ ସକାଳ ଠିକ୍ ଆଠଟା ସୁଦ୍ଧା ନିଶ୍ଚୟ ପ୍ରେସ୍‌ରେ ହାଜର ହୋଇଥିବ । ମୁଁ 'ଚନ୍ଦୁ'କୁ ନେଇ ସେତିକିବେଳେ ଆସି ତୁମ ଦୁହିଙ୍କ ସଙ୍ଗେ ମିଶିବି । ଇଠୁ ଚାରିହେଁ ବାହାରିବା ଚୌଧୁରୀବଜାର ମାର୍କେଟ୍‌କୁ ମାଛପାଇଁ ।" ଏତକ କହିଦେଇ ବସାମୁଖୀ ହେଲେ ସେ ବାଖରାବାଦକୁ ।

ପରଦିନ ପ୍ରତ୍ୟୁଷରୁ ନିତ୍ୟକର୍ମ ସାରି ଗାଧୋଇପାଧୋଇ ମୁକୁନ୍ଦ ତାଙ୍କ ବସାରୁ ଓ ମୁଁ ମୋ ବସାରୁ ବାହାରି ଆଠଟା ନ ବାଜୁଣୁ ପ୍ରେସ୍ ଦାଣ୍ଡରେ ଭେଟାଭେଟି ହେଲୁଁ । ପଣ୍ଡିତଜି ନିଜ ବଚନ ପାଳି ଆମ ପରେ ପରେ ଚନ୍ଦ୍ରାମଣିଙ୍କ ସହ ବିରାଜମାନ ହୋଇଗଲେ । ଯୋଡ଼ିଏ ହାତଟଣା ରିକ୍ସାରେ ବସି ଚାରିହେଁ ଯାକ ପହଞ୍ଚିଲୁଁ ଚୌଧୁରୀ-ବଜାର ମାର୍କେଟରେ । ରିକ୍ସାରୁ ଓହ୍ଲାଇ ପଣ୍ଡିତଜି ସିଧା ଚାଲିଲେ ପକ୍କା ମାଛ ସାହାଲର ଏକ ଆକର୍ଷଣୀୟ ସ୍ଥଳକୁ । ଭାଗ୍ୟଟାଣରୁ ସେଠାରେ ଜିଅନ୍ତା ବଡ଼ ବାଁସାଳଟାଏ ପାଟି ପାକୁ ପାକୁ କରୁଥାଏ, ତେଣେ ଲାଞ୍ଜଟା ତାର ରହି ରହି ଛଟ୍‌ଛଟ୍ ଛାଟିହେଉଥାଏ । ବନେଇ କୈବର୍ତ୍ତୁଣୀ ଧାଇଁଆସି ଗରଖେଶ୍ୱରର ମତ୍ସ୍ୟାନ୍ଧୁ ନୀଳକଣ୍ଠଙ୍କୁ ସମ୍ଭ୍ରମ ସହକାରେ ତା' ପିଣ୍ଡି ପାଖକୁ ପାଛୋଟିନେଲା । ବିଶାଳ ଦାଁସାଳ ହେଉଛି ମାଛପାଟକର ରଜା । ଚକରାଢ଼ ମହାରାଣୀମାର୍କା ଟଙ୍କା ଆକାରର ତା' ଚକ୍‌ଚକ୍ କାତିସବୁ ରାଜପୋଷାକ ପ୍ରାୟ ଦୂରରୁ ମତ୍ସ୍ୟପ୍ରେମୀମାନଙ୍କ ଚକ୍ଷୁକୁ ଭିଡ଼ିନିଏ । ରାଜଦର୍ଶନ ଯେତେ ଦୁର୍ଲଭ, ମାଛ ବଜାରରେ ଦାଁସାଳଦର୍ଶନ ତତୋଽଧିକ ଦୁର୍ଲଭ । ସାରା ବର୍ଷ ମଧ୍ୟରେ ଏହି ରାଜମତ୍ସ୍ୟ ମହାନଦୀ ଜଳକୁ ଖୁବ୍ ବେଶିରେ ପାଞ୍ଚ ଛଅଟିରୁ ଅଧିକ ଆସନ୍ତି ନାହିଁ । ସେ ପୁଣି ନରାଜ ଆନିକଟ ନିକଟ ମହାନଦୀରେ ବଡ଼ଜାଲ ପଡ଼ିଲାବେଳେ ଗୋଟିକରୁ କେବେ ବେଶୀ ଧରା ହୋଇଥିବାର ଶୁଣା ନାହିଁ । ଦାଁସାଳ ମିଳିବା ଯେଭଳି ଦୁଷ୍ପ୍ରାପ୍ୟ, ତାକୁ ଗୋଟାଗୁଆଁ କିଣିବାର ସଉକଦାର ଗ୍ରାହକ ମଧ୍ୟ ସେହିଭଳି ଦୁଷ୍ପ୍ରାପ୍ୟ । ଏ ମାଛଟିର ଓଜନ କେତେ ବୋଲି ଧୀବରପତ୍ନୀକୁ ପଚାରିବାରେ ସେ କହିଲା, "କଟକୀ ଆଠ ସେରରୁ କମ୍ ନୁହେଁ

ବାବୁ ! କେଳେଇ ସଫାସଫି କରିଦେଲେ ସାତ ସେରରୁ ସାମାନ୍ୟ ଘଟିଯାଇପାରେ । ଆପଣେ ସେଇ ସାତ ସେରର ଦାମ୍ ଦେବେ ।'' ବିଚକ୍ଷଣୀ ଧୀବରାଣୀର ଆଖି ଓ ହାତର ମାପ ଦଣ୍ଡିପଲା ଓ ସରକାରୀ ସେର ବଟକାରାରୁ ବଳି । ସେ ଆଖିରେ ଦେଖି ଓ ହାତରେ ଟେକି ଯେତେ ଓଜନ ବୋଲି ଠିକ୍‌ଠାକ୍ କହିଦେବ, ଦଣ୍ଡିରେ ବଟକରା ପକାଇ ଓଜନ କଲେ ତା'ଠାରୁ କିଛି ଜ୍ୟାଦା ହେବ ପଛେ, କମ୍ତି ହେବ ନାହିଁ କେବେଁ ।

ନୀଳକଣ୍ଠବାବୁ ମଧୁର ମଧ୍ୟରେ ଶ୍ରେଷ୍ଠ ଏବଂ ସର୍ବାଧିକ ରୁଚିକର ଓ ତୃପ୍ତିକର ଏ ଜୀଅନ୍ତା ଡାଁଆଣ ମାଛଟିକୁ ଦେଖି ଏତେ ମୁଗ୍ଧ ହୋଇଯାଇଥିଲେ ଯେ, ମୂଲଚୂଲ କରିବାକୁ ମନ ମୋଟେ ଡାକିଲା ନାହିଁ । ତାଙ୍କ ନିର୍ଦ୍ଦେଶରେ ବିପୁଳବପୁଷ୍କା କୈବର୍ତ୍ତାଣୀ ବଡ଼ ପଣକି ସହ ବିରାଟ ଜୀବଟାକୁ ଆଣି ଆମ ଶକଟରେ ଶୁଆଇଦେଲା । ସେ ଆମ ପଛେ ପଛେ ପ୍ରେସ୍‌କୁ ଆସି ମାଛଟାକୁ କାଟି ମୁଣ୍ଡା ମୁଣ୍ଡା ଖଣ୍ଡରେ ପରିଣତ କରି ପରିଷ୍କାର ପାଣିରେ ସୁରୁଖୁରୁ ଭାବରେ ଧୋଇଧାଇ ହଳଦୀ ଗୋଳେଇଦେଲା ପରେ ଦାମ୍ ପାଇବ ବୋଲି କଥା ରହିଲା । ଆମେ ମୁଣ୍ଡ ଅଭଙ୍ଗା ଅସଲ ବାସୁମତୀ ସରୁ ଅରୁଆରୁ କଟକୀ ପାଞ୍ଚ ପାଆ ଏବଂ ଦରକାର ମୁତାବକ ଗୁଆଘିଅ ଓ ଘୋଷପଡ଼େଲରୁ କିଛି କିଛି କିଣି ସଙ୍ଗରେ ଆଣିଲୁଁ । ଲୁଣଲଙ୍କା ବା ଅନ୍ୟ କୌଣସି ମସଲା ମୋଟେ ଲୋଡ଼ା ନାହିଁ ବୋଲି ପଣ୍ଡିତଙ୍କ ଦିବା ଆଗରୁ ଚେତାବନୀ ଶୁଣାଇସାରିଥିଲେ ।

ବହୁବନ୍ଦ୍ୟ ନୀଳକଣ୍ଠ ସ୍ୱେଚ୍ଛାକ୍ରମେ ଦେଖିଛନ୍ତି ଆଜି ଅଜ୍ଞାତବାସୀ ମହାବାହୁ ଭୀମସେନଙ୍କ ପ୍ରାପ୍ତ ପାଚକଚୂଡ଼ାମଣି 'ବଲ୍ଲଭ'ର ବେଶ । ପୂର୍ବ ଶାସନୀ ବ୍ରାହ୍ମଣମାନେ ବଡ଼ଦେଉଳ-ସାକ୍ଷୀଗୋପାଳ ଦେଉଳ-ଲିଙ୍ଗରାଜ ଦେଉଳ ତ୍ରିଭୁଜ ମଧ୍ୟରେ ଥିବାରୁ ସ୍ୱଭାବତଃ ରନ୍ଧନ-କଳା ଓ ରନ୍ଧନଶାଳା ସହିତ କିଛି-ନା-କିଛି ଯୋଗସୂତ୍ର ରକ୍ଷା କରିଥାନ୍ତି, ପାଠରେ ହେଉ ବା ଶାଠରେ ହେଉ । ନୀଳକଣ୍ଠଙ୍କର ଗ୍ରୁହଜୀବନ ପକ୍ଷୀ ପ୍ରଭରରେ ଆରମ୍ଭ ହୋଇ କ୍ରମଶଃ ପ୍ରସାରିତ ହୋଇଥିଲା ଦୂରରୁ ତହୁଁ ଦୂରକୁ—ଅର୍ଥାତ୍ ପୁରୀ ସହରକୁ, ତହୁଁ କଟକ ସହରକୁ, ଶେଷରେ କଲିକତା ମହାନଗରୀକୁ । ଏ ସମସ୍ତ ସ୍ଥଳରେ ତାଙ୍କୁ ଅଧିକାଂଶ ସମୟରେ ମେସ୍‌ର କୋଠ ରୋଷେଇ କାର୍ଯ୍ୟରେ ସହଯୋଗ କରିବାକୁ ହେଉଥିଲା, କେତେ କେତେ ବେଳେ ମଧ୍ୟ ହାତରେ ପୁରା ରାନ୍ଧିବାକୁ ପଡ଼ୁଥିଲା । ଏହାଫଳରେ ରନ୍ଧନକ୍ରିୟା ପ୍ରତି ତାଙ୍କର ରହିଥାଏ ଏକ ପ୍ରଚ୍ଛନ୍ନ ମାତୃସ୍ନେହ ବନ୍ଧନ । 'ଅନଭ୍ୟାସେ ବିଷଂ ବିଦ୍ୟା'—ତେଣୁ ସ୍ୱହସ୍ତରେ ପାକ କରି ଉକ୍ତ ଅଭ୍ୟାସକୁ ଜିଆଇ ରଖିବାକୁ ମଝେ ମଝେ ତାଙ୍କ ମନ ଯୋରେଇଉଠିଥାଏ । ଆଜିର ଅତି କ୍ଷୁଦ୍ର ଭୋଜଭାତ-ମହୋତ୍ସବଟି ସେହି ସ୍ଥାୟୀ ରନ୍ଧନାଭ୍ୟାସ କାର୍ଯ୍ୟକ୍ରମର ଏକ ସାମୟିକ ନମୁନାମାତ୍ର ।

ପ୍ରେସ୍‌କମ୍ପାଉଣ୍ଡ-ଅନ୍ତର୍ଗତ ରୋଲର୍‌ଢଳା ବଖରାଟି ଓକାଳତି ରୋଷଶାଳରୂପେ ମର୍ଯ୍ୟାଦିତ ହେଲା । ଏଥିପାଇଁ ପୂର୍ବଦିନ ରାତିରେ ତାହା ସାଫ୍‌ସୁତରା ହୋଇ ଟନ୍‌ଟନ୍ ରୂପ ଧାରଣ

କରିଥିଲି । ନୀଳକଣ୍ଠବାବୁଙ୍କ ବିଧାନ ଅନୁସାରେ ମୁକୁନ୍ଦ ଯୋଡ଼ିଏ ଚୁଲିରେ ଜାଳ ଝିଙ୍କି ଗୋଟିକରେ ପିତଳ ହାଣ୍ଡି ଓ ଆରଟିରେ ଛଅ ସାତ ସେର ମାଛ ରନ୍ଧା ହେବା ଉପଯୋଗୀ ବଡ଼ କାନ୍ଥ କଡ଼େଇ ବସେଇବାର ଉଦ୍‌ଯୋଗ କଲେ । ପ୍ରଥମ ଚୁଲିରେ ପଳାନ୍ନ ଓ ଦ୍ୱିତୀୟ ଚୁଲିରେ ଆମିଷ ରନ୍ଧା ହେବାର କଥା । ସ୍ୱା' ଭିତରେ କେତେବେଳେ ନୀଳକଣ୍ଠ ଆପଣେ ପଛପଟ ବାଡ଼ିକି ଚପି ଚାଲିଯାଇଛନ୍ତି, ଆମେ କାହାରିକି ମାଲୁମ ନାହିଁ । ସେ ଯେତେବେଳେ ଫେରିଲେ, ତାଙ୍କ ଖଦଡ଼ ଅଣ୍ଟି ଭିତରେ ଅଣ୍ଟିଏ କଣ ପାତଳା ପାତଳା ହାଲୁକା ଜିନିଷ ଭର୍ତ୍ତି ହୋଇଥିବାର ଜଣାଗଲା । ଖଣ୍ଟେ ଦୂରୁଁ ଡାକ ଛାଡ଼ିଲେ ସେ, "ହେ' ହରି ଫରଦ ମାରି କାଗଜ ବାହାରେ ଜଳଦି ବନ୍ଦେଇଦିଅ ତ !" ଆଜ୍ଞାମତେ ଦଣ୍ଡକେ ଖବରକାଗଜ ଫର୍ଦ୍ଦମାନ ଅଗଣାରେ ବିଛା ହୋଇଗଲା । ସେଣୁ ଆସି ପାଚକରାଜ ପଣ୍ଡିତଜୀ ଅଣ୍ଟିକୁ ତାହାରି ଉପରେ ଖସାଇଦେଲେ—ବିସ୍ତୃତ କାଗଜଫର୍ଦ୍ଦଯାକ ପତ୍ରଗଦାରେ ପରିପୂର୍ଣ୍ଣ ଦିଶିଲା । ତାହା ଦେଖି ଆମ ଆଖି ତାଟକାରେ ତାଳୁକୁ ଖୋସି ହୋଇଗଲା—ଏଗୁଡ଼ା କି ପତ୍ର, କାହିଁକି ଆସିଛି, କି କାମରେ ଲାଗିବ, ହଠାତ୍ କିଛି ବୁଝିହେଲା ନାହିଁ । ହାତରେ ଖେଳେଇଦେବାରୁ ଜଣାଗଲା, ବାଡ଼ିରେ ଯେତେ ପ୍ରକାରର ଗଛ ଥିଲା, ପ୍ରତ୍ୟେକରୁ ଗୋଟିଏ ଲେଖେଁ କଅଁଳ ପତ୍ର ଛିଣ୍ଡା ହୋଇ ଆସିଛି, ଯଥା କଣ୍ଟାଲେଉଟିଆ ଲଙ୍କା କାନସିରି ପୋଇ କାଗଜି ଶଜନା ବଣସାରୁ ଭୁଇଁନିମ ଠୁସି କଳରା କଳା ତୁଳସୀ କଦଳୀ ବଙ୍କୁଅତି ବେଲ ଦୁଦୁରା କନିଅର ପଣସ ସାହାଡ଼ା ସିଝୁ ଇତ୍ୟାଦି ଇତ୍ୟାଦି କୌଣସି ଗଛର ପତ୍ର ବାଦ୍ ପଡ଼ିନାହିଁ । ବାରଣ୍ଡାରେ କୁଢ଼ାହୋଇଥିବା ସରୁ ସରୁ ପତଳା କତରନ-କାଗଜ (Cut-paper) ମଧ୍ୟରୁ ଶେଷରେ ନୀଳକଣ୍ଠବାବୁ ଖଣ୍ଡିଏ ଲମ୍ବାଳିଆ ଦେଖି ଟାଣିଆଣିଲେ ଏବଂ ପତ୍ରମାନଙ୍କ ସହ ତାକୁ ନ ମିଶାଇ ଅଲଗା ଜାଗାରେ ଥୋଇଲେ । ତାଙ୍କ ବୋଲ ମାନି, ଯେତେ ପତ୍ର ସେ ଆଣିଥିଲେ ସବୁଗୁଡ଼ିକୁ ବାଲ୍‌ଟିଏ ପାଣିରେ ଦଚପଡ଼ କରି ଧୋଇ ଧାରୁଆ ପନିକିରେ ଟିକି ଟିକି ଚୂନ ଚୂନ ମିହି ମିହି ଅଖିବାଲ ପରି ସରୁ ସରୁ ଆକାରରେ କାଟି ବାରମ୍ବାର ଫେଣ୍ଟିବାକୁ ପଡ଼ିଲା, ଯେପରି ଏକା ଜାତିର ଚୂନ ଚୂନ ମିହି ମିହି ପତ୍ର-ଖଣ୍ଡମାନ ପରସ୍ପରଠାରୁ ଦୂରେଇଯିବ । ଏତିକି ଭିଡ଼ କାମ ସରିଗଲା ପରେ ସମୁଦାୟ ଫେଣ୍ଟା ପତ୍ରାଂଶକୁ ନୀଳକଣ୍ଠବାବୁ ଦୁଇଭାଗ କରିଦେଲେ ଏବଂ କତରନ-କାଗଜଟିକୁ ଦୁଇ-ଗଡ଼ କରି ଗଡ଼େ ଲେଖାଏଁ ପ୍ରତି ଭାଗରେ ମିଶାଇଦେଲେ ।

ଇତି ମଧ୍ୟରେ ଅରୁଆ ଚାଉଳତକ ଧୂଆ ହୋଇ ହଳଦୀରେ ମଖାଯାଇ ଖୋଲା ପବନ ଖାଇଯାଉଥିଲା । ମାଛମୁଣ୍ଡାମାନ ତ ପହିଲୁଁ ହଳଦୀ ଗୋଳାହୋଇ ରହିଥାଏ । ଏବେ ପାଚକଚୂଡ଼ାମଣି ପଣ୍ଡିତଜୀ ଚୁଲିମୁହଁ ପାଖରେ ଟୁଲ୍ ପକାଇ ବସିଗଲେ । ଜଳନ୍ତା ଚୁଲିରେ ବସିଥିବା ପିତଳ ହାଣ୍ଡିରେ କିଛି ଗୁଆଘିଅ ଦେଇ ପଲଉଚାଉଳକୁ ସାବଧାନତାର ସହିତ ଭାଜି ସାରିଲା ପରେ ତହିଁରେ କଣ୍ଠ ପରିମାଣରେ ଗରମ ଜଳ ଢାଳିଦେଲେ । ସାମାନ୍ୟ ପରେ ସେଥିରେ ଭାଗେ ଚୂନପତ୍ର ପକାଇ ଚଟୁରେ ଘାଣ୍ଟି କେଇଥର ତଳଉପର ଉପରତଳ

କରିଦେଲେ । ଝୋଳ ଟଗବଗ ହୋଇ ଫୁଟିଲା, ଚନ୍ଦନଚୂନ ପତ୍ରସବୁ ତାହାର ଅବର୍ତ୍ତରେ ଓଲଟପାଲଟ ହୋଇ ସିଝି ମିଳେଇଗଲା । ଯଥା ସମୟରେ ପଲାନ୍ନ ହାଣ୍ଡି ଚୁଲିରୁ ଉତ୍ତୁରା ହେବା ପୂର୍ବରୁ ପଣ୍ଡିତଙ୍କ ତହିଁର ସର୍ବାଂଶକୁ ଭେଦିବା ଭଳି ଗବ୍ୟଘୃତ ଓ ଦ୍ୱିଂପରିମିତ ଚନ୍ଦଦାନା ପକାଇ ଢାଙ୍କିଦେଲେ । ପାଚକଙ୍କର ଏପରି ଅମୃତହସ୍ତ ଯେ, ହାଣ୍ଡିର ଗୋଟାଏ ସୁଦ୍ଧା ଭାତ ଲଗେଇ ନଥିଲା ।

ଦୁଇ ଚୁଲିରେ ଦୁଇ ସାମଗ୍ରୀର ପ୍ରସ୍ତୁତ କର୍ମ ଏକକାଳୀନ ଚାଲିଥାଏ । ଦ୍ୱିତୀୟ ଚୁଲିରେ ବସିଥିବା କାନ୍ଥ କରେଇରେ କିଛି ଯୋଗପଟେଲ ଢଳା ଯାଇଥିଲା । ତାହା କଡ଼କଡ଼ ହୋଇ ଫୁଟିଆସନ୍ତେ ନୀଳକଣ୍ଠବାବୁ ତହିଁରେ ମାଛମୁଣ୍ଡ ସହ ମାଛମୁଣ୍ଡାଯାକ ଛାଡ଼ି-ଦେଲେ । ଯେଉଁ ଅନ୍ୟୂନ ସାତ ସେର ଓଜନର ହଳଦୀଗୋଲା ମାଛ ଥିଲା, ପଣ୍ଡିତଙ୍କ ସେଥିରୁ ତିନି ପାଆ ଅନ୍ଦାଜରେ କାଟି ବଟାକୁ ପୂର୍ବରୁ ପଠାଇଦେଇଥିଲେ । ତେଲ ମଧ୍ୟରେ ମାଛମୁଣ୍ଡକୁ ଓ ମାଛମୁଣ୍ଡାଗୁଡ଼ିକୁ ଏପଟ ସେପଟ ଲେଉଟାଇ ଯେତେବେଳେ ଦେଖାଗଲା ଯେ, ସେଗୁଡ଼ିକର ସବୁ ଅଂଶ ସମାନ ଭାବରେ ଅର୍ଦ୍ଧସିଦ୍ଧ ହୋଇଯାଇଛି ଓ ତତ୍ସଙ୍ଗେ ତେଲ ପରିମାଣ ପ୍ରାପ୍ତ ସରିବା ଉପରେ, ସେତେବେଳେ ବଙ୍କିମ ଯାକେ ମନେ ମନେ ମାପିଚୁପି କରେଇରେ ଏପରି ପରିମାଣରେ ଉଷ୍ମ ଜଳ ସଂଯୋଗ କଲେ ଯଦ୍ଦ୍ୱାରା ତରକାରିର ଝୋଳ ପ୍ରମାଣ ସହ ବହଳିଆ ହୋଇପାରିବ । ଅଳ୍ପକ୍ଷଣ ପରେ ସେ ତହିଁରେ ଅବଶିଷ୍ଟ ଚନ୍ଦ୍ରପତ୍ର ଭାଗକ ମିଶାଇଦେଲେ, ଯାହା ତରକାରି ଓହ୍ଲା ହେଲାବେଳକୁ ସିଝିଯାଇ ଝୋଳ ସହିତ ସାମିଲ ହୋଇଯାଇଥିଲା ।

ଘର୍ମାକ୍ତ କଳେବରରେ ନୀଳକଣ୍ଠବାବୁ ହେଷେଇରୁ ନିଷ୍କ୍ରାନ୍ତ ହେଲେ—ସେତେବେଳକୁ ମଧ୍ୟାହ୍ନ ସୂର୍ଯ୍ୟ ଆକାଶମଣ୍ଡଳର ମାଧ୍ୟନ୍ଦିନ ବିନ୍ଦୁକୁ ଚୁମ୍ବିବା ଉପରେ । ସେ ମୁକ୍ତ ହାଉଆରେ ଶ୍ରମକ୍ଳାନ୍ତ ମାତ୍ର 'କୂପଜଳ ସୁଶୀତଳ'ରେ ସ୍ନାନବିଧି ବଢ଼ାଇ ଭୋଜନ ଅନୁଷ୍ଠାନକୁ ଆସିଗଲେ । ତା' ପୂର୍ବରୁ ଆସନମାନ ପଡ଼ିସାରିଥାଏ, ଭୋଜ୍ୟାଧାର କଦଳୀପତ୍ରମାନ ଯଥାସ୍ଥାନସ୍ଥ ହୋଇସାରିଥାଏ । ପଣ୍ଡିତଙ୍କ ସ୍ୱହସ୍ତରେ ଅନ୍ନ ତିନିଙ୍କ ପାଇଁ ପତ୍ରରେ ପଳଖି ଓ ଚାଟିଅରେ ମାଛ ତରକାରି ବାଢ଼ିଦେଲେ । "ଅନର ଆଉ କିଛି ଦରକାର ହେବ ନାହିଁ, ଆପଣେ ଏଥର ଆସନସ୍ଥ ହେଉନ୍ତୁ" ବୋଲି ଆମେ ଏକ ସମୟରେ କହିଉଠିବାରୁ ପଣ୍ଡିତଙ୍କ ତାଙ୍କ ଆସନକୁ ଯାଇ ପଲାନ୍ନ ହାଣ୍ଡି ଓ ମାଛକରେଇକି ନିଜ ସମ୍ମୁଖକୁ ଭିଡ଼ିଅଣି ଦିବ୍ୟ ଆଗ୍ରହରେ ଗୁଣ୍ଡାବଳା ଆରମ୍ଭ କରିଦେଲେ ଅନ୍ନକୁ ଝୋଳବିଜଡ଼ିତ କରି । ତାଙ୍କ ହାତଚଳା ଦେଖିଲା ପରେ ଆମେ ହାତ ଚଳାଇଲୁଁ ।

କି ପଲାଉ କି ଆମିଷ ତିଅଣ କାହିଁରେ ବିକଟ ପୁଞ୍ଜା ମସଲାର ଗନ୍ଧ ସମ୍ବନ୍ଧ ନଥିଲା । ଆମେ ଭାବିଥିଲୁଁ, ଏ ଭୋଜସ୍ୱତନ୍ତ୍ରା ଭେଗର ଟଟକଟା ପଥ୍ୟାହାରକୁ ବଳି ଅଦ୍ଭୁତ କିଂଭୂତକିମାକାର ବିସ୍ୱାଦ ଲାଗିବ; କିନ୍ତୁ ଆଶ୍ଚର୍ଯ୍ୟର କଥା, ଉଭୟ ଭୋଜ୍ୟବସ୍ତୁ ଏଡ଼େ ବଢ଼ିଆ ଆଉ ଏତେ ରୁଚିକର ଓ ସ୍ୱାଦ୍ୟ ହୋଇଥିଲା ଯେ, ତା'ର ଉପଭୋଗ-ସୁଖ କିଭଳି

କେଉଁ ଥିବ ନାହିଁ ବୋଲି ମନେହେଲା । ପତ୍ର, ଚାଟିଆ, ହାଣ୍ଡି, କରେଇ ସବୁ ଗୋଟାପଣେ ଏପରି ପୋଛୁପୋଛୁ ହୋଇଗଲା ଯେ, କେବଳ କଣ୍ଟା ଛଡ଼ା ଆଉ କିଛି ଅବଶେଷ ରହିଲା ନାହିଁ । ପାଟିରେ କିନ୍ତୁ ଲାଗି ରହିଲା ପଲାଉର ମନ୍ଦମନ୍ଦ ବାସନା ସହିତ ଆମିଷର ମନଖୁସିଆ ଗନ୍ଧ । ପଣ୍ଡିତଙ୍କ ଯେ କିପରି ଅନ୍ୟୂନ ଅର୍ଦ୍ଧସେର ଅରୁଆର ପଲାଉ ଓ ପାଞ୍ଚସେରାଧିକ ମାଛର ବ୍ୟଞ୍ଜନ ଅବଲୀଳାକ୍ରମେ ଉଦରସ୍ଥ କରିପାରିଲେ, ତାହା ମୋ' ପକ୍ଷରେ ହେଲା ଆହୁରି ଆଶ୍ଚର୍ଯ୍ୟର କଥା । ଆଖି ଏହା ନ ଦେଖିଥିଲେ କାନ କେବେ ବିଶ୍ୱାସ ଯାଆନ୍ତା ନାହିଁ ।

ବିନା ମସଲାରେ କିପରି ସାମଗ୍ରୀଦ୍ୱୟ ଏଡ଼େ ଚମତ୍କାର ହେଲା ବୋଲି ପଚାରିବାରେ ନୀଳକଣ୍ଠବାବୁ ଉତ୍ତରରେ କହିଲେ, "ଏ ଚରାଚର ଦୃଶ୍ୟମାନ ଭୂମଣ୍ଡଳରେ ପ୍ରାଣିଜଗତ୍ ପରି ଉଦ୍ଭିଜ୍ଜଗତ୍ ମଧ୍ୟ ରହିଛି । ଗଛ-ଲତା-ଗୁଳ୍ମାଦି ଉଦ୍ଭିଦଙ୍କର ବି ପ୍ରାଣୀଙ୍କ ଭଳି ଜୀବନ ଅଛି—ମନୁଷ୍ୟାଦି ଜୀବଜନ୍ତୁଙ୍କ ପ୍ରାୟ ସେମାନେ ଜନ୍ମନ୍ତି, କିଛି କାଳ ବଞ୍ଚନ୍ତି ଓ ଶେଷରେ ମରନ୍ତି । ଚତୁର୍ଦ୍ଦିଗରେ ଯେଉଁ ନାମା-ଅନାମା ଅସଂଖ୍ୟାସଂଖ୍ୟ ଉଦ୍ଭିଦ ବେଢ଼ି ରହିଛନ୍ତି, ସେଥିମଧ୍ୟରୁ କେତେକ ବର୍ଷଜୀବୀ, କେତେକ ଅଳ୍ପାୟୁ, କେହି କେହି ବା ଦୀର୍ଘାୟୁ; କିନ୍ତୁ କାହାରି ଜନ୍ମ ନିରର୍ଥକ ନୁହେଁ—ସବୁରି ଚେର, ମୂଳ, ପତ୍ର, କଢ଼, ଫୁଲ, ଫଳ, ଛେଲି, କାଠ ବା ଡାଙ୍ଗ ପ୍ରଭୃତି ପ୍ରତ୍ୟେକ ଅଂଶ ମନୁଷ୍ୟସମାଜର କିଛି-ନା-କିଛି ଉପକାରରେ ଆସିଥାଏ । ଏହି ଅଂଶଗୁଡ଼ିକର ଭୈଷଜ ଗୁଣ ଅମୂଲ୍ୟ, ଜୀବନରକ୍ଷାର ପରମ ସହାୟକ । ବୈଦ୍ୟକ ଶାସ୍ତ୍ର ଅନୁସାରେ ସ୍ୱାଦ ଛଅ ପ୍ରକାର । ଏଗୁଡ଼ିକୁ 'ଷଡ଼ରସ' ନାମ ଦିଆଯାଇଛି । କଥିତ ଭାଷାରେ ଏହି ଛଅ ରସ ହେଲା ମିଠା, ଖଟା, ପିତା, କଷା, ଲୁଣା, ରାଗ । ଏଗୁଡ଼ିକର ମୂଳ ସଂସ୍କୃତ ଶବ୍ଦ ଯଥାକ୍ରମେ ଏହିପରି—ମଧୁର, ଅମ୍ଳ, ତିକ୍ତ, କଷାୟ, ଲବଣ, କଟୁ । ବୃକ୍ଷଲତାଦିର ବିଭିନ୍ନ ଅବୟବରେ ଏହିସବୁ ରସ ବିଦ୍ୟମାନ । ପ୍ରତ୍ୟେକ ଉଦ୍ଭିଦର ଭିନ୍ନ ଭିନ୍ନ ଅଙ୍ଗାଂଶ ମଧ୍ୟରୁ କେବଳ ପତ୍ରାବଳୀରେ ଥିବା ରସକୁ ଆହରଣ କରିବା ମନୁଷ୍ୟ ପକ୍ଷରେ ସବୁଠାରୁ ସହଜସାଧ୍ୟ । ଉଦ୍ଭିଦଭେଦରେ ରସର ପ୍ରକାର ମଧ୍ୟ ଭିନ୍ନ ଭିନ୍ନ ଅର୍ଥାତ୍ ଗୋଟିଏ ଉଦ୍ଭିଦରେ (ବୃକ୍ଷ ହେଉ, ଲତା ହେଉ ବା ଗୁଳ୍ମ ହେଉ) ଏକାଧିକ ସ୍ୱାଦର ରସ ନଥାଏ । ଚୂନ୍‌ଚୂନେଇ କାଟି ରନ୍ଧାରେ ପକେଇବାପାଇଁ ମୁଁ ଯେଉଁ ବିବିଧ କିସମର ପତ୍ର ଅଣ୍ଟିରେ ଆଣିଥିଲି, ତହିଁରେ ଥିବା ବିଭିନ୍ନ ସ୍ୱାଦର ରସ ଚାଉଳ ଓ ମାଛ ସିଝି ହେଲାବେଳେ ତାହା ମଧ୍ୟରେ ଭଲରୂପେ ଭେଦିଥିଲା ଏବଂ ମାଛଝୋଳରେ ମିଶି-ଯାଇଥିଲା । ସେହି ଅଲଗା ଅଲଗା ସ୍ୱାଦର ସମନ୍ୱୟରୁ ଯେଉଁ ନୂତନ ମିଶ୍ରିତ ସ୍ୱାଦ ଜାତ ହେଲା, ତାହା ହିଁ ମସଲାର ବିକଳ୍ପରୂପେ ପଲାଉ ଓ ମାଛତରକାରିକୁ ଏପରି ରୁଚିକର ଓ ସୁଖସେବ୍ୟ କରିଦେଲା । ଅଧିକନ୍ତୁ ସେହି ମୌଳିକ ରସଗୁଡ଼ିକରେ ଥିବା ଭେଷଜ ଗୁଣ ମଧ୍ୟ ଖାଦ୍ୟବସ୍ତୁର ମଜ୍ଜାଗତ ହେବା ଫଳରେ ଶରୀର ଏକ ପୁଷ୍ଟିସାଧକ ବଳକର ଉପାଦାନ ଆତ୍ମୀକରଣ କଲା । ମହାବିନାୟକ, ଚଣ୍ଡୀଖୋଲ, କପିଳାସ ପ୍ରଭୃତି ପର୍ବତ ଗିରିପୀଠରେ

ଯେଉଁ ସ୍ୱଚ୍ଛ ଉତ୍କଳର ବର୍ତ୍ତମାନ ଧାର ଅଛି, ତାହା ସହସ୍ରସହସ୍ରବର୍ଷ ଭକ୍ତିଦର ଗ୍ରଣି ଗ୍ରଣି ମୂଳ-ଚେର-ଉପଚେର ଛୁଇଁ ଛୁଇଁ ଅନ୍ତଃସ୍ରୋତରୂପେ ବହୁ ଦୂରରୁ ବହିଆସିଥିବା ହେତୁ ଯେପରି ଆମସ୍ୱାଦକ, ସେହିପରି ମଧ୍ୟ ଜୀର୍ଣ୍ଣଶକ୍ତି ସଞ୍ଚାରକ ଓ ସ୍ୱାସ୍ଥ୍ୟବର୍ଦ୍ଧକ । ଉପରକଥିତ ମୂଳ ପ୍ରସଙ୍ଗର ଅନୁପୂରକରୂପେ ଦୃଢ଼ଆ ଓଷା ପାଣ୍ଡ ତରକାରିର ଉପାଦେୟତା ଏଠାରେ ଉଲ୍ଲେଖଯୋଗ୍ୟ । ନାନାପ୍ରକାର ମିଶାଣ ପରିବା ସହିତ ଓଉ, ପୋଇ, ଖଜାମୁଗ, ଖଜାଚୂଟ, କଡ଼ିଆପାଚିଆ ପ୍ରଭୃତି ମିଶି ଏହି ବିଚିତ୍ରସ୍ୱାଦ ବ୍ୟଞ୍ଜନଟି ପ୍ରସ୍ତୁତ ହେଉଥିବାରୁ ଏହାର ନାମ ହୋଇଛି 'ପାଣ୍ଡ ତିଅଣ' ବା 'ପାଣ୍ଡ ତରକାରି' । ଭିନ୍ନ ଭିନ୍ନ ଜାତୀୟ ପରିବାଗୁଡ଼ିକରେ ଥିବା ବିଭିନ୍ନ ସ୍ୱାଦର ସମ୍ମିଶ୍ରଣ ଯୋଗୁଁ ଏକ ଅଭିନବ ସ୍ୱାଦର ସମ୍ଭବ ହୁଏ ବୋଲି ହିଁ ସହଜ ପ୍ରସ୍ତୁତ ପାଣ୍ଡତିଅଣ 'ବ୍ୟଞ୍ଜନରାଜ' ପଦବୀର ମର୍ଯ୍ୟାଦା ଲାଭ କରିଛି ଏବଂ ସର୍ବୋତ୍କୃଷ୍ଟ ସ୍ୱାଦ୍ୟ, ଲେହ୍ୟ, ଲେଭ୍ୟ ଓ ରସନାରଞ୍ଜନରୂପେ ଏଯାବତ୍ ହିନ୍ଦୁସମାଜରେ ପ୍ରତିଷ୍ଠା ପାଇଆସିଛି ।"

## (ଘ) ରମ୍ୟତା ମୋ' କବିତାର ଆତ୍ମା—

'ନବଭାରତ' ନବୋଦ୍ୟୋଗର ଜାତକରେ ଯେତେବେଳେ ଭାଗ୍ୟୋଦୟର ବେଳ । ମୁଁ ଥିଲି 'ସହକାର'ର ଆର୍ଥିକ ସମୃଦ୍ଧିର ମେରୁଦଣ୍ଡ । ପତ୍ରିକାର ପ୍ରଚ୍ଛଦ ଓ ପ୍ରଚାରରେ ମୋର ଯେପରି ଅଗ୍ରଣୀ ଭୂମିକା ଥିଲା, ବନ୍ଧୁ ଭଗବାନ ପତିଙ୍କର ମଧ୍ୟ ସେହିପରି ଉଲ୍ଲେଖନୀୟ ଅବଦାନ । ସେ ଓ ମୁଁ ଆଗପଛ ହୋଇ ମାସକ ମଧ୍ୟରେ ସାରସ୍ୱତ ପ୍ରେମ୍ ସହିତ ସମସ୍ତ ସମ୍ପର୍କ ଛିନ୍ନ କରି ଚାଲିଆସିବା ଫଳରେ 'ସହକାର' ସହାୟସହଯୋଗିଶୂନ୍ୟ ଅବସ୍ଥାର ଦୁର୍ବିପାକରେ ପଡ଼ି ମ୍ଳାନବଳ ଓ କ୍ଷୀଣପ୍ରଭ ହୋଇଯାଇଥାଏ । ସନ ୧୯୩୪ ବିଜୟାଦଶମୀ ଦଶାନ୍ତରେ ବରିଷ୍ଠ ସମ୍ପାଦକ ବିଶ୍ୱନାଥ କର ତିବ୍ୟପଥଯାତ୍ରୀ ହେବାଫଳରେ 'ଉତ୍କଳ-ସାହିତ୍ୟ' ପିତୃହରା ହୋଇ ସାଙ୍ଘାତିକ ବିପର୍ଯ୍ୟୟର ସମ୍ମୁଖୀନ ହୋଇଥାଏ । ଉତ୍କଳ ସମ୍ମିଳନୀର ପତ୍ରିକା ସମ୍ପାଦକ ବ୍ରଜସୁନ୍ଦର ଦାସ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଆନ୍ଦୋଳନ କାର୍ଯ୍ୟକ୍ରମରେ ଅହରହ ବ୍ୟାପୃତ ରହିବାଫଳରେ ତାଙ୍କ ସମ୍ପାଦକତ୍ୱରେ ପ୍ରକାଶିତ 'ମୁକୁର' ଲେଖା ଦୁର୍ଭିକ୍ଷର କରାଳ କବଳରେ ପଡ଼ି ମୁମୂର୍ଷୁ ଦଶା ଭୋଗୁଥାଏ । ପତ୍ରିକା କ୍ଷେତ୍ରର ଏତାଦୃଶ ଦୟନୀୟ ପରିପ୍ରେକ୍ଷୀ 'ନବଭାରତ' ପତ୍ରିକାର ଆଭ୍ୟୁଦୟିକ ଅଗ୍ରଗତି ଓ ସୁଖ୍ୟାତି ବିସ୍ତାରପାଇଁ ଯୋଗାଇଦେଲା ଅନୁକୂଳ ପ୍ରକୃଷ୍ଟ ବାତାବରଣର ସୁବର୍ଣ୍ଣ ସୁଯୋଗ । ସମ୍ପାଦକ ସ୍ୱୟଂ ନୀଳକଣ୍ଠ, ଡକ୍ଟର୍ ପରିଜା, ପ୍ରଫେସର୍ ବିପିନବିହାରୀ ରାୟ, ପ୍ରଫେସର୍ ମୋହିନୀମୋହନ ସେନାପତି ପ୍ରମୁଖ ପ୍ରବର ଚିନ୍ତାନାୟକମାନଙ୍କ ମହାର୍ଘ ଲେଖାବଳୀରେ ଏହି ନବତନ ସାହିତ୍ୟ ପତ୍ରିକାଟିର ଶତପତ୍ରକ ଅଙ୍ଗ ଶ୍ରୀମଣ୍ଡିତ ହେଉଥିଲେ ହେଁ କବିତା ବିଭାଗରେ ଉତ୍କର୍ଷୋତ୍ତୀର୍ଣ୍ଣ ରଚନାର ଘୋରତର ଅଭାବ ଅନୁଭବ କରୁଥିଲେ ଯୁବ ଗାୟକ-ଯୁବପାଠକ ଗୋଷ୍ଠୀ । ଶତାବ୍ଦୀର ଦ୍ୱିତୀୟ ପାଦବେଳକୁ ସାଡ଼ିଧର୍ମୀ ଅକ୍ଷର ବୃତ୍ତର

ଗତାନୁଗତିକ ପ୍ରବାହ ମନ୍ଦୀଭୂତ ହୋଇ ତା' ସ୍ଥାନରେ ଗୀତିଧର୍ମୀ ମାତ୍ରାବୃତ୍ତ (ମାତ୍ରିକ ଛନ୍ଦ) ଆବିର୍ଭୂତ ହୋଇସାରିଥିଲା । ମୋ ରଚିତ ଅଭିନବ ଛନ୍ଦର ତଥା ନୂତନ ସ୍ୱାଦର ଭିନ୍ନ ଭିନ୍ନ ଗୀତିଧର୍ମୀ ଆଳଙ୍କାରିକ କବିତା ଯାହା ଆଗେ 'ସହକାର'ର ପ୍ରଧାନ ସମ୍ବଳ ଥିଲା, ଏବେ ଉକ୍ତ ପତ୍ରିକା ସେହି ସମ୍ବଳରୁ ପୂରାପୂରି ବଞ୍ଚିତ ହୋଇଗଲା । ନୀଳକଣ୍ଠ ବାବୁଙ୍କ ଅନୁରୋଧ କ୍ରମେ ୧୯୩୫ ଜାନୁଆରୀଠାରୁ ମୋ ରୁଚି-ରୁଚିର ରସମୟ କବିତା-ବଳୀର ଭଣ୍ଡାର ହେଲା 'ନବଭାରତ'ର ପ୍ରତ୍ୟେକ ସଂଖ୍ୟା । ଏହାଫଳରେ ଯୁବ-ସମ୍ପ୍ରଦାୟର ମାନସୀ ବୁଭୁକ୍ଷା ବିଦୂରିତ ହେଲା ଏବଂ ତତ୍‌ସହ ପତ୍ରିକାଟିର ଗ୍ରାହକସଂଖ୍ୟା ମଧ୍ୟ କ୍ଷିପ୍ରଗତିରେ ବଢ଼ିଗଲା । ପ୍ରଶ୍ନ ଉଠିଲା, ଏହାଦ୍ୱାରା କିଏ କାହାର ମର୍ଯ୍ୟାଦା ବଢ଼ାଇଲା —ମୋ କବିତା ବଢ଼ାଇଲା ନବଭାରତର ମର୍ଯ୍ୟାଦା, ନା ନବଭାରତ ବଢ଼ାଇଲା ମୋ କବିତାର ମର୍ଯ୍ୟାଦା ? ଉଭୟ ପକ୍ଷର ସଂଯୋଜକ ମାନସ-ମୃଣାଳ ହିଁ ଉଭୟଙ୍କ ପ୍ରତିଷ୍ଠା ସ୍ତରକୁ ଅଧିକତର ମର୍ଯ୍ୟାଦାବନ୍ତ କରିଥିଲା—ନିରପେକ୍ଷ ସମୀକ୍ଷକଙ୍କ ବିଚାରରେ ଏହି ସତ୍ୟଟି ହେଲା ସର୍ବଜନଘୋଷଣୀୟ ।

ସେ ସମୟରେ ବିନୋଦବିହାରୀ ମନ୍ଦିର ପରିସରସ୍ଥ ଏକ ଅଟ୍ଟାଳୀର ଦ୍ୱିତଳରେ ଅବସ୍ଥାନ କରୁଥିଲେ କବିତାପ୍ରେମୀ ଯୁବଆଡ଼ଭୋକେଟ୍ ଶ୍ରୀ ରାଜକିଶୋର ଦାସ (ଅଧୁନା ହରିହରଜାଟ ନିକଟସ୍ଥ ନିଜଭବନବାସୀ ଅବସରପ୍ରାପ୍ତ ହାଇକୋର୍ଟ ବିଚାରପତି) । ବୟସ ଯାହା ହେଉନା କାହିଁକି, ମମତାସ୍ନିଗ୍ଧ ମନଟି ତାଙ୍କର ଚିରକିଶୋର, ଚିରସବୁଜ, ଚିରମଳୟିତ । 'ନବଭାରତ'ରେ ମୋର ଯେଉଁସବୁ କବିତା ବାହାରୁଥିଲା, ତାକୁ ରାଜକିଶୋରବାବୁ ଗଭୀର ଆଗ୍ରହ, ଅଭିନିବେଶ ଓ ତନ୍ମୟତାର ସହିତ ପାଠ କରୁଥିଲେ, ତନ୍ନିହିତ ରସର ନିର୍ଭେଳ ଆସ୍ୱାଦନ ପାଇଁ । ପ୍ରାୟ ପ୍ରତିମାସରେ 'ନବଭାରତ' ପ୍ରକାଶର ନିର୍ଦ୍ଧାରିତ ତାରିଖ ଆସନ୍ନତର ହୋଇଆସିଲେ ତାଙ୍କ ରସଗ୍ରାହୀ ମନ ଉତ୍କଣ୍ଠ ହୋଇଉଠେ, ତହିଁରେ ମୋ କବିତା ଅଛି କି ନାହିଁ ଆଗରୁ ଜାଣିବାଲାଗି । ସେ ନବଭାରତ ପ୍ରେସ୍ ଦ୍ୱାର ପର୍ଯ୍ୟନ୍ତ ମାଡ଼ିଆସନ୍ତି ଏବଂ ରାସ୍ତା ଉପରୁ ଡାକ ଛାଡ଼ନ୍ତି ମେନେଜର ମିଶ୍ରଙ୍କୁ, "ଚିନ୍ତାମଣି ବାବୁ, ଏ ମାସରେ ଲକ୍ଷ୍ମୀବାବୁଙ୍କ ମନଛୁଆଁ କବିତା ଅଛି ତ ? ମନେରଖିଥାନ୍ତୁ, ଯେଉଁ ସଂଖ୍ୟାରେ ତାଙ୍କ କବିତା ନାହିଁ ବୋଲି ଶୁଣିବି, ସେଇ ସଂଖ୍ୟାଠୁଁ ଗ୍ରାହକ ଖାତାରୁ ମୋ ନା କଟେଇଦେବ ।" ପବନ ତରଙ୍ଗରେ ଭାସିଆସି ଏ କଥାତକ ମୋ କାନ ପାଖରେ ପହଞ୍ଚିଯାଏ । ଭାବେ, ମନର କ୍ଷୁଧା ମେଣ୍ଟାଇବା ଭଳି ସ୍ୱାଦ୍ୟ ଖୋରାକ ଥିବା କବିତାଟିଏ ଉପରେ ଆଖି ଡାଳିବାପାଇଁ ଆବେଗଉଦ୍‌ବେଗଭରା କେଡ଼େ ଦାମୀ ହାର୍ଦ୍ଦିକ ଆବେଦନ ସତେ !

'ନବଯୁଗ ସାହିତ୍ୟ ସଂସଦ'ର ପ୍ରତିଷ୍ଠାତା କ୍ଷଣଜନ୍ମା ଅଥଚ କ୍ଷୀଣଜୀବୀ (୧୯୦୭—୧୯୪୩) ଚିରସ୍ମରଣୀୟ ଭଗବତୀଚରଣ ପାଣିଗ୍ରାହୀ ଓଡ଼ିଶାର ପ୍ରଥମ କମ୍ୟୁନିଷ୍ଟ—ଓଡ଼ିଶୀ ମାଟିରେ କମ୍ୟୁନିଜମ୍-ବୃକ୍ଷର ମୂଳ ରୋପକ, ଏହି କ୍ରାନ୍ତିକାରୀ ବାଦର ଆଦି

ନେତା, ପ୍ରଚାରକ, ପ୍ରସାରକ ଏବଂ କମ୍ୟୁନିଷ୍ଟ ପାର୍ଟିର ସଙ୍ଗଠକ ଓ (ଭାରତୀୟ କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ର କାର୍ଯ୍ୟାଳୟ ସହିତ ସ୍ଥାୟୀ ସଂଯୋଗରକ୍ଷାର୍ଥ କଟକରେ) କମ୍ୟୁନିଷ୍ଟ ପାର୍ଟି କାର୍ଯ୍ୟାଳୟର ସଂସ୍ଥାପକ । ମୁଁ ଯେଉଁ ସମୟର କଥା କହିବାକୁ ଯାଉଛି, ସେତେବେଳକୁ ଯୌବନର ଉଦ୍ଦାମତା ମଧ୍ୟରେ ସେ ତିରିଶରୁ କମ୍ ବୟସ୍କ ଥିଲେହେଁ ସ୍ଥିତପ୍ରଜ୍ଞ ପ୍ରୌଢ଼-ଜନୋଚିତ ପ୍ରଖର ବିବେକ ଥିଲା ତାଙ୍କ କର୍ମପ୍ରବାହର ନୀତିନିୟାମକ ଓ ଜାଗ୍ରତ ଜଗୁଆଳ । କୁଟିଳ ରାଜନୀତିର ପଙ୍କିଳ ବାତାବରଣ ସହିତ ବାହ୍ୟତଃ ଜଡ଼ିତ ଥିଲେହେଁ ଭଗବତୀଚରଣଙ୍କ ରାଜନୈତିକ ଆଚରଣ ଥିଲା ସିଧା ସରଳ, ଦିବାଲୋକ ପରି ସ୍ପଷ୍ଟ, କୂଟଜାଲବିମୁକ୍ତ, ନିଷ୍କଳଙ୍କ ନିଷ୍କଳୁଷ ଓ ଗଙ୍ଗାଜଳ ପ୍ରାୟ ନିର୍ମଳ ପବିତ୍ର । ସଦୈବ 'ବହୁ-ଜନସୁଖାୟ ବହୁଜନହିତାୟ' ଭାବନାର ଅନୁରଣନାରେ ଦେଶମାତୃକାର ସେବାପାଇଁ ଜୀବନ ଉତ୍ସର୍ଗ କରିବାରେ ତାଙ୍କର ଅନନ୍ୟ ନିଷ୍ଠା ଥିଲା ଅସିଧାରବ୍ରତ । ତାଙ୍କ ସଦ୍ଗୁଣ ଅକୁତୋଭୟ, ସ୍ପଷ୍ଟଭାଷୀ, ସତ୍ୟନିଷ୍ଠ ଅନୃତଦ୍ୱେଷୀ, ଶୃଙ୍ଖଳିତାତ୍ମା ସତ୍‌ପୁରୁଷ ଆଧୁନିକ ରାଜନୀତି କ୍ଷେତ୍ରରେ ବିରଳ ବା ଦୁର୍ଲଭ, କେବଳ ଏତିକି କହିଲେ ଭଗବତୀଚରଣଙ୍କୁ ଏହି ଜଗତରେ ଚିହ୍ନାଇବା ଆଦୌ ଯଥେଷ୍ଟ ହେବ ନାହିଁ—ତାଙ୍କ ଜାତିର ଏଡ଼େ ଉଚ୍ଚ କୋଟିର ସତ୍ୟବୀର ଏପର୍ଯ୍ୟନ୍ତ ରାଜନୀତିକ ଓଡ଼ିଶାରେ ଜନ୍ମି ନାହାନ୍ତି, ଏହି ବାକ୍ୟ ହିଁ ତାଙ୍କ ଅନନ୍ୟ ବ୍ୟକ୍ତିତ୍ୱର ଏକମାତ୍ର ପରିଚାୟକ ଓ ପରିପ୍ରକାଶକ । 'ନିର୍ମଳ ଭାବମୂର୍ତ୍ତି' ବୋଲି ଏବେ ଯେଉଁ ହୁଆ ଦଳୀୟ ରାଜନୀତିରେ ଖୁବ୍ ଜୋର୍ ଉଠିଛି, ତାହା କେବଳ ଶବ୍ଦତଃ—କାର୍ଯ୍ୟତଃ ଠିକ୍ ବିପରୀତ, ଲୋକପ୍ରତାରଣାମୂଳକ ଧୂଆଁ ବାଣ । କିନ୍ତୁ ସତ୍ୟବ୍ରତ ଭଗବତୀଚରଣ ଥିଲେ ଅକ୍ଷରେ ଅକ୍ଷରେ ନୀତିବାଜ; ତାଙ୍କ ରାଜନୀତି ଥିଲା ନିର୍ମଳ, ପ୍ରଦୂଷଣରହିତ, ଅଗ୍ନିପରୀକ୍ଷିତ । ତେଣୁ ରାଜନୀତିକ୍ଷେତ୍ରରେ ପ୍ରକୃତ 'ନିର୍ମଳ ଭାବମୂର୍ତ୍ତି' କାହାକୁ କହନ୍ତି, ତାହାର ପ୍ରତ୍ୟକ୍ଷ ଦୃଷ୍ଟାନ୍ତମାଳା ଦେଖାଇଯାଇଛନ୍ତି ନିଃସ୍ୱାର୍ଥ ଦେଶଭକ୍ତ ଭଗବତୀଚରଣ । ମାତ୍ର କ୍ଷୋଭର କଥା, ତାଙ୍କ ମହତ୍ତ୍ୱର ଆଦର୍ଶର ମର୍ଯ୍ୟାଦା ବଜାୟ ରଖିବାକୁ ଏ 'ଜଗନ୍ନାଥ ଦେଶ' ଓଡ଼ିଶାରେ ଜଣେ କେହି ଉତ୍ତରସାଧକ ଏପର୍ଯ୍ୟନ୍ତ ବାହାରି ପାରିଲେ ନାହିଁ ।

ଏ ଗଲା କମ୍ୟୁନିଷ୍ଟ ନେତା ଭଗବତୀଚରଣଙ୍କ ରାଜନୀତି ଭୂମିକାର ଚୁମ୍ବକ ଆଭାସ । ଏବେ ସରସ୍ୱତୀ-ସେବକ ଭଗବତୀଚରଣଙ୍କ ସାହିତ୍ୟସାଧନାର କିଞ୍ଚିତ୍ ସୂଚନା ଦିଏଁ । ତରୁଣ ବୟସରୁ ତାଙ୍କଠାରେ କବିପ୍ରତିଭାର ସ୍ଫୁରଣ ପରିଲକ୍ଷିତ ହୋଇଥିଲା । ଯୌବନାରମ୍ଭରୁ ତାଙ୍କ ଶାଣିତ ଦରଦୀ ଲେଖନୀ ଦୀନଦରିଦ୍ର ଦଳିତ ଶୋଷିତ ସର୍ବହରା ଶ୍ରେଣୀଙ୍କ ଦୁଃଖଦୁର୍ଦ୍ଦଶାମୋଚନ ପାଇଁ ଗତିପ୍ରଖର ହୋଇଉଠିଥିଲା । ଅଳ୍ପକାଳ ମଧ୍ୟରେ ଲେଖକମହଲ ତାଙ୍କ ଲହୁଲୁହଭିଜା ଲେଖନୀକୁ ଅକୁଣ୍ଠ ସ୍ୱୀକୃତି ପ୍ରଦାନ କଲା । ଗାଳ୍ପିକରୂପେ ମଧ୍ୟ ସେ ଅମ୍ଳାନ ସମ୍ମାନର ଅଧିକାରୀ ହୋଇପାରିଥିଲେ । ରୋମାଞ୍ଚକର ଶିକାର ଗଳ୍ପମାନ ତାଙ୍କ ବଳମୀ କଲମରୁ ଚମତ୍କାର ଉତୁରୁଥିଲା । ସେ ନିଜେ ବନ୍ଧୁକଧାରୀ ଶିକାରୀ ଥିଲେ

କି ନାହିଁ ଏବଂ ତାଙ୍କ ଲିଖିତ ଶିକାର କାହାଣୀଗୁଡ଼ିକ ସତ୍ୟଭିତ୍ତିକ କି ସମ୍ପୂର୍ଣ୍ଣ କାଳ୍ପନିକ, ଏହାର ତଥ୍ୟ ମତେ ଅଜ୍ଞାତ । ଯେ ଯାହାହେଉ, ତାଙ୍କ ଲେଖନୀର ଯାଦୁକରୀ ମହିମାରେ କଥାବସ୍ତୁଗୁଡ଼ିକର ବର୍ଣ୍ଣନା ଯେ ପ୍ରତ୍ୟକ୍ଷୀଭୂତ ବାସ୍ତବ ଘଟନାଠାରୁ ଅଧିକ ଚମକପ୍ରଦ ଓ ଚମତ୍କାର ଥିଲା, ଏଥିରେ ସନ୍ଦେହ ନାହିଁ ।

ନୂତନ ଆତ୍ମମୁଖ୍ୟର ସଙ୍କେତବାହକ ଗୋଟିଏ ମାସିକ ସାହିତ୍ୟ ପତ୍ରିକାର ଆଶୁ ଆବଶ୍ୟକତା ଦିନକୁ ଦିନ ସେ ଅଧିକ ଅନୁଭବ କରିବାକୁ ଲାଗିଲେ । ସେହି ପତ୍ରିକା-ମାଧ୍ୟମରେ ଯୁବସମାଜକୁ ଉଦ୍‌ବୋଧିତ ଓ ସଙ୍ଗଠିତ କରିପାରିଲେ ସେମାନଙ୍କଦ୍ୱାରା ନୂତନ ଆଗାମୀଙ୍କୁ ଯଥୋପଯୁକ୍ତରେ ଆବାହନ କରିବା ସମ୍ଭବପର ହେବ । ତାହାହେଲେ ସେମାନଙ୍କ ଉତ୍ତରଦାୟାଦମାନେ ଆସନ୍ନମୁଖୀ ନୂଆ ଦୁନିଆର ରୂପକୁ 'ବିଶ୍ୱକୌଟୁମ୍ବିକ' ଢାଞ୍ଚାରେ ଗଢ଼ି ଜନ୍ମଭୂମିକୁ ସୁଖ ଶାନ୍ତି ସାମ୍ୟ ସହିତର ବୈକୁଣ୍ଠଭବନରେ ପରିଣତ କରିବାକୁ ସମର୍ଥ ହୋଇପାରିବେ । ଆଶାସ୍ୱୀ ଭଗବତୀଚରଣଙ୍କର ଏହା ଥିଲା ପକ୍କା ବିଶ୍ୱାସ ।

ଦଳନାୟକଙ୍କର ମାନସିକ ପ୍ରତିବିମ୍ବକୁ କାୟା ଦାନ କରିବାକୁ ଏକାନ୍ତ ବିଶ୍ୱସ୍ତ କେତେକ ନିଷ୍ଠାପର ଆନୁଗତ୍ୟଧାରୀ ଉତ୍ସାହୀ ନବଯୁଆନ କର୍ମୀ ଅଣ୍ଟା ଭିଡ଼ି ଆଗଭର ହେବାକୁ ପଣ ନେଲେ । ସେମାନଙ୍କ ନିରଳସ ଉଦ୍ୟମରେ ପତ୍ରିକାପ୍ରକାଶନ ପାଇଁ ଯଷ୍ଟି-ଦୁଣିଆ ବେଶ୍ କିଛି ଚାନ୍ଦା ସଂଗୃହୀତ ହେଲା । ସେହି ସମ୍ବଳକୁ ମୂଳପାଣ୍ଠି କରି କର୍ମୀଦଳ ସଫଳ ଭବିଷ୍ୟତର ସମ୍ଭାବନାରେ ସାହସ ବାନ୍ଧିଲେ । ଏହି ଉଦ୍‌ଯୋଗୀ ନବଯୁବକ-ମାନଙ୍କର ଚାଳକ ଥିଲେ ମୁଖ୍ୟତଃ ତିନିଜଣ—ବୈଦ୍ୟନାଥ ରଥ, ଅନନ୍ତ ପଟ୍ଟନାୟକ ଓ ପରମାନନ୍ଦ ମହାନ୍ତି (ଛଦ୍ମନାମ 'ଘଟୋତ୍କଚ') । ଦିନେ ଏହି ତ୍ରିମୂର୍ତ୍ତି ଅପ୍ରତ୍ୟାଶିତ-ଭାବରେ ଆସି ମୋ ମହମ୍ମଦିଆବଜାର ବସାରେ ଆବିର୍ଭୂତ ହୋଇଗଲେ । ମୁଁ ନବଭାରତ ଅନୁଷ୍ଠାନରେ ଯୋଗଦେଇଥିବା ସମ୍ବାଦ ଭଗବତୀଚରଣ ଅନେକ ପୂର୍ବରୁ ଅବଗତ ହୋଇ-ସାରିଥା'ନ୍ତି । ଏବେ ଏକ ବିଶେଷ ବାର୍ତ୍ତା ଦେଇ ଏହି ତିନିଙ୍କି ଦୂତରୂପେ ସେ ବରଗିଥିଲେ ମୋ ପାଖକୁ । ଦୂତତ୍ରୟ ମୋର ବହୁଦିନର ପୁରୁଣା ପରିଚିତ, ଯେତେବେଳେ ମୁଁ ଥିଲି ନର୍ମାଲ୍ ସ୍କୁଲର ଅଧ୍ୟାପକ ଏବଂ ଏମାନେ ଥିଲେ ମାଇନରସ୍କୁଲର ଭିନ୍ନ ଭିନ୍ନ ଶ୍ରେଣୀର ଛାତ୍ର । ତ୍ରିମୂର୍ତ୍ତିଙ୍କ ମୁଖରୁ 'ବିଶେଷ ବାର୍ତ୍ତା'ର ବିବରଣ ସବିସ୍ତାର ଶୁଣିଲି—ହାରାହାରି ପଚାଶ ପୃଷ୍ଠାର ମାସିକ ସାହିତ୍ୟପତ୍ର 'ଆଧୁନିକ' ଭଗବତୀଚରଣ ପାଣିଗ୍ରାହୀଙ୍କ ସମ୍ପାଦନାରେ ଖୁବ୍ ଶୀଘ୍ର ଆତ୍ମପ୍ରକାଶ କରିବ ଏବଂ ତାହା ନବଭାରତ ପ୍ରେସ୍‌ରେ ହିଁ ମୁଦ୍ରିତ ହେବ । ପତ୍ରିକାଟି ଯେପରି ଠିକ୍ ନିରୂପିତ ତାରିଖରେ ପ୍ରେସ୍‌ରୁ ମୁକ୍ତିଲାଭ କରିବ, ତାହାର ସମସ୍ତ ଦାୟିତ୍ୱ ସମ୍ପାଦକ ଲଦିଦେଇଥିଲେ ମୋରି ମୁଣ୍ଡରେ । ଏହାଛଡ଼ା ତାଙ୍କର ଦିଓଟି ଅନୁରୋଧ ମଧ୍ୟ ଥିଲା—ପ୍ରଥମ, ପ୍ରତି ମାସରେ 'ଆଧୁନିକ' ପାଇଁ ମୁଁ ଗୋଟିଏ ଲେଖାଏଁ କବିତା ଯୋଗାଇବି; ଦ୍ୱିତୀୟ, ମେନେଜର ଚିନ୍ତାମଣି ମିଶ୍ରଙ୍କୁ ତାଙ୍କ ପକ୍ଷର ହୋଇ କହି

ମୁଦ୍ରଣ ଦେୟରେ ସ୍ୱତନ୍ତ୍ର ରିହାତିର ସାହାଯ୍ୟ ବ୍ୟବସ୍ଥା ମୁଁ କରାଇଦେବି । ନବଜାତକ 'ଆଧୁନିକ'କୁ ଯଥାସମ୍ଭବ ସାହାଯ୍ୟ ସହଯୋଗ ନବଭାରତ ପ୍ରେସ୍‌ର ଅବ୍ୟାହତ ରହିବ ବୋଲି ମୁଁ ଚନ୍ଦ୍ରମଣିବାବୁଙ୍କ ସହିତ ପରାମର୍ଶ କଲା ପରେ ଅନୁଷ୍ଠାନ ପକ୍ଷରୁ ଭଗବତୀ-ଚରଣଙ୍କୁ ନିଜର ପ୍ରତିଶ୍ରୁତି ଜଣାଇଥିଲି ।

ଏହା ୧୯୩୬ ସାଲର ବସନ୍ତବିଦାୟ ବେଳର କଥା । ଅଳ୍ପ କେତେକ ଦିନ ପରେ କଟକ ଜିଲା ମାଜିଷ୍ଟ୍ରେଟ୍‌ଙ୍କଠାରୁ ପତ୍ରିକା ପ୍ରକାଶ ପାଇଁ ବିଧିବଦ୍ଧ ଅନୁମତି ଆସିଗଲା । ସମ୍ପାଦକ ଭଗବତୀଚରଣ 'ଆଧୁନିକ'ର ଆଦ୍ୟ ସଂଖ୍ୟା ମୁଦ୍ରଣପାଇଁ ପାଣ୍ଡୁଲେଖ ପଠାଇଦେଲେ । ମତେ ଯେଉଁ ଦାୟିତ୍ୱ ସେ ଦେଇଥିଲେ, ଆନ୍ତରିକତାର ସହିତ ମୁଁ ତାହା ତୁଲାଇଲି । ପ୍ରେସ୍ ପକ୍ଷରୁ ଯେଉଁ ପ୍ରତିଶ୍ରୁତି ଦିଆଯାଇଥିଲା, ତାହା ମଧ୍ୟ ଯଥାଯଥ ପାଳିତ ହେଲା ।

ସୁସାହିତ୍ୟିକ ଭଗବତୀଚରଣ ପାଣିଗ୍ରାହୀଙ୍କ ଦକ୍ଷ ସମ୍ପାଦନାରେ ପରିପ୍ରକାଶିତ 'ଆଧୁନିକ' ନବ୍ୟଭବ୍ୟ ବେଶ ପରିପାଟୀରେ ଠିକ୍ ପୂର୍ବନିର୍ଦ୍ଧାରିତ ଦିନ ଆତ୍ମପ୍ରକାଶ କରି ପତ୍ରିକା-ମଣ୍ଡଳରେ ଏକ ନବଦିଗନ୍ତର ବର୍ଣ୍ଣାଢ଼୍ୟ ତୋରଣ ଉନ୍ମୋଚିତ କରିଦେଲା । ସଦ୍ୟନୂତନ ଯୁବଗୋଷ୍ଠୀର ସୃଜନଦୃଷ୍ଟି ଉନ୍ମାଦନାର ନୃତ୍ୟାସ୍ପନ୍ଦନରେ ହିଲ୍ଲୋଳିତ ହୋଇଉଠିଲା । ଗଡ଼ଡ଼ଲିକା ପ୍ରବାହର ଆବର୍ତ୍ତରେ ଘୂରିବୁଲି ହେଉଥିବା ପୁରୁଣା ପତ୍ରିକାସମ୍ପାଦକମାନେ ପୂର୍ବ ପନ୍ଥା ବର୍ଜନ କରି ଗତିଶୀଳ ପୃଥିବୀର ଦ୍ରୁତ ଆବର୍ତ୍ତନକୁ ଚାହିଁ ନିଜ ନିଜର ଆଭିମୁଖ୍ୟକୁ କେଉଁ ଢାଞ୍ଚାରେ ପରିବର୍ତ୍ତିତ କରିବେ, 'ଆଧୁନିକ' ତାହାର ଏକ ସୁଚିନ୍ତିତ 'ମଡ଼େଲ୍' (ବାସ୍ତବ ଆଦର୍ଶ) ଯୋଗାଇଥିଲା, ଯାହା ସମକାଳୀନ ସମ୍ପାଦକମାନଙ୍କ ଆଖିର ପରଳ କାଟିଦେଇଥିଲା । ଏହି 'ଆଧୁନିକ', କେତୋଟିମାତ୍ର ମାସର ପ୍ରନଷ୍ଟ ଶିଶୁ, ଅମୃତପଥର ଯାତ୍ରୀ ହେଲା ସିନା; କିନ୍ତୁ ସେ ଯେଉଁ ଅଲିଭା ପଦଚିହ୍ନ ଆଙ୍କିଦେଇଗଲା ତହିଁରେ ଛାପି ରଖିଦେଲା ଆଗାମୀର ଯୁବଗୋଷ୍ଠୀପାଇଁ ଏକ ନୂତନ ଇସ୍ତାହାରର ଛଟା ।

ମୁଁ ପ୍ରତି ମାସରେ 'ଆଧୁନିକ' ପାଇଁ କବିତା ପ୍ରସ୍ତୁତ କରିବାରେ ଆଦୌ ହେଳା କରୁ ନଥିଲି । ସମ୍ଭବତଃ ସେପ୍‌ଟେମ୍ବର ସଂଖ୍ୟା ଲାଗି 'ବର୍ଷାସନ୍ଧ୍ୟା' ନାମକ ସୁନ୍ଦର କବିତାଟିଏ ଲେଖିବାର ପ୍ରୟାସ କଲି । ସେତେବେଳେ ମେଘ ଝୁପୁରୁଝୁପୁରୁ-ଟୁପୁରୁଟୁପୁରୁ ବରଷୁ-ଥାଏ । ସେଇ ମୃଦୁ ମନୋରମ ନୂପୁରଶିଞ୍ଜନର ମାଦକତାରେ ଉନ୍ମନା ହୋଇ କ୍ଷଣେ ମେଘମେଦୁର ମଦିରେକ୍ଷଣ ଆକାଶକୁ ଓ ପରକ୍ଷଣେ ପୁଷ୍ପିତବକ୍ଷା ଅଳସେକ୍ଷଣା ଧରଣୀକୁ ଚାହିଁ ଚାହିଁ କଲମ ଚଳାଇଲାବେଳେ ଭାବନାର ଆଲେଖ୍ୟମାନ ଗୋଟାକ ପରେ ଗୋଟାଏ ଆଖି ଆଗରେ ଫୁଟିଉଠି ଲେଖନୀମୁନକୁ ବାଟ କଢ଼େଇନେଲା ଆଗକୁ ଆଗକୁ । ଭାବମୟୀ ପ୍ରକୃତିର ରମ୍ୟରୁଚିର ବେଶ ଓ ଦ୍ୟାବାପୃଥିବୀର ବିମୋହନ ପରିବେଶ ଅକବିକୁ କବିରେ ପରିଣତ କରେ, କବିର କଲମାଗ୍ରକୁ କ୍ଷିପ୍ରତର କରାଏ—କଥାଟା ଅତି ସତ୍ୟ, ଅତି ବାସ୍ତବ ଏବଂ ଛୋଟ ବଡ଼ ପ୍ରତ୍ୟେକ କବି ବା କବୟିତ୍ରୀର ସ୍ୱାନୁଭବସିଦ୍ଧ ।

ଏହି 'ବର୍ଷାସନ୍ଧ୍ୟା' କବିତାଟି 'ଆଧୁନିକ'ରେ ପ୍ରକାଶିତ ହେବା ପରେ କଟକର ବହୁ ବନ୍ଧୁଙ୍କଠାରୁ ସ୍ୱାଗତଭାଷ ଶୁଣିଥିଲି, କଟକ ବାହାରର ଚିହ୍ନା ଅଚିହ୍ନା ବହୁ କବିତାପ୍ରେମୀଙ୍କଠାରୁ ଅଭିନନ୍ଦନପତ୍ର ପାଇଥିଲି । କିଛିକାଳ ପୂର୍ବରୁ କଟକର ରାଜନୀତିକ ବଳୟରେ ନବ ନାୟିକେନୀରୂପେ ଆବିର୍ଭୂତ ହୋଇଥାନ୍ତି ପ୍ରସିଦ୍ଧ 'ଚୌଧୁରୀ' ଜମିଦାର ବଂଶର କନିଷ୍ଠାବଧୂ ଶାନ୍ତିନିକେତନଶିକ୍ଷିତା ଶ୍ରୀମତୀ ମାଳତୀ ଚୌଧୁରୀ । ସେ ଥିଲେ ସୁକଣ୍ଠୀ, ରବୀନ୍ଦ୍ରସଙ୍ଗୀତପ୍ରବୀଣା, ସୁଗାୟିକା ମଧ୍ୟ । 'ଆଧୁନିକ' ପ୍ରତି ତାଙ୍କର ଥାଏ ମାର୍ମିକ ମମତା, ପ୍ରଗାଢ଼ ଅନୁରକ୍ତି ଓ ଗଭୀର ସଦିଚ୍ଛା । 'ବର୍ଷାସନ୍ଧ୍ୟା' ଗୀତିକବିତାଟି ଯେଉଁ ନୂତନ ମାତ୍ରା ଛନ୍ଦର ଅଳଙ୍କାରରେ ରଚିତ ହୋଇଥିଲା, ତାହା ମୋର ନିଜସ୍ୱ ଉଦ୍ଭାବିତ । ତତ୍ପୂର୍ବରୁ ଏହି ଲଳିତଛନ୍ଦ ଓ ଏଭଳି ବାଗ୍‌ବିଳାସମୟ ଅନ୍ତ୍ୟଯମକଯୁକ୍ତ ଗୀତିକବିତା କାହାରି ଲେଖନୀରୁ ଉଦ୍ଭୂତ ହୋଇ ନଥିଲା । ଶ୍ରୀମତୀ ମାଳତୀ ଦେବୀ ଏହି କବିତାଟି ପଢ଼ି ଏପରି ଅଭିଭୂତ ଓ ସମ୍ମୋହିତ ହୋଇପଡ଼ିଲେ ଯେ, ବାରମ୍ବାର ତାକୁ ତନ୍ମୟତାର ସହିତ ଅନୁଧ୍ୟାନ ନ କରି ରହିପାରିଲେ ନାହିଁ । ଶେଷରେ ତାର ସାଙ୍ଗୀତିକ ସ୍ୱରସଂଯୋଜନା କଲେ ଏବଂ ନିଜେ କଣ୍ଠଦାନ କରିବାକୁ ମଧ୍ୟ ଉଦ୍‌ବିଗ୍ନ ହୋଇପଡ଼ିଲେ । ତାଙ୍କ ଉଦଗ୍ର ଅଭିଳାଷକ୍ରମେ ଏକ ସଙ୍ଗୀତ ଆସରର ଆୟୋଜନ କରାଗଲା । ସେହି ଆସରରେ ସେ ଉକ୍ତ ଗୀତିକବିତାଟିକୁ ଏକାଧିକ ଭଙ୍ଗୀଳ ସ୍ୱରରେ ଓ ନର୍ତ୍ତିତ ମଧୁର କଣ୍ଠରେ ଗାନ କରି ଉପସ୍ଥିତ ଅଗଣିତ ଶ୍ରୋତା, ସାହିତ୍ୟିକ, ସଙ୍ଗୀତରସିକ, ଗୀତିକବିତାନୁରାଗୀଙ୍କୁ ଦୀର୍ଘ ସମୟ ଧରି ମନ୍ତ୍ରମୁଗ୍ଧ କରି ରଖିପାରିଥିଲେ ।

କେବଳ ଏତିକି ନୁହେଁ, ଏହାର ଅନେକ ବର୍ଷ ପରେ ସର୍ବଭାରତୀୟ ଆକାଶବାଣୀର କଟକ କେନ୍ଦ୍ର କର୍ତ୍ତୃକ କେନ୍ଦ୍ରାପଡ଼ା କଲେଜ ହଲ୍‌ରେ ଏକ ସମାରୋହମୟ ରସୋଚ୍ଛଳ ପରିବେଶ ମଧ୍ୟରେ ଯେଉଁ କବି ସମ୍ମେଳନ ଅନୁଷ୍ଠିତ ହୋଇଥିଲା, ସେଥିରେ କବିତା-ପାଠୋତ୍ସବର ବିଶେଷ କାର୍ଯ୍ୟକ୍ରମଟି ଥିଲା ସର୍ବୋତ୍କୃଷ୍ଟ ଆକର୍ଷଣ । ସେଠାରେ ଯେତେ କବିତା ବିଭିନ୍ନ କବିଙ୍କଦ୍ୱାରା ଆବୃତ୍ତି କରାଯାଇଥିଲା, ତନ୍ମଧ୍ୟରେ 'ବର୍ଷାସନ୍ଧ୍ୟା'ର ଆଳଂକାରିକ ରଚନା-ସୌଷ୍ଠବ ଓ ଶବ୍ଦବିନ୍ୟାସଲାଳିତ୍ୟ ସର୍ବୋଚ୍ଚ ପ୍ରଶଂସା ଲାଭ କରିଥିଲା ଏବଂ କାନ୍ତକୋମଳ କବିତ୍ୱ ଦୃଷ୍ଟିରୁ ଗୀତିକବିତାଟି ପ୍ରଥମ ସ୍ଥାନର ଅଧିକାରୀ ହୋଇଥିଲା ।

ଓଡ଼ିଶାର ଦୁର୍ଭାଗ୍ୟ, ତତ୍କାଳୀନ ଓଡ଼ିଶୀ ସାରସ୍ୱତ କ୍ଷେତ୍ରର ମାଟି ଦୂରଦୃଷ୍ଟିପ୍ରସୂତ ଉନ୍ନତ ଭବ୍ୟ ଭାବନା ଓ ପରିକଳ୍ପିତ ଅଗ୍ରଯାତ୍ରୀ ଆଭିମୁଖ୍ୟର ବିହନବୁଣା ପାଇଁ ଆଦୌ ପାଗି ନଥିଲା । ତେଣୁ ପୂର୍ବର 'ବାରୁଣୀ' ପରି 'ଆଧୁନିକ' ମଧ୍ୟ ସେହି ନିପାଟିଲା ମାଟିରେ ଉଧେଇ ପାରିଲା ନାହିଁ । ନବଯୁବୋଦ୍ୟୋଗିଦଳପରିଚାଳିତ ଏହି ପତ୍ରିକାଦ୍ୱୟ ଥିଲା ସମଦଶାପନ୍ନ—ଆର୍ଥିକସମ୍ବଳାଭାବ ଓ ନବ୍ୟଦୃଷ୍ଟିଭଙ୍ଗୀର ଗ୍ରାହକାଭାବ ରୂପ ଗଜାମରୁଡ଼ି-ଗ୍ରାସରେ ପଡ଼ି ଉଭୟ ପତ୍ରିକା ଅଳ୍ପ କାଳ ମଧ୍ୟରେ ବିଲୟ ଭଜିଥିଲା । କିନ୍ତୁ 'ଆଧୁନିକ'-ସମ୍ପାଦକ ଭଗବତୀଚରଣଙ୍କ ନାମ ହେଲା ଯୁଗଜୟୀ ଓ ବିଲୟବିହୀନ । କାଳର କଷଟିରେ

ତାଙ୍କ କୃତି ଓ କୀର୍ତ୍ତି ଦିନକୁ ଦିନ ଅଧିକ ଝଟକିଉଠୁଛି । ମୋଟେ ଛତିଶ ବର୍ଷ ବୟସରେ ଭଗବତୀଚରଣଙ୍କର ଆକସ୍ମିକ ବିୟୋଗ ଘଟିଥିଲା । ତାଙ୍କ ଦେହାନ୍ତର ଛତିଶ ବର୍ଷ ପରେ ୧୯୭୯ ଅକ୍ଟୋବର ୨୩ ତାରିଖ ଦିନ ନୂଆ ରାଜଧାନୀ ଭୁବନେଶ୍ୱରର ଅଶୋକନଗରରେ ଭଗବତୀଚରଣଙ୍କ ଅମ୍ଳାନ ସ୍ମୃତିକୁ ବକ୍ଷରେ ଧରି ଦ୍ୱିତଳପ୍ରାସାଦ 'ଭଗବତୀଭବନ' ପ୍ରତିଷ୍ଠିତ ହୋଇଛି । ସେହି ତାଙ୍କ ସ୍ମୃତି 'ଭବନ'କୁ ଆନୁଷ୍ଠାନିକଭାବରେ ଉଦ୍‌ଘାଟନ କରିଥିଲେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ଜେନେରାଲ୍ ସେକ୍ରେଟରି ଶ୍ରୀ ସି. ରାଜେଶ୍ୱର ରାଓ ଏବଂ ଉକ୍ତ ଉତ୍ସବରେ ପୌରୋହିତ୍ୟ କରିଥିଲେ ଜଷ୍ଟିସ୍ ଶ୍ରୀ ହରିହର ମହାପାତ୍ର । ଆହୁରି ପରମ ସୌଭାଗ୍ୟର କଥା, 'ଆଧୁନିକ' ପତ୍ରିକା ମଧ୍ୟ ଜୀବନ୍ୟାସପ୍ରାପ୍ତି ପରେ ପୁନରୁଜ୍ଜୀବିତ ହୋଇ ତାର ବରେଣ୍ୟ ପ୍ରାଣପ୍ରତିଷ୍ଠାତାଙ୍କ ଅମର ନାମକୁ ସ୍ୱର୍ଣ୍ଣାକ୍ଷରରେ ଅଙ୍କିତ କରିଛି ।

(ଙ) 'ରଚନା' ରଚନା—

ବାଳକୃଷ୍ଣବାବୁଙ୍କ ସ୍ୱହସ୍ତପ୍ରସ୍ତୁତ ଓ ସୂଚୀପତ୍ରୀକୃତ ମୂଳ ଯୋଜନାରେ ଲବେହେଁ ପରିବର୍ତ୍ତନ ନକରି ଅବିକଳ ତଦନୁରୂପେ ତାହାକୁ ହିଁ ବିସ୍ତାରିତ ରୂପରେଖ ଦେଇ ଆମେ (ଭଗବାନ ପତି ଓ ମୁଁ) ୧୯୩୩ ମସିହାରେ ଦୁଇଖଣ୍ଡି ରଚନା ପୁସ୍ତକ (ଖଣ୍ଡେ ଉଚ୍ଚ ପ୍ରାଥମିକ ଦୁଇ ଶ୍ରେଣୀପାଇଁ ଓ ଅନ୍ୟ ଖଣ୍ଡିକ ମଧ୍ୟଇଂରାଜୀ ଦୁଇ ଶ୍ରେଣୀପାଇଁ) ପ୍ରସ୍ତୁତ କରିଦେଇଥିବା କଥା ଇତିପୂର୍ବରେ ମୁଁ ଉଲ୍ଲେଖ କରିସାରିଛି । ବାଳକୃଷ୍ଣବାବୁ ଉକ୍ତ ପାଣ୍ଡୁଲିପିଦ୍ୱୟକୁ କରଗତ କଲାପରେ ପ୍ରାୟ ଦେଢ଼ବର୍ଷ ପର୍ଯ୍ୟନ୍ତ ତାଙ୍କ ଗୁପ୍ତ ଶୀତଳ-ଭଣ୍ଡାରରେ ପକାଇରଖିଥିଲେ । ଆମେ ଦୁହେଁ (ଭଗବାନ ବାବୁ ଆଉ ମୁଁ) ୧୯୩୪ ମସିହାର ଯଥାକ୍ରମେ ସେପ୍‌ଟେମ୍ବର ୩୦ ସନ୍ଧ୍ୟା ଓ ଅକ୍ଟୋବର୍ ୩୧ ସନ୍ଧ୍ୟାରେ ସାରସ୍ୱତ ପ୍ରେସ୍ ଛାଡ଼ି ଆସିବା ପରେ ହିଁ ସେ ଉଲ୍ଲିଖିତ ଦୁଇ ପାଣ୍ଡୁଲିପିକୁ ଶୀତଳଭଣ୍ଡାରରୁ ବାହାର କରି ଖୁବ୍ ତନାଘନାରେ ନିଜ ପ୍ରେସ୍‌ରେ ଛପାଇଦେଲେ । ତହିଁରେ ଲେଖକ-ରୂପେ ତାଙ୍କ ନାମ ଏହିରୂପେ ଛାପା ରହିଲା 'ଶ୍ରୀ ବାଳକୃଷ୍ଣ କର, ବି ଏ.' । ଏଭଳି ଲୁଚିଛପା କାମ ଆମ ଉପସ୍ଥିତିରେ କାଳେ ଅଡୁଆ ପରିସ୍ଥିତି ସୃଷ୍ଟି କରିବ, ଏହି ଭୟରେ ସେ ପାଣ୍ଡୁଲିପିକୁ ଏପର୍ଯ୍ୟନ୍ତ ଛପାଇ ନଥିଲେ । ସେତେବେଳେ ଥାଏ ବିହାର-ଓଡ଼ିଶା ସରକାର; ତେଣୁ ପାଠ୍ୟପୁସ୍ତକ ନିର୍ବାଚନ କମିଟିର ଅଫିସ୍ ରହୁଥାଏ ପାଟନାରେ । ଡିସେମ୍ବର ଶେଷ ତାରିଖ ସୁଦ୍ଧା ସେଠାକୁ ପ୍ରତ୍ୟେକ ମୁଦ୍ରିତ ପାଠ୍ୟପୁସ୍ତକ ପାଞ୍ଚଖଣ୍ଡ ଲେଖାଏଁ ବିଚାରାର୍ଥ ପଠାଯିବାର କଥା । ବାଳକୃଷ୍ଣବାବୁ ଏହି ସୁଯୋଗରେ ଉକ୍ତ ଦୁଇ ରଚନାପୁସ୍ତକରୁ ପାଞ୍ଚଖଣ୍ଡି କରି ପାଟନାସ୍ଥ ନିର୍ବାଚନ କମିଟି ଅଫିସ୍‌କୁ ପଠାଇଦେଲେ ।

ବାଳକୃଷ୍ଣବାବୁ ଅତି ତତ୍ପରତାର ସହିତ ପୁସ୍ତକଦ୍ୱୟର ଛାପାକାର୍ଯ୍ୟ ଠିକ୍ ନଭେମ୍ବର ପହିଲା ଦିନ ଆରମ୍ଭ କଲାମାତ୍ରେ ସେ ଖବର ସେହିଦିନ ମୋ କାନକୁ ଆସିଗଲା । ବାଳକୃଷ୍ଣ-

ବାବୁ ଆମ ଆଗରେ ବରାବର ବଖାଣ କରିଆସୁଥିଲେ, "ଯେଉଁ ସୁଲିଖିତ ପୁସ୍ତକର ଲେଖକ ଉତ୍ତରୀୟଧାରୀ, ସେହି ପୁସ୍ତକ ହିଁ ପାଠ୍ୟପୁସ୍ତକରୂପେ ନିର୍ବାଚିତ ହୁଏ । ଅଣଉତ୍ତରୀ-ୟଧାରୀଙ୍କଦ୍ୱାରା ଲିଖିତ ବହି କମିଟିରେ କାଟ ଖାଇଯାଏ ।" ତାଙ୍କର ଏହି ଉକ୍ତି ସେତେ-ବେଳେ ମୋର ମନେପଡ଼ିଗଲା । ଏହା ତାଙ୍କର ଏକ ସତ୍ୟମୂଳକ ବିବୃତି ନା ଉଦ୍ଦେଶ୍ୟମୂଳକ ଏକ ମନଗଢ଼ା ମନ୍ତବ୍ୟ, ନିଜେ ପରଖିନେବି ବୋଲି ଚରମ ନିଷ୍ପତ୍ତି ନେଲି । ସେହି ପହିଲା ନଭେମ୍ବର ରାତିରେ ଆନ୍ତର୍ଜାତିକ ଖ୍ୟାତିଧାରୀ ଶିଶୁମନସ୍ତତ୍ତ୍ୱବିଶାରଦ ଡପି ସାହେବଙ୍କ ପ୍ରବର୍ତ୍ତିତ 'ଜ୍ଞାତରୁ ଅଜ୍ଞାତ' ଫର୍ମୁଲାକୁ ଭିତ୍ତି କରି ଖଣ୍ଡିଏ ଉଚ୍ଚପ୍ରାଇମେରୀ (୪ର୍ଥ-୫ମ ଶ୍ରେଣୀ) ଉପଯୋଗୀ ରଚନାପୁସ୍ତକର ଲେଖା ଆରମ୍ଭ କରିଦେଲି । ଚିତ୍ର ସାହାଯ୍ୟରେ ବ୍ୟାକରଣକୁ ସାଥୀରୂପେ ପାଖେ ପାଖେ ରଖି ରଚନା ଶିକ୍ଷା ଦେବାର ଏକ ନୂତନ ପଦ୍ଧତି ମୁଁ ଉଦ୍ଭାବନ କରି ତାହାକୁ ପରୀକ୍ଷାମୂଳକଭାବରେ ପ୍ରୟୋଗ କରିଥିଲି । ଶହେରୁ ସାମାନ୍ୟ ଅଧିକ ପୃଷ୍ଠାବିଶିଷ୍ଟ ଏହି ଚିତ୍ରଳ ବହିଟିର ଲେଖା ଅନଧିକ ପନ୍ଦର ଦିନ ମଧ୍ୟରେ ସମାପନ କରିବାକୁ ପଡ଼ିଥିଲା ଏବଂ ଲେଖାର ଗତି ସଙ୍ଗେ ଚିତ୍ରପ୍ରସ୍ତୁତି ଓ ଛପା-କାର୍ଯ୍ୟ ସମତାଳରେ ଗତି କରିବାର ବ୍ୟବସ୍ଥା କରାଯାଇଥିଲା । ପ୍ରକାଶକର ଦାୟିତ୍ୱ ବହନ କରିଥିଲେ ରାଣୀହାଟ 'ଉତ୍କଳ ବୁକ୍ ଏଜେନ୍ସି' ପୁସ୍ତକାଳୟର ସୁଯୋଗ୍ୟ ପ୍ରୋପ୍ରାଇଟର ଶିକ୍ଷାବିତ୍ ବ୍ରଜବନ୍ଧୁ ଦାଶ । ବହିଟିର ନାମ ରଖିଥିଲି 'ରଚନାପ୍ରବେଶ' । ମୋ ତୀକ୍ଷ୍ଣ ତଦାରଖରେ ନବଭାରତ ପ୍ରେସ୍‌ରେ ତାହାର ମୁଦ୍ରଣକାର୍ଯ୍ୟ ପୂର୍ଣ୍ଣରୂପେ ଶେଷ ହୋଇଥିଲା ଲେଖା ସରିବାର ପର ସପ୍ତାହ ମଧ୍ୟରେ । ଆଗ୍ରହଶୀଳ ପ୍ରକାଶକ ମହାଶୟ ନିୟମାନୁଯାୟୀ ପାଞ୍ଚଖଣ୍ଡି 'ରଚନାପ୍ରବେଶ' ପୁସ୍ତକ ପାଟନା ସହରସ୍ଥ ଟେକ୍ସ୍ଟ ବୁକ୍ କମିଟି ଅଫିସ୍‌କୁ ନଭେମ୍ବର ୩୦ ତାରିଖ ପୂର୍ବରୁ ରେଜିଷ୍ଟ୍ରି ଡାକରେ ପଠାଇଦେଲେ ।

ବାଳକୃଷ୍ଣବାବୁ ସାରସ୍ୱତ ଭଣ୍ଡାର ପୁସ୍ତକାଳୟ ନାମରେ ପ୍ରକାଶିତ ତାଙ୍କ ଦୁଇ ରଚନା ପୁସ୍ତକକୁ ବହି-ମାର୍କେଟ୍‌କୁ ଆଦୌ ଛାଡ଼ିଲେ ନାହିଁ; କିନ୍ତୁ ବ୍ରଜବନ୍ଧୁବାବୁ ମୋ ପରାମର୍ଶ-କ୍ରମେ 'ରଚନାପ୍ରବେଶ'କୁ କଟକ ଟ୍ରେଡ଼ିଂ କମ୍ପାନୀ ପୁସ୍ତକ ଦୋକାନରେ ବିକ୍ରିପାଇଁ ଜମାଦେଲେ । ସେତେବେଳେ ଜାନୁଆରି ପହିଲାଠାରୁ ସ୍କୁଲମାନଙ୍କର ଶିକ୍ଷାବର୍ଷ ଆରମ୍ଭ ହେଉଥିଲା । କେତେକ ଗୁଣଗ୍ରାହୀ ଦୂରଦର୍ଶୀ ପ୍ରଧାନଶିକ୍ଷକ ମୋ ପ୍ରଣୀତ 'ରଚନା ପ୍ରବେଶ'ରେ ଅନୁସୃତ ହୋଇଥିବା ଅଭିନବ ଚିତ୍ର ପଦ୍ଧତି ପ୍ରତି ଆକୃଷ୍ଟ ହୋଇ ନିଜ ନିଜ ବିଦ୍ୟାଳୟରେ ଏହି ବହିଟିକୁ ଆଗ୍ରହର ସହିତ ପ୍ରଚଳନ କରିଦେଲେ ଆସନ୍ନ ଶିକ୍ଷାବର୍ଷ (୧୯୩୫) ଜାନୁଆରିଠାରୁ । ତେଣେ ପାଟନାରେ ୧୯୩୫ ମସିହାରେ ପାଠ୍ୟପୁସ୍ତକ ନିର୍ବାଚନ କମିଟିର ବୈଠକ ଯଥାସମୟରେ ବସିଲା । ସେଠାରେ ବାଳକୃଷ୍ଣବାବୁଙ୍କ ରଚନା ପୁସ୍ତକ ସହିତ ମୋ ରଚନା ପୁସ୍ତକର ମୁହାଁମୁହିଁ ପ୍ରତିଦ୍ୱନ୍ଦ୍ୱିତା ହୋଇଥିଲା । ଗୁଣାତ୍ମକତା ଦୃଷ୍ଟିରୁ ଓ ନୂତନତ୍ୱର ବିଶିଷ୍ଟତା ହେତୁ ଏହି ଅଣଉତ୍ତରୀୟଧାରୀ ଲେଖକ ପ୍ରଣୀତ 'ରଚନାପ୍ରବେଶ' ବହୁ ମତରେ ପାଠ୍ୟପୁସ୍ତକରୂପେ ଗୃହୀତ ହେଲା ଏବଂ ଉତ୍ତରୀୟଧାରୀ

ବାଳକୃଷ୍ଣ କରଙ୍କ ପ୍ରଣୀତ ଦୁଇଟିଯାକ ରଚନା ବହି ବହୁ ମହଲରେ ଅଗ୍ରାହ୍ୟ ହୋଇଗଲା । ଫଳରେ ବାଳକୃଷ୍ଣବାବୁଙ୍କ ବିବୃତି ସମ୍ପୂର୍ଣ୍ଣ ଅସତ୍ୟ ଓ ସ୍ୱାର୍ଥପ୍ରଣୋଦିତ ବୋଲି ପ୍ରମାଣିତ ହେଲା । ମୋ ପରୀକ୍ଷାମୂଳକ ସଂଗ୍ରାମୀ ଉଦ୍ୟମ ପ୍ରକୃତ ସତ୍ୟ ଉଦ୍‌ଘାଟନ କଲା । ବିହାର-ଓଡ଼ିଶା ଗେଜେଟ୍‌ରେ ମଞ୍ଜୁରିପ୍ରାପ୍ତ ନୂଆ ପାଠ୍ୟପୁସ୍ତକ ତାଲିକା ପ୍ରକାଶିତ ହେବା ପରେ ପରବର୍ତ୍ତୀ ଶିକ୍ଷାବର୍ଷ (୧୯୩୭ ଜାନୁଆରି)ଠାରୁ ଓଡ଼ିଶାର ପ୍ରତ୍ୟେକ ଉଚ୍ଚ ପ୍ରାଇମେରୀ ଶ୍ରେଣୀ (୪ର୍ଥ ଓ ୫ମ)ରେ ଏକମାତ୍ର ରଚନାପୁସ୍ତକରୂପେ ମୋ 'ରଚନାପ୍ରବେଶ' ହିଁ ପଠିତ ହେଲା ।

## (ଚ) ପୁନର୍ମିଳନର ଆନନ୍ଦ—

ବନ୍ଧୁପ୍ରୀତିର ସୁଖ ଛଣା ପୀୟୂଷଠୁ ବଳି ସୁଖଦ, ପୁଣି ବନ୍ଧୁ ବିଚ୍ଛେଦର ଦୁଃଖ ମୃତ୍ୟୁ-ଯନ୍ତ୍ରଣାଠାରୁ ବଳି ମର୍ମବିଦାରୀ ବୋଲି ଅବଗାହି ଦରଦୀ କବି ନିଜ ନିଜର ଖାଣ୍ଟି ଅନୁଭବକୁ ହୃଦସ୍ପର୍ଶୀ ଭାଷାରେ ବର୍ଣ୍ଣନା କରିଯାଇଛନ୍ତି । ଭଗବାନ ପତିଙ୍କ ସହିତ ନର୍ମାଲ୍ ସ୍କୁଲରେ ମୋର ପ୍ରଥମ ପରିଚୟ ଓ ସେହିଠାରେ ହିଁ କ୍ରମବର୍ଦ୍ଧିଷ୍ଣୁ ବନ୍ଧୁତ୍ୱର ସୂତ୍ରପାତ । ବୟସରେ ସେ ମୋ'ଠାରୁ ତିନିବର୍ଷ ବଡ଼ ହେଲେହେଁ ପଢ଼ାରେ ବର୍ଷଟିଏ ମାତ୍ର ଆଗୁଆ ଥିଲେ । ନର୍ମାଲ ସ୍କୁଲରେ ପ୍ରବେଶପାଇଁ ନିର୍ଦ୍ଧାରିତ ସର୍ବନିମ୍ନ ବୟସସୀମାଠାରୁ ମୋର ବୟସ ୧୯୨୧ରେ ଯଦି ବର୍ଷେ ଊଣା ନ ହୋଇଥାନ୍ତା, ତାହାହେଲେ ମୁଁ ସହପାଠୀରୂପେ ଭଗବାନବାବୁଙ୍କ ସଙ୍ଗେ ସେହି ୧୯୨୧ ଜାନୁଆରି ପହିଲୁରୁ ଅଧ୍ୟୟନ କରିପାରିଥା'ନ୍ତି । ସେ ଚାକିରିଶେଷପରେ ସ୍ୱକୀୟ ଜୀବନ ମଧ୍ୟରେ କିଛି କାଳପାଇଁ (କଟକ ଇଦଗା ପଡ଼ିଆରୁ ବାହାରୁଥିବା ଲକ୍ଷ୍ମୀନାରାୟଣ ସାହୁଙ୍କ ପ୍ରତିଷ୍ଠିତ) 'ସହକାର' ମାସିକ ପତ୍ରିକାର ସମ୍ପାଦକ ହୋଇଥିଲେ, ଯହିଁରେ ପାଠଦଶା ୧୯୨୨ଠାରୁ କ୍ରମାଗତରୂପେ ମୋ କବିତା ଓ ନିବନ୍ଧ ବାହାରିଆସୁଥିଲା । ସହକାର-ମାଧ୍ୟମରେ ସେ ଲେଖାକକୁ 'ବସନ୍ତ-କୋକିଳ' ଭଗବାନ ପତି ରୂପେ ନିଜକୁ ପରିଚିତ କରାଇଥିଲେ । ବାର ବର୍ଷ ବୟସରୁ ମୁଁ କବିତାଦି ଲେଖା ଆରମ୍ଭ କରିଥିଲି । 'ଉତ୍କଳସାହିତ୍ୟ' ସମ୍ପାଦକ ବାବୁ ବିଶ୍ୱନାଥ କରଙ୍କ ପ୍ରୋତ୍ସାହନ ଓ ତତ୍ତ୍ୱାବଧାନରେ ମୂଳବସନ୍ତ 'କର ଫାମିଲି ଲାଇବ୍ରେରୀ' ତରଫରୁ ପ୍ରକାଶିତ ହେଉଥିବା 'ଆଲୋକ' ନାମକ ହାତଲେଖା ମାସିକ ପତ୍ରିକାର ବିଭିନ୍ନ ସଂଖ୍ୟାରେ ମୋର କବିତା, ଗଳ୍ପ, ପ୍ରବନ୍ଧ ବରାବର ବାହାରୁଥିଲା । କଟକର ବାଲି ମାଟିରେ ଜୀବନ ଗଢ଼ିବାର ପ୍ରଥମ ପର୍ଯ୍ୟାୟ ଦିନୁଁ 'ସହକାର', 'ନବୀନ' ଓ 'ଶିଶିର' ଗୋଟିକ ପରେ ଗୋଟିଏ ପତ୍ରିକାରେ ମୋର ଯେଉଁ କବିତାମାନ ପ୍ରକାଶିତ ହୋଇଥିଲା, ତାହାର ସମ୍ପାଦକମାନେ ସ୍ୱତଃପ୍ରବୃତ୍ତ ଭାବରେ ମୋ ନାମ ପୂର୍ବରେ 'କିଶୋରକବି' ଆଖ୍ୟା ଯୋଡ଼ି-ଦେଉଥିଲେ । ଭଗବାନବାବୁ ନିଜଦତ୍ତ 'ବସନ୍ତକୋକିଳ' ଆଖ୍ୟାକୁ ଆମରଣ ବ୍ୟବହାର କରିବାରେ ଗଭୀର ଆତ୍ମସନ୍ତୋଷ ଲାଭ କରିଥିଲେ; ମୁଁ କିନ୍ତୁ ପତ୍ରିକାପ୍ରଦତ୍ତ 'କିଶୋରକବି'

ଆଖ୍ୟା ପ୍ରତି ସମ୍ପୂର୍ଣ୍ଣ ସ୍ୱାତନ୍ତ୍ରିକ ଥିଲା । ୧୯୨୨ଠାରୁ ଉପର୍ଯ୍ୟୁକ୍ତ କାଳ ମଧ୍ୟରେ ଅନ୍ୟ ଯେଉଁ ପତ୍ରିକାମାନଙ୍କରେ (ଯଥା—ସାହିତ୍ୟସୋପାନ, ଉତ୍କଳମଧୁପ, ପଞ୍ଚାମୃତ, ଜଳକା ଆଦି) ମୋର ଲେଖାସବୁ ପ୍ରକାଶିତ ହେଉଥିଲା, ସେଥିରେ ମୋ ନାମ ପୂର୍ବରୁ 'କିଶୋରକବି' ଆଖ୍ୟାକୁ ବରାବର ବାଦ୍‌ଦିଆଯାଉଥିଲା ।

ଆମ ଦୁହିଙ୍କ ଭିତରେ ବନ୍ଧୁତା-ଡୋରିର ଗଣ୍ଠି ଏତେ ଜୋର୍ ହେଲା ଯେ, ଭଗବାନ-ବାବୁଙ୍କୁ କଟକ ସେପଟ ଛିଡ଼ଗା ପଡ଼ିଆରୁ ଛଡ଼ାଇଆଣି କିପରି ସହର ଭିତରେ ଥାପନା କରିବି, ଏହି ଚିନ୍ତା ମତେ ପ୍ରବଳଭାବରେ ଘାରିଲା । ମୁଁ ଯେତେବେଳେ (୧୯୨୯) କଟକ ଟ୍ରେଡ଼ିଂ କମ୍ପାନୀ (ବାଲୁବଜାର) ଛାଡ଼ି ସାରସ୍ୱତ ପ୍ରେସ୍ (ନିମଚୌଡ଼ି)କୁ ଆସିଲି, ପ୍ରୋପ୍ରାଇଟର୍ ବାଳକୃଷ୍ଣବାବୁଙ୍କ ଆଗରେ ମୋ ପ୍ରିୟ ବନ୍ଧୁ ସାହିତ୍ୟିକ ଭଗବାନ ପତିଙ୍କ ଗୁଣଗାନ ଓ କବିପ୍ରତିଭାର ଭୂୟସୀ ପ୍ରଶଂସା କଲି ଏବଂ ତାଙ୍କୁ ଆମ ସହିତ ସାମିଲ କରି ପାରିଲେ ଏହି ସାରସ୍ୱତ ଅନୁଷ୍ଠାନର ପ୍ରଭୂତ କଲ୍ୟାଣ ସାଧିତ ହୋଇପାରିବ ବୋଲି ଯୁକ୍ତି ବାଢ଼ିଲି, ବାଳକୃଷ୍ଣ ବାବୁ ମୋ ପ୍ରସ୍ତାବରେ ସମ୍ମତ ହୋଇ ତାଙ୍କୁ ଆନନ୍ଦର ସହିତ ପ୍ରେସ୍‌ରେ ନିଯୁକ୍ତ ଦେଲେ । ଆମେ ଦୁଇ ବନ୍ଧୁ ମହିମାଦିଆ ବଜାରସ୍ଥ ଏକ କୋଠାଘରେ ଆଉ କେତେକ କର୍ମବୃନ୍ଦଙ୍କ ମେଳରେ ମେସ୍ କରି ଏକାଠି ରହିଲୁଁ । ସାଙ୍ଗ ହୋଇ ନିତି କର୍ମକ୍ଷେତ୍ରକୁ ଯାଉଁ, ସାଙ୍ଗ ହୋଇ ମେସ୍‌ବସାକୁ ଫେରୁଁ ।

ଜୁଆର ପରେ ଭଟ୍ଟା ଆସେ । ଆମ ବନ୍ଧୁତାର ଭାଗ୍ୟରେ ସେଇ ଭଟ୍ଟାର ବେଳ ଆସିଲା । ୧୯୩୪ ଅକ୍ଟୋବର ପହିଲାଠାରୁ ବନ୍ଧୁଙ୍କର ଦର୍ଶନ, ମଧୁରାଳାପ ହୋଇଯାଇଛି ସାତସ୍ୱପ୍ନ । ନବଭାରତ ପ୍ରେସ୍‌ରେ କର୍ମବ୍ୟାପୃତ ରହିଥିବାବେଳେ ଦିନେ ଦିନେ ଅଜ୍ଞାନକେ ଭଗବାନ-ବାବୁଙ୍କ ସୁଖସ୍ମୃତି ମନ-ମୁକୁରରେ ଝଲସିଉଠେ । ପ୍ରଚରମାଣ ପ୍ରଖର କଲମ ହାତଆଙ୍ଗୁଳି-ଖୋପରୁ ଅଜାଣତେ ଖସିପଡ଼େ । କାମରୁ ହାତ ଛାଡ଼ିଯାଏ । ନିର୍ବେଦରେ ଅନ୍ତର କୁହୁଳି ଉଠେ କିଛି କ୍ଷଣ । ବହୁ ଚେଷ୍ଟା କରି ନିଜକୁ ସଯତ, ପ୍ରକୃତିସ୍ଥ କରେ । ବୈଗୁଣ୍ୟକୁ ଠେଲି ପୁଣି କାର୍ଯ୍ୟରେ ହାତ ଲଗାଏଁ । ଅନ୍ତସ୍ତଳରୁ ପ୍ରଶ୍ନଟିଏ ମୁଣ୍ଡ ଟେକେ—ଏ ମାନସିକ କଦର୍ଥନାରୁ କ'ଣ ନିସ୍ତାର ନାହିଁ ? ଜାଗ୍ରତ ବିବେକ ତାତ୍କ୍ଷଣିକ ଉତ୍ତର ଦିଏ—ନିଶ୍ଚୟ ଅଛି । ଆଶାର ଦିହୁଡ଼ି ଦିଶେ, ଆଶ୍ୱାସନାର ଦ୍ୟୋତନା ମିଳେ ।

ଏଥି ମଧ୍ୟରେ ଅନେକ ଦିନ ବିତିଯାଇଛି । ମୁଁ ମେସ୍ ଜୀବନକୁ ଜଳାଞ୍ଜଳି ଦେଇ-ସାରିଛି । ଦିନେ ମହିମାଦିଆବଜାରସ୍ଥ ନିଜ ବସାରେ ଟିକିଏ ଆରାମ ନେବାପାଇଁ ଖଟରେ ଗଡ଼ପଡ଼ ହେଉଛି, ହଠାତ୍ ମୋ ମନଶ୍ଚକ୍ଷୁ ସମକ୍ଷରେ ନାଚିଉଠିଲା ୧୯୩୪ର ଏକ ସ୍ମରଣୀୟ ଦିବସର ପୁରୁଣା ଘଟଣାଟିଏ । ସେଦିନ ସକାଳେ ଦାଣ୍ଡଦରଜା ଦରଆଉଜା ରହିଥିଲା । ପୂଜ୍ୟ ଗୁରୁଦେବ ପଣ୍ଡିତ କୁଳମଣି ଦାଶ କାବ୍ୟତୀର୍ଥ ମୋ କକ୍ଷଭିତରକୁ ପଶିଆସିଲେ । ତାଙ୍କର ଏଭଳି ବେ-ଦଇବା ଆଗମନରେ ମୁଁ ହତବାକ୍ ହୋଇ ପାଦରଜ ଆଣିବାକୁ ଉଦ୍ୟତ ହେଲାବେଳେ ସେ ମୋ ହାତକୁ ମୁଠାଇଧରି କହିଲେ, "ପ୍ରହଟିକେ ତୋ ପାଖକୁ

ଆସିଛନ୍ତି, ଦାଣ୍ଡରେ ତାଙ୍କ ଗାଡ଼ିରେ ଅପେକ୍ଷା କରିଛନ୍ତି । ବେଗି ବେଗି ଜାମା ଜୋତା ପିନ୍ଧି ବାହାରିପଡ଼ । ସେଇ ଗାଡ଼ିରେ ଭାଷାକୋଷ ଅଫିସ୍‌କୁ ତତେ ଯିବାକୁ ହେବ ।”

ଥକ୍‌କା ହୋଇ ତାଙ୍କ ମୁହଁକୁ ଦଣ୍ଡେ ଅନେଇଲି । ସଙ୍ଗେ ସଙ୍ଗେ ପ୍ରସ୍ତୁତ ହୋଇପଡ଼ି ସାର୍‌ଙ୍କ ପଛେ ପଛେ ଦାଣ୍ଡକୁ ପାଦ ପକାନ୍ତେ ଦେଖିଲି, ଭାଷାକୋଷକାର ରାୟବାହାଦୁର ଗୋପାଳଚନ୍ଦ୍ର ପ୍ରହରାଜ ମୋ ଆଡ଼କୁ ଚାହିଁ ଚାହିଁ କାର୍ ଭିତରୁ ବାହାରିଆସୁଛନ୍ତି ହସ ହସ ବଦନରେ । ବିନମ୍ର ପ୍ରଣତି ଜଣାଇଲି ତାଙ୍କୁ । ସେ ମୋ ହାତ ଧରି ଗାଡ଼ିର ଆଗ ସିଟ୍‌କୁ ନେଇଗଲେ । ମୁଁ ସେଇଠି ଡ୍ରାଇଭର୍ କଡ଼ରେ ବସିଲି । ପ୍ରହରାଜେ ଓ ଗୁରୁରାଜେ ଯୋଡ଼ି-ଯାଆଁଳ ହୋଇ କାର୍‌ର ପଛ ସିଟ୍‌ରେ ଉପବେଶନକଲେ ।

ଉତ୍କଳଭାରତୀଙ୍କ ବରପୁତ୍ର ଗୋପାଳଚନ୍ଦ୍ର ପ୍ରହରାଜ (୧୮୭୨—୧୯୪୫) ମସୀଜୀବୀ ଓ ଆଇନଜୀବୀ ଉଭୟତଃ ସମାନ ସମ୍ମାନ ଓ ସୁନାମ ଅର୍ଜନ କରିଥିଲେହେଁ ହଠାତ୍ ଆଇନ ବ୍ୟବସାୟ ପ୍ରତି ବୀତସ୍ପୃହ ହୋଇ ୧୯୧୩ ମସିହାଠାରୁ କୋର୍ଟ କଚେରିକୁ ଯିବା ଏକାବେଳକେ ବନ୍ଦକରିଦେଲେ । ଏକ ବୃହତ୍ତର ଶବ୍ଦକୋଷ ଗ୍ରନ୍ଥ ସଙ୍କଳନ ରୂପ ମହତ୍ତର ସାରସ୍ୱତ ସାଧନାରେ ମନଃପ୍ରାଣ ଢାଳିଦେବାକୁ ସେ କୃତନିଶ୍ଚୟ ହେଲେ । ସଂସ୍କୃତ, ଓଡ଼ିଆ, ବଙ୍ଗଳା, ହିନ୍ଦୀ ଏହି ଚାରି ଭାଷାରେ ସଙ୍କଳିତ ପ୍ରସିଦ୍ଧ ଅଭିଧାନ ଗ୍ରନ୍ଥମାନ ଏବଂ ଆନୁଷଙ୍ଗିକ ଅନ୍ୟାନ୍ୟ ସହାୟକ ଗ୍ରନ୍ଥ ତଥା ପ୍ରାଚୀନ ଓ ଆଧୁନିକ କାବ୍ୟ, କବିତା, ଛାନ୍ଦ, ସଙ୍ଗୀତ, ଚମ୍ପୂ, ଉପନ୍ୟାସ, ନାଟକାଦି ସଂଗ୍ରହ କରିବାରେ ପାଞ୍ଚ ବର୍ଷ ବିତିଗଲା । ଏହିମତେ ସର୍ବବିଧ ଔପାଦାନିକ ପ୍ରହରଣରେ ସଜ୍ଜିତ ହୋଇ ୧୯୧୮ ମସିହାଠାରୁ ସେ ଭୋକଶୋଷ ଭୁଲି, ବକଧ୍ୟାନୀ ଯୋଗୀପ୍ରାୟ ପ୍ରତ୍ୟହ ଅଠରଘଣ୍ଟିଆ ଏକାସନରେ ବସି ଅଭିଧାନ-ଲେଖାରେ ନିମଗ୍ନ ରହିଲେ । ତାଙ୍କର ଏହି ଏକକ ପ୍ରଚେଷ୍ଟାର ଏକାଗ୍ର କୃଚ୍ଛ୍ରସାଧନା ପୂର୍ଣ୍ଣତାପ୍ରାପ୍ତ ହେବାକୁ ଦୀର୍ଘ ଏଗାର ବର୍ଷ ଲାଗିଗଲା । ସମ୍ଭବତଃ ୧୯୨୮ ମସିହା ଫଗୁ ପୂର୍ଣ୍ଣିମାର ଶୁଭ ପ୍ରଭାତରେ ପୂର୍ଣ୍ଣକାମ ପ୍ରହରାଜେ ନିମନ୍ତ୍ରେ ଉଡ଼ିଷ୍ଟ ସତ୍ୟବାଦୀ ପ୍ରେସ୍‌କୁ ଯାଇ ପ୍ରିୟକାମୀ ବନ୍ଧୁ 'ସମାଜ' ସମ୍ପାଦକ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କୁ ଉକ୍ତ ଅଭିଧାନର ସମସ୍ତ ପାଣ୍ଡୁଲିପି ଖଣ୍ଡ (volume) ଉପରେ ଥରେ ଦୃଷ୍ଟିପକାଇବା ଲାଗି ସନିର୍ବନ୍ଧ ଅନୁରୋଧ କଲେ । ଗୋପବନ୍ଧୁବାବୁ ହର୍ଷୋତ୍‌ଫୁଲ୍ଲ ଚିତ୍ତରେ ପ୍ରହରାଜଙ୍କ ସହିତ ନିକଟବର୍ତ୍ତୀ ଭାଷାକୋଷ କାର୍ଯ୍ୟାଳୟକୁ ଗଲେ ଏବଂ ରେଖାକାରରେ ସମାନ୍ୟସ୍ତ ରକ୍ଷିତ 'ଅ'ରୁ 'ହ' ପର୍ଯ୍ୟନ୍ତ ବର୍ଣ୍ଣର ପାଣ୍ଡୁଲିପିଖଣ୍ଡମାନ ନିବିଷ୍ଟତାର ସହିତ ଗୋଟି ଗୋଟି ଦେଖି ବନ୍ଧୁ ଗୋପାଳଚନ୍ଦ୍ରଙ୍କୁ ଅବର୍ଣ୍ଣନୀୟ ଭାଷାରେ ଅଭିନନ୍ଦନ ଜଣାଇଲେ । ସେଠାରୁ ଫେରି ସାପ୍ତାହିକ 'ସମାଜ'ର ସମ୍ପାଦକୀୟ ଅଗ୍ରଲେଖରେ 'ପୂର୍ଣ୍ଣିମାରେ ପୂର୍ଣ୍ଣି' ଏହି ଶିରୋନାମାରେ ଜାତିର ଅମୂଲ୍ୟ ସମ୍ପଦ ସେହି ବିରାଟ ଅଭିଧାନକୁ ମୁଦ୍ରିତାକାରରେ ଲୋକଲୋଚନକୁ ଆଣିବାପାଇଁ ସର୍ବବିଧ ସାହାଯ୍ୟ କରିବାକୁ ବଦାନ୍ୟ ଦେଶବାସୀଙ୍କୁ ନିବେଦନ କରିଥିଲେ ।

ସାପ୍ତାହିକ 'ସମାଜ'ରେ ପ୍ରକାଶିତ ଏହି ଅଗ୍ରଲେଖ ଗୋପାଳଚନ୍ଦ୍ରଙ୍କ ପରିକଳ୍ପନାର ପରିସରକୁ ଅଧିକତର ପ୍ରସାରିତ କରିଦେବାରେ ଅପରିସୀମ ସହାୟତା କଲା । ତାହାର ସଦ୍ୟ ଫଳସ୍ୱରୂପ ଟିକିଟିର ରାଜା ରାଧାମୋହନ ରାଜେନ୍ଦ୍ର ଦେବ ଓ କଳାହାଣ୍ଡିର ମହାରାଜା ବ୍ରଜମୋହନ ଦେବଙ୍କଠାରୁ ପ୍ରାଥମିକ ସାହାଯ୍ୟରୂପେ କିଛି କିଛି ଅର୍ଥ ମିଳିଲା । ପରେ ପରେ ବିହାର-ଓଡ଼ିଶା ସରକାର ଚଉଦ ହଜାର ଟଙ୍କା ଅନୁଦାନର ଲିଖିତ ପ୍ରତିଶ୍ରୁତି ଦେଲେ । ଏହାଛଡ଼ା ପ୍ରାକୃତିକ ଉତ୍କଳର ପ୍ରାୟ ସର୍ବାଞ୍ଚଳରୁ ବିଶେଷତଃ ଗଡ଼ଜାତ ମାହାଲ, ବିଭିନ୍ନ ପ୍ରଦେଶଭୁକ୍ତ ବିଚ୍ଛିନ୍ନାଞ୍ଚଳ, ଗଞ୍ଜାମ ଜିଲା, ସମ୍ବଲପୁର ଜିଲା ପ୍ରଭୃତିର ବହୁ ସ୍ୱଦେଶ-ପ୍ରେମୀ ଓ ମାତୃଭାଷାପ୍ରେମୀଙ୍କଠାରୁ ପ୍ରାପ୍ତ ଅସଂଖ୍ୟ ମୂଲ୍ୟବାନ ଶବ୍ଦ (ଲୌକିକ ଓ ଆଞ୍ଚଳିକ) ଓ ସେଗୁଡ଼ିକର ଅର୍ଥ ପ୍ରତ୍ୟହ ଡାକରୁ ଅଜାଡ଼ି ହୋଇପଡ଼ିଲା । ଏହିସବୁ ନବଲବ୍ଧ ଶବ୍ଦକୁ ଯଥାସ୍ଥାନରେ ବର୍ଣ୍ଣାନୁକ୍ରମେ ସଂଯୋଜିତ କରିବାପାଇଁ ଓ ମୂଳ ପାଣ୍ଡୁଲିପିକୁ ଶୃଙ୍ଖଳିତ ପଦ୍ଧତିରେ ସଜାଡ଼ି ଯାଫି (fair) କରିବାପାଇଁ ଏକ କ୍ଷୁଦ୍ର ସହାୟକ ଗୋଷ୍ଠୀ ତୁରନ୍ତ ନିଯୁକ୍ତ କରିବା ଏକାନ୍ତ ଆବଶ୍ୟକ ହୋଇପଡ଼ିଲା । ସେହି ପ୍ରଥମ ପର୍ଯ୍ୟାୟରେ ଯେଉଁ ତିନିଜଣ ସହାୟକରୂପେ କାର୍ଯ୍ୟ କଲେ—ସେମାନେ ହେଉଛନ୍ତି ପଣ୍ଡିତ କୁଳମଣି ଦାଶ କାବ୍ୟତୀର୍ଥ, ପଣ୍ଡିତ ରାମଚନ୍ଦ୍ର ରଥ (ପୂର୍ବତନ ସତ୍ୟବାଦୀ ବନବିଦ୍ୟାଳୟର ଶିକ୍ଷକ) ଓ ଚନ୍ଦ୍ରଶେଖର ମିଶ୍ର, ବି. ଏଲ୍. । ପରବର୍ତ୍ତୀ ପର୍ଯ୍ୟାୟମାନଙ୍କରେ ସହାୟକଙ୍କ ସଂଖ୍ୟା କ୍ରମଶଃ ପ୍ରବର୍ଦ୍ଧିତ ହୋଇଥିଲା । ୧୯୩୦ ମସିହାରେ ମୟୂରଭଞ୍ଜର ମହାରାଜା ପ୍ରତାପଚନ୍ଦ୍ର ଭଞ୍ଜ ତଦୀୟ ଜ୍ୟେଷ୍ଠଭ୍ରାତା ପୂର୍ବବର୍ତ୍ତୀ ମହାରାଜା ସ୍ୱର୍ଗତ ପୂର୍ଣ୍ଣଚନ୍ଦ୍ର ଭଞ୍ଜଙ୍କ ସ୍ମୃତିରେ ମୁଦ୍ରଣ ସାହାଯ୍ୟରୂପେ ଏକକାଳୀନ ତେର ହଜାର ଟଙ୍କା ଦାନ କରିଥିଲେ । ତେଣୁ ଅଭିଧାନଟି 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ' ନାମରେ ଆଖ୍ୟାତ ହେଲା । ଏହି 'ଭାଷାକୋଷ'ର ପ୍ରଥମ ଖଣ୍ଡ ପ୍ରକାଶମୁଖୀ ହେଲାବେଳକୁ ଓଡ଼ିଶାର ପ୍ରାୟ ସମସ୍ତ ଦାନଶୌଣ୍ଡ ରାଜା, ମହାରାଜା, ଯୁବରାଜ, ବଡ଼ ବଡ଼ ସାମନ୍ତ ଓ ଜମିଦାର 'ଭାଷାକୋଷ' ପ୍ରତି ଆକୃଷ୍ଟ ହୋଇ ସହସ୍ର ସହସ୍ର ଟଙ୍କା ଦାନ କରିବାକୁ ଆଗ୍ରହ ପ୍ରକାଶ କରିଥିଲେ । ସେହିମାନଙ୍କ ଅକୁଣ୍ଠ ପୃଷ୍ଠ-ପୋଷକତାରେ ପରବର୍ତ୍ତୀ ଖଣ୍ଡମାନ ନିର୍ବାଧରେ ଅତି ସୁରୁଖୁରୁରେ ପ୍ରକାଶିତ ହେବାର ପଥ ସୁଗମ ହୋଇପାରିଥିଲା । ବର୍ଣ୍ଣିତ ପ୍ରଥମ ସହାୟକ ଗୋଷ୍ଠୀର ପଣ୍ଡିତ ରାମଚନ୍ଦ୍ର ରଥ ଯେପରି ବିଦୁଷ, ସଂସ୍କୃତଜ୍ଞ ଓ ଇଂରାଜୀଭାଷାଭିଜ୍ଞ, ସେହିପରି ମଧ୍ୟ ଆଚାର୍ଯ୍ୟ ହରିହରଙ୍କ ସଦୃଶ ଋଷିପ୍ରାଣ, ସ୍ଥିତଧୀ, ନିରହଂକାର, ନିର୍ବିକାର, ଶୁଦ୍ଧଚେତା । ଆଧିବ୍ୟାଧିରେ ସେ ପ୍ରାୟ କେବେ ଶଯ୍ୟାଗତ, ପୀଡ଼ିତ ବା ଅସୁସ୍ଥ ହୋଇନଥିଲେ । କିନ୍ତୁ ନିୟତିର ବିଚାର ଅତି ବିଚିତ୍ର । 'ଭାଷାକୋଷ' ଚତୁର୍ଥ ଖଣ୍ଡର ଛାପା ଶେଷ ହେବାର ଅବ୍ୟବହିତ ପୂର୍ବରୁ ୧୯୩୪ରେ ଅସ୍ୱାଭାବିକ ବମନବଶତଃ ଅତି ଅପ୍ରତ୍ୟାଶିତରୂପେ ସେ ସମସ୍ତ ପ୍ରିୟଜନଙ୍କୁ ଶୋକାକୁଳ କରି ଶେଷନିଃଶ୍ୱାସ ପକାଇଥିଲେ ।

କାର୍‌ରୁ ଓହ୍ଲାଇ ପ୍ରହରାଜେ ଆଗେ ଆଗେ ଚାଲିଲେ, ତାଙ୍କ ପଛରେ ଗୁରୁଦେବ,

ଶେଷରେ ମୁଁ । ଭାଷାକୋଷ ଅଫିସ୍ କକ୍ଷରେ ପଶି ଦିନହେଁ ଗାଳିଚାସନରେ ବସିଗଲୁଁ । ସେତେବେଳକୁ ସହାୟକମାନେ ନିଜ ନିଜ କର୍ମ ଶେଷ କରି କକ୍ଷରୁ ନିଷ୍କ୍ରାନ୍ତ ହୋଇସାରି-ଥିଲେ । ପ୍ରହରାଜ ମହାଶୟ ମତେ ଡାକିଆଣିବାର କାରଣ ବଖ୍ୟାନ କରିବାକୁ ଲାଗିଲେ, "ରାମ ଥିଲା ଭାଷାକୋଷ ସଙ୍କଳନରେ ମୋର ପରମ ସହାୟକ । ସେ ସବୁରି ମମତା କାଟିଦେଇ ସେ-ପୁରକୁ ଚାଲିଗଲା ଦିନୁଁ ମୋ ଡାହାଣ ହାତ ଛିଡ଼ିଯାଇଛି କହିଲେ ଚଳେ । ରାମ ମୁଦ୍ରଣୀୟ ପାଣ୍ଡୁଲିପିକୁ ସର୍ବଶେଷ ସ୍ତରରେ ତନ୍ନ ତନ୍ନ ଯାଞ୍ଚ କରି ସମସ୍ତଙ୍କ ଆଖିରୁ ଖସି ଯେଉଁ କେତେକ ଭ୍ରମପ୍ରମାଦ ରହିଯାଇଥାଏ ସେସବୁକୁ ପଗଡ଼ ଦୋରସ୍ତ କରିଦେଉଥିଲା, ଯାହା ଫଳରେ ପ୍ରେସ୍‌କୁ ପଠାଯିବା କପିମାନ ନିଷ୍କଳଙ୍କ ହୋଇପାରୁଥିଲା ଏବଂ 'ମୁଁ' ଶୁଦ୍ଧତା ସମ୍ପର୍କରେ ନିଶ୍ଚିତ ଓ ନିଶ୍ଚିନ୍ତ ରହିପାରୁଥିଲି । ଏବେ ମୋର ଚିନ୍ତା-ନଈ କୂଳ ଲଙ୍ଘି ଯାଇଛି—ରାମର କାମ କିଏ କରିବ ? ତା'ପରି ନିଅତଦାର ବିକଳ୍ପ ଜଣେ କାହୁଁ ମିଳିବ ? କୁଳମଣି ପଣ୍ଡିତଙ୍କ ସହିତ ଘଣ୍ଟା ଘଣ୍ଟା ପରାମର୍ଶ କଲି । ଶେଷକୁ ଦୁହେଁ ସ୍ଥିର କଲୁଁ ଯେ, ଏକା ତୋ'ଛଡ଼ା ଗମ୍ଭୀରଜ୍ଞାନସାପେକ୍ଷ ଏ ଦୁରୂହ କାର୍ଯ୍ୟ ସୁଷ୍ଠୁ-ରୂପେ ନିଷ୍ପାଦନ କରିବାକୁ ଆଉ କେହି ଶକ୍ୟ କି ଅର୍ହ ହେବେ ନାହିଁ । ଏଣୁ ସଙ୍କଟରୁ ତୁ ମତେ ଉଦ୍ଧାର କର୍ ବାବା !"

ଏଡ଼େ ଗୁରୁଦାୟିତ୍ୱର ଜଞ୍ଜାଳିଆ ବୋଝ ମୁଣ୍ଡ ଉପରକୁ ବରଣ କରି ଆଣିବାକୁ ମୋର ସାହସ ଅଣ୍ଟୁ ନଥାଏ, ଇଚ୍ଛା ମଧ୍ୟ ପଛଉଥାଏ; କିନ୍ତୁ ଗୁରୁଦେବଙ୍କ ଆଶୀର୍ବଚନ ଦେଲା ମତେ ସିଂହର ସାହସ, "ଏ କାମପାଇଁ ପ୍ରକୃତ ଯୋଗ୍ୟତା ଓ ବୈଷୟିକ ଭୂୟୋଦର୍ଶିତା ଏକାଧାରରେ ତୋ ବ୍ୟତୀତ ଆଉ କାହାରି ଥିବାର ମୋ ଆଖିକି ଏପର୍ଯ୍ୟନ୍ତ ଦେଖାଯାଇ ନାହିଁ । ତୋର ଡରିବାର ଆଦୌ କିଛି କାରଣ ନାହିଁ । ମନେରଖ, ଏ ବୋଝ ସମ୍ଭାଳିବାକୁ ଏକମାତ୍ର ସାମରଥା ତୁଇ ।"

ପଶ୍ଚାତ୍ପଦତା ଓ ଭୀରୁତାର ଖୋଳପାକୁ ଫିଙ୍ଗି 'ଗୁରୁର୍ବ୍ରହ୍ମା ଗୁରୁର୍ବିଷ୍ଣୁଃ ଗୁରୁର୍ଦ୍ଦେବ ମହେଶ୍ୱରଃ' ମହାବାକ୍ୟକୁ ମନେ ମନେ ଧ୍ୟାୟି ଗୁରୁଦେବଙ୍କ ପାଦଧୂଳି ମସ୍ତକରେ ମାଖି ପ୍ରହରାଜଙ୍କ ପ୍ରସ୍ତାବରେ 'ହଁ' ଭରିଲି । ପରଦିନଠାରୁ ଭାଷାକୋଷ ଆଶ୍ରମରେ ପଣ୍ଡିତ ରାମଚନ୍ଦ୍ର ରଥଙ୍କ ତିରୋଧାନରେ ଖାଲି ପଡ଼ିଥିବା ସ୍ଥାନରେ କାର୍ଯ୍ୟାରମ୍ଭ କଲି । କିଛିଦିନ ପରେ ଏହି ଗୁରୁ ଦାୟିତ୍ୱ ସହିତ ପ୍ରହରାଜେ ଆଉ ଏକ ବିଷମ ଦାୟିତ୍ୱ ଯୋଡ଼ିଦେଲେ—ତାହା ହେଉଛି 'ଶ ଷ ସ' ଆଦ୍ୟରେ ଥିବା ସଂସ୍କୃତ ଶବ୍ଦମାନଙ୍କରୁ ଯେଉଁ ତଦ୍ଭବ (ଅପଭ୍ରଷ୍ଟ) ଓଡ଼ିଆ ଶବ୍ଦମାନ ଗଢ଼ାଯାଇଛି ସେଗୁଡ଼ିକର ଆଦ୍ୟ ବର୍ଣ୍ଣ ନିର୍ଣ୍ଣୟନ (ଉଦାହରଣସ୍ୱରୂପ, ସଂସ୍କୃତ 'ଶକଟ' ଶବ୍ଦରୁ ଯେଉଁ ଓଡ଼ିଆ ଶବ୍ଦ ଉଦ୍ଭୂତ, ତାହାର ପ୍ରଥମ ବର୍ଣ୍ଣ ନିଶ୍ଚୟ 'ଶ' ହେବ ଓ ସେ ଶବ୍ଦଟିର ରୂପ ହେବ 'ଶଗଡ଼' । ଏହିପରି ସଂସ୍କୃତ 'ସ୍ନୁହି' ଶବ୍ଦରୁ ଜାତ ଓଡ଼ିଆ ଶବ୍ଦ 'ଶିଜୁ' ନହୋଇ କେବଳ 'ସିଜୁ' ହିଁ ହେବ) । ଏହି ଆନନ୍ଦଦାୟକ ଗବେଷଣାତ୍ମକ କାର୍ଯ୍ୟଟିର ଦାୟିତ୍ୱ ମୁଁ ନିରତିଶୟ ଆଗ୍ରହ ସହ ଗ୍ରହଣ

କରିଥିଲି । ଏହା 'ସାରସ୍ୱତ ପ୍ରେସ୍'ରେ ମୁଁ ଥିବା ବେଳର କଥା । ଭୋର୍-ଭୋର୍ ସ୍ନାନ ସାରି ସାମାନ୍ୟ ଜଳଖିଆ ଉଦରସ୍ଥ କରି ଭାଷାକୋଷ ଅଫିସ୍‌କୁ ଯାଏଁ ଏବଂ ସେଠାର ନିର୍ଦ୍ଧାରିତ କାମତକ କରିଦେଇ ପ୍ରେସ୍‌କୁ ଆସେଁ । 'ସାରସ୍ୱତ' ଛାଡ଼ି 'ନବଭାରତ'କୁ ଆସିବା ପରେ ମଧ୍ୟ ମୋର ସେଇ ରୁଟିନ୍ ଅବ୍ୟାହତ ରହିଲା ।

ଅନ୍ତରଙ୍ଗ ସାଥୀ ଭଗବାନବାବୁଙ୍କ ଦୀର୍ଘ ଅଦର୍ଶନ ଓ ମେଳଚ୍ଛେଦର ତୁଷାନଳ ବୁକୁ-ପଞ୍ଜରା ତଳେ ଏପର୍ଯ୍ୟନ୍ତ ଚରି ବୁଲୁଥାଏ । ପ୍ରାୟ ତିନି ଚାରି ମାସ ପରେ ଭାଷାକୋଷ କାର୍ଯ୍ୟାଳୟରେ ମୋର ଆସ୍ଥାନ ଦୃଢ଼ୀଭୂତ ହୋଇଯା'ନ୍ତେ ପ୍ରହରାଜଙ୍କର ବିଶେଷ ଆସ୍ଥା-ଭାଜନ ହୋଇଉଠିଲି ମୁଁ । ବିଶ୍ୱସ୍ତ ପରାମର୍ଶଦାତା ପଣ୍ଡିତ କୁଳମଣି ଦାଶଙ୍କ ସହିତ ସେ ନିଭୃତରେ ପରାମର୍ଶ କଲାବେଳେ ଏଣିକି ମତେ ସେଠାକୁ ଯିବାପାଇଁ ଡକରା ଆସିଲା । ମୋର ମତାମତକୁ ସେଠି ମହତ୍ତ୍ୱ ମଧ୍ୟ ମିଳିଲା । ଏହିପରି ଏକ ସୁଯୋଗର ଅବସରରେ ମୁଁ ଭଗବାନବାବୁଙ୍କୁ ଆଣିବାପାଇଁ ଗୋଟିଏ ଅଧିକା ସ୍ଥାନ ସୃଷ୍ଟି କରିବାକୁ ସୁପାରିସ କଲି ଏବଂ ସେଥିରେ କୃତକାର୍ଯ୍ୟ ବି ହେଲି । ସାର୍‌ଙ୍କ ବଳିଷ୍ଠ ସମର୍ଥନ ଯୋଗୁଁ ହିଁ ଏହା ଅବଲମ୍ୱେ ସମ୍ଭବପର ହୋଇପାରିଲା । ବନ୍ଧୁ ଆସି ସହାୟକ ଗୋଷ୍ଠୀରେ ନୂତନ ଆଗନ୍ତୁକରୂପେ ଯୋଗଦେଲେ । ପ୍ରତ୍ୟହ ପ୍ରାତଃରେ ଶ୍ରଦ୍ଧାନନ୍ଦ ଛକଠେଇଁ ଦୁଇ ବନ୍ଧୁ ଭେଟ ହେଲୁଁ, ସେହି କଣ୍ଟେସ୍ୱଲଠାରୁ କଥାଭାଷା ହୋଇ ହୋଇ ଭାଷାକୋଷ କାର୍ଯ୍ୟାଳୟକୁ ଗଲୁଁ ଏବଂ ପାଖକୁ ପାଖ ଲାଗି ଯେଝା କର୍ତ୍ତବ୍ୟ ସମ୍ପାଦନରେ ଲାଗିଗଲୁଁ । ଦୀର୍ଘକାଳର ବ୍ୟବଧାନ ପରେ ଏ ପୁନର୍ମିଳନ ମନ-ମାନସରେ ଯେଉଁ ଅପାର ଆନନ୍ଦର ପୂର୍ଣ୍ଣିମାଜୁଆର ଉଚ୍ଛୁଳାଇ ଦେଲା, ତାହା ଭାଷାରେ ପ୍ରକାଶ କରିହେବନାହିଁ ।

ସପ୍ତଖଣ୍ଡ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ'ର ମୁଦ୍ରଣକାର୍ଯ୍ୟ ପୂର୍ଣ୍ଣାଙ୍ଗତାପ୍ରାପ୍ତ ହେବା-ପର୍ଯ୍ୟନ୍ତ ମୁଁ ଭାଷାକୋଷ କାର୍ଯ୍ୟାଳୟ ସହିତ ଅନବଚ୍ଛିନ୍ନଭାବରେ ଜଡ଼ିତ ରହିଥିଲି । ତାହାପରେ ସମସ୍ତ ସହାୟକ କର୍ମୀଙ୍କୁ ବିଦାୟ ଦିଆଗଲା; କିନ୍ତୁ ମତେ ପୂର୍ବବତ୍ ଜଡ଼ିତ ରଖାଇବା ପ୍ରହରାଜଙ୍କ ମନୋଽଭିଳଷିତ ପ୍ରଚ୍ଛନ୍ନ ସିଦ୍ଧାନ୍ତରେ ହେଲା ଅନିବାର୍ଯ୍ୟ । ଯେଉଁ ସହସ୍ର ସହସ୍ର ଶବ୍ଦ ବିଳମ୍ୱରେ ହସ୍ତଗତ ହେବା ଫଳରେ 'ଭାଷାକୋଷ'ର ସାତ ଖଣ୍ଡ ମଧ୍ୟରେ ଅନ୍ତର୍ଭୁକ୍ତ ହୋଇପାରିନଥିଲା, ସେସବୁକୁ ଯଥାରୀତି ସଙ୍କଳନ କରି ଏକ 'ପରିଶିଷ୍ଟ' ଖଣ୍ଡରୂପେ ପ୍ରକାଶ କରିବାକୁ ସେ ମନେ ମନେ ସ୍ଥିର କରି ରଖିଥିଲେ । ଏବେ ସେହି କାର୍ଯ୍ୟରେ ପଣ୍ଡିତ କୁଳମଣି ଦାଶଙ୍କର ଓ ମୋର ସାମୟିକ ସାହାଯ୍ୟ ଲୋଡ଼ିବେ ବୋଲି ଆଗୁଆ ଚେତାବନୀ ଶୁଣାଇଦେଲେ ବିଦ୍ୱନ୍ମୁକୁଟମଣି ଗୋପାଳଚନ୍ଦ୍ର । ଏତଦ୍‌ବ୍ୟତୀତ 'ସଂକ୍ଷିପ୍ତ ଓଡ଼ିଆ ଭାଷାକୋଷ' ନାମରେ ଆଉ ଖଣ୍ଡିଏ ସହଜ-ବ୍ୟବହାର୍ଯ୍ୟ ମଧ୍ୟମାକାର ସ୍ୱତନ୍ତ୍ର ଅଭିଧାନ ଗ୍ରନ୍ଥ ସଙ୍କଳନ କରିବାର ସାମଗ୍ରିକ ଭାର ମୋ ଉପରେ ନ୍ୟସ୍ତ କରିଦେଲେ ସେ । ଯଥାସମ୍ଭବ ତତ୍ପରତାର ସହିତ ମୁଁ ତାହା ଆରମ୍ଭ କରିଦେଇଥିଲି ମୋ ବସାରେ ଏବଂ ପ୍ରତି ସାତଦିନର ଲେଖାତକ ସପ୍ତାହାନ୍ତ ରବିବାର ଦିନ ପ୍ରହରାଜଙ୍କ ହସ୍ତରେ ସମର୍ପି-ଦେଇ ଆସୁଥିଲି ତାଙ୍କ ବାସଭବନରେ । ୧୯୪୫ ମସିହା ପର୍ଯ୍ୟନ୍ତ କେବଳ ଅବସର

ବେଳାରେ ମୁଁ ସେହି ସଙ୍କଳନ କାର୍ଯ୍ୟରେ ନିବିଷ୍ଟ ରହିଥିଲି । ହାୟ, ଓଡ଼ିଶାର ଦୁର୍ଭାଗ୍ୟ, ୧୯୪୬ ମେ ୧୭ ତାରିଖ ସନ୍ଧ୍ୟାରେ ସେପର୍ଯ୍ୟନ୍ତ ବାଙ୍ମୟୀ ସରସ୍ୱତୀଙ୍କ ଆଜ୍ଞାଧୀନାରୂପେ ଖଟାଇଆସିଥିବା ଏହି ପ୍ରଚଣ୍ଡ ପ୍ରତିଭାଧର ଅପରାଜେୟ ସାହିତ୍ୟ-ମହାରଥୀଙ୍କର ଅତି ଅତର୍କିତଭାବରେ ଶୋଚନୀୟ ଦେହପାତ ଘଟିଲା ଦୁରାତ୍ମାଙ୍କ ସୁପରିକଳ୍ପିତ ଯୋଜନା-ଫଳରେ । ସେହି ସାରସ୍ୱତ କୋଣାର୍କ ସ୍ଥାପୟିତାଙ୍କ ଅସମାପ୍ତ 'ପରିଶିଷ୍ଟ' ସଙ୍କଳନ ଓ ମୋ'ଦ୍ୱାରା ଅର୍ଦ୍ଧସଂକଳିତ 'ସଂକ୍ଷିପ୍ତ ଓଡ଼ିଆ ଭାଷାକୋଷ'ର ପାଣ୍ଡୁଲେଖ ସବୁର ଅଷ୍ଥିର ଆଢ଼ୁଆଳରେ ରହିଯାଇ ଚିରଦିନପାଇଁ ହଜିଗଲା କି ବାଟମାରଣା ବା ହରଣଚାଲ ହୋଇଯାଇ କାହାର ନିଜସ୍ୱ ସମ୍ପତ୍ତିରେ ପରିଣତ ହେଲା, କିଏ କହିବ ?

## ୧୪ । ସରକାରୀ କର୍ମକ୍ଷେତ୍ର

### ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ—

ଶ୍ରୁତକୀର୍ତ୍ତି ପୁରୀ ଶ୍ରୀକ୍ଷେତ୍ରସ୍ଥ ଗଜପତି ରାଜବଂଶର ଶାଖାରୂପେ ପ୍ରସିଦ୍ଧ ପାରଳାଖେମଣ୍ଡିସ୍ଥ ଗଜପତି ରାଜବଂଶର ଐତିହ୍ୟ ଓ ଇତିହାସ ମଧ୍ୟ ଗୌରବୋଜ୍ଜ୍ୱଳ ଓ କୀର୍ତ୍ତିଭାସ୍ୱର । ସେହି ମହାନ୍ ରାଜବଂଶର ମୁକୁଟମଣି ଗଜପତିକୁଳମକୁଟ ମହାରାଜା କୃଷ୍ଣଚନ୍ଦ୍ର ନାରାୟଣ ଦେବଙ୍କ ନାମ ଉତ୍କଳ-ଇତିହାସ-ପୃଷ୍ଠାରେ ଚିର ଜାଜ୍ୱଲ୍ୟମାନ ରହିବ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ପରିପୂରୟିତାରୂପେ ତାଙ୍କ ଯଶସ୍କର ଭୂମିକା ପଟାନ୍ତରବର୍ଜିତ, ଯାହା ଏ ଜାତି ପକ୍ଷରେ ଅପରିଶୋଧ୍ୟ ।

ଆଧୁନିକ ଓଡ଼ିଶା-ନିର୍ମାତା ଏହି ମହାଯଶା ମହାରାଜା ଗଜପତି କୃଷ୍ଣଚନ୍ଦ୍ର ନାରାୟଣ ଦେବଙ୍କ ଅତୁଳ ଜନ୍ମଭୂମି-ମମତା ଓ ଉତ୍କଳଜନନୀ-ସେବାର ଗୋଟିଏ ଭୁଲାତାରହିତ ଦେଶାତ୍ମବୋଧ ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖ କରିବାକୁ ଯାଉଛି, ଯାହା ମୋର ପ୍ରତ୍ୟକ୍ଷଦୃଷ୍ଟ । ମହାରାଜା କୃଷ୍ଣଚନ୍ଦ୍ରଦେବ ବ୍ରିଟିଶ୍ ପାର୍ଲିମେଣ୍ଟଦ୍ୱାରା ଲଣ୍ଡନରେ ବସାଯାଇଥିବା ଐତିହାସିକ 'ଗୋଲଟେବୁଲ ସମ୍ମେଳନ' (Round Table Conference)ର ଜଣେ ମାନାସ୍ପଦ ରାଜସଭ୍ୟରୂପେ ମନୋନୀତ ହୋଇଥାନ୍ତି । ମୁକ୍ତିସଂଗ୍ରାମରତ ପରାଧୀନ ଭାରତର ଭବିଷ୍ୟଭାଗ୍ୟ-ନିର୍ଣ୍ଣୟନ ସେହି ଦ୍ୱିପାକ୍ଷିକ ଆଲୋଚନା ସଭାର ମୂଳ ଉଦ୍ଦେଶ୍ୟ ଥିଲେହେଁ, ଅନ୍ୟ କେତେକ ବିଚାରସାପେକ୍ଷ ପ୍ରାଦେଶିକ ସମସ୍ୟାର ସମାଧାନ ସମ୍ପର୍କରେ ମଧ୍ୟ ସେଥିରେ ମୀମାଂସାମୂଳକ ଆଲୋଚନା ହେବାର କାର୍ଯ୍ୟକ୍ରମ ରହିଥିଲା । ରାଜସଭ୍ୟ ପାରଳା-ମହାରାଜା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନପାଇଁ ଚାଲୁ ରହିଥିବା ଓଡ଼ିଆମାନଙ୍କ ଐକ୍ୟବଦ୍ଧ ଜାତୀୟ ଆନ୍ଦୋଳନର ଆଶୁ ସମାଧାନ ସମ୍ପର୍କରେ ନ୍ୟାୟସଙ୍ଗତ ସ୍ୱପ

ପକାଇବାର ମୁଖ୍ୟ ଲକ୍ଷ୍ୟ ନେଇ ଉକ୍ତ ସମ୍ମେଳନର ଅଧିବେଶନମାନଙ୍କରେ ବରାବର ଯୋଗ ଦେଉଥିଲେ । ପ୍ରତିଥର ସେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ବୈଧତାମୂଳକ ଯୁକ୍ତିଯୁକ୍ତ ଦୃଢ଼ ଦାବିକୁ ଅତି ଦକ୍ଷତାର ସହିତ ଉପସ୍ଥାପନ କରୁଥାନ୍ତି ଏବଂ ବ୍ରିଟିଶ୍ ପାର୍ଲିମେଣ୍ଟ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ବିଧିବଦ୍ଧ ଘୋଷଣାନାମା ପ୍ରକାଶ କରିବାରେ ଅଯଥା ଆଉ କାଳକ୍ଷେପ ନକରିବାକୁ ନିବେଦନ କରୁଥାନ୍ତି ।

ଗୋଲଟେବୁଲ ସମ୍ମେଳନର ଶେଷ ପର୍ଯ୍ୟାୟ ଅଧିବେଶନରେ ଯୋଗଦାନପାଇଁ ଗଜପତି କୃଷ୍ଣଚନ୍ଦ୍ର ନାରାୟଣ ଦେବ ଶେଷଥର ଲଣ୍ଡନ ଯାତ୍ରା କଲବେଳେ ପୂର୍ଣ୍ଣ ରାଜକୀୟ ଆଡ଼ମ୍ବର ଓ ସମାରୋହରେ ସମସ୍ତ ଦଳବଳ (Durbar staff) ରାଜସିଂହାସନ, ରାଜଦଣ୍ଡ, ରାଜମୁକୁଟ, ରାଜପରିଚ୍ଛଦ, ରାଜଭୂଷଣ, ରାଜଛତ୍ର-ଆଲଟ-ଚାମର ଆଦି ସଙ୍ଗରେ ନେଇ ମହାରାଜାଙ୍କର ସହଯାତ୍ରୀ ହୋଇଥିଲେ । ପାରଳାଧୀଶଙ୍କର କେତେକ ପୁରାତନ ଇଂଲଣ୍ଡୀୟ ବନ୍ଧୁ ତଥା ପରିଚିତ ଉଚ୍ଚ ପଦାସୀନ ପ୍ରଭାବଶାଳୀ ବ୍ୟକ୍ତି, ରାଜନୀତିକ ନେତା, ପାର୍ଲିମେଣ୍ଟ୍ ସଭ୍ୟ, ମନ୍ତ୍ରିମଣ୍ଡଳ ସଦସ୍ୟଙ୍କ ସନିର୍ବନ୍ଧ ଅନୁରୋଧମତେ ଏଥରର ଲଣ୍ଡନଯାତ୍ରା ଏପ୍ରକାର ବହ୍ୱାଡ଼ମ୍ବର ଜୈତ୍ରଯାତ୍ରାର ରୂପ ଧାରଣ କରିଥିଲା ।

'ଉତ୍କଳ ସମ୍ମିଳନୀ'ର ନେତୃସ୍ଥାନୀୟ ବ୍ୟକ୍ତିଗଣ ଓ ବିଭିନ୍ନ ପ୍ରାନ୍ତର କର୍ମୀମାନେ ସେତେବେଳେ ଅତିଶୟ ସକ୍ରିୟ ହୋଇଉଠିଥାନ୍ତି । 'ସମ୍ମିଳନୀ'ର ସୁଯୋଗ୍ୟ ସମ୍ପାଦକ ଓ ସଞ୍ଚାଳକ ଥାନ୍ତି ଲଟପଡ଼ା ମେମ୍ବର ପ୍ରସିଦ୍ଧ ଜମିଦାର ଉତ୍କଳଗୌରବ ମଧୁସୂଦନ ଦାସଙ୍କ ପଟ୍ଟଶିଷ୍ୟ ବ୍ରଜସୁନ୍ଦର ଦାସ । ତାଙ୍କର କଟକରେ ଯୋଡ଼ିଏ ବଡ଼ ବଡ଼ ବାସଭବନ ଥିଲା— ଗୋଟିଏ ହେଉଛି ବାଡ଼-ବଗିଚାସମନ୍ୱିତ ପୈତୃକ ପୁରୁଣା କୋଠା, ଯାଉଁଳିଆପଟି ଗଳିର ସଂକୀର୍ଣ୍ଣ ରାସ୍ତା ଧାରକୁ ଲାଗି ଏକରେରୁ ଅଧିକ ପରିମିତ ଜମି ମଧ୍ୟରେ ତାହାର ଅବସ୍ଥିତି; ଦ୍ୱିତୀୟଟି ତାଙ୍କ ସ୍ୱୋପାର୍ଜିତ ଧନରେ କ୍ରୀତ ଜମିରେ ତାଙ୍କ ନିଜ ନକ୍ସାନୁଯାୟୀ ନିର୍ମିତ ଦ୍ୱିତଳ ପ୍ରାସାଦ, ନର୍ମାଲ୍‌ସ୍କୁଲ ଗଳିର ସଦର ରାସ୍ତା ଉପରେ ଏକ ସୁପ୍ରଶସ୍ତ ଭୂପରିସରରେ ଅବସ୍ଥିତ । ଏହି ସୁଦୃଶ୍ୟ ଭବନର ସମ୍ମୁଖ ଭାଗରେ ଥିବା ବିସ୍ତୃତ ଭୂପୃଷ୍ଠଟି ନବତୃଣ-ଆସ୍ତରଣରେ ଶ୍ୟାମଳିମାରେ ସଦାହସନ୍ତ । ଯେଉଁ ସମୟର କଥା ଏଠାରେ କୁହାଯାଉଛି (ସମ୍ଭବତଃ ୧୯୩୫ ମସିହା), ସେତେବେଳକୁ ଜମିଦାର ବ୍ରଜସୁନ୍ଦରବାବୁଙ୍କ ପୂର୍ଣ୍ଣ ପରିବାର (ନୌକରପରିକର ଓ ପୋଷ୍ୟପରିବାର ସମେତ) ଯାଉଁଳିଆପଟି ବାସଗୃହରୁ ଚାଲିଆସି ଏହି ନବନିର୍ମିତ ରମଣୀୟ ପ୍ରାସାଦରେ ଅବସ୍ଥାନ କରୁଥିଲେ । ସଦର ଫାଟକର ଦକ୍ଷିଣ ପାର୍ଶ୍ୱରେ ବ୍ରଜସୁନ୍ଦରବାବୁ ତୋଳାଇଥାନ୍ତି ଏକ ନାତିବୃହତ୍ ଦ୍ୱିତଳଭବନ । ତଳ-ଉପର ହୋଇ ତହିଁରେ ଥାଏ ଦୁଇଟିମାତ୍ର ଖୁବ୍ ବଡ଼ ବଡ଼ ପ୍ରକୋଷ୍ଠ—ତଳ ପ୍ରକୋଷ୍ଠଟି 'ଉତ୍କଳ ସମ୍ମିଳନୀ'ର ଅଫିସ୍‌କକ୍ଷ ଏବଂ ଉପର ପ୍ରକୋଷ୍ଠଟି 'ସମ୍ମିଳନୀ'ର ସମ୍ମିଳନକକ୍ଷ, ଯହିଁରେ ଉତ୍କଳ ପ୍ରଦେଶ ଗଠନ ସଂକ୍ରାନ୍ତ ଯାବତୀୟ ଆଲୋଚନା ହୁଏ ଓ କାର୍ଯ୍ୟନିର୍ବାହିକା ସଭାର ଅଧିବେଶନମାନ ବସେ । ଏହାଛଡ଼ା ଯେଉଁ ଆଗନ୍ତୁକମାନେ ସମୟସମୟରେ ଆସନ୍ତି, ଏହି ଉପରତାଲା କକ୍ଷଟି ସେମାନଙ୍କର ହୁଏ ରହଣିସ୍ଥଳ ।

ଦେଶାତ୍ମବୋଧୋଦ୍‌ବୁଦ୍ଧ ଗଜପତି ମହାରାଜା କୃଷ୍ଣଚନ୍ଦ୍ର ନାରାୟଣ ଦେବ ବିଲାତକୁ ପ୍ରଥମ ବିଜୟ-ଅଭିଯାନ କଲାବେଳେ କଟକରେ ଦିନଟିଏ ଅଟକିଥିଲେ । ସେହିଦିନ ତାଙ୍କ ସ୍ୱାଗତ ସମ୍ବର୍ଦ୍ଧନା କରିବା ଉଦ୍ଦେଶ୍ୟରେ କଟକର ବିଶିଷ୍ଟ ବ୍ୟକ୍ତିମାନଙ୍କ ଗୋଷ୍ଠୀ ପକ୍ଷରୁ ବ୍ରଜସୁନ୍ଦରବାବୁଙ୍କ ଘାସାଚ୍ଛାଦିତ ମନୋରମ ପ୍ରାଙ୍ଗଣ-ପରିସରରେ ଏକ ଗୁରୁଗମ୍ଭୀର ସମାବେଶର ଆୟୋଜନ କରାଯାଇଥିଲା । ସେହି ସମ୍ବର୍ଦ୍ଧନା ସଭାରେ ମହାରାଜାଙ୍କର ଏଥରକର ଶୁଭଙ୍କର ଲଣ୍ଡନଯାତ୍ରା ସାଫଲ୍ୟଶ୍ରୀମଣ୍ଡିତ ହେଉ, ସେ ଓଡ଼ିଆ ଜାତିର ଚିରାକାଂକ୍ଷିତ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ନେଇ ବିଜୟବାହୁଡ଼ା କରନ୍ତୁ, ଏହି କାମନା କରି ଓଡ଼ିଶାବାସୀଙ୍କ ପକ୍ଷରୁ ଭଗବାନଙ୍କୁ ପ୍ରାର୍ଥନା କରାଯାଇଥିଲା ।

ସଭା ସାଙ୍ଗ ହେଲା ପରେ ପାରଳାମହାରାଜାଙ୍କୁ 'ସମ୍ମିଳନୀ ଭବନ'ର ଉପରତାଲା କକ୍ଷକୁ ପାଛୋଟି ନିଆଯାଇଥିଲା । ସେଠାରେ ସେ ଉତ୍କଳ ସମ୍ମିଳନୀର ସଭାପତି, ସମ୍ପାଦକ ଓ ବିଭିନ୍ନ କର୍ମକର୍ତ୍ତା ପ୍ରଭୃତିଙ୍କ ସହିତ କିଛି ସମୟ ଆଳାପ-ଆଲୋଚନା କରିଥିଲେ । ସେତେବେଳେ ସ୍ୱାମୀ ବିଚିତ୍ରାନନ୍ଦ ଦାସ, ବ୍ରଜସୁନ୍ଦର ଦାସ, ଲକ୍ଷ୍ମୀଧର ମହାନ୍ତି, ଗୋପାଳଚନ୍ଦ୍ର ପ୍ରହରାଜ, ଭିକାରିଚରଣ ପଟ୍ଟନାୟକ, ଚିନ୍ତାମଣି ଆଚାର୍ଯ୍ୟ, ଲକ୍ଷ୍ମୀନାରାୟଣ ସାହୁ, ସୋମନାଥ ମହାପାତ୍ର ଇତ୍ୟାଦି ବିଶିଷ୍ଟ ବ୍ୟକ୍ତିଙ୍କ ମେଳରେ ମୁଁ ମଧ୍ୟ ଉପସ୍ଥିତ ଥିଲି । 'ସମ୍ମିଳନୀ'ର ପ୍ରଚାର ସବ୍-କମିଟିର ମୁଁ ଜଣେ ସଭ୍ୟ ଥିବାରୁ ପ୍ରହରାଜ ମହୋଦୟ ମତେ ସେଠାକୁ ସଙ୍ଗରେ ନେଇଯାଇଥିଲେ ।

ମହାରାଜା ଉପସ୍ଥିତ ବନ୍ଧୁମାନଙ୍କୁ ଲଣ୍ଡନରେ ଆୟାସସାଧ୍ୟ ନିଜ କାର୍ଯ୍ୟଯୋଜନାର ସଂକ୍ଷିପ୍ତ ସୂଚନା ଦେଉଥିବାବେଳେ ତାଙ୍କଠାରୁ ତକରା ପାଇ ରାଜବାଟୀ-ଅଧୀକ୍ଷକ (Palace Superintendent) ଶ୍ରୀମୁଖରେ ହାଜର ହେଲେ । ଲଣ୍ଡନଯାତ୍ରାରେ ସେ ମହାରାଜାଙ୍କ ତହବିଲରକ୍ଷକ ତଥା ହିସାବରକ୍ଷକରୂପେ ରାଜକୀୟ ଦଳବଳର ଅନ୍ତର୍ଭୁକ୍ତ ଥିଲେ । ମହାରାଜା ସେହି ତହବିଲଦାରଙ୍କୁ ପଚାରି ବୁଝିଲେ ଯେ, ବିଲାତ ଯିବାପାଇଁ ସଙ୍ଗରେ ଆସିଥିବା ମୋଟ ସମ୍ବଳର ପରିମାଣ ପାଞ୍ଚ ଲକ୍ଷ ଟଙ୍କାରୁ କିଞ୍ଚିନ୍ମାତ୍ର ଅଧିକ । ଜମା ପାଞ୍ଚଲକ୍ଷ ! ମହାରାଜାଙ୍କ ବଡ଼ ଆଖିକି ଏହା ପାଇଲା ନାହିଁ—କମ୍ ଦିଶିଲା । ମନଉଣାରେ ସେ ବ୍ରଜସୁନ୍ଦରବାବୁଙ୍କୁ କହିଲେ, "ବିଦେଶକୁ ଗଲେ ପରିସ୍ଥିତିର ଦାବି ଅନୁସାରେ ଖର୍ଚ୍ଚ କରିବାକୁ ପଡ଼େ । ପରିସ୍ଥିତିର ଚାହିଦାମତେ ପର୍ଯ୍ୟାପ୍ତ ଧନ ପାଖରେ ନଥିଲେ ବିଦେଶରେ ହଟହଟା ହେବାକୁ ହୁଏ—ନିଜର ସୀମିତ ସମ୍ବଳକୁ ଚାହିଁ କାଣ୍ଡିକୁଣ୍ଡି ଖର୍ଚ୍ଚ କଲେ ବାଞ୍ଛିତ ଫଳଲାଭର ଆଶା ବ୍ୟାହତ ହୋଇଥାଏ । ମୁଁ ବିରାଟ ଆଶା ନେଇ ଗୋଲଟେବୁଲ ବୈଠକରେ ଯୋଗଦେବାକୁ ଯାଉଛି । ଏଥର ଲଣ୍ଡନରେ ଅପରିମିତ ବ୍ୟୟର ପ୍ରୟୋଜନ ଅଛି । ତହବିଲରେ ଥିବା ଏତିକିମାତ୍ର ଟଙ୍କାରେ ଲକ୍ଷ୍ୟ ହାସଲ ହୋଇପାରିବ ବୋଲି ମୋର ବିଶ୍ୱାସ ଆସୁ ନାହିଁ । ଅନ୍ତତଃ ଆଉ ଲକ୍ଷେ ଟଙ୍କା ତୁମେ ମୋପାଇଁ ଯୋଗାଡ଼ କରିଦିଅ । ସେତିକି ପାଖରେ ଥିଲେ ଅର୍ଥାଭାବର ସଂଶୟ ରହିବ

ନାହିଁ—ଲମ୍ବ କୁଣ୍ଠ ସବୁଥିକ ପାଏ ପଡ଼ୁ ! ଏଠି ବଡ଼ ମହାଜନ କିଏ ଅଛନ୍ତି, ତୁରନ୍ତ ଡକାଅ; ମୁଁ ହାଣ୍ଡ୍‌ନୋଟ୍‌ରେ ସହି କରି ଟଙ୍କା ନେବାକୁ ପ୍ରସ୍ତୁତ ହୋଇ ରହିଛି । ମୋ କଡ଼ା ବ୍ୟବସ୍ଥାନୁଯାୟୀ ରାଜସ୍ୱ ଆଦାୟ ତନାଘନା ଚାଲିଛି । ତେଣୁ ମୁଁ ବିଲାତରୁ ଫେରିବା-ମାତ୍ରେ ହିଁ ଏହି ଋଣ ସୁଧସହି ପରିଶୋଧ ହୋଇଯିବ ।”

ବ୍ରଜସୁନ୍ଦରବାବୁ ଉତ୍ତରରେ କହିଲେ, “ବଡ଼ ମହାଜନ ତ ଅଛନ୍ତି, ଆସିବେ; କିନ୍ତୁ ମହିମା କାହିଁକି ହାଣ୍ଡ୍‌ନୋଟ୍‌ରେ ସ୍ୱାକ୍ଷର କରିବେ ? ଏହାଦ୍ୱାରା ରାଜସମ୍ମାନରେ ହାନିସ୍ପୃହ ଆଞ୍ଚ ଆସିବ । ଏଣୁ ମୁଁ ବର୍ତ୍ତମାନ ମହାଜନଠାରୁ ହାଣ୍ଡ୍‌ନୋଟ୍‌ରେ ଏକ ଲକ୍ଷ ଟଙ୍କା ଆଣି ତହସିଲଦାରଙ୍କ ହସ୍ତରେ ଅର୍ପଣ କରିବି ।”

ମହାମନା ମହାରାଜା ବ୍ରଜସୁନ୍ଦରବାବୁଙ୍କୁ ବୁଝାଇଦେଲେ, “ପାରଳାଖେମୁଣ୍ଡିଧିପତିଧୀଶ ଗଜପତି ମହାରାଜା କୃଷ୍ଣଚନ୍ଦ୍ର ନାରାୟଣ ଦେବ ରୂପେ ମୁଁ ଋଣପତ୍ରରେ ଦସ୍ତଖତ କରିବାକୁ ଯାଉନାହିଁ । ଛିନ୍ନମସ୍ତା ଉତ୍କଳମାତାଙ୍କର କୋଟିଏ ସନ୍ତାନ ମଧ୍ୟରୁ ଗୋଟିଏ ଅବୋଧ ସନ୍ତାନରୂପେ ମୁଁ ଏହି ଋଣ କରିବାକୁ ମନ ବଳାଇଛି । ଏହା ମୋର ଏକ ଅବଶ୍ୟ କରଣୀୟ ଜାତୀୟ କର୍ତ୍ତବ୍ୟ ନୁହେଁ କି ? ତୁମେ ଏ ଅନାବଶ୍ୟକ ପ୍ରସଙ୍ଗ ଉତ୍ଥାପନରୁ ପ୍ରତିନିବୃତ୍ତ ହୋଇ ଅତିଶୀଘ୍ର ମହାଜନଙ୍କୁ ଟଙ୍କାସହି ଆସିବାକୁ ଖବରଦିଅ ।”

ସେ ସମୟରେ କୁସୀଦଜୀବୀ ବଡ଼ ମହାଜନ ହିସାବରେ ସର୍ବଶ୍ରେଷ୍ଠ ଧନିକ ଥିଲେ ଆକାଶୀ ସୋମଶେଖରମ୍, ଜାତିରେ ତେଲେଙ୍ଗା । ରାତିଅଧରେ ତାଙ୍କ ଦ୍ୱାରରେ ପହଞ୍ଚିଲେ ବି ସେ ଲକ୍ଷାଧିକ ଟଙ୍କା ଏକାମୁଠିକେ ଗଣି ଦେଇପାରିବେ ହାଣ୍ଡ୍‌ନୋଟ୍ ଲେଖିରଖି । ଜମିଦାର ବ୍ରଜସୁନ୍ଦରବାବୁ ମହାଜନ ଆକାଶୀ ସୋମଶେଖରମ୍‌ଙ୍କୁ ଫୋନ୍‌ରେ ହକାରିଲେ ତୁରନ୍ତ ଟଙ୍କା ନେଇ ଆସିବାକୁ ।

ମହାନୁଭବ ମହାରାଜାଙ୍କର ଏହି ଦାର୍ଶନିକ ବ୍ୟାଖ୍ୟାନ ଓ ତ୍ୟାଗପୂତ ଜାତିପ୍ରେମର ମହାନ୍ ଦୃଷ୍ଟାନ୍ତ ଦେଖି ଉପସ୍ଥିତ ବନ୍ଧୁବର୍ଗ ତଟସ୍ଥ ହୋଇଗଲେ । କ୍ଷଣବିଳମ୍ବ ନ କରି କୁସୀଦବ୍ୟବସାୟୀ ଆକାଶୀ ଲକ୍ଷେ ଟଙ୍କା ଓ ଲିଖିତ ହାଣ୍ଡ୍‌ନୋଟ୍ ସହ ‘ସମ୍ମିଳନୀ ଭବନ’ରେ ଆସି ଉପଗତ ହୋଇଗଲେ । ତହସିଲଦାର ଏକ ଲକ୍ଷ ଟଙ୍କା ଗଣିନେଲେ । ମହାରାଜା ଋଣପତ୍ରରେ ‘କୃଷ୍ଣଚନ୍ଦ୍ର ନାରାୟଣଦେବ’ ନାମରେ ସ୍ୱାକ୍ଷର ଦେଲେ । ବାତ୍ସଲ୍ୟମୟୀ ଜନ୍ମଭୂମି ମା’ ଉତ୍କଳପ୍ରସାଦରୁ ଖାତକ ହୋଇପାରିଥିବାରୁ ଅନନୁଭୂତ ଆନନ୍ଦ ଓ ଗର୍ବରେ ସେଦିନ ତାଙ୍କର ବକ୍ଷ ବିସ୍ଫାରିତ ହୋଇଯାଇଥିଲା ।

ପାରଳାଧୀଶ୍ୱର ଗଜପତି କୃଷ୍ଣଚନ୍ଦ୍ର ନାରାୟଣଦେବ ପୁରୀ-ହାବଡ଼ା ଏକ୍‌ସପ୍ରେସ୍‌ରେ ସଦଳବଳ କଲିକତା ଯାଇ ସେଠାରୁ ବିମାନଯୋଗେ ଲଣ୍ଡନକୁ ଆକାଶଯାତ୍ରା କରିଥିଲେ । ଲଣ୍ଡନ ବିମାନବନ୍ଦରରେ ତାଙ୍କ ଅବତରଣର ନିର୍ଦ୍ଦିଷ୍ଟ ସମୟ ସେଠା ଦୈନିକ ଖବର-କାଗଜମାନଙ୍କରେ ବଡ଼ ବଡ଼ ଅକ୍ଷରରେ ବିଘୋଷିତ ହୋଇସାରିଥିଲା । ଏହି ଉତ୍କଳୀୟ ମହାରାଜାଙ୍କୁ ଭାରତୀୟ ପରମ୍ପରାଗତ ରାଜବେଶରେ ବିମାନବନ୍ଦରରେ ଏକ ସୁଶୋଭନ

ସ୍ୱତନ୍ତ୍ର କକ୍ଷରେ ରାଜସମ୍ବର୍ଦ୍ଧନା ଦିଆଯିବ ବୋଲି ଉକ୍ତ ଦୈନିକଗୁଡ଼ିକରେ ମଧ୍ୟ ପ୍ରକାଶ ପାଇଥିଲା । ତେଣୁ ଲକ୍ଷ ଲକ୍ଷ ଲଣ୍ଡନବାସୀ ଓ ଉପକଣ୍ଠବାସୀ ରାଜଦର୍ଶନ ତଥା ରାଜ-ସମ୍ବର୍ଦ୍ଧନା ମହୋତ୍ସବ ଉପଭୋଗ ଆଶାରେ ସେଠାରେ ଜୁଣ୍ଟ ହୋଇ ଅପେକ୍ଷା କରିଥିଲେ । ମହାରାଜା ବିମାନବନ୍ଦର କକ୍ଷରେ ପଦାର୍ପଣ କଲାମାତ୍ରେ ଅଭ୍ୟର୍ଥିକମଣ୍ଡଳୀ ବିପୁଳ ଆଡ଼ମ୍ବର ସହକାରେ ତାଙ୍କୁ ବନ୍ଦରପରିସରସ୍ଥ ସୁସଜ୍ଜିତ ବିଶାଳ କକ୍ଷକୁ ପାଛୋଟିନେଲେ । ଜନସମୁଦ୍ର ବେଳକୁ ବେଳ ଏପରି ଫାଟିପଡ଼ିଲା ଯେ, ମନେହେଲା ଯେପରି ସମଗ୍ର ଲଣ୍ଡନନଗରୀ ଓ ସମସ୍ତ ଉପକଣ୍ଠ ଏହିଠାରେ ଅଜାଡ଼ି ହୋଇପଡ଼ିବ । ରାଜସିଂହାସନାସୀନ ରାଜଦଣ୍ଡହସ୍ତ ରାଜକିରୀଟଧାରୀ ରାଜଛତ୍ର-ଚାମର-ଆଲଟଧର-ପରିସେବିତ ରାଜପରିଚ୍ଛଦ-ପରିହିତ ବିବିଧ ରତ୍ନାଭରଣବିଭୂଷିତ ପାରଳାମହୀମଘବା ଗଜପତି ମହାରାଜା ଶ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ନାରାୟଣ ଦେବଙ୍କୁ ସେଦିନ ଯେପରି ଉଚ୍ଛ୍ୱସିତ ସମ୍ବର୍ଦ୍ଧନାରେ ବୁଡ଼ାଇ ଦିଆଯାଇଥିଲା, ଲଣ୍ଡନର ଇତିହାସରେ ତାହା ଅତୁଳନୀୟ, ଅଭୂତପୂର୍ବ, ଅଦ୍ୱିତୀୟ— ତାହା ହିଁ ପ୍ରଥମ, ତାହା ହିଁ ଶେଷ ।

ମହାରାଜା ଗଜପତି ଶ୍ରୀ କୃଷ୍ଣଚନ୍ଦ୍ର ନାରାୟଣ ଦେବ ଲଣ୍ଡନନଗରୀର ଏକ ରାଜରହଣି-ଯୋଗ୍ୟ ଭବ୍ୟ ଭବନରେ ଅନୁଚର-ପରିଚର ଦଳ ସହ ରାଜସମ୍ଭବରେ ଅବସ୍ଥାନ କଲେ । ଯେଉଁ ଗୋରା ଇଂଲଣ୍ଡୀୟମାନେ ଦିନେ ମାନ୍ଦ୍ରାଜ ପ୍ରେସିଡେନ୍‌ସିରେ ଲାଟ, କମିସନର୍, କଲେକ୍ଟର୍, ପଲିଟିକାଲ୍ ଏଜେଣ୍ଟ୍, ପୋଲିସ୍ ଆଇ. ଜି., ପୋଲିସ୍ ସୁପରିଣ୍ଟେଣ୍ଡେଣ୍ଟ ଓ ତାଦୃଶ ଉଚ୍ଚ ପଦବୀରେ ଅଧିଷ୍ଠିତ ଥିଲାବେଳେ ପାରଳା ମହାରାଜାଙ୍କ ପରିବାରଠାରୁ ନାନା ଉପକାର ଓ ଉପହାର ପାଇ କୃତଜ୍ଞ ରହିଥିଲେ, ସେମାନେ ରାଜକର୍ମରୁ ଅବସର ଗ୍ରହଣ ପରେ ଭାରତ ଛାଡ଼ି ସେତେବେଳେ ଲଣ୍ଡନରେ ଅଧିବାସ କରୁଥା'ନ୍ତି । ସେ ସମସ୍ତେ ସସ୍ତ୍ରୀକ ଆସି ମହାରାଜାଙ୍କୁ ଭେଟିଲେ ଏବଂ ମହାରାଜା ଯେଉଁ ମହତ୍ ଉଦ୍ଦେଶ୍ୟରେ ଗୋଲଟେବୁଲ ବୈଠକରେ ଯୋଗଦେବାକୁ ଆସିଛନ୍ତି, ସେଥିରେ ତାଙ୍କୁ ସଫଳକାମ କରାଇବାପାଇଁ ଆନୁକୂଲ୍ୟ ନିସ୍ତାର ସହିତ ଯେଝା ଉପାୟ ଖଞ୍ଜିବାରେ ଲାଗିପଡ଼ିଲେ ।

ମହଦାଶୟ ମହାରାଜା ଇଂଲଣ୍ଡର ପ୍ରଧାନମନ୍ତ୍ରୀ, ଅନ୍ୟାନ୍ୟ ମନ୍ତ୍ରୀ, ବିଭିନ୍ନ ବିଭାଗୀୟ ମୁଖ୍ୟ, ଗୋଲଟେବୁଲ ସମ୍ମେଳନର ସମସ୍ତ ବିଶିଷ୍ଟ ସଭ୍ୟ ଏବଂ ଦଳ-ମତ ନିର୍ବିଶେଷରେ ସକଳ ପତ୍ରପତ୍ରିକାର ସମ୍ପାଦକ ଓ ସାମ୍ବାଦିକମାନଙ୍କୁ ଭେଟି ଭାଷାସୂତ୍ରରେ ଗଠିତ 'ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ' ଘୋଷଣାର ଗୁରୁତ୍ୱ ପ୍ରତିପାଦନପୂର୍ବକ ସେମାନଙ୍କୁ ଆଶାନୁରୂପେ ପ୍ରଭାବିତ କରିପାରିଥିଲେ । ସଂକଳନିଷ୍ଠ ମହାରାଜାଙ୍କର ସେହି ନିରଳସ ଉଦ୍ୟମ ଓ ନିରବଚ୍ଛିନ୍ନ ଶ୍ରମ ଫଳରେ ଓଡ଼ିଆଭାଷାଭାଷୀ-ଦୀର୍ଘପୋଷିତ ଜାତୀୟ ଆକାଂକ୍ଷା କିୟଦଂଶରେ ପୂର୍ଣ୍ଣ ହୋଇ 'ସମ୍ମେଳନ'ର ଶେଷ ବୈଠକ ଉଦ୍‌ଯାପିତ ହେବା ସମୟରେ ସର୍ବସମ୍ମତିକ୍ରମେ କରତାଳିଧ୍ୱନି ସହ 'ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ' ଘୋଷିତ ହେଲା ଏବଂ ୧୯୩୬ ଅପ୍ରେଲ ପହିଲା ଦିନ ବିଧିବଦ୍ଧଭାବରେ ପ୍ରତିଷ୍ଠିତ ଓଡ଼ିଶା ସରକାର କାର୍ଯ୍ୟାରମ୍ଭ

କରିବ ବୋଲି ବ୍ରିଟିଶ୍ ସରକାରଙ୍କ ପକ୍ଷରୁ ଏକ ଶ୍ୱେତପତ୍ର (White Paper) ପ୍ରକାଶ ପାଇ ସର୍ବସାଧାରଣଙ୍କ ଗୋଚରାର୍ଥେ ସର୍ବସ୍ଥଳରେ ବିତରିତହେଲା ।

ସେହି ଶ୍ୱେତପତ୍ର ସନନ୍ଦ ଅନୁଯାୟୀ ରାଜଧାନୀ କଟକର କେନ୍ଦ୍ରସ୍ଥଳରେ ଓଡ଼ିଶା ସେକ୍ରେଟେରିଏଟ୍ (ସଚିବାଳୟ) ସ୍ଥାପିତ ହେଲା । ବର୍ତ୍ତମାନ ଯେଉଁ ସୌଧମୟ ଭବନରେ 'ସିଟି ହସ୍ପିଟାଲ୍' ସଂସ୍ଥାପିତ ହୋଇଛି, ତାହା ହିଁ ହୋଇଥିଲା ଓଡ଼ିଶା ସେକ୍ରେଟେରିଏଟ୍ର ଆଦି ଆଳୟ । ସେହି ସଚିବାଳୟର ଅଂଶରୂପେ ଉତ୍ତର ପାର୍ଶ୍ୱରେ ଥିବା ଯେଉଁ ଟିଣ ସେଡ୍‌ରେ (ଗୋଦାମଘରେ) 'ସେକ୍ରେଟେରିଏଟ୍ ପ୍ରେସ୍' ନାମରେ କଥିତ ଶିଶୁ ମୁଦ୍ରଣାଳୟଟିଏ ଭୂମିଷ୍ଠ ହୋଇଥିଲା, ତାହା ହିଁ ବର୍ତ୍ତମାନର ବିରାଟକାୟ ଓଡ଼ିଶା ଗଭର୍ଣ୍ଣମେଣ୍ଟ୍ ପ୍ରେସ୍ (O. G. P.)ର ଅଙ୍କୁରିତଶାଳ । ଓଡ଼ିଶା ସରକାରଙ୍କ ଅର୍ଥ ବିଭାଗ (Finance Deptt.) ହୋଇଥାଏ ଉକ୍ତ କ୍ଷୁଦ୍ରକାୟ ସରକାରୀ ମୁଦ୍ରଣାଳୟଟିର ସିଧାସଳଖ ପ୍ରତ୍ୟକ୍ଷ ନିୟନ୍ତ୍ରକ ଓ ପର୍ଯ୍ୟବେକ୍ଷକ (Controlling Deptt.) । ସେହି ବିଭାଗର ସୁଦକ୍ଷ ଡେପୁଟି ସେକ୍ରେଟେରି ନଣାମଣି ମହାନ୍ତି (ପରେ 'ରାୟବାହାଦୁର' ଉପାଧି-ଭୂଷିତ)ଙ୍କ ଚଉଆଖିଆ ତତ୍ତ୍ୱାବଧାନରେ ଶିଶୁ ପ୍ରେସ୍‌ଟି ପରିଚାଳିତ ହେଉଥାଏ ପାଟନା ଗଭର୍ଣ୍ଣମେଣ୍ଟ୍ ପ୍ରେସ୍‌ରୁ ଅସିଥିବା ଜଣେ ଅଣଗେଜେଟେଡ୍ କର୍ମଚାରୀ (Mr. V. M. Money)ଙ୍କ ମାରଫତରେ ।

ଓଡ଼ିଶା ସେକ୍ରେଟେରିଏଟ୍‌ର ପ୍ରଥମ ଚିଫ୍ ସେକ୍ରେଟେରି (ମୁଖ୍ୟ ସଚିବ) ହୋଇଥିଲେ ମ୍ୟାନ୍‌ସଫିଲ୍ଡ଼ ସାହେବ (Mr. P. T Mansfield, M.A., I.C.S.) ଏବଂ ଓଡ଼ିଶା ପ୍ରଦେଶର ମହାମାନ୍ୟ ପ୍ରଥମ ଗଭର୍ଣ୍ଣର୍ ହୋଇଥିଲେ ମିଷ୍ଟର ହବାକ୍ (Sri John Austin Hubback) । ଉଭୟେ ଇଂଲଣ୍ଡୀୟ ଏବଂ ଅବ୍ୟବହିତ ପୂର୍ବତନ ବିହାର-ଓଡ଼ିଶା ସରକାର-ଅଧୀନସ୍ଥ ଓଡ଼ିଶା ଡିଭିଜନ୍‌ରେ ଦୀର୍ଘକାଳ ସମ୍ମାନଜନକ ଉଚ୍ଚ ଉଚ୍ଚ ରାଜପଦବୀରେ ରହି ଖୁବ୍ ଲୋକପ୍ରିୟ ହୋଇଥିଲେ ଏବଂ ଗ୍ରାମାଞ୍ଚଳବାସୀଙ୍କ ନିକଟ ସମ୍ପର୍କରେ ଆସି ଓଡ଼ିଶାର ଲୋକଭାଷା, ସଂସ୍କୃତି, ସଂସ୍କାର, ପର୍ବପର୍ବାଣି, ସାମାଜିକ ଚଳଣି ଆଦି ନାନା ବିଷୟରେ ସବିଶେଷ ଅଭିଜ୍ଞତା ଓ ଅନୁଭୂତି ଅର୍ଜନ କରିଥିଲେ ।

**ରାଜସେବା କ୍ଷେତ୍ରକୁ ଟଣା ହେଲି—**

'ନବଭାରତ'ରେ ମୋ ରହିବାର ଠିକ୍ ଦୁଇବର୍ଷ ୧୯୩୬ ଅକ୍ଟୋବର୍ ୩୧ ତାରିଖରେ ପୂର୍ଣ୍ଣ ନଭେମ୍ବର ପହିଲାରୁ ଆରବ୍ଧ ତୃତୀୟ ବର୍ଷର ତିନି ସପ୍ତାହ ମଧ୍ୟ ୨୧ ତାରିଖରେ ସରିଗଲା । ତାହାର ପରଦିନଟି ଅର୍ଥାତ୍ ୧୯୩୬ ନଭେମ୍ବର ୨୨ ତାରିଖ ରବିବାରଟି ମୋ ଜୀବନ-ପଞ୍ଜୀର ଗୋଟିଏ ଅଭୁଲା ଓ ଅଳଭ୍ୟ ଦିବସ । କଅଁଳ ଗାଧୁଆ ବେଳ, ପ୍ରାୟ ନଅଟା । ସେକ୍ରେଟେରିଏଟ୍ ଅର୍ଥ ବିଭାଗର ସ୍ୱନାମଖ୍ୟାତ ଉପସଚିବ ନଣାମଣି ମହାନ୍ତି ପ୍ରେସ୍ ସହିତ ଆଦାନପ୍ରଦାନର ଯାବତୀୟ ଚିଠିପତ୍ର ଓ ଆନୁଷଙ୍ଗିକ ସମସ୍ତ ନଥିର ରକ୍ଷଣାବେକ୍ଷଣ ଦାୟିତ୍ୱରେ ଥିବା ସହକାରୀ (Press Assistant) ବ୍ରହ୍ମାନନ୍ଦ ଶତପଥୀଙ୍କୁ ସଙ୍ଗରେ

ଯେନ ତାଙ୍କ ମଟର୍ କାର୍‌ରେ ମୁଁ ରହୁଥିବା ଭଡ଼ାଘରକୁ ଆସିଲେ ଏବଂ ମତେ ସେହ ଗାଡ଼ିରେ ବସାଇ ସେକ୍ରେଟେରଏଟ୍‌ର ନଜ ଅଫିସ୍‌କକ୍ଷକୁ ନେଇଗଲେ; ଯିଦ୍ଧାନ୍ତ ଉଦ୍ଦେଶ୍ୟ—ମତେ ଯେକୌଣସିମତେ ମନେଇ ସରକାରୀ ମୁଦ୍ରଣାଳୟରେ ଢୁକାଇବେ । ସେହ ନର୍ଜ୍ଜଲା ରୁମ୍‌ରେ ମୋ' ଅମଙ୍ଗ ମନକୁ ସେ ନାନା କୌଶଳରେ ବୁଝାଇ ଓ ଭବିଷ୍ୟତ୍ ଉନ୍ନତର ପ୍ରତଶ୍ରୁତମୂଳକ ମଧୁର ବାକ୍ୟାବଳରେ ଭୁଲାଇ ଶେଷରେ ମଙ୍ଗେଇଲେ ଦୀର୍ଘ ଗୃର ଘଣ୍ଟା ବ୍ୟାପୀ ଯୁକ୍ତି-ପ୍ରତଯୁକ୍ତି ପରେ, ଅର୍ଥାତ୍ ପ୍ରାୟ ଅପରାହ୍ନ ଦେଢ଼ଟା ସମୟରେ । ନଶାମଣିବାବୁଙ୍କ ମନ୍ତ୍ରଫୁଙ୍କାରେ ମୁଁ ସମ୍ପୂର୍ଣ୍ଣ ନରସ୍ତ ଓ କାବୁ ହୋଇଗଲି । ଭୁଣ୍ଡରେ ମୋର ସଙ୍ଗେ ଯେପର ଅଫିଟା ଭୁଣ୍ଡିଟାଏ ବନ୍ଧା ହୋଇଗଲା । ଏହିରୂପେ ଲକ୍ଷ୍ୟ ହାସଲ କରିପାରଲ ପରେ ଯାଇ ନଶାମଣିବାବୁ ମତେ ଖୋଲିକର କହିଲେ ଯେ, କଟକର ସାହତ୍ୟକଖ୍ୟାତସମ୍ପନ୍ନ ଗୃର ନାମଜାକ ମୁଦ୍ରଣାଳୟ (ଉତ୍କଳସାହତ୍ୟ ପ୍ରେସ୍, ମୁକୁର ପ୍ରେସ୍, ସତ୍ୟବାଦୀ ପ୍ରେସ୍ ଓ ସାରସ୍ୱତ ପ୍ରେସ୍)ର ଯଥାକ୍ରମେ ସ୍ୱତ୍ୱାଧିକାରୀ ତାତ୍କାଦ ମହାନନ୍ଦ କର, ପ୍ରତଷ୍ଠାତା ବ୍ରଜସୁନ୍ଦର ଦାସ, ପରଗ୍ଳକ ରାଧାନାଥ ରଥ ଓ ପ୍ରତଷ୍ଠାତା ବାଲକୃଷ୍ଣ କର ଗୃରହେଁଯାକଙ୍କ ଭୁଣ୍ଡରୁ ସେ କୁଆଡ଼େ କେବଳ ମୋ'ର ପରକାଷ୍ଠାର ଉଚ ପ୍ରଶଂସା ଶୁଣିଥିଲେ । ପ୍ରେସ୍‌ଗୃକରରେ ମୋ ଯୋଗଦାନର ପ୍ରାମାଣିକ ପତ୍ର (joining report) ଖଣ୍ଡିକ ଟାଇପ୍ କରାହୋଇ ଉପସଚବ ମହୋଦୟଙ୍କ ଟେବୁଲରେ ଆଗରୁ ରଖାଯାଇଥିଲା । ତାଙ୍କ ନର୍ଦ୍ଦେଶନାକ୍ରମେ ମୁଁ ବଡ଼ ସନ୍ତର୍ପଣରେ ତହିଁରେ ୨୩-୧୧-୧୯୩୭ ତାରଖ ପକାଇ ସ୍ୱାକ୍ଷର ଦେଲି । ଏତକରେ ସେଦନର କାମ ସାର ବସାକୁ ଫେରଆସିଲି ଏବଂ ଅଭିଭାବକୋପମ ନଶାମଣିବାବୁଙ୍କ ସହର୍ଷ ଅନୁଜ୍ଞାମତେ ତତ୍ପରଦନ ଅର୍ଥାତ୍ ୧୯୩୭ ନଭେମ୍ବର ୨୩ ତାରଖ ସୋମବାର ଦନ ଠିକ୍ ନଅଟା ବେଳେ ତାଙ୍କ ଅଫିସ୍‌ରେ ଉପସ୍ଥିତ ହେଲି । ବ୍ରହ୍ମାନନ୍ଦବାବୁ ମତେ ସାଥିରେ ଧର ପ୍ରେସ୍ ପରଗ୍ଳନର ମାମୁଲି ଦାୟିତ୍ୱରେ ଥିବା V. M. Moneyଙ୍କ ସହତ ଭେଟ କରାଇଦେଇ ମୋ ସ୍ୱାକ୍ଷରତ ଜଏନଂ ରପୋର୍ଟଟି ତାଙ୍କ ହାତକୁ ବଢ଼ାଇଦେଲେ । ସେହ ଦନ ପୂର୍ବାହ୍ନରୁ ମୁଁ ହେଲି ଓଡ଼ଶା ଗଭର୍ଣ୍ଣମେଣ୍ଟ ପ୍ରେସ୍ ରଡ଼ଂ ସେକ୍‌ସନ୍‌ର ଅନ୍ତର୍ଭୁକ୍ତ ପ୍ରଥମ ରଭାଇଜର୍ (Revisor) । ଖାସ୍ ମୋ'ର ଉଦ୍ଦେଶ୍ୟରେ ଏହ ପଦବୀର ଗୃକରଟି ସଦ୍ୟ ସୃଷ୍ଟି ହୋଇ-ଥିଲା ଡେପୁଟି ସେକ୍ରେଟେର ନଶାମଣି ମହାନ୍ତିଙ୍କ ପ୍ରସ୍ତାବମତେ । ମୋର ଏହ ସରକାରୀ ନଯୁକ୍ତିରେ ବୋଉର ଅନନ୍ତ ଆନନ୍ଦ, କାରଣ ଏ ଗୃକରରେ ବଦଳର ମଳାଧୂଳା ସ୍ପର୍ଶ ନ ଥିବାରୁ ସବୁଦନେ କଟକରେ ରହିବା ଫଳରେ ଘରପରବାରଗହଣରେ ରହିଥିଲା ପର ଲାଗିବ । ଏଣୁ ତା' ଆଡ଼ୁ ଆପତ୍ତି ଅଭିଯୋଗ ବା ଅସନ୍ତୋଷ ପ୍ରକାଶ ପାଇବାର ଅଣୁମାତ୍ର ପ୍ରଶ୍ନ ରହିଲା ନାହିଁ ।

ସରକାରୀ ଛାପାଖାନା ନଉକର ପହିଲେ ପହିଲେ ମତେ ବଡ଼ ଅଡ଼ୁଆ-ଅଡ଼ୁଆ ଓ ଅସ୍ୱସ୍ତିକର ବୋଧ ହେଲା—ତା'ର ପ୍ରଧାନ କାରଣ ଏକାଦକ୍ରମେ ଆଠଘଣ୍ଟାବ୍ୟାପୀ

ବିଶ୍ରାମବିହୀନ ଝୋଲମରା ହାଡ଼ଭଙ୍ଗା ଖଟଣି, ମାଣେକମାନ ଦାନାରେ ଝଙ୍ଗା ପେଟରେ ମାଣ ପରେ ମାଣ ପଡ଼ିଆ ଜମି ଚାଷ. ସକାଳ ୯ରୁ ସନ୍ଧ୍ୟା ୫ଟା, ଯହିଁରେ ମୁଁ ଥିଲି ସମ୍ପୂର୍ଣ୍ଣ ଅନଭ୍ୟସ୍ତ । ମଲ୍ଲ ଖଟିଆରେ ପଡ଼ି ପଡ଼ି ବ୍ୟାଧିପୀଡ଼ା ସହ ଶଯ୍ୟାକ୍ଷତ (bed sore) ଯନ୍ତ୍ରଣା ଭୋଗିଲି ପରି ଆଠଘଣ୍ଟା କାଳ କାଷ୍ଠାସନରେ ବକଧାର୍ମୀ ପରି ବସି ରହି ରହି ଅଣନିଶ୍ୱାସିଆ ପ୍ରୁଫ୍‌ସଂଶୋଧନ କାମ କରିବାଫଳରେ ଫଡ଼ିଆଫାଳିଯାକ କୁର୍ଚ୍ଚିକ୍ଷତ (chair-sore) ମାଡ଼ିଯିବା ବିଚିତ୍ର ନୁହେଁ । ଏ ରୂପକର ଗହନ ତାତ୍ପର୍ଯ୍ୟ ବା ମର୍ମ ହେଉଛି—ଶିବାଇକ୍‌ର ଚାକିରିର ସାମାନ୍ୟ ଭତ୍ତା ଦେଇ ମୋ'ଠାରୁ ଆଦାୟ କରିଗଲା ଜଣେ ବରିଷ୍ଠ (senior most) ପ୍ରୁଫ୍‌ସଂଶୋଧକର ଚତୁର୍ଗୁଣ କଠୋର ଶ୍ରମସାଧ୍ୟ କାର୍ଯ୍ୟ, ଯେହେତୁ ଉପର ଉପର ପାହ୍ୟାରେ ଆଗରୁ ନିଯୁକ୍ତି ପାଇଥିବା ପ୍ରୁଫ୍‌ସଂଶୋଧକଙ୍କ ମଧ୍ୟରେ କେହି ବିଶେଷ ପାରଗ ବା କ୍ଷିପ୍ରହସ୍ତ ନଥିଲେ । ଏହାଫଳରେ ମୋ' ମସ୍ତିଷ୍କର ଭାରସାମ୍ୟରେ ବ୍ୟାହତ ଆସିଲା ଏବଂ ମାନସିକ ଶାନ୍ତି, ସନ୍ତୋଷ, ସ୍ଥିରତାରେ ଅବକ୍ଷୟ ଘଟିଲା । ଅତୃପ୍ତିର ଗୋଟାଏ କୁହୁଡ଼ିଆ ଜାଲ ମନକୁ ମୋର ସଦାସର୍ବଦା ଘୋଡ଼େଇ-ରଖିଲା । ଏଭଳି ଗଦ୍ୟମୟ କାଠୁଆ ଜୀବନରେ ଶୁଖିଲା କଲମରୁ କେବେହେଲେ କି ଝରିପାରେ ରସର କବିତା—'କାଠରେ କବିତା କୁତଃ' ?

ଉତ୍ତମରୂପେ ବିଚାରବିମର୍ଶ ନକରି, ଅଗ୍ରପଶ୍ଚାତ୍ ନ ଭାବି ନ କଳି, ଆଖିବୁଜା ପ୍ରେସ୍ ଚାକିରିକି ଆବୋରିଯିବାଟା ମୋର ଯେ ଏକ ମସ୍ତବଡ଼ ଭୁଲ୍ ହୋଇଯାଇଛି, ଏବେ ବୁଝିଲି । ଏହି ଝକ୍‌ମାରି କାମପାଇଁ ଏତେ ମନସ୍ତାପ ଆସିଲା ଯେ, ବେଳେ ବେଳେ ଇଚ୍ଛା ହେଲା, ଏ ମହାର୍ଘ ବହୁଦର୍ଶିତାର ଚାହିଁକଟକାକୁ ତୁଚ୍ଛ କରିଦେଇ ପୂର୍ବର ବେସରକାରୀ କର୍ମସ୍ଥଳୀକୁ ଫେରିଯିବି—ସେଠା ଆଶ୍ରମ ଏଠି ସାତସପନ ! ମାତ୍ର ଏଭଳି ହଟାଦସ୍ତ ନିଷ୍ପତ୍ତି ଲଘୁତାର ପରିଚାୟକ ହେବ ବୋଲି ପରକ୍ଷଣରେ ବିବେକ ବାଟ ଓଗାଳିଲା—ପଚ୍ଛମୁହାଁର ମୁମୂର୍ଷୁରଦାହ ମୃତ୍ୟୁଯନ୍ତ୍ରଣା ଅପେକ୍ଷା ଯେ ଆହୁରି ଭୟାବହ ! ମନମଣ୍ଡଳରେ ଏହି ଦ୍ୱନ୍ଦ୍ୱର ଚକ ଘୂରୁଥିଲାବେଳେ ଅବଗାହୀ ନିଶାମଣି ବାବୁଙ୍କ ମୁହଁରୁ ଶୁଣିଥିବା ବସ୍ତୁବାଦୀ ସୂକ୍ତିଟି ହଠାତ୍ ମୋର ସ୍ମୃତିପଥାରୂଢ଼ ହେଲା—'ସରକାରୀ ନୌକରି ମଧ୍ୟକୁ ବରଂ ସହଜରେ ଢୁକି-ହୁଏ; କିନ୍ତୁ ସେ ଭ୍ରମର ଗୁମ୍ଫାରୁ ବାହାରିଆସିବା ଆଦୌ ସମ୍ଭବପର ହୁଏନା—କାରଣ ଆରମ୍ଭରେ କୃଶ-କର୍ମପ୍ରାର୍ଥୀ ହୃଷ୍ଟ ହୋଇ ଢୁକେ ଏବଂ କର୍ମରୁ ଅବସର ନେଲାବେଳେ ନିମାଣ ହୋଇ ବାହାରେ ।' ଏହି ଯୁଗଯୋଗ୍ୟ ଋଷିବାଣୀକୁ ଯଥାର୍ଥ ସମ୍ମାନ ଦେଇ ମୁଁ ଯଥେଷ୍ଟ ସଚେତନ ହେଲି ଏବଂ ଧୈର୍ଯ୍ୟ ଧରି, ଯୁବୋଚିତ ଓଜ ଓ ଉତ୍ସାହରେ ବଳୀୟାନ୍ ହୋଇ କର୍ତ୍ତବ୍ୟର ଆହ୍ୱାନକୁ ମୁକାବିଲା କରିବାକୁ ଅଣ୍ଟା ଭିଡ଼ିଲି । ଆପଣା ନିକଟରେ ପଣବଦ୍ଧ ହେଲି—ସ୍ୱକୀୟ ପାରଦର୍ଶିତାବଳରେ ରିଡ଼ିଂ ସେକ୍‌ସନ୍‌ର ସମସ୍ତ ଊର୍ଦ୍ଧ୍ୱତନ ସିନିଅର୍‌ଙ୍କୁ ପ୍ରତିଯୋଗିତାରେ ପରାସ୍ତ କରି ଶୀର୍ଷତମ ସ୍ଥାନ ଅଧିକାର ନକଲା ପର୍ଯ୍ୟନ୍ତ କଦାପି ଅନ୍ୟ କୌଣସି ଦିଗରେ ଶକ୍ତିର ଅପଚୟ କରିବି ନାହିଁ । ଏହି ସିଦ୍ଧାନ୍ତରେ ଅଟଳ ଦୃଢ଼ସଙ୍କଳିତ ସାଧନାରେ କଠୋର ନିଷ୍ଠାର ସହିତ ଅଗ୍ରସର ହେଲି ।

ପ୍ରେସ୍‌ରେ ଛପାକାର୍ଯ୍ୟର ବୋଝ (work load) କ୍ରମଶଃ ଅତିମାତ୍ରାରେ ବଢ଼ି ଚାଲି-ଯିବାଫଳରେ କର୍ମଚାରୀ ଓ ଶ୍ରମିକଙ୍କ ସଂଖ୍ୟା ତଦନୁପାତରେ ବଢ଼ାଇବା ଆଶୁ ଆବଶ୍ୟକ ହେଲା । ଟିଣ ସେଡ୍‌ର ତଥାକଥିତ ବିଶାଳ ଆୟତନ ବର୍ତ୍ତମାନର ବର୍ଦ୍ଧିତ ଚାହିଦାକୁ ଚାହିଁ ସମୁଦ୍ରକୁ ଶଙ୍ଖେ ପାଣି ପରି, ନିତାନ୍ତ କ୍ଷୁଦ୍ର ବିବେଚିତ ହେଲା । ତେଣୁ ୧୯୩୭ ମସିହାରେ ପ୍ରେସ୍‌କୁ ବକ୍‌ସିବଜାର ଛକ ପାଖ ସଦର ରାସ୍ତାଧାରରେ ଥିବା ସଂପ୍ରସାରିତ ବହୁପ୍ରକୋଷ୍ଠବିଶିଷ୍ଟ ଏକତାଲା ଭଗତ ବିଲ୍ଡିଂକୁ ଦୀର୍ଘମିଆଦୀ ସର୍ତ୍ତରେ ସ୍ଥାନାନ୍ତରିତ କରାଗଲା । ସେଠାରେ ପ୍ରାୟ ଦୁଇ ବର୍ଷ ଅତିକ୍ରାନ୍ତ ହେଲାପରେ ଗେଜେଟେଡ୍ ପାହ୍ୟାର ଜଣେ ଦକ୍ଷ ପ୍ରଶାସକଙ୍କୁ ପ୍ରେସ୍‌ର ସୁପରିଣ୍ଟେଣ୍ଡେଣ୍ଟରୂପେ ନିଯୁକ୍ତ କରିବାକୁ ସରକାର ସ୍ଥିର କଲେ । ତାହା କାର୍ଯ୍ୟକାରୀ ହେବା ପୂର୍ବରୁ ମଡ଼ା-ଅମଡ଼ା ମାଡ଼ି ଚାଲିଥିବା ପ୍ରେସ୍‌କୁ ସଜାଡ଼ି ଶଗଡ଼ଗୁଳାରେ ପକାଇବାଲାଗି ବେଙ୍ଗଲ୍ ଗଭର୍ଣ୍ଣମେଣ୍ଟ ପ୍ରେସ୍‌ରେ କୋଡ଼ିଏ ବର୍ଷ ସୁପରିଣ୍ଟେଣ୍ଡେଣ୍ଟ୍ ଥାଇ ସୁଖ୍ୟାତିର ସହିତ ଅବସର ନେଇଥିବା Mr. C. R. Battersbyଙ୍କୁ ପ୍ରେସ୍‌ର ନିରଙ୍କୁଶ ଶାସକରୂପୀ ପ୍ରଥମ ମନୁର ଆସନରେ ଅଧିଷ୍ଠିତ କରାଗଲା । ସେ ଖୁବ୍ ବେଶିରେ ଛଅଟି ମାସ ପାଇଁ ଆସିପାରିବେ ଏବଂ ସେହି ସମୟ ମଧ୍ୟରେ ନବପ୍ରତିଷ୍ଠିତ ପ୍ରେସ୍‌ଟିକୁ ଯଥାରୀତି ସରକାରୀ ଢାଞ୍ଚାରେ ସଜାଡ଼ିଦେଇ ତାର ସୁପରିଚାଳନାପାଇଁ ଖଣ୍ଡିଏ ବିଧାନଗ୍ରନ୍ଥ (Manual) ଲେଖିଦେଇ ଯିବେ ବୋଲି ଚିଫ୍ ସେକ୍ରେଟେରି ମିଷ୍ଟର୍ ମ୍ୟାନ୍‌ସଫିଲଡ୍‌ଙ୍କୁ ଧ୍ରୁବବଚନ ଦେଇଥିଲେ । ଜବରଦସ୍ତ ହାକିମ ମିଜାଜୀ ଓ ଦଣ୍ଡମାର ପ୍ରଶାସକରୂପେ ପ୍ରୌଢ଼ମନ୍ୟ ବ୍ୟାଟର୍ସବି ସାହେବ କାର୍ଯ୍ୟଭାର ଗ୍ରହଣ କରିବା ପୂର୍ବରୁ ତାଙ୍କୁ ଭୂୟୋଦର୍ଶୀ ମ୍ୟାନସ୍‌ଫିଲ୍‌ଡ ଓଡ଼ିଶାର ଐତିହ୍ୟ ଓ ଓଡ଼ିଆମାନଙ୍କ ଜାତୀୟ ପ୍ରକୃତି ସମ୍ବନ୍ଧରେ ଏହି ମୂଲ୍ୟବାନ୍ ଧାରଣା ଦେଇଥିଲେ :

> "ଓଡ଼ିଶା ଏକ ବୀର ଜାତିର ଦେଶ, ଶାନ୍ତିର ରାଜ୍ୟ । ଓଡ଼ିଆମାନେ ସ୍ୱଭାବତଃ ଶାନ୍ତ । କିନ୍ତୁ ନାଗଶିଶୁର ଲାଙ୍ଗୁଳାଗ୍ରରେ ଅଙ୍ଗୁଳିଟିପ ବାଜିଲାମାତ୍ରେ ସେ ଯେପରି ବୀରଦର୍ପରେ ଉତ୍‌ଫଣ ହୋଇଉଠେ, ଠିକ୍ ସେହିପରି ଏ ବୀରବଂଶଧର-ମାନଙ୍କ ଆତ୍ମମର୍ଯ୍ୟାଦା ଓ ଜାତୀୟ ଟେକ ଉପରେ ସାମାନ୍ୟତମ ଆଘାତ ଆସିଲେ ଏମାନେ ତତ୍‌କ୍ଷଣେ ବିଦ୍ରୋହର ବହ୍ନିଶିଖା ପ୍ରଜ୍ୱାଳିଦିଅନ୍ତି । ଏହାହିଁ ଓଡ଼ିଆ ଜାତିର ପ୍ରକୃତି ଓ ଓଡ଼ିଆ ନାଡ଼ିର ଗତିରୀତି । ଏହି କଥାକୁ ଭଲରୂପେ ମନେରଖି କର୍ମକ୍ଷେତ୍ରରେ ବିବେଚିତ ଚତୁରତା ପ୍ରୟୋଗ କରିବ—ଲୁହା ଜାଣି ପାଣି ଦେବ ।"

ବ୍ୟାଟର୍ସ୍‌ବି ସାହେବଙ୍କ ସୀମିତ କର୍ତ୍ତୃତ୍ୱକାଳର ଆରମ୍ଭବେଳେ ବିରାଡ଼ି-କପାଳକୁ ଶିକା ଛିଡ଼ିଲା ପରି ଘଟଣାଚକ୍ରରେ ମୋ'ପାଇଁ ଶୁଭସୁବର୍ଣ୍ଣ ଯୋଗଟିଏ ଦୈବ ଆଣି ପହଞ୍ଚାଇ-ଦେଲା । ଚିଫ୍ ସେକ୍ରେଟେରି (Mr. Mansfield) ତାଙ୍କ ସ୍ୱକରାଙ୍କିତ ଏକ ଅତି ଗୋପନୀୟ (topmost secret) ରେକର୍ଡ଼ ଦଶ କପି ମାତ୍ର ଛାପି ଯୋଗାଇବାପାଇଁ ଖୋଦ୍ ବ୍ୟାଟର୍ସବିଙ୍କ ହସ୍ତରେ ଅର୍ପଣ କରିଥିଲେ । ତାକିଦ୍ କରି ତାଙ୍କୁ କହିଥିଲେ,

"ସବୁରିଠାରୁ ଦକ୍ଷ ଓ ସଭିଙ୍କଠାରୁ ବିଶ୍ୱସ୍ତ ଯେଉଁ ରିଡ଼ର୍ ଥିବ, ତାହାରି ହାତରେ ପ୍ରୁଫ୍ ସଂଶୋଧନ ଭାର ଦେବ । ଯେପରି ଛପାରେ ଗୋଟାଏସୁଦ୍ଧା ପ୍ରମାଦ ରହିବ ନାହିଁ, ସେଥିପ୍ରତି ସମଧିକ ତୀକ୍ଷ୍ଣ ଦୃଷ୍ଟି ରଖିବ ।" ଚଉଅଁଶିଆ ବ୍ୟାନର୍ଜି ସାହେବଙ୍କ ଗୋଇନ୍ଦା ସ୍ୱଭର ଅନୁସନ୍ଧାନରେ ଶେଷକୁ ମୋ'ଉପରେ କୋଢ଼ ପଡ଼ିଲା । କ ଜୁନିଅର୍ ରିଡ଼ର୍ କ ସିନିଅର୍ ରିଡ଼ର୍ ସଭିଏଁ ତାଙ୍କ ବୋଧା ବିଚାରରେ ଏ କାମକୁ ଅପାରଗଶ୍ରେଣୀଭୁକ୍ତ ହେଲେ, ଅଥଚ ମୋ-ପରି ଜଣେ ଅଧସ୍ତନର ରିଭାଇଜର୍-ହସ୍ତରେ ସେ ଉକ୍ତ ଗୁପ୍ତତମ ରେକର୍ଡ଼ଟିର ପ୍ରୁଫ୍‌ସଂଶୋଧନ ଦାୟିତ୍ୱ ନ୍ୟସ୍ତ କରିଦେଲେ । ତତ୍ସ ସଙ୍ଗେ ସଙ୍ଗେ ଚିଫ୍ ସେକ୍ରେଟେରିଙ୍କ ଏହି କାମଟିର ଭୁଙ୍ଗ ଗୁରୁତ୍ୱ ସମ୍ବନ୍ଧରେ ମତେ ଦୋହରେଇ-ତୋହରେଇ ସତର୍କତାର ହିତବାଣୀ ଶୁଣାଇଥିଲେ ।

ଯଥେଷ୍ଟ ସାବଧାନତା ଅବଲମ୍ବନପୂର୍ବକ ମତେ ସେହି କ୍ଷୁଦ୍ର-ହେଲେହେଁ-ବିଷମ ଦାୟିତ୍ୱ ବିଶିଷ୍ଟ ରେକର୍ଡ଼ଟିର ପ୍ରୁଫ୍ ଦେଖିବାକୁ ପଡ଼ିଲା କୌଣସି କପିହୋଲ୍‌ଡର୍‌ର ସାହାଯ୍ୟ ନ ନେଇ । ବିଳାତର ଇଂରେଜୀ ସ୍ନାତକୋତ୍ତର ଡିଗ୍ରୀଧାରୀ ସୁବିଦ୍ୱାନ୍ ମ୍ୟାନ୍‌ସ-ଫିଲଡ଼୍‌ଙ୍କଦ୍ୱାରା ପ୍ରସ୍ତୁତ ପାଣ୍ଡୁଲେଖଟିର ଚାରୋଟି ସ୍ଥାନରେ ବନାନଗତ ବିଭ୍ରମ ରହି-ଯାଇଥିଲା । ବର୍ଣ୍ଣାଶୁଦ୍ଧିକଳୁଷିତ ଉକ୍ତ ଚାରି ଶବ୍ଦ ହେଉଛି budgetted, benefitted, budgetting, benefitting । ପ୍ରୁଫ୍ ପଢ଼ିଲାବେଳେ ମୁଁ ସେଗୁଡ଼ିକୁ ବଦଳାଇ ଯଥାକ୍ରମେ budgeted, benefited, budgeting, benefiting କରିଦେଲି । ପାଣ୍ଡୁଲେଖର ପାଠଟିକ ଫୁଲ୍‌ସ୍କେପ୍ ଫୋଲିଓ ସାଇଜ୍‌ରେ ମୋଟେ ଛଅପୃଷ୍ଠା ହେଲା । ମ୍ୟାନ୍‌ସଫିଲ୍‌ଡ଼ଙ୍କ ବରାଦ ଅନୁସାରେ ତହିଁର ଦଶ କପି ମୁଦ୍ରିତ ଓ ଷ୍ଟିଚ୍‌ସିଲାଇ ହେଲା ପରେ ତାହା ଆଠ ପ୍ରସ୍ତ ଜଉମୋହରଦିଆ ବଡ଼ ଖାମ ମଧ୍ୟରେ ସଯତ୍ନ ରକ୍ଷିତ ହୋଇ ତାଙ୍କ ନିକଟକୁ ପଠା ହୋଇଗଲା । ମ୍ୟାନ୍‌ସଫିଲ୍‌ଡ଼ ସାହେବ ଛପା ପୃଷ୍ଠାଯାକ ଗାଢ଼ ଅଭିନିବେଶରେ ତନ୍ନତନ୍ନ ପଢ଼ିଲାବେଳେ ସଂପିତ ଚାରୋଟି ଶବ୍ଦର ବର୍ଣ୍ଣଗତ ରୂପରେ ପରିବର୍ତ୍ତନ ଘଟିଥିବାର ଲକ୍ଷ୍ୟ କଲେ । ସଙ୍ଗେ ସଙ୍ଗେ Chambers' Twentieth Century Dictionary ସହିତ ମିଳାଇ ଜାଣିପାରିଲେ ଯେ, ଏଯାବତ୍ ଏହି ଶବ୍ଦଗୁଡ଼ିକର ବନାନ ସମ୍ବନ୍ଧରେ ତାଙ୍କର ଯେଉଁ ବଦ୍ଧ ଧାରଣା ଥିଲା, ତାହା ଭୁଲ୍ ଏବଂ ଛପାରେ ଯାହା ସଂଶୋଧିତ ହୋଇଛି ତାହାହିଁ ଠିକ୍ । ଏ ଯୌବନୋତ୍ତର ବିବୃଦ୍ଧ ବୟସରେ ତାଙ୍କୁ ଯିଏ ସଂଶୋଧନ କରିଛନ୍ତି, ସେହି ପ୍ରୁଫ୍‌ରିଡ଼ର୍‌ଙ୍କୁ ସେ ମନେ ମନେ ଶତ ଧନ୍ୟବାଦ ଦେଲେ । ସ୍ୱତଃସ୍ଫୂର୍ତ୍ତ କୃତଜ୍ଞତାରେ ହାର୍ଦ୍ଦିକ ମସୃଣତାର ଇଙ୍ଗିତ ଫୁଟି-ଉଠିଲା । ଫୋନ୍ ଉଠାଇ ବ୍ୟାନର୍ଜିଙ୍କଠାରୁ ବୁଝିନେଲେ ଯେ, ଯେଉଁ ସଂଶୋଧକ ଗୋପନୀୟ ରେକର୍ଡ଼ଟିର ପ୍ରୁଫ୍ ଦେଖିଥିଲେ ସେ ଜଣେ ରିଭାଇଜର୍—ରିଡ଼ର୍ ହେବାର ପାଳି ତାଙ୍କର ଆସି ନାହିଁ, ତାଙ୍କ ନାମ କୃଷ୍ଣଚନ୍ଦ୍ର କର । ସେ ମୋ' ସହିତ କଥା ହେବେ ବୋଲି କହିବାରୁ ବ୍ୟାନର୍ଜି ମତେ ତାଙ୍କ ପ୍ରକୋଷ୍ଠକୁ ହକାରି ପଠାଇଲେ । ମୁଁ ଆସି ଫୋନ୍ ଧରିଲି, 'Good afternoon, sir' କହିଲାମାତ୍ରେ ସେଣୁ ସେ ଅଭିନନ୍ଦ୍ୟ

ଭାଷାରେ କହିବାକୁ ଲାଗିଲେ, "Good afternoon. From today I treat you as my 'Param Guru'. I am creating a Reader post for you and see you tomorrow in the Press" । ସତକୁ ସତ ତା ଆରଦିନ ସକାଳ ଦଶଟାରେ ସେ ନିଜ କାର୍‌ରେ ପ୍ରେସ୍‌କୁ ଆସି ରିଡ଼ିଂ ସେକ୍‌ସନରେ ମତେ ଅଭିବାଦନପୂର୍ବକ ଗୁରୁଦକ୍ଷିଣାସ୍ୱରୂପ ଖଣ୍ଡିଏ ପ୍ରମୋସନ୍ ଅର୍ଡ଼ର୍ ମୋ ହାତକୁ ବଢ଼ାଇଦେଲେ ଏବଂ ହସ ହସ ମୁହଁରେ ମୋଠାରୁ ବିଦାୟ ନେଇ ସେକ୍ରେଟେରିଏଟ୍‌କୁ ଚାଲିଗଲେ । ଚିଫ୍ ସେକ୍ରେଟେରି ମିଷ୍ଟର ମ୍ୟାନ୍‌ସଫିଲ୍‌ଡ ମୋ ଅନନ୍ୟସୁଲଭ ଯୋଗ୍ୟତାର ପ୍ରତ୍ୟକ୍ଷ ପରିଚୟ ପାଇ ଅତିଶୟ ପ୍ରସନ୍ନ ହୋଇଥିଲେହେଁ ପ୍ରଶାସନିକ ବିଧିବିଧାନର ସରହଦ ମଧ୍ୟରେ ଆବଦ୍ଧ ରହିଥିବାରୁ ଏହି ପ୍ରମୋସନ୍ ଅର୍ଡ଼ର୍‌ରେ ମତେ ଯାହାତେମାତ୍ର ଉପରକୁ ଟେକିଦେଇପାରିଲେ । ମୋର ସମ୍ଭାବନାମୟ ଭବିଷ୍ୟତ୍ ତାଙ୍କର ସୁଦୃଷ୍ଟିର ତଥା ନୀଳମଣିବାବୁଙ୍କ ଶୁଭେଚ୍ଛାର ପରିସର ମଧ୍ୟରେ ବନ୍ଧା ବାନ୍ଧି ରହିଥିବାରୁ ୧୯୪୨ ମସିହାରେ ଖ୍ୟାତନାମା ସୁପରିଣ୍ଟେଣ୍ଡେଣ୍ଟ ମିଷ୍ଟର ଏମ୍. ଏଚ୍. ଖାନ୍‌ଙ୍କ ନିରପେକ୍ଷ ବଳିଷ୍ଠ ବିଚାର ଯୋଗୁଁ ମୁଁ ଆଉ ଯାହାତେ ଉପରକୁ ଉଠି ସିନିଅର୍ ରିଡ଼ର୍ ହେବାର ମହାସୁଯୋଗ ପାଇଲି । ଶେଷରେ ୧୯୪୮ ସୁଦ୍ଧା ଉପରିସ୍ଥ ବରିଷ୍ଠାନ୍‌ଙ୍କୁ ଦକ୍ଷତାରେ ହଟାଇ ରିଡ଼ିଂ ସେକ୍‌ସନର ମୁଖ୍ୟ ଅଧୀକ୍ଷକ (Head Reader) ରୂପେ ଅଧିଷ୍ଠିତ ହେଲି । ମର୍ଯ୍ୟାଦାବନ୍ତ ବଂଶର ଦାୟାଦ, M. A. ପାସ୍ ପରେ ଦୀର୍ଘ ଛଅ ବର୍ଷ କାଳ ଇଂଲଣ୍ଡାଦି ପାଶ୍ଚାତ୍ୟ ଦେଶରେ ସର୍ବୋଚ୍ଚ ମୁଦ୍ରଣଶିକ୍ଷାପ୍ରାପ୍ତ ଏହି ଖାନ୍‌ସାହେବଙ୍କ ନିକଟରେ ମୁଁ ଅଶେଷ-ଭାବରେ ଋଣୀ । ସେ ମୋ ଯୋଗ୍ୟତା, କର୍ମପ୍ରଖରତା, ବିଶ୍ୱସ୍ତତା, ସଚ୍ଚୋଟତା, ଖାଣ୍ଟି ସତ୍ୟଭାଷିତା ଓ ପାଣ୍ଡିତ୍ୟର ଯଥାର୍ଥ ମୂଲ୍ୟାଙ୍କନ କରିଥିବାହେତୁ ହିଁ ମତେ ସର୍ବଶେଷ ଓ ସର୍ବଶ୍ରେଷ୍ଠ ପାହ୍ୟାର 'ଓଭର୍‌ସିଅର୍' ପଦବୀଟି ପୁରସ୍କାର ମିଳିଥିଲା । ଏହି ଆସନଟି ଅଣ-ଗେଜେଟେଡ୍‌ରୂପେ ମୂଳରୁ ଗଢ଼ିଆସୁଥିଲେହେଁ ଏହାର ଗୁଣାତ୍ମିକ ସମ୍ମାନ ଥିଲା ସର୍ବାଧିକ । ଯାବତୀୟ ବୈଷୟିକ ବ୍ୟାପାରରେ ଓଭରସିଅର୍ ହିଁ ସୁପରିଣ୍ଟେଣ୍ଡେଣ୍ଟ୍‌ଙ୍କର ଦକ୍ଷିଣ ହସ୍ତ । ଏ ସଂକ୍ରାନ୍ତ ସମସ୍ତ ଫାଇଲ୍ ଓ କେତେକ ନିର୍ଦ୍ଦିଷ୍ଟ ବିଷୟର ଗୋପନୀୟ ଫାଇଲ୍ ସିଧାସଳଖ ସୁପରିଣ୍ଟେଣ୍ଡେଣ୍ଟ୍ ଓ ଓଭରସିଅର୍‌ଙ୍କ ମଧ୍ୟରେ ଆଦାନପ୍ରଦାନ ହେଉଥିଲା । ଏହି ପ୍ରଥାଟି ଭାରତ ସରକାରଙ୍କ ଦିଲ୍ଲୀ ଗଭର୍ଣ୍ଣମେଣ୍ଟ ପ୍ରେସ୍ ଢାଞ୍ଚାର ଅନୁକରଣରେ ଆଂଶିକ କାର୍ଯ୍ୟକାରୀ ହେଉଥାଏ ।

ଅର୍ଥ ବିଭାଗର ସର୍ବାଙ୍ଗୀଣ କର୍ତ୍ତୃତ୍ୱାଧୀନରେ ସରକାରୀ ମୁଦ୍ରଣାଳୟ ପରିଚାଳିତ ହେଉଥିବା ବେଳର ଗୋଟିଏ ଘଟଣା ଏଠାରେ ଉଲ୍ଲେଖନୀୟ । ନିର୍ବାଚନ-ଲଢ଼େଇରେ ବିପୁଳ ବିଜୟ ହାସଲ କରି ୧୯୩୭ରେ ଓଡ଼ିଶାର କଂଗ୍ରେସ୍ ଦଳ ନବଗଠିତ ପ୍ରଦେଶର ଶାସନବଲ୍‌ଗା ହାତକୁ ନେଇଥିଲେ । ଦଳୀୟ ବିଧାୟକମାନଙ୍କଦ୍ୱାରା ନେତାରୂପେ ନିର୍ବାଚିତ ହୋଇ ବିଶ୍ୱନାଥ ଦାସ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଢ଼ିଥିଲେ ଏବଂ ନିଜେ ହୋଇ-ଥିଲେ ତହିଁର ପାଟମନ୍ତ୍ରୀ (Premier) । 'ଦେଖଇ ନେଜ ଯାହା ଚଉଦଗର, ସେ

ସଙ୍ଗର ଅଟଇ ମୁଁ ଅଧୀଶ୍ୱର' ବୋଲି ଆପଣାକୁ ବିଚାରି ସେ ଦୁର୍ଭାଗ୍ୟବଶତଃ ଏକ ଅତି ଅପ୍ରୀତିକର ବିଷମ ବିସମ୍ବାଦ ଭିଆଇବସିଲେ । ଗଭର୍ଣ୍ଣମେଣ୍ଟ ପ୍ରେସ୍‌ରେ ସେପର୍ଯ୍ୟନ୍ତ ବିଧିବଦ୍ଧ ସୁପରିଣ୍ଟେଣ୍ଡେଣ୍ଟ ନିଯୁକ୍ତିର ବ୍ୟବସ୍ଥା ହୋଇନଥାଏ । ତେଣୁ ପ୍ରେସ୍‌ପାଇଁ ଜଣେ ହେଡ୍ ରିଡର୍ ଆବଶ୍ୟକ ବୋଲି ଅର୍ଥବିଭାଗର ସେକ୍ରେଟେରି ଦାୟିତ୍ୱରେ ଥିବା ମ୍ୟାନ୍‌ସ-ଫିଲଡ଼ ସାହେବ (ଚିଫ୍ ସେକ୍ରେଟେରି)ଙ୍କ ସ୍ୱାକ୍ଷରରେ ଗୋଟିଏ ବିଜ୍ଞାପନ ନାମୀ ଖବର-କାଗଜମାନଙ୍କରେ ପ୍ରକାଶିତ ହୋଇଥିଲା । ପ୍ରାର୍ଥୀମାନଙ୍କ ଯୋଗ୍ୟତା 'କୌଣସି ସରକାରୀ ପ୍ରେସ୍‌ରେ ନ୍ୟୂନପକ୍ଷେ ପୂର୍ବ ପାଞ୍ଚବର୍ଷ ସିନିଅର୍ ରିଡ଼ର୍ ରୂପେ କାମ କରିଥିବାର ଅଭିଜ୍ଞତା' ବୋଲି ଉକ୍ତ ବିଜ୍ଞାପନରେ ସ୍ପଷ୍ଟ ନିର୍ଦ୍ଧାରିତ ହୋଇଥିଲା ।

ଜଣେ ହେଡ୍ ରିଡ଼ର୍‌ର ବୈଷୟିକ ଯୋଗ୍ୟତା ଅତି ବ୍ୟାପକ । କର୍ଣ୍ଣ, ଚକ୍ଷୁ, ମସ୍ତିଷ୍କ, ହସ୍ତ ଏ ସମସ୍ତ ଇନ୍ଦ୍ରିୟଙ୍କୁ ସମନ୍ୱିତ ଭାବରେ ଏକସଙ୍ଗେ ଦ୍ରୁତ ପ୍ରୟୋଗ କରିପାରିବାର ପାରଙ୍ଗମତା ଏହି ପଦବୀର ମୌଳିକ ଯୋଗ୍ୟତାରୂପେ ପରିଗଣିତ । କେବଳ ପାଣ୍ଡିତ୍ୟ ବା ବିଶ୍ୱବିଦ୍ୟାଳୟ ଡିଗ୍ରୀକୁ ଏ କ୍ଷେତ୍ରରେ କଦାପି ଯୋଗ୍ୟତାପଦବାଚ୍ୟ ବୋଲି ଧରିଯାଇ ନପାରେ । ହେଡ୍‌ରିଡ଼ର୍‌ର ପ୍ରଧାନତମ ଅମୋଘ ଆୟୁଧ ହେଉଛି ଚକ୍ଷୁର ତୀବ୍ର ଜ୍ୟୋତିଃଶକ୍ତି । ବିନା ଚଷମାରେ (ଖାଲି ଆଖିରେ) ଅବଲୀଳାକ୍ରମେ ପ୍ରୁଫ୍ ସଂଶୋଧନ କରିପାରିବା ଭଳି ତୀକ୍ଷ୍ଣ ଆଖିର ଛିଦ୍ରଠାର ପ୍ରଧାବନଶୀଳତା ଓ ଭୁଲ୍‌ଧରିବାରେ ନିଃସନ୍ଦେହ କୃତକାର୍ଯ୍ୟତା ତାର ଯୋଗ୍ୟତାର ଶ୍ରେଷ୍ଠ ପରିମାପକ । 'ମକ୍ଷିକାଃ ବ୍ରଣମିଚ୍ଛନ୍ତି' ରୀତିରେ ମୁଦ୍ରଣୀୟ ପାଣ୍ଡୁଲିପିରୁ, ଗୋଟାଏ ହେଉ ପଛକେ, ବାଲୁଙ୍ଗା ବାହାର କରିବାରେ ଯାହାର ଜ୍ଞାନ ଶାଣିତ ଓ ବୁଦ୍ଧି କୁଶାଗ୍ର, ତାହାକୁ ହିଁ ପ୍ରକୃତ ପ୍ରୁଫ୍ ସଂଶୋଧକ କୁହାଯିବ ।

ଏହି ମାନଦଣ୍ଡରେ ପରିମାପ କଲେ ଯେତେ ପ୍ରାର୍ଥୀ ହେଡ୍ ରିଡ଼ର୍ ପୋଷ୍ଟପାଇଁ ଦରଖାସ୍ତ କରିଥିଲେ, ସେମାନେ ପ୍ରାୟ ସମସ୍ତେ ଅଧୂଆ ମୂଳା । ଧରାଧରି କଲେ କାଳେ ବାଜିଯିବ, ଏହି ଆଶାରେ ପାରୁପର୍ଯ୍ୟନ୍ତ ଉଦ୍ୟମ ହିଁ ସେମାନଙ୍କ ମଧ୍ୟରୁ କେତେକ ବ୍ୟକ୍ତିଙ୍କର ପୌରୁଷବିକ୍ରମ ଯୋଗ୍ୟତା ! ସବୁଜ ସାହିତ୍ୟକ କାଳନ୍ଦୀଚରଣ ପାଣିଗ୍ରାହୀ ସେହି ଆଶାୟୀ ପ୍ରାର୍ଥୀ କେତେକଙ୍କ ମଧ୍ୟରୁ ଜଣେ । କାଳନ୍ଦୀଚରଣ ହେଉଛନ୍ତି କମ୍ୟୁନିଷ୍ଟ ନେତା ଭଗବତୀଚରଣ ପାଣିଗ୍ରାହୀଙ୍କର ମଝିଆଁ ବଡ଼ଭାଇ । ଏଣୁ ଅଗ୍ରଜଙ୍କର ସରକାରୀ ନୌକରି ବୟସ ଏକ ଦଶନ୍ଧି ପୂର୍ବରୁ ଅତିକ୍ରାନ୍ତ ହୋଇଯାଇଥିଲେହେଁ ତାଙ୍କୁ ଅଧମଉଦ୍ଧାରଣ ସରକାରୀ ଛାପାଖାନା ଛାଉଣିରେ କୌଣସିମତେ ଢୁକାଇଦେବାକୁ ଭଗବତୀଚରଣ ଆନ୍ତରିକତାର ସହିତ ଲାଗିପଡ଼ିଲେ । ଏଥିପାଇଁ ଅବଶ୍ୟ ନିଜ ରାଜନୀତିକ ମର୍ଯ୍ୟାଦା ଓ ସ୍ୱାଭିମାନକୁ ଧୂଳିରେ ଗଡ଼ାଇଦେବାକୁ ପଡ଼ିଲା ନାହିଁ । ଭଗବତୀଚରଣ ବିକାଶ ପାଟ-ମନ୍ତ୍ରୀଙ୍କର ଦ୍ୱାରସ୍ଥ ହେଲେ । ତାଙ୍କୁ ଭେଟିବାର ଅଭିପ୍ରାୟ ମୁକ୍ତ ହୃଦୟରେ ବ୍ୟକ୍ତ କଲେ । ପାଟମନ୍ତ୍ରୀ ବିଶ୍ୱନାଥ ଦାଶ ସ୍ୱୀୟ ବଡ଼ତ୍ୱର ଓଜନ ଦେଖାଇ ଭଗବତୀଙ୍କୁ ବାଧିତ କରିବାକୁ ଶ୍ଳାଘ୍ୟ ମଣିଲେ ଏବଂ ଅର୍ଥବିଭାଗ ସେକ୍ରେଟେରି ପି. ଟି. ମ୍ୟାନ୍‌ସଫିଲ୍‌ଡଙ୍କ ଦପ୍ତରରୁ ସଂପୃକ୍ତ ଫାଇଲ୍‌ଟି ତଲବ କରିନେଲେ । ସାକ୍ଷାତ୍‌କାର (interview) ବା ଲିଖିତ ପରୀକ୍ଷା

(written test) ପ୍ରଭୃତ ବୈଧାନକ ପରୀକ୍ଷାସବୁ ଜଳାଞ୍ଜଳ ଦେଇ ଓ ସ୍ୱୀକୃତ ଯୋଗ୍ୟତାକୁ ଅବଜ୍ଞା କର ନରଙ୍କୁଶଭାବରେ କାଳନ୍ଦୀଚରଣ ପାଣିଗ୍ରାହୀଙ୍କୁ ହେଡ୍ ଗଡ଼ର୍ ପଦପାଇଁ ଯୋଗ୍ୟତମ ପ୍ରାର୍ଥୀ ବୋଲ ମନ୍ତବ୍ୟ ଦେଇ ତୁରନ୍ତ ତାଙ୍କ ନକଟକୁ ନଯୁକ୍ତପତ୍ର ପଠାଇବାକୁ ଆଦେଶ ଦେଲେ । ନର୍ଭୀକ ମ୍ୟାନ୍ସଫିଲ୍ଡ କନ୍ତୁ କ୍ଷୁବ୍ଧ ହୋଇ ଏହ ଅବୈଧାନକ ଆଦେଶ ବରୋଧରେ ସ୍ୱର ଉତ୍ତୋଳନପୂର୍ବକ ପାଟମନ୍ତ୍ରୀଙ୍କୁ ଏହ ମର୍ମରେ ଲଖିତଭାବରେ ଅନୁରୋଧ କଲେ—କାଳନ୍ଦୀଚରଣ ପାଣିଗ୍ରାହୀଙ୍କ ଅପେକ୍ଷା ଯଥେଷ୍ଟ ଅଧିକ ଯୋଗ୍ୟ ପ୍ରାର୍ଥୀ ଅଛନ୍ତି, ତେଣୁ ପ୍ରତ୍ୟକ୍ଷ ପରୀକ୍ଷା ଓ ନରପେକ୍ଷ ସମୀକ୍ଷାଦ୍ୱାରା ପ୍ରକୃତ ଯୋଗ୍ୟତମ ପ୍ରାର୍ଥୀ ବଛା ହେବାପାଇଁ ପୁନର୍ବିବେଚିତ ଆଦେଶ ଦଆଯାଉ ।

ଏ ପ୍ରକାର ପ୍ରତବାଦାତ୍ମକ ମନ୍ତବ୍ୟରେ ଆତ୍ମମନ୍ୟ ପାଟମନ୍ତ୍ରୀ କ୍ଷିପ୍ତ ହୋଇଉଠିବା ଅତ ସ୍ୱାଭାବକ । ପାଟମନ୍ତ୍ରୀ ତାଙ୍କର ଆଦେଶ ଅପରବର୍ତ୍ତନୀୟ ଓ ଅବଲମ୍ବେ ପାଳନୀୟ ବୋଲ ସ୍ପଷ୍ଟ ଭାଷାରେ ଲେଖିଦେଇ ମ୍ୟାନ୍ସଫିଲ୍ଡଙ୍କ ପାଖକୁ ଫାଇଲ୍ ଫେରାଇଦେଲେ । ଫଳରେ କାଳନ୍ଦୀଚରଣ ନଯୁକ୍ତପତ୍ର ପାଇ ହେଡ୍ ଗଡ଼ର୍‌ରୂପେ ପ୍ରେସ୍‌ରେ ଯୋଗଦେଲେ । ଅଗତ୍ୟା ମ୍ୟାନ୍ସଫିଲ୍ଡ ବାହାରକୁ ନୀରବ ରହଲେ ସିନା, ତାଙ୍କ ମନ ଭତରେ ଧର୍ମାସ୍ପଦମାନ ପ୍ରତର୍କ ସ୍ୱାଭିମାନଶୀଳତାର ଅବସାନ ହୋଇନାହିଁ । ପାଟମନ୍ତ୍ରୀଙ୍କ ଇଚ୍ଛାକୃତ ଦୁର୍ବିନୟର ଓ ଅନ୍ୟାୟ ଆଦେଶର ଯଥାର୍ଥ ପ୍ରତକରଣପାଇଁ ସେ ଉପଯୁକ୍ତ ସୁଯୋଗର ଆଗମନକୁ ପ୍ରତୀକ୍ଷା କର ରହଲେ । ତେଣୁ କାଳନ୍ଦୀଚରଣଙ୍କର ସରକାରୀ ଚାକରରେ ସ୍ଥାୟିତ୍ୱର ସମ୍ଭାବନା ଅନଶ୍ୱର ସୂତାଖିଅ-ଅଗରେ ଝୁଲରହଲ ।

ଶଙ୍କା-ଆଶଙ୍କାର ସଙ୍କଟ ମଧ୍ୟରେ କାଳନ୍ଦୀବାବୁ ୧୯୩୯ ପର୍ଯ୍ୟନ୍ତ ମାଡ଼ମକଚ ହୋଇ କୌଣସିକ୍ରମେ ଚଳଗଲେ । ସେହ ବର୍ଷ ଦ୍ୱିତୀୟ ବଶ୍ୱ-ମହାଯୁଦ୍ଧ ଆରମ୍ଭ ହୋଇଗଲା । ଭାରତ ଜାତୀୟ କଂଗ୍ରେସର ଏକ ଗୁରୁତ୍ୱପୂର୍ଣ୍ଣ ଜରୁରୀ ଅଧିବେଶନ ନଷ୍ପତ୍ତି ନେଲା ଯେ, କଂଗ୍ରେସ ସବୁ କ୍ଷେତ୍ରରେ ଅଫିସ୍ ବର୍ଜନ କର କର୍ତ୍ତୃତ୍ୱରୁ ଓହରଆସିବ । ତଦନୁଯାୟୀ ଅନ୍ୟ କେତେକ ପ୍ରଦେଶ ପର ଓଡ଼ିଶାର କଂଗ୍ରେସୀ ମନ୍ତ୍ରିମଣ୍ଡଳ ମଧ୍ୟ ଭାଙ୍ଗିଗଲା ଏବଂ ତାର ସମସ୍ତ ଅଂଶୀଦାର ସଦସ୍ୟ ଇସ୍ତଫାପତ୍ର ଦାଖଲ କର ନଜ ନଜର କ୍ଷମତାଗାଦରୁ ବାହାର ଆସିବାକୁ ବାଧ୍ୟ ହେଲେ । ପ୍ରତୀକ୍ଷିତ ସୁଯୋଗ ଏଥର ମ୍ୟାନ୍ସଫିଲ୍ଡ ସାହେବଙ୍କ ହାତମୁଠାକୁ ଆସିଗଲା । ଅସ୍ଥାୟୀଭାବରେ ନଯୁକ୍ତ ହୋଇଥିବା କାଳନ୍ଦୀଚରଣ ପାଣିଗ୍ରାହୀଙ୍କୁ ସେ ପଦଚ୍ୟୁତ କରଦେଲେ । ଦନେ ଯେଉଁ ଚାକର ଝଣ୍ଟି ତାଙ୍କୁ ପୁରସ୍କୃତ ହୋଇଥିଲ, ସେହ ଚାକରରୁ ଏବେ ସେ ଆଖିମିଟିକାରେ ବହିଷ୍କୃତ ହୋଇଗଲେ—ବଡ଼ମ୍ବନା ଓ ହଟହଟାକୁ ଗଳାମାଳ କରବା ହିଁ ତାଙ୍କ ଲଲାଟରେ ସେତେବେଳେ ଲେଖାଥିଲ ସିନା !

ଭଗବାନଙ୍କ ଲୀଳା ବଚତ୍ର, ସଦାକାଳେ ଅବୋଧ । ଭବତବ୍ୟ ସବୁର ଅଗୋଚର । ବଶ୍ୱନାଥବାବୁ ଯଦ ଅଧିକ କାଳ ପାଟମନ୍ତ୍ରୀରୂପେ ମହମାଗାଦରେ ରହଥା'ନ୍ତେ ଓ ତାଙ୍କ ପ୍ରସାଦରୁ କାଳନ୍ଦୀଚରଣ ନଜ ପଦରେ ସ୍ଥାୟୀ ଭାବରେ ମୁକରର ହୋଇଯାଇଥା'ନ୍ତେ,

ତାହାହେଲେ ମୋର ଜମୋନ୍ନତ-ମାର୍ଗ ଯେତେ ନିଷ୍କଣ୍ଟକ ଓ ସୁଗମ ହେବ, ସେପରି ହୋଇପାରିଥା'ନ୍ତା କି ନାହିଁ କିଏ କହିବ ? ସେଇଥିପାଇଁ ବୋଧହୁଏ ନ୍ୟାୟ ପ୍ରତିଷ୍ଠାତା ଭଗବାନ୍ ଚନ୍ଦ୍ର ଯେମିତି ବକ୍ର ପଥକୁ ସରଳ କରିଦେଲେ କି ?

## ଋତୁସଂହାର କାବ୍ୟ ଓ ଅନ୍ୟାନ୍ୟ ସାହିତ୍ୟ କୃତି—

ସୃଜନୀର ଦ୍ୱାଦଶବର୍ଷ (୧୯୪୮)ରେ ସଙ୍କଳ୍ପିତ ମନୋରଥ ପୂରି ହେଉ୍ ଚଉଦ୍ ପାହ୍ୟାଟି କରପଇତ ହୋଇଗଲା ପରେ କୃମ୍ଭକର୍ଣ୍ଣ-ନିଦ୍ରା ଭାଙ୍ଗି ମୁଁ ମୋର ପ୍ରାଣପ୍ରିୟ ସାରସ୍ୱତ ସଂସାରକୁ ଫେରିଲି । ସାହିତ୍ୟ ମଞ୍ଚରେ ଏଥର ଗୋଟାଏ କଠିନ କସରତର ଖେଳ ଦେଖାଇବି ବୋଲି ନିଷ୍ପତ୍ତି ନେଲି । ମହାକବି କାଳିଦାସଙ୍କ ଅନବଦ୍ୟ ରସକାବ୍ୟ 'ଋତୁସଂହାର'କୁ ଉପଜୀବ୍ୟରୂପେ ଗ୍ରହଣକଲି । ତାହାର ଏପରି ସରସ ମୁକ୍ତ ଅନୁବାଦଟିଏ କରିବି, ଯହିଁରେ ନିଜ ଉଦ୍ଭାବିତ ବିଭିନ୍ନ ଗୀତିଛନ୍ଦରେ ଏକ ନୂଆ ପ୍ରକାର ପ୍ରାନ୍ତଯମକର ଜାକଜମକ ବିଳସିତ ହୋଇ ପାଠକପାଠିକାମାନଙ୍କ ମନ-ବୃନ୍ଦାବନକୁ ଲୟମୟ ନୃତ୍ୟ-ସ୍ୱରର ରସପ୍ଲାବନରେ ବୁଡ଼ାଇଦେବ ।

ଏକାଦିକ୍ରମେ ତେର ଦିନ ଅବଦରବିଶିଷ୍ଟ ପୂଜାବକାଶ ଆସିଗଲା । ସେତେବେଳେ ମୋ' ବାସକୁଳସ୍ଥିତି ଥାଏ ପୁରା ଫାଙ୍କା । ପିଲାପିଲି ଚାଲିଯାଇଥାନ୍ତି ଦୂର ମଫସଲକୁ । ବସାଟିରେ ଥାଉଁ ଦୁଇଜଣ ମାତ୍ର—ମୁଁ ଓ ପୂଝାରି । ସେହି ନିଭୃତ ପରିବେଶ ହିଁ ଈପ୍ସିତ କାବ୍ୟାନୁବାଦପାଇଁ ମତେ ଦେଲା ପ୍ରକୃଷ୍ଟତମ ସୁଯୋଗ । ଆଗ୍ରାଧ୍ୟ ଇଷ୍ଟଦେବତା ସିଦ୍ଧିଦାତା ଗଣେଶମୂର୍ତ୍ତିଙ୍କୁ ନିବେଦି 'ଋତୁସଂହାର'ର ମୁକ୍ତାନୁବାଦ ଅନୁକୂଳ କରିଦେଲି । ତାଙ୍କରି ଆଶୀର୍ବାଦରୁ ଓ ମା' ବାଗ୍‌ଦେବୀଙ୍କ ଅନୁକମ୍ପାରୁ ନୀରବ ନିସ୍ତବ୍ଧ ଛଅଟି ରାତ୍ରିରେ (ନଅଟାରୁ ନିଶାନ୍ତ ମଧ୍ୟରେ) 'ଗ୍ରୀଷ୍ମବର୍ଣ୍ଣନମ୍'ଠାରୁ 'ବସନ୍ତବର୍ଣ୍ଣନମ୍' ପର୍ଯ୍ୟନ୍ତ ଛଅଟିଯାକ ସର୍ଗର ସ୍ୱଚ୍ଛନ୍ଦ ସ୍ୱାଧୀନ ଅନୁବାଦ ଶେଷ ହୋଇଗଲା । ପ୍ରତ୍ୟେକ ସର୍ଗପାଇଁ ଗୋଟିଏ ଗୋଟିଏ ନୂତନ ମାତ୍ରିକ ଗୀତଛନ୍ଦ ମନରୁ ଉଦ୍ଭାବନ କରିଥିଲି ।

ପାଣ୍ଡୁଲିପି ଅବସ୍ଥାରେ ଥିଲାବେଳେ ସର୍ବମାନ୍ୟ ମନୀଷୀ ପଣ୍ଡିତ ନୀଳକଣ୍ଠ ଦାସ ସ୍ୱାଦ୍ୟ ରୁଚିର ଏହି ଅନୁବାଦଟି ସ୍ୱେଚ୍ଛା କି ଆଗ୍ରହର ସହିତ ପାଠକରି ବିଶେଷ ମୁଗ୍ଧ ହୋଇ-ଥିଲେ ଏବଂ ଆଦ୍ୟୋପାନ୍ତ ପ୍ରତ୍ୟେକ ପଦ (stanza)ର ପଂକ୍ତିମାନଙ୍କ ଶେଷରେ ବିଳସିତ ଯେଉଁ ଅଭିନବ କାବ୍ୟିକ ଅଳଙ୍କାରଟି ଦକ୍ଷତାର ସହ ପ୍ରବର୍ତ୍ତିତ ହୋଇଛି, ତାହାକୁ ଆଖ୍ୟା ଦେଇଥିଲେ 'ପ୍ରାନ୍ତଯମକାଭାସ' । ଓଡ଼ିଆ ଅଳଙ୍କାର ଶାସ୍ତ୍ରକୁ ଏହା ନିଃସନ୍ଦେହରେ ସମୃଦ୍ଧତର କରିବ ବୋଲି ସେ ମତ ବ୍ୟକ୍ତ କରିଥିଲେ । ସଂସ୍କୃତ ମୂଳ ରଚନାରେ ଥିବା ନିରୁଜ ରସଭଣ୍ଡାର ଘୋଡ଼ଣୀକୁ କାଢ଼ିଦେଇ ତନ୍ମଧ୍ୟସ୍ଥ ଅମୃତକୁ ଜନସାଧାରଣଙ୍କୁ ଚଖାଇବାର ଯେଉଁ ସାଧୁ ବ୍ୟବସ୍ଥା କରାଯାଇଛି, ତାହା ଏକ ସାର୍ଥକ ଓ ପ୍ରାମାଣିକ ଉଦ୍ୟମ ବୋଲି ମଧ୍ୟ ମହାମନୀଷୀ ନୀଳକଣ୍ଠ ପ୍ରକାଶ କରିଥିଲେ ।

ଛଠା ପାଣ୍ଡୁଲେଖଟିକୁ ମଝେ ମଝେ ଫୁରୁସତ୍ ବଖତରେ ମଜାମଜା ମଠାମଠି କରିବାକୁ ପଡ଼ୁଥିଲା । 'ବର୍ଷାବର୍ଣ୍ଣନମ୍' ସର୍ଗର ପଦ ୧୪ ଶ୍ଳୋକକୁ ଅନୁବାଦ କଲାବେଳେ ଗୋଟାଏ ଦୁର୍ଲଙ୍ଘ୍ୟ ପ୍ରତିବନ୍ଧକର ସମ୍ମୁଖୀନ ହୋଇଥିଲି । ଶ୍ଳୋକଟିର ରୂପ ଏହିପରି :

ବିପନ୍ନ-ପୁଷ୍ପାଂ ନଳିନୀ ସମୁତ୍ସୃଜ୍ୟ
ବିହାୟ ଭୃଙ୍ଗାଃ ଶ୍ରୁତିହାରି-ନିସ୍ୱନାଃ
ପତନ୍ତି ମୂଢ଼ାଃ ଶିଖିନାଂ ପ୍ରନୃତ୍ୟତାଂ
କଳାପଚକ୍ରେଷୁ ନବୋତ୍ପଳାଶୟା ।

ଗ୍ରୀଷ୍ମଋତୁରେ ପୁଷ୍କରିଣୀ ପୁରା ଶୁଖିଯାଇଥିବାରୁ ଭ୍ରମର ତାର ପ୍ରିୟସଖୀ ପଦ୍ମପୁଷ୍ପକୁ ଭେଟିପାରି ନଥିଲା । ଆଦ୍ୟ ଆଷାଢ଼ର ଆସାରପାତ ଯୋଗୁଁ ସେହି ପୁଷ୍କରିଣୀରେ ପଦ୍ମପୁଷ୍ପ ପ୍ରସ୍ଫୁଟିତ ହେବାରୁ ଦୀର୍ଘ ବ୍ୟବଧାନ ପରେ ପ୍ରିୟବାନ୍ଧବୀକୁ ସନ୍ଦର୍ଶନ କରିବ ବୋଲି ପ୍ରେମାନ୍ଧ ଭ୍ରମର ଉଡ଼ି ଉଡ଼ି ଯାଉଥିଲାବେଳେ ନୃତ୍ୟରତ ମୟୂରର ପୁଚ୍ଛରେ ନିପତିତ ହେଲା । ଶ୍ଳୋକଟିର ମାମୁଲି ଅର୍ଥ ଏତିକିମାତ୍ର ଏଥିରୁ ଜଣାଯାଉଛି ବୋଲି ମୁଁ ଧରିନେଲି । କିନ୍ତୁ 'ପଦ୍ମକୁ ଭେଟିବା ଲକ୍ଷ୍ୟରେ ଧାଉଁଥିବା ଭ୍ରମର ଅର୍ଦ୍ଧପଥରେ କାହିଁକି ମୟୂରପୁଚ୍ଛରେ ପଡ଼ିଲା', ଏହାର କାରଣ ସମ୍ବନ୍ଧରେ କୌଣସି ଇଙ୍ଗିତ ଶ୍ଳୋକଟିରୁ ପାଇପାରିଲି ନାହିଁ । ବହୁତ ମଥା ଖେଳାଇଲି, ତଥାପି ମଗଜରୁ କିଛିହେଲେ ବାହାରିଲା ନାହିଁ । ଅନୁବାଦ କାର୍ଯ୍ୟକୁ ଆଗେଇନେବା ଉଦ୍ଦେଶ୍ୟରେ ଅଗତ୍ୟା ଗୋଟିଏ ପଦରେ ଶ୍ଳୋକଟିର ଶୁଷ୍କ ଆକ୍ଷରିକ ତର୍ଜମାକୁ ଆବଦ୍ଧ କରି ଟିପିରଖିଲି ଏବଂ ଭବିଷ୍ୟତରେ ଶ୍ଳୋକଟିର ଅନ୍ତର୍ନିହିତ ଭାବକୁ ପୂର୍ଣ୍ଣ ଅବବୋଧ କଲାପରେ ନୀରସ ଆକ୍ଷରିକ ତର୍ଜମାକୁ ସରସ ମୁକ୍ତ ଅନୁବାଦରେ ରୂପାନ୍ତରିତ କରିବି ବୋଲି ମନସ୍ଥ କରି ମାର୍ଜିନ୍‌ରେ ବଡ଼ ପ୍ରଶ୍ନବାଚୀଟିଏ ଆଙ୍କିଦେଇ ଉତ୍ତର-ଅନୁସନ୍ଧାନପାଇଁ ଛାଡ଼ିଦେଲି ।

ଅନୂଦିତ ଛଅଟିଯାକ ସର୍ଗର ମାର୍ଜନ ମାଠିଆ କାର୍ଯ୍ୟ ସନ୍ତୋଷଜନକ ଭାବରେ ସମାପନ କରିଦେଲି—କେବଳ 'ବର୍ଷା'ର ସେହି ୧୪ଶ ପଦଟି ମୁଣ୍ଡବ୍ୟଥା ହୋଇ ରହିଥାଏ । ପଣ୍ଡିତ କୃପାମଣି ଦାଶ, ପଣ୍ଡିତ ଶ୍ରୀଧର ନନ୍ଦ, ପ୍ରଫେସର୍ କରୁଣାକର କର, ରାୟବାହାଦୁର ଆର୍ତ୍ତବଲ୍ଲଭ ମହାନ୍ତି, ପଣ୍ଡିତ ଆନନ୍ଦଚନ୍ଦ୍ର ମିଶ୍ର ପ୍ରମୁଖ ଅନେକ ବିଶାରଦଙ୍କୁ ମୋ ସନ୍ଦେହ ସ୍ଥଳର ସ୍ପଷ୍ଟୀକରଣପାଇଁ ପଚାରିଲି, କେହି ମୋ ମୁଣ୍ଡବ୍ୟଥା ଦୂର କରାଇପାରିଲେ ନାହିଁ—ନୀରବତା ହିଁ ହୋଇଥିଲା ସବୁରି ତୁଣ୍ଡର ଉତ୍ତର । ଦୁଶ୍ଚିନ୍ତା ମୋର ଦିନକୁ ଦିନ ବଢ଼ିବାରେ ଲାଗିଥାଏ । ଶେଷରେ ଦେବୀକୃପାରୁ ଯେପରି ଭାବରେ ହଠାତ୍ ମୋର ସନ୍ଦେହମୋଚନ ହେଲା, ତାହାର ରୋମାଞ୍ଚକର ବୃତ୍ତାନ୍ତ ଯେକୌଣସି ଲୋକକୁ ବିସ୍ମୀଭୂତ କରିବ ।

ଏକ ତମୋମୟୀ ମାଘୀ ରଜନୀର ତୃତୀୟ ପ୍ରହର, ସମୟ ଦୁଇଟାରୁ ଅଢ଼େଇଟା ମଧ୍ୟରେ । ତୂଳତଳ୍ପିତ ଖଟଶଯ୍ୟାରେ ମୁଁ ଗାଢ଼ ନିଦ୍ରାଭିଭୂତ । ଶୈତ୍ୟପ୍ରକୋପ-

ନିବାରଣାର୍ଥ ସର୍ବାଙ୍ଗ ମୋର ଘନକମ୍ବଳାବୃତ । କକ୍ଷର କପାଟ ଓ ବାତାୟନମାନ ଭିତର ପଟୁଁ ରୁଦ୍ଧ । ଏହି ଅବସ୍ଥାରେ ଗୋଟିଏ ସ୍ୱପ୍ନ ଦେଖିଲି ମୁଁ । ସ୍ୱପ୍ନାରମ୍ଭର ଦୃଶ୍ୟ ଅତି ଅଦ୍ଭୁତ । ଅକସ୍ମାତ୍ କେ ଖିଲମିବଦ୍ଧ ରୁଦ୍ଧ କବାଟର ଦୁଇ ଫାଳଯାକ କାନତାବଦାକାଏ ପ୍ରଚଣ୍ଡ ଶବ୍ଦରେ ଦ୍ୱିପାର୍ଶ୍ୱସ୍ଥ କାନ୍ଥଧାରରେ ବାଡ଼େଇହୋଇଯାଇ ଠିଆମେଲା ହୋଇଗଲା । ଅନ୍ଧାରବୋଳା ଗୃହକାନ୍ଥ, ଛାତତଳ ଓ ଗୃହତଳ ବିପୁଳ ଜ୍ୟୋତ୍ସ୍ନାଲୋକର ସ୍ନିଗ୍ଧ ଛଟାରେ ସହସା ତରଙ୍ଗାୟିତ ହୋଇଉଠିଲା । ଝଲସିତ ଆଖିକି ମୋର ବିସ୍ମୟରେ ବୁଡ଼ାଇଦେଇ କକ୍ଷବକ୍ଷରେ ଉଭା ହୋଇଗଲେ ଏକ ଜ୍ୟୋତିରୂଦ୍ଭାସିତା ଦେବୀ—ପ୍ରଶାନ୍ତମୂର୍ତ୍ତି, ପ୍ରସନ୍ନ-ବଦନା, ଶୁଭ୍ରାଙ୍ଗୀ, ଶୁକ୍ଲାମ୍ବରା, ନିରଳଙ୍କାରା । ସ୍ଥିର ଦୃଷ୍ଟିରେ ମୋ ମୁହଁକୁ ଅନାଇ ତର୍ଜନୀ ସଙ୍କେତ କହୁଛନ୍ତି 'ଏଇ ସାମାନ୍ୟ କଥାଟାକୁ ବୁଝିପାରୁନାହୁଁ !' କହୁଁ କହୁଁ ସ୍ୱପ୍ନଟା ମିଳେଇଗଲା । ହାଉଳି ଖାଇଲାପରି ଚମକି ଉଠିପଡ଼ିଲି ମୁଁ । ଗୃହିଁଦେଲିବେଲକୁ········ ହାୟ, ଦେବୀ ଅନ୍ତର୍ଦ୍ଧାନ ! ଶୟନକକ୍ଷଟି ପୂର୍ବବତ୍ ନୀରନ୍ଧ୍ର ଅନ୍ଧକାର—କବାଟ, ଝରକା ସବୁ ଖିଲମିବଦ୍ଧ । କିଏ ତେବେ ଏହି ନିରାଭରଣା ଶୁକ୍ଲବସନା ସ୍ୱପ୍ନାଗତା ଜ୍ୟୋତିର୍ମୟୀ ଦେବୀ ? ମୁଁ ବୁଝିପାରୁ ନଥିବା କେଉଁ ପ୍ରସଙ୍ଗ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶି ମତେ ଚେତେଇ-ଦେଇଗଲେ ସେ ? ଖଟରୁ ଓହ୍ଲାଇଆସି ଭକ୍ତହୃଦବଳାସିନୀ ସେହି ବରାଭୟବିଧାୟିନୀ ଦେବୀଙ୍କ ଉଦ୍ଦେଶ୍ୟରେ ମଥା ଲେଟାଇ ପ୍ରଣତି ଜଣାଇଲି । ଏକଧ୍ୟାନରେ ବସି ମନନ କଲାପରେ ସ୍ଥିରସିଦ୍ଧାନ୍ତରେ ଉପଲବ୍ଧି କଲି, ଏହି ସ୍ୱପ୍ନମୂର୍ତ୍ତି ନିଶ୍ଚୟ ସ୍ୱୟଂ ବାକ୍ୟଦେବୀ ସରସ୍ୱତୀ—ମା ଦୟାପରବଶ ମୁଁ ବୁଝିପାରୁ ନଥିବା ଶ୍ଳୋକଟିକୁ ଲକ୍ଷ୍ୟ କରି ମତେ ଚେତେଇଦେବା ଛଳରେ ବତେଇଦେବାର ଆଶୀର୍ବାଦବାଣୀ ହିଁ ଶୁଣାଇଗଲେ ।

ବାଙ୍ମୟୀ ବୀଣାପାଣିଙ୍କ କରୁଣାସିକ୍ତ ଉଦ୍‌ବୋଧନୀର ମହିମାନ୍ୱିତ ପ୍ରଭାବ ମତେ ଏପରି ଉଦ୍‌ଭ୍ରାନ୍ତ କରିପକାଇଲା ଯେ, ମୁଁ ମାଆର ଆଶୀର୍ବାଦବାଣୀକୁ ତତ୍‌କ୍ଷଣେ କାର୍ଯ୍ୟରେ ପ୍ରତିଫଳିତ କରିବାକୁ ଅଧୀର ହୋଇପଡ଼ିଲି । ଲ୍ୟାମ୍ପ୍ ଜଳାଇ ପାଣ୍ଡୁଲେଖର 'ବର୍ଷା' ୧୪ଶ ପଦ ଥିବା ପୃଷ୍ଠାକୁ ବାହାରକଲି ଏବଂ ନିମୀଳି ନେତ୍ରରେ ବାଗୀଶ୍ୱରୀଙ୍କ ସ୍ମରଣା କରୁ କରୁ ଭ୍ରମର ଭ୍ରମରେ ପଦ୍ମପୋଖରି ବଦଳରେ ମୟୂରପୁଚ୍ଛରେ ପଡ଼ିଯିବାର କାରଣଟି ଚହଟ ବିଜୁଳି ସଦୃଶ ମୋ ମାନସାକାଶରେ ଝଟକିଉଠିଲା । ସେହି ମୁହୂର୍ତ୍ତିରେ ଆକ୍ଷରିକ ଅନୁବାଦ ପଦଟିକୁ କାଟିଦେଇ ତା' ଜାଗାରେ ବର୍ଣ୍ଣନାର ଅନ୍ତର୍ନିହିତ ଅସ୍ଫୁଟ ଗୂଢ଼ତାକୁ ବିଶ୍ଳେଷଣପୂର୍ବକ ନିମ୍ନମତେ ଦୁଇ ପଦରେ ଝେଲେଇଦେବା ଫଳରେ କବିକଳ୍ପିତ ଭାବର ପରିପ୍ରକାଶ ପୂର୍ଣ୍ଣସ୍ଫୁଟ ହୋଇଗଲା :

ଅମ୍ବରୁଁ ଘନ ଘନ ଅମ୍ବୁରେ ବରଷି<br>
ଭରିଦିଏ ଘନ ମେଘେ ପଦ୍ମିନୀ ସରସୀ

ବିକଚ ନଳିନକୁଳ
ବିକ୍ଷୋଭେ ସମାକୁଳ
ଶିଶିରର ମୁଖେ ତାର     ବ୍ୟଥା ଉଦ୍ବେ ପରଶି
ଘନଧାରେ ଭରେ ଯେବେ ସରସୀ ।
ମଧୁ ସ୍ୱନେ ମଧୁଲିଟ     ଧାଏଁ ଦୂରୁଁ ସରାଗେ
ଉନ୍ମାଦେ ଲୋଟିବାକୁ     ଶତଦଳ-ପରାଗେ
ନଟନ କଳାପିମାନେ
ସୁନୀଳ ସରସୀ କୂଳେ
ବିହ୍ୱଳେ ପଡ଼େ ତେଣୁ     ଚନ୍ଦ୍ରକ-ମାରାଗେ
ପଙ୍କଜ ଖେଳେ ଭରି ସରାଗେ ।

ସେତେବେଳେ ମୁଖିଆ ପାଠ୍ୟପୁସ୍ତକ-ପ୍ରକାଶକମାନଙ୍କ ଉଠିଆ କ୍ଷେତ୍ରରେ ସଦାବସନ୍ତ ପୁଷମାସ । ତାଡ଼ା ତାଡ଼ା ନୋଟ୍ ତୋଡ଼ାର ତୋବଡ଼ା ସେମାନଙ୍କ ମୁହଁରେ ଏପରି ଲାଗି-ଯାଇଥାଏ ଯେ, ଯେତେ ଉଚ୍ଚକୋଟିର ସାହିତ୍ୟିକ ଗ୍ରନ୍ଥ ହୋଇଥାଉ ପଛକେ ଆବଶ୍ୟକ ସଂଖ୍ୟକ ହାଫ୍‌ଟୋନ୍ ଚିତ୍ର ସଂଯୋଗରେ ତାହାକୁ ସୁଦୃଶ୍ୟ ଓ ଆକର୍ଷଣୀୟ ରୂପ ଦେଇ ପ୍ରକାଶ କରିବାକୁ ଜଣେହେଲେ ପାଠ୍ୟପୁସ୍ତକ-ପ୍ରକାଶକର ସୁଦ୍ଧା ଅଭିରୁଚି ନଥାଏ, ବରଂ ନାସିକାକୁଞ୍ଚନ; କାରଣ ତଦ୍ଦ୍ୱାରା ପୁଞ୍ଜିଲଗାଣ ହେବ ଅତ୍ୟଧିକ ଓ ତା ତୁଳନାରେ ଲାଭର ମାତ୍ରା ରହିବ ଅତି ସାମାନ୍ୟ । ବିନା ଛବିରେ ବହିଟିଏ ହଜାରେ ଖଣ୍ଡ ଛାପିଲେ ସେ ସମୟରେ ଯେଉଁ ମୂଲ୍ୟ ଧାର୍ଯ୍ୟ ହେଉଥିଲା ତହିଁରେ ପ୍ରକାଶକର ଏକ ପଇସା ଖର୍ଚ୍ଚରେ ତିନି ପଇସା ନେଟ୍ ଲାଭ ରହିବା ହିଁ ପୁଞ୍ଜିଲଗାଣର ଫର୍ମୁଲା ଥିଲା । ମୋର ଉଦ୍ଦେଶ୍ୟ ଥାଏ, ଉତ୍କୃଷ୍ଟତର ବଗପକ୍ଷିଆ ଆଇଭରି ଫିନିସ୍ (ivory finish) କାଗଜରେ 'ଋତୁସଂହାର' ଛପା ହେବ ଏବଂ ରଙ୍ଗିନ୍ ଛବିମାଳାରେ ମଣ୍ଡିତ ହୋଇ ଓଡ଼ିଆ ପ୍ରକାଶନ ରାଜ୍ୟରେ ଯୁଗାନ୍ତର ସୃଷ୍ଟି କରିବ । ମୋର ଏହି ଗୋଲାପୀ ଅଭୀପ୍ସା ଯୋଗୁଁ 'ଋତୁ-ସଂହାର'ର ପ୍ରକାଶ ବିଳମ୍ବିତ ହୋଇଗଲା । ଶେଷରେ ରାଣୀହାଟର କଲେଜ ବହି ବିକ୍ରୟାନୁଷ୍ଠାନ 'ଉତ୍କଳ ବୁକ୍ ଏଜେନ୍‌ସି'ର ପ୍ରତିଷ୍ଠାତା ସୁସାହିତ୍ୟପ୍ରେମୀ ବ୍ରଜବନ୍ଧୁ ଦାଶ ସ୍ୱତଃପ୍ରବୃତ୍ତ ହୋଇ ବାହାରିପଡ଼ିଲେ, ଲାଭାଲାଭ ଦିଗକୁ ବିଚାର ବାହାରେ ରଖି, ଏହି ବହୁବ୍ୟୟସାପେକ୍ଷ ଅନୁବାଦଗ୍ରନ୍ଥଟିକୁ ପ୍ରକାଶ କରି ଓଡ଼ିଶାର ପ୍ରକାଶକମଣ୍ଡଳ ଅଂଗରେ ଏକ ନୂତନ ଦିଗନ୍ତର ତୋରଣଦ୍ୱାର ଫିଟାଇ ଦେବାପାଇଁ । ସମ୍ବଳଶୂନ୍ୟ ସତ୍-ସାହିତ୍ୟରଙ୍କ ବ୍ରଜବନ୍ଧୁ ବାବୁଙ୍କ ଦୁଃସାହସିକ ପଦକ୍ଷେପ ଯୋଗୁଁ ବହିରଙ୍ଗସଜ୍ଜାରେ ଓ ମୁଦ୍ରଣ ସୌଷ୍ଠବରେ ଅପୂର୍ବ ଶ୍ରୀ ଧାରଣ କରି 'ଋତୁସଂହାର' ୧୯୫୨ ମସିହାରେ ପ୍ରକାଶ ପାଇ ଓଡ଼ିଶାରେ ଚହଳ ପକାଇଦେଲା । ବ୍ରଜବନ୍ଧୁ ଗଲେଣି, କିନ୍ତୁ ଏ ପ୍ରକାର ମର୍ଯ୍ୟାଦାବନ୍ତ

ଅତ୍ୟାଧୁନିକ ମୁଦ୍ରଣରୂପ ପ୍ରବର୍ତ୍ତନର ପ୍ରଥମ ମଶାଲଧାରୀ ଭାବରେ ତାଙ୍କ ନାମ ଏପର୍ଯ୍ୟନ୍ତ ସମୁଜ୍ଜ୍ୱଳ । ଉତ୍କଳଭାରତୀଙ୍କ କବିତା-କାନନରେ ଏକ ବୃନ୍ତରେ ଯୁଗ୍ମପୁଷ୍ପ ସଦୃଶ ପ୍ରସ୍ଫୁଟିତ ଦୁଇ ଶକ୍ତିଶାଳୀ ଯୁବକବି ରାଧାମୋହନ ଗଡ଼ନାୟକ ଓ ଅନନ୍ତ ପଟ୍ଟନାୟକ (ଉଭୟଙ୍କ ଜନ୍ମବର୍ଷ ୧୯୧୦) 'ପ୍ରାଚ୍ୟସମକାଳୀନ'ର ସେତେବେଳେ ହୋଇଥିଲେ ପ୍ରଧାନ ଅନୁରାଗୀ, ଅନୁଚର୍ଚ୍ଚୀ ଓ ଗୁଣାନୁବାଦୀ । କ୍ରମଶଃ ଏହି ନବୋଦ୍ଭାବିତ ଅଳଙ୍କାରଟି ପ୍ରତି ନୂତନତ୍ୱାନ୍ୱେଷୀ ପାଠକପାଠିକା ଓ ଲେଖକଲେଖିକା ଆକୃଷ୍ଟ ହେଲେ । ପରମ ପରି-ତୋଷର କଥା, ଏବର କେତେକ କବିକବୟିତ୍ରୀ, ବିଶେଷତଃ ଅନେକ ଶିଶୁକବିତା ଲେଖକଲେଖିକା ମୋର ଏହି ଆଳଙ୍କାରିକ ରଚନାଧାରାର ପଦାଙ୍କ ଅନୁସରଣ କରି ନିଜ ନିଜ ରଚନାକୁ ଅଧିକ ମଧୁର ଓ ଅଧିକ ସୁଶ୍ରାବ୍ୟ କରିବାପାଇଁ ସଫଳ ପ୍ରୟତ୍ନ କରୁଛନ୍ତି । ଜୀବନକାଳ ମଧ୍ୟରେ ଯେ ମୁଁ ଏହି ରଚନା ଧାରାର ଏପରି ଦ୍ରୁତ ପ୍ରସାର ଦେଖିପାରିବି, ଏହା ମୋ କଳ୍ପନା ବଳୟରେ ନଥିଲା ।

୧୯୬୪ ମସିହାର ଖରାଟିଆ ଦିନ ବୋଲି ମନେହୁଏ । କୌଣସି ଏକ ଅବସରପ୍ରାପ୍ତ ବାସର, ସମ୍ଭବତଃ ରବିବାର । ଭାରତସରକାରଙ୍କ ପ୍ରେରିତ ଜଣେ ଓଡ଼ିଆ ଫଟୋଗ୍ରାଫର୍ ଦିଲ୍ଲୀରୁ କଟକ ଆସି ସିଦ୍ଧହସ୍ତ ବରିଷ୍ଠ ଚିତ୍ରଶିଳ୍ପୀ ତଥା ବୟନ ଶିଳ୍ପ ବିଭାଗର ସହକାରୀ ନିର୍ଦ୍ଦେଶକ ବିଭୂତିଭୂଷଣ କାନୁନଗୋଙ୍କ ସଙ୍ଗରେ ଧରି ମୋ ମେରିଆବଜାର ବଦାଗୃହରେ ପଦାର୍ପଣ କଲେ ସକାଳ ପ୍ରାୟ ସାଢ଼େ ନଅଟାରେ । ସେ ତାଙ୍କ କ୍ୟାମେରା ସାହାଯ୍ୟରେ ମୋର ଭିନ୍ନ ଭିନ୍ନ ଭଙ୍ଗୀ (pose)ର କେତେଖଣ୍ଡି ଆବକ୍ଷ ଫଟୋ ଉଠାଇନେଲେ ଏବଂ ମତେ କେତେକ ନିର୍ଦ୍ଦିଷ୍ଟ ପ୍ରଶ୍ନ ପଚାରି ମୋ ଜନ୍ମତିଥି, ଜନ୍ମସ୍ଥଳୀ, ଶିକ୍ଷା, ବୃତ୍ତି, ସାହିତ୍ୟିକ କୃତି ପ୍ରଭୃତି ସମ୍ବନ୍ଧରେ ସଂକ୍ଷିପ୍ତ ବିବରଣ (bio-data) ଟିପି ରଖିଲେ । ଏମାନ କି କାର୍ଯ୍ୟରେ ଲାଗିବ ବୋଲି ଜିଜ୍ଞାସା କରିବାରୁ "ସେ ସମ୍ପର୍କରେ ମତେ କିଛି ଜଣାନାହିଁ; ଯେଉଁତକ କାମ ପାଇଁ ମତେ ଆପଣଙ୍କ ନିକଟକୁ ପଠା ହୋଇଥିଲା ତାହା ସରିଗଲା, ଅଶେଷ ଧନ୍ୟବାଦ"— ଏତିକି କହି ଫଟୋଗ୍ରାଫର୍‌ବାବୁ ମୋଠାରୁ ବିଦାୟ ନେଲେ ।

ଅଳ୍ପକାଳ ପରେ ମୋ ଜିଜ୍ଞାସାର ଉତ୍ତର ଦେଲା ନିର୍ଜ୍ଜୀବ ରେଜେଷ୍ଟ୍ରି ପାର୍ସଲଟିଏ । ଡାକବାଲାଠାରୁ ସେହି ନିର୍ଜ୍ଜୀବ ବସ୍ତୁଟିକୁ ପାଇ ଖୋଲିଦିଅନ୍ତେ ଦେଖିଲି, ତହିଁରେ ଅଛି ଦୁଇଟି ପତ୍ରିକା—ଭାରତ ସରକାରଙ୍କ ତ୍ରୈମାସିକ ସମୀକ୍ଷା ପତ୍ରିକା (review magazine) 'MARCH INDIA' ଓ ଶ୍ରୀନଗରସ୍ଥ All-India Literature Societyର ମାସିକ ମୁଖପତ୍ର 'ହଂସ' (ହିନ୍ଦୀ) । ଉଭୟ ପତ୍ରିକାରେ ମୋ 'ଗୁରୁଦକ୍ଷିଣା'? କାବ୍ୟ ସମ୍ବନ୍ଧରେ ବିଶେଷ ଉଲ୍ଲେଖ ରହିଥାଏ । ତାହା ପଢ଼ି ଜାଣିବାକୁ ପାଇଲି ଯେ, କବିଗୁରୁ କାଳିଦାସଙ୍କ ବିରଚିତ କାବ୍ୟ ସମୂହର ଯେତେ ଯାହା ଅନୁବାଦ ବିଭିନ୍ନ ଭାରତୀୟ ଭାଷାରେ ସେ ପର୍ଯ୍ୟନ୍ତ ପ୍ରକାଶିତ ହୋଇଥିଲା, ସେ ସମସ୍ତକୁ ସଂଗ୍ରହ କରି

ସର୍ବଭାରତୀୟ ସ୍ତରର ବିଚାରକ ମଣ୍ଡଳୀ ଦ୍ୱାରା ସମୀକ୍ଷା କରାଯିବା ଫଳରେ ମୋ 'ରତ୍ନ ସମ୍ଭାର'ଟି ସର୍ବୋତ୍କୃଷ୍ଟ ଅନୁବାଦ ରୂପେ ଘୋଷିତ ହୋଇଛି । ଫଟୋଗ୍ରାଫର୍ ବାବୁ ଯେଉଁ ଫଟୋ ଓ ଜୀବନୀ ସମ୍ବନ୍ଧୀୟ ତଥ୍ୟ ଏଠାରୁ ନେଇଥିଲେ, ଉଭୟ ପତ୍ରିକାରେ ସେମାନ ଯଥାଯୋଗ୍ୟ ସ୍ଥାନ ପାଇଥିଲା; କେବଳ ତଫାତ୍ ଏତିକି ଯେ, 'March India'ରେ ଛପା ହୋଇଥିବା ଆବକ୍ଷ ଫଟୋଟି ବିବର୍ଣ୍ଣରଞ୍ଜିତ; କିନ୍ତୁ 'ହଂସ'ରେ ମୁଦ୍ରିତ ଅନ୍ୟ-ପ୍ରକାର ଫଟୋଟି ଏକରଙ୍ଗୀ ।

୧୯୩୪ରୁ ୧୯୪୮ ଚଉଦ ବର୍ଷ ମଧ୍ୟରେ ଶିଶୁ ଓ କିଶୋର ବୟସର ପିଲାଙ୍କ ମାନସ-ରଞ୍ଜନପାଇଁ ତଥା ମାନସିକ ଖାଦ୍ୟ ପ୍ରସ୍ତୁତ କରିବାପାଇଁ ମୁଁ ଆଦୌ ଲେଖନୀଚାଳନର ଉଦ୍ୟମ କରିପାରି ନଥିଲି । କେବଳ କେତେକ ପ୍ରକାଶକ ବନ୍ଧୁ ଓ ଅନୁଗତଙ୍କ ପ୍ରବଳ ଚାପରେ ପ୍ରଥମ ଶ୍ରେଣୀର ଓ ଦ୍ୱିତୀୟ, ତୃତୀୟ ଶ୍ରେଣୀର କୋମଳମତି ଶିଶୁଙ୍କ ଉପଯୋଗୀ ଯଥାକ୍ରମେ ଗଦ୍ୟପଦ୍ୟ ସମ୍ବଳିତ 'ଶିଶୁବିଳାସ' ଓ 'କୌତୁକପାଠ' (୧ମ ଭାଗ, ୨ୟ ଭାଗ), 'ସାହିତ୍ୟ ପରିଚୟ' (୧ମ ଭାଗ, ୨ୟ ଭାଗ), 'ମନୋହର ପାଠ' (୧ମ ଭାଗ, ୨ୟ ଭାଗ) ପ୍ରଭୃତି କେତେଖଣ୍ଡି ପାଠ୍ୟପୁସ୍ତକ ଯାହା ଲେଖିଦେଇଥିଲି ସେତିକି । ୧୯୪୮ରେ 'ରତ୍ନସମ୍ଭାର'ର ଅନୁବାଦକାର୍ଯ୍ୟ ଶେଷ ହୋଇଯିବା ପରେ ପରେ ମୋ ପ୍ରିୟ ଶିଶୁବନ୍ଧୁଙ୍କ ଆଡ଼କୁ ଲେଖନୀ ମୁଖ ନଫେରାଇ ରହିପାରିଲି ନାହିଁ ।

କୁନି କୁନି ପୁଅଝିଅଙ୍କ ତରଳ ଚଞ୍ଚଳ ସୁକୁମାରିଆ ମନଲାଖି ଛନଛନିଆ ମୋଲାଏମ ଭାଷାର କାହାଣୀ ବହି ସେପର୍ଯ୍ୟନ୍ତ ଓଡ଼ିଆରେ ଥାଏ ଏକାନ୍ତ ବିରଳ । 'Basket of Flowers'ନାମକ ଶିଶୁବୋଧ୍ୟ ଇଂରାଜୀ ଗଳ୍ପ ପୁସ୍ତକର କଥାବସ୍ତୁକୁ ନେଇ ହାଇସ୍କୁଲ ଶିକ୍ଷକ ବାଲକୃଷ୍ଣ କର ଲେଖିଥିବା 'ଫୁଲଟୁଙ୍ଗୁଡ଼ି' ବହିଟି ଏ ଦିଗରେ ଥିଲା ପ୍ରଥମ ମାର୍ଗ ପ୍ରଦର୍ଶକ । ତାହାର ଠିକ୍ ପାଞ୍ଚବର୍ଷ ପରେ ୧୯୨୯ରେ ମୋ ପ୍ରଣୀତ 'ସୁନାରାଇଜ' ହେଲା ଏ ମାର୍ଗର ଦିଗବାରେଣିସ୍ତମ୍ଭରୂପୀ ଦ୍ୱିତୀୟ କାହାଣୀ ବହି । 'ଫୁଲଟୁଙ୍ଗୁଡ଼ି'ଠାରୁ ଏହାର ମନୋହାରିତା ଅଧିକ ବଢ଼ିବାର କାରଣ ହେଉଛି, 'ଫୁଲଟୁଙ୍ଗୁଡ଼ି' ଗୋଟିଏ ମାତ୍ର ଗଳ୍ପରେ ସମାପ୍ତ ହୋଇଥିବା ସ୍ଥଳେ 'ସୁନାରାଇଜ' ସାତୋଟି ପ୍ରସିଦ୍ଧ ପାଶ୍ଚାତ୍ୟ ଶିଶୁକାହାଣୀର ଛାୟା ଓ ସରଳତର ଭାଷାର ଶିଶୁ ମନଛୁଆଁ ଉପାଦାନରେ ସମୃଦ୍ଧ ଏକ ମନୋଜ୍ଞ ସମାହାର । ବସ୍ତୁତଃ, ଉପର୍ଯ୍ୟୁକ୍ତ ଦୁଇଟିଯାକ ଗଳ୍ପବହି ସେ ସମୟରେ ଶିଶୁରାଇଜର ଘରେଘରେ ପଶି କୋଡ଼ପୋଛା କରିନେଇ ପରି ଏ ହାତରୁ ସେ ହାତ ଡେଇଁ ଖେଳି ବୁଲୁଥିଲା ।

୧୯୪୮ର ଶେଷ ପାଦରେ ମୁଁ ଶିଶୁମାନଙ୍କ ମନହରିଣିଆ ରୂପକଥାଧରଣିଆ ପ୍ରାଚ-ମତାଣିଆ କାହାଣୀର ତିନୋଟି ସିରିଜ୍ ଲେଖାର ଅୟମାରମ୍ଭ କରିଦେଲି । ପ୍ରତ୍ୟେକ ସିରିଜ୍‌ରେ ଛଅଖଣ୍ଡି ଲେଖାଏଁ ଚଟିବହି ରହିବ ଏବଂ ପ୍ରତ୍ୟେକ ବହିରେ ଗୋଟିଏ

ଲେଖାଏଁ କାଳଜୟୀ କାହାଣୀ ରହିବ—ଏହା ହିଁ ହେଲା ମୋର ଯୋଜନା । ଇଂରାଜୀ ଭାଷାରେ Golden Tales, Fairy Tales ପ୍ରଭୃତି ଅସଂଖ୍ୟ ଆଚମ୍ବିତ ଢଙ୍ଗର ଶିଶୁଲେଖା ଗ୍ରନ୍ଥବଦ୍ଧ ଲହରୀ ଖେଳୁଛି, ଏପରିକି କେତେକ ଭାରତୀୟ ଭାଷାରେ ଆଶିବୁଣିଆ ଉଦ୍ୟମ ମଧ୍ୟ ହୋଇଛି; କିନ୍ତୁ ଆମ ଭାଷାର ଶିଶୁଗଳ୍ପ କ୍ଷେତ୍ରରେ ପୂରା ଗଡ଼ାମରୁଡ଼ି । ଓଡ଼ିଆ ବାଳୁତ ପିଲାଙ୍କ ଖେଳାଳି ମନ ଭିନେ ଭିନେ ରକମାରି ଗପର ସୁଆଦ ଚାଖିବାକୁ ହାଉିଯାଉଁ ହେଉଛି, ଅଥଚ ତାଙ୍କମାନଙ୍କ ମନ ଆଉ ଆଖିକି ରୁଚିଲା ଭଳିଆ ସୁଆଦିଆ ସାମଗ୍ରୀ ନାହିଁ । ଏହି ଦାରୁଣ ଦୈନ୍ୟ ଦୂର କରିବାରେ ମୁଁ ଅନ୍ତତଃ ପୌରାଣିକ ଗୃଣ୍ଠରର ଭୂମିକା ଗ୍ରହଣ କରିପାରିବି ବୋଲି ଆତ୍ମପ୍ରସାଦ ଅନୁଭବ କଲି । ଯେଉଁ ତିନୋଟି ସିରିଜ୍‌ର ଯୋଜନା କଥା ଉପରେ ସୂଚୁଇଛି, ସେମାନ ଥିଲି :

୧ । ସୁନାରାଇଜ ସିରିଜ୍—

(କ) ସୁନା ପଦୁଅଁ, (ଖ) ସୁନା ବଉଦ, (ଗ) ସୁନା ଚଢ଼େଇ, (ଘ) ସୁନା ପଞ୍ଜୁରି, (ଙ) ସୁନା ବଇଁଶୀ, (ଚ) ସୁନା ଝୁଙ୍କୁଡ଼ି ।

୨ । ପରୀରାଇଜ ସିରିଜ୍—

(କ) ସରଗ ପରୀ, (ଖ) ଗୋଲାପୀ ପରୀ, (ଗ) ସାଗର ପରୀ, (ଘ) ଝରଣା ପରୀ, (ଙ) ସପନ ପରୀ, (ଚ) ଜୋଛନା ପରୀ ।

୩ । କୁହୁକରାଇଜ ସିରିଜ୍—

(କ) କୁହୁକ ଘୋଡ଼ା, (ଖ) କୁହୁକ କୋଠି, (ଗ) କୁହୁକ ଜହ୍ନ, (ଘ) କୁହୁକ ଦୀପ, (ଙ) କୁହୁକ ରାଣୀ, (ଚ) କୁହୁକ ମାଳ ।

ବାଲୁବଜାରରେ ଅବସ୍ଥିତ 'ସାରସ୍ୱତ ଭଣ୍ଡାର' ପୁସ୍ତକାଳୟର ପ୍ରୋପ୍ରାଇଟର୍ ଚଉଧୁରୀ ଲୋକନାଥ ନନ୍ଦ ଉଲ୍ଲିଖିତ ତିନୋଟିଯାକ ସିରିଜ୍‌ର ପ୍ରକାଶକ ହେବେ ବୋଲି ମୋ'ଠାରୁ ଅଗୁଆ ପ୍ରତିଶ୍ରୁତି ଆଦାୟ କରିବାପାଇଁ କେବସୁଁ ଧାରଣା ଦେଇ ରହିଥାନ୍ତି । ମୁଁ ତାଙ୍କୁ ଆଶ୍ୱାସନାର ବଚନ ଦେଇଥିଲି ଏବଂ ପରିଆରି ସ୍ୱରୂପ 'ସୁନାରାଇଜ' ଅନ୍ତର୍ଗତ ଛଅଖଣ୍ଡି-ଯାକ ପୁସ୍ତକର ପାଣ୍ଡୁଲିପି ଚୂଡ଼ାନ୍ତ କରି ତାଙ୍କ ହାତକୁ ଟେକିଦେଇଥିଲି ।

ସେତେବେଳେ ମୁଁ ସପରିବାର ଥାଏଁ 'ବଡ଼ ମେଡ଼ିକାଲ୍' ପରିସରରେ ଥିବା ମୋ ସହା ସାନ ଭାଇ ଫାର୍ମାସିଷ୍ଟ ଇନ୍ଦ୍ରମଣିର ପକ୍କା କ୍ୱାର୍ଟର୍‌ରେ—ସେଠି ସେ ମଧ୍ୟ ସକୁଟୁମ୍ବ ରହୁଥାଏ । 'ସୁନାରାଇଜ' ସିରିଜ୍‌ର ପୂରା ସେଟ୍ କପି ସାରସ୍ୱତ ଭଣ୍ଡାରକୁ ଗ୍ରୁପିବାକୁ ଦେଇଦେଲା ପରେ 'ପରୀରାଇଜ'ର ପ୍ରଥମ ବହିଟିର ଲେଖା ସାରି ଦ୍ୱିତୀୟଟି ଆରମ୍ଭ କରିଥାଏ । ଦିନେ ଲେଖକବନ୍ଧୁ ଉଦୟନାଥ ଷଡ଼ଙ୍ଗୀ କୌଣସି କାର୍ଯ୍ୟ ବ୍ୟପଦେଶରେ ମେଡ଼ିକାଲ୍‌କୁ ଆସିଥିଲେ । ଉକ୍ତ କାମ ସରିଗଲା ପରେ ସେ ମତେ ସନ୍ଧୋଳିବାକୁ ଭାଇ କ୍ୱାର୍ଟରରେ ବିରାଜମାନ ହେଲେ । 'ପରୀରାଇଜ' ସିରିଜ୍‌ର ଲେଖା ସରିଥିବା ଅଂଶତକ

ମୋ ଟେବଲ ଉପରେ ରଖାହୋଇଥିଲା । ଶିଷ୍ଟାଚାର ନୀତି ଭୁଲି ସେ ବନ୍ଧୁବରର ଅଧିକାର-ବଶତଃ ସେହି ପୃଷ୍ଠାଗୁଡ଼ିକ ଉପରେ ଆଖି ଗଡ଼େଇନେବା ସଙ୍ଗେ ସଙ୍ଗେ ସିରିଜ୍ ଅନ୍ତର୍ଭୁକ୍ତ ଲେଖିବାକୁ ବାକି ଥିବା ଅନ୍ୟ ଗୋଟିଏ ବହିର ନାମ ମଧ୍ୟ ମୋଠାରୁ ଜାଣିନେଇଥିଲେ ।

ଏହାର ପ୍ରାୟ ପକ୍ଷେ ଦେଢ଼ପକ୍ଷ ଅନ୍ତେ ମୋ ବହିର ପ୍ରକାଶକ ଚଉଧୁରୀ ଲୋକନାଥ ନନ୍ଦେ ଛାପା ସରିଥିବା 'ସୁନାରାଇଜ' ସିରିଜ୍‌ର ପାଞ୍ଚସେଟ୍ ବହି ମତେ ଦେବାକୁ ମେଢ଼କାଲ୍ ଆସିଲେ । କଥା ପ୍ରସଙ୍ଗରେ ସେ ଅତି ସନ୍ତର୍ପଣରେ କହିଲେ, "ଉଦୟନାଥ ବାବୁ 'ପକ୍ଷୀରାଇଜ' ନାମରେ ଗୋଟିଏ ସିରିଜ୍ ଲେଖୁଛନ୍ତି । ସେଥିର ଦୁଇଖଣ୍ଡ ବହିର ପାଣ୍ଡୁଲିପି ଦୁଇଦିନ ତଳେ ମତେ ଦେଇଯାଇଛନ୍ତି ତୁରନ୍ତ ଛାପିବା ପାଇଁ । ଇଚ୍ଛା ନଥିଲେ ହେଁ ମୁଁ ଅଗତ୍ୟା ତାହା ଗ୍ରହଣ କରିଛି । ଦସ୍ତୁରୀ ମତେ ଭୁଲ୍ ବୁଝିବେ ନାହିଁ । ଖାଲି ଏଇ କଥା ଜଣାଇବା ଲାଗି ଆପଣଙ୍କ ପାଖକୁ ଆଇଲି ।" ମନେ ମନେ ବ୍ୟଥିତ ହେଲି ଏଇଥିପାଇଁ ଯେ, ମୁଁ ଆଉ 'ପକ୍ଷୀରାଇଜ' ବୋଲି ମୋ 'ପକ୍ଷୀ' ସିରିଜ୍‌ର ନାଁ ଦେଇପାରିବି ନାହିଁ କି ସାରସ୍ୱତ ଭଣ୍ଡାରକୁ ତାହାର ପ୍ରକାଶକ କରିପାରିବି ନାହିଁ । ଏହି ଦୁଃଖଦାୟକ ଘଟଣାରେ ବିଚରା ଲୋକନାଥଙ୍କୁ ଦୋଷିବାର ବାଟ ନଥିଲା, ଯେହେତୁ କାଜିବଜାର ଗଳିରେ ଥିବା ତାଙ୍କ ଛୋଟିଆ ଦୋହରା କୋଠାଘରଟିକୁ ସେ ଉଦୟନାଥ ଷଡ଼ଙ୍ଗୀଙ୍କୁ ସପରିବାର ରହିବାକୁ ଭଡ଼ା ଦେଇଥିଲେ । ସେହି କାରଣରୁ ଷଡ଼ଙ୍ଗୀଙ୍କ କଥା ଘାଞ୍ଚିଦେବା ତାଙ୍କ ପକ୍ଷରେ ବଡ଼ ଅସୁନ୍ଦର ହୋଇଥାନ୍ତା ।

ବନ୍ଧୁ ଉଦୟନାଥଙ୍କର ଏହି ଅବନ୍ଧୁଜନୋଚିତ କାର୍ଯ୍ୟଟି ମୋ ହୃଦୟରେ ଗଭୀର ଖେଦର ଦାଗ ଆଙ୍କି ଦେଇଥିଲା । ଏବର ସଂସାରରେ ଯିଏ ଯାହାର ଉପକାର କରିଥାଏ, ଉପକୃତ ବ୍ୟକ୍ତି ଉପକାରୀ ପ୍ରତି ଏହି ପ୍ରକାରର ପ୍ରତ୍ୟୁପକାର କରେ ସିନା ! ତେଣୁ, ଆପାତତଃ ମନଟାକୁ 'ପକ୍ଷୀରାଇଜ' ଲେଖାରୁ ଓହରାଇ ଆଣିଲି । ସେହି ସିରିଜ୍‌ଟାକୁ ପଛେଇଦେଇ 'କୁହୁକରାଇଜ' ସିରିଜ୍‌ରେ ହାତ ପକାଇଲି । କିନ୍ତୁ ୧୯୪୯ ଶେଷ ସୁଦ୍ଧା 'କୁହୁକରାଇଜ' ଓ 'ପକ୍ଷୀରାଇଜ' ଉଭୟ ସିରିଜ୍‌ର କାମ ସମାପ୍ତ କରିଦେଲି । 'କୁହୁକରାଇଜ'ର ପ୍ରକାଶକ ହେଲା ସାରସ୍ୱତ ଭଣ୍ଡାର । ମାତ୍ର 'ପକ୍ଷୀରାଇଜ' ନାମଟି ବଦଳାଇଦେଇ ସେହି ସିରିଜ୍‌ର ନାମକରଣ କଲି 'ପକ୍ଷୀମହଲ' ଏବଂ ତା'ର ପ୍ରକାଶକ ହେଲା ଉତ୍କଳ ବୁକ୍ ଏଜେନ୍‌ସି, ରାଣୀହାଟ । ୧୯୫୦ ମସିହା ସୁଦ୍ଧା ମୋର ଏହି ଖୁବ୍-ସଫଳ ଚଉଦୋଟିଯାକ ଶିଶୁକାହାଣୀ ସିରିଜ୍ ଶିଶୁମହଲରେ ଆଶାତୀତ ଆଦର ଲାଭ କରିଥିଲା । ଔପନ୍ୟାସିକ ଚନ୍ଦ୍ରମଣି ଦାସ ଓ କମଳାକାନ୍ତ ଦାସ ଏଗୁଡ଼ିକୁ ଛୋଟ ଛୋଟ 'ଶିଶୁଉପନ୍ୟାସ' ବୋଲି ଆଖ୍ୟା ଦେଇଥିଲେ ଏବଂ ଏତଦ୍ୱାରା ଅବହେଳିତ ଶିଶୁଗଳ୍ପ ବିଭାଗ ଏତେ କାଳ ପରେ ଋଦ୍ଧିମନ୍ତ ହେବାକୁ ଆରମ୍ଭ କଲା ବୋଲି ଅପାର ପରିତୋଷ ପ୍ରକାଶ କରିଥିଲେ ।

ମୁଁ ଇତିପୂର୍ବେ ୧୯୨୪ ରୁ ୧୯୨୯ ମଧ୍ୟରେ ଲବକୁଶ, ପରଶୁରାମ, ପୁରାଣ କାହାଣୀ (୧ମ, ୨ୟ), ଅଭିମନ୍ୟୁ, ଜନମେଜୟ, ଋଷିକଥା (୧ମ, ୨ୟ), ସତୀ ଏବଂ ୧୯୩୦ରୁ

୧୯୩୩ ମଧ୍ୟରେ ସୁନାରାଇଜ, ଏସପ୍ କଥା, ପକ୍ଷିରାଜ, ଶ୍ରୀ ଗ୍ରନ୍ଥମୁକ୍ତ ସାରଳା, ଗଜପତି ପୁରୁଷୋତ୍ତମଦେବ, ଗଜପତି ମୁକୁନ୍ଦଦେବ, ମହାରାଜା ସୁଢ଼ଳଦେବ, ସାମନ୍ତ ଚନ୍ଦ୍ରଶେଖର, କର୍ମଯୋଗୀ ଗୌରୀଶଙ୍କର, କବିବର ରାଧାନାଥ, ଭକ୍ତକବି ମଧୁସୂଦନ, କୁଳବୃଦ୍ଧ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁ, ଏହି ବାଇଶଖଣ୍ଡ ଶିଶୁସାହିତ୍ୟ ପୁସ୍ତକ ଲେଖିଥିବା କଥା ଯଥା ଯଥା ସ୍ଥାନରେ କହିସାରିଛୁ । ପରବର୍ତ୍ତୀ ପର୍ଯ୍ୟାୟରେ 'ସୁନାରାଇଜ' ସିରିଜ୍ 'କୁନ୍ଦକରାଇଜ' ସିରିଜ୍ ଓ 'ପଶ୍ଚିମବଙ୍ଗ' ସିରିଜ୍‌ର ଅଠର ଖଣ୍ଡ ବହି ଲେଖାସରିବା ପରଠାରୁ ୧୯୬୦ ମସିହା ମଧ୍ୟରେ ଯେଉଁସବୁ 'ଶିଶୁସାହିତ୍ୟ' ପ୍ରଣୟନ କଲି, ସେଗୁଡ଼ିକ ହେଉଛି :

୧-୬ । ସାଧବଘରର କଥା—
ସାଧବ ବୁଢ଼ା
ସାଧବ ବୁଢ଼ୀ
ସାଧବ ପୁଅ
ସାଧବ ଝିଅ
ସାଧବ ବୋହୂ
ସାଧବ ନାତି
୭ । ସେ ଯୁଗର ଗପ
୮ । ସେ ଯୁଗର ଗ୍ରନ୍ଥ

୯-୧୧ । ପଞ୍ଚତନ୍ତ୍ର ଗଳ୍ପ (୧ମ, ୨ୟ, ୩ୟ)
୧୨-୧୩ । ପୁରାଣ ପ୍ରଜ୍ଞା (୧ମ, ୨ୟ)
୧୪-୧୫ । ନାନା ଦେଶର ଉପକଥା (୧ମ, ୨ୟ)
୧୬-୧୭ । ଭାରତ ଗୌରବ (୧ମ, ୨ୟ)
୧୮-୪୨ । ପାଠ୍ୟପୁସ୍ତକ
(ପ୍ରଥମ ଶ୍ରେଣୀଠାରୁ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ବିଭିନ୍ନ ସ୍ତରର ପାଠ୍ୟ ବିଷୟରେ ଅନ୍ୟୂନ ୨୫ ଖଣ୍ଡ ପୁସ୍ତକ)

ଏତଦ୍‌ବ୍ୟତୀତ 'କିଶୋର-କିଶୋରୋତ୍ତର' ବିଭାଗର ଯେଉଁ କେତେଟଣ୍ଡି ପୁସ୍ତକ ଲେଖିଥିଲି, ସେମାନ ହେଉଛି :

୪୩-୪୪ । ପୁରାଣପ୍ରଜ୍ଞା (୩ୟ, ୪ର୍ଥ)
୪୫-୪୬ । ଉପନିଷଦ କଥା (୧ମ, ୨ୟ)
୪୭-୪୯ । ସାଧନା ଓ ସିଦ୍ଧି (୧ମ, ୨ୟ, ୩ୟ)
୫୦ । ବଣପାହାଡ଼ର ସାଥୀ
୫୧ । ଆକାଶରହସ୍ୟ
୫୨ । ଜାତକ କାହାଣୀ

[ବି. ଦ୍ର.—ବହୁ ପୂର୍ବରୁ ୧୯୨୫ ମସିହାରେ 'ମହାଭାରତ କଥା, ୧ମ ଓ ୨ୟ ଭାଗ' ପୁସ୍ତକଦ୍ୱୟ ମଧ୍ୟ ମୋଦ୍ୱାରା ଲିଖିତ ହୋଇଥିଲା ।]

ପୁନଶ୍ଚ, 'ଉଚ୍ଚାଙ୍ଗ ସାହିତ୍ୟ', 'କାବ୍ୟ' ଓ 'ଅଭିଧାନ' ବିଭାଗୀୟ ଗ୍ରନ୍ଥମାନଙ୍କ ମଧ୍ୟରୁ ପ୍ରଥମ ଦୁଇ ବିଭାଗର ଯେଉଁ କେତେକ ଗ୍ରନ୍ଥ ଉପରଲିଖିତ କାଳସୀମା (୧୯୬୦) ମଧ୍ୟରେ ରଚନା କରିଥିଲି, ସେସବୁ ହେଉଛି :

### ଉଚ୍ଚାଙ୍ଗ ସାହିତ୍ୟ

୫୩ । ସ୍ୱାଧୀନତାର କାହାଣୀ

୫୪ । ଆଦିଯୁଗର ଗଳ୍ପ (ଏହାର ଏକ ତେଲୁଗୁ ସଂସ୍କରଣ ଆନ୍ଧ୍ର ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରକାଶିତ ହୋଇଥିଲା ।)

### କାବ୍ୟ

୫୫ । ଗାଥାସ୍ୱପ୍ନ  ୫୬ । ହଂସଦୂତ

[ବି. ଦ୍ର.—ମୋ ରଚିତ 'ଖଣ୍ଡାଧାର' କାବ୍ୟଟିର ଲେଖା ୧୯୩୫ ମସିହାରେ ପରିପୂର୍ଣ୍ଣାଙ୍ଗ ହୋଇଥିଲା ।]

### ଅଭିଧାନ

ନିମ୍ନଲିଖିତ ଦୁଇଟି ଅଭିଧାନର ଏକ ପରେ ଏକ ସଙ୍କଳନ କାର୍ଯ୍ୟ ୧୯୫୯ରୁ ଅନୁକୂଳ ହୋଇ ୧୯୬୬ରେ ଉଦ୍‌ଯାପିତ ହୋଇଥିଲା ଏବଂ ପ୍ରତ୍ୟେକର ପାଣ୍ଡୁଲେଖ ପ୍ରସ୍ତୁତ ଓ ମୁଦ୍ରଣ ସାଙ୍ଗୋପାଙ୍ଗଭାବରେ ଅନବଚ୍ଛିନ୍ନ ଧାରାରେ ଚାଲିଥିଲା । ଏ ଉଭୟ ଅଭିଧାନ ବର୍ତ୍ତମାନ ତୃତୀୟ ସଂସ୍କରଣମୁଖୀ :

୫୭ । New-Method English-Oriya Dictionary (ସଙ୍କଳନ କାଳ ଅଢ଼େଇବର୍ଷ—୧୯୫୯ରୁ ୧୯୬୧ । ପ୍ରଥମ ସଂସ୍କରଣର ତିନି ହଜାର କପି ସାତୋଟିମାତ୍ର ମାସ ମଧ୍ୟରେ ନିଃଶେଷ ହୋଇଯାଇଥିଲା ।)

୫୮ । ତରୁଣ ଶବ୍ଦକୋଷ (ସଙ୍କଳନ କାଳ ଛଅ ବର୍ଷ—୧୯୬୦ ଅଗଷ୍ଟରୁ ୧୯୬୬ ଅଗଷ୍ଟ । ଏଯାବତ୍ ପ୍ରକାଶିତ ସମସ୍ତ ଓଡ଼ିଆ କୋଷଗ୍ରନ୍ଥ ମଧ୍ୟରେ ବ୍ୟବହାରିକ ଗୁଣାତ୍ମକତା ଦୃଷ୍ଟିରୁ ଏହି 'ଶବ୍ଦକୋଷ'ଟିର ଆସନ ସର୍ବୋଚ୍ଚ ଓ ଆଦର ସର୍ବାଧିକ ବୋଲି ପ୍ରମାଣିତ ହୋଇସାରିଛି ।)

## ଆଉ କେତୋଟି ଘଟଣା

### (୧) ବିଳାସବାସନାକୁ ଜୟ କରିବାର ସହଜ ଉପାୟ—

କଟକ କଲେକ୍ଟରେଟ୍‌ରେ ଚାକିରି କରିଥିଲେହେଁ ସମାଜସଂସ୍କାରକରୂପେ ସୁଖ୍ୟାତି ଅର୍ଜିଥିବା ବୈରାଗିଚରଣ ମିଶ୍ର ପ୍ରଥମେ ରେଭେନ୍‌ସା ବାଳିକା ଉଚ୍ଚ ବିଦ୍ୟାଳୟ ପାର୍ଶ୍ୱସ୍ଥ ଗଙ୍ଗାମନ୍ଦିର ରୋଡ୍‌ର ଏକ ପ୍ରଶସ୍ତ ଅଗଣାବିଶିଷ୍ଟ ପକ୍‌କାଘରେ ପିଲାକୁଟୁମ୍ବ ଧରି ବାସ କରିଥିଲେ । ସେହିଠାରେ ଅନାରୋଗ୍ୟ ବ୍ୟାଧି-କବଳରେ ପଡ଼ିବାହେତୁ ତାଙ୍କ ସ୍ତ୍ରୀଙ୍କର ଅକାଳ ବିୟୋଗ ଘଟିଲା । ମୃତ୍ୟୁ ପୂର୍ବରୁ ପ୍ରଭୁ ଜଗନ୍ନାଥ ମହାପ୍ରଭୁଙ୍କ ଅଭଡ଼ାନ୍ନକୁ ତାଙ୍କର

ଆଶା ତାକଲା । ମୁମୂର୍ଷୁ ରୋଗିଣୀଙ୍କ ଶେଷକାଳୀନ ଅଭିଳାଷ ତୁରନ୍ତ ପୂରଣ କରାଇବା ଉଦ୍ଦେଶ୍ୟରେ ବୈରାଗୀବାବୁଙ୍କ ଇଙ୍ଗିତରେ ଅବିଳମ୍ବେ ଜଣେ ଅନୁଗତ କାର୍ ଧରି ପୁରୀ ଧାଇଁଲେ । ପାଞ୍ଚ ଘଣ୍ଟା ମଧ୍ୟରେ ଅଭଡ଼ା ଆସି ପହଞ୍ଚିଲା । ମହାପ୍ରସାଦ-ଆଶାୟିନୀ ଅନ୍ତିମ-ଶଯ୍ୟାଶାୟିନୀ ତାହାକୁ ମୁଣ୍ଡରେ ଛୁଆଁଇ ଆନନ୍ଦରେ ସେବା କଲେ । ଆତ୍ମା ତାଙ୍କର ତୃପ୍ତ ହେଲା । ଶାନ୍ତିରେ ସେ ଶେଷନିଶ୍ୱାସ ତ୍ୟାଗ କଲେ । ବୈରାଗୀବାବୁଙ୍କର ବିଶ୍ୱାସ, ଏ ଜନ୍ମରେ ମନୋଜାତ କୌଣସି ବିଶେଷ ଆଶା ବା ଅଭିଳାଷ ପୂରଣ ନ ହୋଇପାରି କଳଙ୍କରୂପେ ଯଦି ମନରେ ହିଁ ରହିଯାଏ ଏବଂ ସେହି ଅବସ୍ଥାରେ ପ୍ରାଣୀ ମରିଯାଏ, ତାହାହେଲେ ଉକ୍ତ କଳଙ୍କର ପରିପୂର୍ତ୍ତିପାଇଁ ତାକୁ ପୁନର୍ଜନ୍ମର ଦୁଃଖ ଭୋଗିବାକୁ ପଡ଼ିବ ହିଁ ପଡ଼ିବ । ମୁଁ ଏହି ଦାରୁଣ ମୃତ୍ୟୁଦୃଶ୍ୟର ଥିଲି ଜଣେ ମର୍ମାହତ ପ୍ରତ୍ୟକ୍ଷଦର୍ଶୀ । ବୈରାଗୀବାବୁଙ୍କର ଉପରୋକ୍ତ ତାତ୍ତ୍ୱିକ ବିଶ୍ୱାସର ଝଙ୍କାର ସେଦିନ ମୋ ଚୈତ୍ତିକ ସ୍ତରର ଚେତନାଝିଲ୍ଲୀକୁ ଘନଘନ ମନ୍ଦ୍ରିତ କରିଥିଲା । ଏହି ମର୍ମନ୍ତୁଦ ଦୁର୍ବିପାକ ପରେ ବୈରାଗୀବାବୁ ଗଙ୍ଗାମନ୍ଦିର ବସା ଛାଡ଼ି ମହମ୍ମଦଆବଜାର ଛକର ଗୋଟିଏ ଏକତାଲା କୋଠାରେ ଆସି ରହିଲେ ଏବଂ ତାହାକୁ ଏକ ଆଶ୍ରମରେ ପରିଣତ କରି 'ନାମମଙ୍ଗଳ ସମିତି' କାର୍ଯ୍ୟାଳୟର ରୂପ ଦେଲେ ।

ଅଣବାହୁଡ଼ା ସମୟର ବେପରୁଆ ଖର ସ୍ରୁଅ ଆଗକୁ ଆଗକୁ ମାଡ଼ି ବହିଗଲା ବହୁଦୂର । ସେତେବେଳକୁ ନାମମଙ୍ଗଳ କାର୍ଯ୍ୟାଳୟ ବ୍ରହ୍ମଚାରୀଙ୍କର ଏକ ଦ୍ୱିତଳ ଗୃହକୁ ଉଠି-ଆସିଥାଏ ଏବଂ ତାଙ୍କ ପ୍ରବର୍ତ୍ତିତ ବିବସ୍ତ୍ରବିବାହ ଅଭିଯାନ ଆଶାତୀତ ସାଫଲ୍ୟ ଓ ସୁନାମ ଅର୍ଜନ କରିସାରିଥାଏ । ସେଟା ସମ୍ଭବତଃ ୧୯୩୭ ମସିହା । ଦିନକର ଅପରାହ୍ଣାନ୍ତ ସମୟ । ସୂର୍ଯ୍ୟାଲୋକ ବୁଡ଼ି ବୁଡ଼ି ଯାଉଥାଏ, ଫୁଲସଞ୍ଜ ମାଡ଼ି ମାଡ଼ି ଆସୁଥାଏ । କାର୍ଯ୍ୟ ସାରି ମୁଁ ଫେରୁଥାଏଁ ମୋ କର୍ମକ୍ଷେତ୍ର ସରକାରୀ ପ୍ରେସ୍‌ରୁ । ବାଲୁବଜାର ଜୁମା ମସ୍‌ଜିଦ ସାମନାରେ ଭେଟ ହେଲା ବୈରାଗୀବାବୁଙ୍କ ସଙ୍ଗେ । ସେ ଘରୁ ବାହାରିଥାନ୍ତି ବଜାର ପରିକ୍ରମାରେ ଏବଂ ସେହି ଅବସରରେ ନାମମଙ୍ଗଳ କାର୍ଯ୍ୟକ୍ରମର ନିତ୍ୟନୈମିତ୍ତିକ ପରିପ୍ରଚାର ଉଦ୍ଦେଶ୍ୟରେ । ଅଳ୍ପ ଦୂରରୁ ତାଙ୍କୁ ଦେଖି ସେଦିନ ମୁଁ କାବାଭୂତ ହୋଇ-ଯାଇଥିଲି । ଚଉବନ ବର୍ଷ ବୟସରେ ଯୌବନସୁଲଭ ଏକ ଅଭିନବ ବ୍ୟସନୀ ବେଶ— ଚମ୍ପାଫୁଲିଆ ରଙ୍ଗର ଇସ୍ତ୍ରିକରା ଚହ ଚହ ମଠା ପଞ୍ଜାବି, ସୁଦୃଶ୍ୟ ରଙ୍ଗିନ୍ ରୁମାଲ୍‌ଟିଏର ଏକ କାନଅଗ ଛାତିପାକିଟିରୁ ମୁହଁ କାଢ଼ି ପଦାକୁ ଓହଳି ସତେ ଯେପରି ଜିଭ ଲହଲହ କରୁଛି ! ଏ ଅଦ୍‌ଭୁତ ଟନ୍‌ଛନ୍ ବେଶର ଗୂଢ଼ କାରଣ ବୈରାଗୀବାବୁଙ୍କୁ ପଚାରିଲି । ଉତ୍ତର ପାଇଲି, "ଏ କାମନାଟି ଯୌବନକାଳରୁ ମନରେ ଉଠି ମଝିରେ ମଝିରେ ବାରମ୍ବାର ଉଙ୍କି ମାରୁଛି—ମୋ ମନ-କୁଡ଼ିଆରୁ ଜମା ନିକଳୁ ନାହିଁ । ତେଣୁ, ପରଜନ୍ମରେ ଏହାର ଜୀବନବ୍ୟାପୀ ଶିକାର ନ ହେବି ବୋଲି ପରିଣତ ବୟସରେ ହସ୍ତାକପାଇଁ ଏହି ବେଶ ଧାରଣ କଲି ।"

ବର୍ଷ ଗ୍ରୀଷ୍ମାନ୍ ବୈଜ୍ଞାନିକଙ୍କଠାରୁ ବହାସ୍ପ ଯେଉଁ ମୋ ମହନ୍ମୃଦଆବକାର ବସାରେ ଆସି ପଡ଼ିଥିଲା । ବାଟଯାକ ତାଙ୍କ ତର୍କଣାଟି ମୋ ମସ୍ତିଷ୍କମଣ୍ଡଳକୁ ପୂରା ଆଚ୍ଛନ୍ନ କରି ରହିଥିଲା—ମୁଁ ସେହି କଥାକୁ ହିଁ ଧ୍ୟାୟି ଧ୍ୟାୟି ପାହୁଣ୍ଡ ପକାଉଥିଲି । ଶେଷରେ ସେଇ ତର୍କଣାରୁ ଗୋଟିଏ ମୂଲ୍ୟବାନ୍ ସୂତ୍ର ବାହାର କଲି, ଯଦ୍ଦ୍ୱାରା ବିଳାସବାସନାର ଅଗ୍ନିକୁ ନିର୍ବାପିତ କରିହେବ । ସେତେବେଳେ ମୁଁ ଏକତିରିଶ ବର୍ଷ ବୟସର ପୂର୍ଣ୍ଣ ଯୁଆନ । ଏ ଜନ୍ମର ଶେଷମୁଣ୍ଡରେ ପହଞ୍ଚିବାକୁ ଯେ ବହେ ରାସ୍ତା ବାକି ! ଏହି କଥାକୁ ମନରେ ରଖି ଖସଡ଼ାଟିଏ ତିଆରି କରିବସିଲି । ମୋଟା ଚେମଡ଼ାକାଗଜ ଖଣ୍ଡିଏ କାଢ଼ି ତହିଁରେ ସେତେବେଳେ ମନରେ ଜାଗୁଥିବା କେତୋଟି ବିଳାସବାସନାର ନାମ (ଗଳାପିନ୍ଧା ସୁନାଚେନ୍, ବାହାପିନ୍ଧା ସୁନାତାବିଜ, ସୁନା ବୋତାମ, ଗ୍ରେଲ୍‌ଡଗୋଲ୍‌ଡ଼ ଉଆଚ୍ ଓ ବ୍ୟାଣ୍ଡ, ମୋଟବସା ସୁନାମୁଦି ପ୍ରଭୃତି) ସେଇଦିନର ତାରିଖ ପକାଇ ଟିପିଦେଲି । ଆଜି ଜୀବନର ସାୟାହ୍ନ ସମୟ (୧୯୮୭)ରେ ସେହି ପୁରୁଣା ଆତ୍ମପରୀକ୍ଷଣର ସ୍ମୃତିଚାରଣା କଲାବେଳେ ହୃଦୟରେ ବେଶ୍ ଶାନ୍ତି ଓ ତୃପ୍ତିର ସଞ୍ଚାର ହୁଏ । ଖସଡ଼ାନୁସାରେ ଯେଉଁଦିନ ଯେଉଁ ବିଳାସବସ୍ତୁର ବାସନା ମନରେ ଜାଗ୍ରତ ହେଲା, ସେଦିନ ତା'ର ନାମ ସେହି କାଗଜରେ ତାରିଖ ପକାଇ ଟିପିଲି । ଏହିରୂପେ ବର୍ଷ ପରେ ବର୍ଷ ଗଡ଼ିଚାଲିଲା, କାଗଜଖଣ୍ଡିର ଦୁଇ ପିଠି ମଧ୍ୟ ବିଭିନ୍ନ ବାସନାର ନାମାବଳି ଟିପାରେ ଭରିବାକୁ ବସିଲା । ଯେବେହେଲେ କେବେ ପୂର୍ବ ପୂର୍ବ ଲିଖିତ ଲୋଭନୀୟ ବାସନାଗୁଡ଼ିକର ତାଲିକା ଉପରେ କଟାକ୍ଷପାତ କରିବାକୁ ମନ ବଳାଏଁ ନାହିଁ ମୁଁ । ୧୯୬୧ ମସିହାରେ ଯେଉଁଦିନ ମୋର ବୟସ ପଞ୍ଚାବନ ବର୍ଷ ପୂରିଲା, ସେହିଦିନ ତାଲିକା ଫର୍ଦ୍ଦକୁ ଗୁରଙ୍କରୁ ବାହାର କରି ମୂଳରୁ ପଢ଼ିବସିଲି । ଗୋଟିକ ପରେ ଗୋଟିଏ ନାମ ପଢ଼େ, ନାକ ଟେକ ତାକୁସବୁ ନାଲିକାଳିରେ କାଟିପକାଏଁ । ଏହିପରି କାଟୁ କାଟୁ ଶେଷପର୍ଯ୍ୟନ୍ତ ଯେତେ ବିଳାସସାମଗ୍ରୀର ନାମ ଟିପାଥିଲା, ସବୁଯାକ କାଟିପକାଇଲି । ଆତ୍ମଧିକ୍କାର ଆସିଲା—ଛିଃ, ଏ ବୃଦ୍ଧାବସ୍ଥାରେ କ'ଣ ଏଗୁଡ଼ାକ ଉପଭୋଗ କରିବାର କଥା ! ପିଲାଏ ହସିବେ ନାହିଁ ! ସାଇପଡ଼ିଶାଏ ଗୁହଲେଇବେ ନାହିଁ ! ବୋହୂଭୁଆସୁଣୀଏ ଓଢ଼ଣା-ଉଢ଼ାଳରୁ ମୁହଁ ମୋଡ଼ିବେ ନାଇ ! ଯାହାହେଉ, ମୋ ଆବିଷ୍କୃତ 'ସୂତ୍ର' ଠିକ୍ କାମ ଦେଲା । ଏହି ଉପାୟବଳରେ ମୁଁ ବିଳାସବ୍ୟସନର ପ୍ରଲୋଭନକୁ ଦୂରକୁ ହଟାଇଦେଇପାରିଲି । ଆଜି ଦମ୍ଭର ସହିତ କହିବାକୁ ସାହସ କରୁଛି ଯେ, ପଞ୍ଚାବନ ବର୍ଷ ବୟସ ପରେ ମୋ ମନ-ଚକଡ଼ାରୁ ଯାବତୀୟପ୍ରକାର ବାସନାର ଦାଗ ଏକାବେଳକେ ପୋଛିହୋଇଯାଇଛି ।

## (୬) ପୁତ୍ରାତ୍ ଶିଷ୍ୟାତ୍ ପରାଜୟମ୍—

ବୈଦିକ ବିଶ୍ୱାସମତେ ଅଜ୍ଞାନ-ତମିସ୍ରାନ୍ଧ ଶିଷ୍ୟର ଚକ୍ଷୁକୁ ଜ୍ଞାନାଞ୍ଜନଶଳାକା ଯୋଗେ ଉନ୍ମୀଳିତ କରୁଥିବା ବାସ୍ତବ ଗୁରୁ ବ୍ରହ୍ମା-ବିଷ୍ଣୁ-ମହେଶ୍ୱରରୂପେ ନିତ୍ୟ ତ୍ରିସନ୍ଧ୍ୟାରେ

ସ୍ମରଣୀୟ ଓ ବରଣୀୟ, ନମସ୍ୟ ଓ ମାନନୀୟ । ମୁଁ ଏହି ଆର୍ଯ୍ୟ ବିଶ୍ୱାସକୁ ପାଠଦଶାରୁ ପୂର୍ଣ୍ଣ ମର୍ଯ୍ୟାଦା ଦେଇଆସିଛି । ନର୍ମାଲ୍ ସ୍କୁଲ ଛାତ୍ରାବାସରେ ଥିଲାବେଳେ ଗୁରୁଦେବ ପଣ୍ଡିତ କୁଳମଣି ଦାଶ କାବ୍ୟତୀର୍ଥଙ୍କୁ ନିତ୍ୟ ରାତି ପ୍ରାୟ ନଅଟାରେ ମୋଡ଼ିଘଷି ଦେଉଥିଲି । ଶିକ୍ଷା ସମାପ୍ତି ପରେ କଟକରେ ରହି ଚାକିରି କଲି; ତେଣୁ ଶ୍ରୀଗୁରୁଚରଣସମ୍ବାହନ ଓ ଅଙ୍ଗମର୍ଦ୍ଦନ ଅବ୍ୟାହତ ରଖିବାରେ କୌଣସି ଅସୁବିଧା ହେଲା ନାହିଁ । ନର୍ମାଲ୍ ସ୍କୁଲରୁ ରେଭେନ୍ସା କଲେଜିଏଟ୍‌କୁ ବଦଳି ହେଲା ପରେ ସେ ପୁରୁଣା କଲେଜ୍ ଲେନ୍‌ରେ ଭଡ଼ା-ଘରଟିଏ ନେଇ ରହିଲେ । ଏହାଫଳରେ ଗୁରୁସେବା ମୋ ପକ୍ଷରେ ପୂର୍ବାପେକ୍ଷା ଅଧିକ ସୁବିଧାଜନକ ଓ ସୁଖଦାୟକ ହୋଇଗଲା । ମୁଁ ପ୍ରତ୍ୟହ ସନ୍ଧ୍ୟାଳତି ଦର୍ଶନପରେ, ଅନ୍ୟୂନ ଘଣ୍ଟାକ ପାଇଁ ସେଠାକୁ ଯାଏଁ ଓ ଗୁରୁଙ୍କ ହସ୍ତପଦାଦି ଅଙ୍ଗମର୍ଦ୍ଦନ କରେ ।

ପାଠ୍ୟପୁସ୍ତକ ହେବା ଉଦ୍ଦେଶ୍ୟରେ ଗୁରୁଦେବ ଯେଉଁ ବହି ଲେଖନ୍ତି, ତାହାର ପାଣ୍ଡୁଲିପିକୁ ଶେଷ ପର୍ଯ୍ୟାୟରେ ତନଖି କଲାବେଳେ ମତେ ପାଖରେ ନ ବସାଇଲେ ତାଙ୍କ ମନ ସନ୍ତୋଷ ହୁଏ ନାହିଁ । ତା'ର କାରଣ ମୁଁ ବେଳେବେଳେ କୌଣସି କୌଣସି ସ୍ଥଳରେ ପରିବର୍ତ୍ତନ ବା ସଂଶୋଧନ କରିବାକୁ ଅଳିକରିବସେ । ସେ କେବେହେଲେ ମୋ ଅଳିକୁ ଅଡ଼େଇଦେଇ ନାହାନ୍ତି କି ଫିଙ୍ଗିଦେଇ ନାହାନ୍ତି । ତାଙ୍କ ପ୍ରଣୀତ 'ବ୍ୟାକରଣବୋଧ' ଟେକ୍‌ସ୍ଟ ବୁକ୍ କମିଟିଦ୍ୱାରା ପାଠ୍ୟପୁସ୍ତକରୂପେ ନିର୍ବାଚିତ ହୋଇ କେତେ ବର୍ଷ ଚାଲିଲା ପରେ ପୁନର୍ନିର୍ବାଚନ ପାଇଁ ତାହାର ଏକ ସଂଶୋଧିତ ନୂତନ ସଂସ୍କରଣ ପ୍ରସ୍ତୁତ କରିବା ଆବଶ୍ୟକ ପଡ଼ିଲା । ଏଇଟା ୧୯୪୪ ବା ୧୯୪୫ ମସିହାର କଥା । ସେହି କାମ ଆରମ୍ଭ କରିବାକୁ ଗୁରୁଦେବ ଜଗନ୍ନାଥ ପଞ୍ଜିକା ଦେଖି ତହିଁରୁ ଶୁଭଦିନଟିଏ ବାଛି ମତେ ଜଣାଇଦେଲେ । ସନ୍ଧ୍ୟା ପରେ ପ୍ରତିଦିନ ଦୁଇ ଘଣ୍ଟା ଲେଖାଏଁ ସଂଶୋଧନ କାର୍ଯ୍ୟ ଚାଲିଲା । ଯାହାକିଛି ସଂଶୋଧନ, ସବୁ କରୁଥାନ୍ତି ଗୁରୁଦେବ, ମୁଁ କେବଳ ନିମିତ୍ତମାତ୍ର ହୋଇ ପାଖରେ ବସି ମୁଣ୍ଡ ଟୁଙ୍ଗାରୁଥାଏ କହିଲେ ଚଳେ । କାଁ-ଭାଁ କେଉଁଠି ଗୋଟାଏ ଅଧେ ମୋ ସାଧ୍ୟମତେ ପରାମର୍ଶ ଦିଏ ବା ମତାମତ ଜଣାଏଁ । ବିଶେଷଣ ପ୍ରକରଣରେ ସଂଶୋଧନ ଓ ପରିବର୍ତ୍ତନ ପରିବର୍ଦ୍ଧନ ଚାଲିଥିଲାବେଳେ ଦିନେ ଏକ ଚମକପ୍ରଦ 'ଗୁରୁ-ଶିଷ୍ୟ ସମ୍ବାଦ'ର ମଧୁର ସୂତ୍ରପାତ ହେଲା । ଗୋଟିଏ ଜାଗାରେ ଗୁରୁଦେବ ମୂଲ୍ୟବାନ୍ ଟିପ୍ପଣୀଟିଏ ଖଞ୍ଜିଥିଲେ । ସେଇଟିର ସାରକଥା ଥିଲା—ସଂସ୍କୃତ ଭାଷାର କେତେକ ବିଶେଷ୍ୟ ଶବ୍ଦ ଓଡ଼ିଆ ଭାଷାରେ ବିଶେଷଣରୂପେ ତଥା ବିଧେୟ ବିଶେଷଣରୂପେ ମଧ୍ୟ ବ୍ୟବହୃତ ହୋଇଥାଏ, ଉଦାହରଣସ୍ୱରୂପ ପରିଷ୍କାର (କଲା), ସୃଷ୍ଟି (ହେବା) ଜନ୍ମ (ହେବା), ଚମତ୍କାର (ଦୃଶ୍ୟ), ଆଶ୍ଚର୍ଯ୍ୟ (ଘଟଣା, ହେବା) ଇତ୍ୟାଦି । ମୁଁ 'ଆଶ୍ଚର୍ଯ୍ୟ' ଶବ୍ଦଟି ଉପରେ ନମନୀୟ ଲଘୁସ୍ୱରରେ ଆପତ୍ତି ଜଣାଇଲି । କହିଲି, "ସାର୍, 'ଆଶ୍ଚର୍ଯ୍ୟ' ଶବ୍ଦ ସଂସ୍କୃତରେ ବିଶେଷଣ ମଧ୍ୟ ।" ସେ ଗୁରୁପଣର ଅଧିକାର ବଳରେ ମୋ ଆପତ୍ତି ଉପରେ 'ଭେଟୋ' ପ୍ରୟୋଗ କରିବାକୁ ଯାଉଥିଲାବେଳେ ମୁଁ ବିନୋଇ କହିଲି, "ଶବ୍ଦ-

କଳ୍ପଦ୍ରୁମ ଆଦି କେତେକ ବିଖ୍ୟାତ ସଂସ୍କୃତ ଅଭିଧାନରେ 'ଆଶ୍ଚର୍ଯ୍ୟ' ଶବ୍ଦର ଅର୍ଥ ପ୍ରଥମତଃ ବିଶେଷଣ ଓ ଦ୍ୱିତୀୟତଃ ବିଶେଷ୍ୟ ରୂପେ ପ୍ରତିପାଦିତ ହୋଇଛି ।" ଏହା ଶୁଣିଦେଲାମାତ୍ରେ ଗୁରୁଦେବ ଚମକିଉଠିଲେ । ସହଜରେ ତାଙ୍କର ବିଶ୍ୱାସ ଆସିଲା ନାହିଁ । ସଙ୍ଗେ ସଙ୍ଗେ ସେହି ଏକବସ୍ତ୍ରରେ ଗଳାସ୍ତ୍ରା ଦେଇ 'ଭାଷାକୋଷ' ଆଶ୍ରମକୁ ଧାଇଁଲେ । ସେଠି କେବଳ 'ଶବ୍ଦକଳ୍ପଦ୍ରୁମ' ନୁହେଁ, ମନିଅର୍ ଉଇଲିଅମ୍ ଓ ଆପ୍ଟେଙ୍କ ଭଳି ବିଶ୍ୱ-ବିଖ୍ୟାତ ପଣ୍ଡିତମାନଙ୍କ ସଙ୍କଳିତ ବିଶାଳ ସଂସ୍କୃତ ଅଭିଧାନ ମଧ୍ୟ ଥିଲା । ଗୁରୁଦେବ ସେ ସମସ୍ତ ଶବ୍ଦକୋଷରେ 'ଆଶ୍ଚର୍ଯ୍ୟ'ର ଅର୍ଥ ଦେଖି ଅତ୍ୟାଶ୍ଚର୍ଯ୍ୟ ହୋଇଗଲେ—'କଣେ ଉପାଧିଧାରୀ ପ୍ରତିଷ୍ଠିତ ସଂସ୍କୃତବିଶାରଦ ହୋଇ ଦୀର୍ଘ ପଚିଶି ବର୍ଷ କାଳ ସଂସ୍କୃତ ଅଧ୍ୟାପନା କରି ମଧ୍ୟ ମୁଁ ଯେଉଁ ଜ୍ଞାନଟିକୁ ଆଜିଯାଏ ଚୟନ କରିପାରି ନଥିଲି, ମୋର ଶିଷ୍ୟ ହୋଇ କୃଷ୍ଣ ଏତେ ଅଳ୍ପ ବୟସରୁ ଯେ ସେହି ଜ୍ଞାନକୁ ଆୟତ୍ତ କରିପାରିଛି, ଏହା କମ୍ ବାହାଦୁରିର କଥା ନୁହେଁ !' ଭାଷାକୋଷ ଆଶ୍ରମରୁ ଗୁରୁ ଗର୍ବରେ ସ୍ଫୀତ ବକ୍ଷରେ ଗୁରୁଦେବ ନିଜ ବସାଭିତରକୁ ପ୍ରବେଶ କରୁ କରୁ ଉଦ୍‌ବେଳିତ ହୃଦୟରେ ମତେ ବକ୍ଷାଗତ କରି ଗଦ୍‌ଗଦ କଣ୍ଠରେ କହିଲେ, "ତୋ'ପରି ଶିଷ୍ୟୋତ୍ତମ ଯୋଗୁଁ ମୋର ଗୁରୁଜୀବନ ଆଜି ସାର୍ଥକ ହେଲା । ସଂସ୍କୃତ 'ଅନର୍ଘରାଘବ' ନାଟକପ୍ରଣେତା ପୂଜ୍ୟ ଶାସନୀ ସନ୍ତାନ ଦିଗ୍‌ବିଜୟୀ ସ୍ୱ. ମୁରାରି ମିଶ୍ରଙ୍କ ଦିଗ୍‌ଦିଗନ୍ତବ୍ୟାପ୍ତ ସୁନାମର ପ୍ରୋଜ୍ଜ୍ୱଳ ଦୀପ୍ତିରେ ତାଙ୍କ ଦରିଦ୍ର ପିତାଙ୍କ ପୂର୍ବ ସୁନାମର ତେଜ ମଉଳିଯିବାରୁ ପିତା ଅସୀମ ଆନନ୍ଦଉଲ୍ଲାସରେ ଆତ୍ମହରା ହୋଇପଡ଼ିଥିଲେ । ସେହିପରି, ତୋ ଶାବ୍ଦିକ ଜ୍ଞାନଠାରୁ ପରାଭବ ସ୍ୱୀକାର କରିବାଫଳରେ ମୋ ଗୁରୁପଣର ମର୍ଯ୍ୟାଦା ତୁଙ୍ଗ ଶିଖରଚୂଳକୁ ସ୍ପର୍ଶ କରିଛି । ଏଥିପାଇଁ ଆର୍ଯ୍ୟସଂସ୍କୃତିବାହକ କେଉଁ ଅଜଣା ଅତୀତର ବଡ଼ବଡ଼ିଙ୍କ ଅମଳରୁ କଥା ରହିଛି—ଜ୍ଞାନସାମ୍ରାଜ୍ୟର ନ୍ୟଗ୍ରୋଧ-ରୂପୀ ବିବୁଧମାନେ ସମସ୍ତଙ୍କୁ ଜୟ କରିବାକୁ ଇଚ୍ଛା କରନ୍ତି ସିନା, ନିଜ ପୁତ୍ରଠାରୁ ଓ ଶିଷ୍ୟଠାରୁ ପରାଜୟ ବରଣ କରିବାକୁ ସତତ ଚରମ କୃତିତ୍ୱ ବୋଲି ମନେକରିଥା'ନ୍ତି— 'ସର୍ବତ୍ର ଜୟମିଚ୍ଛନ୍ତି, ପୁତ୍ରାତ୍ ଶିଷ୍ୟାତ୍ ପରାଜୟମ୍ ।"

ଭୁଣ୍ଡରୁ ମୋର ବାକ୍ୟ ସ୍ଫୁରିଲା ନାହିଁ । ଅଧମାଧମ ଶିଷ୍ୟରୂପେ ପରମପୂଜ୍ୟ ଶ୍ରୀପାଦ ଗୁରୁଦେବଙ୍କ ଚରଣରଜକୁ ନିର୍ମାଲ୍ୟକଣିକାବତ୍ ମସ୍ତକରେ ମାଖି କୃତକୃତ୍ୟ ହେଲି । ଅନ୍ତିମ ଜୀବନରେ ଦିବ୍ୟନେତ୍ର ଗୁରୁଦେବ ମହୋଦୟ ଜଗନ୍ନାଥଚରଣାରବିନ୍ଦାଶ୍ରୟୀ ହୋଇ ଶ୍ରୀକ୍ଷେତ୍ରରେ ବାସ କରିଥିଲେ ଏବଂ ସେହି ମୁକ୍ତିଦାତା ଚକାଡୋଳାଙ୍କ ନାମ ସ୍ମରି ସ୍ମରି ଶେଷନିଶ୍ୱାସ ପକାଇଥିଲେ । ସେଇଦିନୁଁ ମୁଁ ପ୍ରତି ପ୍ରଭାତ ଓ ପ୍ରତି ପ୍ରଦୋଷରେ ମୋ ଗୁରୁଦେବଙ୍କୁ ସ୍ମରଣ ଓ ମନନ କରିଆସୁଛି ଏବଂ ତାଙ୍କର ହସହସ ଜୀବନ୍ତ ମୂର୍ତ୍ତିର ଦର୍ଶନ ପାଇଆସୁଛି ।

## (୩) ଗୁଣ ଶତେକ ଗୁଣିଆ—

ଚିନ୍ତା-ଚେତନାର କୃଷ୍ଟିପୀଠ ଉତ୍କଳ ବିଶ୍ୱବିଦ୍ୟାଳୟର ସୃଷ୍ଟି ଓ ପ୍ରତିଷ୍ଠା ପରେ ପରେ ପ୍ରଥମ କୁଳପତି-ଆସନ ମଣ୍ଡନ କରିଥିଲେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବୈଜ୍ଞାନିକ ଓଡ଼ିଶାର କୃତବିଦ୍ୟ ଶ୍ରେଷ୍ଠ ଶିକ୍ଷାବିତ୍ ଡକ୍ଟର୍ ପ୍ରାଣକୃଷ୍ଣ ପରିଜା, ଆଇ. ଇ ଏସ୍. । ତାଙ୍କ କୁଳପତିତ୍ୱ କାଳ ମଧ୍ୟରେ କଲେଜ ଶିକ୍ଷାମଣ୍ଡଳରେ ଯେଉଁସବୁ ଅଗ୍ରଗାମୀ ସଂସ୍କାର ଓ ଉନ୍ନୟନମୂଳକ ଯୋଜନା କାର୍ଯ୍ୟକାରୀ ହେବାକୁ ଅଟକଳ କରାଯାଇଥିଲା, ତନ୍ମଧ୍ୟରେ 'ଜ୍ଞାନକୋଷ' (ଓଡ଼ିଆ ଏନ୍‌ସାଇକ୍ଲୋପେଡ଼ିଆ—ବିଦ୍ୟାକଳ୍ପଦ୍ରୁମ ବା ବିଶ୍ୱକୋଷ) ସଙ୍କଳନ ଏକ ଉଲ୍ଲେଖଯୋଗ୍ୟ ସୁଦୂରପ୍ରସାରୀ ପ୍ରକଳ୍ପ । ଏହି ସଙ୍କଳନର କାର୍ଯ୍ୟାଳୟଟି ଉଦ୍ଦାମ ଉତ୍ସାହ ଉଦ୍ଦୀପନା ମଧ୍ୟରେ କଟକନଗରୀରେ ସଂସ୍ଥାପିତ ହେଲା । ସମଗ୍ର ଓଡ଼ିଶାରୁ ବଛା ବଛା ଗବେଷକ, ବୈଜ୍ଞାନିକ, ସାହିତ୍ୟିକ, ଶିକ୍ଷକ, ଅଧ୍ୟାପକ, ଐତିହାସିକ, ପ୍ରତ୍ନତାତ୍ତ୍ୱିକମାନଙ୍କୁ ଆଣି ଏହି ସୁଚିନ୍ତିତ ଯୋଜନାର ସଫଳୀକରଣ ଲାଗି ଜ୍ଞାନକୋଷ ଶିବିରରେ ଠୁଳ କରାଯାଇଥିଲା । ଅକ୍ଳାନ୍ତ-ଉଦ୍ୟମୀ ଅଦମ୍ୟ-ଉତ୍ସାହୀ ବହୁମୁଖୀ ପ୍ରତିଭାଧର ପ୍ରଫେସର୍ ଡକ୍ଟର୍ ମାୟାଧର ମାନସିଂହଙ୍କୁ ହିଁ ଏହି ଆୟାସସାଧ୍ୟ ଦୁରୂହ ସଙ୍କଳନ କାର୍ଯ୍ୟକୁ ପରିଚାଳନା ଓ ପରିପ୍ରେକ୍ଷଣା କରିବାପାଇଁ ଓ ଦକ୍ଷତାର ସହିତ ନେଇଆସି ଥୋଇବାପାଇଁ ଯୋଗ୍ୟତମ କର୍ଣ୍ଣଧାର ବୋଲି କୁଳପତି ଡକ୍ଟର୍ ପରିଜା ଅବଧାରଣ କଲେ ଏବଂ ତାଙ୍କରି କାନ୍ଧରେ ମୁଖ୍ୟ ସମ୍ପାଦକତ୍ୱର ଗରୁ ବୋଝ ଲଦିଦେଲେ ।

ନିରଳସ ନିଷ୍ଠାର ସହିତ ସଙ୍କଳନକର୍ମୀମାନେ ସ୍ୱ ସ୍ୱ କର୍ତ୍ତବ୍ୟରେ ଲାଗିପଡ଼ିଲେ । କିଛିଟା ବିଳମ୍ବରେ ହେଲେହେଁ, ବହୁ ଖଣ୍ଡରେ ସମାପ୍ୟ ବିରାଟ 'ଜ୍ଞାନକୋଷ'ର ପ୍ରଥମ ଖଣ୍ଡର ସଙ୍କଳନ କାର୍ଯ୍ୟ ଶେଷ ହୋଇ ତା'ର ପାଣ୍ଡୁଲେଖ ମୁଖ୍ୟ ସମ୍ପାଦକ ମାନସିଂହଙ୍କ ଟେବୁଲ ଉପରକୁ ଆସିଗଲା । ସେ ତାହାକୁ ଚୂଡ଼ାନ୍ତ ରୂପରେଖ ଦେଇ ମୁଦ୍ରଣୀୟ ପାଣ୍ଡୁଲିପି ପ୍ରସ୍ତୁତ କରିବସିଲେ । ମାତ୍ର ଭାଷାଗତ ଓ ବାକ୍ୟଗତ ବିଶୁଦ୍ଧତା ସମ୍ପର୍କରେ ତାଙ୍କର ନିଜ-ପ୍ରତି ପୋଲଣା ବିଶ୍ୱାସ ନଥିଲା । ସାରସ୍ୱତ ଇଲାକାର ପ୍ରାୟ ସକଳ ଦିଗନ୍ତରେ ତାଙ୍କ ଛତ୍ରପତିତ୍ୱର ଜୈତ୍ର ଧ୍ୱଜା ଉଡ଼ୁଥିଲାବେଳେ କେବଳ ଏଇ ଦିଗନ୍ତଟି ରହିଯାଇଥିଲା ନିଷ୍ପ୍ରଭ । ପୁଣି, ମୁଦ୍ରଣ ସ୍ତରରେ ପ୍ରମାଦଶୂନ୍ୟ ଶୁଦ୍ଧ ପ୍ରୁଫ୍-ପରୀକ୍ଷଣପାଇଁ ଉପଯୁକ୍ତ ବ୍ୟକ୍ତି ତାଙ୍କ ଅନୁଷ୍ଠାନରେ କେହି ନଥିଲେ । ଏ ଦୁଇଟି ପାଣ୍ଡିତ୍ୟସାପେକ୍ଷ କାର୍ଯ୍ୟର ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ତୁଲାଇଲାଭଳି ନିର୍ଭରଯୋଗ୍ୟ ଧୁରନ୍ଧର ଲୋକ, ଯେତେ ଯୁଆଡ଼େ ଆଖି ବୁଲାଇଲେ ସୁଦ୍ଧା, ମୋଟରେ ଆଉ କିଏ ତାଙ୍କୁ ଦେଖାଗଲେ ନାହିଁ । ପାଣ୍ଡୁଲିପିରୁ ଭାଷା-ଦୋଷାଦି ନିର୍ମୂଳିକରଣ ଓ ପ୍ରୁଫ୍‌ରେ ସର୍ବାଙ୍ଗ ଶୁଦ୍ଧତା ସମ୍ପାଦନ କାର୍ଯ୍ୟରେ ଓଡ଼ିଶାର ଦକ୍ଷତମ ବିଶାରଦ ବୋଲି ମତେ ସେ ବହୁବାର ପୂର୍ବରୁ ପରଖିସାରିଥିଲେ । ତାଙ୍କର ଯେଉଁ ପ୍ରବନ୍ଧ-ନିବନ୍ଧ ଓ ଆଲୋଚନା-ସମାଲୋଚନା ସମ୍ବଳିତ ପୁସ୍ତକମାନ କଲେଜ ଅଧ୍ୟାୟୀ-ଅଧ୍ୟାୟିନୀଙ୍କପାଇଁ ଅଭିପ୍ରେତ ଥିଲା, ପୁଣି ହାଇସ୍କୁଲ-ମଧ୍ୟଇଂରାଜୀ ସ୍କୁଲ ସ୍ତର-

ଛାତ୍ରୀମାନଙ୍କ ପାଠ୍ୟରୂପେ ନିର୍ବାଚିତ ହେବା ଉଦ୍ଦେଶ୍ୟରେ ତାଙ୍କ ଦ୍ୱାରା ଯେଉଁ ପୁସ୍ତକମାନ ପ୍ରସ୍ତୁତ ହେଉଥିଲା, ସେସବୁର ପାଣ୍ଡୁଲେଖ ପୁଙ୍ଖାନୁପୁଙ୍ଖ ଭାବରେ ମୋଦ୍ୱାରା ଯାଞ୍ଚ ନ କରାଇବା ପର୍ଯ୍ୟନ୍ତ ତନ୍ନିହିତ ବିଷୟଗୁଡ଼ିକର ଗ୍ରହଣୀୟତା ଓ ବୈୟାକରଣିକ ଶୁଦ୍ଧତା ସମ୍ବନ୍ଧରେ ଡକ୍ଟର୍ ମାନସିଂହ ସ୍ଥିରନିଶ୍ଚିତ ହୋଇପାରୁନଥିଲେ ।

ଆମେ ଦୁହେଁ ଆଯୌବନ ବନ୍ଧୁ ସତ; ମାତ୍ର ମୁଁ ତ ସରକାରୀ ପ୍ରେସ୍ ସଂସ୍ଥାରେ କାର୍ଯ୍ୟ କରୁଛି, ସେ ମତେ ପାଇପାରିବେ କିପରି ? ଏହି ସମସ୍ୟାରେ ଧନ୍ଦିହୋଇ ଶେଷରେ ମାନସିଂହ ପ୍ରେସ ସୁପରିଣ୍ଟେଣ୍ଡେଣ୍ଟ୍ ମିଷ୍ଟର୍ ଏସ୍. ଏଚ୍. ଖାନ୍‌ଙ୍କ ଦ୍ୱାରସ୍ଥ ହେଲେ । ତାଙ୍କୁ କହିଲେ, "ଉତ୍କଳ ବିଶ୍ୱବିଦ୍ୟାଳୟର ଆନୁକୂଲ୍ୟରେ ଯେଉଁ ବିରାଟ 'ଜ୍ଞାନକୋଷ' ଗ୍ରନ୍ଥ ଜାତୀୟ କର୍ତ୍ତବ୍ୟ ଭିତ୍ତିରେ ସଙ୍କଳିତ ହେବାକୁ ଯାଉଛି, ତାହାର ସୁରୁଚିପୂର୍ଣ୍ଣ ସମ୍ପାଦନ ପାଇଁ ଆପଣଙ୍କ ଅନୁଷ୍ଠାନର ନିଷ୍ଠାପର କର୍ମଚାରୀ ପ୍ରୁଫ୍‌ରିଡ଼ର ଶ୍ରୀ କୃଷ୍ଣଚନ୍ଦ୍ର କରଙ୍କର ସାହଚର୍ଯ୍ୟ ଅପରିହାର୍ଯ୍ୟ ହୋଇପଡ଼ିଛି । ଆପଣ ତାଙ୍କୁ ଡେପୁଟେସନ୍ ସର୍ତ୍ତରେ ଛାଡ଼ିଦେବାକୁ ସଦୟ ସମ୍ମତି ପ୍ରଦାନ କଲେ ମୁଁ ବ୍ୟକ୍ତିଗତ ଭାବରେ କୃତଜ୍ଞ ହେବି, ବିଶ୍ୱବିଦ୍ୟାଳୟ ମଧ୍ୟ ବାଧିତ ହେବ ।" ମିଷ୍ଟର ଖାନ୍ କୌଣସି ଜାତୀୟ ଆବଶ୍ୟକତାର ସଂପୂରଣରେ ସାହାଯ୍ୟ କରିବା- ଲାଗି ଅନୁରୁଦ୍ଧ ହେଲେ ନିଜ ସୁବିଧା-ଅସୁବିଧାର ବିଚାର ନରଖି ଅକାତରରେ ଅକୁଣ୍ଠ ଚିତ୍ତରେ ସହଯୋଗର ହସ୍ତ ପ୍ରସାରଣ କରିଥାନ୍ତି । ପୁଣି, କାହାର ସୁନାମ ସୁଖ୍ୟାତିରେ ସେ ଅସହିଷ୍ଣୁଭାବ ଦେଖାନ୍ତି ନାହିଁ କି କାହାର ଭବିଷ୍ୟତ୍ ଉନ୍ନତିରେ ଅନ୍ତରାୟ ହୁଅନ୍ତିନାହିଁ । ଏହିସବୁ ସଚ୍ଛ ମନୋବୃତ୍ତି ତାଙ୍କ ନୀତିମୟ ଜୀବନର ମୌଳିକ ବୈଶିଷ୍ଟ୍ୟ । ଏଣୁ ଅତି ଆନନ୍ଦର ସହିତ ଡକ୍ଟର୍ ମାନସିଂହଙ୍କ ସାଧୁ ଅନୁରୋଧକୁ ସେ ସର୍ବାନ୍ତଃକରଣରେ ସ୍ୱାଗତ କରିଥିଲେ ।

ଏପର୍ଯ୍ୟନ୍ତ ମୋ ଅଗୋଚରରେ ଏସବୁ ଘଟିଯାଉଥିଲା । ମୁଁ ଅବହିତ ହେଲି ସେହିଦିନ, ବୟସ୍ୟ ବନ୍ଧୁ ମାନସିଂହ ଯେଉଁଦିନ ସୁପରିନ୍‌ଟେଣ୍ଡେଣ୍ଟ ଖାନ୍ ସାହେବଙ୍କଠାରୁ ଅନୁମତି ପାଇ ମତେ ଭିଡ଼ିନେଲେ ତାଙ୍କ 'ଜ୍ଞାନକୋଷ' କର୍ମଶାଳାକୁ । ଉଭୟେ ସମ୍ପାଦନା କକ୍ଷରେ ଅଳ୍ପ ସମୟ ବସି ଗଳ୍ପାମୋଦରେ ରତ ଥିବାବେଳେ ଜ୍ଞାନକୋଷ ପ୍ରଥମଭାଗର ଏକ ନିବନ୍ଧ ପ୍ରତି ଦୈବେ ମୋର ଦୃଷ୍ଟି ଆକର୍ଷିତ ହେଲା । ନିବନ୍ଧଟି ମୁଖ୍ୟ ସମ୍ପାଦକ ମାନସିଂହଙ୍କଦ୍ୱାରା ଲାଲ କାଳିରେ ସଂଶୋଧିତ ହୋଇ ଟେବୁଲ ଉପରେ ଥୁଆ ହୋଇଥିଲା । ଲାଲ ସ୍ୟାହିରେ କଟା ହୋଇଥିବା ସ୍ଥାନଗୁଡ଼ିକ ଉପରେ ଆଖି ଗଡ଼ାଇବାକୁ ସ୍ୱଭାବତଃ ମୋର କୌତୂହଳ ଉଦ୍ରିକ୍ତ ହେଲା । ମୁଁ ଦେଖିଲି, ତିନି ପାଞ୍ଚୋଟି ଜାଗାରେ ମୂଳ ଲେଖାରେ ଥିବା 'ପ୍ରଷ୍ଟ' ଶବ୍ଦ ସଂଶୋଧିତ ହୋଇ 'ପ୍ରସ୍ତ' ରୂପ ଧାରଣ କରିଛି । ସେତେବେଳର ମୋ ରୂପାନ୍ତରିତ ମୁଖମଣ୍ଡଳରୁ ବିସ୍ମୟର ଆଭାସ ପାଇ ବନ୍ଧୁ ଠିକ୍ ଠଉରାଇନେଲେ ଯେ, ତାଙ୍କ ସଂଶୋଧନରେ ନିଶ୍ଚୟ କିଛି ତ୍ରୁଟି ଘଟିଯାଇଛି ଅଥବା କପିରେ ଥିବା କେତେକ ତ୍ରୁଟିକୁ

ସେ ଧରିପାରି ନାହାନ୍ତି । ମୋଠାରୁ ସ୍ପଷ୍ଟୀକରଣ ଶୁଣିବାପାଇଁ ଉଦ୍‌ବିଗ୍ନ ହୋଇପଡ଼ିଲେ ଡକ୍ଟର୍ ମାନସିଂହ । 'ପ୍ରସ୍ଥ' ହେଉଛି ସଂସ୍କୃତ ଶବ୍ଦ, ଯାହାର ଅର୍ଥ ଓସାର (breadth); କିନ୍ତୁ 'ପ୍ରସ୍ତ' ଶବ୍ଦଟି ସଂସ୍କୃତ 'ସ୍ତର' ଶବ୍ଦରୁ ଉଦ୍ଭୂତ, ଯାହାର ଅର୍ଥ ପରସ୍ତ ବା ଥାକ (layer) । ପ୍ରିୟ ବନ୍ଧୁ ଏବେ ନିଜର ଭୁଲ ବୁଝିପାରି ବହୁକାଳ ସଞ୍ଚିତ ଭ୍ରମ ଧାରଣାକୁ ମନରୁ ନିର୍ବାସିତ କଲେ ବୋଲି ସ୍ୱଭାବସୁଲଭ ସାରଲ୍ୟବଶତଃ ହସି ହସି ପ୍ରକାଶିଲେ ।

ଏହାପରେ ମାନସିଂହ ସଙ୍କଳନ କର୍ମୀମାନଙ୍କ ସହିତ ଆଗୁଆ ପରିଚୟ କରାଇଦେବା ଉଦ୍ଦେଶ୍ୟରେ ମତେ ସଙ୍କଳନକକ୍ଷକୁ ବାଟୋଇନେଲେ । ବଡ଼ ହଲ୍ ଭଳି କକ୍ଷଟି ବେଶ୍ ବିଶାଳାୟତନ । ପ୍ରଶସ୍ତ ମଧ୍ୟାଂଶଟିକୁ ସମ୍ପୂର୍ଣ୍ଣ ଫାଙ୍କା ରଖି ତିନୋଟି କାନ୍ଥକୁ ଲାଗି ସଙ୍କଳନ କର୍ମୀବୃନ୍ଦଙ୍କ ଆସନ (ବଡ଼ ଟେବୁଲ ଓ ଚେୟାର୍) ରେଖାକାରରେ ସଜ୍ଜିତ । ଚତୁର୍ଥ କାନ୍ଥ ପାର୍ଶ୍ୱଟି ବିଭିନ୍ନ ପ୍ରକାର ସହାୟକ ଗ୍ରନ୍ଥରାଶି (Reference books) ଭରି ଧାଡ଼ିଏ କାଚ ଆଲମାରିରେ ସୁଶୋଭିତ । ଆମେ ସେହି କକ୍ଷଦ୍ୱାରର ଏରୁଣ୍ଡିରେ ପାଦପାତ କଲାମାତ୍ରେ କର୍ତ୍ତବ୍ୟରତ ସଙ୍କଳନ କର୍ମୀମାନେ ନିଜ ନିଜ ଆସନରୁ ଦଣ୍ଡାୟମାନ ହୋଇ ଅଭିବାଦନ ଜ୍ଞାପନ କଲେ । ସଙ୍କଳନକକ୍ଷଟିର ଦୃଶ୍ୟ ମୋ ମନ ମଧ୍ୟରେ ଶିକ୍ଷାଳୟର ଏକ କର୍ମଚଞ୍ଚଳ ଶ୍ରେଣୀଗୃହର ଚିତ୍ର ଆଣି ଥୋଇଦେଲା । ଶିକ୍ଷକ ଶ୍ରେଣୀରେ ପିଲାମାନଙ୍କୁ ପ୍ରଶ୍ନ ଦେଇ ଉତ୍ତର ଆଦାୟ କରନ୍ତି । ପିଲାଏ ଯାହା ଲେଖିଥାନ୍ତି, ଶିକ୍ଷକ ତାକୁ ସଂଶୋଧନ କରି ଖାତା ଫେରାନ୍ତି । ଏଠିକାର ଦୃଶ୍ୟ ଠିକ୍ ତାହାରି ସମଜାତୀୟ । ଡକ୍ଟର ମାନସିଂହ ପ୍ରତ୍ୟେକ ସଙ୍କଳନକର୍ମୀଙ୍କୁ ଗୋଟିଏ ଗୋଟିଏ କରି ବର୍ଣ୍ଣାନୁକ୍ରମିକ ବିଷୟ ଉପରେ ସନ୍ଦର୍ଭ ସଙ୍କଳନ କରିବାକୁ ଦିଅନ୍ତି । ସେମାନେ ଲେଖିସାରି ନିଜ ନିଜ ସନ୍ଦର୍ଭକୁ ମାନସିଂହଙ୍କ ମେଜ ଉପରେ ଥୋଇଦିଅନ୍ତି ଏବଂ ତାଙ୍କଠାରୁ ପୁଣି ଗୋଟିଏ ଗୋଟିଏ ନୂଆ ବିଷୟର ବିବାଦ ନିଅନ୍ତି । ପ୍ରତ୍ୟେକ ସଙ୍କଳନକର୍ମୀ ସେହି କକ୍ଷସ୍ଥ ଲାଇବ୍ରେରିରୁ ପ୍ରୟୋଜନୀୟ ସହାୟକ ଗ୍ରନ୍ଥମାନ ଆଣି ତତ୍ସାହାଯ୍ୟରେ ତଥ୍ୟ ସଂଗ୍ରହ ପୂର୍ବକ ନିଜ ସନ୍ଦର୍ଭକୁ ପ୍ରାମାଣିକ କରିଥାନ୍ତି । ମୋର ଯାହା ସ୍ମରଣ ହୁଏ, ସେଠାରେ ଯେତେ ବୃତ୍ତିକର୍ମୀ ସଙ୍କଳନଶ୍ରମରେ ସ୍ୱେଦ ଦାନ କରୁଥିଲେ, ସେମାନଙ୍କ ସଂଖ୍ୟା ପଚିଶରୁ ନ୍ୟୂନ ହୋଇ ନଥିବ । ତାଙ୍କମାନଙ୍କ ଗହଣରେ ସ୍ନାତକୋତ୍ତର (ସଂସ୍କୃତ) ଡିଗ୍ରୀଧାରିଣୀ ଜଣେ ସହକର୍ମିଣୀ ମଧ୍ୟ ଥିଲେ । କର୍ମୀଦଳ ମଧ୍ୟରୁ ଆଠ ଦଶ ଜଣ ଥିଲେ ମୋର ପୂର୍ବ-ପରିଚିତ । ତନ୍ମଧ୍ୟରୁ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ସାହିତ୍ୟାଚାର୍ଯ୍ୟ, ସବୁଜକବି ବୈକୁଣ୍ଠନାଥ ପଟ୍ଟନାୟକ ଓ ଗବେଷକ ଚକ୍ରଧର ମହାପାତ୍ରଙ୍କ ମୁହଁ ଏବେବି ମତେ ଜଳ ଜଳ ଦିଶି-ଯାଉଛି । ମାନସିଂହଙ୍କ ପ୍ରଦତ୍ତ ପରିଚୟମୂଳକ ଭାଷଣ ପରେ ଉପସ୍ଥିତ ସମସ୍ତ ସଙ୍କଳନକର୍ମୀ ମୋ ସାମୂହିକ ଯୋଗ୍ୟତା ସମ୍ବନ୍ଧରେ ପୂର୍ଣ୍ଣ ଅବହିତ ହୋଇଗଲେ ଏବଂ ଅତିଶୀଘ୍ର ମୁଁ ଜ୍ଞାନକୋଷ ଅନୁଷ୍ଠାନ ପରିସରକୁ ଆସିଯିବି ବୋଲି ଆଶା ପୋଷଣ କରିଥିଲେ ।

ଏହା ଛଡ଼ାରେ ମୁଖ୍ୟ ସମ୍ପାଦକ ଡକ୍ଟର୍ ମାନସିଂହ କୁଳପତି ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କୁ ମୋ ନିଯୁକ୍ତିର ଆଶୁ ଆବଶ୍ୟକତା ସମ୍ବନ୍ଧରେ ବିଶଦଭାବରେ ବୁଝାଇ ସନ୍ତୁଷ୍ଟ କରିଥିଲେ । କେବଳ ଏତିକି ନୁହେଁ, କୁଳପତି ମହୋଦୟଙ୍କ ନିର୍ଦ୍ଦେଶାନୁଯାୟୀ ସେହିଦିନ ତାଙ୍କ ଦପ୍ତରରେ ଲିଖିତ ପ୍ରସ୍ତାବଟି ମଧ୍ୟ ରେକର୍ଡ଼ଭୁକ୍ତ କରାଇଥିଲେ । ଯଥା ସମୟରେ ଉକ୍ତ ପ୍ରସ୍ତାବର ବିଚାରପାଇଁ ସମ୍ପୃକ୍ତ କମିଟିର ଗୋଟିଏ ଜରୁରୀ ବୈଠକ ବସିଲା । ଦୁର୍ଯୋଗବଶତଃ ସେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟ ଉତ୍କଟ ଅର୍ଥସଙ୍କଟର ସମ୍ମୁଖୀନ ହେବାକୁ ଯାଉଥାଏ । ପ୍ରସ୍ତାବଟି ସପକ୍ଷରେ ଡକ୍ଟର୍ ପରିଜାଙ୍କର ଯଥେଷ୍ଟ ସହାନୁଭୂତି ରହିଥିଲେ ହେଁ, ଅର୍ଥାଭାବଜନିତ ପ୍ରତିକୂଳ ପରିସ୍ଥିତି ଯୋଗୁ ତାହା କମିଟି ମେମ୍ବର୍‌ମାନଙ୍କର ଅନୁମୋଦନ ଲାଭ କରିପାରିଲା ନାହିଁ । ଡକ୍ଟର ମାନସିଂହଙ୍କ ବିରାଟ ଆଶା ଓ ଉଦ୍ୟମ ଉପରେ ଏହି ରୂପେ ଅକାଳ ବଜ୍ରପାତ ହେଲା ।

(୪) ପଣ୍ଡିତ ଲିଙ୍ଗରାଜଙ୍କ ରାମାୟଣ ଅନୁବାଦ—

ଯେଉଁ ସମୟର ବିବରଣୀଟି ବିସ୍ତାର କରିବାକୁ ଯାଉଛି, ସେଇଟା ୧୯୫୦ ଆଡ଼କ ହେବ କି କ'ଣ । ଓଡ଼ିଶାର ଶାସନ-ଆସନରେ କଂଗ୍ରେସର ନିରଙ୍କୁଶ ମନ୍ତ୍ରିମଣ୍ଡଳ । ପଣ୍ଡିତ ଲିଙ୍ଗରାଜ ମିଶ୍ର ଆଥାନ୍ତି ଶିକ୍ଷା ଓ ସ୍ୱାସ୍ଥ୍ୟ ବିଭାଗର ମନ୍ତ୍ରୀ । କଲେଜର ହତାର ପୂର୍ବ ସୀମାରେ, କାଠଯୋଡ଼ି ବନ୍ଧ ତଳେ, ଯେଉଁଠି ଆଗେ ଜିଲା ବୋର୍ଡ଼ କାର୍ଯ୍ୟାଳୟ ଥିଲା, ତାହାର ସଂଲଗ୍ନ ପୂର୍ବପାଖ କୋଠା ହିଁ ହୋଇଥାଏ ମନ୍ତ୍ରୀ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କର ସରକାରୀ ବାସଭବନ ବା କ୍ୱାର୍ଟର୍ । ସେତେବେଳେ ନିରାପତ୍ତା ରକ୍ଷାପାଇଁ କେନ୍ଦ୍ରସରକାରଙ୍କ ଆଦେଶରେ ସବୁ ମନ୍ତ୍ରୀଙ୍କ ବାସଭବନର ମୁଖ୍ୟ ପ୍ରବେଶଦ୍ୱାର ପରି ଶିକ୍ଷା-ସ୍ୱାସ୍ଥ୍ୟମନ୍ତ୍ରୀ ପଣ୍ଡିତ ଲିଙ୍ଗରାଜଙ୍କ କ୍ୱାର୍ଟର୍‌ର ସଦର ଗେଟ୍‌ରେ ମଧ୍ୟ ରାତିଦିନ ପହରା ଦେଉଥାନ୍ତି ରାଇଫଲ୍‌ଧାରୀ ମିଲିଟାରି ସିପାହିଦଳ ।

କଟକ ଅନ୍ନପୂର୍ଣ୍ଣା (ବି ଗ୍ରୁପ୍) ଥିଏଟର୍ସର ନିଜ ରଙ୍ଗମଞ୍ଚରେ ଗୋଟିଏ ନୂତନ ନାଟକ ଅଭିନୟର ଶୁଭାରମ୍ଭ ଉତ୍ସବରେ ଉଦ୍‌ଘାଟକ ରୂପେ ମନ୍ତ୍ରୀ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କୁ ସପରିବାର ଆମନ୍ତ୍ରଣ କରାଯାଇଥିଲା । ସେହି ପ୍ରଥମ ରଜନୀର ଅଭିନୟ ପ୍ରେକ୍ଷା ଓ ସମୀକ୍ଷା ପାଇଁ ଜନୈକ ବିଶିଷ୍ଟ ନାଟ୍ୟପ୍ରେମୀ ରୂପେ ମୁଁ ମଧ୍ୟ ସପରିବାର ନିମନ୍ତ୍ରିତ ହୋଇଥିଲି । ସମ୍ମୁଖ ଧାଡ଼ିରେ ହେଲେହେଁ ଲିଙ୍ଗରାଜବାବୁଙ୍କ ଆସନଠାରୁ ମୋ ଆସନ କିଛିଟା ବ୍ୟବଧାନ ପରେ ନିର୍ଦ୍ଦିଷ୍ଟ ଥିଲା । ମନ୍ତ୍ରୀଙ୍କ ସସ୍ନେହ ଆହ୍ୱାନକ୍ରମେ ମୁଁ ଉଠିଯାଇ ତାଙ୍କ ପାର୍ଶ୍ୱବର୍ତ୍ତୀ ଆସନରେ ବସିଲି । ବୟସରେ ସେ ମୋଠାରୁ ପ୍ରାୟ ଏଗାର ବର୍ଷ ଜ୍ୟେଷ୍ଠ ଥିଲେହେଁ ମୋ ସହିତ ତାଙ୍କର ସମ୍ପର୍କ ଥିଲା ପାରିବାରିକ ଭଳି ସୁମଧୁର ଘରୋଇ ଓ ସୌଜନ୍ୟସିକ୍ତ । ୧୯୨୮ ରେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କର ଆକସ୍ମିକ ମୃତ୍ୟୁ ଘଟିବାରୁ ଲିଙ୍ଗରାଜବାବୁ ତାଙ୍କ ସ୍ଥାନରେ 'ସମାଜ'ର ସମ୍ପାଦକ ହେଲାକାଳୁଁ ମୋର

ନିଜନ-ପରିଚିତ ମାନ୍ୟ ଜନରେ ପରିଣତ ହୋଇଥିଲେ । ତେଣୁ ମତେ ସେ ବରାବର ସ୍ନେହାର୍ଦ୍ର ଚକ୍ଷୁରେ ଦେଖିଆସୁଥାନ୍ତି । ମୋ କାବ୍ୟ-କବିତା ଓ ଗଦ୍ୟ ଲେଖାଗୁଡ଼ିକର ବାଗ୍‌ଧାରା ଓ ରଚନା ଭଙ୍ଗୀକୁ ଖୁବ୍ ପସନ୍ଦ କରନ୍ତି, ପ୍ରଶଂସା କରନ୍ତି । ସେହି ନାଟକୀୟ ସନ୍ଧ୍ୟାରେ ଅଭିନୟ ଦେଖା ସଙ୍ଗେ ନିଜ ନିଜ ଲେଖା ସମ୍ବନ୍ଧରେ ପ୍ରମୋଦାଲାପ ଚାଲିଥିଲା ସମତାଳରେ । ରଙ୍ଗାଳୟରୁ ଫେରିଲାବେଳେ ତାଙ୍କ ସରକାରୀ ଯାନ ଆମକୁ ଆଗ ଆମ ଡେରାରେ ଛାଡ଼ି ତା'ପରେ ମନ୍ତ୍ରୀଙ୍କ ବାସଭବନକୁ ଯାଇଥିଲା । ଦୁହେଁ ପରସ୍ପରଠାରୁ ବିଦାବିଦା ହେବା ସମୟରେ ଲିଙ୍ଗରାଜବାବୁ ମତେ କହିଲେ, "ରବିବାରିଆ ଦେଖି ମୋ କ୍ୱାର୍ଟର୍‌କୁ ଦିନେ ଆସ, ଦୁଃଖ ସୁଖ ହେବା । ମୁଁ ମୋ ଟୁର୍ ପ୍ରୋଗ୍ରାମ୍ ଦେଖି ଫୋନ୍‌ରେ ତୁମକୁ ଆସିବା ଦିନ ଜଣାଇବି ।"

ଆସନ୍ତା ଶନିବାରର ଠିକ୍ ପରବର୍ତ୍ତୀ ଶନିବାର, ଦିନ ପ୍ରାୟ ଏଗାରଟା ବେଳ । ମୁଁ ମୋ ସେକ୍‌ସନ୍‌ରେ ଥାଏଁ । ସୁପରିଣ୍ଟେଣ୍ଡେଣ୍ଟଙ୍କଠାରୁ ଡାକରା ପାଇ ତାଙ୍କ ରୁମ୍‌କୁ ଗଲି । ଖାନ୍‌ସାହେବ ଫୋନ୍ ଉଠାଇ ହାତରେ ମୁଠାଇଥିବା ଅବସ୍ଥାରେ ମତେ ଆସ୍ତେ ଜଣାଇଲେ, "ଶିକ୍ଷାମନ୍ତ୍ରୀ ପଣ୍ଡିତ ମିଶ୍ର ଡାକୁଛନ୍ତି ।" ଏହା କହି ମୋ ହାତକୁ ଫୋନ୍ ବଢ଼ାଇଦେଲେ । ମୁଁ ତହୁଁ ମନ୍ତ୍ରୀଙ୍କୁ ଜବାବ ଦେଲି, "ସାର୍, ନମସ୍କାର, କୃଷ୍ଣ କହୁଛି ।" ପ୍ରତିନମସ୍କାର ଜଣାଇ ସେ କହିଲେ, "କାଲି ରବିବାର ସକାଳ ଆଠଟା ପୂର୍ବରୁ ଏଠି ଆସି ପହଞ୍ଚିବ, ସାଙ୍ଗ ହୋଇ ଚାହା ଖାଇବାପାଇଁ ମୁଁ ତୁମକୁ ଅପେକ୍ଷା କରିଥିବି । ଫାଟକ-ଜଗୁଆଳ ବନ୍ଧୁକଧାରୀ ସିପେଇଙ୍କୁ ଦେଖି ଶଙ୍କିଯିବ ନାହିଁ, ନିର୍ଭୟରେ କୋଠି ଭିତରକୁ ପଶିଆସିବ । କୌଣସି ଜଗୁଆଳ ତୁମକୁ ବାଧାଦେବ ନାହିଁ କି କିଛି ପଚାରିବ ନାହିଁ । ମଧ୍ୟାହ୍ନଭୋଜନ ଓ ଆପରାହ୍ଣିକ ଚାହାପାନ ଏଇଠି ହେବ । ତା'ପରେ ତୁମକୁ ବିଦାୟ ଦେବି ।" କୌଣସିଥିରେ ମୁଁ ନାରାଜିଭାବ ପ୍ରକାଶ କଲି ନାହିଁ ।

ମନ୍ତ୍ରୀ ମଣିମାଙ୍କ ଫୋନ୍ ବାର୍ତ୍ତାନୁସାରେ ପରଦିନ ସକାଳୁଁ ସହଳ ସହଳ ନିତ୍ୟକର୍ମ-ଦାଢ଼ିକ୍ଷୌର-ସ୍ନାନ ସମାପନ ପରେ ନିତିଦିନିଆ ବଜାର ସଉଦା ଘରକୁ ଯୋଗାଇଦେଇ ସାଢ଼େ ସାତବଜେ ବାହାରିପଡ଼ିଲି ମନ୍ତ୍ରିଭବନକୁ । ନିର୍ଦ୍ଧାରିତ ସମୟରେ ସେଠି ମୋ ଉପସ୍ଥିତିକୁ ଲିଙ୍ଗରାଜବାବୁ ପ୍ରତୀକ୍ଷା କରି ବସିଥିଲେ । ଚାହା ସହିତ ଦି ଚାରି କିସମର ପୁରିଆ ଜଳଯୋଗ ସାମଗ୍ରୀ ମେଜ ଉପରକୁ ଆସିଗଲା—ସବୁ ତଟକା, ଘରେ ପ୍ରସ୍ତୁତ । ପୁରା ଶାସନୀ ରୀତିକ ବଜାୟ ରଖିଥାନ୍ତି ମନ୍ତ୍ରିଘରଣୀ । କେବଳ ବୋଲହାକ ଶୁଣିବାପାଇଁ ପାଖରେ ରଖିଥାନ୍ତି ବଟୁବାଳକଟିଏ । ପାଚକ ନିଯୁକ୍ତ ପ୍ରଥା ସେପର୍ଯ୍ୟନ୍ତ ନାକ ଢୁକେଇ ନଥାଏ ତାଙ୍କ ଘରେ । ପାକକାର୍ଯ୍ୟର ଦାୟିତ୍ୱ ବହନ କରିଥାନ୍ତି ସ୍ୱୟଂ ଗୃହଗୋସାମଣୀ । ବେଳେ ବେଳେ ନିତାନ୍ତ ଗରଜ ପଡ଼ିଲେ ବଟୁବାଳକଟି ସାହାଯ୍ୟ କରିଥାଏ ଛୁଆଁଛୁତ ବାରକୁ ଠିକ୍ ଠିକ୍ ମାନି । ଅପରିଚିତ କେହି ଆସିଲେ ସେହି ବାଳକଟି ପରଷାପରଷି କାମ ଚଳାଇଦିଏ । ମୁଁ ତ ବହୁ କାଳୁଁ ପରିଚିତ, ବହୁବାର ଅନ୍ଦରମହଲକୁ ଢୁକିଛି;

ତେଣୁ ପୂର୍ବାନୁବୃତ୍ତିରେ ଖୋଦ୍ ଗୃହସ୍ୱାମିନୀ ନିଃସଙ୍କୋଚରେ ପରିବେଷଣ କଲେ । ମନ୍ତ୍ରି-ବନିତା ହେଲେ ହେଁ ବେଶଭୂଷାରେ ଆକର୍ଷଣର ଚାକଚକ୍ୟ ନାହିଁ, ଆଚାରବ୍ୟବହାରରେ କୃତ୍ରିମ ଆଢ଼୍ୟତାର ଛାପ ନାହିଁ କି ଆଳାପ-ସମ୍ଭାଷରେ ପ୍ରୌଢ଼ିର ଛଳେହେଲେ ଢପ ନାହିଁ । ଏଭଳି ଦମ୍ପତି ଏବେକା ସମାଜରେ ବିରଳ । ପତିପତ୍ନୀ ଉଭୟେ ସମଭାବରେ ସରଳ, ବିନୟୀ, ନିରାଡ଼ମ୍ବର, ନିରହଙ୍କାର ।

ପ୍ରାତରାଶଟା ପୂର୍ଣ୍ଣ ହୁଅନ୍ତା କ'ଣ, ଅର୍ଦ୍ଧଭୋଜନକୁ ବଳିଗଲା । ଭୋଜନାନ୍ତେ ଲିଙ୍ଗରାଜ ବାବୁ ଆଲମାରିରୁ ଗୋଟାକ ପରେ ଗୋଟାଏ ମୋଟା ବନ୍ଧେଇ ଖାତା କାଢ଼ି ଟେବୁଲ ଉପରେ କୁଢ଼େଇଦେଲେ । ସେଗୁଡ଼ିକ ସଂସ୍କୃତ ବାଲ୍ମୀକି ରାମାୟଣ ପ୍ରଥମ ପାଞ୍ଚ କାଣ୍ଡର ଓଡ଼ିଆ ଗଦ୍ୟାନୁବାଦ । ପଣ୍ଡିତଜୀଙ୍କ କହିବାନୁସାରେ, ସେ ଭାରତୀୟ ମୁକ୍ତି-ସଂଗ୍ରାମରେ ଝାସ ଦେବା ଫଳରେ ଦୀର୍ଘ କାରାବାସ ଦଣ୍ଡ ବରଣପୂର୍ବକ ହଜାରିବାଗ ଜେଲରେ ବନ୍ଦୀ ଥିବା ଅବସ୍ଥାରେ ଏହି ପାଞ୍ଚଟି କାଣ୍ଡର ଗଦ୍ୟ-ଅନୁବାଦ ଶେଷ କରିଥିଲେ । କାରା ମୁକ୍ତି ପରେ ଦେଶ ଓ ଦଶର ପ୍ରତ୍ୟକ୍ଷ ସେବାରେ ସକ୍ରିୟ ଅଂଶ ଗ୍ରହଣ କରିବା ଯୋଗୁଁ ଷଷ୍ଠ ଓ ସପ୍ତମ କାଣ୍ଡର ଅନୁବାଦ କରିବାକୁ ଆଉ ଅବସର ପାଇଲେ ନାହିଁ । ଏହି କାରଣରୁ ସଙ୍କଳିତ କାର୍ଯ୍ୟଟି ଅପୂର୍ଣ୍ଣାଙ୍ଗ ରହିଗଲା । ଅତ୍ୟନ୍ତ କ୍ଷୋଭ ଓ ଅବସୋସରେ ମନ୍ତ୍ରୀ କହିଲେ, "ଜଣେ ଟୋଲ୍ ପଣ୍ଡିତଙ୍କୁ ଶେଷ କାଣ୍ଡଦ୍ୱୟର ଅନୁବାଦ କାର୍ଯ୍ୟରେ ନିଯୁକ୍ତ କରିଥିଲି । ସେ ଏଡ଼େ ଅକାଳକୁଷ୍ମାଣ୍ଡ ବୋଲି ସ୍ୱପ୍ନରେ ସୁଦ୍ଧା କଳ୍ପନା କରି ନଥିଲି ମୁଁ । ବର୍ଷେକାଳ କ୍ୱାର୍ଟର୍‌ରେ ରଖି ତାଙ୍କୁ ପୋଷିଲି, ତଦୁପରି ଫି ମାସି କୋଡ଼ିଏ ଟଙ୍କା ଲେଖାଏଁ ପାରିଶ୍ରମିକ ଦେଲି । ବହୁତ ଟଙ୍କା ଅଯଥା ପାଣିକି ଫିଙ୍ଗିଲି, ଯେଉଁତକ ଅନୁବାଦ କଲେ ସେ ଲେଖା କଡ଼ାକର ସୁଦ୍ଧା ଯୋଗ୍ୟ ହେଲା ନାହିଁ । ତୁମେ ଯୋଗ୍ୟ ଅନୁବାଦକଟିଏ ଯୋଗାଡ଼ କରିଦିଅ ।" ଏହା କହି ବିଦାୟୀ ପଣ୍ଡିତଙ୍କ ଅବାଞ୍ଛିତ ଲେଖାତକ ମତେ ଦେଖାଇଲେ । ମୁଁ ଏଠୁ ସେଠୁ କିଛି କିଛି ଅଂଶ ପଢ଼ିଲା ପରେ ଉକ୍ତ ମନ୍ତବ୍ୟଟିଏ ଦେଲି, "ଯେଉଁ ପଣ୍ଡିତ ମାଛହାଟକୁ ଯାଇ 'କେଉଟୁଣୀ ମାଉସୀ ! ଏ ମାଛର ଦର କହ' ପରିବର୍ତ୍ତେ 'ଭୋ ଭୋ ଧୀବରପତ୍ନି ! ମତ୍ସ୍ୟ ମୂଲ୍ୟଂ ନିର୍ଦ୍ଦିଶ' ଭାଷା ବ୍ୟବହାର କରନ୍ତି, ଆପଣ ସେହି ଶ୍ରେଣୀର ଜଣେ ପଣ୍ଡିତଆଙ୍କୁ ନିର୍ବାଚନ କରିବାଟା ହିଁ ପ୍ରଥମ ଅଶୁଦ୍ଧ ହୋଇଛି । ତେଣୁ ଅକଲସଲାମି ଓ ଅବସୋସ ଆପଣଙ୍କର ନ୍ୟାଯ୍ୟ ପ୍ରାପ୍ୟ । ଯାହାହେଉ 'ଗତସ୍ୟ ଶୋଚନା ନାସ୍ତି', ମୁଁ ଆପଣଙ୍କୁ ଉପଯୁକ୍ତ ଭଲିଆ ଉପଯୁକ୍ତ ସାହିତ୍ୟିକଟିଏ ଯୋଗାଇଦେବାକୁ ଯଥାସାଧ୍ୟ ଯତ୍ନ କରିବି ।"

ଆଶାୟୀ ମନ୍ତ୍ରୀ ମହୋଦୟ ମୋ ଦୃଷ୍ଟିରେ ଥିବା ସେହି ଉପଯୁକ୍ତ ସାହିତ୍ୟିକଙ୍କର ନାମ ଶୁଣିବାକୁ ଏକାନ୍ତ ଉଦ୍‌ବିଗ୍ନ ହୋଇଉଠିବାରୁ ମୁଁ କହିଲି, "ସେ ହେଉଛନ୍ତି ଓଡ଼ିଆ ଅଧ୍ୟାପକ ଶ୍ରୀ କୃଷ୍ଣବିହାରୀ ଦାଶ । ସେ କି କେତେବର୍ଷ ହେଲା ଅପନ୍ତରାରେ ପଡ଼ିଲା ପରି

ବାଲେଶ୍ୱର ଫକିରମୋହନ କଲେଜରେ ପଢ଼ୁଥିଲେ । ସେ ଚାହୁଁଛନ୍ତି ମନୋମତ ବିସ୍ତୃତ କ୍ଷେତ୍ର, ପ୍ରଶସ୍ତ ସାଂସ୍କୃତିକ ପରିବେଶ, ଉଚ୍ଚତର ଶିକ୍ଷା-ସଂସ୍କୃତି ବେଷ୍ଟନୀ । ତାଙ୍କର ଲକ୍ଷ୍ୟ ଓଡ଼ିଶାର ପ୍ରାଣକେନ୍ଦ୍ର କଟକ ନଗରୀର ରେଭେନ୍‌ସା କଲେଜରେ ଅଧ୍ୟାପକତ୍ୱ । ଆପଣ ଶିକ୍ଷାମନ୍ତ୍ରୀ, ତାଙ୍କୁ ଯେବେ ଆଉଦିନା ଗ୍ରୀଷ୍ମଛୁଟି ପୂର୍ବରୁ ଏଠିକି ବଦଳି କରାଇଦିଅନ୍ତେ, ତାହାହେଲେ ଆପଣଙ୍କ ଅନୁବାଦ କାମ ପୁରୁଖୁଣ୍ଟୁରେ ସମାହିତ ହୋଇପାରନ୍ତା । ମୋର ଏହି ଅଭିବ୍ୟକ୍ତିକୁ ଆପଣ ଯେପରି ଅପେକ୍ଷିକ ସର୍ତ୍ତ ବୋଲି ବିଚାର ନ କରନ୍ତି, ସେଥିପାଇଁ ଏତିକି ଅନୁରୋଧ । ଅବିଳମ୍ବେ ମୁଁ କୃଷ୍ଣଙ୍କ ପାଖକୁ ଚିଠି ଲେଖିବି । ଆଶା, ମୋ କଥା ସେ ନିଶ୍ଚୟ ରଖିବେ ।''

କୃଷ୍ଣବିହାରୀଙ୍କ ନାମଟି ଶୁଣିଦେଲା ମାତ୍ରେ ପଣ୍ଡିତ ଲିଙ୍ଗରାଜ ପରମ ଆପ୍ୟାୟିତ ହୋଇଗଲେ । ସେହି ପ୍ରିୟ ନାମଟି ତାଙ୍କ 'ହୃଦୟ-ବନ ଦହନ କାଳରେ ଚନ୍ଦନଲେପନ' କରିଦେଲା । ଏବେ ମଧ୍ୟାହ୍ନଭୋଜନ ପାଇଁ ଠାଆ ସଜ ହେବାର ବେଳ ଆସିଗଲା । ଏଣୁ ମୋ ପ୍ରସ୍ତାବନାର ଆଭିମୁଖ୍ୟ ଏତିକିରେ ମୁଲତବି ରହିଲା ପରବର୍ତ୍ତୀ ପର୍ଯ୍ୟାୟର ସାକ୍ଷାତ୍ ପର୍ଯ୍ୟନ୍ତ ।

ଚର୍ବ୍ୟ-ଚୂଷ୍ୟ-ଲେହ୍ୟ-ପେୟର ମାଧ୍ୟାହ୍ନିକ ଉଦରପୂଜା ପରେ ଉଭୟେ କିଛି ସମୟ ମାମୁଲି ପାରିବାରିକ କୁଶଳ ସମାଚାର ବିଷୟରେ କଥାବାର୍ତ୍ତା ହୋଇ ବିଶ୍ରାମାର୍ଥ ଶଯ୍ୟା ଗ୍ରହଣ କଲୁଁ । ଦୁନିଆରେ କେତେକ ଲୋକ ଅଛନ୍ତି, ସ୍ଥାନ-କାଳ-ନିର୍ବିଶେଷରେ ଭୂଇଁ ଶୁଙ୍ଘୁ ଶୁଙ୍ଘୁ ସେମାନଙ୍କୁ ନିଦୋଡ଼ ନିଦ ଘୋଟିଯାଏ, ସେମାନଙ୍କ ନାହାନାଳୀ ନିର୍ଗତ ଘୁଙ୍ଗୁଡ଼ିର ଘନଘୋର ଘଡ଼ ଘଡ଼ ଘୋଷରେ ସମଗ୍ର ଗୃହାଙ୍ଗନର ବାତାବରଣ ପ୍ରକମ୍ପିତ ହୋଇଉଠେ । କିନ୍ତୁ ଆଉ କେତେକ ଲୋକ ଅଛନ୍ତି, ଯେଉଁମାନଙ୍କ ଚକ୍ଷୁକୁ ପରଘର ଶେଯରେ ସହଜରେ ନିଦ ଆସେ ନାହିଁ, ବରାବର ଛକଛକ ଲାଗେ । କଦବା କେବେ ତେଶରେ ଯଦବା ନିଦ୍ରାଗମ ହୁଏ, ସାମାନ୍ୟ ଖୁଡ଼୍‌ଖାଡ଼୍ ଶବ୍ଦରେ ଆଖିପତା ଖୋଲିଯାଏ, ନିଦ ଭାଙ୍ଗିଯାଏ । ମୋ ଦେହର ଧାତୁ ଠିକ୍ ଏଇ କିସମର । ତେଣୁ ମୋ ଘୁଇଁନିଦ ଭାଙ୍ଗିଗଲା ପରେ ଟାଲି ପାରି ମୁଁ କାନ ପାତିଥାଏଁ କେତେବେଳେ ଚର୍ଚ୍ଚା-କାରିଣୀଙ୍କ ଚେତାବନୀର ଆଲାର୍ମ ଆବାଜରେ ମନ୍ତ୍ରୀଙ୍କର ନିଦ୍ରାଭଙ୍ଗ ହେବ, ସେ ଆସି ମତେ ଉଠାଇବେ । ପ୍ରାୟ ସାଢ଼େଚାରିଟା ବେଳକୁ ମୋର ଏହି ଛଳ ଅଭିନୟର ଯବନିକାପାତ ହେଲା, ଯେତେବେଳେ ଲିଙ୍ଗରାଜ ବାବୁ ମୋ କାନ ପାଖରେ ଆସି ଡାକିଲେ ।

ନିଦ୍ରାଭଙ୍ଗ ପରେ ଚାହାପାନର ଆବଶ୍ୟକତା ଅନିବାର୍ଯ୍ୟ ହୋଇଥାଏ ମିଜାଜ ଭଜିବା ଲାଗି । ବାସ୍ତବିକମାନ ଚାହା କପ୍‌ର ଅନ୍ତରଙ୍ଗ ସଙ୍ଗୀ ହୋଇଥାଏ ସାଧାରଣତଃ କେତେଖଣ୍ଡ ମସମସିଆ ବିସ୍କୁଟ କିମ୍ବା ସେହିଭଳିଆ କିଛି ହାଲୁକା ଚାଟ୍ । ମାତ୍ର ଏଠି

ଘଟିଲା ତହିଁରେ ଆଖିବୁଜିଆ ବ୍ୟଞ୍ଜନ—ସୁହ୍ୱା ସହିତ ମିଳିଲା ଓଜନଦାର ଜିଲାପିଅ. ପୁରଚୁଆ ଛୁଚପଡର ଚକୁଲି ଅଧଡଜନେ ଲେଖେ ଓ ତା ସାଙ୍ଗକୁ ବାଟିଆଏ ଦହି ଘୁଗୁନି । ପାଟିକି ଏସବୁ ଖୁବ୍ ସ୍ୱାଦ୍ୟ ସତ; କିନ୍ତୁ 'ପେଟ ପୁରିଥିଲେ କ୍ଷୀର ଗୋବର' ପରି । ପେଟରେ କ'ଣ ଆଉ ଜାଗା ଅଛି ? ବାଧ୍ୟ ହୋଇ ମୁଁ ତହିଁରୁ ଯତ୍‌ସାମାନ୍ୟ ଆଘ୍ରାଣ କରି ବିଧିରକ୍ଷା କଲି । ମନ୍ତ୍ରୀଘର ଖାନାରେ ପେଟ ଫାଟିଗଲା ବୋଲି ପ୍ରକୃତ ମନକଥାଟି ଜଣାଇ ଲିଙ୍ଗରାଜବାବୁ ଓ ତାଙ୍କ ପତ୍ନୀଙ୍କଠାରୁ ବିଦାୟ ଆଣିଲି ।

ପରଦିନ ଏ ସମସ୍ତ ଖବର ବିସ୍ତାରିତ ଭାବରେ ଲେଖି କୃଷ୍ଣଙ୍କ ନିକଟକୁ ପତ୍ର ଖଣ୍ଡିଏ ପଠାଇଲି । ସେ ଦୋଳଛୁଟିରେ ଘରକୁ ଯାଉଥିବାବେଳେ କଟକରେ ଓହ୍ଲାଇ ମୋ ବସାକୁ ଆସିଲେ । ମୁଁ ତାଙ୍କୁ ସଙ୍ଗରେ ନେଇ ମନ୍ତ୍ରୀଙ୍କ ସହିତ ଭେଟ କରାଇଦେଲି । ଅଧ୍ୟାପକ କୃଷ୍ଣବିହାରୀ ଦ୍ୱିଧାହୀନ ଚିତ୍ତରେ ମନ୍ତ୍ରୀଙ୍କ ହସ୍ତରୁ ସଂସ୍କୃତ ରାମାୟଣ ଗ୍ରହଣ କରି ମୋ ବସା ହୋଇ ସ୍ୱଗ୍ରାମାଭିମୁଖରେ ପ୍ରସ୍ଥାନ କଲେ ।

ଛୁଟି ଶେଷ ହେଲାରୁ କୃଷ୍ଣବିହାରୀ ରାମାୟଣ ଗ୍ରନ୍ଥ ସହ ବାଲେଶ୍ୱର ଫେରିଲେ । ମଧ୍ୟେ ମଧ୍ୟେ ଅବସର ଦେଖି ସେ ଅନୁବାଦ କାମ ଚଳାଇରଖିଲେ । ତାଙ୍କ ଶାଣିତ ଗଦ୍ୟଭାଷା କବିତାର ଛନ୍ଦମାଧୁରୀ ଭଳି ଅମୃତାସ୍ୱାଦନ ଓ ହୃଦୟାହ୍ଲାଦକ । ସେ ଏପରି ମାପିଚୁପି ଶବ୍ଦସବୁ ବସାଇଥାନ୍ତି ଯେ, ବାକ୍ୟ ମଧ୍ୟରୁ କୌଣସି ଗୋଟିଏ ଶବ୍ଦକୁ ଉଠାଇ ତା ଜାଗାରେ ଅନ୍ୟ ଗୋଟିଏ ଅନୁରୂପ ଶବ୍ଦ ଥୋଇବା ପୋଖତ ସାହିତ୍ୟିକଙ୍କ ପକ୍ଷରେ ମଧ୍ୟ ଦୁର୍ଘଟ । ଶିକ୍ଷାମନ୍ତ୍ରୀ ତାଙ୍କୁ ଗ୍ରୀଷ୍ମାବକାଶ ପୂର୍ବରୁ କଟକକୁ ଘେନିଆସିବେ ବୋଲି ସ୍ଥିର ପ୍ରତିଶ୍ରୁତି ଦେଇଥିବାରୁ ସେ ଖରାଛୁଟିରେ ଗ୍ରାମକୁ ଆସିବା ବାଟରେ ମନ୍ତ୍ରୀଙ୍କୁ ତାଙ୍କ କୋଠିରେ ସାକ୍ଷାତ୍ କଲେ । ମନ୍ତ୍ରୀ ମହୋଦୟ ସେହି ଲମ୍ବା ଅବକାଶ ମଧ୍ୟରେ ନିଶ୍ଚୟ ବଦଳି ଆଦେଶ ତାଙ୍କ ଘର ଠିକଣାରେ ପଠାଇଦେବାକୁ ବ୍ୟବସ୍ଥା କରିବେ ବୋଲି ନିର୍ଭର ବଚନ ଦେଲେ । ମାତ୍ର ଡାକକୁ ଚାହିଁ ଚାହିଁ ଘରେ ପୁରା ଛୁଟି କଟିଲା ପଛେ, ବଦଳି ଅର୍ଡ଼ର୍‌ର ଦର୍ଶନ ନ ମିଳିଲା । ଅଗତ୍ୟା ସେ ଗ୍ରାମରୁ ଭୁବନେଶ୍ୱର ଷ୍ଟେସନ ଆସି ସିଧା ବାଲେଶ୍ୱର ଫେରିଗଲେ । ଦୀର୍ଘ ଛଅ ସାତ ମାସ ଅତୀତ ହୋଇଗଲା, ତଥାପି ମନ୍ତ୍ରୀ ଆପଣେ ବାରମ୍ବାର ଚେଷ୍ଟା ସତ୍ତ୍ୱେ ନିଜ ଅଙ୍ଗୀକାରରକ୍ଷାରେ ସମର୍ଥ ହୋଇପାରିଲେ ନାହିଁ । ଅଧ୍ୟାପକ କୃଷ୍ଣବିହାରୀ କିନ୍ତୁ ତତ୍‌ପ୍ରତି ଭ୍ରୂକ୍ଷେପ ନକରି ଦାୟିତ୍ୱ ବହନ କରିଥିବା ଅଂଶଟିକର ଗଦ୍ୟାନୁବାଦ ସୁଷ୍ଠୁରୂପେ ସମ୍ପୂର୍ଣ୍ଣ କରି ଯଥାସମୟ ମଧ୍ୟରେ ମନ୍ତ୍ରୀଙ୍କ ହସ୍ତରେ ଆଣି ଅର୍ପଣ କରିଦେଲେ ।

ଈଶ୍ୱର ଯାହା କରନ୍ତି ସବୁ ମଙ୍ଗଳ ପାଇଁ । ପରୋପକାର ପ୍ରଭୃତି ସତ୍‌କାର୍ଯ୍ୟର ସୁଫଳ କେବେହେଁ ବ୍ୟର୍ଥରେ ଯାଏନାହିଁ । ଠିକ୍ ସେତିକିବେଳେ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟ କଲେଜର ଓଡ଼ିଆ ବିଭାଗରେ ଅଧ୍ୟାପକ ରୂପେ ଯୋଗ ଦେବାପାଇଁ କୃଷ୍ଣବିହାରୀଙ୍କୁ ଏକ

ଅମୃତ ସୁଯୋଗ ମିଳିଲା । ଶାନ୍ତିନିକେତନରୁ ଏ ସମ୍ପର୍କରେ ଚିଠି ମଧ୍ୟ ସେ ପାଇଲେ । ଓଡ଼ିଶାସରକାରଙ୍କଠାରୁ ଅନୁମତି ପାଇ କୃଷ୍ଣବିହାରୀ ତୁରନ୍ତ ଯାଇ ନୂତନ ନିଯୁକ୍ତିର କାର୍ଯ୍ୟଭାର ଗ୍ରହଣ କଲେ । ସେ ଯେଉଁପରି ଆଲୋଚନା କ୍ଷେତ୍ରଟିଏ ଖୋଜୁଥିଲେ, ଈଶ୍ୱର ତାଙ୍କ ମନ ଜାଣି ଠିକ୍ ସେହିପରି ପ୍ରଜ୍ଞାପୀଠଟିରେ ନେଇ ତାଙ୍କୁ ପହଞ୍ଚାଇଦେଲେ ।

ଅନତିକାଳ ମଧ୍ୟରେ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କର ସେହି ଓଡ଼ିଆ ଗଦ୍ୟାନୁବାଦ ଗ୍ରନ୍ଥ 'ବାଲ୍ମୀକି ରାମାୟଣ' ପ୍ରକାଶମୁଖୀ ହେଲା । ଯେଉଁ ପ୍ରକାଶନ ସଂସ୍ଥା ତାହାର ପ୍ରକାଶଭାର ନେଇଥିଲେ, ସେ କୃଷ୍ଣବିହାରୀଙ୍କ ପରିଶ୍ରମର ମୂଲ୍ୟାୟନ କରିଥିଲେ ଏବଂ ସେଇଟି ସେହି ମୁଦ୍ରିତ ରାମାୟଣରେ ଉପହାର ମାତ୍ର । ଜିଜ୍ଞାସାନୁଧ୍ୟାୟୀ ବିଦୁଷ-ବିଦୁଷୀମାନେ ଏହି ପରମ ପବିତ୍ର ଗ୍ରନ୍ଥ ପାରାୟଣ କରୁଥିବା ସମୟରେ ପାଞ୍ଚ କାଣ୍ଡ ଶେଷରେ ଯେଉଁଠୁ ଅଧ୍ୟାପକ କୃଷ୍ଣବିହାରୀଙ୍କ ଗଦ୍ୟ ଲେଖାର ଭାଷାଭଙ୍ଗୀ ଓ ବାକ୍‌ଶୈଳୀକୁ ଭେଟିବେ, ସେତେବେଳେ ସୀତାଉଦ୍ଧାର ପୂର୍ବକ ପୁଷ୍ପକ ବିମାନରେ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ପଥରେ ଶ୍ରୀରାମଚନ୍ଦ୍ର ନିଜ ହୃଦୟଜ୍ୟୋତ୍ସ୍ନା ସତୀ ବୈଦେହୀଙ୍କୁ କହିଥିବା ଏହି ପଦଟି ସ୍ୱତଃ ସେମାନଙ୍କର ମନେ-ପଡ଼ିଯିବ—

"ଗଙ୍ଗା-ଯମୁନା ସଂଯୋଗ ଦେଖ ଗୋ ସୁନ୍ଦରି !<br>
ଧଳା-କଳା ରୂପ ଦିଶେ ରୁଚିର କପରି ।"

## (୫) ପାଠ୍ୟପୁସ୍ତକ ଜାତୀୟକରଣ : ପାଠ୍ୟପୁସ୍ତକ ପ୍ରଣୟନରେ ମୋର ଭୂମିକା—

ଜାତିଜନକ ମହାତ୍ମାଗାନ୍ଧିଙ୍କ ପରି ତାଙ୍କ ଯୋଗ୍ୟତମ ଶିଷ୍ୟ ପ୍ରଥମ ପ୍ରଧାନମନ୍ତ୍ରୀ ଜବାହାରଲାଲଙ୍କର ପରମ ପ୍ରିୟ ଥିଲେ ଜାତିଧର୍ମବର୍ଣ୍ଣନିର୍ବିଶେଷରେ ରାଷ୍ଟ୍ରର ସମଗ୍ର ଶିଶୁ-ସମ୍ପ୍ରଦାୟ; କାରଣ ସେହିମାନେ ଦିନେ ହେବେ ଭାରତମାତାର ଭାଗ୍ୟବିଧାତା, ଶାସନ-ରଥର ରଥୀ ସାରଥି । ଏହି ଲକ୍ଷ୍ୟରେ ଛବିପ୍ରିୟ ଛୋଟ ଶିଶୁମାନଙ୍କ ମନୋରଞ୍ଜନ-ଉପଯୋଗୀ ଅକ୍ଷର-ପରିଚୟର ପ୍ରାରମ୍ଭିକ ଶିକ୍ଷା ପୁସ୍ତକଠାରୁ ଆରମ୍ଭ କରି କ୍ରମଶଃ ଉପର ଉପର ଶ୍ରେଣୀ ପର୍ଯ୍ୟନ୍ତ ଦେଶାତ୍ମବୋଧମୂଳକ ଓ ଧନ୍ଦାମୁଖୀ ବିଜ୍ଞାନଭିତ୍ତିକ ଜାତୀୟକରଣୀକୃତ (nationalised) ପଦେ ପଦେ ଛବି ବିଚ୍ଛୁରିତ ପାଠ୍ୟପୁସ୍ତକମାନ କିପରି ଭାରତର ସବୁ ପ୍ରାନ୍ତରେ ସବୁ ଭାଷାରେ ଅତି ତୁରନ୍ତ ପ୍ରବର୍ତ୍ତିତ ହେବ, ସେଥିପାଇଁ ଦେଶର ସମସ୍ତ ରାଜ୍ୟ ସରକାରଙ୍କୁ ସେ କଡ଼ା ନିର୍ଦ୍ଦେଶ ଦେଇଥାନ୍ତି । ପ୍ରଧାନମନ୍ତ୍ରୀଙ୍କର ସେହି ନିର୍ଦ୍ଦେଶକୁ ମାନି ସବୁ ରାଜ୍ୟର ଶିକ୍ଷା-ନିର୍ଦ୍ଦେଶକମାନେ କିଛି-ନା-କିଛି ଜାତୀୟ-କରଣ ପାଠ୍ୟପୁସ୍ତକ ପ୍ରଣୟନପୂର୍ବକ ପ୍ରାଥମିକ ବିଦ୍ୟାଳୟମାନଙ୍କରେ ଚଳାଇ ଉକ୍ତ ଜାତୀୟ କାର୍ଯ୍ୟକ୍ରମକୁ ଜୀବନ୍ତ ରଖିଥାନ୍ତି । କେବଳ ଓଡ଼ିଶାର 'ଅଳସୁଆ ମାଧିଆ' ପ୍ରକୃତିକ ତତ୍କାଳୀନ ଶିକ୍ଷା-ନିର୍ଦ୍ଦେଶାଳୟ ନାହିରେ ତେଲ ପକାଇ ନିଦକରେ ନିଦରେ ଶୋଇଥାଏ ।

ପ୍ରଧାନମନ୍ତ୍ରୀଙ୍କ ଇଚ୍ଛାକୁ ଯଥାର୍ଥ ସମ୍ମାନ ଦିଆଯାଉଥିବାର ନମୁନାସ୍ୱରୂପ ତତ୍‌ସଂକ୍ରାନ୍ତ କେନ୍ଦ୍ର-ନିର୍ଦ୍ଦେଶନାମାକୁ ଜୀବନ୍ତ ଫାଇଲ୍‌ମାଳା ମଧ୍ୟରେ ପ୍ରାଧାନ୍ୟସୂଚକ ଫ୍ଲାଗ୍ (flag) ଚିହ୍ନଟ ଦେଇ ତଳହାକିମଙ୍କ ହାତପାଖ ଥାକ (shelf)ରେ ଯତ୍ନରେ ରଖାଯାଇଥାଏ, ଉପରୁ ତାଗିଦା ଆସିଲେ ଯେପରି ବାର ଜାଗାରେ ଧକ୍କା ହୋଇ ଗଳଦ୍‌ଘର୍ମ ହେବାକୁ ପଡ଼ିବ ନାହିଁ ।

ଏହିରୂପେ ଟାଣି ଘୋଷାରି ୧୯୬୧ ପର୍ଯ୍ୟନ୍ତ ଫାଇଲ୍‌ଟିକୁ ସ୍ଥାଣୁ ଅବସ୍ଥାରେ ଜିଆଇ ରଖାଗଲା । ସେତେବେଳେ ଓଡ଼ିଶାର ଶାସନ-ବଲ୍‌ଗା କରାୟତ୍ତ କରିଥାନ୍ତି ଅସୀମସାହସିକ ବୈମାନିକ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ, ପ୍ରଧାନମନ୍ତ୍ରୀଙ୍କର ପ୍ରିୟ ଅନୁଗତ, ଅତି ସ୍ନେହପାତ୍ର । ସେହି ୧୯୬୧ର ଶେଷ ମାସରେ ମୁଖ୍ୟମନ୍ତ୍ରୀ ବିଜୁବାବୁ ସରକାରୀ ଗସ୍ତରେ ଦିଲ୍ଲୀ ଯାଇ ଜବାହାରଙ୍କୁ ଭେଟେଇ ସାକ୍ଷାତ୍ କରିଥିଲେ । ସେହି ଅବସରରେ ପ୍ରଧାନମନ୍ତ୍ରୀ ଗମ୍ଭୀର ଆକ୍ଷେପର ସହିତ ପାଠ୍ୟପୁସ୍ତକ ଜାତୀୟକରଣ ଯୋଜନାକୁ କାର୍ଯ୍ୟକାରୀ କରିବା କ୍ଷେତ୍ରରେ ଓଡ଼ିଶା ସରକାରୀ କଳର ଅକ୍ଷମଣୀୟ ଅବହେଳା ପ୍ରସଙ୍ଗ ଉତ୍ଥାପନ କରି ବିଜୁବାବୁଙ୍କୁ ପାର୍ଶ୍ୱବର୍ତ୍ତୀ ପ୍ରକୋଷ୍ଠକୁ ନେଇଯାଇ ସେଠାରେ ଥିବା ଆଲମାରିଗୁଡ଼ିକୁ ନିର୍ଦ୍ଦେଶପୂର୍ବକ କହିଲେ, "ଦେଖ ବିଜୁ, ଏହି ପ୍ରତ୍ୟେକ ଆଲମାରିରେ ଗୋଟିଏ ଗୋଟିଏ ରାଜ୍ୟର ଜାତୀୟକରଣ ପାଠ୍ୟପୁସ୍ତକ ସଂରକ୍ଷିତ ରହିଛି । କିନ୍ତୁ ଓଡ଼ିଶାପାଇଁ ନିର୍ଦ୍ଦିଷ୍ଟ ଆଲମାରିଟି ପୂରା ଖାଲିପଡ଼ିଛି । ଅନ୍ୟାନ୍ୟ ରାଜ୍ୟ ଊଣା-ଅଧିକେ କେତେ କେତେ ଖଣ୍ଡି ପୁସ୍ତକ ପ୍ରସ୍ତୁତ କରି ଆଂଶିକ ଆଂଶିକ କୃତକାର୍ଯ୍ୟ ହୋଇଛନ୍ତି, ମାତ୍ର ଓଡ଼ିଶାର ଏପର୍ଯ୍ୟନ୍ତ ନିଦ୍ରାଭଙ୍ଗ ହୋଇନାହିଁ । ତୁମ ଭଳି ଜବରଦସ୍ତ ବୈମାନିକ ମୁଖ୍ୟମନ୍ତ୍ରୀ ବର୍ତ୍ତମାନ ଓଡ଼ିଶାର ନିୟନ୍ତ୍ରକ ଓ ନାୟକ ହୋଇଥିବାରୁ ମୁଁ ଆଶା କରେଁ ଯେ, ପାଠ୍ୟପୁସ୍ତକ ଜାତୀୟକରଣ ସମ୍ପର୍କୀୟ ମୋର ନିର୍ଦ୍ଦେଶ ଏଥର ଓଡ଼ିଶା ସରକାରର ଅନ୍ଧକୂପଗର୍ଭରୁ ଉଦ୍ଧାର ଲାଭ କରି ଅଚିରେ ସଫଳରୂପାୟିତ ହେବ ।"

ପ୍ରଧାନମନ୍ତ୍ରୀଙ୍କର ଏହି ବ୍ୟଥାସିକ୍ତ ବାଣୀ ଓଡ଼ିଶା ମୁଖ୍ୟମନ୍ତ୍ରୀଙ୍କୁ ମର୍ମାହତ କଲା ଯେତିକି, ପ୍ରୋତ୍ସାହିତ କଲା ତତୋଽଧିକ । ମୁଖ୍ୟମନ୍ତ୍ରୀଙ୍କ ସଂକ୍ଷିପ୍ତ ଡାକନାମ 'ବିଜୁ'ର ମୂଳ ନାମ ହେଉଛି 'ବିଜୟାନନ୍ଦ' । ସେହି ହେତୁ ବୋଧହୁଏ ତାଙ୍କର ପ୍ରତ୍ୟେକ ଉଦ୍ୟମର ଫଳ ବିଜୟର ଆନନ୍ଦରେ ବିଳସିତ ହୋଇଥାଏ । ବିଜୁବାବୁ ଦିଲ୍ଲୀ ଛାଡ଼ି ଯେଉଁଦିନ ଭୁବନେଶ୍ୱର ବିମାନଘାଟିରେ ଅବତରଣ ପୂର୍ବକ ତନ୍ନିକଟସ୍ଥ ସ୍ୱଭବନକୁ ଫେରିଲେ, କାକତାଳୀୟ ଘଟଣାକ୍ରମେ ହେଉ ବା ବିଧିନିର୍ବନ୍ଧକ୍ରମେ ହେଉ, ଜାତୀୟ କବି ବୀରକିଶୋର ଦାସ କଟକ ଛାଡ଼ି ଠିକ୍ ସେହିଦିନ କାର୍‌ରେ ଯାଇ ଉପସ୍ଥିତ ହେଲେ ପୂର୍ବଙ୍କ ଭୁବନେଶ୍ୱର ବାସଭବନରେ । ବୀରବାବୁ ତତ୍‌ପରଦିନ ପ୍ରତ୍ୟୁଷରେ ବିଜୁବାବୁଙ୍କ ଶୟନ କକ୍ଷର ଦ୍ୱାରଦେଶରେ ପହଞ୍ଚି ତାଙ୍କ ଶଯ୍ୟୋତ୍‌ଥାନ ମୁହୂର୍ତ୍ତକୁ ଟାକି ରହିଥାନ୍ତି ସତୃଷ୍ଣ ନୟନରେ । ସେ ଭଲରୂପେ ଖବର ରଖିଥାନ୍ତି ଯେ, ବିଜୁଙ୍କର ସବୁଠୁଁ ଶ୍ରେଷ୍ଠ ମଧୁର-ମୁହୂର୍ତ୍ତ ହେଉଛି

ସୂର୍ଯ୍ୟୋଦୟର ପ୍ରାକ୍‌କାଳ—ଯେତେବେଳେ ତାଙ୍କର ନିଦ ଭାଙ୍ଗେ ଏବଂ ଯେତେବେଳେ ସେ ଶଯ୍ୟା ଉପରେ ବସି ପଲଙ୍କ-ଚା (bed-tea) ଖାଆନ୍ତି । ସେହି ମଧୁରତମ ମୁହୂର୍ତ୍ତରେ ଯେଉଁ ପ୍ରାର୍ଥୀ ତାଙ୍କ ସମ୍ମୁଖରେ ଉଭା ହୋଇପାରେ, ବିଜୁବାବୁଙ୍କର ତା' ଉପରେ ମନ୍ଦୁ ବର୍ଷିଯାଏ, ତତକ୍ଷଣେ ତାର କାଂକ୍ଷିତ କାମନା ପୂର୍ବରୁ ଅଧିକ ପୂରଣ ହୋଇଯାଏ ।

ପଲଙ୍କ-ଚା ସମ୍ଭୋଗର ଆମୋଦରେ ମୁଖ୍ୟମନ୍ତ୍ରୀଙ୍କ ମନୋମଣ୍ଡଳରେ ସ୍ଫୂର୍ତ୍ତିର ସ୍ଫୁଲିଙ୍ଗ ଚହଟିଯିବା ବେଳକୁ ସୁଯୋଗ-ଉପଯୋଗଙ୍କ ବୀରବାବୁ ପରଦା ଠେଲି କକ୍ଷ ଭିତରକୁ ପଶିଗଲେ । ଗୁହାରିଆର ଲହୁଣିଆ ଭାଷାରେ ଅଥଚ ଉଆଳିବ ଦାବିର ସ୍ୱରରେ ଜଣା କଲେ, "ଆସେମ୍ବ୍ଲି ନିର୍ବାଚନରେ ତ ମତେ କଂଗ୍ରେସ ଟିକେଟରୁ କାଟିଦେଲ, ଏବେ ମୁଁ ଚଳେଁ କେମିତି ? ଜାଣିଚ ତ ମୁଁ ପୁରୁଣା ରୋଗୀ, ଘର ପାହିଲେ ନିତି ମୋର ଓଷଦ-ଇଞ୍ଜେକ୍‌ସନ୍-ପଥ୍ୟ-ଫଳ ବାବଦରେ ଲାଗୁଛି ପକ୍ଷେ ପନ୍ଦର ଟଙ୍କା ଖର୍ଚ୍ଚ । କାହୁଁ ପାଇବି ? ସେଥିପାଇଁ କି ବ୍ୟବସ୍ଥା ଖଞ୍ଜୁଚ ?"

—"ଘର ପାହୁଁ ନ ପାହୁଁ ପିଠିରେ ଆସି ସବାର ! ଏତେ ଗୌରଚନ୍ଦ୍ରିକା ଶୁଣିବାକୁ ମୋର ବେଳ ନାହିଁ; ସିଧାସଳଖ ପଦକରେ କହ, ମାସକୁ କେତେ ଟଙ୍କା ହେଲେ ଆଉ ମୋ ପାଖରେ ଆସି ବୋବେଇବ ନାହିଁ ।"

—"ସାତ ଶହ ଟଙ୍କା ।"

ମୁଖ୍ୟମନ୍ତ୍ରୀ ଖଡ଼େଦମ୍ ହାତ ପକେଇଲେ ଫୋନ୍ ଉପରେ, ଟିକିଏ ଚମକାଇ ଚିଫ୍ ସେକ୍ରେଟରୀଙ୍କ କୋଠିକି ଲଗେଇଲେ, "ଶିବରମଣ, ମୁଁ ଯାହା କହୁଛି ତାକୁ ଲେଖିକରି ଆଜି ଗୋଟାଏ ନୂଆ ଫାଇଲ୍ ଷ୍ଟାର୍ଟ କର । ଆସନ୍ତା ୧୯୬୨ ଜାନୁଆରି ପହିଲା ତାରିଖରେ 'ଟେକ୍‌ସ୍ଟ ବୁକ୍‌ସ ପ୍ରିପାରେସନ୍, ପ୍ରଡ଼କ୍‌ସନ ଆଣ୍ଡ୍ ପବ୍ଲିକେସନ୍ କମିଟି' ଅଫିସ୍ ନୂଆ ହୋଇ କଟକରେ ସ୍ଥାପିତ ହେବ ଏବଂ ସେହିଦିନଠାରୁ ଆନୁଷ୍ଠାନିକ ଭାବରେ କାର୍ଯ୍ୟାରମ୍ଭ କରିବ । ସୁଯୋଗ୍ୟ ଜାତୀୟ କବି ବୀରକିଶୋର ଦାସଙ୍କୁ ମୁଁ ତାହାର ସେକ୍ରେଟରୀରୂପେ ନିଯୁକ୍ତ କରିଛୁ ଏବଂ ତାଙ୍କର ଦରମା ମାସିକ ସାଢ଼େ ସାତ ଶହ ହେବ ବୋଲି ସ୍ଥିର କରିଦେଇଛୁ । ପ୍ରତି ପାଠ୍ୟ ବିଷୟ (subject) ପାଇଁ ମୂଳ କମିଟିର ସଭାପତି ଶିକ୍ଷାମନ୍ତ୍ରୀଙ୍କ ତତ୍ତ୍ୱାବଧାନରେ ଗୋଟିଏ ଗୋଟିଏ ସବ୍-କମିଟି ଗଠିତ ହେବ ଏବଂ ସେ ପ୍ରତ୍ୟେକର ବିଶାରଦ ମେମ୍ବରମାନେ ଜାତୀୟକରଣ ପାଠ୍ୟପୁସ୍ତକ ପ୍ରଣୟନ କରିବେ । କମିଟି କାର୍ଯ୍ୟାଳୟର ବିଭିନ୍ନ ପୋଷ୍ଟରେ ନିଯୁକ୍ତ ହେବାପାଇଁ କେଉଁ ଡିପାର୍ଟମେଣ୍ଟରୁ କେଉଁ ଦକ୍ଷ ବିଶ୍ୱସ୍ତ ବ୍ୟକ୍ତିଙ୍କୁ ଅଣାଯିବ, ତାହାର ତାଲିକା ନିଦନିଯୁକ୍ତ ସେକ୍ରେଟରୀ ତୁମକୁ ଦେବେ ଏବଂ ସେମାନେ ଯେପରି ୧ । ୧ । ୧୯୬୨ ତାରିଖର ପୂର୍ବାହ୍ଣ ନଅଟା ସୁଦ୍ଧା ନିଶ୍ଚୟ ସେକ୍ରେଟରୀ ବୀରକିଶୋର ଦାସଙ୍କ ନିକଟରେ ନିଜନିଜର ଜଏନିଂ ରିପୋର୍ଟ ଦାଖଲ କରିବେ ତାର ଦୃଢ଼ ବ୍ୟବସ୍ଥାର ଭାର ତୁମେ ସ୍ୱୟଂ ଗ୍ରହଣ କରିବ । ସେକ୍ରେଟରୀ

ହୀରକିଶୋରଙ୍କୁ ବର୍ତ୍ତମାନ ତୁମ କୋଠିକୁ ପଠାଉଛୁ । ତାଙ୍କ ସହିତ ପରିଚିତ ହୋଇ ସମସ୍ତ ଆନୁଷଙ୍ଗିକ ଆନୁଷ୍ଠାନିକତା ସମ୍ବନ୍ଧରେ ପୁଙ୍ଖାନୁପୁଙ୍ଖ ଆଲୋଚନା କରିବ ଏବଂ ପରାମର୍ଶ ମଧ୍ୟ ଦେବ ।"

କୃତଜ୍ଞ ହୀରବାବୁ ମୁଖ୍ୟମନ୍ତ୍ରୀଙ୍କ ଠାମୁରୁ ବିଦାୟ ନେଇ ମୁଖ୍ୟ ସଚିବଙ୍କ କୋଠି ଅଭିମୁଖରେ ଯାତ୍ରା କଲେ । ନିଜେ ନ ହସି ଭଙ୍ଗୀଳ ବାକ୍ୟରେ ଅନ୍ୟମାନଙ୍କୁ ହସେଇ ରସେଇ ଖୁସ୍ କରିଦେଲା ଭଳି ଜଣେ ବଡ଼ ମଜାଦାର ଲୋକ ହୀରବାବୁ, ଯଦିବା ସେ ଆଦୌ ବହୁଭାଷୀ ନୁହନ୍ତି କି ଉଚ୍ଚହାସୀ ନୁହନ୍ତି । ତାଙ୍କର ସ୍ୱାଭାବିକ ଅଳପ କଥାରେ ଏପରି ରସିକତା ଜଡ଼ି ରହିଥାଏ ଯେ, ତାହା କାନଗିଲରେ ପିଟିହୋଇଯିବାମାତ୍ରେ ଶୁଖିଲା ମୁହଁରେ ବି ସରସତାର ମଲ୍ଲୀପେନ୍ଥା ଫୁଟିଉଠେ । ସେ ଚଟ୍ ସେକ୍ରେଟରି ମିଷ୍ଟର୍ ଶିବରମଣଙ୍କ କୋଠିରେ ପହଞ୍ଚି ମଧୁରାଳାପ ଆରମ୍ଭ କରୁଁ କରୁଁ ତାଙ୍କୁ ଚତୁର ବାଗ୍-ଭଙ୍ଗିମାରେ ମୁଗ୍ଧ କରିଦେଲେ—"ଓଡ଼ିଶାର ପୁରୁଣା ରାଜଧାନୀ କଟକ (Kataka)ରୁ ଉଠିଆସି ଏବେ ନୂଆ ରାଜଧାନୀ (New Capital) ରୂପେ ଭୁବନେଶ୍ୱରରେ ପ୍ରତିଷ୍ଠିତ ହୋଇଛି । 'BBSR' ଏହି କ୍ଳୃପ୍ତ ପ୍ରକାଶନ (abbreviation)ଟିକୁ ଇଂରାଜୀକୃତ 'Bhubaneswar' ଶବ୍ଦର ସଂକ୍ଷେପ ବୋଲି କି ସରକାରୀ କି ବେସରକାରୀ ପାଠୁଆ-ଦରପାଠୁଆ ସବୁ ଶ୍ରେଣୀର ଲୋକେ ବୁଝିଥାନ୍ତି; କିନ୍ତୁ ମୁଁ ବୁଝେ ଯେ, ଏହି ସଂକ୍ଷେପୀକୃତ 'BBSR' ଅକ୍ଷର ଚତୁଷ୍ଟୟ ଓଡ଼ିଶା ଶାସନ କ୍ଷେତ୍ରର ହର୍ତ୍ତାକର୍ତ୍ତାବିଧାତା ତ୍ରିମୂର୍ତ୍ତିଙ୍କର ନାମକୁ ହିଁ ପ୍ରତିପାଦନ କରୁଚି, ଅର୍ଥାତ୍ ପ୍ରଥମ ଅକ୍ଷର B = ବିଜୁ, ଦ୍ୱିତୀୟ ଅକ୍ଷର B = ବୀରେନ୍, ତୃତୀୟ-ଚତୁର୍ଥ ଅକ୍ଷର SR = ଶିବରମଣ ।" କାନ୍ତିୟ କବିଙ୍କ ମୁଖରୁ ଏ ବିଚିତ୍ର ନବ୍ୟତମ (modern) ଭାଷା ଶୁଣିବା ମାତ୍ରେ ମୁଖ୍ୟ ସଚିବଙ୍କ ମୁହଁରେ ହସର ପୁନିଅଁ ଜୁଆର ଖେଳିଯାଇଥିଲା, ଆଉ ସେ ନିଜେ ଭାଷ୍ୟକାର ମହୋଦୟଙ୍କ ବିଚକ୍ଷଣ ଉପସ୍ଥିତ ବୁଦ୍ଧିର ପ୍ରଖରତାକୁ ମନେ ମନେ ଶତଜିହ୍ୱାରେ ପ୍ରଶଂସା ନ କରି ରହିପାରିନଥିଲେ ।

ଶିଶୁ ଓ କିଶୋର ବୟସର ପିଅଝିଅଙ୍କପାଇଁ ପାଞ୍ଚ ସାତ ଖଣ୍ଡି ଉପାଦେୟ ସାହିତ୍ୟ ପୁସ୍ତକ ଲେଖିବି ବୋଲି ୧୯୬୧ ନଭେମ୍ବର ପହିଲାରୁ ଡିସେମ୍ବର ଶେଷ ପର୍ଯ୍ୟନ୍ତ ଦୁଇମାସ ମୁଁ ଲମ୍ବା ଛୁଟି ନେଇ ଘରେ ରହିଥିଲି । ଧାର୍ଯ୍ୟ କାଳ ମଧ୍ୟରେ ସଙ୍କଳ୍ପିତ ଲେଖାତକ ସଦ୍ୟ ସରିଯାଇଥାଏ । ମୋ ପ୍ରଣୀତ ବହିଗୁଡ଼ିକର ସେତେବେଳେ ପ୍ରକାଶକ ଓ ପରିବେଷକ ହୋଇଥାନ୍ତି ମୁଖ୍ୟତଃ ଆଲୋକ ସାହିତ୍ୟ ପ୍ରତିଷ୍ଠାନ, ୟୁନାଇଟେଡ୍ ବୁକ୍ ହାଉସ୍, ନ୍ୟୁ ଷ୍ଟୁଡେଣ୍ଟସ୍ ଷ୍ଟୋର୍ ଓ ଗ୍ରନ୍ଥମନ୍ଦିର । ପ୍ରାଇଜ୍-ଲାଇବ୍ରେରି ପୁସ୍ତକରୂପେ କାଟତି ହେବାପାଇଁ ସେମାନେ ମୋ'ଠାରୁ ଯେଉଁସବୁ ଶିଶୁସାହିତ୍ୟ ଓ କିଶୋର ସାହିତ୍ୟ ପୁସ୍ତକ ନେଉଥିଲେ, ସେଗୁଡ଼ିକୁ ତୃତୀୟଠାରୁ ଅଷ୍ଟମ ପର୍ଯ୍ୟନ୍ତ ଭିନ୍ନ ଭିନ୍ନ ଶ୍ରେଣୀର 'ଅତିରିକ୍ତ ସାହିତ୍ୟ' ରୂପେ ମଞ୍ଜୁରିପ୍ରାପ୍ତି ଲାଗି ଶିକ୍ଷାନିର୍ଦ୍ଦେଶକ (D.P.I.)ଙ୍କ ନିକଟକୁ ମଧ୍ୟ ପଠାଉଥିଲେ । ଏ

ଜାତୀୟ ପୁସ୍ତକ ଅନ୍ୟୂନ ଶହେ ବଣାଶହେ ଖଣ୍ଡ ପର୍ଯ୍ୟନ୍ତ ଓଡ଼ିଶାର ବିଭିନ୍ନାଞ୍ଚଳୀୟ ପ୍ରକାଶକ ଓ ଲେଖକଙ୍କଦ୍ୱାରା ପ୍ରେରିତ ହେଉଥିଲା । ମୋ ଲକ୍ଷିତ ଏ ଧରଣର ପ୍ରାୟ ସବୁ ବହି 'ଅତିରିକ୍ତ ସାହିତ୍ୟ'ରୂପେ କୌଣସି-ନା-କୌଣସି ଶ୍ରେଣୀପାଇଁ ମଞ୍ଜୁର ପାଇ-ପାଉଥିଲା । ଏହି ଗାଦିଦାହିକର କାରଣ ଯୋଗୁଁ କେତେକ ଅସନ୍ତୁଷ୍ଟ ଲେଖକ ଓ ହତାଶ ପ୍ରକାଶକଙ୍କର ମୁଁ ହୋଇଥାଏଁ ଏକାନ୍ତ ଈର୍ଷଣୀୟ ଓ ଚକ୍ଷୁଶୂଳ ।

ସେହି ଡିସେମ୍ବରର ବଡ଼ଦିନ ଛୁଟି ଭିତରର କୌଣସି ଏକ ଦିବସ, ଅନୁମାନିକ ୨୨ ବା ୨୩ ତାରିଖର ସନ୍ଧ୍ୟା । ମୋ ବୈଠକଖାନାରେ ସମବେତ ହେଲେ କେବେ ଆସି ନ ଥିବା ଗୋଟିଏ ଶିକ୍ଷାଗୁରୁ—ସେଥିରୁ ତିନିଭାଗରୁ ବେଶୀ ପ୍ରାଥମିକ-ମଧ୍ୟଇଂରାଜୀ-ଉଚ୍ଚ-ଇଂରାଜୀ ବିଦ୍ୟାଳୟର ଶିକ୍ଷକ, ବାକି କେଇଜଣମାତ୍ର କଲେଜ ଅଧ୍ୟାପକ । ବୟସରେ ମଧ୍ୟ ତର ତମର ପାର୍ଥକ୍ୟ—କେତେକ ଗଜାବଅସିଆ, କେତେକ ଅଧାବଅସିଆ, ଆଉ କେତେକ ବୋଧାବଅସିଆ । ଅନ୍ୟପ୍ରକାର ବିଶ୍ଳେଷଣରେ କିଏ ଚମ୍ପା ତ କିଏ ଚଙ୍ଗଚଙ୍ଗା, କିଏ ଚଷ୍ଟଳିଆ ତ କିଏ ତୁରୁତୁରିଆ, କିଏ ମାନ୍ଦା ତ କିଏ କାଉନ୍ଦା, କିଏ କୁହାଳିଆ ତ କିଏ ମଉନମୁହାଁ । କେବଳ ଜଣେ ଦୁଇ ଜଣ ଗମ୍ଭୀର ବା ସ୍ଥିରମସ୍ତିଷ୍କ । ପ୍ରତ୍ୟେକେ ପ୍ରତିଯୋଗିତାମୂଳକ ପାଠ୍ୟପୁସ୍ତକ ରଚନା ଦୌଡ଼ରେ ଜଣେ ଜଣେ ପରାସ୍ତ ସୈନିକ । ସେମାନେ ପାଠ୍ୟପୁସ୍ତକ ଲେଖାକୁ ବିପୁଳ ଅର୍ଥାଗମର ସହଜ ସୁଲଭ ପନ୍ଥା ବୋଲି ଆପାତତଃ ବିଚାର ସ୍ୱପ୍ନିଳ ଆଶାରେ ସେହି ରାସ୍ତାରେ ଅନ୍ଧାଧୁନ୍ଦିଆ ମାଡ଼ିଯାଇଥିଲେ; କିନ୍ତୁ ଦୁଇ ତିନି ଥରର ଉଦ୍ୟମରେ ହତାଶାର ପ୍ରଚଣ୍ଡ ମୁଥ ଖାଇଲା ପରେ ଏବେ ସେମାନଙ୍କର ସେ ଦିବାସ୍ୱପ୍ନ ଭାଜିଯାଇଛି । ଏହି ତିକ୍ତ ଅନୁଭୂତି ଫଳରେ ସେମାନେ ଏକ ପାଠ୍ୟପୁସ୍ତକ 'ଲେଖକମେଣ୍ଟ' ଗଢ଼ି ମତେ ତାର ସର୍ଦ୍ଦାର (ଓସ୍ତାଦ) କରିବାର ପ୍ରସ୍ତାବ ଦେଇ ଏଠାକୁ ଅଭିଯାନ କରିଛନ୍ତି । ମୁଁ ସେମାନଙ୍କୁ ମୂଳତତ୍ତ୍ୱଟି ବୁଝାଇଦେଲି, "ବିଷମ ବିଦ୍ୟା ଏ ଲିଖନ, ଏ ପଥ ବିନସ୍ତୁଁ ଗହନ । ପୂର୍ବତନ ମୟୂରଭଞ୍ଜ ଷ୍ଟେଟ୍‌ର ପୋଲିସ ସୁପରିଣ୍ଟେଣ୍ଡେଣ୍ଟ (S. P.) ଶ୍ରୀ ରାମଚନ୍ଦ୍ର ଦାଶ ନିଜଦ୍ୱାରା ସ୍ୱରଚିତ ଏକାଙ୍କିକା 'ଟ୍ୱେଣ୍ଟିଏଥ୍ ସେଞ୍ଚୁରି ରାମାୟନ'କୁ ଏକକ ଅଭିନେତା ରୂପେ ସମସ୍ତ ପୁରୁଷ ଓ ସ୍ତ୍ରୀ ଭୂମିକାରେ ଦକ୍ଷତାର ସହିତ ଅଭିନୟ କରି ଯଶସ୍ୱୀ ହୋଇପାରିଥିଲେ । ସେହିପରି, ଯେଉଁ ଲେଖକ ଶିଶୁପାଠ୍ୟ ପୁସ୍ତକ ଲେଖିଲାବେଳେ ନିଜକୁ ମାନସିକ ସ୍ତରରେ ଖଜୁରି ଚଟେଇରେ ବସି ପଢ଼ୁଥିବା ପାଞ୍ଚ ସାତବର୍ଷିଆ ଶିଶୁ କରିପାରିବ ଏବଂ ସେହି ଭଳିରେ ଉପର ଉପର ଶ୍ରେଣୀମାନଙ୍କର କିଶୋର ବୟସ୍କ ଛାତ୍ର ମଧ୍ୟ କରିପାରିବ, ସେହି କେବଳ ଶିଶୁପାଠ୍ୟ ପୁସ୍ତକ ଓ କିଶୋର-ପାଠ୍ୟପୁସ୍ତକ ଲେଖିବାରେ ସିଦ୍ଧହସ୍ତତାର ଗୌରବ ଅର୍ଜିପାରିବ । କୃତୀ ପାଠ୍ୟପୁସ୍ତକ ଲେଖକ ହେବାର ଏହା ହିଁ ସର୍ବୋତ୍କୃଷ୍ଟ ଉପାୟ ଏବଂ ଶିଶୁବୋଧ ଭାଷାରେ ଶିଶୁଙ୍କ ପାଇଁ ଓ କିଶୋରବୋଧ ଭାଷାରେ କିଶୋରଙ୍କପାଇଁ ଅଲଗା ଅଲଗା ଶୈଳୀରେ ଲେଖିବାର ଅଭ୍ୟାସ ଆୟତ୍ତୀକରଣରେ ଏହା ହିଁ ଅସଲ ଚାବିକାଠି ।" 'ଆପଣଙ୍କ କଲମ ମୁନରେ କି

ମ୍ୟାଜିକ୍ ଅଛି' ବୋଲି ଯେଉଁମାନେ ମତେ ମୂଳରୁ ପଚାରୁଥିଲେ, ଏବେ ସେହି ବନ୍ଧୁମାନେ ମୋର ଏହି ସ୍ପଷ୍ଟୀକରଣରୁ ମ୍ୟାଜିକ୍‌ର ବାସ୍ତବ ସ୍ୱରୂପ ଅବଗତ ହୋଇଗଲେ ।

ଶଂସିତ ଲେଖକଗଣ ଯେଉଁ ପ୍ରସ୍ତାବଟି ନେଇ ଆସିଥିଲେ ତତ୍‌ସମ୍ବନ୍ଧରେ ମୋ'ଠାରୁ ଅନୁକୂଳ ଅଭିମତ ଆଦାୟ କରିବାକୁ ଉଦ୍ୟତ ହେଉଥିଲେ, ଏହିପରି ସମୟରେ ବରେଣ୍ୟ ଜାତୀୟ କବି ନୀରଦକିଶୋର ଦାସ ସିଧା ଭୁବନେଶ୍ୱରରୁ ପୁରୀଙ୍କ କାର୍‌ରେ ଆସି ଆମ ବୈଠକ ସ୍ଥଳରେ ଆବିର୍ଭୂତ ହୋଇଗଲେ । ମତେ ଭେଟିବା ପୂର୍ବରୁ ବାଟରେ ପ୍ରଥମେ ସାହିତ୍ୟିକ ବନ୍ଧୁ ରାମକୃଷ୍ଣ ନନ୍ଦଙ୍କୁ ଭେଟି ତାଙ୍କ ସହି ସେ ଗୁରୁତ୍ୱପୂର୍ଣ୍ଣ ପରାମର୍ଶ କରିଛନ୍ତି ବୋଲି ପ୍ରକାଶ କଲେ । ଏହା କହି ନିଜ ନିଯୁକ୍ତିପତ୍ରଟି ପକେଟରୁ କାଢ଼ି ମତେ ଦେଖାଇଲେ । ମୁଁ ତାହାକୁ ପଢ଼ି ଉପସ୍ଥିତ ଶିକ୍ଷାଗୁରୁମାନଙ୍କୁ ଶୁଣାଇଦେଲି । ଏଣିକି ଓ ପି. ଆଇ.ଙ୍କ ଦ୍ୱାରା ପାଠ୍ୟପୁସ୍ତକ ମଞ୍ଜୁର ହେବା ପ୍ରଥା ରଦ୍ଦ ହୋଇଗଲା । ସମସ୍ତ ପଢ଼ାବହି ୧୯୬୨ଠାରୁ ସରକାରଙ୍କ ଖୋଦ୍ ତତ୍ତ୍ୱାବଧାନରେ ପ୍ରସ୍ତୁତ ହୋଇ କ୍ରମାନ୍ୱୟେ ପ୍ରକାଶିତ ହେବ ଏବଂ ସେହି ଜାତୀୟକରଣ ପୁସ୍ତକମାନ ପ୍ରଥମ ଶ୍ରେଣୀଠାରୁ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ସର୍ବତ୍ର ପାଠ୍ୟପୁସ୍ତକ ରୂପେ ପ୍ରଚଳିତ ହେବ । ଏହି ମର୍ମନ୍ତୁଦ ବାର୍ତ୍ତା କାନରେ ପଡ଼ିଲା ମାତ୍ରେ ଆଗନ୍ତୁକମାନଙ୍କ ଦୀର୍ଘପୋଷିତ ଉଜ୍ଜ୍ୱଳ ଆଶାର ଉର୍ବର କ୍ଷେତବାଡ଼ିରେ ଅତର୍କିତେ ବଜ୍ର ଗର୍ଜି ବାଳଚଘ ମାଡ଼ିଗଲା । ସେମାନଙ୍କ ବାଲୁଆବାଳିରର କଳ୍ପିତ ଭାବମୂର୍ତ୍ତି ଘୁର୍ଣ୍ଣିବାତ୍ୟା ପରି ମୁହୂର୍ତ୍ତକ ମଧ୍ୟରେ ଲୀନ ହୋଇଗଲା ଏବଂ ନବଗଠିତ 'ଲେଖକ-ମେଣ୍ଟ'ର ଅସ୍ତିତ୍ୱ ମଧ୍ୟ ଚିରଦିନପାଇଁ ଲୋପପାଇଗଲା । ମୁଁ ଅନୁଭବ କଲି, ଏହି ଆଶାୟୀ ଉଦ୍‌ଯୋଗୀମାନଙ୍କ ଅନ୍ତଃପ୍ରବାହିତ ଉତ୍ସାହ-ଉଦ୍ଦୀପନାର ସ୍ରୋତଧାରା ହଠାତ୍ ବାଷ୍ପୀଭୂତ ହୋଇ ଝାଳକଣା ରୂପରେ ପଦାକୁ ଝରିଆସିଲା ।

ବିଫଳତାର ମ୍ଳାନିମା ବହନ କରି ଆଗନ୍ତୁକବୃନ୍ଦ ଖେଦଭରେ ବିଦାୟ ନେବା ପରେ ନୀରଦବାବୁ ମତେ କହିଲେ, "ରାମ ଓ କୃଷ୍ଣ ମୋର ଭରସା ଥିଲେ ପଥର ବି ମତେ ଫୁଲ ପରି ଲାଗିବ । ଜାନୁଆରି ପହିଲାରୁ କିପରି ଅଫିସ୍‌ଟି ବିଧିବଦ୍ଧଭାବରେ ସଜଡ଼ା ହୋଇ ଆରମ୍ଭ ହେବ, ସେ କାମଟିର ବ୍ୟବସ୍ଥା ତୁରନ୍ତ ଫଇସଲା କରିଦିଅ । ତେଣିକି କାନ୍ଧରେ ପଡ଼ିଲେ ବଳେଇ ଶିଖିବା ବୁଦ୍ଧି ଅପେ ଆପେ ଆସିଯିବ ।"

ମୁଁ ଜୋର୍‌ଦେଇ ଦମ୍ଭର ସହିତ କହିଲି, "ଆମେ ଦୁହେଁ ମଦତ୍ ଦେବାକୁ ବରାବର ଆପଣଙ୍କ କଡ଼େ କଡ଼େ ରହିଛୁ; କିଛି ଚିନ୍ତା କରନ୍ତୁ ନାହିଁ, ସବୁ ଠିକ୍ ହୋଇଯିବ । ଅଫିସ୍ ଗଢ଼ିବାର ଦାୟିତ୍ୱ ନେବା ଲୋକ ଆପଣଙ୍କ ହାତମୁଠାରେ । ସେ ହେଉଛନ୍ତି ଆମ ପ୍ରେସ୍‌ର ସୁଯୋଗ୍ୟ ହେଡ୍ ଆସିଷ୍ଟାଣ୍ଟ ଚନ୍ଦ୍ରଅଖିଆ ଗୋପାଳକୃଷ୍ଣ ଦାସ, ଯେ କି ଆପଣଙ୍କର ସୁପରିଚିତ ଗ୍ରାମୀଣ ପଡ଼ୋଶୀ । ତାଙ୍କୁ ଆସିଷ୍ଟାଣ୍ଟ ସେକ୍ରେଟରି ଆସନରେ ବସେଇଦେଲେ ସେ ଆପଣଙ୍କର ହାତବାରିସି ହୋଇ ଗୀତା ପାଠଠାରୁ ଜୋତା ସିଲେଇ ପର୍ଯ୍ୟନ୍ତ ଯାବତୀୟ

କାମ ଦକ୍ଷତାର ସହିତ ନିର୍ବାହ କରିଦେବେ । ଆପଣଙ୍କ ଗୋଡ଼ରେ କଣ୍ଟାଟିଏ ଫୁଟା ବାଜିବ ନାହିଁ । ନିଶ୍ଚିନ୍ତରେ ଆପଣ ଅନନ୍ତଶଯ୍ୟାରେ ଘୁଙ୍ଗୁଡ଼ି ମାରୁଥିବେ ।”

ମୋର ଏ ଆଶ୍ୱସ୍ତିଦାୟକ ବଚନରେ ବୀରବାବୁଙ୍କ ଉଦ୍‌ବେଗର ବେଗ ଅନେକାଂଶରେ ହ୍ରାସ ପାଇଗଲା । ତାଙ୍କୁ ଆଣିଥିବା କାର୍‌ଟି ଦାଣ୍ଡରେ ଅପେକ୍ଷା କରିଥିଲା । ଗୋପାଳକୃଷ୍ଣଙ୍କ ବସା ମୋ ବାସଗୃହଠାରୁ ଅଧଫର୍ଲଙ୍ଗେ ବି ହେବନାହିଁ । ବୀରବାବୁ ସେହି କାର୍‌ରେ ଯାଇ ଗୋପାଳ ବାବୁଙ୍କୁ ତାଙ୍କ ବସାରୁ ଉଡ଼ାଇଆଣିଲେ । ମୋ ଘରର ପାଚେରିଠାରୁ ପ୍ରାୟ ପନ୍ଦର ଫୁଟ ଛଡ଼ାରେ ଥିବା ରାୟଚୌଧୁରୀ ଭବନର ଏକାଂଶକୁ ଅଫିସ୍ ରୂପେ ବ୍ୟବହାର କରିବା ନିମିତ୍ତ ଅସ୍ଥାୟୀଭାବରେ ଭଡ଼ା ନିଆଗଲା । (କିଛିକାଳ ପରେ ଏଠା ଅଫିସ୍‌ଟି କାଳିଗଳିର ଏକ ଦ୍ୱିତଳ ପ୍ରାସାଦକୁ ସ୍ଥାୟୀଭାବରେ ଉଠିଯାଇଥିଲା ।) ଗୋପାଳ ବାବୁଙ୍କ ଅକ୍ଳାନ୍ତ ଚେଷ୍ଟା ଫଳରେ ହପ୍ତାକ ମଧ୍ୟରେ ସମସ୍ତ ଅଫିସ୍‌ଷ୍ଟାଫ୍‌ଙ୍କ ନିଯୁକ୍ତି ପକ୍‌କା ହୋଇଗଲା । ସେମାନେ ଆସି ୧୯୬୨ ଜାନୁଆରି ପହିଲା ଦିନ ନିଜ ନିଜ କାର୍ଯ୍ୟରେ ଯୋଗଦେଲେ । ଗୋପାଳକୃଷ୍ଣ ଦାସ ସେକ୍ରେଟରି ବୀରକିଶୋର ଦାସଙ୍କ ଦକ୍ଷିଣହସ୍ତ ରୂପେ ଆସିଷ୍ଟାଣ୍ଟ୍ ସେକ୍ରେଟରି ପଦରେ ମୁତୟନ ହେଲେ । ତାଙ୍କ ଶୃଙ୍ଖଳିତ ଚାଳନାରେ ଅଫିସ୍‌ର ଦୈନନ୍ଦିନ ରୁଟିନ୍ କାର୍ଯ୍ୟ ଠିକ୍ ଧାରାରେ ପଡ଼ିଗଲା ।

ସେତେବେଳେ ଶିକ୍ଷାମନ୍ତ୍ରୀ ଥିଲେ ଶ୍ରୀ ସତ୍ୟପ୍ରିୟ ମହାନ୍ତି । ତାଙ୍କ ଅଧ୍ୟକ୍ଷତାରେ ଟେକ୍‌ସ୍ଟ ବୁକ୍ କମିଟି ଗଠିତ ହେଲା ଏବଂ ସେହି କମିଟିର କର୍ତ୍ତୃତ୍ୱାଧୀନରେ ପ୍ରତ୍ୟେକ ପାଠ୍ୟ ବିଷୟର ପୁସ୍ତକ ପ୍ରଣୟନ ପାଇଁ ଚାରି ଲେଖକ-ମେମ୍ବରବିଶିଷ୍ଟ ଗୋଟିଏ ଗୋଟିଏ ସବ୍-କମିଟି କାମ କଲା । ଓଡ଼ିଆ ସାହିତ୍ୟ ସବ୍-କମିଟି ଓ ଓଡ଼ିଆ ବ୍ୟାକରଣ ସବ୍-କମିଟି ଏ ଉଭୟରେ ମତେ ଲେଖକ-ମେମ୍ବର ଭାବରେ ଗ୍ରହଣ କରାଯାଇଥିଲା । ପ୍ରଥମ ଶ୍ରେଣୀଠାରୁ ସପ୍ତମ ଶ୍ରେଣୀଯାଏ ଯେତେ ସାହିତ୍ୟ ପୁସ୍ତକ ପ୍ରଣୟନ କରାଗଲା, ସେ ସବୁଥିରେ ମୋର ନିଷ୍ଠାପର ଭୂମିକା ଅପରିହାର୍ଯ୍ୟ ବୋଲି ବିବେଚିତ ହୋଇଥିଲା । ଓଡ଼ିଆ ବ୍ୟାକରଣ ସବ୍-କମିଟିରେ କେବଳ ଚତୁର୍ଥରୁ ସପ୍ତମ ଶ୍ରେଣୀର ପିଲାମାନଙ୍କ ପାଇଁ ସରଳ ପଦ୍ଧତିର କେତେଖଣ୍ଡି ବ୍ୟାକରଣ ବହି ଲେଖା ହେବ ବୋଲି ସିଲାବସ୍‌ରେ ନିର୍ଦ୍ଧାରିତ ଥିଲା । ସେହି ବହିଗୁଡ଼ିକରେ ପରମ୍ପରାଗତ ସଂସ୍କୃତ ବ୍ୟାକରଣର କ୍ଲିଷ୍ଟସଂଜ୍ଞା-ସୂତ୍ର-ବିଧିବିଧାନସବୁକୁ ସମୂଳେ ପରିହାର କରାଯିବ ଏବଂ ସେଗୁଡ଼ିକର ପ୍ରତ୍ୟେକ ପରିଚ୍ଛେଦ ସମ୍ପୂର୍ଣ୍ଣ ଓଡ଼ିଆଭିତ୍ତିକ ହେବ ବୋଲି କର୍ତ୍ତୃପକ୍ଷୀୟ ସ୍ତରରୁ ନିର୍ଦ୍ଦେଶ ଆସିଥିଲା । ଏଣୁ ଏହି କାର୍ଯ୍ୟଟି ଅନ୍ୟାନ୍ୟ ପାଠ୍ୟପୁସ୍ତକର ପ୍ରଣୟନ ଅପେକ୍ଷା ଯଥେଷ୍ଟ ଅଧିକ ଗୁରୁତ୍ୱସମ୍ପନ୍ନ, ଦୁରୂହ, ଆୟାସସାଧ୍ୟ ଓ ଚିନ୍ତାସାପେକ୍ଷ ହେଉଥିବାରୁ ଚାରିଜଣ ଲେଖକ-ମେମ୍ବର ସ୍ଥଳେ ଦୁଇଜଣ ମାତ୍ର ବୈୟାକରଣ-ମେମ୍ବର ବଛାଯାଇ ତାଙ୍କରି ହସ୍ତରେ ଏ ଗୁରୁ ଦାୟିତ୍ୱଟି ଅର୍ପଣ କରା-ଯାଇଥିଲା । ସେହି ଦୁଇଜଣ ହେଉଛନ୍ତି ମୁଁ ଓ ଅଧ୍ୟାପକ ଧନେଶ୍ୱର ମହାପାତ୍ର । ଏହାଛଡ଼ା ମୋ ଉପରେ ଗୋଟିଏ ବହୁ ଶ୍ରମସାପେକ୍ଷ ‘ଅନରାରି ଡ୍ୟୁଟି’ ମଧ୍ୟ ନ୍ୟସ୍ତ ଥିଲା । ସବୁ

ସବ୍-କମିଟିର ସମସ୍ତ ଲେଖକ-ମେମ୍ବର ଏକାଠି ସଭା କରି ସର୍ବସମ୍ମତଭାବରେ ପ୍ରସ୍ତାବଟିଏ ପାସ୍ କରିଥିଲେ ଯେ, ସେମାନଙ୍କଦ୍ୱାରା ପ୍ରସ୍ତୁତ ସକଳ ପାଣ୍ଡୁଲିପିକୁ ମୁଁ ଆମୂଳାଗ୍ର ପଢ଼ି ଭାଷାପରିଶୁଦ୍ଧି ସମୀକ୍ଷା କରିବି ଏବଂ ତ୍ରୁଟିଯୁକ୍ତ ଅଂଶଗୁଡ଼ିକରେ ଆବଶ୍ୟକ ସଂଶୋଧନ କରିଦେବି । ମୁଁ ସବ୍-କମିଟିମାନଙ୍କର ଏହି ସମ୍ମିଳିତ ଅନୁରୋଧକୁ ପୂର୍ଣ୍ଣାଙ୍ଗୀକରଣରେ ରକ୍ଷାକରିଥିଲି ।

## ୧୪ । ଅବସର ବାସରେ

### ଯତ୍ର ପଳାୟିତ ସତ୍ର ଜୀବତି—

ଏଥିମଧ୍ୟରେ ପ୍ରେସ୍-ଆୟତନ ମଧ୍ୟରେ ଘୋର ବିବର୍ତ୍ତନ ଘଟିଯାଇଛି । ପାଶ୍ଚାତ୍ୟ ମୁଦ୍ରଣ ଶିକ୍ଷାବିତ୍ ସୁନାମୀ ସୁପରିନ୍‌ଟେଣ୍ଡେଣ୍ଟ ମିଷ୍ଟର୍ ଏସ୍. ଏଚ୍. ଖାନ୍ ଦୁଇବର୍ଷ ଏକ୍‌ଷ୍ଟେନସନ୍ ଭୋଗ କରି ୧୯୬୦ ନଭେମ୍ବର ପହିଲାରେ ଅଧ୍ୟକ୍ଷ ପଦବୀରୁ ଅବସର ନେଇ ନିଜ କଲିକତା ବାସସ୍ଥଳୀକୁ ଫେରିଯାଇଥାନ୍ତି । ଖାନ୍ ସାହେବଙ୍କ ସୁନଜରରୁ ଡେପୁଟି ସୁପରିନ୍‌ଟେଣ୍ଡେଣ୍ଟ୍ ପଦାସୀନ ଥିବା ଉଦୟନାଥ ମିଶ୍ର ସେହି ପହିଲାରୁ ତାଙ୍କ ଉତ୍ତରାଧିକାରୀ ରୂପେ ଗାଦିନସିନ ହୋଇଥାନ୍ତି । ଖାନ୍‌ଙ୍କ ପରେ ପରେ ସୁପରିନ୍‌ଟେଣ୍ଡେଣ୍ଟ୍ ଗାଦିର ମର୍ଯ୍ୟାଦା ଲୋକଚକ୍ଷୁରେ ଯଥେଷ୍ଟ ହ୍ରାସପ୍ରାପ୍ତ ହୋଇଯାଇଥାଏ । ଶାସନ ବ୍ୟାପାରରେ ଅରାଜକତାର ରାଜତ୍ୱ କ୍ରମଶଃ ଊର୍ଦ୍ଧ୍ୱକୁ ଊର୍ଦ୍ଧ୍ୱକୁ ମୁଣ୍ଡ ଟେକୁଥାଏ । ଶ୍ରମିକ କର୍ମଚାରୀମାନଙ୍କ ୟୁନିୟନ୍ ଖୁବ୍ ପ୍ରଭାବଶାଳୀ ହୋଇଉଠିଥାଏ । 'କମ୍ କର କାମ, ବେଶୀ ନିଅ ଦାମ୍' ଏଇଆ ହୋଇଥାଏ ବିପ୍ଳବୀ ପଲ୍ଟୁଆରର ଫୁକାର୍ । ପ୍ରତି କଥାରେ ୟୁନିୟନ୍ ମେମ୍ବରମାନେ ସୁପରିନ୍‌ଟେଣ୍ଡେଣ୍ଟଙ୍କ ବିରୋଧରେ ମେଳି ବାନ୍ଧୁଥାନ୍ତି । ସୁପରିନ୍‌ଟେଣ୍ଡେଣ୍ଟ ଉଦୟନାଥ ମିଶ୍ର ମଧ୍ୟ ଆତ୍ମରକ୍ଷାପାଇଁ ତାଙ୍କ ସପକ୍ଷୀୟ କେତେକ ଶ୍ରମିକ କର୍ମଚାରୀଙ୍କୁ ସଙ୍ଗଠିତ କରି ଆଉ ଗୋଟିଏ ସମାନ୍ତରାଳ ୟୁନିୟନ୍ ଠିଆ କରାଇଥାନ୍ତି । ସେହି ଦୁଇ ୟୁନିୟନ୍ ମଧ୍ୟରେ ବରାବର ସଂଘାତ ଓ ସଂଘର୍ଷ ଲାଗି ରହିଥାଏ । ଏହାଫଳରେ ପ୍ରେସ୍-ଆକାଶରେ ଅଶାନ୍ତିର ଏକ ବିପଜ୍ଜନକ ବାତାବରଣ ଘୋଟିଯାଇଥାଏ । ବସ୍ତୁତଃ ଶାସକୀୟ କର୍ତ୍ତୃତ୍ୱ ଶେଷକୁ ପଙ୍ଗୁ ହୋଇଗଲା । ଖାନ୍ ରାଜତ୍ୱ-କାଳୀନ ନିୟମ-କାନୁନ୍‌ର ମେଘନାଦ ପାଚେରି ଭୂମିସାତ୍ ପଡ଼ିଲା । ମୁଁ ବଡ଼ ସନ୍ତର୍ପିତ ପ୍ରାଣରେ ନୀରବ ସାକ୍ଷୀ ରୂପେ ସବୁ ଦେଖୁଥାଏ, ସବୁ ଶୁଣୁଥାଏ; କିନ୍ତୁ କୌଣସି ଦଳର ସପକ୍ଷରେ ବା ବିପକ୍ଷରେ କାହାକୁ ସମର୍ଥନ କରିବା ପରିବର୍ତ୍ତେ ସତତ ସଂଯତ କରି ରଖିଥାଏଁ, ନିରପେକ୍ଷତା ରକ୍ଷା କରିବା ପାଇଁ କୌଣସି ୟୁନିୟନ୍‌ର ମେମ୍ବର ମଧ୍ୟ ହୋଇ ନଥାଏଁ । ଏହି ଭସ୍ମାବହ ଦୁଃସ୍ଥାଳ ମଧ୍ୟରେ ଜଣେ ଶାନ୍ତିପ୍ରିୟ ସଚ୍ଚୋଟ କର୍ତ୍ତବ୍ୟନିଷ୍ଠ ବିଶ୍ୱସ୍ତ

ରାଜକର୍ମଚାରୀ ହିସାବରେ ପ୍ରାଣ ମୋର ଛଟପଟ ହେଉଥାଏ, ଅଶାନ୍ତିର ଧୂମାବର୍ତ୍ତିରେ କଣ୍ଠରୋଧ ମଧ୍ୟ ଘଟୁଥାଏ ।

ଏହି 'ଯୁଦ୍ଧଂ ଦେହି' ପରିସ୍ଥିତିର କୌଣସି ସନ୍ତୋଷଜନକ ପ୍ରତିକାର ବା ସମାଧାନ ହୋଇପାରୁନଥାଏ ଉପରପଡ଼ା ବାମପନ୍ଥୀ ନେତାମାନଙ୍କ ସ୍ୱାର୍ଥକେନ୍ଦ୍ରିକ ଖେଳ ଯୋଗୁଁ । ଏକ ପକ୍ଷରେ ସୁପରିନ୍‌ଟେଣ୍ଡେଣ୍ଟ୍ ନିଜ ଜିଦରୁ ଟିକେ ହେଲେ ତଳକୁ ଓହ୍ଲା ନଥାନ୍ତି, ଅପରପକ୍ଷରେ ୟୁନିୟନ୍ ନେତାଏ ନିଜ ମୌଳିକ ପେଟର ଦାବିଗୁଡ଼ିକୁ ଢିଲେହେଲେ କୋହଳ କରୁ ନଥାନ୍ତି । ଇଂରାଜୀରେ ବାକ୍ୟ ଅଛି 'There can be no compromise between Yes and No' । ମୋ'ଭଳି ଲୋକ ଏ ଅପ୍ରୀତିକର ଓ ଅସ୍ୱସ୍ତିକର ଅବସ୍ଥାର ଚାପରେ 'ଦାଦୁଭୁଟୋ ମୁରାରୀ' ପାଲଟିଯିବା ଅତି ସ୍ୱାଭାବିକ । ବାରବର୍ଷ ବେସରକାରୀ ବେଠିରେ କଟିଲା ପରେ ଏଠି ମୋ ନୌକରିକାଳ ଅଣତିରିଶ ବର୍ଷ ପୂରି ତିରିଶବର୍ଷ ଚାଲିଥାଏ । ମୋଟରେ ଏହି ଦୀର୍ଘତର ବୟାଳିଶ ବର୍ଷର ଅନବଚ୍ଛିନ୍ନ ଝାଳବୁହା ଖଟଣିରେ ଆଉ ଅଧିକ କାଳ ସଂଲଗ୍ନହେବାକୁ ଆଦୌ ମନ ରୁଚିଲାନାହିଁ । ଏ ପ୍ରଦୂଷିତ ପରିବେଶର କବଳରୁ ତୁରନ୍ତ ନିଷ୍କୃତି ଲଭ କରିବା ହିଁ ବୁଦ୍ଧିମନ୍ତର କାର୍ଯ୍ୟ ହେବ—'ଯଃ ପଳାୟତି ସଃ ଜୀବତି' ।

୧୯୭୭ ମସିହା ଜୁନ୍ ମାସ ୧୮ ତାରିଖ ଶନିବାର । ଗୋଟାଏରୁ ସାଢ଼େଗୋଟାଏ ବିରତି (recess) ବେଳ । ନିରୋଳା କକ୍ଷ । ସମସ୍ତ କର୍ମଚାରୀ ଏହି ଅଧଘଣ୍ଟିଆ 'ଟିଫିନ୍ ଛୁଟି'ରେ ବାହାରକୁ ଚାଲିଯାଇଥାନ୍ତି । ସୌଭାଗ୍ୟକ୍ରମେ ଏହି ଅବସରରେ ଗୋଟାଏ ବାହ୍ୟତଃ-ଆନନ୍ଦଦାୟକ ଅଥଚ ମୋ ପାଇଁ ବିଷାଦକର ସମ୍ବାଦ ଅପ୍ରତ୍ୟାଶିତ ଭାବରେ ଆସି କାନରେ ମୋର ପଡ଼ିଲା । ସମ୍ବାଦଟି ଅତୀବ ଗୋପନୀୟ (top secret) । ମୁଁ ଜାଲ ଛିଣ୍ଡେଇ ଉଡ଼ିଯିବାକୁ ବଳାଧାନ କରୁଥିବାବେଳେ ଏ ଗୁପ୍ତତମ ସମ୍ବାଦଟି ମୋ ଡେଣାକୁ ଜବରଦସ୍ତ କରିଦେଲା । କଥାଟା ହେଉଛି ଆମ ବିଭାଗୀୟ ମନ୍ତ୍ରୀ ହରିହର ପଟେଲ ମୋର କର୍ମ ଦକ୍ଷତାରେ ପରମପରିତୁଷ୍ଟ ହୋଇ ମୋ ଚାକିରିର କାଳସୀମା ତିନିବର୍ଷ ବଢ଼ାଇଦେଇଥାନ୍ତି । ହାଲି ପହଞ୍ଚିଥିବା ଏ ଆଦେଶଟା ମୋ ମୁଣ୍ଡରେ ବଜ୍ରପାତ କଲାଭଳି ଲାଗିଲା ସେତିକି, ଅବିଲମ୍ବେ ତିରିଶବର୍ଷିଆ ଚାକିରିର ଜାଲକୁ ଟିକ୍‌ଟିକ୍ କରି କାଟିଦେବାକୁ ଭୀମ ବଳ ଦେଲା ସେତିକି । ଜୁନ୍ ୨୦ ତାରିଖ ସୋମବାରରେ ସେ ବର୍ଷ ଗୁଣ୍ଡିଚାଯାତ୍ରା ପଡ଼ିଥାଏ—ମଝିରେ ଦିନଟିଏ ମାତ୍ର ବ୍ୟବଧାନ । ଭାବିଲି, ମୋର ଏହି 'ଚାକିରି ଛାଡ଼' ସଙ୍କଳ୍ପ ଉପରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ନିଶ୍ଚୟ ଆଶୀର୍ବାଦ ଅଛି ।

ଚଳଚଞ୍ଚଳ ମନ-ମହୋଦଧିରେ ଫେନାୟିତ ହୋଇଉଠିଲା ଉଦ୍‌ବେଳନର ଉତ୍ତାଳ ଊର୍ମି । ଉଦ୍‌ବିଗ୍ନ ହେଲି ମୁଁ ପ୍ରାପ୍ୟ ଥିବା ଛୁଟିତକର ହିସାବ ନିକାଶପାଇଁ । ଅଫିସ୍ ଦପ୍ତରରୁ ତୁରନ୍ତେ ବୁଝିନେଲି ଯେ, ମୋର ଯେତେଦିନ ଛୁଟି ପାଉଣା ରହିଛି, ତହିଁରେ ଅକ୍ଟୋବର ଶେଷପର୍ଯ୍ୟନ୍ତ ଅବାଧରେ ଛୁଟି ନେଇପାରିବି । ଛୁଟିର ଚିଠି ଏବେ ମୋ ମୁଠିକି ଆସିଗଲା ।

ପବିତ୍ର ରଥଯାତ୍ରା ମହୋତ୍ସବ ଏକ ସାର୍ବଜନୀନ ଛୁଟିଦିବସ । ତାହା ସେ ବର୍ଷ ଜୁନ୍ ୨୦ ତାରିଖ ସୋମବାର ଦିନ ପଡ଼ୁଥାଏ । ତେଣୁ ମୁଁ ଛୁଟି ହିସାବରକ୍ଷକ କିଶନବାବୁଙ୍କ ପରାମର୍ଶମତେ ଡାକ୍ତର ସାର୍ଟିଫିକେଟ୍ ସହ ଦୁଇଟି ଦରଖାସ୍ତ ଜୁନ୍ ୨୧ ତାରିଖରୁ ଦଶହରା ଛୁଟିଯାଏ ଓ ଦଶହରା ଛୁଟି ଶେଷର ପରଦିନଠାରୁ ଅକ୍ଟୋବର୍ ୩୧ ତାରିଖ ପର୍ଯ୍ୟନ୍ତ ଛୁଟିମଞ୍ଜୁର କରିବାକୁ ରେଜିଷ୍ଟ୍ରି ଡାକରେ ସୁପରିନ୍‌ଟେଣ୍ଡେଣ୍ଟଙ୍କ ପାଖକୁ ପଠାଇଦେଲି । ପୁଣି, କର୍ମଚାରୀ ପକ୍ଷରୁ ସ୍ୱେଚ୍ଛିକ ଅବସର ନେବାର ବିଧାନାନୁଯାୟୀ ମୁଁ ଅକ୍ଟୋବର୍ ୩୧ ତାରିଖର ଠିକ୍ ତିନିମାସ (ନବେ ଦିନ) ପୂର୍ବରୁ ସୁପରିନ୍‌ଟେଣ୍ଡେଣ୍ଟଙ୍କୁ ରେଜିଷ୍ଟ୍ରି ଡାକରେ ନୋଟିସ୍ ଦେଲି, ଯାହାର ବିଷୟବସ୍ତୁ ଥିଲା—ମୁଁ ୧୯୬୭ ନଭେମ୍ବର ପହିଲାଠାରୁ ସ୍ୱେଚ୍ଛିକ ଅବସର ନେବାକୁ ଚାହେଁ, ତେଣୁ ସୁପରିନ୍‌ଟେଣ୍ଡେଣ୍ଟ ମହୋଦୟ ଏ ନୋଟିସ୍ ପାଇବାର ଦୁଇସପ୍ତାହ ମଧ୍ୟରେ ତୁରନ୍ତ ଏହାର ବିହିତ ବ୍ୟବସ୍ଥା କରି ମତେ ଲିଖିତାକାରରେ ଜଣାନ୍ତୁ । ମୋ ନୋଟିସ୍ ପାଇଲା ପରେ ସୁପରିନ୍‌ଟେଣ୍ଡେଣ୍ଟ ବଡ଼ ବିବ୍ରତ ହୋଇପଡ଼ିଲେ । ସେ ଭାବିଲେ, ମୋର ଏହି ନୋଟିସ୍ କାର୍ଯ୍ୟକାରୀ ହେଲେ ତାଙ୍କ ମନମୁଖୀ ଶାସନ ଉପରେ ତାର ପ୍ରବଳ କୁପ୍ରଭାବନିଶ୍ଚୟ ପଡ଼ିବ, ଯାହା ବିରୋଧୀ କର୍ମଚାରୀମାନଙ୍କ ଅପପ୍ରଚାରକୁ ବିପୁଳ ଇନ୍ଧନ ଯୋଗାଇବ ।

ଏହି ଧାରଣାର ବଶବର୍ତ୍ତୀ ହୋଇ ସୁପରିନ୍‌ଟେଣ୍ଡେଣ୍ଟ ଉଦୟନାଥ ମିଶ୍ର ତାଙ୍କ ଅନୁଗତ ଡେପୁଟି ସୁପରିନ୍‌ଟେଣ୍ଡେଣ୍ଟ ନିରଞ୍ଜନ ମହାପାତ୍ରଙ୍କୁ ଦୂତରୂପେ ମୋ’ ବାସଭବନକୁ ପଠାଇଲେ । ମୁଁ ଯେଉଁ ନୋଟିସ୍‌ଟି ତାଙ୍କ ପାଖକୁ ପଠାଇଥିଲି, ସେଇଟିକୁ ସେ ନିରଞ୍ଜନବାବୁଙ୍କ ହସ୍ତରେ ଅର୍ପଣ କରିଥିଲେ । ତାଙ୍କୁ କହିଥିଲେ, ମୁଁ ଯେପରି ଅବସର ନେବାର ସଙ୍କଳ୍ପରୁ ନିବୃତ୍ତ ହୋଇ ନୋଟିସ୍‌ଟିକୁ ନିରଞ୍ଜନବାବୁଙ୍କଠାରୁ ଫେରାଇନେବି, ସେଥିପାଇଁ ନିରଞ୍ଜନବାବୁ ଯଥାସାଧ୍ୟ ଉଦ୍ୟମ କରିବେ ।

ଯୁବକ ନିରଞ୍ଜନଙ୍କର ମୋ’ ପ୍ରତି ପ୍ରଗାଢ଼ ସମ୍ଭ୍ରମ ଥାଏ । ତେଣୁ ମୁଁ ତାଙ୍କ କଥାରେ ଭୁଲିଯାଇପାରିବି ବୋଲି ଉଦୟନାଥଙ୍କର ପର୍ଯ୍ୟାପ୍ତ ବିଶ୍ୱାସ ଥିଲା । ନିରଞ୍ଜନ ବାବୁ ପାରୁପର୍ଯ୍ୟନ୍ତେ ପ୍ରବର୍ତ୍ତାଇ ମୋ ଉପରେ ପ୍ରଭାବ ପକାଇବାକୁ ଚେଷ୍ଟା କଲେ, ମତେ ତିନି ବର୍ଷ ଏକ୍‌ସ୍‌ଟେନ୍‌ସନ୍ ମିଳିଥିବାର ସମ୍ବାଦକୁ ଦୋହରେଇ ପୋହରେଇ ବିସ୍ଥାନ କରି ମୋର ଭୂୟସୀ ପ୍ରଶଂସା ଗାଇବାକୁ ଲାଗିଲେ । ସବୁ ଶୁଣିଲା ପରେ ମୁଁ ତାଙ୍କୁ ପ୍ରାଞ୍ଜଳ ଭାଷାରେ ଖୋଲି ହୃଦୟରେ ବୁଝାଇଦେଲି, “ଅର୍ଥୋପାର୍ଜନ ଲାଳସାରେ ଦୀର୍ଘ ବିୟାଳିଶ ବର୍ଷକାଳ ନିରବଚ୍ଛିନ୍ନ ଭାବରେ ବେସରକାରୀ ଓ ସରକାରୀ ନୌକରି କରି କରି ପରାଧୀନ ଜୀବନ କଟାଇଦେଲି । ଆଉ ପୁଣି ସେ ଲାଳସା କାହିଁକି ? ଏଣିକି ଅର୍ଥାର୍ଜନ-ମାର୍ଗରୁ ନିଜକୁ ସମ୍ପୂର୍ଣ୍ଣରୂପେ ଓହରାଇଆଣି ପିଞ୍ଜରମୁକ୍ତ ବିହଙ୍ଗ ସଦୃଶ ସ୍ୱେଚ୍ଛାବିହାରୀ ହୋଇ ଅନିୟନ୍ତ୍ରିତ ସ୍ୱାଧୀନ ଜୀବନର ସ୍ୱାଦ ଉପଭୋଗ କରିବା ଏକାନ୍ତ କାମ୍ୟ । ଚାକିରି ଜୀବନରେ ସମୟର ଦାସ ହେବାକୁ ପଡ଼ିଥିଲା, ନିଜ ଉପରେ ନିଜର ନିରଙ୍କୁଶ ଅଧିକାର ନଥିଲା । ଏବେ

କିନ୍ତୁ ସମୟକୁ ଦାସରୂପେ ବ୍ୟବହାର କରିବାର ପ୍ରକୃଷ୍ଟ ବେଳ ଆସିଗଲା । ସମୟବନ୍ଧନ-ମୁକ୍ତ କର୍ମଶୀଳ ଜୀବନ ଅଧିକ ସୃଜନକ୍ଷମ । ଏଣୁ ସେହି ଜୀବନ ହିଁ ମୋର ବର୍ତ୍ତମାନ ଧ୍ୟେୟ । ଚାକିରି ଜଞ୍ଜାଳରୁ ଯେତେ ଶୀଘ୍ର ସମ୍ଭବ ନିଷ୍କୃତି ପାଇବା ପରେ ଅପଣାର ଅବସର ଦିନସବୁକୁ ଯଥାସାଧ୍ୟ ଅଧିକ ପ୍ରସାରିତ କରି କେବଳ ତିନୋଟି ଅମୂଲ୍ୟ ବିଷୟ 'ସ୍ୱାସ୍ଥ୍ୟ, ଶାନ୍ତି, ସମୟ' ପ୍ରତି ତୀକ୍ଷ୍ଣ ଧ୍ୟାନ ଦେବା ସର୍ବଥା ବାଞ୍ଛନୀୟ । ସୁତରାଂ ତୁମେ ମତେ ଆଉ ବିଳାଇବାପାଇଁ ବୃଥା ପ୍ରୟାସ କରନାହିଁ । ମୋର ବହୁ ବିଚାରିତ ଅପରିବର୍ତ୍ତନୀୟ ନିଷ୍ପତ୍ତିକୁ ଭଣ୍ଡୁର କରିଦେବାର ଦୁରାଶାକୁ ମନରୁ ସମୂଳେ ବିତାଡ଼ିତ କରିଦିଅ ।"

ବିବେକୀ ନିରଞ୍ଜନଙ୍କ ଚକ୍ଷୁରେ ମୋର ଏହି ବ୍ୟାଖ୍ୟାନ ଅଞ୍ଜନ ସ୍ୱରୂପ କାମ କଲା । ମୋ ନିଷ୍ପତ୍ତିକୁ ସେ ପୂର୍ଣ୍ଣପ୍ରାଣରେ ସମର୍ଥନ ଜଣାଇ ପ୍ରେସ୍‌କୁ ଫେରିଗଲେ । ଯଥାସମୟରେ ମନୋଽଭିଲଷିତ ସ୍ୱୈଚ୍ଛିକ ଅବସର ଗ୍ରହଣର ମଞ୍ଜୁରିନାମାଟି ମୋର ହସ୍ତଗତ ହେଲା । ୧୯୬୭ ନଭେମ୍ବର ପହିଲା ଦିନ ମୁଁ ଦାସତ୍ୱ-ଯନ୍ତ୍ରାର ଲୌହକପାଟ ଭାଙ୍ଗି ପଦାକୁ ବାହାରି ପଡ଼ିଲି ନବ ତେଜ ନବ ଓଜରେ ବଳୀୟାନ୍ ହୋଇ । ସାପ ଦେହରୁ କାତିର ଖୋଳଟା ଖସିପଡ଼ିଲେ ସାପ ଯେପରି ନିଜ ଦେହକୁ ହାଲୁକା ଓ ଉଶ୍ୱାସିଆ ବୋଧ କରି ମନଇଚ୍ଛା ବିରିଅଡ଼େ ଉନ୍ମତ୍ତପ୍ରାୟ ଧାଇଁବୁଲେ, ଅବସରପ୍ରାପ୍ତ ମୋ ଜୀବନଟା ସେହିପରି ସ୍ଫୂର୍ତ୍ତିଳ, ସ୍ୱଚ୍ଛନ୍ଦ, ଭାରମୁକ୍ତ ଓ ସୁଖକର ବୋଧ ହେଲା । ଇଚ୍ଛାମତେ ମୁଁ କିଛି ଦିନ ପ୍ରିୟାପ୍ରୀତି, ବନ୍ଧୁବାନ୍ଧବ ପ୍ରଭୃତିଙ୍କ ପ୍ରତ୍ୟହ ସଙ୍ଗୋଳ, ସ୍ନେହାଳାପ କରି ମର୍ତ୍ତ୍ୟବୈକୁଣ୍ଠର ଅମୃତ-ମନ୍ଥନୋତ୍ଥ ଭୁଞ୍ଜିଲି ।

## ପଞ୍ଚାଗ୍ନି ପରୀକ୍ଷା—

ମନ୍ତ୍ରୀ ମହୋଦୟଙ୍କ ବହୁମୂଲ୍ୟ କାର୍ଯ୍ୟ ପରିସୀମାଉପରଟି ଗଲା ପ୍ରଥମାଗ୍ନି ପରୀକ୍ଷା ବିବରଣ ବୃଦ୍ଧି (extension) ଆଦେଶର ତଥାକଥିତ ଦୟାକୁ ତୁଚ୍ଛ କରି ଆତ୍ମତୃପ୍ତିର ଯେଉଁ ଅପାର ଆନନ୍ଦ ଉପଲବ୍‌ଧି କରିଥିଲି, ଅବସର ଗ୍ରହଣରେ ଅବ୍ୟବହିତ ପରେ ତାହାକୁ ଧୂଳିଧୂସରିତ କରିଦେବାପାଇଁ କଟକର ଦୁଇଟି ବଡ଼ ପ୍ରେସ୍‌ର ମୁଖ୍ୟ ନିଜନିଜର ବାଗୁରି ଧରି ଛକାପଞ୍ଝାରେ ବାହାରିପଡ଼ିଲେ । ସର୍ବପ୍ରଥମ ଲୁବ୍‌ଧକରୂପେ ମୋ ଆଡ଼କୁ ହାତ ପସାରିଲେ ସବୁଠୁ ପାଖିଆ ପ୍ରତିବେଶୀ 'ଗୋସ୍ୱାମୀ ପ୍ରେସ୍' ସ୍ୱାମୀ ବାଆଜୀଭେକଧାରୀ ବନ୍ଧୁ ଦିବାକର ମିଶ୍ର, ତାଙ୍କ ପରେ 'ଓଡ଼ିଶା ମିସନ୍ ପ୍ରେସ୍'ର ସୁପରିନ୍‌ଟେଣ୍ଡେଣ୍ଟ ବିଲାତଫେରନ୍ତା ମିଷ୍ଟର ପ୍ରଧାନ । ମତେ ପାଇବାପାଇଁ ଏ ଦୁହିଁଙ୍କ ଯୋଡ଼ାବେପାରୀ ଚାତୁରୀର ଚାରି ଖୁରିକୁ ଦୂରରୁଁ ଜୁହାରି ରୋକ୍‌ଠୋକ୍ ଜଣାଇଦେଇଥିଲି, "ଚାକିରି-ବୁଢ଼ୀଅସୁରୁଣୀର ମାୟା-ଫାନ୍ଦ କାଟି ସଦ୍ୟ ଏବେ ମୁଁ ଖୋଲା ମଇଦାନରେ ନିଶ୍ୱାସ ମାରିବାର ବାଟ ସଫା କରିଛି । ସରକାରଙ୍କ ପ୍ରଦତ୍ତ ତିନିବର୍ଷର ଏକ୍‌ସ୍‌ଟେନ୍‌ସନ୍‌କୁ ଯେ ପ୍ରତ୍ୟାଖ୍ୟାନ କରିଦେଇଛି, ତାକୁ ଧରିବାପାଇଁ ଯେତେ ମୂଗୁରି ବସାଇଲେ ବି ସେ କ'ଣ କେବେହେଲେ ମୁଗୁରିମୁହଁ

ମାଡ଼ିବ ?'' ଏ କରୁଣିଆ ବଚନ ଶୁଣିଲାପରେ ସେ ଦୁହେଁ ମାନେ ମାନେ ହଟିଯାଇଥିଲେ । ଏ ଦୁଇଟି ହେଉଛି ଦ୍ୱିତୀୟ ଓ ତୃତୀୟ ଅଗ୍ନିପରୀକ୍ଷାର ବିବରଣୀ ।

'ଦି ଓଡ଼ିଶା ଷ୍ଟେଟ୍ ବ୍ୟୁରୋ ଅଫ୍ ଟେକ୍ସ୍ଟ-ବୁକ୍ସ' ନାମରେ ଏକ ସରକାରୀ ପ୍ରକାଶନ ସଂସ୍ଥା ସେତେବେଳେ ନୂଆ ହୋଇ ନ୍ୟୁ କ୍ୟାପିଟାଲ୍ ଭୁବନେଶ୍ୱରରେ ପ୍ରତିଷ୍ଠିତ ହୋଇଥାଏ । ତାହାର ପ୍ରଥମ ଡାଇରେକ୍ଟର୍ ରୂପେ ନିଯୁକ୍ତି ପାଇଥାନ୍ତି ଅଧ୍ୟାପକ ଡକ୍ଟର୍ ଗୋକୁଳାନନ୍ଦ ମହାପାତ୍ର । ଏହି ଅନୁଷ୍ଠାନକୁ କେନ୍ଦ୍ର ସରକାରଙ୍କର ବାର୍ଷିକ ଅନୁଦାନ ଥିଲା ଏକଲକ୍ଷ ଟଙ୍କା । ସେହି ଅର୍ଥରେ କଲେଜମାନଙ୍କପାଇଁ ସବୁ ବିଷୟ (subject)ରେ ଓଡ଼ିଆ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ କରିବାର ଭାର ନ୍ୟସ୍ତ ଥିଲା ଏହି 'ପାଠ୍ୟ-ପୁସ୍ତକ ବ୍ୟୁରୋ' ଉପରେ । ଭାଷାଗତ ଶୁଦ୍ଧାଶୁଦ୍ଧି ସମ୍ପର୍କରେ ଡାଇରେକ୍ଟର୍ ଗୋକୁଳାନନ୍ଦଙ୍କ ମନରେ ଯେତେବେଳେ ଯେଉଁ ସଂଶୟର ଉଦ୍ରେକ ହୁଏ, ସେ ମୋ ନିକଟକୁ ଆସି ତାହା ମୋଚନ କରିନିଅନ୍ତି । ଅନ୍ୟମାନେ ଯେ ଯାହା କହନ୍ତି ତାକୁ କେବଳ ଶୁଣନ୍ତି, ସିଦ୍ଧାନ୍ତ ବୋଲି କେବେହେଁ ଧରିନିଅନ୍ତି ନାହିଁ । ଅଫିସ୍ ଛୁଟ୍‌ରେ ଭୁବନେଶ୍ୱରରୁ କଟକକୁ ଫେରିବା ଯେତେ ଡେରି ହେଉନା କାହିଁକି, ସେ ଦୋଳମୁଣ୍ଡେଇରେ ଥିବା ନିଜ ଘରେ ଗାଡ଼ି ନ ଅଟକାଇ ସିଧା ଆସନ୍ତି ମୋ ଘରକୁ । ତାଙ୍କ ସଂଶୟ-ନିରସନ ପାଇଁ ମୁଁ ଯାହା କହେଁ, ତାକୁହିଁ ସେ ବେଦବାକ୍ୟ ପ୍ରାୟ ଅଭ୍ରାନ୍ତ ମଣନ୍ତି ଏବଂ ତାହାକୁ ହିଁ ଯଥାର୍ଥ ସିଦ୍ଧାନ୍ତରୂପେ ଗ୍ରହଣ କରନ୍ତି । ମୋ ଭାଷାଜ୍ଞାନ ଉପରେ ଦୃଢ଼ତମ ଆସ୍ଥା ଓ ଚରମ ନିର୍ଭରତା ଥିଲା ଦୁଇଜଣଙ୍କର—ସେଥିରୁ ଜଣେ ଏଇ ସୁଖ୍ୟାତ ବୈଜ୍ଞାନିକ ସାହିତ୍ୟିକ ଗୋକୁଳାନନ୍ଦ ମହାପାତ୍ର ଓ ଅନ୍ୟ ଜଣକ ଥିଲେ ପ୍ରଖ୍ୟାତ ଜାତୀୟ କବି 'ମୋହନବଂଶୀ'ର ପ୍ରଣେତା ତଥା 'ଜାତୀୟକରଣ ପାଠ୍ୟପୁସ୍ତକ ପ୍ରଣୟନ କମିଟି'ର ସମ୍ପାଦକ ବୀରକିଶୋର ଦାସ ।

ଦିନେ ସନ୍ଧ୍ୟା ପ୍ରାୟ ଆଠଟା ସମୟରେ ଡାଇରେକ୍ଟର୍ ଡକ୍ଟର୍ ଗୋକୁଳାନନ୍ଦ ମହାପାତ୍ର ଅଫିସ୍ ଛୁଟ୍‌ରେ ଆସି ମୋ ବୈଠକଖାନାରେ ପଦାର୍ପଣ କଲେ । ସେଦିନ ସେ କୌଣସି ସଂଶୟଗତ ପ୍ରଶ୍ନ ନେଇ ଆସି ନଥାନ୍ତି—ଆସିଥାନ୍ତି ଖଣ୍ଡିଏ ନିଯୁକ୍ତି ପତ୍ର ନେଇ । ଫାଇଲ୍‌ରୁ ତାହା ବାହାରକରି ମୋ ହସ୍ତରେ ଅର୍ପଣ କଲେ । ମୁଁ ସେହି ପତ୍ରଟି ନିବିଷ୍ଟତାର ସହ ପଢ଼ି ତାଙ୍କ ମାନସିକ ଔଦାର୍ଯ୍ୟର ପରିମାପ କଳନା କରିପାରିଲି । ସେଥିରେ ମତେ 'ବ୍ୟୁରୋ'ର ଭାଷାବିଶାରଦ (Language Expert)ରୂପେ ମାସିକ ସାଢ଼େ ସାତଶହ ଟଙ୍କା ବେତନରେ ନିଯୁକ୍ତି ଦିଆଯାଇଥିବାର ଉଲ୍ଲେଖ ଥିଲା । ସଂପ୍ରୀତିର ସହିତ ମୁଁ ଉକ୍ତ ନିଯୁକ୍ତିପତ୍ର ଖଣ୍ଡିକ ତାଙ୍କୁ ପ୍ରତ୍ୟର୍ପଣ କରିଦେଇ କହିଲି, "ଚଳିଶବର୍ଷକାଳ କାକସ୍ନାନ ଗର୍ଦ୍ଦଭଭୋଜନ ସାରି ସବୁ ଧଇଁସଇଁ ହୋଇ ଧପଡ଼ ଧଚଡ଼ ଟାଉନ୍ ବସ୍‌ରେ ଧକେଇ ଧକେଇ ପ୍ରେସ୍‌ରେ ପହଞ୍ଚିଲାମାତ୍ରେ ଦଣ୍ଡ ପାଇଲା ପରି ଗୋଟିଏ କୁରୁଚରେ ବସି ଲଗାତର ଆଠଘଣ୍ଟା ଗଧ ଭଳି ଖଟିଲି । ଗୋଠକୁ ଯିବାପାଇଁ ଗୁହାଳରୁ ଗୋରୁ ନ ଫିଟୁଣୁ ପ୍ରେସ୍ ଯିବାକୁ ସବୁ ଗୋଡ଼ କାଟେଁ, ଗୋରୁପଲ ଧୂଳି ଉଡ଼ାଇ ଉଡ଼ାଇ ଗୋଠରୁ ବାହୁଡ଼ିବା

ପରେ ପ୍ରେସ୍ ଖଟଣିରୁ ଛୁଟିପାଇ ଘରକୁ ବାହୁଡ଼ୁ ବାହୁଡ଼ୁ ସଞ୍ଜ ଅନ୍ଧାର । ଆଉ କ'ଣ ମୋର ବଳ ଅଛି ନା ବୟସ ଅଛି ନା ଧୈର୍ଯ୍ୟ ଅଛି ଯେ, ନଅଟାରେ ଘରୁ ବାହାରି ଲାଇନ୍ ବସ୍‌ରେ ଧକାଡ଼ଚକାଡ଼ ହୋଇ ଭୁବନେଶ୍ୱର ଯିବି, ପାଞ୍ଚଟାରେ ଅଫିସ୍‌ରୁ ବାହାରି ସେହିପରି ହନ୍ତସନ୍ତରେ ବସ୍‌ରେ ଆସି ଘରେ ପହଞ୍ଚିବି ସନ୍ଧ୍ୟା ଛଅଟା ପରେ ? ଏସବୁ ଅତ୍ୟାଗ୍ରହ ଆଉ ଏ ଅବଢ଼ ଦେହରେ ଚଳିପାରିବ ନାହିଁ । ତୁମର ଆନ୍ତରିକତା ଓ ସଦିଚ୍ଛାକୁ ମୁଁ ସ୍ୱାଗତ କରୁଛି । ଯେତିକି କାମ ମୋ ଦ୍ୱାରା କରାଇବାକୁ ଇଚ୍ଛା କରିବ, ସବୁ ମୁଁ ଘରେ ଥାଇ ନିର୍ଦ୍ଧାରିତ ସମୟ ସୀମା ମଧ୍ୟରେ କରିଦେବି । ଗୃକରର ମୋହକୁ ନିର୍ବାସନ ଦେଇସାରିଛି, ତା କଥା ଦୟାକରି ଉଠାଅ ନାହିଁ ।''

ହୃଦୟବାନ୍ ଗୋକୁଳାନନ୍ଦବାବୁ ମୋର ବ୍ୟକ୍ତିଗତ ଅସୁବିଧା କଥା ହୃଦୟଙ୍ଗମ କରି ମତେ ଆଉ ବାଧ୍ୟତାର ପଦୃଷ୍ଟିରେ ଛନ୍ଦିଲେ ନାହିଁ । ପ୍ରଥମେ 'ଅର୍ଥନୀତି', ଦ୍ୱିତୀୟରେ 'ମନୋବିଜ୍ଞାନ' ଓ ତୃତୀୟରେ 'ବୈଜ୍ଞାନିକ ପରିଭାଷା' ଦ୍ୱିତୀୟ ଭାଗର ପାଣ୍ଡୁଲିପିକୁ ଭାଷା ଦୃଷ୍ଟିରୁ ସଂମାର୍ଜନ ଓ ସଂଶୋଧନ କରିଦେବାପାଇଁ 'ବ୍ୟୁରୋ'ର ସେକ୍ରେଟରୀଙ୍କଠାରୁ ଲିଖିତ ଅନୁରୋଧ ପାଇଲି । ସେଗୁଡ଼ିକ ସର୍ବୋଚ୍ଚ ନିଷ୍ଠାର ସହ ମୁଁ ସୁସମ୍ପନ୍ନ କରିଦେଇଥିଲି । ମୁଦ୍ରଣ ସ୍ତରରେ ସେହି ପୁସ୍ତକଗୁଡ଼ିକର ପ୍ରୁଫ୍ ମଧ୍ୟ ମତେ ଯାଞ୍ଚ କରିବାକୁ ପଡ଼ିଥିଲା । ଦୁର୍ଭାଗ୍ୟ-ବଶତଃ ଅଫିସ୍ ଗାଡ଼ିରେ ଯାଉଥିବା ଅବସ୍ଥାରେ ଦିନେ ଡାଇରେକ୍ଟର୍ ଗୋକୁଳାନନ୍ଦ ବାବୁ ଦୁର୍ଘଟଣାଗ୍ରସ୍ତ ହେବା ଫଳରେ ଦୀର୍ଘଦିନ ବଡ଼ ଡାକ୍ତରଖାନାର ନର୍ସିଂହୋମ୍‌ରେ ଚିକିତ୍ସାଧୀନ ରହିଲେ । ତାଙ୍କର ଏହି ଦାରୁଣ ବିପତ୍ତି ଦେଖି ମୁଁ ଘୋର ବ୍ୟଥିତ ହୋଇଯାଇ 'ବ୍ୟୁରୋ' କାମ ପ୍ରତି ସମ୍ପୂର୍ଣ୍ଣ ବୀତସ୍ପୃହ ହୋଇଗଲି । ବର୍ଷାଧିକ କାଳ ପରେ ସେ ପୂର୍ଣ୍ଣ ଆରୋଗ୍ୟ ଲାଭ କଲେ ସତ, କିନ୍ତୁ 'ବ୍ୟୁରୋ'କୁ ଫେରିବାକୁ ତାଙ୍କର ଆଉ ଇଚ୍ଛା ବଳିଲା ନାହିଁ । ଏଇଟି ହେଉଛି ଚତୁର୍ଥାଗ୍ନି ପରୀକ୍ଷାର ବିବରଣ ।

ପଞ୍ଚାଗ୍ନି ପରୀକ୍ଷା ମଧ୍ୟରୁ ଉପରିବର୍ଣ୍ଣିତ ଚାରୋଟି ଅଗ୍ନି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲା ପରେ ପଞ୍ଚମ ବା ଶେଷ ଅଗ୍ନି ପରୀକ୍ଷାର ସମ୍ମୁଖୀନ ହେଲି ମୁଁ । ପୃଥିବୀ ପର୍ଯ୍ୟଟନପ୍ରିୟ ସାମୁଦ୍ରିକ ବିଦ୍ୟାବିତ୍ (palmist) ଆୟୁଷ୍ମାନ୍ ଯଯାତିକେଶରୀ ପଟ୍ଟନାୟକଙ୍କର ପରିଣୟୋତ୍ସବ ଖୁବ୍ ସମାରୋହ ସହକାରେ ଅନୁଷ୍ଠିତ ହୋଇଥିଲା ୧୯୬୭ ମସିହାରେ । ଯଯାତିଙ୍କ ଅବସରପ୍ରାପ୍ତ ଏ. ଡି. ଏମ୍. (ଅତିରିକ୍ତ ଜିଲ୍ଲାପାଳ) ପିତା ମହିମାନଦଆବଜାରସ୍ଥ ଏକ ପକ୍‌କା ଗୃହକୁ ଭଡ଼ା ନେଇ ସେଇଠାରେ ସପରିବାର ଅବସ୍ଥାନ କରୁଥିଲେ । ବେଣ୍ଟକାର ଗ୍ରାମନିବାସୀ ପ୍ରତାପଚନ୍ଦ୍ର ମହାନ୍ତିଙ୍କ ନୃତ୍ୟ-ଗୀତଶିଳ୍ପିନୀ ସୁଶ୍ରୀ କନ୍ୟା ସହିତ ଯଯାତି-କେଶରୀଙ୍କର ଏହି ଶୁଭବିବାହ ଉପଲକ୍ଷେ ତୁଳସୀପୁରରେ ଭୋଜିଭାତ ସହ ସାରା ରାତ୍ରି-ବ୍ୟାପୀ ମନୋରଞ୍ଜନ କାର୍ଯ୍ୟକ୍ରମର ବିପୁଳ ଆୟୋଜନ ହୋଇଥିଲା । ସେହି ଅନୁପାତରେ ନିମନ୍ତ୍ରିତ ଭଦ୍ରବ୍ୟକ୍ତି ସମୂହଙ୍କ ସଂଖ୍ୟା ମଧ୍ୟ ବିପୁଳ ହୋଇଥିବାରୁ ସେମାନଙ୍କୁ ମହିମାନଦଆ ବଜାରରୁ ତୁଳସୀପୁରକୁ ନେବାପାଇଁ ବିବିଧ ଯାନର ବ୍ୟାପକ ବ୍ୟବସ୍ଥା ହୋଇଥିଲା ।

ଯେତେ ଭଦ୍ରବ୍ୟକ୍ତି ନିମନ୍ତ୍ରିତ ହୋଇଥିଲେ, ସେମାନଙ୍କ ମଧ୍ୟରୁ ବାରଣ ଜଣ ମାତ୍ର (ମୋ ସମେତ) ତୁଳସୀପୁରକୁ ବ୍ୟକ୍ତିଗତ ଅସୁବିଧାବଶତଃ ଯାଇପାରିନଥିଲେ । ରଘାନାଥଙ୍କ ପିତା ସେମାନଙ୍କ ନାମ ଟିପି ରଖିଥିଲେ ଏବଂ ସପ୍ତମଙ୍ଗଳା ଦିନ ସେହି ବାରଣ ଜଣଙ୍କ ପାଇଁ ନିଜ ବାସଭବନ ମହମ୍ମଦିଆବଜାରରେ ଏକ ସ୍ୱତନ୍ତ୍ର ମଧ୍ୟାହ୍ନଭୋଜର ଆୟୋଜନ କଲେ । ଉକ୍ତ ବନ୍ଧୁମିଳନୀର ସମୟ ଥିଲା ଦିନ ବାରଟା । ମୁଁ ସେଠାରେ ଉପସ୍ଥିତ ହେବା ପୂର୍ବରୁ ଯେଉଁ କେତେଜଣ ଆସି ସାରିଥିଲେ, ସେମାନଙ୍କ ମଧ୍ୟରେ ମୋ ଜଣାଶୁଣା ପ୍ରମୁଖ ବ୍ୟକ୍ତି ଥିଲେ 'ସମାଜ' ସମ୍ପାଦକ ଡକ୍ଟର୍ ରାଧାନାଥ ରଥ, ସ୍ୱେଚ୍ଛିକ ଅବସରପ୍ରାପ୍ତ ଜିଲାପାଳ ସଚ୍ଚିଦାନନ୍ଦ ମିଶ୍ର, ଆଡ୍‌ଭୋକେଟ ଜଗଦ୍‌ବନ୍ଧୁ କର, ଅବସରପ୍ରାପ୍ତ ସରକାରୀ ପ୍ରେସ୍ ଡେପୁଟି ସୁପରିନ୍‌ଟେଣ୍ଡେଣ୍ଟ୍ ନାରାୟଣପ୍ରସାଦ ଷାଠିଆ, ସ୍ୱେଚ୍ଛିକ ଅବସରଭୋଗୀ ଶିଳ୍ପ ବିଭାଗୀୟ ଆସିଷ୍ଟାଣ୍ଟ୍ ଡାଇରେକ୍ଟର୍ ଚନ୍ଦଶିଲ୍ପି ଗୁରୁ ବିଭୂତିଭୂଷଣ କାନୁନଗୋ ।

ଅର୍ଦ୍ଧନୁଆଁଣ ମଥା ଓ ସଂଯୁକ୍ତିତ ପାଣିରେ ଉପସ୍ଥିତ ସମସ୍ତଙ୍କୁ 'ନମସ୍ତେ ସମସ୍ତେ' ଭାଷାରେ ଏକାଠି ପ୍ରଣାମ ଜଣାଇ ଭିତରକୁ ପାଦ ବଢ଼ାଇଲି । ପୂଜ୍ୟ ରାଧାନାଥବାବୁ ଟିକିଏ ପଛକୁ ଘୁଞ୍ଚିଯାଇ ତାଙ୍କ ସମ୍ମୁଖରେ ମୋ ବସିବାପାଇଁ ଜାଗା କରିଦେଲେ । ସେହିଠାକୁ ଯାଇ ମୁଁ ମେଳ ମଝିରେ ବସିଲି ।

ପରିଚିତ ସମସ୍ତଙ୍କର କୁଶଳ ମନାସିବା, ସେମାନଙ୍କର ଭଲମନ୍ଦ ସମାଚାର ପଚାରି ବୁଝିବା, ଅଭାବୀ ତଥା ଗୁଣୀ ଜ୍ଞାନୀ ବା ସ୍ୱଳ୍ପ ପେନ୍‌ସନ୍‌ଭୋଗୀ ଲୋକଙ୍କୁ ଖୋଜିଲୋଡ଼ି ଆଣି 'ସମାଜ' ପାଣ୍ଠିରୁ ଆର୍ଥିକ ସାହାଯ୍ୟ ଦେବା ଅଥବା 'ସମାଜ' ଅନୁଷ୍ଠାନରେ ଆଶ୍ରୟଦେବା ଡକ୍ଟର୍ ରାଧାନାଥ ରଥଙ୍କର ସ୍ୱଭାବଗତ ମହତ୍ତ୍ୱ ଗୁଣ । ୧୯୨୫ ମସିହାରେ ମୁଁ କଟକ ଟ୍ରେଡ଼ିଂ କମ୍ପାନୀରେ ପୁସ୍ତକ-ପ୍ରକାଶନ ବିଭାଗ ଦାୟିତ୍ୱରେ ରହିବାକାଳୁଁ ତାଙ୍କ ସହିତ ମୋର ପରିଚୟ । ସେତେବେଳେ ସେ ସାକ୍ଷିଗୋପାଳରୁ ପୃଥକ ଉଠିଆସିଥିବା 'ସତ୍ୟବାଦୀ ପ୍ରେସ୍'ର ମେନେଜର୍ ଥିଲେ । 'ସତ୍ୟବାଦୀ ପ୍ରେସ୍' ଓ 'ସମାଜ ଅଫିସ୍' ପୁରୀରୁ କଟକର ପୁରୁଣା କଲେଜ ଲେନ୍ ମୁଣ୍ଡ ନିମଚୌଡ଼ିକୁ ସ୍ଥାନାନ୍ତରିତ ହୋଇ ଆସନ୍ତେ ପୂର୍ବ ପରିଚିତ ଘନିଷ୍ଠତର ହୋଇଉଠିବାର ସୁଯୋଗ ଲାଭ କରିଥିଲା । ତେଣୁ ସମ୍ବେଦନାର ହୃଦୟ ଦେଇ ସେ ମତେ ପଚାରିଲେ, "ଅବସର ନେବା ପରେ କ'ଣ କରୁଛନ୍ତି ବର୍ତ୍ତମାନ ? ଖାଲିଟା ଘରେ ବସିରହିବା ଠିକ୍‌ନୁହେଁ—ସ୍ୱାସ୍ଥ୍ୟଭଙ୍ଗ ହୋଇଯିବ, ଆୟୁ କମିଯିବ । ଏଣୁ ପୂର୍ବାଭ୍ୟସ୍ତ ଗତିକୁ ଗତିଶୀଳ ରଖିବାପାଇଁ କିଛି-ନା-କିଛି ଲଘୁ ଶ୍ରମର କାର୍ଯ୍ୟରେ ନିଜକୁ ନିୟୋଜିତ କରିବା ଏକାନ୍ତ ବାଞ୍ଛନୀୟ ।" ଏତଦ୍ୱାରା ସେ 'ସମାଜ' ପରିସରକୁ ମତେ ଟାଣିବାର ଇଙ୍ଗିତ ଦେଲେ ବୋଲି ମୁଁ ସହଜେ ଠାବରାଇନେଲି ।

ଗୋପବନ୍ଧୁ ବାବୁଙ୍କ ଜୀବିତାବସ୍ଥାରେ ସତ୍ୟବାଦୀ ପ୍ରେସ୍ ନିମଚୌଡ଼ିରେ ଅବସ୍ଥାପିତ ଥିଲାବେଳେ ତାଙ୍କ ଲୁହାଲହୁରେ ଜୀବନ ଗଢ଼ିଆସିଥିବା ମେନେଜର୍ ରାଧାନାଥ ବାବୁ ମତେ ଅଧିକ ବେତନ ହାରରେ କଟକ ଟ୍ରେଡ଼ିଂ କମ୍ପାନୀରୁ ସତ୍ୟବାଦୀ ପ୍ରେସ୍‌କୁ ନେଇଯିବାପାଇଁ

ପ୍ରବଳ ଇଚ୍ଛା ପ୍ରକାଶ କରିଥିଲେ । ମାତ୍ର ଟ୍ରେଡ଼ିଂ କମ୍ପାନୀର ସର୍ବେସର୍ବା ପରିଚାଳନକର୍ତ୍ତା ପଣ୍ଡିତ ଆକୁଳ ମିଶ୍ର କାବ୍ୟତୀର୍ଥ ମୁଁ ଓ ରାଧାନାଥ ବାବୁ ଉଭୟଙ୍କର ଅଭିଭାବକ ତଥା ପିତୃସ୍ଥାନୀୟ ହୋଇଥିବାରୁ ତାଙ୍କର ବିନା ନିର୍ଦ୍ଦେଶରେ ଚାଲିଗଲେ ଘୋର ବିଶ୍ୱାସଘାତକତା ହେବ ବୋଲି ମୁଁ ବିଚାର କଲି, ବିବେକ ମଧ୍ୟ ମୋ ବିଚାରକୁ ଅନୁମୋଦନ କଲା । ତେଣୁ ରାଧାନାଥ ବାବୁଙ୍କ ଇଚ୍ଛା ସେତେବେଳେ ଅଫଳନ୍ତ ରହିଯାଇଥିଲା । ଦୀର୍ଘ ଚାଳିଶ ବର୍ଷ ଅତିବାହିତ ହୋଇଯାଇଥିଲେ ମଧ୍ୟ ସେହି ଇଚ୍ଛା-ଦ୍ରୁମ ଯେ କି ମରି ଏପର୍ଯ୍ୟନ୍ତ ବଞ୍ଚିରହିଛି, ଏହା ଦେଖି ମୁଁ ବିସ୍ମିତ ହେଲି । ରାଧାନାଥ ବାବୁଙ୍କୁ ଉତ୍ତରରେ କହିଲି, "ଅବସରପ୍ରାପ୍ତ ବ୍ୟକ୍ତିର ଜୀବନଦର୍ଶନ ସମ୍ପର୍କରେ ଆପଣ ଯେଉଁ ବିଶ୍ଳେଷଣ ଦେଲେ, ତାହା କେବଳ ଫଳାଶୀନ କର୍ମକୁଣ୍ଠଙ୍କ ପକ୍ଷରେ ସତ୍ୟ । ମୋ ବିଶ୍ଳେଷଣ କିନ୍ତୁ ସମ୍ପୂର୍ଣ୍ଣ ଭିନ୍ନ । ନିଅତ ରଖି ପୂର୍ଣ୍ଣ ନିଷ୍ଠାର ସହିତ ଅତି ଦୀର୍ଘକାଳ ସ୍ୱାତନ୍ତ୍ର୍ୟବିହୀନ ଚାକିରିଜୀବନ କଟାଇଲା ପରେ କିରକ୍ଷଣ ସ୍ୱାତନ୍ତ୍ର୍ୟ, ପରିମିତ ବିଶ୍ରାମ ଓ ଅଖଣ୍ଡ ଶାନ୍ତିର ଆବଶ୍ୟକତା ଅପରିହାର୍ଯ୍ୟ । ତାହା ନହେଲେ ଦେହ ବ୍ୟାଧିମନ୍ଦିର ହୋଇଯିବ, ପରମାୟୁର ଅବକ୍ଷୟ ଘଟିବ । ମୋର ସୌଖୀନ ଉପଜୀବ୍ୟ ହେଉଛି ସାରସ୍ୱତ କୃଷି । ଚାରିଆଡ଼େ ପ୍ରକୃତ ରାଜ୍ୟର ଅମାପ ପଡ଼ିଆ ଜମି ପଡ଼ିରହିଛି । ସେଥିରୁ କିଛିକୁ କ୍ଷେତ ଜମିରେ ପରିଣତ କରି ବିହନ ବୁଣି ସୁନାର ଫସଲ ଉତାରିବାକୁ ଗୁଡ଼ିଏ ଯୋଜନା ମୁଁ ପ୍ରସ୍ତୁତ କରି ରଖିଛି । ବିଶ୍ରାମାନ୍ତ ସମସ୍ତ ଫୁରୁସତକାଳକୁ ସେହିସବୁ କାମରେ ବିନିଯୋଗ କରି ସଂକଳ୍ପିତ ସକଳ ଯୋଜନାକୁ ପୂର୍ଣ୍ଣାଙ୍ଗ କଲା ଭଳି ନିରାମୟ ପରମାୟୁ ମୋର ଅଛି କି ନାହିଁ, ତାହା କେବଳ ଭଗବାନଙ୍କୁ ହିଁ ଗୋଚର । 'କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ' । ଏଭଳି ପରିପ୍ରେକ୍ଷୀରେ, ପୁଣି ଥରେ ଅନ୍ୟାଶ୍ରୟୀ ହୋଇ 'ନର୍ମ ଲି' ପ୍ରାୟ ମୁଣ୍ଡ ବିକିବାର ଅବୌଦ୍ଧିକ ପରିକଳ୍ପନା ବାତୁଳର ପ୍ରଳାପ କିମ୍ବା ବାଚାଳର ବିଚାର ସଙ୍ଗେ ସମାନ ନୁହେଁ କି ?"

ମୋର ଏହି ବିଶ୍ଳେଷଣାର ଆଭିମୁଖ୍ୟ ପ୍ରଜ୍ଞାବନ୍ତ ରାଧାନାଥ ବାବୁଙ୍କର ମନଃପୂତ ହେଲା କି ନ ହେଲା ଜାଣିହେଲା ନାହିଁ; କାରଣ ସେ କେବଳ ଧୈର୍ଯ୍ୟର ସହ ଶୁଣିଯାଉଥାନ୍ତି, କୌଣସିପ୍ରକାର ପ୍ରତିବାଦ ବା ତା'ର ଆଙ୍ଗିକ ଇଙ୍ଗିତ ପ୍ରକାଶୁ ନଥାନ୍ତି । ଏହି ଅପ୍ରତ୍ୟାଶିତ ଭେଟର ପ୍ରଶାନ୍ତ ଅବସରରେ ଯେଉଁ ସ୍ୱାଧୀନ ମତ ବିନିମୟ ହେଲା ତାହାର ଆପେକ୍ଷିକ ପ୍ରସାରଣ ଘଟିଲା ପ୍ରାୟ ଦୁଇ ସପ୍ତାହ ପରେ । ମୋର ସକାଳ ଶାଗ-ମାଛ ସଉଦା ପଡର କଣାର ନିତ୍ୟ ସଙ୍ଗୀ ସାମନ୍ତ ପଣ୍ଡିତ ଗଦାଧର ମହାପାତ୍ର ସାହିତ୍ୟାଚାର୍ଯ୍ୟ ଦିନକର ସନ୍ଧ୍ୟାବେଳେ ମୋ କକ୍ଷରେ ଆସି ଖୋଜ ପକାଇଲେ । ସେ ସତ୍ୟବାଦୀ ପ୍ରେସ୍‌ର ଜଣେ ମାନ୍ୟ ବରିଷ୍ଠ କର୍ମଚାରୀ, 'ସମାଜ' ସମ୍ପାଦକ ଡକ୍ଟର୍ ରାଧାନାଥ ରଥଙ୍କର ଏକାନ୍ତ ବିଶ୍ୱସ୍ତ, ନିର୍ଭରଯୋଗ୍ୟ ଦକ୍ଷିଣହସ୍ତ, ଦୌତ୍ୟକର୍ମ ନିର୍ବାହକ, ସବୁ କିଛି । 'ପଣ୍ଡିତ' ବିଶେଷଣନାମାଟି ଯୋଗୁଁ କି ବାହାର ମହଲ କି ଅନ୍ଦର ମହଲ ଉଭୟଠିକି ନାରଦଙ୍କ ପ୍ରାୟ ନିଦକରେ ପ୍ରବେଶ କରିବାକୁ ତାଙ୍କର ଥାଏ ଅବାଧ ଅଧିକାର । ପଣ୍ଡିତ ଗଦାଧରଙ୍କ

ଗପମୁଣିରେ ସଦାବେଳେ ହରେକ ରକମର ମନଗଢ଼ା ଗପ ଅସୁମାରି ସଂଖ୍ୟାରେ ମହଜୁଦ ଥାଏ । ଯେଉଁ ଅଭିସନ୍ଧି ନେଇ ସେ ଯାଇଥାନ୍ତି, ତାକୁ କଣ୍ଟିଲା ଭଳି ଖାପୁଥିବା ଗୋଟାଏ ଦିଇଟା ମନସନ୍ତୋଷିଆ ଗପ ଅବତରଣିକା ସ୍ୱରୂପ ବେଶ୍ ଜମେଇକରି ଯୋଡ଼ି ଦିଅନ୍ତି । ଏହି ଅଭ୍ୟସ୍ତ ପଦ୍ଧତିରେ ସେ ମୋ ପାଖରେ ବସି ପହିଲେ ଆକାଶତୋଲା ଗପଟାଏ ଦାନ୍ତ ଚିପି ଚିପି ଆରମ୍ଭ କରିଦେଲେ ଏବଂ ବାଗେଇ ବାଗେଇ ବଡ଼ କଦରରେ ତହିଁରୁ ଖସିଲେ ମୋ ଅବସର ଗ୍ରହଣ ପ୍ରସଙ୍ଗକୁ । ତାଙ୍କ କହିବା ଢାଞ୍ଚାରୁ ମୁଁ ଚଟ୍‌ଦିସେ ପରଖିନେଲି ଯେ, 'ନାରଦେ' ମହାଶୟ ଏଠିକି ଆସିଛନ୍ତି ପୋଷଣାହାରି ଖାମିନ୍ଦଙ୍କ ପକ୍ଷରୁ ଗୁଇନ୍ଦାଗିରି କରିବାପାଇଁ । ପୂର୍ବବର୍ଣ୍ଣିତ ଭୋଜି ସଭାରେ ରାଧାନାଥ ବାବୁଙ୍କ ସହିତ ମୋର ଭେଟ ଓ କଥାବାର୍ତ୍ତା ବିଷୟର ଛନ୍ଦ ବିସର୍ଗ ପୁଞ୍ଛା ସେ ଯେମିତି ଜାଣିନାହାନ୍ତି, ସେହିପରି ପେଖନା ଦେଖାଇ ମୋର ଭଲ ପାଇଁ ବନ୍ଧୁଜନୋଚିତ ପ୍ରସ୍ତାବଟିଏ ଦେଉଛନ୍ତି ବୋଲି ଉପକ୍ରମରେ କହି ନିଜର ଭାରି ବଢ଼େଇକଲେ । କହିଲେ, "ଆପଣଙ୍କ ଭଳି ଜଣେ କର୍ମ୍ମ ଯୋଗାଲୋକ ଘରେ ବସି ଶୋଇ ଦିନ ସାରିବା କ'ଣ ଠିକ୍ ହେଉଛି ? ଏଥିରେ ଭାତ ବି ତ ହଜମ ହେବ ନାହିଁ । ଆପଣଙ୍କଠୁଁ ସମ୍ମତି ପାଇଲେ ମୁଁ ରାଧାନାଥ ବାବୁଙ୍କୁ ଆଜି ଯାଇ କହନ୍ତି । ଆପଣଙ୍କ ନାଁ ଶୁଣିଲାମାତ୍ରେ ସେ ଅତି ଆଗ୍ରହରେ ଆପଣଙ୍କୁ ଡକାଇବେ ଏବଂ ଗୋଟାଏ କିଛି କୋହଳିଆ ଦାୟିତ୍ୱର କାମ ଯାଚିକରି ଦେବେ ବୋଲି ମୋର ଷୋଳଅଣା ବିଶ୍ୱାସ । ଦିନ ଘିରିଘଣ୍ଟା ପାଇଁ ଯାଆନ୍ତେ, ମାସ ଶେଷକୁ ଟଙ୍କା ଗ୍ରିଶରୁ କମ୍ ନୁହେଁ ପକେଟକୁ ଆଣନ୍ତେ— କଅଣଟା ଖରାପ ହୁଅନ୍ତା ?" ପଣ୍ଡିତ ଗଦାଧରଙ୍କ 'କୌଟିଲ୍ୟ' ଭାଷ ସ୍ପଷ୍ଟ ସୂଚାଇଦେଲା ଯେ, ସେଦିନର ମୋ ଉତ୍ତର ରାଧାନାଥ ବାବୁଙ୍କ ଉଦ୍ଦେଶ୍ୟର ପରିପୂରକ ବା ପରିପୋଷକ ହୋଇପାରି ନଥିଲେ ହେଁ ମତେ 'ସମାଜ' ଗୋଷ୍ଠୀଗତ କରିବାର ଦୁର୍ବାର ଆଶା ତାଙ୍କର ମଉଳିଗଲା ନାହିଁ । ତେଣୁ ଏବେ ଶେଷ ଉଦ୍ୟମର ବାର୍ତ୍ତାବହ ହୋଇଛନ୍ତି ସାହିତ୍ୟାଗ୍ରଣୀ ମହାଶୟ । ମୋ ତୁଣ୍ଡରୁ ଅଜ୍ଞାତସାରରେ ବାହାରିପଡ଼ିଲା 'ବଡ଼ ବଡ଼ ଗଲେ ଫସରଫାଟି, ସାନ ଅଇଲେ ବେସର ବାଟି' । ଛଦ୍ମବେଷୀ ଗଦାଧର ପଣ୍ଡିତଙ୍କୁ ଛଳେଇ କହିଲି, "ତମାଳି ବଚନଟିଏ ଅଛି 'ଢିଙ୍କି ସ୍ୱର୍ଗକୁ ଗଲେ ବି ଧାନ କୁଟେ ।' ଏ ଉକ୍ତିଟା ମୋ ପକ୍ଷରେ ଶତକଡ଼ା ଶହେ ସତ । ମୋ ମାନସ-କୋଠିରେ ବହୁତ ଧାନ ମହଜୁଦ ରହିଛି—ଯେତେ କୁଟିଲେ ବି ସରିବ ନାହିଁ । ମୋର ମରଜି ଓ ତାକତ ଅନୁସାରେ ମୁଁ କାମ କରିବି ମୋ ଘରେ । କାହାରି ଇଚ୍ଛା ବା କୃପାର ଅଧୀନ ହେବି ନାହିଁ । ସେଇଥିରୁ ମୁଁ ପାଇବି ଅପରିମିତ ଶାନ୍ତି ଆଉ ସନ୍ତୋଷ । ଏଣୁ ଆପଣ ମେହେରବାନି କରି ଆଣିଥିବା ସୁଚିନ୍ତିତ ପ୍ରସ୍ତାବଟିକୁ ଅଚିନ୍ତିତ ଭାବରେ ପକେଟସ୍ଥ କରି ଯେଉଁଠୁ ଆସିଥିଲେ ସେଇଠିକି ବାହୁଡ଼ା ବିଜେ କରିବା ହେଉ ।" ବ୍ୟର୍ଥକାମ ପଣ୍ଡିତ ମହାଶୟ କୃତ୍ରିମ ମନ୍ଦହାସରେ ପରାଜୟକୁ ଘୋଡ଼ାଇପକାଇ ମୋ'ଠାରୁ ବିଦାୟ ଗ୍ରହଣ ପୂର୍ବକ ଆହତ ହୃଦୟରେ ଯଥାସ୍ଥାନକୁ ପ୍ରତ୍ୟାବୃତ୍ତ ହେଲେ ।

## ମୋ ସାହିତ୍ୟ ସେବା ଟୁଙ୍ଗୀ—

ଚାକିରିରେ ଥିଲି ପର୍ଯ୍ୟନ୍ତ ନିରୋଳା ରାତିବେଳ (ନଅଟାରୁ ବାରଟା) ଥିଲି ସାହିତ୍ୟ ସାଧନା ପାଇଁ ମୋ ପକ୍ଷରେ ଏକମାତ୍ର ପ୍ରକୃଷ୍ଟ ଅବସର । କିନ୍ତୁ ଚାକିରି ଛାଡ଼ିଲି ଦିନଠାରୁ ରାତ୍ରିଜାଗରଣ ଅଭ୍ୟାସକୁ ପୁରାପୁରି ଛାଡ଼ପତ୍ର ଦେଇ ବାସଭବନର ଗୋଟିଏ ଏକକଡ଼ିକିଆ ନିଭୃତ ପ୍ରକୋଷ୍ଠକୁ ସାହିତ୍ୟ ସେବାର ଟୁଙ୍ଗୀରୂପେ ବ୍ୟବହାର କଲି । ସନ୍ଧ୍ୟା ହେଲେ ତାହା ତାଲବଦ୍ଧ ହୁଏ, ଦିନସାରା ଫିଟା ରହେ । ସେଇ ନିର୍ଜନ ନିଃଶବ୍ଦ କୋଠରିଟିରେ ମୁଁ ଦିନବେଳା ଶୁଆବସା ମଧ୍ୟ କଲି ।

ସଙ୍ଗତି ରକ୍ଷାପାଇଁ ୧୯୬୨ ମସିହାର ଏକ ପୃଷ୍ଠଭୂମି ବୃତ୍ତାନ୍ତ ଏଠାରେ ଉଲ୍ଲେଖ କରୁଛି । ସେ ସମୟରେ ନାଟ୍ୟାଭିନୟ ଜଗତରେ ଭାରି ନାମଡାକ ଥିଲେ ନନ୍ଦ-ବଲାଇ (ଆଡ଼୍‌ଭୋକେଟ୍ ଅନାଥବନ୍ଧୁ ରାୟ ଓ ବଲାଇ ବାନାର୍ଜି) । ରାମ-ଲକ୍ଷ୍ମଣ ବା କୃଷ୍ଣ-ବଳରାମଙ୍କ ପରି ସେ ଦୁହେଁ ଥିଲେ ପରସ୍ପରର ଯୋଡ଼ି । କଲିକତା ରଙ୍ଗମଞ୍ଚର ସାମୟିକ ଅଭିନେତା ରୂପେ ଓ ଓଡ଼ିଶା ରଙ୍ଗମଞ୍ଚର ନାଟ୍ୟନିର୍ଦ୍ଦେଶକ ରୂପେ ଉଭୟଙ୍କର ସୁଖ୍ୟାତି ଥିଲି ଅପରମେୟ ଏବଂ ସୁନାମର ପ୍ରସାର ଥିଲି ସବଂଜସଞ୍ଚାରୀ ସମୀରଣ ପ୍ରାୟ ଦିଗ୍‌ବିଦିଗ୍‌ବ୍ୟାପ୍ତ ।

ସେହି ବର୍ଷ ନଟସୂର୍ଯ୍ୟ ଶିଶିର ଭାଦୁଡ଼ିଙ୍କ ନିର୍ଦ୍ଦେଶନାରେ ସଦ୍ୟତମ ବଙ୍ଗଳା ପୌରାଣିକ ନାଟକ 'କର୍ଣ୍ଣାର୍ଜ୍ଜୁନ' କଲିକତାର ଷ୍ଟାର୍ ଥିଏଟରରେ ଦୀର୍ଘ ଛଅମାସରୁ ଅଧିକ କାଳ କ୍ରମାଗତ ଅଭିନୀତ ହୋଇ ରେକର୍ଡ଼ ସୃଷ୍ଟି କରିଥିଲି । ତାହା ଦେଖିବାପାଇଁ ଓଡ଼ିଶାର ସହରାଞ୍ଚଳମାନଙ୍କର ବିଶେଷତଃ କଟକ ନଗରୀର ନାଟ୍ୟପ୍ରେମୀମାନେ ଏକାଧିକ ଥର କଲିକତା ଧାଇଁ ଚକ୍ଷୁ-କର୍ଣ୍ଣର ବିବାଦ ଭଞ୍ଜନ କରିଥିଲେ । କଲିକତାର ସେହି 'କର୍ଣ୍ଣାର୍ଜ୍ଜୁନ' ନାଟକାଭିନୟରେ ନନ୍ଦ-ବଲାଇ କ୍ରମାନ୍ୱୟେ ସପ୍ତାହେ କାଳ ଯଥାକ୍ରମେ କର୍ଣ୍ଣ ଓ ଶକୁନି ଭୂମିକାରେ ଅଭିନୟ କରି ଓଡ଼ିଶା ରଙ୍ଗମଞ୍ଚର ମର୍ଯ୍ୟାଦା ବଢ଼ାଇଦେଇଥିଲେ ।

ଇତିହାସପ୍ରସିଦ୍ଧ 'କର'ବଂଶୀୟମାନଙ୍କର ମୂଳ ବସତିସ୍ଥଳ 'ମୂଳବସନ୍ତ'ର ସେତେବେଳେ ସ୍ୱର୍ଣ୍ଣଯୁଗ । ବିରାଟ ବ୍ରାହ୍ମଣଶାସନ, ବିପୁଳ ଜନସଂଖ୍ୟା, ଓଡ଼ିଶାର ସର୍ବୋଚ୍ଚ ଶିକ୍ଷାଲୋକିତ ଜନପଦ । ପାଞ୍ଚଘର 'ଦାଶ' ବଂଶୀୟ ମଧ୍ୟ ଏହି ଶାସନରେ ଏକ ପ୍ରାନ୍ତରେ ପଡ଼ୋଶୀ ରୂପେ ବାସ କରୁଥିଲେ । ସେଠାରେ ପ୍ରତିଷ୍ଠିତ ହୋଇଥାଏ ଗୋଟିଏ ଥିଏଟର୍ ସଂସ୍ଥା । ସ୍ଥାନୀୟ ମାଇନର୍ ସ୍କୁଲଠାରୁ ଆରମ୍ଭ କରି କଟକର ହାଇସ୍କୁଲ ('ଭିକ୍ଟୋରିଆ', 'ଏକାଡେମୀ' ଓ 'ମିସନ୍') ଓ ରେଭେନ୍‌ସା କଲେଜ ପର୍ଯ୍ୟନ୍ତ ପାଞ୍ଚ ଶିକ୍ଷାୟତନରେ ଅଧ୍ୟୟନ କରୁଥିବା ଆମ ଗ୍ରାମର ଛାତ୍ର-ଛାତ୍ରୀଙ୍କ ମୋଟ ସଂଖ୍ୟା ଷାଠିଏ ପଞ୍ଚଷଠିରୁ କମ୍ ନଥିଲି । ଏମାନଙ୍କ ଛଡ଼ା କଟକରେ ଚାକିରି କରିଥିବା କରବଂଶୀ ଓ ଦାଶବଂଶୀଙ୍କ ସଂଖ୍ୟା ମଧ୍ୟ ଅନ୍ତତଃ ଦଶ ହୋଇଥିବ । ତେଣୁ 'କର୍ଣ୍ଣାର୍ଜ୍ଜୁନ' ଭଳି ବହୁ ଅଭିନେତା-ଅଭିନେତ୍ରୀ ସାପେକ୍ଷ ଦୀର୍ଘାୟତନ ନାଟକକୁ ମଞ୍ଚସ୍ଥ କରିବାପାଇଁ ଆମ ଗ୍ରାମରେ ଶିକ୍ଷିତ-ଶିକ୍ଷିତାଙ୍କର ଅଭାବ ନଥିଲି, ବରଂ ସଂଖ୍ୟାଧିକ୍ୟ ଥିଲି, ଯାହାଫଳରେ କେତେକ ଭୂମିକାରେ ଏକାଧିକ

ବ୍ୟକ୍ତି ତାଲିମ ପାଇବାର ସୁଯୋଗ ରହିଥିଲା । ଗ୍ରାମବାସୀମାନଙ୍କ ବହୁମତରେ ପାର୍ବଣ ପୂଜାର. ଦୁର୍ଗୋତ୍ସବ ସମୟରେ ଦଶରାତ୍ରି ବ୍ୟାପୀ 'କର୍ଣ୍ଣାର୍ଜ୍ଜୁନ' ଅଭିନୟ ପ୍ରଦର୍ଶିତ ହେବ ବୋଲି ନିଷ୍ପତ୍ତି ନିଆଗଲା ।

ଏହି ବଙ୍ଗଳା ନାଟକଟିର ଓଡ଼ିଆ ଅନୁବାଦ କରିବାର ଭାର ମୋ ଉପରେ ନ୍ୟସ୍ତ କରାହୋଇଥିଲା । ମୁଁ ଯଥାସମ୍ଭବ ଅଳ୍ପଦିନ ମଧ୍ୟରେ ସମସ୍ତ ବଙ୍ଗଳା ସଂଳାପର ଓଡ଼ିଆ ତର୍ଜମା ଶେଷ କରିଦେଇ ନାଟକ-କମିଟିକୁ ଦେଇଦେଲି । ବଙ୍ଗଳା ନାଟକର ମଧ୍ୟେ ମଧ୍ୟେ ଯେଉଁ କେତେକ ସଙ୍ଗୀତ ସଂଯୋଜିତ ଥିଲା, ସେଗୁଡ଼ିକୁ ପରିହାରପୂର୍ବକ ସଙ୍ଗୀତଗୁରୁଙ୍କ ପରାମର୍ଶାନୁଯାୟୀ ମୋ ନିଜସ୍ୱ ଭାବନା ସମ୍ବଳିତ ଗୀତମାନ ରଚନା କରି ଯଥାଯଥ ସ୍ଥଳରେ ଖଞ୍ଜିଦେଲି । କାଳଗଳରେ ଫଳଫୁଲର ବଚିତ୍ରସମନ୍ୱିତ ଗୋଟିଏ ବହୁପ୍ରକୋଷ୍ଠ ପ୍ରଶସ୍ତ ଖଞ୍ଜା ଗୃହ ଭଡ଼ା ନିଆଗଲା । ଗ୍ରାମରେ ରହୁଥିବା ନଟ-ନଟୀମାନେ କଟକକୁ ଆସି ସେହି ଗୃହରେ ରହିଲେ । ତାହାର ଏକାଂଶ ହେଲା ରିହର୍ସାଲ ଶିବିର । କଟକରେ ରହୁଥିବା ଅଭିନେତାମାନେ ଓ ଆମେ କେତେକ ଆୟୋଜକ ପ୍ରତିଦିନ ସନ୍ଧ୍ୟାରେ ସେହି ଶିବିରରେ ଉପସ୍ଥିତ ରହିଲୁଁ । ଆମ ଅନୁରୋଧକ୍ରମେ ନନ୍ଦ-ବଲ୍ଲଭ ଅତି ଆନନ୍ଦର ସହିତ ନିର୍ଦ୍ଦେଶନା (direction) ଦେବାର ପୂର୍ଣ୍ଣ ଦାୟିତ୍ୱ ଗ୍ରହଣପୂର୍ବକ ନିୟମିତ ଭାବରେ ସନ୍ଧ୍ୟାରୁ ରାତି ଏଗାରଟା ପର୍ଯ୍ୟନ୍ତ ପ୍ରତ୍ୟେକଙ୍କୁ ତାଲିମ ଦେବାକୁ ଲାଗିଲେ । ଏକାଦିକ୍ରମେ ଦୁଇମାସ କାଳ ରାତିମତ ରିହର୍ସାଲ୍ ଚାଲିବା ଫଳରେ ଅଭିନେତା-ଅଭିନେତ୍ରୀମାନେ ନିଜ ନିଜ ଭୂମିକାରେ ପକ୍‌କା ଦୋରସ୍ତ ହୋଇଗଲେ । ଠିକ୍ ପରେ ପରେ ଦଶହରା ପର୍ବ ଆସିଗଲା । ଗ୍ରାମସ୍ଥ ଉଦ୍‌ଯୋକ୍ତାମାନେ ରଙ୍ଗମଞ୍ଚର ସଜ୍ଜୀକରଣ ଆରମ୍ଭ କରିଦେଇଥିଲେ । ନିର୍ଦ୍ଦେଶକଦ୍ୱୟଙ୍କୁ ଯଥାସମୟରେ ମୂଳବସନ୍ତ ନିଆଗଲା । ତାଙ୍କର ନିୟନ୍ତ୍ରଣାରେ ଓଡ଼ିଆ 'କର୍ଣ୍ଣାର୍ଜ୍ଜୁନ' ନାଟକର ସାଢ଼େ ଚାରିଘଣ୍ଟା ବ୍ୟାପୀ ଅଭିନୟର ଶୁଭ ଉଦ୍‌ଘାଟନ ହେଲା । ପାଞ୍ଚ କୋଶ ଆବାଦାନ୍ତର ଗ୍ରାମାଞ୍ଚଳ-ବଳୟରୁ ଥାଟପାଟ ନରନାରୀ ଆସି ମୁକ୍ତ ପ୍ରେକ୍ଷାଳୟରେ ପ୍ରତିସନ୍ଧ୍ୟାରେ ପୁଞ୍ଜୀଭୂତ ହେବାକୁ ଲାଗିଲେ । ଆଶାତୀତ ସାଫଲ୍ୟ ସହ ଖୁବ୍ ସମାରୋହରେ କ୍ରମାନ୍ୱୟରେ ଦଶ ରାତ୍ରି ଅଭିନୟ ପ୍ରଦର୍ଶିତ ହେଲା ପରେ ନାଟ୍ୟୋତ୍ସବ କାର୍ଯ୍ୟକ୍ରମର ପରିସମାପ୍ତି ଘଟିଲା ।

ଉଣ୍ଡ୍ରବାଇଦ ସହସ୍ର କୋଶ । କଟକ ଜିଲ୍ଲାର ଯେତେ ଯେଉଁଠି ନାଟ୍ୟପୀଠ ଥିଲା, ସେ ସବୁର କର୍ମକର୍ତ୍ତାମାନେ ଏହି ଓଡ଼ିଆ 'କର୍ଣ୍ଣାର୍ଜ୍ଜୁନ' ନାଟକର ଅଜସ୍ର ପ୍ରଶଂସା ଶୁଣି ମୂଳ-ବସନ୍ତକୁ ଧାଡ଼ି ଲଗାଇଲେ ନାଟକଟିର ପ୍ରତିଲିପି ନେବାପାଇଁ । ଏହିରୂପେ ମୋ ଅନୂଦିତ ଓଡ଼ିଆ 'କର୍ଣ୍ଣାର୍ଜ୍ଜୁନ'ର ବହୁ ହରୁଫ ପ୍ରତିଲିପି ଜିଲ୍ଲାରୁ ଜିଲ୍ଲାକୁ ଡେଇଁ ପାରି ଓଡ଼ିଶାର ଗ୍ରାମ୍ୟ ବାୟୁମଣ୍ଡଳକୁ କେତେବର୍ଷ ପର୍ଯ୍ୟନ୍ତ ନାଟ୍ୟ ଝଙ୍କାରରେ ମୁଖରିତ କରି ରଖିଥିଲା ।

ପ୍ରାୟ ପକ୍ଷକପାଇଁ ଗ୍ରାମର ଅତିଥି ହୋଇଥିଲାବେଳେ ନାଟ୍ୟନିର୍ଦ୍ଦେଶକ ନନ୍ଦ-ବଲ୍ଲଭଙ୍କ ରହିଣିସ୍ଥଳ ହୋଇଥିଲା 'କରବଂଶୀୟ ଲାଇବ୍ରେରି' ଭବନାନ୍ତର୍ଗତ ଅତିଥିଶାଳା; କିନ୍ତୁ ତାଙ୍କ

ଭୋଜନର ବ୍ୟବସ୍ଥା ହୋଇଥିଲା ଆମ ଘରେ । କୁନ୍ତଳାଙ୍କ ସ୍ନେହୀ ମୋ ଜନନୀଙ୍କ ତତ୍ତ୍ୱାବଧାନରେ ମୋର ପତ୍ନୀ ପ୍ରତିଦିନର ଜଳଯୋଗ ଓ ଖାଦ୍ୟପେୟ ପ୍ରସ୍ତୁତ କରିଦେଉ-ଥିଲେ । ଏଣୁ ଅତିଥିଦ୍ୱୟଙ୍କୁ ନିତି ତ୍ରିଶଥର ଲେଖାଏଁ ଆମ ଘରକୁ ଆସିବାକୁ ପଡ଼ୁଥିଲା । ଏହାଫଳରେ ବନ୍ଧୁ ଶ୍ରଦ୍ଧାଳୁ ଅନାଥବନ୍ଧୁଙ୍କ ସ୍ୱତଃସ୍ଫୂର୍ତ୍ତ ମଧୁର ମମତାର ମୃଣାଳ ଝଞ୍ଜିରରେ ମୋ ପରିବାରର ସଭିଏଁ ଛନ୍ଦି ହୋଇପଡ଼ିଲେ । ସୁଖର କଥା, ଏହି ସରଳ ନିର୍ମଳ ସଦ୍ଭାବ ତାଙ୍କ ପରିବାର ଓ ମୋ ପରିବାର ମଧ୍ୟରେ ଯେଉଁ ନିବିଡ଼ ସମ୍ପର୍କର ସେତୁବନ୍ଧ ଗଢ଼ି-ଦେଇଥିଲା, ତାହା ସେ ଜୀବିତ ଥିବାପର୍ଯ୍ୟନ୍ତ ଅତୁଟ ଅକାଟ ଅକ୍ଷତ ଅବ୍ୟାହତ ରହିଥିଲା ।

୧୯୬୭ର ପୃଷ୍ଠଭୂମି ବିବରଣ ଏତିକରେ ଚୂଳ ମାରି ଶତାବ୍ଦୀର ସପ୍ତମ ଦଶନ୍ଧି ଆରମ୍ଭରେ ସଂଘଟିତ ଏକ ଉଲ୍ଲେଖନୀୟ ବୃତ୍ତାନ୍ତ ଏବେ ବର୍ଣ୍ଣନା କରୁଛି । ବନ୍ଧୁ ଅନାଥବନ୍ଧୁଙ୍କ ପରିବାରକୁ ବଙ୍ଗଳା ଦୈନିକ ପତ୍ରିକା 'ଯୁଗାନ୍ତର' ବରାବର ଆସେ । ପ୍ରତି ସପ୍ତାହର ରବିବାସରୀୟ ସଂଖ୍ୟାରେ ଅନେକ ସାହିତ୍ୟିକ ସମାଗ୍ରୀ ଏବଂ ବୈଦିକ, ପୌରାଣିକ ଓ ଐତିହାସିକ ତଥ୍ୟ ସମ୍ବଳିତ କଥା କାହାଣୀ ତଥା ସତ୍ୟ ସମ୍ବଳିତ କିମ୍ବଦନ୍ତୀ ସ୍ଥାନ ପାଇଥାଏ । ମୁଁ ସେହିସବୁ ଚିତ୍ତାକର୍ଷକ ନିବନ୍ଧ ପଢ଼ିବାପାଇଁ ପ୍ରତି ରବିବାର ସକାଳେ ନନ୍ଦବାବୁଙ୍କ ଘରକୁ ଯାଏଁ । ସେହି ରବିବାରମାନଙ୍କ ମଧ୍ୟରୁ ଗୋଟିଏ ମୂଲ୍ୟବାନ୍ ରବିବାରର ଅଭୁଲା କାହାଣୀ । ଅଭିଜାତ ଅଭିନେତା ଅନାଥବନ୍ଧୁ ଗୁପ୍ତଙ୍କୁ ସ୍ରଷ୍ଟାର ଶ୍ରେଷ୍ଠ ଦାନ ଥିଲା ଅସାଧାରଣ ସ୍ମୃତି-ଶକ୍ତି ଓ ଈର୍ଷଣୀୟ ଆବୃତ୍ତି ପ୍ରତିଭା । ସେଦିନର 'ଯୁଗାନ୍ତର'କୁ ହସ୍ତରେ ଧରି ସ୍ୱଭାବସୁଲଭ ନାଟକୀୟ ଠାଣିରେ ମୋଗଲ ଇତିହାସର ଏକ ଲୋମହର୍ଷଣକର ସଙ୍କଟସଙ୍କୁଳ ଜୀବନଯୁଦ୍ଧ କାହାଣୀକୁ ସେ ଉଦାତ୍ତ କଣ୍ଠରେ ଆବୃତ୍ତି କରି କରି ମୋ ସନ୍ନିଧିରେ ଆସି ଉପବେଶନ କଲେ । କାହାଣୀଟି ସେହି ସଂଖ୍ୟାରେ ପ୍ରକାଶିତ ହୋଇଥାଏ । ବିଷୟବସ୍ତୁ ତାର— ଅପରୂପ ରୂପଲାବଣ୍ୟ ପିତୁଳା ନ୍ୟଗ୍ରୋଧପରିମଣ୍ଡଳା ନୃତ୍ୟରଙ୍ଗିଣୀ ପ୍ରଚଣ୍ଡମେଧାବିନୀ ମେହେରଉନ୍ନିସାର କାନ୍ତିକର ଅମର ଚରିତ । ଲେଖାଟି କ୍ଷୁଦ୍ର, ଗୋଟିଏ ମାତ୍ର ସ୍ତମ୍ଭରେ ସୀମିତ ହେଲେ ହେଁ ତାର ଭାଷା ଜୀବନ୍ତ, ରସାକ୍ତ, ସାବଲୀଳ ଓ ଉଚ୍ଚକୋଟିର— ସିଦ୍ଧହସ୍ତତାର ଦ୍ୟୋତକ । ବହୁତ ତାରିଫ କଲି ମୁକ୍ତ କଣ୍ଠରେ, ତହିଁରେ ସାତିଶୟ ପ୍ରୋତ୍ସାହିତ ହୋଇ ସ୍ଫୀତବକ୍ଷ ହୋଇଗଲେ ଅନାଥବନ୍ଧୁ । ଓଡ଼ିଆଭାଷା ଓ ଓଡ଼ିଆ ସାହିତ୍ୟର ଗୌରବମୟ ଅତୀତ ଏବଂ ଉଭି ପୋତା ସମ୍ବନ୍ଧରେ ସମ୍ପୂର୍ଣ୍ଣ ଅଜ୍ଞ ଓ ଅନବହିତ ଥିବାରୁ ସେ 'ସୋନାର୍ ବାଂଲା' ପ୍ରୀତିରେ ଅତିରିକ୍ତ ଉଦ୍‌ବୁଦ୍ଧ ଓ ଆତ୍ମହରା ହୋଇଯାଇ ଗୋଟାଏ ଅପ୍ରୀତିକର ଆପତ୍ତିଜନକ ମନ୍ତବ୍ୟ ଦେଇପକାଇଲେ, "ଓଡ଼ିଆରେ ଏପରି ଉଚ୍ଚ ପରିପାଟୀର ରଚନା କେବେହେଲେ ସମ୍ଭବପର କି ? ବଙ୍ଗଳା ଭାଷାର ବିପୁଳ ଶବ୍ଦବିଭବ ସହିତ ଓଡ଼ିଆ ଭାଷାର ଶବ୍ଦସମ୍ଭାର ତୁଳନୀୟ ହୋଇ ନପାରେ । ଏଣୁ ମନରେ ଉଦିତ

ହେଉଥିବା ତୀବ୍ର ଭାବଭାବନାସବୁକୁ ଉପଯୁକ୍ତ ଶବ୍ଦାବଳୀ ସାହାଯ୍ୟରେ ରୂପାୟିତ କରିବାକୁ ଓଡ଼ିଆଭାଷାର ତାକତ ଯଥେଷ୍ଟ କମ୍ ।”

ବନ୍ଧୁଙ୍କର ଏହି ଅଯଥାସ୍ପର୍ଦ୍ଧିତ ମନ୍ତବ୍ୟକୁ ହସରେ ଉଡ଼ାଇଦେଇ ବୀର ଓଡ଼ିଆର ବଂଶଧରୋଚିତ ଭାଷାରେ ଉତ୍ତର ଦେଲି, “ଓଡ଼ିଆ ଭାଷା ସମ୍ବନ୍ଧରେ ଆପଣଙ୍କର ଦୟନୀୟ ଅଜ୍ଞତା ଦେଖି ମୋର ଦୟା ଆସୁଛି । ଓଡ଼ିଆ ସାହିତ୍ୟର ବୟସ ତୁଳନାରେ ବଙ୍ଗଳା ସାହିତ୍ୟ ହାଲିକାର ଶିଶୁ । ଓଡ଼ିଆ ଭାଷାର ଆଦି ସାହିତ୍ୟ ‘କୋଇଲି’ ଓ ‘ଚଉତିଶା’ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀ ବେଳକୁ ପରିପୁଷ୍ଟ ବିକାଶ ଲାଭ କରିସାରିଥିବା ସ୍ଥଳେ ବଙ୍ଗର ଘରେ ଘରେ ପଠିତ ଓଡ଼ିଆ ‘ସାରଳା ମହାଭାରତ’ର ପଦାଙ୍କ ଅନୁସରଣ କରି ଖ୍ରୀଷ୍ଟପର ଷୋଡ଼ଶ ଶତାବ୍ଦୀରେ ‘କାଶୀଦାସୀ ମହାଭାରତ’ ରଚିତ ହେବା ପୂର୍ବରୁ ବଙ୍ଗଳାରେ ଝଣ୍ଡିଏ ହେଲେ ପୁରାଣର ବି ଅସ୍ତିତ୍ୱ ନଥିଲା—ଅନ୍ୟ ସାହିତ୍ୟ କଥା ଆଶା କରାଯିବ ବା କିପରି ? ଏଥିରୁ ଆପଣ ବେଶ୍ ଅନୁମାନ କରିପାରିବେ, ଶବ୍ଦ ସମ୍ପଦରେ ଓଡ଼ିଆଭାଷା ବଡ଼ ସାହୁକାର ନା ବଙ୍ଗଳା ଭାଷା ।”

ମୋ ଉକ୍ତିର ଯୌକ୍ତିକତା ସମ୍ପର୍କରେ କୌଣସି ପ୍ରଶ୍ନ ଉଠାଇ ନପାରି ଅନନ୍ୟୋପାୟ ଅନାଥବନ୍ଧୁ ବାବୁ ମତେ ‘ଗ୍ଲୁଭ-ଏନ୍-ଲିଭ’ର ଆହ୍ୱାନ ଦେଲେ, “ଆପଣ କ’ଣ ଏହି କଥାବସ୍ତୁଟିକୁ ଏହିପରି ଚମତ୍କାର ଢଙ୍ଗରେ ନିଜ ଓଡ଼ିଆଭାଷାରେ ଲେଖିପାରିବେ ?”

ମୁଁ ତକ୍ଷଣେ ତାଙ୍କ ସଦର୍ପ ଆହ୍ୱାନକୁ ଗ୍ରହଣ କରିନେଇ ମୁକାବିଲାପାଇଁ ଆହୁରି କଦମେ ବଢ଼ି ଉତ୍ତର ଦେଲି, “ଖବରକାଗଜପାଇଁ ଉଦ୍ଦିଷ୍ଟ ଏଭଳି ଚୁଟ୍‌କି ଆକାରର ଲେଖା ଅପେକ୍ଷାକୃତ ସହଜସାଧ୍ୟ । ଏ ଭାଷାଠାରୁ ଆହୁରି ଉନ୍ନତ ଓ ଆହୁରି ଚମତ୍କାର ପରିପାଟୀର ଓଡ଼ିଆ ଭାଷାରେ ମୁଁ ଖଣ୍ଡେ ପୁସ୍ତକ ମଧ୍ୟ ଲେଖିଦେଇପାରିବି । କହିବେ ଯଦି ଶନିବାର ସୁଦ୍ଧା ଲେଖା ଶେଷ କରି ଆସନ୍ତା ରବିବାର ଠିକ୍ ଏଇ ସମୟରେ ତା’ର ଚଠା ପାଣ୍ଡୁଲେଖଟି ଆଣି ଆପଣଙ୍କୁ ଦେଖାଇଦେବି ।”

ଦୃଢ଼ ଦମ୍ଭର ସହିତ ହିମ୍ମତକଥା କହି ଦେଇଦେଲି ମାତ୍ରେ ମୋ ଦାୟିତ୍ୱର ଓଜନ ଗୁରୁତର ଭାବରେ ବଢ଼ିଗଲା—ସମୟର ସୂକ୍ଷ୍ମତମ ଭଗ୍ନାଂଶ ଲିପ୍ତା-ବିଲିପ୍ତାର ମୂଲ୍ୟ ମଧ୍ୟ ଚକ୍ରବୃଦ୍ଧି ବିଧିରେ ପ୍ରବର୍ଦ୍ଧିତ ହେବାକୁ ଲାଗିଲା । ଉଡ଼ା ମନ ଏଡ଼େ ଉଦ୍‌ବେଗଚଞ୍ଚଳ ହୋଇପଡ଼ିଲା ଯେ, ଗୋଡ଼ ମତେ ସେଠି କ୍ଷଣେ ଅଧିକା ବସେଇଦେଲା ନାହିଁ । (ନନ୍ଦ ବାବୁଙ୍କ ଘର) ସାହେବଜାଦାବଜାର ଗଳିରୁ (ମୋ ଘର) କାଳୀବଜାର ତକ ରାସ୍ତା ହନୁମନ୍ତିଆ ଖେପାରେ କିପରି ଯେ ଡେଇଁଆସିଲି ଜମା ଜାଣିହେଲା ନାହିଁ । ସଙ୍କଳ୍ପିତ କଣ୍ଟବେଳା ମଧ୍ୟରେ ନିଶ୍ଚିତରୂପେ ପ୍ରତିଶ୍ରୁତି ପୂରଣପାଇଁ ସଙ୍ଗେ ସଙ୍ଗେ ନିଦିଧ୍ୟାସନରେ ବସିପଡ଼ିଲି । ବାକ୍ୟାବଳୀକୁ ଦେଲି ନାଟକୀୟ ଛଟା, ଭାଷାଭଙ୍ଗୀରେ ଖଞ୍ଜିଲି କାବ୍ୟିକ କାକଳି । ଠିକ୍ ସପ୍ତମ ଦିନ ବହିଟି ପାଇଲା ପୂର୍ଣ୍ଣିମାର ସ୍ପର୍ଶ । ତାହାର ନାମ ରଖିଲି ‘ମରୁସମ୍ଭବା’ । ମୋର ପୂର୍ବ ଘୋଷଣାକୁ ଅକ୍ଷରେ ଅକ୍ଷରେ ସତ୍ୟାୟିତ କରି ପରଦିନ

(ରବିବାର) ସକାଳ ଆଠଟାବେଳେ 'ମରୁସମ୍ଭବା'କୁ ସମ୍ପୂର୍ଣ୍ଣରେ ନେଇ ପ୍ରତୀକ୍ଷମାଣ ଅନାଥବନ୍ଧୁଙ୍କ ହସ୍ତରେ ଅର୍ପଣ କଲି ।

ଚଠା ପାଣ୍ଡୁଲେଖଟିର ରୂପରେଖ ଦେଖି ବିସ୍ମୟରେ ନନ୍ଦବାବୁ ଚମକିପଡ଼ିଲେ । 'ମରୁସମ୍ଭବା'—କି ସୁନ୍ଦର ନାମଟିଏ କାବ୍ୟକଳ୍ପଲତା ଅନବଦ୍ୟସୁନ୍ଦରୀ ମେହେରଉନ୍ନିସାର ! ବିଷୟବସ୍ତୁର ଉପସ୍ଥାପନା ତାଙ୍କ ମନକୁ ଚୁମ୍ବିଲପରି ନାଟକୀୟ ରୂପ ପାଇଥିବାରୁ ସେ ପ୍ରଥମ ପରିଚ୍ଛେଦଟି ମଞ୍ଚାଭିନୟ ସଦୃଶ ଝରଣାସ୍ଫୁଟ କଣ୍ଠରେ ଆବୃତ୍ତି କରି ଏକନିଃଶ୍ୱାସରେ ଶେଷ କରିଦେଲେ । ଓଡ଼ିଆ ସାହିତ୍ୟ ଓ ଶବ୍ଦଭଣ୍ଡାର ସମ୍ବନ୍ଧରେ ତାଙ୍କର ଯେଉଁ ଅଜ୍ଞାନତମସାଚ୍ଛନ୍ନ ଧାରଣା ଥିଲା, 'ମରୁସମ୍ଭବା' ତାହା ଦୂର କରାଇଦେଲା । ତା'ର ଭାଷା-ସୌଷ୍ଠବରେ ସେ ଏପରି ଆତ୍ମବିସ୍ମୃତ ହୋଇଗଲେ ଯେ, ନିଦାଘକ୍ଳାନ୍ତ ଶୁଷ୍କତାକୁ ପାନ୍ଥ ଅଦୂରଦୃଷ୍ଟ ଜଳାଶୟଟାଯାକର ଜଳ ଏକାଢୋକକେ ପିଇଯିବାକୁ ଆତୁର ହୋଇଉଠିଲା-ପରି ସମଗ୍ର ବହିଟିକୁ ଆବୃତ୍ତିସ୍ୱରରେ ପାଠକରି ନିଃଶେଷ ନ କଲା ପର୍ଯ୍ୟନ୍ତ ଅସ୍ତ୍ର ଧରିପାରିଲେ ନାହିଁ । ମୁଁ ବାରଟାଯାଏ ମନ୍ତ୍ରମୁଗ୍ଧବତ୍ ସେଠାରେ ବସିରହି ତାଙ୍କ ପଠନୋନ୍ମାଦର ରସୋତ୍ତୀର୍ଣ୍ଣ ଅଭିନୟ ଉପଭୋଗକଲି ।

ଏହା ମୋର ଚାକିରିଜୀବନର ଶେଷଭାଗର କଥା । ଚାକିରିରୁ ଅବସର ନେଲାପରେ ମଧ୍ୟ 'ମରୁସମ୍ଭବା' ବହୁ ବର୍ଷ ଅଜ୍ଞାତବାସରେ ଆତ୍ମଗୋପନ କରି ରହିଯାଇଥିଲା । ସେହି ଅଜ୍ଞାତ-ବାସର ରୌପ୍ୟଜୟନ୍ତୀ ପାଳିତ ହେବାକୁ ବସିଥିଲାବେଳେ 'ମରୁସମ୍ଭବା' ରାଜଦାଣ୍ଡକୁ ପାଦ କାଢ଼ିବାର ସୁଯୋଗ ପାଇଲା । 'ରାଷ୍ଟ୍ରଭାଷା ସମବାୟ ପ୍ରକାଶନ'ର ପରିଚାଳକ ଶ୍ରୀ ଗୋପୀନାଥ ସାହୁ ଅନେକଦିନୁଁ ବହିଟିକୁ ସୁନ୍ଦର ବେଶଭୂଷାରେ ସଜାଇ ପ୍ରକାଶ କରିବାକୁ ଅଭିଳାଷ ପୋଷଣ କରି ଆସିଥିଲେ । ତାଙ୍କ ଅନୁରୋଧମତେ ମୂଳ ପାଣ୍ଡୁଲେଖଟି ଉପରେ ଆମୂଳାନ୍ତ ଆଖିପକାଇ କେତେକ ସ୍ଥଳରେ ପରିବର୍ତ୍ତନ ଓ ପରିବର୍ଦ୍ଧନ କରି ମୁଦ୍ରଣ ପାଣ୍ଡୁଲିପି ପ୍ରସ୍ତୁତ କରିଦେଇଥିଲି ୧୯୮୭ରେ । ଦୀର୍ଘକାଳ ପରେ ଶୁଣି ସୁଖୀ ହେଲି ଯେ, ଗୋପୀନାଥବାବୁଙ୍କ ଆନ୍ତରିକ ପ୍ରୟାସ ଓ ଆୟାସ ଯୋଗୁଁ 'ମରୁସମ୍ଭବା' ଝଡ଼-ଝଞ୍ଜା, ଝଡ଼-ବଢ଼ି, ମଡ଼କ-ମରୁଡ଼ିର କ୍ରମାଗତ ବିପ୍ରାତରୁ ଭାଗ୍ୟବଳେ ବର୍ତ୍ତି ବର୍ତ୍ତମାନ (୧୯୮୭ ଡିସେମ୍ବର) ଯନ୍ତ୍ରସ୍ଥ ହେବାକୁ ଯାଉଛି—ବର୍ଣ୍ଣାଢ୍ୟ ପ୍ରଚ୍ଛଦପଟ ଓ ବହୁଚିତ୍ରଶୋଭିତ ରୂପ ଘେନି ନିକଟରେ ତାହା ମୁଦ୍ରାରାକ୍ଷସ ଗର୍ଭରୁ ମୁକ୍ତିଲାଭ କରିବାର ସମ୍ଭାବନା ଉଜ୍ଜ୍ୱଳ ।

ମୋ ଅନୂଦିତ କାବ୍ୟ 'ଋତୁସଂହାର'ର ସର୍ବଭାରତୀୟ ପ୍ରଶସ୍ତିରେ ଅନୁପ୍ରାଣିତ ହୋଇ ଓଡ଼ିଶାର ଅଧିକାଂଶ ପ୍ରାନ୍ତର ଲେଖକ ଓ ପ୍ରକାଶକ ଅଭିନନ୍ଦନବାର୍ତ୍ତା ପଠାଇ ମତେ ଅନୁରୋଧ କରିଥିଲେ ପିଲାଙ୍କ ବୋଧଗମ୍ୟ ଭାଷାରେ ପିଲାଙ୍କପାଇଁ ଖଣ୍ଡିଏ ସରଳ ଋତୁସଂହାର ରଚନା କରିବାକୁ । କଟକର ଜଣେ ବିଶିଷ୍ଟ ପ୍ରକାଶକ ଶ୍ରୀ ନବକିଶୋର ମହାପାତ୍ର ଦିନେ ସଶରୀରରେ ଆବିର୍ଭୂତ ହୋଇ ଚତୁର୍ମୁଖ ବ୍ରହ୍ମାଙ୍କ ପରି ମୋ 'ଋତୁସଂହାର'ର ଗୁଣଗାନ କରିଥିଲେ ଏବଂ ତତ୍ସଙ୍ଗେ ନିବେଦନୀୟ ଭାଷାରେ କହିଥିଲେ, "ଆପଣ ଥାଉଁ ଥାଉଁ

ଓଡ଼ିଆ ପିଲାଏ କ'ଣ ମହାକବି କାଳିଦାସଙ୍କ ପରିବେଷିତ ଋତୁବିଳାସର ଅମୃତ ଚାଖିବାରୁ ବଞ୍ଚିତ ରହିଯିବେ ? ଆପଣ ଆଭିଧାନିକ, ଶିଶୁଭାଷାବିଶାରଦ, ଋତୁସଂହାରକାବ୍ୟସିନ୍ଧୁର ମନ୍ଥନକାରୀ ଅତଳ ଅବଗାହୀ । ଏଣୁ ଏକମାତ୍ର ଆପଣ ହିଁ ପିଲାଙ୍କ ଉପଭୋଗ୍ୟ ଋତୁସଂହାର ଲେଖିବାର ଯୋଗ୍ୟତମ କବି ।"

ମୁଁ ନବକିଶୋର ବାବୁଙ୍କୁ ଅସୁବିଧା ଦିଗଟା ବୁଝାଇଦେବା ସଙ୍ଗେ ଆଶାର ଆଶ୍ୱାସନା ମଧ୍ୟ ଦେଲି, "ଖାସ୍ ପିଲାଙ୍କ ଉଦ୍ଦେଶ୍ୟରେ 'ଋତୁସଂହାର'ର ଶିଶୁସଂସ୍କରଣଟିଏ ପ୍ରସ୍ତୁତ କରିବାକୁ ଗଲେ କାବ୍ୟର ବହୁ ସ୍ଥଳରେ ବିଶେଷ କରି 'ହେମନ୍ତ' ଓ 'ଶିଶିର' ବର୍ଣ୍ଣନାରେ ଥିବା ଉତ୍କଟ ଆଦିରସର ଦୁର୍ଲଂଘ୍ୟ ପ୍ରତିବନ୍ଧକମାନ ନିଷ୍ଚୟ ବାଟ ରୋକିବ । ତଥାପି ମୋର ପୂର୍ଣ୍ଣ ବିଶ୍ୱାସ, ଅଭୟବରଦା ମା ଶାରଳା ଦୟା କରିବେ, ପ୍ରତିବନ୍ଧକମାନ ଏଡ଼ିହୋଇ-ଯିବ ଏବଂ 'ପିଲାଙ୍କ ଋତୁସଂହାର' ପ୍ରଣୟନ ନିର୍ବିଘ୍ନରେ ପୂର୍ଣ୍ଣତାପ୍ରାପ୍ତ ହୋଇପାରିବ । ମୁଁ ଏଇ ରଚନା ବିଷୟରେ ଗଲା କିଛି ଦିନ ଧରି ଚିନ୍ତା କରିଆସୁଛି । ଆପଣ ଧୈର୍ଯ୍ୟର ସହିତ ଅପେକ୍ଷା କରନ୍ତୁ । ପ୍ରତିଜ୍ଞା କରୁଛି, ସରକାରର କାଳଫାଶ ବେକରୁ ଖସିଗଲାମାତ୍ରେ ଏହି ପିଲାଙ୍କ କାମଟି ହାତକୁ ନେବା ହିଁ ମୋ'ର ହେବ ପ୍ରଥମ କର୍ତ୍ତବ୍ୟ ।"

ବେଳ ଆସିଲା, ଗଳାରୁ କାଳଫାଶ ଖସିଲା । ସରକାରରୁ ଅବସର ନେଲା ପରେ ମୁକ୍ତ ଜୀବନ ହେଲା ଅବସରମୟ । ନିଶ୍ଚିନ୍ତ ଚିତ୍ତରେ 'ଋତୁସଂହାର'ର ଶିଶୁସଂସ୍କରଣ କାର୍ଯ୍ୟ ଆରମ୍ଭ କରିଦେଲି । ଅପେକ୍ଷାକୃତ ଅଧିକ ସମୟ ଓ ଅଧିକ ଅଭିନିବେଶ ଖଟାଇବାକୁ ପଡ଼ିଲେହେଁ ଅନୁବାଦଟି ହେଲା ଅନବଦ୍ୟ—ପିଲାଙ୍କପାଇଁ ଏକ ରସାବଳି ଖଣ୍ଡ । ଏହି **ପିଲାଙ୍କ ଋତୁସଂହାର** ହେଉଛି ମୋ 'ସାହିତ୍ୟସେବା ଝୁଙ୍ଗୀ'ର ପ୍ରଥମ ଅବଦାନ ଓ ଶ୍ରେଷ୍ଠ ଉତ୍ପାଦନ । ଏଡ଼େ ସେଚନ୍ତା ହୋଇ ପୁଞ୍ଜା ଏପର୍ଯ୍ୟନ୍ତ ସ୍ବା' ନସିବର ଲାଗି ଫିଟିଲା ନାହିଁ । ଏପର୍ଯ୍ୟନ୍ତ (୧୯୮୮) ଏହା ପ୍ରକାଶ ଲାଭ କରିପାରି ନାହିଁ କି ସୁକୁମାର ଶିଶୁ ଓ କିଶୋରକିଶୋରୀଙ୍କ ସୁକୋମଳ ହସ୍ତରେ ଲୀଳାକନ୍ଦୁକରୂପେ ନାଚ-କୁଦ ଖେଳ-ଦୋଳ ପାରିନାହିଁ । ତେବେ, ଯେଉଁ ହୃଦୟବାନ୍ ଶ୍ରୀକୃଷ୍ଣପ୍ରେମୀ ବନ୍ଧୁ ସ୍ୱତଃପ୍ରବୃତ୍ତ ହୋଇ 'ପିଲାଙ୍କ ଋତୁସଂହାର'ର ହେପାଜତ ଭାର ନେଇଛନ୍ତି, ତାଙ୍କଠାରେ ମୋର ଅଗାଧ ଆସ୍ଥା ବିଦ୍ୟମାନ ।

ମୋ 'ଝୁଙ୍ଗୀ'ର ଦ୍ୱିତୀୟ ଅବଦାନ ହେଉଛି ଦେଶୀ ପଦ୍ଧତିରେ ପ୍ରସ୍ତୁତ ମୌଳିକ ତ୍ରିରଙ୍ଗ (ରକ୍ତ, ପୀତ, ନୀଳ) ଓ ଦେଶୀ ତୂଳୀ ସାହାଯ୍ୟରେ ଅଙ୍କିତ ଓଡ଼ିଶୀ ପଟଚିତ୍ରମାଳା ଉପରେ ଆଧାରିତ ସଚିତ୍ର 'ରାମାୟଣ' । ଏ ପରିକଳ୍ପନାଟି ଆଦୌ ମୋର ନିଜସ୍ୱ ନୁହେଁ । ଏହା ରଚନା କରିବାର ମୂଳରେ ମଧ୍ୟ ଏକ ଉଲ୍ଲେଖଯୋଗ୍ୟ ପୃଷ୍ଠପୀଠିକା ଅଛି । ସ୍ୱନାମଧନ୍ୟ ଚିତ୍ରକଳାପ୍ରାଣ ବିଭୂତିଭୂଷଣ କାନୁନଗୋ ପ୍ରାଚୀନ କଳାକୃତିନୈପୁଣ୍ୟର ବ୍ୟାପକ ବିସ୍ତାର ଉଦ୍ଦେଶ୍ୟରେ ଓଡ଼ିଶାର ପ୍ରଧାନ ପ୍ରଧାନ ପୀଠ ଓ ତୀର୍ଥକ୍ଷେତ୍ରର ଦେବ-ଦେବୀମାନଙ୍କ ପାଷାଣମୂର୍ତ୍ତିର ଫଟୋ ଉତ୍ତୋଳନ କରି ଅବିକଳ ସେଗୁଡ଼ିକର ରଙ୍ଗିନ୍ ଚିତ୍ର

ପ୍ରସ୍ତୁତ କରିଥିଲେ । ସାରା ଉତ୍କଳଖଣ୍ଡ ବୁଲି ସେ 'ଦଶ ମହାବିଦ୍ୟା' (ତାନ୍ତ୍ରିକ ଦେବୀ) ଓ 'ଦଶ ଅବତାର'ଙ୍କ ପ୍ରାମାଣିକ ରୂପର ବର୍ଣ୍ଣିଳ ଚିତ୍ର ମନ୍ଦିରଗାତ୍ର ଓ ପୋଥି ପ୍ରଭୃତିରୁ ସଂଗ୍ରହ ପୂର୍ବକ ସେଗୁଡ଼ିକୁ ବର୍ଣ୍ଣାଢ୍ୟ ମୁଦ୍ରିକାକାରରେ ମଧ୍ୟ ପ୍ରକାଶ କରିଥିଲେ । ଏହା ବ୍ୟତୀତ ଶିଳ୍ପିଗଣାଗ୍ରଗଣ୍ୟ ବିଭୂତି କାନୁନଗୋ ଥିଲେ ଓଡ଼ିଶୀ ଛନ୍ଦ ରାମାୟଣର, ବିଶେଷ-କରି 'ବିଶି ରାମାୟଣ' ଓ 'କେଶବ ରାମାୟଣ'ର ପରମପ୍ରେମୀ । ଠିକ୍ ସେହିପରି କିମ୍ବା ତତୋଽଧିକ ପରମପ୍ରେମୀ ମଧ୍ୟ ଥିଲେ ସେ ଓଡ଼ିଶୀ ରାମାୟଣ-ଆଖ୍ୟାନକୁ ଅକ୍ଷରେ ଅକ୍ଷରେ ଆଦ୍ୟନ୍ତ କରି ଅଙ୍କିତ ହୋଇଥିବା ପ୍ରାଚୀନ ପଟ୍ଟଚିତ୍ରାବଳୀର । ଏଣୁ ତାଙ୍କର ସବୁଠୁଁ ବଡ଼ ନିଶା ହୋଇଉଠିଲା ରାମାୟଣୀୟ ପଟ୍ଟଚିତ୍ରସଂଗ୍ରହ । ଏଥିପାଇଁ ସେ ବହୁ ଶ୍ରମ ସ୍ୱୀକାର କରିଛନ୍ତି, ବହୁ ସମୟ ବ୍ୟୟ କରିଛନ୍ତି । ପ୍ରାକୃତିକ ଉତ୍କଳର ପ୍ରତି ପ୍ରାନ୍ତ ପର୍ଯ୍ୟଟନ କରିବା ଫଳରେ ଶତାଧିକ ମନ୍ଦିର, ମଠ, ରାଜଉଆସ ଓ ପଟ୍ଟଚିତ୍ରକାର ବସ୍ତିରୁ ଆକାଂକ୍ଷିତ ଅନେକଗୁଡ଼ିଏ ଚିତ୍ର ତାଙ୍କର ହସ୍ତଗତ ହେଲା । ପଟ୍ଟଚିତ୍ରଶିଳ୍ପୀଙ୍କ ଘରୁ ଯେଉଁସବୁ ଚିତ୍ର ମିଳିଲା, ସେଥିପାଇଁ ବିସ୍ତର ଅର୍ଥ ଦେବାକୁ ପଡ଼ିଲା । ସଂଗୃହୀତ ହୋଇଥିବା ତ୍ରିରଙ୍ଗରଞ୍ଜିତ ରାମାୟଣୀୟ ପଟ୍ଟଚିତ୍ରସମୂହ ସଂଖ୍ୟାରେ ବହୁତ ଥିଲେହେଁ ତାହା ପଞ୍ଚସ୍ତରିଟି ମାତ୍ର ବୃତ୍ତାନ୍ତ ମଧ୍ୟରେ ଆବଦ୍ଧ ଥିଲା । ତେଣୁ ବିଭୂତିବାବୁ ତନ୍ମଧ୍ୟରୁ ସର୍ବୋତ୍ତମ-ପରିସ୍ଫୁଟ ପଞ୍ଚସ୍ତରିଟି ପଟ୍ଟଚିତ୍ର ବାଛି ତହିଁରୁ ତ୍ରିବର୍ଣ୍ଣୀ ହାଫ୍‌ଟୋନ୍ ବ୍ଲକ୍ ପ୍ରସ୍ତୁତ କରିନେଲେ । ପୁଣି, ସେହିସବୁ ବ୍ଲକ୍‌କୁ କ୍ରମାନୁଯାୟୀ ବଗପଖିଆ ଅତି ପାଲିସିଆ ଆର୍ଟ ପେପର୍‌ରେ ଆବଶ୍ୟକ ସଂଖ୍ୟା ମୁତାବକ ଛାପି ତହିଁରୁ ହାତବ୍ୟବହାରପାଇଁ ଅଳ୍ପ କେତୋଟି ସେଟ୍ ବହି ଆକାରରେ ବନ୍ଧାଇକରି ରଖିଲେ ।

ସାମ୍ୟବାଦୀ କବି ଅନନ୍ତ ପଟ୍ଟନାୟକ ସବୁଠାରୁ ବେଶି ହାତପାଆନ୍ତିଆ ହିତୈଷୀ ଆତ୍ମୀୟ ଥିଲେ ବିଭୂତି କାନୁନଗୋଙ୍କର । ଲେଖାରେ ଅନନ୍ତ ହେବେ ବିଭୂତିଙ୍କର ମାଉଳ । ତେଣୁ ଚିତ୍ରପେଟ୍ଟୁ ଭଣଜା ସେହି ବନ୍ଧା ଚିତ୍ରବହିରୁ ଖଣ୍ଡିଏ କବିତାରଚନାପଟୁ ମାମୁଙ୍କୁ ଦେଇ ଅନୁନୟ କଲେ କ୍ରମିକସଜ୍ଜିତ ପ୍ରତି ପଟ୍ଟଚିତ୍ରର ବିଷୟବସ୍ତୁକୁ ଅନଧିକ ଦିଓଟି ପଦରେ ଅର୍ଥାତ୍ ଆଠ ଧାଡ଼ିରେ ଛନ୍ଦ ବୃତ୍ତରେ ଲେଖି ପଞ୍ଚସ୍ତରିଟିଯାକର ବିଷୟବର୍ଣ୍ଣନ ମାସେ ଦେଢ଼ମାସ ମଧ୍ୟରେ ସାରିଦେବାକୁ । ତାଙ୍କର ପୂର୍ଣ୍ଣ ବିଶ୍ୱାସ ଥିଲା, ଭଣଜାର କାମ ବୋଲି ଏହାକୁ ଅଗ୍ରାଧିକାର ଦେଇ ମନୁଆ ମାତୁଳକବି ମନମାଡ଼ି ନିଶ୍ଚୟ ଏକାଗ୍ରଧ୍ୟାନରେ ବସିଯିବେ ଏବଂ ଦିନ କେଇଟା ଭିତରେ ସବୁତକ ଲେଖା ଶେଷ କରିଦେବେ—ଅନ୍ୟଙ୍କୁ ଯାହା ପଥରବୋଝ, ମାମୁଙ୍କୁ ତାହା କୁଟାଖଣ୍ଡ ।

ଚଷା କି ଜାଣେ ପଶାର କଥା ? ବିଭୂତିଭୂଷଣଙ୍କ ସେହିପରି ଅବାସ୍ତବ ଓ ଅଜ୍ଞସୁଲଭ ସ୍ୱତଃସ୍ଫୂର୍ତ୍ତ କବିତା ଖୁବ୍ ଅଳ୍ପସମୟ ଆବଶ୍ୟକ କରେ; କିନ୍ତୁ ସମଗ୍ର ରାମାୟଣର ଅପରିହାର୍ଯ୍ୟ ମୁଖ୍ୟ କଥାବସ୍ତୁସକଳକୁ ମୋଟେ ପଞ୍ଚସ୍ତରିଟି ଚିତ୍ର ମାଧ୍ୟମରେ ଚୁମ୍ବକରେ ଫୁଟାଇବା ସହଜ ବ୍ୟାପାର ନୁହେଁ । ପୁଣି, ସ୍ଥାନାଳ୍ପତା କାରଣରୁ କୌଣସି ଚିତ୍ରତଳେ ଦୁଇ ପଦରୁ ଅଧିକ

ରଖିବାର  କୁ ନାହିଁ । ଏଣୁ ନିଃସଂଶୟରେ ଏହା କଠୋର ଅଧ୍ୟବସାୟ ତଥା ଦୀର୍ଘ ସମୟ-ସାପେକ୍ଷ । ଏସବୁ ଗହନ ସମସ୍ୟା ଭିତରକୁ ବିଭୂତିଙ୍କ ମୁଣ୍ଡ ଭେଦନ୍ତା କେମିତ ? ସେ ପ୍ରତ ସପ୍ତାହରେ ମାମୁଙ୍କ ବସାକୁ ଧାଆନ୍ତ, ଲେଖାର ଅଗ୍ରଗତ ଜାଣିବାକୁ ଟେବୁଲ ପାଖେନ୍ତ । ଦେଖନ୍ତ, ଫାଳେ ଦେଢ଼ଫାଳ ବହେ ଗାଗଗାରି ହୋଇଛ—ଏକା ବିଷୟ ଭିନେ ଭିନେ ପ୍ରକାରେ ଲେଖା ହୋଇ ତା' ଉପରେ ବର୍ଜନସୂଚକ ବଡ଼ ବଡ଼ ଛକରେଖା ଅଙ୍କାଯାଇଛି, ତାହା ପୁଣି ନୂଆ ଢଙ୍ଗରେ ଲିଖିତ ହୋଇ ବି ଶେଷରେ କାଟଖାଇଯାଇଛି । କୌଣସିଟା ଗୃହଦାକୁ ପୂର୍ଣ୍ଣଭାବରେ ପୂରଣ କରିପାରି ନଥିବାରୁ କବଙ୍କ ମନକୁ ପାଉନାହିଁ—ମନକୁ ପାଇଲାଭଳି ଲେଖିଲେ ଦୁଇ ପଦରୁ ବେଶି ହୋଇଯାଉଛି, ଯାହା ନିର୍ଦ୍ଦିଷ୍ଟ ମାପର ସ୍ଥାନ ମଧ୍ୟରେ ସମ୍ଭାଇବ ନାହିଁ । ଏଣୁ ତାକୁ ମଧ୍ୟ କାଟି ବଳାପଦକାଯାଇଛି । ମୋଟ ଉପରେ ଦେଖିବାକୁ ଗଲେ କବି ଅନନ୍ତଙ୍କର କସରତ୍ତର ଅନ୍ତ ନାହିଁ; କିନ୍ତୁ ଫଳ୍ ଫଳ ହୋଇଛି ଅଣାକାର ଶୂନ୍ୟବ୍ରହ୍ମ । ଏହିରୂପେ ମାସ ପରେ ମାସ ଗଡ଼ିଗଲା, ଅଥଚ ଗୋଟିଏ ହେଲେ ପଟଚିତ୍ରର କଥାବସ୍ତୁ ମୁଦ୍ରଣୀୟ ରୂପ ପାଇପାରିଲା ନାହିଁ । ଦେଖୁ ଦେଖୁ ପ୍ରାୟ ବର୍ଷେ ଅତୀତ ହୋଇଗଲା । ବିଭୂତିଙ୍କ ଧୈର୍ଯ୍ୟ ଆତ୍ମାହୁତ ଦେବାକୁ ବାଧ୍ୟ ହେଲା । ଏହା ଉପଲବ୍ଧି କରି ଦିନେ ମାମୁ ଅନନ୍ତ ଆଶାହତ ଭଣଜାଙ୍କୁ ସାନ୍ତ୍ୱନା ଦେଇ କହିଲେ, "ବାବୁ ! କଟକଣାର ଛନ୍ଦଣିମନ୍ଦଣିରେ ଅଣାୟତ୍ତ ହୋଇ ମୋ ମନଲାଖି ଲେଖା ମୁଁ ଲେଖିପାରିଲି ନାହିଁ । ମନଦୁଃଖ ନ କରି ତୁ ଏବେ କୃଷ୍ଣଭଉନାଙ୍କ ପାଖକୁ ଯା', ମୁଁ ପଠାଇଛି ବୋଲି ତାଙ୍କୁ କହିବୁ । ସେ ନିଶ୍ଚୟ ମୋ ପାଇଁ ଏତକ ଲେଖିଦେଇ ଠିକ୍ ସମୟରେ ତୋର ଆଶା ପୂରଣ କରିପାରିବେ ।"

କମୈଶ୍ରାଣ୍ଡ ବିଭୂତିବାବୁ ମନ-ମନ୍ଦିରରେ ଆଶାର ପ୍ରଦୀପ ଜାଳି ଦିନେ ଅତି ଅନ୍ଦମୟରେ ମତେ ମୋ 'ଝୁଙ୍ଗା'ରେ ସାକ୍ଷାତ୍ କରି ମାମୁଙ୍କ ବାର୍ତ୍ତେନ ଜଣାଇଲେ । ଏହା ନିଶ୍ଚୟ କୃପାମୟ ଭଗବାନ୍ ଶ୍ରୀରାମଚନ୍ଦ୍ରଙ୍କ ପ୍ରେରିତ ବୋଲି ନିର୍ଧାର୍ଯ୍ୟ ଭାବ ଶିର ପାତି ସ୍ୱାଗତ କରିନେଲି ଏବଂ ରାମକାର୍ଯ୍ୟୀ ଭକ୍ତବର ବୀର ହନୁମାନଙ୍କୁ ଏ ରାମକାର୍ଯ୍ୟ-ସାଧନରେ ସହାୟ ହୋଇ ପ୍ରେରଣା ଦେବାପାଇଁ ମନେ ମନେ ଆରାଧନା କଲି ।

ବିଭୂତିବାବୁ ଅବିଳମ୍ବେ ତାଙ୍କ ପ୍ରସ୍ତୁତ ପଞ୍ଚପ୍ରଶସ୍ତଖ୍ୟକ ପଟଚିତ୍ର ସମ୍ବଳିତ ବନ୍ଧାବହି ଖଣ୍ଡିଏ ସହିତ ମୋ ବଡ଼ଦଆ ଗୋପୀନାଥ କରଙ୍କ ରଚିତ ଚତୁର୍ଦ୍ଦଶାକ୍ଷରୀ ଓଡ଼ିଆ ସପ୍ତକାଣ୍ଡ ରାମାୟଣ ଏବଂ ଛାନ୍ଦ ସ୍ୱରରେ ରଚିତ ବିଶ୍ୱନାଥ ଖୁଣ୍ଟିଆଙ୍କ ନାଟ୍ୟ ରାମାୟଣ ଓ କେଶବ ପଟ୍ଟନାୟକଙ୍କ ନୃତ୍ୟ ରାମାୟଣ ବହିଗୁଡ଼ିକ ଯୋଗାଇଦେଲେ । ପବିତ୍ର ରାମାୟଣ ଗ୍ରନ୍ଥାନୁସାରି ପଟଚିତ୍ରଗୁଡ଼ିକ ଅଙ୍କନ କରୁଥିବା ପର୍ଯ୍ୟନ୍ତ ତା'ର କାରିଗର ଦଳ ଯେପରି କାୟାଶୁଦ୍ଧି ଓ ଚିତ୍ତଶୁଦ୍ଧି ରକ୍ଷା କରିଥାନ୍ତି ମୁଁ ମଧ୍ୟ ଲେଖାରମ୍ଭ ଦିନଠାରୁ ସମାପ୍ତି ଦିନପର୍ଯ୍ୟନ୍ତ ଯଥାସମ୍ଭବ ସେହିପରି ପବିତ୍ରତା, ଶୁଦ୍ଧାଚାର ଓ ନିଷ୍ଠାରେ ରହିବି ବୋଲି ସଙ୍କଳ୍ପବଦ୍ଧ ହେଲି । ରାମଚରିତରଚନ ଅନୁକୂଳକରଣୋପଯୋଗୀ ଗୋଟିଏ ପୂତ୍ୟ ତଥ୍ୟ-ଅନ୍ତର୍ଗତ

ପ୍ରଶସ୍ତତର ଶୁଭ ସମୟ ନିର୍ଣ୍ଣୟ କରି ଠିକ୍ ସେହି ମାହେନ୍ଦ୍ର ମୁହୂର୍ତ୍ତରେ ଭକ୍ତବତ୍ସଳ ଶ୍ରୀରାମ ଓ ଭକ୍ତପ୍ରବର ହନୁମାନ୍‌ଙ୍କୁ ସ୍ମରଣ କରି ଅନନ୍ୟମାନସରେ ଲେଖା ଆରମ୍ଭ କଲି । ବିଭିନ୍ନ ପରିଚ୍ଛେଦର କଥାବସ୍ତୁପାଇଁ ବାଲ୍ମୀକି ରାମାୟଣ ଓ କେଶବ ରାମାୟଣ ପରି ଗ୍ରନ୍ଥରାଜିର ଭିନ୍ନ ଭିନ୍ନ ବୃତ୍ତ ବ୍ୟବହାର କରିବାକୁ ଶ୍ରେୟସ୍କର ମଣିଲି । ଲେଖାର ଗତି କିନ୍ତୁ ହେଲା ଅତିଶୟ ମନ୍ଥର । ରାମାୟଣବର୍ଣ୍ଣିତ କେତେକ କାହାଣୀର ପରିଚିତି ଦୃଷ୍ଟାପ୍ୟତା-ନିବନ୍ଧନ ସଙ୍ଗୃହୀତ ହୋଇପାରି ନଥିବାରୁ ସେସବୁ କାହାଣୀର ବିଷୟବସ୍ତୁକୁ ମଧ୍ୟ ଯଥା ଯଥା ସ୍ଥାନାବସ୍ଥିତ ଦୁଇ ଚିତ୍ରର ବିଷୟବର୍ଣ୍ଣନ ମଧ୍ୟରେ କୌଣସିମତେ ସୂଚନାରେ ଛନ୍ଦିବାକୁ ପଡ଼ିଲା । ଏହି ଉପାୟରେ ଖାପଛଡ଼ା ଦୋଷ ନିବାରଣ କରିବାରେ ବିସ୍ତର ସମୟ ଭାବିଚିନ୍ତି ଝିଙ୍କିଦେଇ ହେବାକୁ ପଡ଼ିବାଯୋଗୁଁ ଗୋଟିଏ ଦିନରେ ଗୋଟିଏ ପରିଚ୍ଛେଦର ପ୍ରୟୋଜନୀୟ ବିବରଣ ପୂର୍ଣ୍ଣାଙ୍ଗ କରି ଲେଖିବା ସମ୍ଭବପର ହୋଇପାରିଲା ନାହିଁ । ଯାହାହେଉ, ଧୈର୍ଯ୍ୟଚ୍ୟୁତ ନହୋଇ ମୁଁ ମନଦୃଢ଼ରେ ଆଗେଇଚାଲିବା ଫଳରେ ଏହି ଗଳଦ୍‌ଘର୍ମକାରକ ଦୁରୂହ କାର୍ଯ୍ୟଟି ବାଟରେ କେଉଁଠି ନ ଅଟକି ଛଅମାସ ମଧ୍ୟରେ ପରିସମାପ୍ତ ହୋଇପାରିଥିଲା ।

ଉତ୍କଳର ଶୈଳ୍ପିକ ଐତିହ୍ୟବାହକ ପଟ୍ଟଚିତ୍ରକଳାକୁ ପୃଥିବୀବିପଣୀରେ ଆଦୃତ କରାଇବା ଉଦ୍ଦେଶ୍ୟରେ ତଥା ବିଶ୍ୱବନ୍ଦିତ ରାମାୟଣର ରାମସୀତାଚରିତକୁ ଭାରତବାହାର ଦେଶ-ମାନଙ୍କରେ, ବିଶେଷ କରି ବିଜ୍ଞାନସଚେତନ ଆମେରିକୀୟ ନରନାରୀ ସମାଜରେ ସମଧିକ ପ୍ରଚାର ଓ ପ୍ରସାର କରାଇବା ଲକ୍ଷ୍ୟରେ ଜନ୍ମମାଟିର ଟେକବର୍ଦ୍ଧକ ଜାତୀୟ ଗୌରବଗର୍ବିତ ବିଭୂତିବାବୁ ଏହି ଓଡ଼ିଶୀ ପଟ୍ଟଚିତ୍ର ସମ୍ବଳିତ ବିରାଟ ରାମଚରିତ ଗ୍ରନ୍ଥକୁ ‘ରାମାୟଣ’ ନାମରେ ପ୍ରକାଶ କରିବାକୁ ସାର୍ଥକ ଉଦ୍ୟମ କରିଥିଲେ । କେତେକ (ବୋଧହୁଏ ବ୍ୟରଜଣ) ଲବ୍‌ଧପ୍ରତିଷ୍ଠ ଚିତ୍ରଶିଳ୍ପୀ ତାଙ୍କୁ ଏ ମହତ୍ତ୍ୱ କାର୍ଯ୍ୟରେ ବନ୍ଧୁସୁଲଭ ପରାମର୍ଶ, ପ୍ରେରଣା ଓ ପ୍ରୋତ୍ସାହନାର ସହଯୋଗ ଯୋଗାଇବାପାଇଁ ସର୍ବଦା ପାଖେ ପାଖେ ରହିଥିଲେ । ଏହି ବ୍ୟୟବହୁଳ ବହୁଆୟାସ-ସାଧ୍ୟ ଭବ୍ୟ ସଂସ୍କରଣଟି ମୁଖ୍ୟତଃ ବିଜ୍ଞାନୋନ୍ନତ ତଥା ପ୍ରାଚ୍ୟକଳାପ୍ରିୟ ସୁସଭ୍ୟ ପାଶ୍ଚାତ୍ୟ ଅଧିବାସୀମାନଙ୍କପାଇଁ ଉଦ୍ଦିଷ୍ଟ ଥିବାରୁ ପ୍ରତି ଚିତ୍ରତଳେ ମୋ ମୂଳ ରଚନା ସହିତ ତା’ର ଇଂରାଜୀ ଓ ହିନ୍ଦୀ ଭାଷାନ୍ତର ମଧ୍ୟ ସଂଯୋଜିତ କରାଯାଇଥିଲା । ମୋ ପଦ୍ୟରଚନାକୁ ଇଂରାଜୀ ପଦ୍ୟରୂପ ଦେଇଥିଲେ ପରିଚିତ ଲେଖକ ଶ୍ରୀ ସୁରେନ୍ଦ୍ରକୁମାର ଦାସ ଓ ହିନ୍ଦୀ ଗଦ୍ୟରୂପ ଦେଇଥିଲେ ଶ୍ରୀମତୀ ଶାନ୍ତିଲତା ସାହୁ । ‘ପାଞ୍ଚାଲୀ ପବ୍ଲିକେସନ୍‌ସ୍’ ଏହି ବିପୁଳ-ବପୁଷ୍କ ‘ରାମାୟଣ’ ଗ୍ରନ୍ଥର ପ୍ରକାଶକ ବୋଲି ତହିଁର ଆଦ୍ୟରେ ଉଲ୍ଲେଖ ଥିଲା । ଭାରତ-ବାହାର ଓ ବିଦେଶମାନଙ୍କ ଅଧିବାସୀଙ୍କପାଇଁ ଏହାର ନିର୍ଦ୍ଧାରିତ ମୂଲ୍ୟ ଥିଲା ଭାରତୀୟ ମୁଦ୍ରାରେ ସାଢ଼େ ତିନି ଶହ ଟଙ୍କା ଓ ଭାରତବାସୀଙ୍କ ପାଇଁ ଦେଢ଼ଶହ ଟଙ୍କା । ଏଭଳି ଶୋଭନ ବୈଦେଶିକ ବୈଶିଷ୍ଟ୍ୟ ନୟନଲୋଭନ ପଟ୍ଟଚିତ୍ରଚର୍ଚ୍ଚିତ ଉନ୍ନତରୁଚିସମୃଦ୍ଧ କାବ୍ୟ-ଗ୍ରନ୍ଥର ପ୍ରକାଶ ଭାରତ ଉପମହାଦେଶରେ ବୋଧହୁଏ ସମକକ୍ଷବିହୀନ । ଯେଉଁ ଦରିଆପାରି

ପାଶ୍ଚାତ୍ୟ ଭୂଖଣ୍ଡର ଏଜେଣ୍ଟମାନେ ଏହାର ପ୍ରଚ୍ଛଦ ଓ ବିଷୟ ଏଜେନ୍ସି ନେଇଥିଲେ, ସେମାନେ ମତ ପ୍ରକାଶ କରିଥିଲେ ଯେ, ଏହି ମୂଲ୍ୟ ପରିମାଣ ଆହୁରି ଉଚ୍ଚ କରାଯାଇଥିଲେ ପରିପାଟୀପୂର୍ଣ୍ଣ ପ୍ରାଚୀନ କଳାପାଟବଦ୍ୟୋତକ ଆକର୍ଷଣୀୟ ଗ୍ରନ୍ଥଟିର ଗୁଣାତ୍ମକ ମର୍ଯ୍ୟାଦା ଲୋକବିଚାରରେ ଯଥେଷ୍ଟ ଅଧିକ ବୃଦ୍ଧି ପାଇଥା'ନ୍ତା ଏବଂ ତାହି ସଙ୍ଗେ ସଙ୍ଗେ ବିକ୍ରି ପରିମାଣ ମଧ୍ୟ ବହୁତ ବେଶି ବଢ଼ିଯାଇଥାନ୍ତା ।

୧୯୮୦ ମସିହାରେ ମୋ 'ହୃର୍ଗା'ର ତୃତୀୟ ଅବଦାନ ହେଲା **ବାଗ୍ମୀ ବିଶ୍ୱନାଥ** । ଜାନୁଆରି ପ୍ରଥମ ସପ୍ତାହ ୧୯୭୮ରେ 'ଉତ୍କଳସାହିତ୍ୟ' (ନବପ୍ରସ୍ଥ) ପତ୍ରିକାର ସମ୍ପାଦକ ଶ୍ରୀ ଜ୍ଞାନୀନ୍ଦ୍ର ବର୍ମାଙ୍କଠାରୁ ମୁଁ ଖଣ୍ଡିଏ ଡାକପ୍ରେରିତ ବ୍ୟକ୍ତିଗତ ପତ୍ର ପାଇଥିଲି । ତାଙ୍କ ସମ୍ପାଦିତ 'ଉତ୍କଳସାହିତ୍ୟ'ର ସଂଖ୍ୟାମାନ ପ୍ରକାଶିତ ହେବାପାଇଁ ଧରାବନ୍ଧା କୌଣସି ମାସ ଓ ତାରିଖ/ବାର ନିର୍ଦ୍ଦିଷ୍ଟ ନ ଥିଲା । ଯେତେବେଳ ପର୍ଯ୍ୟନ୍ତ ଦୃଷ୍ଟିତୋଷକ ଆକାରର ପରିପୁଷ୍ଟ ସଂଖ୍ୟାଟିଏ ହେଲାଭଳି ଉଚ୍ଚମାନବିଶିଷ୍ଟ ବିଭିନ୍ନ ସ୍ୱାଦ ଓ ବିଭିନ୍ନ ରୁଚିର ଲେଖାବଳି ହସ୍ତଗତ ନ ହୋଇଥିବ, ସେପର୍ଯ୍ୟନ୍ତ କୌଣସି ସଂଖ୍ୟା ପ୍ରକାଶ ପାଇପାରୁ ନଥିଲା । ଏଣୁ ଗୋଟିଏ ସଂଖ୍ୟାଠାରୁ ଅପର ସଂଖ୍ୟାର ବ୍ୟବଧାନକାଳ ଥାଏ ସମ୍ପୂର୍ଣ୍ଣ ଅଜ୍ଞେୟ ଓ ଅନବଧାରଣୀୟ । ବର୍ଷମଧ୍ୟରେ କେତୋଟି ସଂଖ୍ୟା ବାହାରିପାରିବ ତା'ର କୌଣସି ସ୍ଥିରତା ନଥିବାରୁ ଏହି ସାହିତ୍ୟପତ୍ରଟିର ବାର୍ଷିକ ନିର୍ଦ୍ଦିଷ୍ଟ ଦେୟ କିଛି ନଥାଏ—ଯେଉଁ ସଂଖ୍ୟାର କଳେବର ଯେପରି ହୁଏ, ତା'ର ମୂଲ୍ୟ ତଦନୁରୂପେ ଧାର୍ଯ୍ୟ ହେଉଥାଏ । ଗ୍ରାହକେ/ପାଠକେ ସେହି ମୂଲ୍ୟରେ ଅଭିପ୍ରେତ ସଂଖ୍ୟା ପାଇପାରୁଥିଲେ । ବିଚିତ୍ର ଏ ନବ୍ୟ ବାମାଚ୍ଛିଷ୍ଟ ବ୍ୟବସ୍ଥା !

ସେହି ନବବର୍ଷ (୧୯୭୮)ର ପ୍ରଥମ ଅର୍ଘ୍ୟରୂପେ 'ବିଶ୍ୱନାଥ ସ୍ମୃତି ସଂଖ୍ୟା' ପ୍ରକାଶ ପାଇବ ବୋଲି କଥା ରହିଥାଏ । ସେଇଥିପାଇଁ ହିଁ ସମ୍ପାଦକ ଜ୍ଞାନୀନ୍ଦ୍ର (ମୋ ସାନଭାଇ ସୂର୍ଯ୍ୟମଣିର ପଢ଼ାସାଥୀ) ମୋ ପାଖକୁ ଉକ୍ତ ବ୍ୟକ୍ତିଗତ ପତ୍ରଖଣ୍ଡି ଲେଖିଥାନ୍ତି ଏବଂ ସାହିତ୍ୟ-ଗୁରୁ ସାହିତ୍ୟକସ୍ରଷ୍ଟା ସର୍ବମାନ୍ୟ ଆଦର୍ଶ ସମ୍ପାଦକ ବାଗ୍ମୀବର ବିଶ୍ୱନାଥ କରଙ୍କ ଘଟନା-ବହୁଳ ସଂଗ୍ରାମୀ ଜୀବନର ଇତିହାସ ସମ୍ବନ୍ଧରେ ତଥ୍ୟମୂଳକ ଏକ ଦୀର୍ଘ ପୁଷ୍କଳ ସନ୍ଦର୍ଭ ଜାନୁଆରି ତିରିଶ ତାରିଖ ସୁଦ୍ଧା ମୋ ପାଖରୁ ପାଇବାକୁ ଦାବି କରିଥାନ୍ତି । ମୁଁ ସେତେ-ବେଳେ କନ୍ୟାବିବାହର ପୂର୍ବାୟୋଜନରେ ଅତିମାତ୍ରାରେ ବ୍ୟସ୍ତ ରହିଥାଏଁ, ତେଣୁ ତାଙ୍କ ଦାବି ପ୍ରତି ଦୃଷ୍ଟିଦେବାକୁ ମୋର ଆଦୌ ବେଳ ନଥାଏ । ଦୈବକ୍ରମେ ଫେବୃଆରି ଦୁଇ କି ତିନି ତାରିଖ ଦିନ ଗ୍ରେ ଧ୍ରୁବ ବଜାର ଛକଠେଇଁ ମୋ ସହିତ ଜ୍ଞାନୀନ୍ଦ୍ରଙ୍କର ଭେଟ ହୋଇଗଲା । ସ୍ମୃତିସଂଖ୍ୟାକୁ ମୁଁ ଲେଖା ପଠାଇବାରେ ହେଳା କରିଥିବାରୁ ବଡ଼ ଅଭିମାନୀ ସ୍ୱରରେ ଅଭିଯୋଗ କଲେ ସେ । ହିଁଅବିଭିଁ କାମ ନବଢ଼ିଲା ପର୍ଯ୍ୟନ୍ତ ମୁଁ ତାଙ୍କ ବିରାଟ ଲେଖା କଥା କଦାପି ମୁଣ୍ଡରେ ପୁରାଇପାରିବି ନାହିଁ ବୋଲି ଖୋଲାଖୋଲି ଜଣାଇଦେଲି । ମୋ ସନ୍ଦର୍ଭଟି ତାଙ୍କର ହସ୍ତଗତ ନ ହେବାଯାଏ ବିଶ୍ୱନାଥ ସ୍ମୃତିସଂଖ୍ୟାର କପି ପ୍ରେସ୍‌କୁ

ସେ ଦେଇହେବ ନାହିଁ, ଏହା ସୁନିଶ୍ଚିତ ଏବଂ ଯେତେ ଡେରି ହେଉ ପଛେ ତାହାପାଇଁ ସେ ନିଶ୍ଚୟ ଅପେକ୍ଷା କରିବେ ବୋଲି ସ୍ପଷ୍ଟ ବାକ୍ୟରେ କହିଲେ । ମୁଁ ତାଙ୍କର ଆନ୍ତରିକ ନିଷ୍ଠାକୁ ମର୍ଯ୍ୟାଦିତ କରି ବଚନ ଦେଲି, "ହିଅବିବାହ ଝିଞ୍ଜଟରୁ ମୁକ୍ତ ହୋଇବା ପରେ ପରେ ହିଁ ମୁଁ ଯୋଗଜନ୍ମା ବିଶ୍ୱନାଥଙ୍କ ସମ୍ପର୍କୀୟ ତଥ୍ୟ ସଂଗ୍ରହ କାର୍ଯ୍ୟ ଆରମ୍ଭ କରିଦେବି । ସେଇ ଅସଲ ମସଲାତକ ହାସଲ ହୋଇଗଲେ ତେଣିକି ସନ୍ଦର୍ଭ ଲେଖାପାଇଁ ସପ୍ତାହରୁ ଅଧିକ ଲୋଡ଼ା ହେବ ନାହିଁ ।"

ମାର୍ଚ୍ଚ ଏଗାର ତାରିଖରେ ବିବାହୋତ୍ସବ ସମାପିତ ହେଲା ଏବଂ ତତ୍ପରବର୍ତ୍ତୀ ପର୍ଯ୍ୟାୟର ଯେତେ ଲେଣ୍ଡବା ବିଧିବିଧାନ କାମ, ସେସବୁ ସାରିବାକୁ ସାରା ମାସଟା ଲାଗିଗଲା । ନିଃଶ୍ୱାସମାରିବାକୁ ବେଳ ମିଳନ୍ତେ ବିଭିନ୍ନ ନିର୍ଭରଯୋଗ୍ୟ ସୂତ୍ରରୁ ମୋ ଅଜଣା ତଥ୍ୟାବଳି ସଂଗ୍ରହ କରି ସେଗୁଡ଼ିକୁ ମୋ ଜଣା ତଥ୍ୟମାନଙ୍କ ସହିତ ଆନୁକ୍ରମିକ ସଜାଇରଖି 'ଯେତିକି ଜାଣିଛି, ଯେତିକି ଶୁଣିଛି' ଶିରୋନାମାରେ ସନ୍ଦର୍ଭଟି ପ୍ରସ୍ତୁତ କରିବାରେ ଲାଗିପଡ଼ିଲି । ସମ୍ପାଦକ ଜ୍ଞାନୀନ୍ଦ୍ରଙ୍କ ଧୈର୍ଯ୍ୟକୁ ସାଧୁବାଦ ନଦେଇ ରହିପାରୁ ନାହିଁ । ବାଉନ ପୃଷ୍ଠାର ସେହି ସନ୍ଦର୍ଭଟି ପୂର୍ଣ୍ଣତାପ୍ରାପ୍ତ ହେଲା ଚଉଦ ସଜବାଜ ଦିନ ସକାଳ ନଅଟାରେ । କାଳିଗଳିସ୍ଥ 'ଉତ୍କଳ ସାହିତ୍ୟ ଭବନ'କୁ ଯାଇ ସମ୍ପାଦକଙ୍କ ହସ୍ତରେ ତାହା ଅର୍ପଣ କରିବି ବୋଲି ସଜ ହେଉଛି, ଏହି ସମୟରେ ସ୍ୱୟଂ ସମ୍ପାଦକ, ସେଇଦିନ ନାମକୁ ମାତ୍ର ପ୍ରେସ୍ ହୋଇ ରଜଛୁଟି ଉପଲକ୍ଷେ ବନ୍ଦ ହୋଇଯିବ ବୋଲି, ଅସମ୍ଭାଳ ହୋଇ ମୋ ବାସଭବନର 'ଝୁଙ୍ଗି' କାମରାରେ ଢୁକିଗଲେ ଏବଂ ଟେବୁଲ ଉପରକୁ ଚାହିଁ ଅପାର ସନ୍ତୋଷରେ 'ଯେତିକି ଜାଣିଛି, ଯେତିକି ଶୁଣିଛି'କୁ ଛଞ୍ଚାଣିଲାଖେ ଝାମ୍ପିନେଇ ଚଟାପଟ୍ ଆଟାଚିସ୍ଥ କରି ଘୋଡ଼ା ବାଗେ ଉଲ୍ଲମ୍ଫ ଚରଣରେ ପ୍ରେସ୍‌ମୁଖୀ ହେଲେ । 'ବିଶ୍ୱନାଥ ସ୍ମୃତିସଂଖ୍ୟା' ପ୍ରକାଶିତ ହେଉଁ ହେଉଁ ଜୁଲାଇ ମାସ ହୋଇଯାଇଥିଲା । ଏ ଦୀର୍ଘ ବିଳମ୍ବର କେବଳ ମୋ ଦୀର୍ଘ ସନ୍ଦର୍ଭକୁ ବିଳମ୍ବରେ ପାଇବା ହେତୁ ।

'ରାଷ୍ଟ୍ରଭାଷା ସମବାୟ ପ୍ରକାଶନ'ର ପରିଚାଳକ ଶ୍ରୀ ଗୋପୀନାଥ ସାହୁ ୧୯୮୦ ମସିହାରେ ଦିନେ ମତେ ଅନୁରୋଧ କଲେ ରାଧାନାଥ-ମଧୁସୂଦନ-ଫକୀରମୋହନ ଯୁଗୀୟ ସାହିତ୍ୟରାଜ୍ୟର ପ୍ରଧାନ ଦିକ୍‌ପାଳ, ପତ୍ରିକାସମ୍ପାଦନା ଦକ୍ଷତାର ପ୍ରଥମ ମାର୍ଗପ୍ରଦର୍ଶକ ବରେଣ୍ୟ ସମାଜସଂସ୍କାରକ ବିଶ୍ୱନାଥ କରଙ୍କର ଖଣ୍ଡିଏ ଜୀବନଚରିତ ଲେଖିଦେବାପାଇଁ । ତାଙ୍କ ଅଭିଳାଷ ପୂରଣ କରିବାକୁ ବିଶେଷ ଆୟାସର ଆବଶ୍ୟକତା ନଥିଲା । 'ଉତ୍କଳ ସାହିତ୍ୟ'ର ବିଶ୍ୱନାଥ ସ୍ମୃତିସଂଖ୍ୟାରେ ପ୍ରକାଶିତ ଉପରୋକ୍ତ ସନ୍ଦର୍ଭଟିରେ ନୂତନଲବ୍ଧ କେତେକ ବୃତ୍ତାନ୍ତର ସଂଯୋଜନଦ୍ୱାରା ତାହାକୁ ସଂପ୍ରସାରିତ ଆକାର ଦେଇ ଖଣ୍ଡିଏ ସମସ୍ତୋପଯୋଗୀ ନାତିବୃହତ୍ ପୁସ୍ତକ ପ୍ରସ୍ତୁତ କରିଦେଲି । ପୁସ୍ତକଟିର ନାମକରଣ କଲି 'ବାଗ୍ମୀ ବିଶ୍ୱନାଥ' । ଗୋପୀନାଥବାବୁଙ୍କ କର୍ତ୍ତୃତ୍ୱାଧୀନ ଉକ୍ତୋକ୍ତ ପ୍ରକାଶନ ସଂସ୍ଥା-ଦ୍ୱାରା ଏହି ପୁସ୍ତକଟି ୧୯୮୨ ମସିହାରେ ମୁଦ୍ରିତ ରୂପ ପାଇ ଗବେଷଣା କ୍ଷେତ୍ରର ଏକ

ଦୀର୍ଘ-ଅନୁଭୂତ ଅଭାବ କିୟଦଂଶରେ ଦୂର କରିଦେଲା । ଶୁଣି ଖୁସି ହେଉଛି ଯେ, ଭିନ୍ନ ଭିନ୍ନ କଲେଜର ତିନିଜଣ ଯୁବକ ଅଧ୍ୟାପକ ଏହି ପୁସ୍ତକରୁ ପ୍ରଭୂତ ଉପାଦାନ ଆହରଣ କରି ଡକ୍ଟରେଟ୍ ଲାଭ ଉଦ୍ଦେଶ୍ୟରେ ବିଶ୍ୱନାଥ କରଙ୍କ ବହୁମୁଖୀ ପ୍ରତିଭା ଉପରେ ଆଲୋଚନାମୂଳକ ନିବନ୍ଧ ପ୍ରସ୍ତୁତ କରୁଛନ୍ତି ।

'ତରୁଣ ଶବ୍ଦକୋଷ'ର ଆଶାତୀତ ସଫଳତା ଓ ରାଜ୍ୟବ୍ୟାପୀ ଛାତ୍ର, ଅଧ୍ୟାପକ, ପାଠକ-ପାଠିକା ମହଲରେ ସମାଦର ମୋ ପ୍ରାଣରେ ଅଭୂତପୂର୍ବ ଉତ୍ସାହର ଉତ୍ସ ପ୍ରବାହ ଖେଳାଇଦେଇଥିଲା । ତାହାରି ପରଠାରୁ ବିଶାଳାୟତନ ଅତ୍ୟାଧୁନିକ ଅଭିଧାନ ଗ୍ରନ୍ଥଟିଏ ସଙ୍କଳନ କରିବାର ଦୁର୍ବାର ବାସନା ମୋ ମସ୍ତିଷ୍କକୋଷକୁ ଆଚ୍ଛନ୍ନ କରି ରହିଥାଏ ଏବଂ ସେହି ଜୀବନ୍ତ ସୁନେଲି ସ୍ୱପ୍ନର ଝଲକ ମଧ୍ୟେ ମଧ୍ୟେ ବାରମ୍ବାର ମାନସ-ପରଦାରେ ଜକ୍-ଜକ୍ ହୋଇଉଠୁଥାଏ । ତହିଁରେ ମୁଁ ଏପରି ବିଭୋର ହୋଇଯାଇଥିଲି ଯେ, ଅଭିଧାନଟିର ନାମ 'ଜ୍ଞାନୋଦୟ ଶବ୍ଦକୋଷ' ଦେବି ବୋଲି ମଧ୍ୟ ସିଦ୍ଧାନ୍ତ କରି-ପକାଇଥିଲି । ବାକି ଥିବା ଆହୁରି ଗୋଟିଏ କନ୍ୟାଦାୟର ଚିନ୍ତା ପଛପଟୁଁ ଅଙ୍ଗିମିଚିକା ମାରୁଥିଲେହେଁ ଉପରେଟିର ଦାୟରୁ ସଦ୍ୟ ଉଦ୍ଧାର ପାଇଥିବାରୁ ମୁଣ୍ଡଟା ମୋର ବେଶ୍ ହାଲୁକା ଓ ଫୁର୍ତ୍ତିଆ ବୋଧହେଉଥାଏ । ତେଣୁ 'ଗ୍ରନ୍ଥମନ୍ଦିର' ପ୍ରକାଶନ ସଂସ୍ଥାର ପ୍ରତିଷ୍ଠାତା ବନ୍ଧୁବର ଶ୍ରୀ ଶ୍ରୀଧର ମହାପାତ୍ରଙ୍କୁ ଅଭିପ୍ସିତ ବୃହଦାକାର ଅଭିଧାନ ସଙ୍କଳନ ବିଷୟ ଜଣାଇଲି । ସେ ମତେ ପୂର୍ଣ୍ଣପ୍ରାଣରେ ଉତ୍ସାହିତ କରିବାରୁ ତାଙ୍କରି ମୀମାଂସାମତେ ବର୍ଷର ସର୍ବୋତ୍କୃଷ୍ଟ ଶୁଭଦିବସ ଆସନ୍ନପ୍ରାୟ (୧୯୭୮) ଶ୍ରୀଗୁଣ୍ଡିଚା ତିଥିରେ ତ୍ରିନାଥ ବ୍ରହ୍ମା-ବିଷ୍ଣୁ-ଶିବଙ୍କ ସମନ୍ୱୟସ୍ୱରୂପୀ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଧ୍ୟାନ କରି 'ଜ୍ଞାନୋଦୟ ଶବ୍ଦକୋଷ' ଲେଖାର ଶୁଭାରମ୍ଭ କରିଦେଲି । ନାମର ମୂଳରେ ଥିବା 'ଜ୍ଞାନୋଦୟ' ଶବ୍ଦଟିର ସାର୍ଥକତା ପ୍ରତିପାଦନପାଇଁ ପ୍ରତ୍ୟେକ ଶବ୍ଦର ଅର୍ଥାବଳି ପରେ ବର୍ଗବନ୍ଧନୀମଧ୍ୟରେ ତତ୍‌ସଂକ୍ରାନ୍ତ ନାନା ଜ୍ଞାତବ୍ୟ ଶବ୍ଦ, ଏପରିକି ପ୍ରୟୋଜନୀୟ ସ୍ଥଳମାନଙ୍କରେ ଜ୍ଞାନବିବର୍ଦ୍ଧକ ଟିପ୍‌ପଣୀମାନ ମଧ୍ୟ ସଂଯୋଗ କରିବାର ସଂକଳ୍ପକୁ ପୂର୍ଣ୍ଣତଃ ରକ୍ଷା କରି କରି କଲମକୁ ଗତିଶୀଳ ରଖିଲି । ଏହାଛଡ଼ା ପ୍ରତ୍ୟେକ ଅଣସଂସ୍କୃତ ଶବ୍ଦର ମୂଳ ଶବ୍ଦ ପ୍ରଦାନ (ଯଥା—'ଗାଈ' ବା 'ଗାଭୀ'ର 'ସଂ. ଗବୀ') ବା ମୂଳ ଉତ୍ସ ନିର୍ଣ୍ଣୟନ (ଯଥା—'ମୁଦୁଲି' ର 'ସଂ. ମୃଦୁଶୀଳା') ଏହି ଅଭିନବ ଅଭିଧାନଟିର ଥିଲା ସର୍ବଶ୍ରେଷ୍ଠ ଉପାଦେୟତା ତଥା ମହାମୂଲ୍ୟ ବୈଶିଷ୍ଟ୍ୟ, ଯାହା ଏପର୍ଯ୍ୟନ୍ତ ପ୍ରକାଶିତ କୌଣସି ପ୍ରାଦେଶିକ ଅଭିଧାନରେ ଉଦ୍ୟମ କରାହୋଇନାହିଁ । ୧୯୮୧ ଅଗଷ୍ଟ ଶେଷ ମଧ୍ୟରେ 'ଅ'ଠାରୁ 'ଛ' ପର୍ଯ୍ୟନ୍ତ ସମାପ୍ତ କରି 'ଜ'କୁ ମଧ୍ୟ ଝିଣ୍ଟେ ଦୂର ମାଡ଼ିଗଲି । ଏଇ ଉଣେଇଶଟି ମାତ୍ର ('ଅ' ରୁ 'ଛ') ଅକ୍ଷର ମଧ୍ୟରେ ମୁଁ ଅନ୍ୟୂନ ତେତିଶ ହଜାର ଶବ୍ଦର ପୂର୍ଣ୍ଣ ବିବରଣ ପ୍ରଦାନ କରିଥିଲି । ଏଥିରୁ ପାଠିକାପାଠକେ ବେଶ୍ ଧାରଣା କରିପାରିବେ ଯେ, ଆଲୋଚ୍ୟ ଶବ୍ଦକୋଷଟି ପୂର୍ଣ୍ଣାଙ୍ଗ ହେଲାବେଳକୁ ସେଥିରେ ଆନୁମାନିକ ଲକ୍ଷେ ଶବ୍ଦର ପୂର୍ଣ୍ଣ ବିବରଣ ସ୍ଥାନ ପାଇଥାନ୍ତା ଏବଂ ଗ୍ରନ୍ଥଟିର ପୃଷ୍ଠାସଂଖ୍ୟା ଅଢ଼େଇ ହଜାରରୁ କମ୍ ହୋଇନଥାନ୍ତା ।

ମାତ୍ର ହାୟ, 'କଲନା ମୂଳେ କାଳ ଥାଇ, ପ୍ରାଣୀ ତା ଜାଣି ନ ପାରଇ'—ଏ ନିଦାରୁଣ ଭାଗବତବାଣୀ ମୋରିଠେଇଁ ଯେ ଫଳିବାକୁ ଥିଲା, ଜାଣିଥା'ନ୍ତି ମୁଁ କିପରି ? ସେପ୍ଟେମ୍ବର୍ (୧୯୮୧) ତିନି ତାରିଖ ଗୁରୁବାରଟା ମୋ ଭଳି ଜଣେ ନିତ୍ୟନିଷ୍ଠ ଗଣେଶଭକ୍ତ ପକ୍ଷରେ ଦୁର୍ବାର ଦୁର୍ଦ୍ଦିନ, ଦୁର୍ଦ୍ଦାନ୍ତ ଦୁସ୍ୱପ୍ନ୍ ହେବା କାହିଁକି ଯେ ସମ୍ଭବ ହୋଇପାରିଲା, ଏହି ଗୂଢ଼ ରହସ୍ୟ ଏବେ ମଧ୍ୟ ମୋତେ ବିରାଟ ପ୍ରଶ୍ନବାଚୀ ମଧ୍ୟରେ ଛନ୍ଦିରଖିଛି । ସେ ବର୍ଷ ଗଣେଶ ଚତୁର୍ଥୀ ପଡ଼ିଥାଏ ସେପ୍ଟେମ୍ବର ଦୁଇ ତାରିଖ ବୁଧବାର ଦିନ । ବିଘ୍ନବିନାଶନ ଗଣେଶ ମୋର, ମୋ ପରିବାରର, ସମଗ୍ର ମୂଳବସନ୍ତ ବ୍ରାହ୍ମଣଶାସନର ଆଖପାଖ ଲଗାଲଗି ଗ୍ରାମାଞ୍ଚଳଟାଯାକର ଆରାଧ୍ୟ ଇଷ୍ଟଦେବତା—ପ୍ରତ୍ୟକ୍ଷ ବରଦାତା । ପ୍ରତିବର୍ଷ ଆମ ଗ୍ରାମର ଗଣେଶ ମନ୍ଦିରରେ ବିଶାଳ ମୃଣ୍ମୟ ମୂର୍ତ୍ତି ନିର୍ମିତ ହୋଇ ସ୍ଥାୟୀ ମେଢ଼ରେ ସ୍ଥାପିତ ହୁଅନ୍ତି ଏବଂ ସର୍ବନିମ୍ନ ତିନି ସପ୍ତାହ ପର୍ଯ୍ୟନ୍ତ ଗଗନଫଟା ଜନକୋଳାହଳ ଓ ବିବିଧ ବାଦ୍ୟ-ବାଜଣା, ନୃତ୍ୟ, ଗୀତ, ଅଭିନୟର ଅହୋରାତ୍ର ସମାରୋହ ମଧ୍ୟରେ ସଂପୂଜିତ ହୋଇ ବିସର୍ଜନ ହେଲା ପରେ ସେଠା ବିରୂପା ଗଣ୍ଡରେ ଜଳଶାୟୀ ହୁଅନ୍ତି ।

ଏହି ମହୋତ୍ସବରେ ଯୋଗ ଦେବାପାଇଁ ମୁଁ ପ୍ରାୟଶଃ ଗ୍ରାମକୁ ଯାଇପାରେ ନାହିଁ, ତେଣୁ କଟକସ୍ଥ ନିଜ ବାସଭବନରେ ପ୍ରତିବର୍ଷ ଇଷ୍ଟଦେବତାଙ୍କ ନୂତନ ମୃଣ୍ମୟ ପ୍ରତିମା ସ୍ଥାପନପୂର୍ବକ ଯଥୋପଯୁକ୍ତ ନୀତିନିୟମରେ ଚତୁର୍ଥୀ ତିଥିରେ ପୂଜାର୍ଚ୍ଚନା କରି ସନ୍ଧ୍ୟା-ପରେ ବିସର୍ଜନ ଦିଏ । ଆଲୋଚ୍ୟ ବର୍ଷ ଠିକ୍ ଏହି ରୀତିରେ ପୂଜାବିଧି ସମ୍ପାଦନପୂର୍ବକ ସନ୍ଧ୍ୟାଳତିକାଳୀନ ଶେଷ ଭୋଗନୀତି ସାରି ପ୍ରତିମାଙ୍କ ବିସର୍ଜନ କର୍ମ ଶେଷ କରିଥିଲି । ତା'ରି ବାସିଦିନ ଗୁରୁବାର ମଧ୍ୟାହ୍ନ ବେଳାରେ ନିଜ ଅସାବଧାନତା ଦୋଷରୁ ଶୌଚାଗାର ପାର୍ଶ୍ୱରେ ହଠାତ୍ ମୋର ପାଦସ୍ଖଳନ ଘଟିଲା—ଚିତ୍କାତ୍ ହୋଇ ବାତ୍ୟାବେଗରେ ମୁଁ କଂସକଚଡ଼ା ଖାଇଲି, ଯାହା ଫଳରେ (ଗୋଡ଼ବନ୍ଧା ଅବସ୍ଥାରେ ବଡ଼-ଡାକ୍ତରଖାନାର ତିନିମାସବ୍ୟାପୀ ଚିକିତ୍ସାବିଧାନ ସତ୍ତ୍ୱେ) ବାମ ଜଙ୍ଘାରେ ସବୁଦିନପାଇଁ ଜଖମର ଖୁଣ ରହିଗଲା । କିନ୍ତୁ ଆଶ୍ଚର୍ଯ୍ୟର କଥା, ସେ-ଗୋଡ଼ର କୌଣସି ଅଂଶରେ ଅଥବା ସେ-କଡ଼ ଅଣ୍ଟାର କୌଣସି ଜାଗାରେ ଅଣୁମାତ୍ରାରେ ପୁଞ୍ଚା ହାଡ଼ ଭାଙ୍ଗିଲା ନାହିଁ କି ଚଡ଼କିଲା ନାହିଁ । ବୈଦ୍ୟରାଜ ପିତୃଦେବଙ୍କ ଭବିଷ୍ୟବାଣୀ 'ତୋ ଦେହର ଅସ୍ଥିକୁ ମୁଁ ଏପରି ବଜ୍ରଟାଣ କରି-ଦେଇଛି ଯେ, ପଥର ପଡ଼ିଲେ ବି ତାହା ଭାଙ୍ଗିବ ନାହିଁ କି ଚଡ଼କିବ ନାହିଁ' ଅକ୍ଷରେ ଅକ୍ଷରେ ସତ୍ୟ ହେଲା । ଏ ଯୁଗର ଅତ୍ୟୁନ୍ନତ ପାଶ୍ଚାତ୍ୟ ଡାକ୍ତରୀ ଚିକିତ୍ସାବିଜ୍ଞାନକୁ ପ୍ରାଚୀନ ଆୟୁର୍ବେଦିକ ଚିକିତ୍ସା-ବିଜ୍ଞାନର ଏହା ଏକ ଗୌରବିତ ଆହ୍ୱାନ ନୁହେଁ କି ? ଶୌଚାଗାର ଆଡ଼କୁ ଯିବାର ଠିକ୍ ପୂର୍ବରୁ 'ଜ୍ଞାନୋଦୟ ଶବ୍ଦକୋଷ' ଅନ୍ତର୍ଗତ 'ଜ' ର ଯେଉଁ ଶବ୍ଦଟିର ଅର୍ଥ ଲେଖିଥିଲି, ତାହା ହେଉଛି 'ଜଣ—ବି, (ସଂ. ଜନ)'—ଶୌଚା-ଗାରରୁ ଫେରିଲାମାତ୍ରେ ଅର୍ଥ ପ୍ରସ୍ତୁତ ଅବଶିଷ୍ଟ ଅଂଶ ଶେଷ କରି ଆଗକୁ ମାଡ଼ିଥା'ନ୍ତି ।

ମାତ୍ର ଦୈବ ହେଲା ତା'ର ପ୍ରତିକୂଳ—ଦାରୁଗଢ଼ା ଜଗନ୍ନାଥ ମୂର୍ତ୍ତି ପରି ମୋ 'ଜ୍ଞାନୋଦୟ ଶବ୍ଦକୋଷ' ସମ୍ପାଦନପାଇଁ ସେଇଠି ଅଟକି ରହିଗଲା ।

ତେବେ ଆଶ୍ୱାସନା ଏତିକି ଯେ, 'ହ' ଶେଷପର୍ଯ୍ୟନ୍ତ ଶବ୍ଦମାନଙ୍କ ବର୍ଣ୍ଣାନୁକ୍ରମିକ ସଙ୍କଳନର କଙ୍କାଳ ବା ଚିଠାଲେଖା ପ୍ରସ୍ତୁତ କରିସାରିଥିଲି ଏବଂ ସେଗୁଡ଼ିକର ମଧ୍ୟେ ମଧ୍ୟେ ସଂଯୋଜିତ ହେବା ଉଦ୍ଦେଶ୍ୟରେ ସହସ୍ରାଧିକ ନୂତନ ଶବ୍ଦ ଅନ୍ୟତ୍ର କ୍ରମାନ୍ୱୟିକ ବିଧିରେ ଟିପିଦେଇଥିଲି । ସୌଭାଗ୍ୟବଶତଃ ଗ୍ରନ୍ଥଭାଷା ସମବାୟ ପ୍ରେସ୍ ପ୍ରତିଷ୍ଠାନର ସେକ୍ରେଟରି ଶ୍ରୀ ଗୋପୀନାଥ ସାହୁ ସେ ସମସ୍ତ ଲେଖା ('ଅ' ରୁ 'ଜ' ର ଯେଉଁ ପର୍ଯ୍ୟନ୍ତ ଚୂଡ଼ାନ୍ତରୂପେ ଲେଖିସାରିଥିଲି ଏବଂ ସେଠାରୁ 'ହ'—ଶେଷଯାଏର ଚିଠାଲେଖା ଓ ନୂଆ ସଂଗୃହୀତ ସହସ୍ରାଧିକ ଶବ୍ଦର ଅଲଗା ଆନୁକ୍ରମିକ ଟିପା) ଓ କେତେକ ମୂଲ୍ୟବାନ୍ ସହାୟକ ଅଭିଧାନ ଗ୍ରନ୍ଥ ('ସରଳ ବାଂଲା ଅଭିଧାନ', ବଙ୍ଗଳା 'ସଂକ୍ଷିପ୍ତ ସଂସଦ୍ ଅଭିଧାନ', ଓଡ଼ିଆ 'ଶବ୍ଦ-ତତ୍ତ୍ୱବୋଧ ଅଭିଧାନ', 'ସରଳ ଓଡ଼ିଆ ଅଭିଧାନ' ପ୍ରଭୃତି) ମୋଠାରୁ ୧୯୮୫ ମସିହାରେ ନେଇ ପ୍ରସ୍ତାବିତ 'ଜ୍ଞାନୋଦୟ ଶବ୍ଦକୋଷ'ର ଉଲ୍ଲିଖିତ ସମଗ୍ର ଅଂଶ ସୁସ୍ପଷ୍ଟାକ୍ଷରରେ ସାଫି (fair copy) କରାଇ ଯତ୍ନର ସହିତ ନିଜ ତତ୍ତ୍ୱାବଧାନରେ ସଂରକ୍ଷଣ କରିଛନ୍ତି । ଉପଯୁକ୍ତ ବିଦ୍ୱାନ୍ ଜଣେ ମିଳିଲେ ତାଙ୍କଦ୍ୱାରା (୧) 'ଅଣସଂସ୍କୃତ ଶବ୍ଦମାନଙ୍କର ମୂଳ ଶବ୍ଦ', (୨) 'କିଛି ଅଧିକା ନୂତନ ଶବ୍ଦ', (୩) 'କଠିନ କଠିନ ଅର୍ଥର ଅବବୋଧପାଇଁ ତତ୍ପରେ ପାର୍ଶ୍ୱରେ ପ୍ରୟୋଗର ଉଦାହରଣ' ଓ (୪) 'ଆବଶ୍ୟକସ୍ଥଳେ ଅବଶ୍ୟଜ୍ଞାତବ୍ୟ ଟିପ୍ପଣୀ' ସଂଯୋଜନ କରିଦେଇପାରିଲେ ମୋ ପରିକଳ୍ପିତ ଅଭିନବ ପଦ୍ଧତିର ଏହି ଅତ୍ୟାଧୁନିକ ଶବ୍ଦକୋଷଟି ଅଳ୍ପକାଳ ମଧ୍ୟରେ ପୂର୍ଣ୍ଣତାପ୍ରାପ୍ତ ହୋଇପାରନ୍ତା । ଏଥିପାଇଁ ପ୍ରକାଶକ ବନ୍ଧୁଙ୍କର ଯଥାର୍ଥ ଆନ୍ତରିକତା ହିଁ ଏକମାତ୍ର ପ୍ରେରଣାର ଉତ୍ସ । ତାହାହେଲେ ଉପସ୍ଥିତ ତ୍ରିଶଙ୍କୁ ଅବସ୍ଥା ଦୂର କରି ଏ ଦାରୁତୋଳା ଦେଉଳକୁ ପୂର୍ଣ୍ଣ ରୂପ ଦେବାପାଇଁ ଜାତୀୟ କର୍ତ୍ତବ୍ୟବୋଧରେ କେହି -ନା-କେହି ମାତୃଭାଷାପ୍ରେମୀ ବିଦ୍ୱାନ୍ ନିଶ୍ଚୟ ଆଗଭର ହୋଇ ବାହାରିବେ । 'ଉଦ୍ୟୋଗବଳେ ସର୍ବସିଦ୍ଧି' ଏହି ମହାବାଣୀର ଜୟ ହେଉ, ଏହା ହିଁ ନିତ୍ୟ ତ୍ରିସନ୍ଧ୍ୟାରେ ବଳିଆରବାହୁ ମହାପ୍ରଭୁ ଶ୍ରୀଜଗନ୍ନାଥ ଓ ଉତ୍କଳଭଗବତୀ ମା' ଶ୍ରୀ ସାରଳାଙ୍କ ପାଦପଦ୍ମରେ ମୋର ଜଣାଣି ।

ଗୋଡ଼ ଖସିବା ଦୁର୍ଘଟଣାର ଆକସ୍ମିକ ବିପତ୍ପାତ ଦିନ (୩-୯-୧୯୮୧)ଠାରୁ ପ୍ରାୟ ଦେଢ଼ବର୍ଷକାଳ ଗୃହବନ୍ଦୀ ହୋଇ ଶଯ୍ୟାରେ ପଡ଼ିରହିବା ପରେ ମୁଁ ୧୯୮୩ ଫେବ୍ରୁଆରି ବେଳକୁ ପକ୍କା ଶିଡ଼ିରେ ବାଡ଼ି ଧରି ଧରି କୌଣସିମତେ ଚଢ଼ା-ଓହ୍ଲା କରିବାର ଶକ୍ତି ପାଇଲି ଏବଂ ସକାଳେ ଓ ସନ୍ଧ୍ୟାରେ ସୀମିତ ସମୟପାଇଁ ଯଥାକ୍ରମେ ଗୃହଛାତ ଉପରେ ଓ ଗୃହାଙ୍ଗନ-ପରିସରରେ ପାଆଚ୍ଛିରି କରିବାକୁ କଥଞ୍ଚିତ୍ ସାମର୍ଥ୍ୟ ହେଲି । କିନ୍ତୁ ସଂକୀର୍ଣ୍ଣ ରାସ୍ତାର ଦୁଇ ବିପରୀତ ଦିଗରୁ ଅବିରାମ ଯା ଆସ କରୁଥିବା ବେଗଗାମୀ ଯାନବାହନାବଳି ଓ ପାଦଚାରୀ ଜନତାଗହଳିର ସଂଘର୍ଷ-ବିଭୀଷିକା ମତେ ଏପରି ଭୀରୁ କରିପକାଇଥାଏ ଯେ,

ଏକୁଟିଆ ଦାଣ୍ଡଦରଜାର ତଳପାହାଚକୁ ଗୋଡ଼ ବଢ଼ାଇବାକୁ ମୁଁ ଆଦୌ ଭରସିପାରୁ ନଥାଏଁ । ମାଘ ମାସ ଶ୍ରୀପଞ୍ଚମୀର ସରସ୍ୱତୀ ପୂଜା ଯୋଗକୁ ସେଇ ସମୟରେ ପଡ଼ିଲା । ସତ୍ୟବାଦୀ ପ୍ରେସ୍‌ରେ ସେହି ବାଣୀପୂଜୋତ୍ସବ ପାରମ୍ପରିକ ଧାରାରେ ପ୍ରତିବର୍ଷ ଅନୁଷ୍ଠିତ ହୋଇଆସୁଥାଏ । ମୁଁ ଇତିମଧ୍ୟରେ ଶଯ୍ୟାଶାୟୀ ଅବସ୍ଥାରୁ ପାଦଚାରୀ ଅବସ୍ଥାକୁ ଧୀରେ ଧୀରେ ଫେରୁଥାଏଁ ବୋଲି ପ୍ରେସ୍ ପରିଚାଳକ ଶ୍ରୀ ଗୋପୀନାଥ ସାହୁଙ୍କର ଦୃଢ଼ବିଶ୍ୱାସ ପ୍ରତୀତ ହୋଇସାରିଥାଏ । (ଏଠାରେ ଉଲ୍ଲେଖନୀୟ ଯେ, ମୋର ସେ ଦୁର୍ଗତି ବେଳାରେ ଦୂର ଅଦୂରରୁ ଯେତେ ବନ୍ଧୁ ଜ୍ଞାତି, ଯେତେ ସ୍ନେହୀ ସୁହୃଦ୍ ସମ୍ବେଦନା ଜଣାଇବାକୁ ଓ ମନରେ ଦମ୍ଭ ଦେବାକୁ ମୋ ନିକଟକୁ ଆସିଥିଲେ, ସେମାନଙ୍କ ମଧ୍ୟରୁ ନିୟମିତ ସାପ୍ତାହିକ ସନ୍ଧୋଳିଆ ଥିଲେ ତିନିଜଣ—ଶ୍ରୀଧର ମହାପାତ୍ର, ଶ୍ରୀ ଗୋପୀନାଥ ସାହୁ, ଶ୍ରୀ ଅଶୋକ ରାଓ । ତେଣୁ ତାଙ୍କ ନିର୍ଦ୍ଦେଶରେ ଜଣେ ପ୍ରେସ୍ କର୍ମଚାରୀ ଗାଡ଼ି ଘେନି ଉପସ୍ଥିତ ହେଲେ ମତେ ସେଠାକୁ ନେଇଯିବାପାଇଁ । ଦୀର୍ଘ ଦେଢ଼ବର୍ଷବ୍ୟାପୀ ଗୃହବନ୍ଦୀ ଜୀବନର ଦୁଃସହ ଦୁଃଖଜ୍ୱାଳାପରେ ପ୍ରଥମ କରି ସେଦିନର ବନ୍ଧୁମେଳାରେ ଅନୁଭବ କରିଥିଲି ମୁଁ କାରାମୁକ୍ତ ମୁହୂର୍ତ୍ତର ମଦିରମେଦୁର ଶାନ୍ତଶୀତଳ ସୁଖଚନ୍ଦନର ସ୍ପର୍ଶ ।

ଚଣ୍ଡୀଖୋଲ ପୀଠର ସ୍ୱନାମଧନ୍ୟ ପ୍ରତିଷ୍ଠାତା ଓ ନବନିର୍ମାତା ମଧୁରମାଳିନୀ ଉତ୍କଳ-ଭୂମିର ସେବାରେ ଉତ୍ସର୍ଜିତ ପ୍ରାଣ ସିଦ୍ଧସାଧକ କର୍ମଯୋଗୀ ସନ୍ଥ ଭୈରବାନନ୍ଦଜୀଙ୍କର ମହାପ୍ରୟାଣ ଘଟିଥିଲା ସେହି ବର୍ଷ (୧୯୮୩)ର ଜାନୁଆରି ସାତ ତାରିଖରେ । ଉପସ୍ଥିତ କେତେକ ନିମନ୍ତ୍ରିତ ବୁଦ୍ଧିଜୀବୀ ବନ୍ଧୁ ସେହି ଯୋଗଜନ୍ମା କରିତ୍‌କର୍ମା ମହାପୁରୁଷଙ୍କ ଲୋକ-ହିତାୟ ଜୀବନର ମହନୀୟ କୃତି ଓ କୀର୍ତ୍ତିକଳାପର ସ୍ମୃତିଚାରଣା କରି ଆସ୍ୱୋଚିତ ମଧୁ-ମିଳନୀକୁ ସ୍ମରଣୀୟ କରିବା ସଙ୍ଗେ ସଙ୍ଗେ କ୍ଷୋଭପ୍ରକାଶ କରିଥିଲେ ଯେ, ଅର୍ଦ୍ଧଶତାବ୍ଦୀ-ବ୍ୟାପୀତକ ଏଡ଼େ ବଡ଼ ମହାନ୍ ଜ୍ୟୋତି ନିର୍ବାଣପ୍ରାପ୍ତ ହୋଇଗଲା ପଛେ, ତା'ର ବହୁମୁଖୀ କର୍ମଧାରାର ଇତିହାସ ଏପର୍ଯ୍ୟନ୍ତ ଲିଖିତାକାରରେ ଲୋକଲୋଚନକୁ ଆସିପାରିଲା ନାହିଁ । କ୍ଷୋଭର ଏହି ଅଡ଼ୁଆ ସୂତାପେଣ୍ଡୁଲା ମଧ୍ୟରୁ ଉଖାରି-ନିଖାରି ସିଅ ବାହାର କଲେ ଧୀମନ୍ତ ଶ୍ରୀ ଗୋପୀନାଥ ସାହୁ—ସମସ୍ତଙ୍କ ସମକ୍ଷରେ ମତେ ଅର୍ଗଳ-ମୁହଁକୁ ଠେଲିଦେଇ ମୋ ବେକରେ ଦାୟିତ୍ୱର ମନ୍ଦାରମାଳ ଲଟକାଇଦେଲେ । ସେ ଅର୍ଗଳରୁ ବେକ ଓହରାଇ-ଆଣିବାର ତାକତ ନଥିଲା ମୋର । ଶ୍ରଦ୍ଧେୟ ଗୋପୀନାଥବାବୁଙ୍କ ପଦମହତ୍ତ୍ୱର ଓଜନ ବଢ଼ାଇବାପାଇଁ ତାଙ୍କ ପ୍ରସ୍ତାବକୁ 'ମୌନଂ ସମ୍ମତିଲକ୍ଷଣମ୍' ଭିତ୍ତିରେ ବରିନେବାକୁ ଶ୍ଳାଘ୍ୟ ମଣିଲି । ଠିକ୍ ଅର୍ଦ୍ଧଶତାବ୍ଦୀ ପୂର୍ବେ ଏଇ ପବିତ୍ର ଶ୍ରୀପଞ୍ଚମୀ ତିଥିରେ ତୀର୍ଥପର୍ଯ୍ୟଟକ ଯୁବ-ସନ୍ନ୍ୟାସୀ ଭୈରବାନନ୍ଦଜୀ ସର୍ପଶ୍ୱାପଦସଙ୍କୁଳ ନିପଟ ନିକାଞ୍ଚନ ଚଣ୍ଡୀଖୋଲ ଅରଣ୍ୟାନୀଗର୍ଭକୁ ପ୍ରବେଶ କରିଥିଲେ ଏବଂ ନିଗିପଦରେ ଚଣ୍ଡୀମାତାଙ୍କ ଅଭୟଚରଣତଳେ ଏକାକୀ ରାତି ମାପିଥିଲେ । ତେଣୁ ତାହାରି ସ୍ମୃତିରେ ଆଜିର ସେଇ ପୁଣ୍ୟତିଥିରେ ତାଙ୍କ ମହନୀୟ ଜୀବନଚରିତ ଲିପିବଦ୍ଧ କରିବାର ଦାୟିତ୍ୱ ମୋଭଳି ଅଳଙ୍କ ଉପରେ ଏପରି ଅତର୍କିତରୂପେ

ଲଭିଥିବାର ମୂଳରେ କୃପାମୟୀ ଚଣ୍ଡୀରୂପା ମା ଭବାନୀର ପ୍ରଚ୍ଛନ୍ନ ଆଶୀର୍ବାଦ ହିଁ ଯେ ନିହିତ ଥିଲା, ଏହା ମୁଁ ନ ଜାଣିଥା'ନ୍ତି କେମିତି ?

ବିଶିଷ୍ଟଦୃଷ୍ଟିଭଙ୍ଗୀଧର ଧର୍ମଗୁରୁରୂପେ ଆଜନ୍ମ ବ୍ରହ୍ମଚାରୀ ଭୈରବାନନ୍ଦଜୀଙ୍କର ଶିଷ୍ୟ, ଭକ୍ତ, ଅନୁଗତ ଓ ଗୁଣମୁଗ୍ଧ ଥିଲେ ଲକ୍ଷାଧିକ । ମାତ୍ର ତାଙ୍କୁ ଭଲକରି ଚିହ୍ନିଥିବା, ତାଙ୍କ ଅନ୍ତରର ଅଭ୍ୟନ୍ତରକୁ ଭେଦିଥିବା, ତାଙ୍କ ଜୀବନଦର୍ଶନକୁ ନିବିଷ୍ଟଭାବରେ ଅଧ୍ୟୟନ କରିଥିବା ଓ ତାଙ୍କ ଜୀବନଗାଥା, ବିଶେଷତଃ ବାଲ୍ୟଜୀବନ କଥା ଅଭ୍ରାନ୍ତରୂପେ ଜାଣିଥିବା ଏବଂ ଦସ୍ୟୁ ରତ୍ନାକରରୁ ମହର୍ଷି ବାଲ୍ମୀକି ପାଲଟିବା ମୂଳରେ ଥିବା ଅତିମାନବୀୟ ଆବେଗକୁ ଉପଲବ୍ଧି କରିଥିବାର ପ୍ରକୃତ ପୂର୍ଣ୍ଣାବଗାହୀ କୁଶଳୀ ଲେଖନୀଧର ବୋଧହୁଏ ଉକ୍ତ ସମ୍ପ୍ରଦାୟ ମଧ୍ୟରେ ସେପରି କେହି ନଥିଲେ । ପୂଜ୍ୟ ସନ୍ଥଜୀଙ୍କ ଜୀବନାବସାନ ପରେ ଯେ କେତୋଟି ଖବରକାଗଜରେ ଶୋକସମ୍ବାଦ ପ୍ରକାଶ ପାଇଥିଲା, ତଥ୍ୟ ଦୃଷ୍ଟିରୁ ସେଗୁଡ଼ିକର ବିଶେଷ କିଛି ଉପଯୋଗିତା ନଥିଲା କହିଲେ ଚଳେ । ବିଷୟବସ୍ତୁ ଯାହା ଥିଲା, ସବୁ ପତ୍ରିକାରେ ପ୍ରାୟ ଏକାପରି—ପ୍ରକାଶଭଙ୍ଗୀରେ ଇତରବିଶେଷ ମାତ୍ର । କେବଳ ଗୋଟିଏ ସାପ୍ତାହିକରେ ମନକୁ ଛୁଇଁଲା ଭଳି ଲେଖାଟିଏ ପ୍ରକାଶିତ ହୋଇଥିଲା, ଯହିଁରେ ସଂଗ୍ରହଯୋଗ୍ୟ ଉପାଦାନ କିଛି ଥିଲା । ବହି ଖଣ୍ଡିଏ ଲେଖିବାକୁ ଗଲେ ତହିଁର ଭିତ୍ତିଭୂମି ହେବା ଯୋଗ୍ୟ ଗୁଡ଼ିଏ ପ୍ରାମାଣିକ ମୌଳିକ ତଥ୍ୟ ସର୍ବାଦୌ ଆହରଣୀୟ । ମତେ କିନ୍ତୁ ଏ ଦିଗରୁ ଏକପ୍ରକାର ହତାଶ ହେବାକୁ ପଡ଼ିଲା । କେତେ ବର୍ଷ ତଳେ ମୁଁ ସପରିବାର ବାବା ଭୈରବାନନ୍ଦଙ୍କ ଆସ୍ଥାନ କୁଟୀର ପାର୍ଶ୍ୱରେ କିଛି ଦିନ ରହିବାର ଏବଂ ନିତେ ଦିନକୁ ଅନ୍ତତଃ ଦିଇଘଣ୍ଟା ବାବାଙ୍କ ସନ୍ନିଧିରେ ବସିବାର ସୌଭାଗ୍ୟ ପାଇଥିଲି । ସେତିକିବେଳେ ଜିଜ୍ଞାସୁ ହୃଦୟ ନେଇ ତାଙ୍କଠାରୁ ବିଶେଷ ବିଶେଷ କେତେକ ଘଟଣା ଓ ମୂଲ୍ୟବାନ୍ ତଥ୍ୟ ଆଦାୟ କରିଥିଲି । ସେଗୁଡ଼ିକୁ ଓ ପତ୍ରିକାରୁ ପ୍ରାପ୍ତ ଯତ୍କିଞ୍ଚିତ୍କୁ ସମ୍ବଳ କରି ଏବଂ ତହିଁରେ ମୋର ବ୍ୟକ୍ତିଗତ ଅନୁଭବ ଓ ଅନୁଭୂତିକୁ ମିଶାଇ ଖଣ୍ଡିଏ ପୁସ୍ତକ ପ୍ରଣୟନ କରିବାକୁ ପ୍ରାୟ ଚାରି ମାସ ଲାଗିଗଲା । ପୂର୍ଣ୍ଣାଙ୍ଗ ହେଲା ପରେ ତାହାର ନାମ ରଖିଲି **ସ୍ୱାମୀ ଭୈରବାନନ୍ଦ** । ଏହା ହେଲା ମୋ 'ସାହିତ୍ୟସେବା ଝୁଲି'ର ଚତୁର୍ଥ ଅବଦାନ । ପାଣ୍ଡୁଲିପିଟି ସେହି ବର୍ଷ (୧୯୮୩) ପ୍ରସ୍ତାବକଙ୍କର ହସ୍ତାମଳକ ହୋଇଥିଲା । 'ରତ୍ନଭୂଷା ସମବାୟ ପ୍ରକାଶନ' ତରଫରୁ ପୁସ୍ତକଟି ସଦ୍ୟ ପ୍ରକାଶଲାଭ କରିଛି ଏଇ ୧୯୮୭ ସେପଟେମ୍ବର୍ ମାସରେ ।

ଭାବିଥିଲି, ଘାଟିଟା ଏତିକିରେ କଟିଯିବ । ଏଣିକି ଧୀରେସୁସ୍ଥେ 'ଜ୍ଞାନୋଦୟ ଶବ୍ଦକୋଷ' ଲେଖାରେ ପୁଣି ଆତ୍ମନିୟୋଗ କରିବି ଏବଂ ଅଗ୍ନିବୋଟ୍ ପଛରେ ବଜରା ଯୋଡ଼ା ହୋଇଥିଲା ପରି ଟୁକୁର ଟୁକୁର ବାକିଆ କାମ ଯାହା କିଛି ଅଛି, ତାକୁ ହାତ କଡେ କଡ଼େ ରଖିବି, ସୁବିଧା ଦେଖି ମଝିରେ ମଝିରେ ସେସବୁର ଲେଣ୍ଠା ମଧ୍ୟ ଛିଣ୍ଡେଇଦେବି । ମାତ୍ର ମୋର ଏଇ ସରଳ ଚିନ୍ତାର ଅଙ୍କଟଳକୁ କୁଟିଳ କାଳ କୁଟ୍ମଳରୁ ହିଁ ବିପର୍ଯ୍ୟସ୍ତ କରିଦେଲା ।

'ଏକସ୍ୟ ଦୁଃଖସ୍ୟ ନ ଯାବଦନ୍ତଂ, ତାବଦ୍ଦ୍ୱିତୀୟଂ ସମୁପାଗତଂ ମେ'—ଗୋଟାଏ ଅସ୍ୱାଭାବିକ ବିପଦର କବଳରୁ ସମ୍ପୂର୍ଣ୍ଣ ମୁକ୍ତ ନ ହେଉଣୁ ଦ୍ୱିତୀୟ ଭୟାନକ ବିପଦ କରାଳ ମୁଖ ବ୍ୟାଦାନ କରି ଅଜଗର ପ୍ରାୟ ମୋତେ କବଳିତ କରିବାକୁ ଆସିଗଲା । ୧୯୮୪ର ମେ ମାସ ୨୪ ତାରିଖ ଗୁରୁବାର । ପ୍ରଚଣ୍ଡ ଜ୍ୟେଷ୍ଠର ଜ୍ୱାଳାମୁଖୀ ଦ୍ୱିପ୍ରହର ବେଳା । ଜଣେ ଆଗନ୍ତୁକ ଭଦ୍ରବ୍ୟକ୍ତିଙ୍କ ସହିତ ମୋ ନିରୋଳା କକ୍ଷରେ ବଡକି ଗପୁଥିଲାବେଳେ ହଠାତ୍ ମୋର ମୁଣ୍ଡ ପ୍ରବଳଭାବରେ ବୁଲାଇଦେଇ ବସିଥିବା ଚୌକିର ଡାହାଣ ବାଡ଼ାକୁ ଢଳିପଡ଼ିଲା—ଭାଗ୍ୟ ସଳଖରୁ ସଂଜ୍ଞା ଲୋପ ପାଇ ନଥିଲା । ମୁହୂର୍ତ୍ତକ ମଧ୍ୟରେ ମସ୍ତକର ଦକ୍ଷିଣାର୍ଦ୍ଧ ବୋଦକା ପାଲଟିଗଲା; ତତ୍ସଙ୍ଗେ ଏକା ସମୟରେ ଡାହାଣ ବାସାରନ୍ଧ୍ର ହୋଇଗଲା ଶ୍ୱାସଚଳାଚଳଶୂନ୍ୟ ନିଷ୍କ୍ରିୟ ଓ ଡାହାଣ କର୍ଣ୍ଣକୁହର ତାବଦା; ଆଉ ଡାହାଣ ଢୋଲାରୁ ହଜିଗଲା ପୂର୍ବର ଖରଶାଣ ଦୀପ୍ତି । ଡାକ୍ତର ନାରାୟଣ ଦାସଦାଶଙ୍କ ସତର୍କତା-ମୂଳକ ଚେତାବନୀ ବାଣୀ 'ଅତି ଲେମ୍ବୁ ଚପୁଡ଼ିଲେ ପିତା' 'ସର୍ବମତ୍ୟନ୍ତଗର୍ହିତମ୍' ଏବେ ମୋର ମନେପଡ଼ି ହୃତ୍କମ୍ପ ସୃଷ୍ଟି କଲା । ସଂଜ୍ଞସ୍ତ ଆଗନ୍ତୁକ ଜଣକ ମତେ କୌଣସିମତେ ଚୌକିରୁ ଆଣି ପାଖ ଖଟରେ ଶୁଆଇଦେଲେ । ଏଥରଟା ବିପଦର ତ୍ରିମୁଖୀ ସଶ୍ରୁ ଆଣି ଆକ୍ରମଣ—ରକ୍ତଚାପ, ପକ୍ଷାଘାତ ଓ ମୂତ୍ରକୃଚ୍ଛ୍ର (ମଧୁମେହ) ଏହି ତିନି ବ୍ୟାଧିର ସମକାଳୀନ ସମ୍ମିଳିତ ଅଭିଯାନ । ବୋଧହୁଏ ମୋ ରାଶିଚକ୍ର ଅନୁସାରେ ଗୁରୁବାରଟା ମୋ' ପକ୍ଷରେ ସାଂଘାତିକ ଘାତବାର, କାରଣ ପାଦ ଖସି ଘୋର ପ୍ରମାଦ ଘଟିଥିବା ପ୍ରଥମ ବିପଦର ବାର (୩-୯-୧୯୮୧) ଥିଲା ଗୁରୁବାର ଏବଂ ଏହି ଦ୍ୱିତୀୟ ବିପତ୍ପାତର ବାର ମଧ୍ୟ ଗୁରୁବାର ।

ରୋଗବ୍ୟାଧି ବି ମଙ୍ଗଳମୟ ଭଗବାନଙ୍କର ସଦୟ ଦାନ ବୋଲି ମୋର ବିଶ୍ୱାସ । ତେଣୁ ଭଗବାନଙ୍କ ନିକଟରେ କୃତଜ୍ଞ ରହି ରୋଗବ୍ୟାଧିଜନିତ ଦୁଃଖକଷ୍ଟକୁ ମୁଣ୍ଡପାତି ସହିଗଲେ ପୁଣ୍ୟାର୍ଜନ ହୁଏ ଏବଂ ଦୁଷ୍କୃତିଜାତ ପାପପଙ୍କ ଧୋଇହୋଇଯାଏ । ବ୍ୟାଧି-ଭୋଗ ରୂପ ପ୍ରାୟଶ୍ଚିତ୍ତ ପୂର୍ବଜନ୍ମର କଳୁଷଘଟିତ ଆବିଳତାକୁ ନିର୍ମଳ କରିବାରେ ନିର୍ମଳା ପରି ସହାୟକ ହୋଇଥାଏ । ମାଟିର ଏ ମର କଳେବର ମାଟିରେ ମିଶିବ ଦିନେ, ତା' ପ୍ରତି ଏତେ ଯତ୍ନାଦର କାହିଁକି, ତା'ର ସୁରକ୍ଷାପାଇଁ ଏତେ ଚିନ୍ତାଭାର କାହିଁକି—ଏହି ଚାର୍ବାକ ମତବାଦର ମୁଁ ଜଣେ ନିଷ୍ଠାପର ଉପାସକ । ଏଣୁ ନିଜ ସ୍ୱାସ୍ଥ୍ୟ ପ୍ରତି ମୁଁ ଚିର ଅଯତ୍ନବାନ୍ (ଅର୍ଥାତ୍ ଇଚ୍ଛାକୃତଭାବରେ ଯତ୍ନହୀନ) । ଦେହରେ ମୁଣ୍ଡରେ କେବେ ତେଲ ନ ଲଗାଇବା, ସ୍ନାନବେଳେ ଗାମୁଛାରେ ଗାତ୍ରମାର୍ଜନ ନ କରିବା, ଦର୍ପଣରେ ମୁଖ ନ ଦେଖିବା, ମସ୍ତକର କେଶକୁ ଚିରୁଣିଚାଳନାଦ୍ୱାରା ନ ସଜାଇବା, ଦେହଲଗା ସାବୁନ ବ୍ୟବହାର ନ କରିବା—ଏହିସବୁ ନେତିବାଚକ ନିୟମକୁ ନିୟମିତଭାବରେ ପାଳନ କରିବାରେ ମୁଁ ସଦା ଅଭ୍ୟସ୍ତ । କେବଳ ଏତିକି ନୁହେଁ, ବାର୍ଦ୍ଧକ୍ୟରେ ମଝେ ମଝେ ବରାବର ସ୍ୱାସ୍ଥ୍ୟ ପରୀକ୍ଷା କରାଇବାର ଆବଶ୍ୟକତା ସଂକ୍ରାନ୍ତ ଡାକ୍ତରୀ ପରାମର୍ଶ ପ୍ରତି ମଧ୍ୟ

ମୁଁ ଇଚ୍ଛା କରି ଉଦାସୀନ ରହୁଥିଲି । ଏହା ବୋଲି ଅନ୍ୟମାନଙ୍କୁ ମୁଁ କେବେହେଲେ ମୋ ନେତିବାଚକ ନୀତିରେ ଦୀକ୍ଷିତ ହେବାକୁ ପ୍ରବର୍ତ୍ତାଇ ନାହିଁ କି ବାଧ୍ୟ କରିନାହିଁ । 'ଶରୀରମାଦ୍ୟଂ ଖଳୁଧର୍ମସାଧନମ୍' ବାକ୍ୟକୁ ପାଳନ କରୁଥିବା ସାବଧାନୀ ଲୋକଙ୍କ ବିଶ୍ୱାସରେ ବି ମୁଁ ମୋଟେ ସୁଦ୍ଧା ବାଧା ସୃଷ୍ଟି କରିନାହିଁ । ଏହା ସ୍ୱତଃସିଦ୍ଧ ଯେ, କାହାରି ବ୍ୟକ୍ତିସ୍ୱାତନ୍ତ୍ର୍ୟ ବା ସ୍ୱାଧୀନ ମତବାଦ ଉପରେ ହସ୍ତକ୍ଷେପ କରିବାର ଅଧିକାର ଅନ୍ୟର ନାହିଁ । ସ୍ଥାନକାଳପାତ୍ର ନିର୍ବିଶେଷରେ କେବଳ ସଦ୍‌ଗୁରୁଙ୍କର ଉପଦେଶ ବା ସିଦ୍ଧାନ୍ତ ବାକ୍ୟ ହିଁ ଶିରୋଧାର୍ଯ୍ୟ ଓ ବିନା ଯୁକ୍ତିରେ ଗ୍ରହଣୀୟ ।

ଯାହାହେଉ, ମୋ ପାଖରେ ସେତେବେଳେ ରହୁଥିବା ଦୁଇ ପୁତ୍ର ସୌମ୍ୟେନ୍ଦ୍ର ଓ ଶୈଳେନ୍ଦ୍ରଙ୍କ ଉଦ୍ୟମରୁ ଆସୋସିଏଟ୍ ପ୍ରଫେସର୍ ଡାକ୍ତର ନୃସିଂହ ମିଶ୍ର ଓ ପ୍ରଫେସର୍ ଡାକ୍ତର ଗୋପାଳ ମିଶ୍ର ଦୁଇ ଭେଷଜବିଶାରଦ ଆଦ୍ୟରୁ ଏକ ପରେ ଏକ ମୋର ଚିକିତ୍ସାନିୟନ୍ତ୍ରଣ ଭାର ନେଇଥିଲେ । ୧୯୮୫ ଫେବୃଆରିଠାରୁ ରୋଗିବନ୍ଧୁ ଯୁବଡାକ୍ତର ଶିଶିରଙ୍କର ମିଶ୍ର, ଏମ୍ ଡି.ଙ୍କ ଶୃଙ୍ଖଳିତ ନିୟନ୍ତ୍ରଣାଧୀନରେ ରହିବା ଫଳରେ ମୋର ପୂର୍ବ ମନୋବଳ, ମସ୍ତିଷ୍କବଳ ଓ ଶାରୀରିକ ସ୍ଫୂର୍ତ୍ତି ଶନୈଃ ଶନୈଃ ଫେରୁଛି; କିନ୍ତୁ ବ୍ୟାଧି-ଉପସର୍ଗର ସ୍ଥାୟୀ କୁପ୍ରଭାବ ଓ ବାର୍ଦ୍ଧକ୍ୟର ବର୍ଦ୍ଧିଷ୍ଣୁ ଚାପରେ ଚାଲିବାର ଶକ୍ତି କ୍ରମଶଃ ଲୋପ ପାଇବା ଆଡ଼କୁ ମୁହାଁଇଲା ପରି ଆଶଙ୍କା ହେଉଛି । ମୋର 'ଦୁର୍ଗତି', ଆକ୍ଷରିକ ଅର୍ଥରେ କହିବାକୁ ଗଲେ, ଏବେ 'ବିନା ଯଷ୍ଟିସହାୟେନ ପାଦମେକଂ ନ ଗଚ୍ଛାମି' ଅବସ୍ଥାକୁ ଆସିଯାଇଛି ।

ଡାକ୍ତର ଶିଶିରଙ୍କର ନିଜେ ଜଣେ ଦରଦୀ କବି ଓ ସିଦ୍ଧହସ୍ତ ଲେଖକ । ତାଙ୍କ ହୃଦୟ କବିଜନୋଚିତ ସମ୍ବେଦନାର ଏକ ମୁକ୍ତଦ୍ୱାର ଶିବିର । ତେଣୁ ପଞ୍ଚାବନ ବର୍ଷ କାଳ ଦିନରାତି ଖଟି ଖଟି ଶ୍ରମକ୍ଲିନ୍ନ ଅବସନ୍ନ ହୋଇପଡ଼ିଥିବା ଦକ୍ଷିଣ ହସ୍ତକୁ ମୋର ଆଉ କିଛି କାଳ କଲମଲଙ୍ଗଳଚାଳନା ପାଇଁ କର୍ମକ୍ଷମ ରଖିବାକୁ ଯଥାସମ୍ଭବ ଯତ୍ନ କରିବା ତାଙ୍କ ପକ୍ଷରେ ସ୍ୱାଭାବିକ ହୋଇପଡ଼ିଛି । ତାଙ୍କ ଚିକିତ୍ସାର ସୁଫଳ ଓ ରୋଗୋପଶମ-ପ୍ରତିଶ୍ରୁତିର ପ୍ରୋତ୍ସାହନ ଯୋଗୁଁ ମୁଁ ଯୋଡ଼ିଏ ବଡ଼ କାମ ହାତକୁ ନେବାକୁ ସାହସ କଲି ଏବଂ ଯୋଡ଼ିକଯାକ ଶେଷ ମଧ୍ୟ କରିପାରିଲି । ଏହି ଦୁଇ କାମ ମଧ୍ୟରୁ ଗୋଟିଏ ହେଉଛି ସଙ୍କଳନ ଓ ଅପରଟି ସଂସ୍କରଣ । ୧୯୮୫ ଅଧାରୁ ୧୯୮୭ ପୁରା ଅଢ଼େଇବର୍ଷକୁ ଏଥିପାଇଁ ନିରବଚ୍ଛିନ୍ନ ଭାବରେ ଉତ୍ସର୍ଗ କରିବାକୁ ପଡ଼ିଛି । ଅବଶ୍ୟ ସ୍ୱୀକାର କରୁଛି ଯେ, ଏହି ସମୟବ୍ୟାପ୍ତି ମଧ୍ୟରେ ସ୍ୱାସ୍ଥ୍ୟପ୍ରତି କୌଣସି ଆଞ୍ଚ ନଆସିବା ପାଇଁ ବିଜ୍ଞ ଡାକ୍ତର ମହାଶୟ ମୋ ଉପରେ କେତେକ କଟକଣାର ଯେଉଁ 'ହ୍ୱିପ୍' ଜାରି କରିଥିଲେ, ପୋଷା ମେଷ-ପ୍ରାୟ ମୁଁ ତାକୁ ଗାରେ ଗାରେ ପାଳନ କରିଥିଲି ।

ସଙ୍କଳନ ଗ୍ରନ୍ଥଟି ହେଉଛି 'କବିତା ସଞ୍ଚୟନ' । ୧୯୧୮ ମସିହାଠାରୁ ମୋ କବିତା ମାସିକ ପତ୍ରିକାରେ ପ୍ରକାଶ ପାଇବାକୁ ଆରମ୍ଭ କରିଥିଲା ଏବଂ ୧୯୭୩ରେ ପରମପୂଜ୍ୟା

ମୋ ଜନନୀ ମୁକ୍ତାଦେବୀଙ୍କ ଦେହାନ୍ତ ଘଟିବା ସଙ୍ଗେ ମୋ କବିତାରଚନାର ମଧ୍ୟ ନିର୍ବାଣପ୍ରାପ୍ତି ଘଟିଥିଲା । କବିତା ଲେଖିବାକୁ ମୁଁ ଖୁବ୍ ଉତ୍ସୁକ ଓ ଉତ୍ସାହୀ ହେଉଥିଲି, ମାତ୍ର ସେମାନ ପତ୍ରିକାରେ ବାହାରିଯିବା ପରେ ପରେ ମୋ ଧମନୀରେ ଆସିଯାଉଥିଲା ଶୀତଳତା ଓ ଶିଥିଳତା । ସେହିପରି କବିତାର କି ମୂଳ ଲେଖ କି ମୁଦ୍ରିତ କପି କୌଣସିଟାକୁ ଏକ ନିର୍ଦ୍ଦିଷ୍ଟ ନିରାପଦ ସ୍ଥାନରେ ସାଇତିରଖିବାର ପ୍ରବୃତ୍ତିଗତ ଅଭ୍ୟାସ ମୋଟେ ମୋର ନଥିଲା । ମୋ ପ୍ରକୃତି ଥିଲା ସୃଜନ ବେଳକୁ ପ୍ରତ୍ୟୁତ୍ପନ୍ନ; କିନ୍ତୁ ରକ୍ଷଣ ବେଳକୁ ଦୀର୍ଘସୂତ୍ରୀ । ସେତେବେଳେ କ'ଣ ଭାବିଥିଲି, ଦିନେ ଏସବୁକୁ ଏକତ୍ର ଠୁଳାଇ ସଙ୍କିତାକାରରେ ସଙ୍କଳନ କରିବାର ଆବଶ୍ୟକତା ପଡ଼ିବ ବୋଲି ? ତେଣୁ ସେଗୁଡ଼ିକ କିଏ କେଉଁଠି ପଡ଼ିଥିଲା ଖୋଜି ବାହାର କରିବାକୁ ବହୁତ ସମୟ ଓ ପ୍ରଭୂତ ଶ୍ରମ ଲୋଡ଼ା ହେଲା । ଯାହାହେଉ , ୧୯୮୫ ଶେଷ ଆଡ଼କୁ ମୋ 'ସାହିତ୍ୟସେବା ଟ୍ରଷ୍ଟୀ'ର ପଞ୍ଚମ ଅବଦାନ **କବିତା ସଞ୍ଚୟନ** ମୁଦ୍ରଣୀୟ ପାଣ୍ଡୁଲେଖର ଆକାର ପାଇ କବିତାପ୍ରିୟ ବନ୍ଧୁ ଶ୍ରୀ ଗୋପୀନାଥ ସାହୁଙ୍କ ମାରଫତରେ ଗଚ୍ଛିତ ରହିଲା ।

ଦ୍ୱିତୀୟଟି ସଂସ୍କରଣ ଗ୍ରନ୍ଥ ବୋଲି ଊର୍ଦ୍ଧ୍ୱରେ ଯାହା ସୂଚାଇଥିଲି, ସେଇଟି ହେଉଛି ମୋର ଏଇ ଆତ୍ମଚରିତ **ହଜିଲା ଦିନର ସ୍ମୃତି** । ଏହା ହେଉଛି ମୋ 'ସା. ସେ. ଟ୍ରଷ୍ଟୀ'ର ଷଷ୍ଠ ଅବଦାନ ।

ଅନୁକୋପମ ଲେକରତ୍ନ ଡକ୍ଟର୍ କୁଞ୍ଜବିହାରୀ ଦାଶ ମୋର ଏହି ଜୀବନକାହାଣୀ ଲେଖାର ପ୍ରବର୍ତ୍ତୟିତା ଓ ପ୍ରେରଣାଦାତା । ସେ ୧୯୭୮ ମସିହାରେ ମୁଦ୍ରିତ ହେବାକୁ ଯାଉଥିବା ତାଙ୍କ **ଲିଖିତ** 'ଜୀବନାୟନ'ରେ ସନ୍ନିବେଶିତ କରିବାପାଇଁ ମୋ'ଠାରୁ ମୋ ସଂକ୍ଷିପ୍ତ ଜୀବନୀ ସଂଗ୍ରହ କରିବାକୁ ଆସିଥିଲେ । ସେତେବେଳେ ମୁଁ କେତେକ ପାରିବାରିକ ଗୁରୁକର୍ତ୍ତବ୍ୟଜନିତ ବ୍ୟସ୍ତତାବଶତଃ ପ୍ରକୃତିସ୍ଥ ଅବସ୍ଥାରେ ନଥିବାରୁ ତାଙ୍କ ସ୍ୱହଦା ସମସ୍ତ ମଧ୍ୟରେ ମୋ ଜୀବନୀର ଚୁମ୍ବକ ବିବରଣ ଯୋଗାଇପାରିଲି ନାହିଁ । 'ଜୀବନାୟନ'ର ଏକାଧିକ ଭାଗ ଏକ ପରେ ଏକ ମୁଦ୍ରିତ ହେବାକୁ ଲଗିଲା; ମୋ ଜୀବନକାହାଣୀ କିନ୍ତୁ ସେଥିରୁ କୌଣସିଟିରେ ସ୍ଥାନ ପାଇବାର ସୁଯୋଗ ନେଇପାରିଲା ନାହିଁ । କୁଞ୍ଜବିହାରୀଙ୍କର ଇଚ୍ଛା ଥିଲା, ମୁଁ ମୋ ଆତ୍ମଲିପିକୁ ଅଂଶ ଅଂଶ କରି କ୍ରମାନ୍ୱୟେ ତାଙ୍କୁ ଯୋଗାଇଥାନ୍ତି, ସେ ତହିଁରୁ ପ୍ରୟୋଜନୀୟ ଉପାଦାନମାନ ଉଦ୍ଧୃତ କରି ତାଙ୍କ ଗଜଫିତା ମାପମତେ ସୁନ୍ଦର ନିବନ୍ଧଟିଏ ପ୍ରସ୍ତୁତ କରିଥାନ୍ତେ । ମୋର ସମ୍ପୂର୍ଣ୍ଣ ଆତ୍ମଚରିତଟି ମଧ୍ୟ ସେହି ସୂତ୍ରରେ ଲେଖିହୋଇଯାଇଥାନ୍ତା । ତେଣୁ ଅଗତ୍ୟା ମୁଁ ବେଳେ ବେଳେ କିଛି କିଛି ସମୟ ଖୋଜି କିଛିପରିତିରେ ଲେଖୁଥାଏଁ, କୁଞ୍ଜବିହାରୀ ସେଥିରୁ ହଂସବୃତ୍ତିରେ ତାଙ୍କ ଦରକାରୀ କ୍ଷୀର-ତକ ଛାଙ୍କି ନେଉଥାନ୍ତି । ଏହିରୂପେ ଦିନ ମାସ ବର୍ଷ ଗଡ଼ି ଗଡ଼ି ୧୯୮୨ ସରିଲା, ୧୯୮୩ ଅଇଲା—ତଥାପି ଲେଖା ଅଧାକୁ ଟପିପାରିଲା ନାହିଁ । ୧୯୮୩ ମାର୍ଚ୍ଚ ୨୬ ତାରିଖରେ ଲେକରତ୍ନ କୁଞ୍ଜବିହାରୀଙ୍କ ସ୍ୱନକ୍ଷତ୍ର ଜୟନ୍ତୀ ପାଳିତ ହେବାର କଥା । ତତ୍ସହିତ ସେବର୍ଷ

ମୋ ସମ୍ବର୍ଦ୍ଧନା ଉତ୍ସବ ମଧ୍ୟ ତାଙ୍କର ପ୍ରଶସ୍ତ 'ଉଦୟଶ୍ରୀ' ବାସଭବନରେ ଅନୁଷ୍ଠିତ ହେବ ବୋଲି ସ୍ଥିର ହୋଇସାରିଥିଲା । ତେଣୁ ସାକ୍ଷାତ୍କାର ଭିତ୍ତିରେ ସେ ମୋ ଜୀବନର ଅବଶିଷ୍ଟ ସାର ସାର ବୃତ୍ତାନ୍ତ ସଂଗ୍ରହ କରିନେଇ ନିବନ୍ଧଟିର ଲେଖା ଶେଷ କରିଦେଲେ । ସେହି ଦୀର୍ଘ ନିବନ୍ଧଟିକୁ ବିରାଟ ସମ୍ବର୍ଦ୍ଧନା ସଭାରେ ସେ ପାଠ କରିଥିଲେ । ଅଧିକନ୍ତୁ ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ଲେଖକରତ୍ନ କୃତ୍ତିବାସ ୧୯୮୫ରେ ପ୍ରକାଶିତ ତାଙ୍କ 'କବିକାହାଣୀ' ଗ୍ରନ୍ଥରେ ମୋର ସେହି ଜୀବନକାହାଣୀକୁ ଏକ ବିଶିଷ୍ଟ ସ୍ଥାନ ଦେଇଛନ୍ତି ।

ମୋ ରଚିତ କବିତାଗୁଡ଼ିକର ସଙ୍କଳନ କାର୍ଯ୍ୟ ପୂରା ତୁଟିଗଲା ପରେ ଅର୍ଦ୍ଧଲିଖିତ ଆତ୍ମଚରିତର ଅବଶିଷ୍ଟାଂଶ ଲେଖିବାପାଇଁ ପ୍ରତ୍ୟହ ଘଣ୍ଟାଏରୁ ଦି' ଘଣ୍ଟା ପର୍ଯ୍ୟନ୍ତ ଉତ୍ସର୍ଗ କରିବାକୁ ପଣ ନେଲି । ଶାରୀରିକ ବ୍ୟାଧି ଓ ବାର୍ଦ୍ଧକ୍ୟରୂପୀ ବ୍ୟାଧି ସହିତ ଶାନ୍ତିରହିତ୍ୟ ଆଧି ମିଶି ମତେ ଅଚଳ ମହାମେରୁ କରିଦେବାକୁ ବସିଥିଲାବେଳେ ପ୍ରତିରୋଧକ ଔଷଧସେବନ ତାହାକୁ କିଯତ୍ପରିମାଣରେ ପ୍ରତିହତ କରୁଥିବାରୁ ମୁଁ ମନଦମ୍ଭଦ୍ୱାରା ହିଁ ମୋ କଲମର ଓଲମବଲମ ଗତିକୁ ଯଥାସମ୍ଭବ ସଂଯତ ଓ ନିୟନ୍ତ୍ରିତ କରାଇପାରିଛି, ଯାହାଫଳରେ ଆତ୍ମଚରିତର ଅବଶିଷ୍ଟାଂଶ ଲେଖା ଝିମେଇ ଝିମେଇ ଆଗେଇବାକୁ ଲାଗିଲା ଏବଂ ଠିକ୍ ଦୁଇ ବର୍ଷରେ (୧୯୮୬ ଆରମ୍ଭରୁ ୧୯୮୭ ଶେଷ) ପୂର୍ଣ୍ଣତାପ୍ରାପ୍ତ ହୋଇପାରିଲା ।

ମୋର ଏକମାତ୍ର ଜୀବନସଙ୍ଗୀ ସୁଖେଦୁଃଖେ ସଦା ସୁହୃଦ୍ 'ଗ୍ରନ୍ଥମନ୍ଦିର' ପ୍ରତିଷ୍ଠାତା ଶ୍ରୀଧର ମହାପାତ୍ରଙ୍କର ଜୀବନଲୀଳା ସାଙ୍ଗ ହୋଇଗଲା ୧୯୮୭ ନଭେମ୍ବର ୨୫ ତାରିଖ (ମାର୍ଗଶିର ଶୁକ୍ଳ ପଞ୍ଚମୀ ବୁଧବାର) ରାତି ଗୋଟାଏ ବେଳେ । ତାଙ୍କୁ ଜଣେ ଉଜ୍ଜ୍ୱଳ ପୁରୁଷ ବା ଶୁକ୍ଳ ପୁରୁଷ ବୋଲି ବୁଝିବାକୁ ହେବ, କାରଣ ତାଙ୍କର ଆବିର୍ଭାବ ମଧ୍ୟ ହୋଇଥିଲା ଏହିପରି ଏକ ଶୁକ୍ଳ ପଞ୍ଚମୀ ତିଥିରେ, ଭାଦ୍ର ଗୁରୁବାର ଦିନ (ସେପ୍ଟେମ୍ବର ୨ ତାରିଖ ୧୯୦୧) । ମତେ ନିଃସଙ୍ଗ ନିଃସହାୟ କରି ମତେ ଏପାରିର ଅନ୍ଧାରରେ ଏକା ଛାଡ଼ିଦେଇ ହସି ହସି ଚାଲିଗଲେ ସେ ସେପାରିର ଉଜ୍ଜ୍ୱଳ ଧାମକୁ । ଶେଷ ନିଃଶ୍ୱାସପାତର ପ୍ରାୟ ଛଅମାସ ପୂର୍ବେ (୫-୬-୧୯୮୭ ଦିନ ୪ଟାରେ) ମୋ ପାଖକୁ ସେ ଯେଉଁ ଶେଷ ପତ୍ର ଦେଇଥିଲେ ନିଜର ଏକ ପୌତ୍ର ହାତରେ ଲେଖାଇ, ତା'ର ଅବିକଳ ନକଲ ତଳେ ଉଦ୍ଧାର କରୁଛି :

ପ୍ରିୟ କୃଷ୍ଣବାବୁ,

ଆଶା, ଆପଣଙ୍କ ସ୍ୱାସ୍ଥ୍ୟର ଉନ୍ନତି ଘଟିଥିବ । କିନ୍ତୁ ମୋର ସ୍ୱାସ୍ଥ୍ୟ ଅତି ମନ୍ଥରଭାବେ ନିମ୍ନମୁଖୀ ହେଉଛି । ଆପଣ ସେଦିନ ମୋତେ ସାକ୍ଷାତ୍ କରିବାପାଇଁ ଆସିଥିଲେ । କିନ୍ତୁ ମୁଁ ଗତ ଦଶ ମାସ ହେଲା ଶଯ୍ୟାଶାୟୀ ହୋଇ ବନ୍ଧୁତ୍ୱ ପ୍ରତି ଜଳାଞ୍ଜଳି ଦେଇ ପଡ଼ିଛି । ଏହା ମୋର ଶେଷ ପତ୍ର ମନେକରିବେ । ଭଗବାନଙ୍କର ଇଚ୍ଛା ଥିଲେ ପରଜନ୍ମରେ ସାକ୍ଷାତ୍ ହେବ ଏବଂ ବନ୍ଧୁତ୍ୱର ପୁନରୁଦ୍ଧାର ହୋଇପାରିବ । ଇତି ।

ଆପଣଙ୍କର ସ୍ନେହାଧୀନ

ସ୍ୱାଃ ଶ୍ରୀଧର ମହାପାତ୍ର

ଅନ୍ତିମ ଦଶାର ଏହି ଶେଷ ପଦର ଭାଷାରୁ ସହଜେ ଅନୁମେୟ, ତାଙ୍କ ମୋ ଅନ୍ତର ମଧ୍ୟରେ ବହୁଥିବା ବନ୍ଧୁତ୍ୱର ଫଲ୍‌ଗୁ ପରସ୍ପର ଥିଲା କେଡ଼େ ନିବିଡ଼ ନିଘନ, କେଡ଼େ ଅନ୍ତରଙ୍ଗ ଆନ୍ତରିକ, କେଡ଼େ ନିର୍ମଳ ନୈସର୍ଗିକ, କେଡ଼େ ଗଭୀର ପାତାଳଫୁଟା । ତାଙ୍କ ତିରୋଧାନରେ ସେହି ଅନ୍ତଃସ୍ରୋତା ଫଲ୍‌ଗୁ ଏବେ ଶୁଷ୍କ, ମରୁଝାଞ୍ଜିମୟ ।

ପ୍ରତିଷ୍ଠାତା ଶ୍ରୀଧରବାବୁଙ୍କ ନିର୍ଦ୍ଦେଶନାନୁଯାୟୀ ଗତ ପନ୍ଦର ବର୍ଷରୁ ଊର୍ଦ୍ଧ୍ୱକାଳ ହେଲା ତଦୀୟ ଦ୍ୱିତୀୟ ପୁତ୍ର ଅଭିରାମ ପରିଚାଳକରୂପେ 'ଗ୍ରନ୍ଥମନ୍ଦିର'ର ପୂର୍ଣ୍ଣ ଦାୟିତ୍ୱ ସୁଚାରୁରୂପେ ନିର୍ବାହ କରିଆସୁଥିଲେ । ପିତୃବିୟୋଗ ପରେ ସେ ବର୍ତ୍ତମାନ ଉତ୍ତରସାଧକରୂପେ ସେହି ସୁପ୍ରତିଷ୍ଠ ପ୍ରକାଶନ ପ୍ରତିଷ୍ଠାନଟିର ସ୍ୱତ୍ୱାଧିକାରୀ । ଆୟୁଷ୍ମାନ୍ ଅଭିରାମ ମୋର ପୁତ୍ରପ୍ରତିମ । ଗତ ଅକ୍ଟୋବର୍ (୧୯୮୭)ରେ ସେ ପ୍ରଥମ କରି ମୋ କନିଷ୍ଠ ପୁତ୍ର ଶୈଳେନ୍ଦ୍ରଠାରୁ ଜାଣିବାକୁ ପାଇଲେ ଯେ, ମୁଁ ମୋ ଆତ୍ମଚରିତ ଲେଖୁଛି ଏବଂ ତାହାର ମୁଣ୍ଡି ମରିବା ଦିନ ଆସନ୍ନପ୍ରାୟ, ନିଃସନ୍ଦେହରେ ଚଳିତ ବର୍ଷର ପରିପୂର୍ତ୍ତି ପୂର୍ବରୁ । ବହିଟିର ନାମ ତାଙ୍କ କାନକୁ ବଡ଼ ମଧୁର ଲାଗିଥିଲା । ନବବର୍ଷ (୧୯୮୮)ର ପହିଲା ଦିନ ସେ ମୋ'ଠାରୁ ପାଣ୍ଡୁଲିପି ନେଇ କମ୍ପୋଜ୍ ଆରମ୍ଭ କରାଇବେ ବୋଲି ଐକାନ୍ତିକ ଆଗ୍ରହ ପ୍ରକାଶ କରିଥିଲେ । ସଦ୍ୟ ପିତୃହରାର ଶୋକସନ୍ତପ୍ତ ଯେଜନ କାଳାତିପାତ କରୁଥିବା ଅବସ୍ଥାରେ ମଧ୍ୟ ସେ ତାଙ୍କ ସ୍ୱତଃପ୍ରବୃତ୍ତ ପ୍ରତିଶ୍ରୁତିକୁ ମୋ ଆଗରେ ଏକାଧିକବାର ଆଉଡ଼ାଇଛନ୍ତି ଏବଂ ପୂର୍ବନିର୍ଦ୍ଧାରଣମତେ 'ହଜିଲା ଦିନର ସ୍ମୃତି'ର ଲେଖା ସମାପ୍ତି ଖବର ପଚାରି ବୁଝିଛନ୍ତି ।

ମୋର ଆଉ ଗୋଟିଏ ସଙ୍କଳନ କାମ ବି ବାକୀ ରହିଛି । ନିଜର ଦୀର୍ଘସୂତ୍ରିତା ଦୋଷରୁ ତା' ପାଇଁ ଅତୀତରେ ସମୟ ଖଟାଇପାରି ନଥିଲି । ଏବେ ଚକଗୁଡ଼ ନିଜ୍ଜିକ ଗଡ଼ି-ଆସିଥିବା ଅବସ୍ଥାରେ ସେକଥାକୁ ମୁଁ ହେଜ ପସ୍ତାଇହେଉଛି—'ନିର୍ବାଣଦୀପେ କିମୁ ତୈଳଦାନମ୍, ଚୌରେ ଗତେ ବା କିମୁ ସାବଧାନମ୍' । ଅନେକ ସମୟରେ ଆଶାର ଶିଖାକୁ ହତାଶାର ବତାସ ଗ୍ରାସିନେଉଛି । ଆତ୍ମପ୍ରତ୍ୟୟ ମୋଠାରୁ ବିଦାୟ ନେଇ ଚାଲି-ଯାଇଛି । ମୋ ଭଲେଣି ମତେ ଭେଳିକ ଦେଖାଉଛି । ତେଣୁ ପଦେ ପଦେ ପ୍ରତାରିତ ହୋଇ ଭକୁଆ ବନିବି ବୋଲି ମୋର ସଦାବେଳେ କୋକୁଆଭୟ । ଏଥିକୁ କେବଳ ଚକାଡୋଳା ଭରସା । ସେ କୃପାକଟାକ୍ଷ ଢାଳି ମୋ ହାତ ଓ ଆଖିକୁ ସକ୍ରିୟ ଓ ସତେଜ ରଖିଲେ ଇତସ୍ତତଃ ବିକ୍ଷିପ୍ତଭାବରେ ରହିଥିବା ବିଭିନ୍ନ ପତ୍ରିକା ଓ ସ୍ମରଣିକାରେ ପ୍ରକାଶିତ ମୋର ନିବନ୍ଧାଦି ଗଦ୍ୟରଚନାଗୁଡ଼ିକୁ ଗୁଚ୍ଛୀକୃତ କରି ଖଣ୍ଡିଏ **ଗଦ୍ୟସଞ୍ଚୟନ** ପ୍ରସ୍ତୁତ କରନ୍ତି ଏବଂ ତାହା ହୁଅନ୍ତା ମୋ 'ସା. ସେ. ଝୁଙ୍ଗୀ'ର ସପ୍ତମ ଅବଦାନ । ଠାକୁରେ ବଳ ଦେଲେ ଆହୁରି ଖଣ୍ଡେଅଧେ ମଧ୍ୟ ଲେଖନ୍ତି ବୋଲି ଅଭିଳାଷ ଅଙ୍କୁରୁଛି—'ଆଶା ବୈତରଣୀ ନଦୀ' । କିନ୍ତୁ ଏଥୁଁ ଅଧିକେ ଆଶା ମୋ ପକ୍ଷରେ ବଡ଼ମ୍ଭନା ବୋଲି ଭିତରୁ ଆତ୍ମାପୁରୁଷ ହାଉଡ଼ିରେ ଠୁକେଇ ଚେତେଇଦେଉଛି ।

କୃତଜ୍ଞତାର ସ୍ୱୀକାରୋକ୍ତି—

(୧) ବୁଦ୍ଧିଜୀବୀ, ମସିଜୀବୀ ଓ ଚିନ୍ତାଜୀବୀମାନଙ୍କ ଅନୁଭବ, ଅନୁଭୂତି ଓ ଅନୁଧ୍ୟାନପ୍ରସୂତ ପ୍ରାୟ ସମାନ ମତରୁ ସ୍ପଷ୍ଟ ହୁଏ ଯେ, ବିଭିନ୍ନ ପତ୍ରପତ୍ରିକା ହିଁ ସାହିତ୍ୟିକ-ସାହିତ୍ୟିକାମାନଙ୍କ ସାରସ୍ୱତ ସୃଷ୍ଟିର ଜନ୍ମପୀଠ ବା ସୂତିକାଗାର । ସମ୍ବାଦପତ୍ରିକା ହେଉ ବା ସାହିତ୍ୟ-ପତ୍ରିକା ହେଉ, ଏଥିରୁ ଗୋଟିକର କୋଳରେ ଜନ୍ମଲଭ କରେ ସାହିତ୍ୟିକ ବା ସାହିତ୍ୟିକାର ସାରସ୍ୱତ ଜୀବନ ଏବଂ ବଢ଼େ ମଧ୍ୟ ସେଇ କୋଳରେ । ସୌଭାଗ୍ୟବଶତଃ ମୁଁ ଏହି ସୁଯୋଗ ପାଇଥିବାରୁ ମୋ ସାରସ୍ୱତ ଜୀବନ ପ୍ରକୃତ ପ୍ରସ୍ତରୁ ପରିପୁଷ୍ଟ ଓ ପରିପକ୍ୱ ହୋଇପାରିଛି । ଏଣୁ ଯେଉଁ ଯେଉଁ ପତ୍ରିକା ମତେ ଆଶ୍ରୟ ଦେବାପାଇଁ ବାତ୍ସଲ୍ୟମମତାରେ କୋଡ଼ ପ୍ରସାରିତ କରିଛନ୍ତି, ସେଗୁଡ଼ିକର ସମ୍ପାଦକମାନେ ମୋର ଚିରସ୍ମରଣୀୟ ଏବଂ ହାର୍ଦ୍ଦିକ କୃତଜ୍ଞତାର ଅର୍ଘ୍ୟ ସର୍ବାଦୌ ସେମାନଙ୍କର ପ୍ରାପ୍ୟ । ନିମ୍ନରେ ସେହି ସେହି ପତ୍ରିକା ଓ ସମ୍ପାଦକଙ୍କ କ୍ରମିକ ନାମୋଲ୍ଲେଖ ଧର୍ମତଃ ବିଧେୟ :

୧ । ଆଲୋକ (ଗ୍ରାମୀଣ ମାସିକ ମ. ଇଂ. ସ୍କୁଲପତ୍ରିକା—ସ୍କୁଲସମ୍ପାଦକ ପର୍ଯ୍ୟାୟ-କ୍ରମେ ପରିବର୍ତ୍ତୀ) ।

୨ । ଉତ୍କଳମଧୁପ (ମାସିକ ସ୍କୁଲପତ୍ରିକା, କେବଳ ଗଦ୍ୟ—ସମ୍ପାଦକ ନୀଳମଣି ବିଦ୍ୟାରତ୍ନ) ।

୩ । ସାହିତ୍ୟସୋପାନ (ପ୍ୟାରୀମୋହନ ଏକାଡେମୀର ମୁଖପତ୍ର ତ୍ରୈମାସିକ ସାହିତ୍ୟପତ୍ରିକା—ସମ୍ପାଦକ ଶିକ୍ଷକ ବାଳକୃଷ୍ଣ ମହାପାତ୍ର)

୪ । ସହକାର (ମାସିକ ସାହିତ୍ୟପତ୍ରିକା—ପ୍ରତିଷ୍ଠାତା-ସମ୍ପାଦକ ଲକ୍ଷ୍ମୀନାରାୟଣ ସାହୁ; ନୂତନ ପ୍ରସ୍ଥର ସମ୍ପାଦକ ବାଳକୃଷ୍ଣ କର) ।

୫ । ମୁକୁର (ମାସିକ ସାହିତ୍ୟପତ୍ରିକା—ସମ୍ପାଦକ ବ୍ରଜସୁନ୍ଦର ଦାସ)

୬ । ବାରୁଣୀ (ତ୍ରୈମାସିକ ସାହିତ୍ୟପତ୍ରିକା—ସମ୍ପାଦକ ରାଜକିଶୋର ଦାସ)

୭ । ପଞ୍ଚାମୃତ (ମାସିକ ଶିଶୁପତ୍ରିକା—ଯୁଗ୍ମସମ୍ପାଦକ ଚିନ୍ତାମଣି ଆଚାର୍ଯ୍ୟ, ଅଗସ୍ତି ଦାଶ) ।

୮ । ଜହ୍ନମାମୁ (ମାସିକ ଶିଶୁପତ୍ରିକା—ସମ୍ପାଦକ ବାଳକୃଷ୍ଣ କର)

୯ । ଉତ୍କଳ ସାହିତ୍ୟ (ମାସିକ ସାହିତ୍ୟପତ୍ରିକା—ସମ୍ପାଦକ ବିଶ୍ୱନାଥ କର)

୧୦ । ନବୀନ (ସାପ୍ତାହିକ ସମ୍ବାଦ ଓ ସାହିତ୍ୟ ପତ୍ରିକା—ସମ୍ପାଦକ କୃପାସିନ୍ଧୁ ପଟ୍ଟଦେବ) ।

୧୧ । ଶିଶିର (ମାସିକ ସାହିତ୍ୟପତ୍ରିକା—ସମ୍ପାଦକ କୃପାସିନ୍ଧୁ ପଟ୍ଟଦେବ)

୧୨ । ଡଗର (ମାସିକ ବ୍ୟଙ୍ଗସାହିତ୍ୟ ପତ୍ରିକା—ପ୍ରତିଷ୍ଠାତା-ସମ୍ପାଦକ ଲକ୍ଷ୍ମୀକାନ୍ତ ମହାପାତ୍ର) ।

୧୩ । ନୂଆ ଦୁନିଆ (ସାପ୍ତାହିକ ସମ୍ବାଦ ଓ ସାହିତ୍ୟପତ୍ରିକା—ଯୁଗ୍ମସମ୍ପାଦକ ଶରତ୍ ପଟ୍ଟନାୟକ, ରାମକୃଷ୍ଣ ପତି)

୧୪ । ନବଭାରତ (ମାସିକ ସାହିତ୍ୟପତ୍ରିକା—ସମ୍ପାଦକ ନୀଳକଣ୍ଠ ଦାଶ)

୧୫ । ଆଧୁନିକ (ମାସିକ ସାହିତ୍ୟପତ୍ରିକା—ସମ୍ପାଦକ ଭଗବତୀଚରଣ ପାଣିଗ୍ରାହୀ)

୧୬ । ଜ୍ୟୋତ୍ସ୍ନା (କଟକ ସେକେଣ୍ଡାରୀ ଟ୍ରେନିଂ ସ୍କୁଲର ମୁଖପତ୍ର ମାସିକ ଗଦ୍ୟସାହିତ୍ୟ-ପତ୍ରିକା—ସମ୍ପାଦକ ଶିକ୍ଷକ ରାମଚନ୍ଦ୍ର ମହାପାତ୍ର)

୧୭ । ସାମ୍ମୁଖ୍ୟ (ମାସିକ ସାହିତ୍ୟପତ୍ରିକା—ସମ୍ପାଦକ ମନସ୍ତତ୍ତ୍ୱ-ଅଧ୍ୟାପକ ରାଧାନାଥ ରଥ)

୧୮ । ଉର୍ଜନା (ମାସିକ ସନ୍ତୁସଙ୍ଗ ପତ୍ରିକା—ସମ୍ପାଦକ ରଜତକୁମାର କର) ।

୧୯ । ଶିଶୁଲେଖା (ସରକାରୀ ଶିକ୍ଷା ବିଭାଗର ମାସିକ ଶିଶୁପତ୍ରିକା—ସମ୍ପାଦକ ଅନନ୍ତ ପଟ୍ଟନାୟକ)

୨୦ । ମରୁତୀର୍ଥ (ମାସିକ ସାହିତ୍ୟପତ୍ରିକା—ସମ୍ପାଦିକା ନଳିନୀ ଦେବୀ ରାଉତରାୟ)

୨୧ । ସୂର୍ଯ୍ୟଶିଖା (ସରକାରୀ-କର୍ମଚାରୀ ମହାସଂଘର ମୁଖପତ୍ର ମାସିକ ସାହିତ୍ୟ-ପତ୍ରିକା—ସମ୍ପାଦକ ପତିତପାବନ ପଣ୍ଡା)

(୨) ଭାରତ ଇତିହାସରେ ଜଣେମାତ୍ର 'ଭାସ୍କୋଡ଼ାଗାମା'ଙ୍କ ନାମ ହିଁ ଦେଖିବାକୁ ମିଳେ, ଯେ ଥିଲେ ପର୍ତ୍ତୁଗାଲ୍ ଅଧିବାସୀ ପ୍ରସିଦ୍ଧ ନାବିକ, ସୁନାର ଭାରତକୁ ଆବିଷ୍କାର କରିବାର ଲକ୍ଷ୍ୟ ନେଇ ୧୪୯୮ ଖ୍ରୀଷ୍ଟାବ୍ଦରେ ନିଜ ନାବରେ ସମୁଦ୍ରଯାତ୍ରା କରିଥିଲେ; କିନ୍ତୁ ତାଙ୍କ ଲକ୍ଷ୍ୟ ସଫଳ ହୋଇପାରି ନ ଥିଲା—କେବଳ ୟୁରୋପରୁ ଭାରତ ଅଭିମୁଖରେ ଆସିବାର ଜଳପଥ ମାତ୍ର ହିଁ ଆବିଷ୍କୃତ ହୋଇଥିଲା । କିନ୍ତୁ ଆମ ଓଡ଼ିଶାର ପୁସ୍ତକ-ପ୍ରକାଶନ କ୍ଷେତ୍ରରେ ସେତେବେଳେ (୧୯୨୫ରୁ ୧୯୬୦) ଶ୍ରେଷ୍ଠ ବଡ଼ ଯେତେ ପ୍ରକାଶକ ଥିଲେ, ସେସମସ୍ତଙ୍କୁ ଜଣେ ଜଣେ ଓଡ଼ିଶୀ ଭାସ୍କୋଡ଼ାଗାମା ବୋଲି ଆଖ୍ୟା ଦିଆଯାଇପାରିବ । ପର୍ତ୍ତୁଗିଜ୍ ଭାସ୍କୋଡ଼ାଗାମା ଥିଲେ କେବଳ ମାର୍ଗ-ଆବିଷ୍କାରକ, ଅଥଚ ଓଡ଼ିଶୀ ଭାସ୍କୋଡ଼ାଗାମାମାନେ ଥିଲେ ସ୍ୱ ସ୍ୱ ଲକ୍ଷ୍ୟଭେଦରେ ଧୁରନ୍ଧର ଭରଦ୍ୱାଜ । ସେମାନେ ସର୍ବାଞ୍ଚଳର ସନ୍ଧାନ ନେବା ସଙ୍ଗେ ପ୍ରତିଭାଧର ତରୁଣ ଲେଖକମାନଙ୍କୁ ଆବିଷ୍କାର କରି-ପାରୁଥିଲେ ଏବଂ ପ୍ରତ୍ୟେକଙ୍କ ପାଖରେ ସହସ୍ତ ନିଜ ନିଜ ପ୍ରକାଶନ ସଂସ୍ଥାପାଇଁ ପାଣ୍ଡୁଲିପି ହସ୍ତଗତ କରୁଥିଲେ । ମୁଁ ଏ ସମ୍ପର୍କରେ ଜଣେ ପ୍ରତ୍ୟକ୍ଷ ଅନୁଭବୀ ଓ ଅବଗାହୀ । ଯେଉଁ ପ୍ରକାଶନ ସଂସ୍ଥାସବୁ ଆଦରର ସହିତ ମୋ ସାହିତ୍ୟିକ କୃତିଗୁଡ଼ିକୁ ମୁଦ୍ରିତ ରୂପ ଦେଇଛନ୍ତି ଏବଂ ସେଗୁଡ଼ିକର ଯେଉଁ ଅଧିକାରୀ ସଞ୍ଚାଳକମାନେ ଆଗ୍ରହତା ଓ ଗୁଣଗ୍ରାହିତାଦ୍ୱାରା ମତେ ଅଭିଭୂତ କରିଦେଇଛନ୍ତି, ସେମାନଙ୍କ ଅମୂଲ୍ୟ ସ୍ମୃତି ମୋର ଚିର ଅଭୁଲା । ମୋ ବାଣୀସେବାସରଣୀକୁ କୁସୁମାକୀର୍ଣ୍ଣ କରାଇଥିବା ସେହିସବୁ ସଂସ୍ଥା ଓ ଅଧିକାରୀ/ସଞ୍ଚାଳକଙ୍କ

ଜମିକ ନାମାବଳୀ କୃତଜ୍ଞତାର ପ୍ରତୀକସ୍ୱରୂପ ଏଠାରେ ଉପସ୍ଥାପିତ ନକଲେ ମୋର ନୈତିକ କର୍ତ୍ତବ୍ୟରେ ତ୍ରୁଟି ରହିଯିବ :

୧ । ଷ୍ଟୁଡେଣ୍ଟସ୍ ଷ୍ଟୋର୍, ବ୍ରହ୍ମପୁର (ସଂଗ୍ରାହକ ଦାମୋଦର ରଥ)

୨ । କଟକ ଟ୍ରେଡ଼ିଂ କମ୍ପାନୀ, ବାଲୁବଜାର, କଟକ (ସଂଗ୍ରାହକ ଆକୁଳ ମିଶ୍ର)

୩ । ବୁକ୍ ଡିପୋ, ବାରିପଦା (ଅଧିକାରୀ ବୈଦ୍ୟନାଥ ତ୍ରିପାଠୀ)

୪ । ସାରସ୍ୱତ ଭଣ୍ଡାର, ବାଲୁବଜାର, କଟକ (ଯୁଗ୍ମ ଅଧିକାରୀ ସ୍ୱର୍ଗୀୟ ଭୋଳାନାଥ ନନ୍ଦ, ବାଳକୃଷ୍ଣ କର) ।

୫ । ସାରସ୍ୱତ ଭଣ୍ଡାର, ବାଲୁବଜାର, କଟକ (ଅଧିକାରୀ ସ୍ୱର୍ଗୀୟ ଲୋକନାଥ ନନ୍ଦ) ।

୬ । ନୀଳାଚଳ ପୁସ୍ତକ ଭଣ୍ଡାର, ସିଂହଦ୍ୱାର, ପୁରୀ (ଅଧିକାରୀ ରତ୍ନାକର କର)

୭ । ଉତ୍କଳ ବୁକ୍ ଏଜେନ୍ସି, ରାଣୀହାଟ, କଟକ (ଅଧିକାରୀ ବ୍ରଜବନ୍ଧୁ ଦାଶ)

୮ । କଟକ ପବ୍ଲିସିଂ ହାଉସ୍, ନୟାସଡ଼କ, କଟକ (ଅଧିକାରୀ ଉମାଚରଣ ମହାନ୍ତି) ।

୯ । ୟୁନାଇଟେଡ୍ ବୁକ୍ ହାଉସ୍, ବାଲୁବଜାର, କଟକ (ଅଧିକାରୀ ଗୋକୁଳଚନ୍ଦ୍ର କର) ।

୧୦ । ନ୍ୟୁ ଷ୍ଟୁଡ଼େଣ୍ଟସ୍ ଷ୍ଟୋର୍, ବନୋଦବହାରୀ ରୋଡ୍, କଟକ (ସଞ୍ଚାଳନା-ନିର୍ଦ୍ଦେଶକ ଶ୍ରୀଧର ମହାପାତ୍ର) ।

୧୧ । ଆଲୋକ ସାହିତ୍ୟ ପ୍ରତିଷ୍ଠାନ, ସୁନ୍ଦରୀଷ୍ଟ୍ରୀକ, କଟକ (ଅଧିକାରୀ ସତ୍ୟସୁନ୍ଦର ମିଶ୍ର) ।

୧୨ । ଗ୍ରନ୍ଥମନ୍ଦିର, ବନୋଦବହାରୀ ରୋଡ୍, କଟକ (ଅଧିକାରୀ ଶ୍ରୀଧର ମହାପାତ୍ର; ୧୯୮୮ରୁ ଅଧିକାରୀ ଅଭିରାମ ମହାପାତ୍ର) ।

୧୩ । ନ୍ୟୁ ଷ୍ଟୁଡ଼େଣ୍ଟସ୍ ଷ୍ଟୋର୍ (ପ୍ରାଃ) ଲିମିଟେଡ୍, ବନୋଦବହାରୀ ରୋଡ୍, କଟକ (ଅଧିକାରୀ ଭିକାରୀଚରଣ ଦାସ) ।

୧୪ । ଗ୍ରନ୍ଥଭାଷା ପୁସ୍ତକ ଭଣ୍ଡାର, ବାଙ୍କାବଜାର, କଟକ (ସଂଗ୍ରାହକ ଅନସୂୟାପ୍ରସାଦ ପାଠକ) ।

୧୫ । ଜନଶକ୍ତି ପୁସ୍ତକାଳୟ, ବାଙ୍କାବଜାର, କଟକ (ଅଧିକାରୀ ଜଆମଲ୍ଲ ଲାଲ ଗୁପ୍ତା) ।

୧୬ । ଗ୍ରନ୍ଥଭାଷା ସମବାୟ ପ୍ରକାଶନ, ଗ୍ରନ୍ଥଭାଷା ରୋଡ୍, କଟକ (ସଞ୍ଚାଳକ ଗୋପୀନାଥ ସାହୁ) ।

୧୭ । ଦାଶରଥି ପୁସ୍ତକାଳୟ, ବାଲୁବଜାର, କଟକ (ଅଧିକାରୀ ଅରକ୍ଷିତ ଦାସ)

୧୯୨୪ ମସିହାଠାରୁ ଏଯାବତ୍ ମୋର ଯେତେ ପୁସ୍ତକ ଓ ଗ୍ରନ୍ଥ ଏକାଧିକବାର ପ୍ରକାଶିତ ହୋଇଛୁ, ସବୁଗୁଡ଼ିକର ପ୍ରକାଶନ ମାଧ୍ୟମ ହେଉଛନ୍ତି ଉପର୍ଯ୍ୟୁକ୍ତ ସତରଟି ସଂସ୍ଥା । ମୋ ସାହିତ୍ୟିକ କୃତି-ସମୂହର ଏକ ପୂର୍ଣ୍ଣାଙ୍ଗ ତାଲିକା ନିମ୍ନରେ ପ୍ରଦତ୍ତ ହେଲା :

## ପ୍ରଥମ ସଂସ୍କରଣ

### ୧ । କାବ୍ୟ

୧ । ଋତୁସଂହାର ··· ୧୯୫୨
୨ । ଝଣ୍ଟାଧାର ··· ୧୯୫୩
୩ । ହଂସଦୂତ ··· ୧୯୮୨
୪ । ପିଲାଙ୍କ ଋତୁସଂହାର ··· ଅପ୍ରକାଶିତ

### ୨ । ଗାଥା

୫ । ଗାଥାସ୍ୱପ୍ନ ··· ୧୯୫୯

### ୩ । କବିତା

୬ । କବିତା ସଞ୍ଚୟନ
(ଶିଶୁ କବିତା ସହ) ···ଅପ୍ରକାଶିତ

### ୪ । ନିବନ୍ଧ

୭ । ଗଦ୍ୟ ସଞ୍ଚୟନ ··· ଅପ୍ରକାଶିତ

### ୫ । ନାଟକ ଓ ଲୋକନାଟ୍ୟ

୮ । କର୍ଣ୍ଣାର୍ଜ୍ଜୁନ (ବଙ୍ଗଳା ସଂଳାପର ଅନୁବାଦ; ଗୀତମାନ ଅନୁବାଦକଙ୍କ ରଚନା) ··· ଅପ୍ରକାଶିତ
୯ । ଶର ପ୍ରତାପ (ଲୋକନାଟ୍ୟ) ··· ଅପ୍ରକାଶିତ

### ୬ । ଅଭିଧାନ

୧୦ । New Method English-Oriya Dictionary ··· ୧୯୬୧
୧୧ । ତରୁଣ-ଶବ୍ଦକୋଷ ··· ୧୯୬୬

### ୭ । ଜୀବନୀ ସାହିତ୍ୟ

୧୨ । ବିଲ୍ୱମଙ୍ଗଳ ··· ୧୯୨୫
୧୩ । ସ୍ୱାଧୀନତାର କାହାଣୀ ··· ୧୯୫୪
୧୪ । ଆଦିଯୁଗର ଗଳ୍ପ ··· ୧୯୫୯

## ପ୍ରଥମ ସଂସ୍କରଣ

୧୫ । ବାଗ୍ମୀ ବିଶ୍ୱନାଥ ··· ୧୯୮୪
୧୬ । ସ୍ୱାମୀ ଭୈରବାନନ୍ଦ ··· ୧୯୮୬
୧୭ । ମରୁସମ୍ଭବା ··· ଅପ୍ରକାଶିତ
୧୮ । ଉତ୍କଳ ପତନ ··· ଅପ୍ରକାଶିତ
୧୯ । ହଜିଲା ଦିନର ସ୍ମୃତି (ଆତ୍ମଚରିତ) ·· ୧୯୯୧
୨୦ । ମର ଅମର ··· ଅପ୍ରକାଶିତ

### ୮ । କିଶୋରସାହିତ୍ୟ

୨୧ । ମହାଭାରତ କଥା, ୧ମ ··· ୧୯୨୬
୨୨ । ,, ,, ୨ୟ ··· ୧୯୨୬
୨୩ । ଉପନିଷଦ କଥା, ୧ମ ··· ୧୯୫୪
୨୪ । ,, ,, ୨ୟ ··· ୧୯୫୪
୨୫ । ପୁରାଣପ୍ରଭା, ୩ୟ ··· ୧୯୫୮
୨୬ । ,, ୪ର୍ଥ ··· ୧୯୫୮
୨୭ । ସାଧନା ଓ ସିଦ୍ଧି ୧ମ ୧୯୫୮
୨୮ । ,, ,, ୨ୟ ୧୯୫୮
୨୯ । ,, ,, ୩ୟ ··· ୧୯୫୯
୩୦ । ବଣପାହାଡ଼ର ସାଥୀ ··· ୧୯୬୦
୩୧ । ଆକାଶରହସ୍ୟ ··· ୧୯୬୦
୩୨ । ଜାତକ କାହାଣୀ ··· ୧୯୬୦

### ୯ । ଶିଶୁ ସାହିତ୍ୟ

୩୩ । ଲବକୁଶ ··· ୧୯୨୬
୩୪ । ପରଶୁରାମ ··· ୧୯୨୬
୩୫ । ପୁରାଣ କାହାଣୀ, ୧ମ ··· ୧୯୨୮
୩୬ । ,, ,, ୨ୟ ··· ୧୯୨୮
୩୭ । ଅଭିମନ୍ୟୁ ··· ୧୯୨୮
୩୮ । ଜନମେଜୟ ··· ୧୯୨୮

### ପ୍ରଥମ ସଂସ୍କରଣ



### ଅମର ଚରିତ



### ପ୍ରଥମ ସଂସ୍କରଣ



### ୧୦ । ଶିଶୁ ଉପନ୍ୟାସ

—ସୁନାରାଇଜ ସିରିଜ୍—



—କୁହୁକରାଇଜ ସିରିଜ୍—



—ପରୀମହଲ ସିରିଜ୍—



—ସାଧବଘର କଥା—

## ପ୍ରଥମ ସଂସ୍କରଣ

### ୧୧ । ପାଠ୍ୟ ପୁସ୍ତକ

୯୨ । ପ୍ରକୃତି ପର୍ଯ୍ୟବେକ୍ଷଣ ପାଠ (ନି. ପ୍ରା.) .... ୧୯୨୭
୯୩ । ସ୍ୱାସ୍ଥ୍ୟରକ୍ଷା (ନି. ପ୍ରା.) .... ୧୯୨୮
୯୪ । ଇତିହାସ ପରିଚୟ (ନି. ପ୍ରା ) .... ୧୯୩୧
୯୫ । ପାରିପାର୍ଶ୍ୱିକ ଭୂଗୋଳ ପରିଚୟ (ଉ. ପ୍ରା.) .... ୧୯୩୨
୯୬ । ରଚନା ପ୍ରବେଶ (ଉ. ପ୍ରା.) .... ୧୯୩୪
୯୭ । କୌତୁକ ପାଠ, ୧ମ (୨ୟ ଶ୍ରେଣୀ) .... ୧୯୩୫
୯୮ । କୌତୁକ ପାଠ, ୨ୟ (୩ୟ ଶ୍ରେଣୀ) .... ୧୯୩୫
୯୯ । ସାହିତ୍ୟ ପରିଚୟ, ୧ମ (୨ୟ ଶ୍ରେଣୀ) .... ୧୯୩୮
୧୦୦ । ସାହିତ୍ୟ ପରିଚୟ, ୨ୟ (୩ୟ ଶ୍ରେଣୀ) .... ୧୯୩୮
୧୦୧ । ଶିଶୁବିଳାସ (୧ମ ଶ୍ରେଣୀ) .... ୧୯୪୦
୧୦୨ । ସରଳ ପାଠ, ୧ମ (୨ୟ ଶ୍ରେଣୀ) .... ୧୯୫୪
୧୦୩ । ସରଳ ପାଠ, ୨ୟ (୩ୟ ଶ୍ରେଣୀ) .... ୧୯୫୪
୧୦୪ । ମନୋହର ପାଠ, ୧ମ (୨ୟ ଶ୍ରେଣୀ) .... ୧୯୫୪
୧୦୫ । ମନୋହର ପାଠ, ୨ୟ (୩ୟ ଶ୍ରେଣୀ) .... ୧୯୫୪
୧୦୬ । ଗୀତ ଓ କଥା (୧ମ ଶ୍ରେଣୀ) .... ୧୯୫୫

## ପ୍ରଥମ ସଂସ୍କରଣ

୧୦୭ । ନବମୁକୁଳ (୧ମ ଶ୍ରେଣୀ).... ୧୯୫୮
୧୦୮ । ଟିକି ବନ୍ଧୁ ( ,, ) .... ୧୯୫୮
୧୦୯ । ସାହିତ୍ୟ ଶିକ୍ଷା (୪ର୍ଥ ଶ୍ରେଣୀ) .... ୧୯୬୦
୧୧୦ । ଇତିହାସ ପରିଚୟ, ୧ମ (୪ର୍ଥ ଶ୍ରେଣୀ) .... ୧୯୬୧
୧୧୧ । ଇତିହାସ ପରିଚୟ, ୨ୟ (୫ମ ଶ୍ରେଣୀ) .... ୧୯୬୧
୧୧୨ । ପିଲଙ୍କ ଇତିହାସ କଥା, ୧ମ (୪ର୍ଥ ଶ୍ରେଣୀ) .... ୧୯୬୧
୧୧୩ । ପିଲଙ୍କ ଇତିହାସ କଥା, ୨ୟ (୫ମ ଶ୍ରେଣୀ) .... ୧୯୬୧
୧୧୪ । ମନୋହର ଇତିହାସ କଥା, ୧ମ (୪ର୍ଥ ଶ୍ରେଣୀ) .... ୧୯୬୧
୧୧୫ । ମନୋହର ଇତିହାସ କଥା, ୨ୟ (୫ମ ଶ୍ରେଣୀ) .... ୧୯୬୧
୧୧୬ । ଇତିହାସ ପ୍ରବେଶ, ୧ମ (୪ର୍ଥ ଶ୍ରେଣୀ) .... ୧୯୬୧
୧୧୭ । ଇତିହାସ ପ୍ରବେଶ, ୨ୟ (୫ମ ଶ୍ରେଣୀ) ... ୧୯୬୧
୧୧୮ । ସୁକୁମାର ଇତିହାସ, ୧ମ (୪ର୍ଥ ଶ୍ରେଣୀ) .... ୧୯୬୧
୧୧୯ । ସୁକୁମାର ଇତିହାସ, ୨ୟ (୫ମ ଶ୍ରେଣୀ) .... ୧୯୬୧
୧୨୦ । ଭୂଗୋଳ ପ୍ରବେଶ, ୧ମ (୪ର୍ଥ ଶ୍ରେଣୀ) .... ୧୯୬୧
୧୨୧ । ଭୂଗୋଳ ପ୍ରବେଶ, ୨ୟ (୫ମ ଶ୍ରେଣୀ) ... ୧୯୬୧
୧୨୨ । ସୁକୁମାର ଭୂଗୋଳ, ୧ମ (୪ର୍ଥ ଶ୍ରେଣୀ) .... ୧୯୬୧

| ପ୍ରଥମ ସଂସ୍କରଣ | | ପ୍ରଥମ ସଂସ୍କରଣ | |
|---|---|---|---|
| ୧୨୩ । ସୁକୁମାର ଭୂଗୋଳ, ୨ୟ (୫ମ ଶ୍ରେଣୀ) | .... ୧୯୬୧ | ୧୨୫ । ସାହିତ୍ୟସୁଧା ସହଚର (୬ଷ୍ଠ ଓ ୭ମ ଶ୍ରେଣୀ) | .... ୧୯୩୬ |
| **ଏ୨ । ସହାୟକ ପୁସ୍ତକ** | | ୧୨୬ । ସାହିତ୍ୟ ପ୍ରବେଶ ପରିଚୟ (ମାଟ୍ରିକ୍ ଶ୍ରେଣୀ) | .... ୧୯୫୪ |
| ୧୨୪ । ସାହିତ୍ୟପ୍ରସଙ୍ଗ ସହଚର (୬ଷ୍ଠ ଓ ୭ମ ଶ୍ରେଣୀ) | .... ୧୯୩୨ | ୧୨୭ । କବିତା ପ୍ରବେଶ ପରିଚୟ (ମାଟ୍ରିକ୍ ଶ୍ରେଣୀ) | .... ୧୯୫୪ |

(ଗ) ଯେଉଁ ଲେଖକ-ଲେଖିକା ଓ କବି-କବୟିତ୍ରୀମାନେ ସ୍ୱ ସ୍ୱ ଗଦ୍ୟରଚନା, କାବ୍ୟ ଓ କବିତା ରଚନାଗୁଡ଼ିକର ତ୍ରୁଟି ପ୍ରଦର୍ଶନ ବା ଉତ୍କର୍ଷ ସମ୍ପାଦନ ଉଦ୍ଦେଶ୍ୟରେ ସଂମାର୍ଜନ, ସଂଶୋଧନ, ସଂଯୋଜନ, ପରିବର୍ତ୍ତନ ବା ଭାଷାଶୁଦ୍ଧି ସମୀକ୍ଷଣ କରିବାକୁ ମତେ ଅବାଧ ସୁଯୋଗ ଦେଇଛନ୍ତି, ସେମାନଙ୍କଠାରେ ମୁଁ କୃତଜ୍ଞତା-ପାଶରେ ବନ୍ଧା । ବାଣୀମଣ୍ଡପର ସେହି ଅବସ୍ମର-ଅବସ୍ମରୀବୃନ୍ଦଙ୍କ ନାମ ଓ କୃତି ନିମ୍ନରେ ଉଲ୍ଲେଖ କରୁଛି :

୧ । (୧୯୨୩) କୃଷ୍ଣଚନ୍ଦ୍ର ସେନ୍‌ଗୁପ୍ତ—ଧ୍ରୁବ, ପ୍ରହ୍ଲାଦ (ଶିଶୁ ସାହିତ୍ୟ)

୨ । (୧୯୨୬) ଚନ୍ଦ୍ରମଣି ମହାପାତ୍ର—ଶ୍ରୀବତ୍ସ (ଶିଶୁ ସାହିତ୍ୟ)
[କିମ୍ବା ହାତର ପ୍ରଥମ ଲେଖା ବୋଲି ଆଦ୍ୟୋପାନ୍ତ ପରିବର୍ତ୍ତନ କରିବାକୁ ପଡ଼ିଥିଲା ।]

୩ । (୧୯୨୬) ଅପର୍ଣ୍ଣା ଦେବୀ (ସାରବଳଭଦ୍ରପୁର, ପୁରୀ ଜିଲ୍ଲା)—ଇନ୍ଦୁମତୀ (କାବ୍ୟ)
[କୋରଇ ମଧ୍ୟଇଂରାଜୀ ବିଦ୍ୟାଳୟର ପ୍ରଧାନଶିକ୍ଷକ ଶିଶୁସାହିତ୍ୟିକ ନାରାୟଣ ତ୍ରିପାଠୀଙ୍କ ମଧ୍ୟବର୍ତ୍ତିତାରେ କାବ୍ୟଟିର ପାଣ୍ଡୁଲିପି ମୋର ହସ୍ତଗତ ହୋଇଥିଲା । ନାରୀକବିମାନଙ୍କ ଲେଖାର ଉତ୍କର୍ଷ ବଢ଼ାଇବାକୁ ଶ୍ରମଦାନ କରିବାରେ ମୁଁ ଥିଲି ସତତ ଉନ୍ମୁଖ, କାରଣ ଚିକିଟି (ଗଞ୍ଜାମ) ର ଅନ୍ନପୂର୍ଣ୍ଣା ଦେବୀ, କରଞ୍ଜୀପୁର (ପୁରୀ) ର ଦେବହୂତୀ ଦେବୀ ଏବଂ କଟକର ରେବା ରାୟ ଓ କୁନ୍ତଳାକୁମାରୀ ସାବତଙ୍କ ପରେ ନାରୀକବିଙ୍କର ନିର୍ମଳ ନିର୍ଝର କିଛି ସମୟ-ପରେ ଶୁଖିଯାଇଥିଲା । ଅପର୍ଣ୍ଣାଙ୍କ ଜନ୍ମବର୍ଷ ୧୮୯୮ ହେଲେହେଁ ତାଙ୍କର କବିପ୍ରତିଭା ଆଗରୁ ଲୋକଗୋଚରକୁ ଆସିନଥିଲା ।]

୪ । (୧୯୨୮) ରାଧାନାଥ ରଥ—ଶୈବ୍ୟା (କିଶୋର ସାହିତ୍ୟ)

୫ । (୧୯୨୯) ମନୋଜମଞ୍ଜରୀ ଦେବୀ (କେନ୍ଦୁଝର ରାଣୀ)—ସୀତା (ଉଚ୍ଚାଙ୍ଗ ସାହିତ୍ୟ) ।

୬ । (୧୯୩୧) ଆର୍ତ୍ତତ୍ରାଣ ମିଶ୍ର—ପିଲାଙ୍କ ଗପ (ଶିଶୁ ସାହିତ୍ୟ)

୭ । (୧୯୩୨) ,, ,, —ଓଡ଼ିଆ ବ୍ୟାକରଣ (ଉଚ୍ଚ ପ୍ରାଥମିକ)

୮ । (୧୯୩୪) ଲକ୍ଷ୍ମୀନାରାୟଣ ସାହୁ—ଛନ୍ନପତ୍ର (ଓଡ଼ିଶାର ସର୍ବପ୍ରଥମ ଗଦ୍ୟ କବିତା) [ଓଡ଼ିଶାର ବ୍ୟୁତ୍ପତ୍ତିମାନ୍ ରୂପେ ପରିଚିତ ଏହି କବିଙ୍କ ଅନୁରୋଧରେ ମୁଖବନ୍ଧଟି ମଧ୍ୟ ମତେ ଲେଖିବାକୁ ହୋଇଥିଲା ।]

୯ । (୧୯୩୭ରୁ ମୃତ୍ୟୁ ପର୍ଯ୍ୟନ୍ତ) ନିମାଇଁଚରଣ ଦାସ—ଏହି ସମୟସୀମା ମଧ୍ୟରେ ତାଙ୍କ ପ୍ରଣୀତ ଓ ସଙ୍କଳିତ ସମସ୍ତ ପୁସ୍ତକ ।

୧୦ । (୧୯୪୭ରୁ ୧୯୫୩) ବିଦ୍ୟୁତ୍‌ପ୍ରଭା ଦେବୀ—ଅକ୍ଷର ବୃତ୍ତରେ ରଚିତ 'ଉତ୍କଳ ସାରସ୍ୱତ ପ୍ରତିଭା' (କବିତାରେ ପ୍ରସିଦ୍ଧ ଓଡ଼ିଆ କବିମାନଙ୍କ ପ୍ରତିଭା)ର ଦ୍ୱିତୀୟ ସଂସ୍କରଣ ବେଳେ ଆମୂଳାନ୍ତ ସଂଶୋଧନ ଓ ପରିବର୍ତ୍ତନ ଏବଂ 'କାନ୍ତକବି ଗୋପାଳକୃଷ୍ଣ' କବିତାଟିକୁ ସମ୍ପୂର୍ଣ୍ଣ ନୂତନ ରୂପରେ ପୁନର୍ଲିଖନ । ତନବର୍ତ୍ତି କାଳ ଆଧୁନିକ ମାତ୍ରାଛନ୍ଦ ରଚନାରେ ତାଲିମଦାନ ଏବଂ ତା' ଫଳରେ ତ୍ରୁଟିହୀନ ମାତ୍ରାଛନ୍ଦ ରଚନାରେ ତାଙ୍କର ବ୍ୟୁତ୍ପତ୍ତି-ଅର୍ଜନ । ତତ୍ପରେ ମାତ୍ରାବୃତ୍ତ ନିୟମରେ ବିଭିନ୍ନ କବିତା ପୁସ୍ତକ ରଚନାରେ ପ୍ରଯୋଜନାଠାରୁ ପ୍ରକାଶନା ପର୍ଯ୍ୟନ୍ତ ସବୁ ସ୍ତରରେ ଗୁରୁରୂପେ ମାର୍ଗପ୍ରଦର୍ଶନ ଓ ପୃଷ୍ଠପୋଷଣ । ବିଶିଷ୍ଟା ନାରୀକବିରୂପେ ଲବ୍ଧପ୍ରତିଷ୍ଠା ହେଲା ପରେ ଆଉ ମୋ ସହାୟତା ବା ଦିଗ୍‌ଦର୍ଶନ ଦାନର ପ୍ରୟୋଜନ ରହିଲା ନାହିଁ ।

୧୧ । (୧୯୪୯) ଉଦୟନାଥ ମିଶ୍ର—ତ୍ରୁଷ୍ଟି, ଲବଣ୍ୟବତୀ ପ୍ରଭୃତି (ନାଟକ)

୧୨ । (୧୯୫୧) ମାୟାଧର ମାନସିଂହ—ସମାଜ ଓ ସାହିତ୍ୟ (କଲେଜପାଠ୍ୟ) ଏବଂ ଅଷ୍ଟମ ଶ୍ରେଣୀ ଓ ମଧ୍ୟଇଂରାଜୀ ଶ୍ରେଣୀମାନଙ୍କର ପାଠ୍ୟପୁସ୍ତକ ।

୧୩ । (୧୯୫୧) ବିନବିହାରୀ ପଟ୍ଟନାୟକ—ମହାଭାରତ (ଶିଶୁସାହିତ୍ୟ)

୧୪ । (୧୯୫୩) ଗୋଲୋକବିହାରୀ ଧଳ—ଆମେରିକା ଅନୁଭୂତି (ଭ୍ରମଣକାହାଣୀ) [ଆମେରିକାରୁ ପାଣ୍ଡୁଲିପିଟି ପ୍ରକାଶକ କଟକ ନ୍ୟୁ ଷ୍ଟୁଡେଣ୍ଟସ୍ ଷ୍ଟୋର୍‌ର ସଞ୍ଚାଳନା-ନିର୍ଦ୍ଦେଶକ ଶ୍ରୀଧର ମହାପାତ୍ରଙ୍କ ଜରିଆରେ ମୋ ପାଖକୁ ପ୍ରେରିତ ହୋଇଥିଲା ।]

୧୫ । (୧୯୫୪ରୁ ୧୯୫୭) ନଳିନୀ ଦେବୀ ରାଉତରାୟ—ନଜରୁଲ ସଞ୍ଚୟନ (ବଙ୍ଗଳା ମୂଳ ରଚନାରୁ ଅନୂଦିତ କବିତା ଗ୍ରନ୍ଥ) [ଅନୁବାଦିକା ମାତ୍ରା ବୃତ୍ତର ନୀତି-ନିୟମ ଜ୍ଞାନରେ ଅନଭିଜ୍ଞା ଥିବାରୁ ଏଥିରେ ଥିବା ପ୍ରତ୍ୟେକ କବିତାର ପ୍ରାୟ ପ୍ରତି ପଙ୍‌କ୍ତି ବଦଳାଇବାକୁ ମତେ କଠିନ ଶ୍ରମ ସ୍ୱୀକାର କରିବାକୁ ପଡ଼ିଥିଲା ।]

୧୬ । (୧୯୫୪) ଗୋକୁଳାନନ୍ଦ ମହାପାତ୍ର—ମାଧ୍ୟମିକ ବିଜ୍ଞାନ ପ୍ରବେଶିକା (୧ମ, ୨ୟ ଓ ୩ୟ ଭାଗ)

୧୭ । (୧୯୫୮) ସ୍ୱାମୀ ଜଗନ୍ନାଥାନନ୍ଦ—ବୈଦିକ ଭାରତର ଗୁରୁ ଓ ବିଦ୍ୟାର୍ଥୀ (କିଶୋର ସାହିତ୍ୟ) [ ପ୍ରକାଶକ ଗ୍ରନ୍ଥମନ୍ଦିର ପୁସ୍ତକ ଭଣ୍ଡାର ]

୧୮ । ୧୯୬୦) ଗୋକୁଳଚନ୍ଦ୍ର କର—ରାମାୟଣ କଥା (ଶିଶୁ ସାହିତ୍ୟ) [ଆମୂଳଚୂଳ ପରିବର୍ତ୍ତନ କରିବାକୁ ପଡ଼ିଥିଲା ଏବଂ ଗୋଟିଏ ଭୁଲ୍ ତଥ୍ୟର ବର୍ଣ୍ଣନାକୁ ସଂଶୋଧିତ ରୂପରେ ସଜାଇବାକୁ ହୋଇଥିଲା ।]

୧୯ । (୧୯୬୩) ଅଶୋକ ରାଓ—କାଲିଆସୁନା (ବୈଜ୍ଞାନିକ ଶିଶୁସାହିତ୍ୟ) ।

୨୦ । (୧୯୬୧ରୁ ୧୯୬୩) ମାୟାଧର ମାନସିଂହ—ସାର୍ବଜନୀନ ଗୀତା [ବିଦ୍ୱସ୍ୟ ବନ୍ଧୁ ମାନସିଂହ ଏହି ବିରାଟ ବିଷୟଗ୍ରନ୍ଥର ପାଣ୍ଡୁଲିପି-ବିଶୁଦ୍ଧୀକରଣଠାରୁ ଆରମ୍ଭ କରି ପ୍ରୁଫ୍ ସଂଶୋଧନ ପର୍ଯ୍ୟନ୍ତ ସମସ୍ତ ଦାୟିତ୍ୱ ମୋ ଉପରେ ଛାଡ଼ିଦେଇଥିଲେ । ବିଭାଜିତ ତିନି ଖଣ୍ଡରେ ସମାପ୍ୟ ଗ୍ରନ୍ଥଟିର ପ୍ରଥମ ଖଣ୍ଡ ମୁଦ୍ରଣ ଶେଷ ପର୍ଯ୍ୟନ୍ତର ଦାୟିତ୍ୱ ମୁଁ ପୂର୍ଣ୍ଣପ୍ରାଣରେ ତୁଲାଇପାରିଥିଲି । ସେତିକବେଳେ କ୍ରୂର ନିୟତି ତାଙ୍କୁ ସଂସାରରୁ ଛଡ଼ାଇନେଇଗଲା ।]

୨୧ । (୧୯୮୩) ବନମାଳୀ ମିଶ୍ର—ବନମାଳୀ ଗୀତିକା (ଗୀତାନ୍ତ ପ୍ରତିଯୋଗିତାରେ ସହାୟକ 'ଅ'ଠାରୁ 'କ୍ଷ' ଯାଏ ଅକ୍ଷରାଦ୍ୟ ପଦ୍ୟଗୁଚ୍ଛ) ।

୨୨ । (୧୯୮୪) ସାରଙ୍ଗଧର ରାୟଗୁରୁ—ବାରାଙ୍ଗନାର କାବ୍ୟ (ଗାଥାକାବ୍ୟ) [କବିଙ୍କ ଲିଖିତ 'ଉପୋଦ୍‌ଘାତ'ର ଭାଷାରେ "କହିବା ବାହୁଲ୍ୟ ଯେ, ମୋର କାବ୍ୟ-ପ୍ରତିଭାକୁ ପ୍ରାଣବନ୍ତ କରିବାରେ ଯେଉଁ ମହାନ୍ ବ୍ୟକ୍ତିତ୍ୱର ଅବଦାନ ରହିଛି, ସେ ହେଉଛନ୍ତି ପରମ ସମ୍ମାନନୀୟ ପଣ୍ଡିତ କୃଷ୍ଣଚନ୍ଦ୍ର କର । ପରିଣତ ବୟସରେ ସେ ଆମୂଳଚୂଳ ସମସ୍ତ ପଙ୍‌କ୍ତି ଧୈର୍ଯ୍ୟର ସହିତ ଅନୁଶୀଳନ କରିଛନ୍ତି, ବହୁମୂଲ୍ୟ ମତାମତ ଓ ଉପଦେଶ ଦେଇଛନ୍ତି, ପାଣ୍ଡୁଲିପି ସଂଶୋଧନ କରିଛନ୍ତି ଏବଂ ଉତ୍ସାହ ପ୍ରଦାନ କରିଛନ୍ତି । ସେହି ଦୁର୍ଲଭ ଉପଦେଶଗୁଡ଼ିକ ଆଗାମୀ ଜୀବନର ପାଥେୟ ।"]

୨୩ । (୧୯୮୬) ବିନୋଦଚନ୍ଦ୍ର ନାୟକ—ସ୍ୱର୍ଗେ ଲାଗୁ ତାଳ (ସମ୍ପୂର୍ଣ୍ଣ ନୂତନ ସ୍ୱାଦର ଆଧୁନିକଧର୍ମୀ କବିତାସମାହାର) ।

(୪) ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗ ଅଧୀନସ୍ଥ ଶିଶୁ-ସାହିତ୍ୟ ସମିତି, ଶିଶୁସାହିତ୍ୟିକ ସମ୍ମିଳନୀ, ସାହିତ୍ୟ ସଂସଦ୍, ଶିଶିର ଉତ୍ସବ, ନୀଳଶୈଳ ଓ 'ହିଦୟଶ୍ରୀ' ବାଣୀଭବନରେ ଅନୁଷ୍ଠିତ ସାରସ୍ୱତ ଉତ୍ସବର ସ୍ୱତନ୍ତ୍ର ସ୍ୱତନ୍ତ୍ର ସମାବେଶରେ ମୋର ସାହିତ୍ୟିକ କୃତି ଓ କୃତିତ୍ୱକୁ ସ୍ୱୀକୃତି ଦାନପୂର୍ବକ ବିପୁଳ ସମାରୋହ ମଧ୍ୟରେ ମତେ ଉଚ୍ଛ୍ୱସିତ ଅଭ୍ୟର୍ଥନା, ସଂମାନନା ଓ ସମ୍ବର୍ଦ୍ଧନାରେ ବୁଡ଼ାଇଦେଇ ଯେପରି ଅଭିଭୂତ କରିଦେଇଛନ୍ତି, ତାହା ପ୍ରକାଶ କରିବାକୁ ମୋ ଭାଷାର ଶକ୍ତି ନାହିଁ । କୃତଜ୍ଞତାର ଭାରରେ ମଥା ନୋଇଁ ସେମାନଙ୍କ ପ୍ରଦତ୍ତ ମାନପତ୍ରାଦିର ଅଭିଲେଖ ଏଠାରେ ଅବିକଳ ଉଦ୍ଧାର କରି ମୋର କର୍ତ୍ତବ୍ୟ ସାଙ୍ଗ କରୁଛି ।

( ମାନପତ୍ର )

## ଓଡ଼ିଶା ସାହିତ୍ୟ ଏକାଡେମୀ

ଭୁବନେଶ୍ୱର

### ମାନନୀୟ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର କର

ମହାଶୟ,

ବିଗତ ଅର୍ଦ୍ଧଶତାବ୍ଦୀ ଧରି ନିରବଚ୍ଛିନ୍ନ ଭାବରେ ଆପଣ ସାହିତ୍ୟସେବାରେ ନିଜକୁ ନିୟୋଜିତ କରିଆସିଛନ୍ତି ।

କାବ୍ୟ, କବିତା, ଗଳ୍ପ, ଶିଶୁସାହିତ୍ୟ, ଜୀବନୀ, ପ୍ରବନ୍ଧ, ଅଭିଧାନ ପ୍ରଭୃତି ଓଡ଼ିଆ ସାହିତ୍ୟର ପ୍ରାୟ ପ୍ରତ୍ୟେକ ବିଭାଗକୁ ଆପଣଙ୍କର ଉଲ୍ଲେଖନୀୟ ଅବଦାନ ରହିଅଛି ।

ଶିଶୁସାହିତ୍ୟ ତଥା ଶିଶୁପାଠ୍ୟପୁସ୍ତକ ରଚନାରେ ଆପଣଙ୍କର ଧୁରୀଣତା ଅଭିନନ୍ଦନୀୟ ।

ଏଣୁ ଆଜି ଏହି ଶୁଭ ଅବସରରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଆପଣଙ୍କର ସାହିତ୍ୟିକ ପ୍ରତିଭାକୁ ଅଭିନନ୍ଦନ କରି ନିଜକୁ ଗୌରବାନ୍ୱିତ ମନେକରୁଅଛି ।

**ନନ୍ଦିନୀ ଶତପଥୀ**
ସଭାପତି
ତା ୨୫।୧୦।୧୯୭୨

**ବିନୋଦଚନ୍ଦ୍ର ନାୟକ**
ସମ୍ପାଦକ

( ତାମ୍ରଫଳକାଙ୍କିତ ସନନ୍ଦ )

## ଶିଶୁ ସାହିତ୍ୟ ସମିତି

ଶିକ୍ଷା ବିଭାଗ, ଓଡ଼ିଶା

**ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର କର**
ଉଦାରଚରିତେଷୁ

ଶ୍ରୀମନ୍‌ମହୋଦୟ,

ଆପଣଙ୍କର ସୃଜନଶୀଳ ପ୍ରତିଭା ଓ ଜୀବନବ୍ୟାପୀ ଐକାନ୍ତିକ ସାଧନା ଓଡ଼ିଶାର ଶିଶୁସମାଜକୁ ଜ୍ଞାନ ଓ ଆନନ୍ଦ ପ୍ରଦାନ କରିବା ସଙ୍ଗେ ସଙ୍ଗେ ଶିଶୁ ସାହିତ୍ୟକୁ ବିକାଶ-ପଥରେ ଅଗ୍ରସର କରାଇଛି । ଏଥିପାଇଁ ରାଜ୍ୟ ଶିଶୁ ସାହିତ୍ୟ ସମିତି ଆଜି ଆପଣଙ୍କୁ ଗଭୀର ଶ୍ରଦ୍ଧା ଓ ଆନ୍ତରିକତାର ସହିତ ସମ୍ବର୍ଦ୍ଧନା ଜଣାଉଛି ।

**ଯଦୁନାଥ ଦାଶ ମହାପାତ୍ର**
ଶିକ୍ଷାମନ୍ତ୍ରୀ

ତା ୧୨।୮।୧୯୭୬

( ମାନପତ୍ର )

ଓଡ଼ିଶାର ବୃହତ୍ତମ ଶିଶୁ ସାହିତ୍ୟ ଅନୁଷ୍ଠାନ

## ଶିଶୁ ସାହିତ୍ୟ ବିକାଶ ସମିତି

ଆନୁକୂଲ୍ୟରେ

## ଶିଶୁ ସାହିତ୍ୟିକ ସମ୍ମିଳନୀ

କେନ୍ଦ୍ର କାର୍ଯ୍ୟାଳୟ—ସୂତାହାଟ, କଟକ-୭୫୩୦୦୧

ତୃତୀୟ ବାର୍ଷିକ ମିଳନ ଉତ୍ସବ

ତା ୨୦ । ୧୨ । ୧୯୮୧

**ଶ୍ରୀ କୃଷ୍ଣଚନ୍ଦ୍ର କର**

ଦୀର୍ଘ କାଳ ଧରି ଆପଣଙ୍କ ସାରସ୍ୱତ ସାଧନା ଆଧୁନିକ ଓଡ଼ିଆ ଶିଶୁସାହିତ୍ୟକୁ ଶୁଭଶ୍ରୀମଣ୍ଡିତ କରିଆସିଛି । ଆପଣଙ୍କ ବହୁମୂଲ୍ୟ ଅବଦାନକୁ ଆଧୁନିକ ଓଡ଼ିଆ ଶିଶୁସମାଜ ଶ୍ରଦ୍ଧାର ସହିତ ସ୍ମରଣ କରେ । ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ୍ ଏକାକାର ହୋଇ ସତେ ଯେପରି ଆପଣଙ୍କ ସାହିତ୍ୟରେ ମୂର୍ତ୍ତିମନ୍ତ ହୋଇଛି । ଆପଣଙ୍କ ଏହି ପ୍ରତିଭାକୁ ଶିଶୁ ସାହିତ୍ୟିକ ସମ୍ମିଳନୀର ତୃତୀୟ ବାର୍ଷିକ ମିଳନ ଉତ୍ସବର ଏ ଶୁଭ ଅବସରରେ ମାନପତ୍ର ପ୍ରଦାନ କରାଗଲା ।

| ଯୋଗମାୟା ପଟ୍ଟନାୟକ | ରାମକୃଷ୍ଣ ନନ୍ଦ | ଦୁର୍ଗାପ୍ରସାଦ |
| --- | --- | --- |
| ମୁଖ୍ୟ ଅତିଥି | ଉପଦେଷ୍ଟା | ସଭାପତି |

ରଚନାରଞ୍ଜନ ମହାପାତ୍ର

ସାଧାରଣ ସମ୍ପାଦକ

( ମାନପତ୍ର )

## ବାଣୀଭୂଷଣ ପଣ୍ଡିତ କୃଷ୍ଣଚନ୍ଦ୍ର କର

ସମୀପେଷୁ

ଶ୍ରୀମନ୍ମହାଶୟ,

ଆପଣ ଦୀର୍ଘକାଳ ଆଧୁନିକ ଓଡ଼ିଆ ସାହିତ୍ୟର ବିଭିନ୍ନ କ୍ଷେତ୍ରରେ ଲେଖନୀଚାଳନା କରି ଉତ୍କଳଭାରତୀଙ୍କୁ ଶ୍ରୀମଣ୍ଡିତ କରିଛନ୍ତି । ଶୁଦ୍ଧ ଭାଷା ଏବଂ ଉଚ୍ଚ ଭାବର ସମନ୍ୱୟରେ ଆପଣଙ୍କର ସାହିତ୍ୟସାଧନା ଶାଶ୍ୱତୀର ସ୍ୱର୍ଣରେ ମହୀୟାନ୍ । ଆପଣଙ୍କ ନିରଳସ ସାହିତ୍ୟସାଧନାକୁ ସାହିତ୍ୟ ସଂସଦ୍ ପଞ୍ଚବିଂଶତି ଶିଶିର ଉତ୍ସବର ସାରସ୍ୱତ ସମାରୋହରେ ଗଭୀର ଶ୍ରଦ୍ଧାର ସହିତ ସମ୍ମାନ କରୁଛି ।

ବ୍ୟାକରଣ ଏବଂ ସୃଜନୀର ମିଳନରେ ହୃଦୟତନ୍ତ୍ରୀର ଅପୂର୍ବ ଝଙ୍କାରରେ ଆପଣ ଭାରତୀୟ ସନାତନ ପରମ୍ପରାରେ ନବୀକରଣପାଇଁ ଉତ୍କଣ୍ଠାର ସହିତ ସାଧନା କରି-ଆସିଛନ୍ତି । ଜୀବନର ବାର୍ଦ୍ଧକ୍ୟରେ ଆପଣ ଜୀବନ-ବଂଶୀର ଅପୂର୍ବ ମୂର୍ଚ୍ଛନାକୁ ଅବହେଳା କରିପାରିନାହାନ୍ତି । ଅନୁଭବକୁ ପ୍ରଜ୍ଞାନନ୍ଦରେ ଭେଟି ଦେଇ 'ଯୋଗଃ କର୍ମସୁ କୌଶଳଂ'କୁ ଆଜୀବନ ପୁରଶ୍ଚରଣ କରିଆସିଛନ୍ତି । ଆଜି ପଞ୍ଚବିଂଶତି ଶିଶିର ଉତ୍ସବର ଓଡ଼ିଆ ଲେଖକ ସମ୍ମେଳନରେ ଆପଣଙ୍କର ବିଭିନ୍ନ ପ୍ରତିଭାଧର ସ୍ରଷ୍ଟାମାନସକୁ ଅଭିନନ୍ଦନ କରାଯାଉଛି ।

ଆପଣ ଏକାଧାରରେ କବି, ଗାଳ୍ପିକ, ଔପନ୍ୟାସିକ । ଆପଣ ଶବ୍ଦକୋଷ ପ୍ରଣୟନ କରି ଆଧୁନିକ ଓଡ଼ିଆ ଭାଷା ଓ ସାହିତ୍ୟକୁ ପ୍ରସାରିତ କରିବାପାଇଁ କୃଚ୍ଛ୍ର ସାଧନା ମଧ୍ୟ କରି-ଆସିଛନ୍ତି । ଶିଶୁମାନଙ୍କ ପାଇଁ ସାହିତ୍ୟ ସୃଷ୍ଟି କରିବାରେ ଆପଣ ସ୍ୱତନ୍ତ୍ର ସମ୍ମାନର ଅଧିକାରୀ । ଆପଣଙ୍କୁ ଓଡ଼ିଆ ଲେଖକ ସମ୍ମେଳନର ଏ ପବିତ୍ର ଉତ୍ସବରେ ସମ୍ମାନିତ କରାଯାଉଛି ।

ହେ ଗଣପତିଙ୍କର ପ୍ରିୟ ସନ୍ତାନ ! ଆପଣଙ୍କ ସାଧନାର ମହିମାରେ ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ ପୃଷ୍ଠା ଅନୁରଣିତ ହୋଇଯାଇଛି । ଆପଣଙ୍କୁ ଗଭୀର ଶ୍ରଦ୍ଧାରେ ପଞ୍ଚବିଂଶତି ଶିଶିର ଉତ୍ସବର ଏ ଶୁଭ ଅବସରରେ ସାହିତ୍ୟ ସଂସଦ୍ **'ବାଣୀଭୂଷଣ'** ଉପାଧିରେ ମଣ୍ଡିତ କରୁଛି । ଆପଣଙ୍କ ପ୍ରତି ଉତ୍ତର-ପୁରୁଷର ଶ୍ରଦ୍ଧା ଓ ସମ୍ମାନର ଏ ପ୍ରତୀକକୁ ଆପଣ ଉଦାର ହୃଦୟରେ ଗ୍ରହଣ କରିବା ହେବେ ।

ଆପଣଙ୍କର ସାହିତ୍ୟସାଧନା ଏବେ ମଧ୍ୟ ଅବ୍ୟାହତ । ଆପଣ ସୁସ୍ଥ ଏବଂ ନୀରୋଗସ୍ଥ ଭାବରେ ଦୀର୍ଘ ଜୀବନ ଲଭ କରି ସାହିତ୍ୟସାଧନାକୁ ଆହୁରି ଗୌରବୋଜ୍ଜ୍ୱଳ କରନ୍ତୁ, ଏହା ହିଁ ଭଗବାନ୍ ଗଣପତିଙ୍କଠାରେ ପ୍ରାର୍ଥନା ।

ପଶ୍ୟେମ ଶରଦଂ ଶତଂ, ଜୀବେମ ଶରଦଂ ଶତଂ, ଶୃଣୁୟାମ ଶରଦଂ ଶତମ୍ !

ଶ୍ରୀରାମଚନ୍ଦ୍ର ଭବନ, କଟକ — ସାହିତ୍ୟ ସଂସଦର ସଭ୍ୟସଭ୍ୟାବୃନ୍ଦ

ତା ୧୭ । ୧୨ । ୧୯୮୪

( ମାନପତ୍ର )

# ନୀଳଶୈଳ

କେନ୍ଦ୍ର କାର୍ଯ୍ୟାଳୟ : ଝାଞ୍ଜିରିମଙ୍ଗଳା, କଟକ-୭୫୩୦୦୮

## ପଞ୍ଚଦଶ ବାର୍ଷିକ ମିଳନ ଉତ୍ସବ

ତା ୪ । ୧୦ । ୧୯୮୭

**ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର କର**

ଉଚ୍ଚ ଶିକ୍ଷାର ସୁବିଧାରୁ ବଞ୍ଚିତ ହୋଇ ମଧ୍ୟ ଆପଣ ସ୍ୱ-ସାଧନା ବିନିଯୋଗ କରି ଆଧୁନିକ ଓଡ଼ିଆ ଗବେଷଣା କ୍ଷେତ୍ରକୁ ଋଦ୍ଧିମନ୍ତ କରିଛନ୍ତି । ନୀଳଶୈଳର ଏହି ପଞ୍ଚଦଶ ବାର୍ଷିକ ମିଳନ ଉତ୍ସବରେ ଆପଣଙ୍କୁ ସମ୍ମାନିତ କରାଯାଉଛି ।

| **ଯୁଗଳକିଶୋର ମହାନ୍ତି** | **ହରିହର ମହାପାତ୍ର** | **ଶ୍ରୀରାମଚନ୍ଦ୍ର ଦାଶ** |
|---|---|---|
| ମୁଖ୍ୟ ଅତିଥି | ଉପଦେଷ୍ଟା | ସଭାପତି |

**ରାଜକିଶୋର ରାଜ**
ସାଧାରଣ ସମ୍ପାଦକ

(ସାହିତ୍ୟିକ ସମ୍ବର୍ଦ୍ଧନା)

୧୯୮୩ ମାର୍ଚ୍ଚ ୨୬ ସନ୍ଧ୍ୟାରେ ବିଶିଷ୍ଟ ଶିକ୍ଷାବିତ୍, ସାହିତ୍ୟିକ, ଗବେଷକ, ଲୋକରତ୍ନ ଡକ୍ଟର୍ କୁଞ୍ଜବିହାରୀ ଦାଶଙ୍କ ୭୮ତମ ଜନ୍ମଦିବସ ଉପଲକ୍ଷେ ତାଙ୍କ 'ଉଦୟଶ୍ରୀ' ବାସ-ଭବନଠାରେ ଆୟୋଜିତ ଏକ ବିରାଟ ସାରସ୍ୱତ ସମାବେଶରେ ମତେ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦିଆଯାଇଥିଲା । ସେହି ସୁସଜ୍ଜିତ ମନୋଜ୍ଞ ଉତ୍ସବରେ ଅବସରପ୍ରାପ୍ତ ହାଇକୋର୍ଟ ବିଚାରପତି ଶ୍ରୀଯୁକ୍ତ ହରିହର ମହାପାତ୍ର ଅଧ୍ୟକ୍ଷତା କରିଥିଲେ ଏବଂ ପଦ୍ମଭୂଷଣ ଡକ୍ଟର୍ କାଳିନ୍ଦୀଚରଣ ପାଣିଗ୍ରାହୀ ବରେଣ୍ୟ ଅତିଥି ଭାବରେ ଯୋଗଦେଇଥିଲେ । ଉଭୟେ ତାଙ୍କ ଭାଷଣରେ ମୋ ସାହିତ୍ୟିକ ପ୍ରତିଭାର ଭୂୟସୀ ପ୍ରଶଂସା ସହ ମୋର ସୁଦୀର୍ଘ ସୁସ୍ଥ ଜୀବନ କାମନା କରିଥିଲେ । ସର୍ବଶ୍ରୀ ଅଧ୍ୟାପକ ଗଦାଧର ମିଶ୍ର, ଅଧ୍ୟାପକ ମହାପାତ୍ର ନୀଳମଣି ସାହୁ, ଉଦୟନାଥ ମିଶ୍ର, ଉଦୟନାଥ ଷଡ଼ଙ୍ଗୀ, ରାମକୃଷ୍ଣ ନନ୍ଦ, ମୁରାରିମୋହନ ଜେନା ପ୍ରମୁଖ ବିଶିଷ୍ଟ ସାହିତ୍ୟିକ ମୋର ସାରସ୍ୱତ ସାଧନା ଉପରେ ଆଲୋକପାତ କରି ଗୁଣାବଳି ଆଲୋଚନା କରିଥିଲେ ଏବଂ କୁଳମଣି ମହାରଣା, ବାଞ୍ଛାନିଧି ଦାଶ, ବଂଶୀଧର ମିଶ୍ର, ହରେକୃଷ୍ଣ ମହାନ୍ତି ଓ ଶ୍ରୀମତୀ ସରସ୍ୱତୀ ଦେବୀ ମୋ ଉଦ୍ଦେଶ୍ୟରେ ରଚିତ ନିଜ ନିଜ

କବିତାକୁ ସୁସ୍ୱରରେ ଆବୃତ୍ତି କରିଥିଲେ । ସୁପରିଚିତ କବି କୁଳମଣି ମହାରଣାଙ୍କ ଛନ୍ଦ ରାଗିଣୀରେ ରଚିତ ଦୀର୍ଘ କବିତାଟି ମଧୁର ଶବ୍ଦଯୋଜନା, ଭାବୋଚ୍ଛଳ କାବ୍ୟିକ ସ୍ୱାଦ ଓ ଭାବଶାଳ ଲାଳିତ୍ୟରେ ସର୍ବୋତ୍କୃଷ୍ଟ ବିବେଚିତ ହେବା ସଙ୍ଗେ ସଙ୍ଗେ ସର୍ବାଧିକ ଉପଭୋଗ୍ୟ ହୋଇଥିଲା ।

ଏହି ସାହିତ୍ୟିକ ସମ୍ବର୍ଦ୍ଧନା ଉତ୍ସବର ପ୍ରଧାନ ବିଶେଷତ୍ୱ ଥିଲା ଯେ, ପ୍ରାରମ୍ଭରେ ପ୍ରଦୀପ-ହସ୍ତା ମହିଳାମଣ୍ଡଳୀ ଆର୍ଯ୍ୟ ପରମ୍ପରାନୁଯାୟୀ ଶଙ୍ଖହୁଳହୁଳିନାଦ ସହ ବନ୍ଦାଣ କରି ମତେ କୁସୁମାଭରଣରେ ମଣ୍ଡିଦେଇଥିଲେ । ତତ୍ପରେ ସୁଲେଖିକା ଶ୍ରୀମତୀ ପ୍ରେମଲତା ଦାଶ ପୁଷ୍ପମାଲ୍ୟାର୍ପଣଦ୍ୱାରା ମତେ ସମ୍ବର୍ଦ୍ଧନା ଜଣାଇ ସମବେତ ବିଶିଷ୍ଟ ଆଗନ୍ତୁକଙ୍କ ଅବଗତି ପାଇଁ ଉତ୍ସବର ଆଭିମୁଖ୍ୟ ବର୍ଣ୍ଣନା କରିଥିଲେ । ରାଜ୍ୟର ବହୁ ଉଚ୍ଚପଦସ୍ଥ ବ୍ୟକ୍ତି ଓ ଗଣ୍ୟମାନ୍ୟ ସାହିତ୍ୟିକ, ସାହିତ୍ୟପ୍ରେମୀ, କବି, କବୟିତ୍ରୀ, ସଙ୍ଗୀତଜ୍ଞ, ଗାୟିକା, ସାମ୍ବାଦିକ ପ୍ରଭୃତି ଏହି ରୁଚିସମ୍ମତ ଓ ଭାବଗମ୍ଭୀର ସମାବେଶରେ ଯୋଗଦାନ କରିଥିଲେ । ଲୋକରତ୍ନ ଡକ୍ଟର୍ କୁଞ୍ଜବିହାରୀ ଦାଶ ମୋ ସାହିତ୍ୟିକ ଜୀବନ ଉପରେ ତୀକ୍ଷ୍ଣ ପର୍ଯ୍ୟବେକ୍ଷଣ କରି ଲେଖିଥିବା ଏକ ଅତି ଦୀର୍ଘ ନିବନ୍ଧ ମଧ୍ୟ ପାଠ କରିଥିଲେ । ବାସ୍ତବରେ ଏଭଳି ସମାରୋହ-ମୟ ଅଭିନବ ସାହିତ୍ୟିକ ସମ୍ବର୍ଦ୍ଧନାର ସୂତ୍ରପାତ ଓଡ଼ିଶାର ସାରସ୍ୱତ ଇତିହାସରେ ଏକ ଅଭିନନ୍ଦନୀୟ ପଦକ୍ଷେପ, ଅନବଦ୍ୟ ଉଦ୍ୟମ ।

ଏହି ସମ୍ବର୍ଦ୍ଧନା ଉତ୍ସବର ପୂର୍ବଦିନ ଅର୍ଥାତ୍ ୨୫।୩।୧୯୮୩ ତାରିଖର 'ସମାଜ'ରେ 'ଡକ୍ଟର୍ ଦାଶଙ୍କ ଜୟନ୍ତୀରେ କବି ସମ୍ବର୍ଦ୍ଧନା ଉପଲକ୍ଷେ' ଯେଉଁ କ୍ଷୁଦ୍ର ପୂର୍ବପୀଠିକାଟି ପ୍ରକାଶିତ ହୋଇଥିଲା, ତାହା ତଳେ ଉଦ୍ଧୃତ କରାଗଲା :

## "ସାହିତ୍ୟସାଧକ କୃଷ୍ଣଚନ୍ଦ୍ର କର"

### ଲୋକରତ୍ନ ଡକ୍ଟର୍ କୁଞ୍ଜବିହାରୀ ଦାଶ

କୃଷ୍ଣଚନ୍ଦ୍ର ଜଣେ ମହାନ୍ ସାଧକ । ଓଡ଼ିଆ ସାହିତ୍ୟକୁ ତାଙ୍କର ଦାନ ବିପୁଳ, ବିଚିତ୍ର । କିଶୋର ଜୀବନରୁ ଅଦ୍ୟାବଧି ତାଙ୍କ ଲେଖନୀ ଅବ୍ୟାହତଭାବେ ଗତିଶୀଳ । କାବ୍ୟ, କବିତା, ଗଳ୍ପ, ଅଭିଧାନ ଓ କିଶୋରସାହିତ୍ୟ ରଚନାରେ ସେ ସିଦ୍ଧହସ୍ତତାର ପରିଚୟ ଦେଇଛନ୍ତି । ତାଙ୍କ ମାତ୍ରାବୃତ୍ତ ଛନ୍ଦ ନିର୍ଦ୍ଦୋଷ, ତାଙ୍କ ପଦାବଳୀ କାନ୍ତ, କୋମଳ । ତାଙ୍କ ଗଦ୍ୟ ଭାଷା ସରଳ, ଶୁଦ୍ଧ, ସରସ, ସୁନ୍ଦର । ସାହିତ୍ୟର ଜଣେ ମୁଖର ନେତା ନୁହନ୍ତି, ଜଣେ ନିଷ୍ଠାପର ଶ୍ରମିକ ସେ । କିନ୍ତୁ ତାଙ୍କର ଶ୍ରମ ପ୍ରୀତି ଓ ଶ୍ରଦ୍ଧାର ଶ୍ରମ । ଏହିପରି ପ୍ରେମର ଶ୍ରମିକମାନଙ୍କ ଯୋଗୁ ସାହିତ୍ୟର ସମୃଦ୍ଧି ପରିସର ପ୍ରକାଶ ପାଏ । କିନ୍ତୁ ସିଦ୍ଧିର ପରିମାପ କରିହୁଏ ନାହିଁ ।

ଗୋପୀନାଥ ନନ୍ଦଙ୍କ ପରି ସେ ନିର୍ଦ୍ଦିଷ୍ଟ ଢଗରେ ସାହିତ୍ୟାନୁଶୀଳନ ବା ସମୀକ୍ଷା କରିନାହାନ୍ତି, ମୃତ୍ୟୁଞ୍ଜୟ ରଥଙ୍କ ପରି ସେ ଗବେଷଣା ବି କରିନାହାନ୍ତି, ଗୋପାଳଚନ୍ଦ୍ର

ପ୍ରହରାଜଙ୍କ ପରି ସେ ଅଭିଧାନ ଲାଗି ଅମୂଲ୍ୟଦାନ କରିନାହାନ୍ତି; କିନ୍ତୁ କବିତାର ଛନ୍ଦମାଧୁର୍ଯ୍ୟ ଓ ଗଦ୍ୟଶୈଳୀର ସଂଯତଶ୍ରୀ ଲାଗି ସେ ଚିରସ୍ମରଣୀୟ ହୋଇ ରହିବେ । ସମସାମୟିକ କିଶୋରସାହିତ୍ୟ ରଚନାରେ ସେ ଅନନ୍ୟ, ଅନତିକ୍ରମ୍ୟ ।

କିନ୍ତୁ ସାହିତ୍ୟ କ୍ଷେତ୍ରରେ ଏକଦା ସୁପ୍ରତିଷ୍ଠିତ କୃଷ୍ଣଚନ୍ଦ୍ର ହଠାତ୍ ବିସ୍ମୃତ ହୋଇଗଲେ କିପରି ? ବିସ୍ମୃତି ଓ ଅବହେଳାର ଆଘାତ ବହିଥିବା କବି ପକ୍ଷରେ ଅସହ୍ୟ; କିନ୍ତୁ କୃଷ୍ଣଚନ୍ଦ୍ର ସହିଛନ୍ତି, ବିଦଗ୍ଧ ସାହିତ୍ୟସାଧନାର ଛିନ୍ନ ସୂତ୍ର ପୁଣି ଗଣ୍ଠିଦେଇବା ଆଶାରେ । ତାହା ସହଜ ହୋଇନାହିଁ, ସାରସ୍ୱତ କ୍ଷେତ୍ରରେ ଅବହେଳା ଅମାର୍ଜନୀୟ ବୋଲି ।

କୃଷ୍ଣଚନ୍ଦ୍ରଙ୍କ ଜନ୍ମ କଟକ ଜିଲାର ମୂଳବସନ୍ତ ଗ୍ରାମରେ ୧୯୦୬ରେ । ସେ ମାଟ୍ରିକ୍ ଟ୍ରେନିଂ ପାସ୍ କରିଛନ୍ତି ମାତ୍ର । ଏତିକମାତ୍ର ଶିକ୍ଷାରେ ସେ ବିଦଗ୍ଧ ମହଲରେ ଉଚ୍ଚ ସ୍ଥାନର ଅଧିକାରୀ ହୋଇଛନ୍ତି । ଅକଳାନ୍ତ ସାଧନାବଳରେ ସେ ସୁଶିକ୍ଷିତ ଓ ସୁପଣ୍ଡିତ ହୋଇଛନ୍ତି । ଏକାନ୍ତଭାବେ ଆତ୍ମନିର୍ଭରଶୀଳ ସେ ଜଣେ ସାର୍ଥକ ସଫଳ, ସଫଳ ମନୁଷ୍ୟ ।

'ପଞ୍ଚାମୃତ'ର ପରିଚାଳକ, ନବଭାବରେ 'ସହକାର'ର ସଙ୍ଗଠକ, 'ଜହ୍ନମାମୁଁ'ର ପରିକଳ୍ପକ, 'ଉତ୍କଳସାହିତ୍ୟ'ର ପରିଚାଳକ, 'ନବଭାରତ'ର ପ୍ରୁଫ୍‌ରିଡ଼ର୍ କୃଷ୍ଣଚନ୍ଦ୍ର ଓଡ଼ିଶା ସରକାରୀ ପ୍ରେସ୍‌ର ଓଭର୍‌ସିଅର୍ ଗ୍ରେଡ଼୍‌ରୁ ୧୯୬୬ ମସିହାରେ ୬୦ ବର୍ଷ ବୟସରେ ଅବସର ଗ୍ରହଣ କଲେ । ଜଣେ ପ୍ରୁଫ୍‌ରିଡ଼ର୍ ଭାବରେ ସମଗ୍ର ଓଡ଼ିଶାରେ ତାଙ୍କର ଯୋଡ଼ି ନାହିଁ ।

ସ୍ନେହଶୀଳ ପିତା, ସାହାଯ୍ୟକାରୀ ପଡ଼ୋଶୀ, ପରୋପକାରୀ ସାମାଜିକ ଓ ଅନୁଭୂତି-ପ୍ରବଣ ଆତ୍ମୀୟତାପରାୟଣ ସାହିତ୍ୟିକ । ସେ ଆଳାପରେ ବାକ୍‌ଚତୁର, କିନ୍ତୁ ବାଗ୍ମୀ ନୁହନ୍ତି; ଏକାନ୍ତ ସଜ୍ଜନ, ସଭାଜନ—କିନ୍ତୁ ସଭାପ୍ରିୟ ବା ବକ୍ତୃତାପ୍ରବଣ ନୁହନ୍ତି । ଶତାଧିକ ପୁସ୍ତକର ଲେଖକ କୃଷ୍ଣଚନ୍ଦ୍ରଙ୍କର ଅହଂଭାବ କେବେ ଲକ୍ଷ୍ୟ କରି ନାହିଁ । ଚିର କର୍ମବ୍ରତୀ, ଅଧ୍ୟବସାୟରତ । ସେ ଶତାୟୁଃ ହୁଅନ୍ତୁ, ଈଶ୍ୱରଙ୍କ ନିକଟରେ ମୋର ପ୍ରାର୍ଥନା ।

× × × ×

ଏଇଠାରେ ମୋ ଜୀବନୋପନ୍ୟାସର ଶେଷ ପୂର୍ଣ୍ଣଚ୍ଛେଦ । ପାକଲ ତାଳ, କୋଉ ମୁହୂର୍ତ୍ତରେ ଅଧିନା ଝଡ଼ଟାଏ ଆସିଯିବ ତ ତା'ର ସାମାନ୍ୟ ଫୁତ୍କାରରେ ଝଡ଼ିପଡ଼ିବ ମାଟିମା' କୋଳକୁ । ମଣିଷ ତେବେ କି ଲାଭପାଇଁକି ଅଡ଼େଇଦିନିଆ ଜୀବନରେ ବଡ଼େଇ କରେ ଏତେ ? ଏଇ ମୋର ଅନ୍ତିମ ପ୍ରଶ୍ନବାଚୀ ।

ଜୟ ଜଗନ୍ନାଥ

ଶୋଭାସଦନ, କାଳିଆବଜାର, କଟକ-୧ କୃଷ୍ଣଚନ୍ଦ୍ର କର

୩୧।୧୨।୧୯୮୭, ଗୁରୁବାର

[ ଏହି ବରିଷ୍ଠ ଲେଖକଙ୍କ ସିଦ୍ଧହସ୍ତର ବିଶାଳ ସାରସ୍ୱତ ସ୍ଥାପତ୍ୟ ଶ୍ଳାଘ୍ୟ ଶୈଳୀର ସ୍ୱାଦ୍ୟ ସାହିତ୍ୟ **ଗଳ୍ପରୂପା**—ଶ୍ରେଷ୍ଠ ସଂସ୍କୃତ ନାଟକପୁଞ୍ଜର ମନୋଜ୍ଞ ମଞ୍ଜୁଳ ଗଳ୍ପରୂପାୟନ ମୁଦ୍ରଣ ପ୍ରତୀକ୍ଷାରେ । ]